# ବ୍ରହ୍ମବୈବର୍ତ୍ତ ପୁରାଣ




ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର
ଅଲଣାବଜାର, କଟକ-୨

# ବ୍ରହ୍ମବୈବର୍ତ୍ତ ପୁରାଣ

## ଶ୍ରୀକୃଷ୍ଣ ଜନ୍ମଖଣ୍ଡ

( ଚତୁର୍ଥ ଭାଗ )

ନୂତନ ମୁଦ୍ରଣ

କ୍ଷେତ୍ରମୋହନ ପ୍ରଧାନଙ୍କ ଦ୍ୱାରା ପଦ୍ୟାନୁବାଦିତ



**ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ-୨

**ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥଷ୍ଟୋର**

ପ୍ରୋ : ପା : ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନମ୍ବର—୨୪୭୯୭

ମୂଲ୍ୟ—ଟ ୧୪-୦୦

# ବ୍ରହ୍ମବୈବର୍ତ୍ତ ପୁରାଣ

### ଶ୍ରୀ କୃ ଷ୍ଣ ଜ ନ୍ମ ଖ ଣ୍ଡ ର

## ସୂଚିପତ୍ର

| ବିଷୟ | ପୃଷ୍ଠା |
| --- | --- |
| ଋଷିଶ୍ରେଷ୍ଠ ଦୁର୍ବାସାଙ୍କର ଦାରପରିଗ୍ରହ ଓ ବଳପୂର୍ବ ଏବଂ ମେନକାର ମୁକ୍ତି କଥନ | ୧୧୭ |
| ନାରାୟଣଙ୍କ ଦ୍ୱାରା ଋଷିଙ୍କର ମୋକ୍ଷଣ ବୃତ୍ତାନ୍ତ ବିବରଣ | ୧୨୦ |
| ଏକାଦଶୀ ବ୍ରତର ମାହାତ୍ମ୍ୟ ନିରୂପଣ | ୧୨୭ |
| ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଗୋପୀମାନଙ୍କର ବସ୍ତ୍ରହରଣ ବୃତ୍ତାନ୍ତ ବର୍ଣ୍ଣନ | ୧୨୯ |
| ରାଧିକା ଆଦି ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ରାସକ୍ରୀଡ଼ା ବର୍ଣ୍ଣନ | ୧୩୭ |
| ମୁନିଙ୍କର ମୋକ୍ଷଣ ପ୍ରସ୍ତାବ ବର୍ଣ୍ଣନ | ୧୪୧ |
| ରାଧିକାଙ୍କ ଅଗ୍ରତ ଶ୍ରୀକୃଷ୍ଣଙ୍କର ଅଷ୍ଟାବକ୍ର ଚରିତ ବର୍ଣ୍ଣନ | ୧୪୩ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ମୋହିନୀ କୃତ ସ୍ତୋତ୍ର ବୃତ୍ତାନ୍ତ ବର୍ଣ୍ଣନ | ୧୪୭ |
| ବ୍ରହ୍ମାଙ୍କ ଦ୍ୱାରା ଶ୍ରୀକୃଷ୍ଣ ସ୍ତୋତ୍ର ବର୍ଣ୍ଣନ | ୧୫୦ |
| ବ୍ରହ୍ମାଙ୍କର ଦର୍ପଭଙ୍ଗ କଥନ | ୧୫୨ |
| ଶ୍ରୀକୃଷ୍ଣଙ୍କର ରାଧିକା ଆଗରେ ଜାହ୍ନବୀ ଜନ୍ମ ଚରିତ ବର୍ଣ୍ଣନ | ୧୫୫ |
| ବିଧାତାଙ୍କର ମୋହିନୀ ଶାପମୁକ୍ତି ବର୍ଣ୍ଣନ | ୧୫୭ |
| ବ୍ରହ୍ମା ଓ ଶଙ୍କରଙ୍କର ଗର୍ବଭଙ୍ଗ ବିଷୟ ବର୍ଣ୍ଣନ | ୧୬୦ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ଶିବ ନିର୍ମାଲ୍ୟର ଶାପ ପ୍ରାପ୍ତି ବର୍ଣ୍ଣନ | ୧୬୪ |
| ଶ୍ରୀକୃଷ୍ଣଙ୍କର କର୍ତ୍ତୃକ ଦୁର୍ଗାଦେବୀଙ୍କର ଦର୍ପଭଙ୍ଗ ବର୍ଣ୍ଣନ | ୧୬୭ |
| କନ୍ଦର୍ପ ନିଧନ ଓ ପାର୍ବତୀଙ୍କର ଦର୍ପଭଙ୍ଗ ବର୍ଣ୍ଣନ | ୧୬୮ |
| ପାର୍ବତୀଙ୍କର ତପ ଓ ଶିବଙ୍କଠାରୁ ବରପ୍ରାପ୍ତି | ୧୭୦ |
| ହିମାଳୟଙ୍କ ଆଗରେ ଶିବଙ୍କର ଆତ୍ମନିନ୍ଦା ଓ ମୁନିମାନଙ୍କର ହିମାଳୟଙ୍କୁ ସଦୁପଦେଶ ପ୍ରଦାନ | ୧୭୫ |
| ସତୀଦେବୀଙ୍କର ଶରୀରତ୍ୟାଗ ବର୍ଣ୍ଣନ | ୧୮୦ |
| ଶିବଙ୍କର ବିରହ ବ୍ୟଥା ନିବାରଣ ବୃତ୍ତାନ୍ତ ବର୍ଣ୍ଣନ | ୧୮୩ |
| ଶିବଙ୍କ ସହିତ ପାର୍ବତୀଙ୍କର ବିବାହ ଓ ହିମାଳୟ କର୍ତ୍ତୃକ ଶିବଙ୍କର ସ୍ତୁତି ପାଠ ବର୍ଣ୍ଣନ | ୧୮୭ |
| ଶିବଙ୍କର ବିବାହ ଓ ଶିବଙ୍କ ପ୍ରତି ଦେବୀମାନଙ୍କର ଷ୍ଠୁ ଉକ୍ତି ବର୍ଣ୍ଣନ | ୧୮୯ |
| କନ୍ଦର୍ପ ରତି ଓ ହର ପାର୍ବତୀଙ୍କର କ୍ରୀଡ଼ା ବିଷୟ କଥନ | ୧୯୨ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ଇନ୍ଦ୍ରଙ୍କ ଦର୍ପଭଙ୍ଗ କଥନ | ୧୯୫ |
| ଶ୍ରୀକୃଷ୍ଣଙ୍କର ସୂର୍ଯ୍ୟ ଦର୍ପଭଙ୍ଗ କଥନ | ୨୦୧ |
| ଅଗ୍ନିଦେବତାଙ୍କର ଗର୍ବ ଗଞ୍ଜନ ଚରିତ ବର୍ଣ୍ଣନ | ୨୦୩ |
| ମୁନି ଦୁର୍ବାସାଙ୍କର ଗର୍ବ ଖର୍ବ ବର୍ଣ୍ଣନ | ୨୦୪ |
| ଧନ୍ୱନ୍ତରୀଙ୍କର ଗର୍ବ ଗଞ୍ଜନ ଚରିତ ବର୍ଣ୍ଣନ | ୨୦୫ |
| ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ ଓ ରାଧାରାଣୀଙ୍କର ଶୋକପରେ ଦୁହିଙ୍କର ମିଳନ | ୨୦୮ |
| ରାଧା ଓ କୃଷ୍ଣଙ୍କର ବନବିହାର ଚରିତ ବର୍ଣ୍ଣନ | ୨୧୦ |
| କୃଷ୍ଣଚନ୍ଦ୍ରଙ୍କର କାର୍ଯ୍ୟକର୍ମ ବିବରଣ | ୨୧୨ |

ଶ୍ରୀକୃଷ୍ଣଙ୍କ ଆଦେଶରେ ଉଦ୍ଧବ ଏକାନ୍ତେ
ଉପସ୍ଥିତ ହୋଇ ରାଧାଦେବୀଙ୍କ ଅଗ୍ରତେ ।
ଯେଉଁ ତତ୍ତ୍ୱଜ୍ଞାନ ତାଙ୍କୁ କହିଲେ ବୁଝାଇ
ବର୍ଣ୍ଣିତ ହୋଇଛି ଯଥା ନିମ୍ନରେଟି ତହିଁ ।
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କ ବ୍ରତୋପନୟନ
ଗୁରୁଗୃହେ ରହି ନାନା ବିଦ୍ୟା ଉପାର୍ଜ୍ଜନ ।
ଗୁରୁଙ୍କ ପାଖରେ ମୃତ ପୁତ୍ର ସମର୍ପଣ ।
ସେ ଅନ୍ତରେ ଜରାସନ୍ଧ ଯବନ ନିଧନ ।
ବିଶ୍ୱକର୍ମାଙ୍କ ହସ୍ତରେ ଦ୍ୱାରକା ନଗର
ନିର୍ମିତ କରାଇ ତହିଁ ବାସ କରିବାର ।
ଉଗ୍ରସେନଙ୍କ ବିଳାପ ରୁକ୍ମିଣୀ ହରଣ
ସ୍ୱର୍ଗରୁ ପାରିଜାତକ ପୁଷ୍ପ ଆନୟନ ।
କୁରୁ ପାଣ୍ଡବ ସମର ଭୂଭାର ବିନାଶ
ଉଷାହରଣ ସହିତେ ବାଣ ଦର୍ପ ଧ୍ୱଂସ ।
ବଳି ରାଜାଙ୍କର ସ୍ତୁତି ବିଷୟ ବର୍ଣ୍ଣନ
ଅନିରୁଦ୍ଧଙ୍କର ଘୋର ବିଷମ ଦର୍ଶନ ।
ରାଧା ଯଶୋଦା ସମ୍ବାଦ ଶୃଗାଳ ମୁକତି
ତୀର୍ଥଯାତ୍ରା ପ୍ରସଙ୍ଗରେ ସିଦ୍ଧାଶ୍ରମ ଗତି ।
ରାଧା ଦେବୀଙ୍କ ଗଣେଶ ପୂଜା ସମାଚାର
ସେହିଠାରେ ଶ୍ରୀକୃଷ୍ଣଙ୍କ ସଙ୍ଗେ ସାକ୍ଷାତ୍କାର ।
ଦେବୀଙ୍କ ତେଜ ପ୍ରକାଶ ମାହାତ୍ମ୍ୟ ବର୍ଣ୍ଣନ
ଶ୍ରୀକୃଷ୍ଣଙ୍କ ସଙ୍ଗେ କାମ କ୍ରୀଡାର ବିଧାନ ।
ନନ୍ଦ ଯଶୋଦାଙ୍କ ପୂର୍ବ ବିଭୂତି ଦର୍ଶନ;
ଅକାଳେ ଧରାରେ ବସନ୍ତର ସମାଗମ ।
ନାନା ତୀର୍ଥ ବନ ଉପବନ ଉପସ୍ଥିତ
ବ୍ରାହ୍ମଣ ଶାପରେ ଯଦୁବଂଶ ଧ୍ୱଂସ ଗତ ।
ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପାଣ୍ଡବ ମୋକ୍ଷଣ
ବର୍ଣ୍ଣିତ ହୋଇଛି ଆହେ ମହାଭାଗ ଜାଣ ।
ତଦନ୍ତେ ପ୍ରଭୁଙ୍କର ଗୋଲୋକ ଗମନ
ନାରଦ ବିବାହ ଗାଥା ହୋଇଛି ଲିଖନ ।
ବହ୍ନି ଆବର ସୁବର୍ଣ୍ଣ ଉତ୍ପତ୍ତି ତା ଅନ୍ତେ
ବର୍ଣ୍ଣନା କରାହୋଇଛି ଆହେ ତପୋବନ୍ତେ ।
ଏହିଭାବେ ସଂକ୍ଷେପରେ ସକଳ ଘଟନ
କୃଷ୍ଣଖଣ୍ଡ ମଧ୍ୟେ ହୋଇଅଛଇ ବର୍ଣ୍ଣନ ।
ତୁମ୍ଭେ ପୃଚ୍ଛା କରିବାରୁ କହିଲି ବୁଝାଇ
ଆଉ ଇଚ୍ଛାଥିଲେ ତାହା ପୁଚ୍ଛ ତୋଷହୋଇ ।
ତାହା ସମସ୍ତ ବୁଝାଇ କହିବା ତୁମ୍ଭଙ୍କୁ
ସନ୍ଦେହ ମୋଚନ କରି ପୁଚ୍ଛନ୍ତୁ ଆମ୍ଭଙ୍କୁ ।
ଏହା କହି ନାରାୟଣ ହୋଇଲେ ମଉନ
କ୍ଷେତ୍ରମୋହନ ଗୀତରେ କଲା ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମଖଣ୍ଡ ଆଦି ଚତୁଷ୍ଟୟ ଭାଗର
ସାଧାରଣ ଅନୁକ୍ରମଣିକା କଥନେ ନାମ ଦ୍ୱାବିଂଶୋତ୍ତରଶତତମୋଽଧ୍ୟାୟଃ ।



## ତ୍ରୟୋବିଂଶୋତ୍ତରଶତତମ ଅଧ୍ୟାୟ

## ପୁରାଣର ଲକ୍ଷଣ ଓ ଫଳ ବିବରଣ

ଶୁଣ ଆହେ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ଶୁଣଇ
ଅନ୍ତଃକାଳେ ଯାଇ ବଇକୁଣ୍ଠରେ ବସଇ ।
ପୌରାଣିକ ସୂତମୁନି କରିଣ ବ୍ୟାଖ୍ୟାନ
ନୈମିଷ୍ୟ ଅରଣ୍ୟେ ଏହା କରିଲେ ଗାୟନ ।
ନାରଦ ଅଗ୍ରତେ ନାରାୟଣ ମୁନିବର
ବଖାଣି ଅଛନ୍ତି ଏହି ଗ୍ରନ୍ଥ ସମାଚାର ।
ଏହି ପରକାରେ ଅଟେ ଏ ଗ୍ରନ୍ଥ ମହତ
ଶ୍ରବଣ ମାତ୍ରକେ ଜନେ ହୋଇବେ ପବିତ ।
ଏଥୁ ଅନ୍ତରେ ଶୌନକ ମୁନି ତୋଷହୋଇ
କହିଲେ ପୁଣି ସୂତଙ୍କ ମୁଖକୁ ଅନାଇ ।
ଆହେ ମହାଭାଗ ଏହି ଜନମ ମୋହର
ସଫଳ ହୋଇଲା ଅନୁଗ୍ରହରେ ତୁମ୍ଭର ।
ବ୍ରହ୍ମବୈବର୍ତ୍ତ ପୁରାଣ ତୁମ୍ଭଠାରୁ ଶୁଣି
ଅପାର ଆନନ୍ଦ ହେଲା ମନେ ମନେ ଗୁଣି ।
ପୁଣି ଆଉ କିଛି ତହିଁ ପୁଚ୍ଛିବା ନିମନ୍ତେ
ବାରୁଛି ମୋତେ ଅଭୟ ଦିଅ ତପୋବନ୍ତେ ।
ଶୌନକ ବଚନ ଶୁଣି ବୋଇଲେକ ସୂତ
ଯାହା ପୁଚ୍ଛିବାକୁ ଇଚ୍ଛା ପଚାର ତୁରିତ ।

ବୁଝାଇ କହିବା ଆମ୍ଭେ ସବୁ ସମାଚାର
ଏଥିପାଇଁ କମ୍ପ ମନେ ଏତେ ଭୟଙ୍କର ।
ଶଉନକ ତାହା ଶୁଣି ସନ୍ତୁଷ୍ଟ ହୋଇଲେ
ସୂତଙ୍କୁ ପ୍ରଶଂସା କରି ପୁଣି ପଚାରିଲେ ।
ବୋଇଲେ ପୁରାଣ ସଂଖ୍ୟା ଆବର ଲକ୍ଷଣ
ଫଳ ସହିତେ ସମସ୍ତ କହ ତପୋଧନ ।
ସୂତ ବୋଇଲେ ପୁରାଣ ଇତିହାସ ଗାଥା
କହିବା ମନ ଦେଇଣ ଶୁଣ ସବୁକଥା ।
ସ୍ୱର୍ଗ ପ୍ରତିସ୍ୱର୍ଗ ପୁଣି ବଂଶ ମନ୍ୱନ୍ତର
ବଂଶାନୁଚରିତ ମିଶି ପାଞ୍ଚ ପରକାର ।
ଏହି ପ୍ରକାର ପୁରାଣ ଲକ୍ଷଣକି ଜାଣ
ଉପ ପୁରାଣ ଲକ୍ଷଣ ମନଦେଇ ଶୁଣ ।
ଆବର ମହାପୁରାଣ ଲକ୍ଷଣ କହୁଛୁ
ସୃଷ୍ଟି ପାଳନ ବିଷୟ ବର୍ଣ୍ଣନା କରୁଛୁ ।
କର୍ମର ବାସନା ଆଉ ମନୁଙ୍କ ବର୍ଣ୍ଣନ
ପ୍ରଳୟ ବର୍ଣ୍ଣନ ପୁଣି ମୋକ୍ଷ ନିରୂପଣ ।
ଶ୍ରୀହରିଙ୍କ ରୂପଗୁଣ ଚରିତ କଥନ
ପୃଥକ ଭାବରେ ଦେବ ଦେବୀଙ୍କ ବର୍ଣ୍ଣନ ।
ଏହି ଦଶ ଲକ୍ଷଣକି ମହା ପୁରାଣର
ସ୍ଥିର କରା ହୋଇଅଛି ଆହେ ଋଷିଗଣ ।
ଆବର ସଂଖ୍ୟା ବିଷୟ ଶୁଣ ମନଦେଇ
ବ୍ରହ୍ମ ପୁରାଣ ଯେ ଦଶ ହଜାର ଅଟଇ ।
ପଦ୍ମ ପୁରାଣର ସଂଖ୍ୟା ପଞ୍ଚାବନ ସହସ୍ର
ବୈଷ୍ଣବ ପୁରାଣ ପୁଣି ଅଟେ ତ୍ରୟୁବଂଶ ।
ଚତୁର୍ବିଂଶତି ସହସ୍ର ଶୈବ ପୁରାଣରେ
ସଂଖ୍ୟା ନିରୂପିତ ହୋଇଅଛି ଯଥାର୍ଥରେ ।
ଅଷ୍ଟାଦଶ ସହସ୍ର ଗ୍ରନ୍ଥ ଅଟେ ଭାଗବତ
ନାରଦୀୟ ଗ୍ରନ୍ଥ ପଞ୍ଚବିଂଶତି ଯେ ମାତ୍ର ।
ନବ ସହସ୍ର ଅଟଇ ମାର୍କଣ୍ଡ ପୁରାଣ
ଅଗ୍ନି ପୁରାଣର ସଂଖ୍ୟା ମନଦେଇ ଶୁଣ ।
ପଞ୍ଚଦଶ ସହସ୍ର ଯେ ଚତୁଃ ଶତାଧିକ
ସେହି ପୁରାଣ ଅଟଇ ଆହେ ଶଉନକ ।
ଏହାର ସମାନ ଜାଣ ଭବିଷ୍ୟ ପୁରାଣ
ନିର୍ଣ୍ଣୟ କରା ହୋଇଛି ମାନସରେ ଢେନ ।
ବ୍ରହ୍ମବୈବର୍ତ୍ତ ଅଟଇ ଅଷ୍ଟାଦଶ ସହସ୍ର
ସବୁ ପୁରାଣରେ ଏହା ସାର ଉପଲକ୍ଷଣ ।

ଏକାଦଶ ସହସ୍ରଲିଙ୍ଗ ପୁରାଣ ଅଟେ…
ବରାହ ପୁରାଣ ଚତୁର୍ବିଂଶ ସହସ୍ର ହେ…
ଶତାଧିକ ଏକଶତ ସହସ୍ର ଅଧ୍ୟା…
ସ୍କନ୍ଦ ପୁରାଣରେ ଉକ୍ତ ଆହେ ମ…
କୂର୍ମରେ ସତର ବାମନରେ ଦଶ…
ଚତୁର୍ଦ୍ଦଶ ସଂଖ୍ୟା ମତ୍ସ୍ୟ ପୁରାଣେ…
ଗରୁଡ଼ ପୁରାଣ ଊନବିଂଶତି ହଜା…
ବ୍ରହ୍ମାଣ୍ଡ ପୁରାଣ ଅଟେ ବାରଶହ…
ଚତୁର୍ଦ୍ଦଶ ପୁରାଣର ଗଣନା ଏ…
ପୁଣି ଅଷ୍ଟାଦଶ ନାମ ଅଛୁ ତ…
ଅଷ୍ଟାଦଶ ସଂଖ୍ୟା ମଧ୍ୟ ଉପ ପୁ…
ଗଣନା ହୋଇଣ ଲେଖା ହୋ…
ଇତିହାସ କଥା ଏବେ କହୁଛୁ…
ମହାଭାରତ ବାଲ୍ମୀକ କୃତ ସ…
ମହା ଭାରତର ଗାଥା ଶୁଣ ମ…
ଶାରଳା ମଣ୍ଡଳଦେଶେ ଶୂ ଦ୍ର…
ତାହାଙ୍କର ଅନ୍ୟ ନାମ ଥିଲା…
ପଠନ କରି ନ ଥିଲେ ହିନ୍ଦ…
ଶାରଳା ଦେବୀଙ୍କ ପାଦପଦ୍ମେ…
ଅପାର ଜ୍ଞାନ ଅର୍ଜନ କରିଥି…
ଅ କ ପଢିଣ ହଳେ ଖଡ଼ ନ…
ଅମୂଲ୍ୟ ଗ୍ରନ୍ଥ ଯେ ଲେଖି ଥ…
ନିଜେ ମା ଶାରଳା ତାଙ୍କୁ…
କାଳ ଦାସ ପରି ଜ୍ଞାନ ଦେ…
ତାହାଙ୍କ ଦୟାରୁ ବହୁ ବର୍…
ରଚନା କରି ଜଗତ କର୍ମେ…
ମହାଭାରତ ପରମ ଅଷ୍ଟାଦ…
ଯେହି ମହାଶୟ ଲେଖି ସ…
ତାହାଙ୍କ ପାଣ୍ଡିତ୍ୟ ପଣ…
ଦେଖିଣ ଅତି ଆଶ୍ଚର୍ଯ୍ୟ ହ…
ଶାରଳା ଦାସ ବୋଲିଣ…
ଶୂଦ୍ରମୁନି ବୋଲି ପୁଣି ଜା…
ସେହି ଶୂଦ୍ର ମୁନିଙ୍କର ଗ…
ପାଠକଲେ ଜାଣିବେ ସେ…
ଯେତେବେଳେ ଶିକ୍ଷା ଘ…
ତାଳପତ୍ର ଲିଖନରେ ଗ…

ସେହି ସମୟରେ ଜଣେ ଶୂଦ୍ରର ସନ୍ତାନ
ଏତେ ବଡ଼ ମହାଗ୍ରନ୍ଥ କଲେ ରଚନ ।
ଏଥିରୁ ଜାଣିବେ ସର୍ବ ପାଠକ ପାଠିକା
ଆଧ୍ୟାତ୍ମିକ ଶକ୍ତି କେତେ ବଡ଼ ଅଟେ ଏକା ।
ଆଜିକାଲି ଧର୍ମ କର୍ମ ନ ମାନିଣ ଜନ
ଅନ୍ୟାୟ ଅପଥେ କରୁଅଛନ୍ତି ଗମନ ।
କଳୁ ଧର୍ମ ଅଟେ ଜାଣ ଘୋର ଯୁଗେ ସତ୍ୟ
ଧର୍ମରେ ଗମିଲେ କେବେଁ ନ ହୁଡ଼ିବ ପଥ ।
ଏ ବ୍ରହ୍ମ ବୈବର୍ତ୍ତ ଗ୍ରନ୍ଥ କଲେ ପଠନ
ପାଠକମାନେ ଲଭିବେ ଜାଣ ବହୁଜ୍ଞାନ ।
ବ୍ରହ୍ମଙ୍କର ନିରୂପଣ ହୋଇବାରୁ ଏଥିଁ
ବ୍ରହ୍ମବୈବର୍ତ୍ତ ରଚନା ହୋଇଛି ମରତେ ।
ଏଥି ମଧ୍ୟେ ବହୁ ତଥ୍ୟ ପୂର୍ଣ୍ଣ ହୋଇଅଛି
ପୁରାଣ ବା ଉପ ପୁରାଣରୁ ବାଛି ବାଛି ।
ବ୍ରହ୍ମ କିଏ କେଉଁପରି ସ୍ୱରୂପ ତାଙ୍କର
ଏହା ମଧ୍ୟେ ପୂର୍ଣ୍ଣ ହୋଇଅଛି ହେତୁକର ।
ବ୍ରହ୍ମ ବିକୃତ ହେବାରୁ ବ୍ରହ୍ମବଇବର୍ତ୍ତ
ନାମଗୋଟି ହେଲା ତାର ଜଗତ ବିଖ୍ୟାତ ।
ଅପାର ରହସ୍ୟ ମାନ ହୋଇଅଛି ପୂର୍ଣ୍ଣ
ପାଠକ ମାନେ ଲଭିବେ ସେ ଅପାର ଜ୍ଞାନ ।
ନଦୀ ମାନଙ୍କ ମଧ୍ୟରେ ଗଙ୍ଗା ଯେହ୍ନେ ସାର
ତୀର୍ଥଙ୍କର ମଧ୍ୟେ ଯେହ୍ନେ ଅଟଇ ପୁଷ୍କର ।
ସର୍ବ ନଗରୀରେ କାଶୀ କ୍ଷେତ୍ର ଯେଉଁପରି
ପୃଥିବୀ ମଧ୍ୟରେ ଶ୍ରେଷ୍ଠ ଭାରତ ଯେପରି ।
ମେରୁ ଯେଉଁପରି ଗିରିଙ୍କର ମଧ୍ୟେ ସାର
ପୁଷ୍ପ ମାନଙ୍କରେ ପାରିଜାତ ଯେ ପ୍ରକାର ।
ପୁଷ୍ପଙ୍କର ମଧ୍ୟେ ସାର ଯେସନେ ତୁଳସୀ
ବ୍ରତ ମାନଙ୍କରେ ଯେହ୍ନେ ଅଟେ ଏକାଦଶୀ ।
ବୃକ୍ଷଙ୍କର ମଧ୍ୟେ ଶ୍ରେଷ୍ଠ କଳ୍ପବଟ ଯେହ୍ନେ .
ଦେବତାଙ୍କ ମଧ୍ୟେ ସାର ଶ୍ରୀକୃଷ୍ଣ ଯେସନେ
ଯୋଗୀ ମାନଙ୍କର ଶ୍ରେଷ୍ଠ ଯେପରି ଶଙ୍କର
ଗଣେଶ ଯେପରି ଶ୍ରେଷ୍ଠ ଜ୍ଞାନୀଙ୍କ ମଧ୍ୟର ।
ସୂର୍ଯ୍ୟ ଯେଉଁପରି ତେଜମୟ ପଦାର୍ଥରେ
ସାର ଅଟନ୍ତି ଏ ତିନି ଭୁବନ ମଧ୍ୟରେ ।
ସିଦ୍ଧ ଋଷିଙ୍କର ମଧ୍ୟେ କପିଳ ଯେପରି
ବୈଷ୍ଣବ ଗଣରେ ସନତ୍‌କୁମାର ସେପରି ।

ସକଳ ନୃପଙ୍କ ମଧ୍ୟେ ରାମ ଯେସନେ ସାର
ଧନୁର୍ଦ୍ଧର ମଧ୍ୟେ ଯଥା ସୁମିତ୍ରା କୁମର ।
ଦେବୀ ଗଣଙ୍କର ମଧ୍ୟେ ଦୁର୍ଗା ଯେଉଁପରି
ସାର ଅଟନ୍ତି ସେ ମହାଦେବୀ ନାମ ଧରି ।
ଶ୍ରୀକୃଷ୍ଣଙ୍କ ପ୍ରିୟା ମଧ୍ୟେ ରାଧା ଯେହ୍ନେ ସାର
ଈଶ୍ୱରୀ ଗଣରେ ଲକ୍ଷ୍ମୀ ଯେମନ୍ତ ପ୍ରକାର ।
ଆଉର ପଣ୍ଡିତ ପୁଣି ବିଦ୍ୱାନ ମଧ୍ୟରେ
ସରସ୍ୱତୀ ଯେଉଁପରି ସାର ତିନି ପୁରେ ।
ତେମନ୍ତ ଭାବରେ ସର୍ବ ପୁରାଣରେ ସାର
ଅଟେ ଏ ବ୍ରହ୍ମବୈବର୍ତ୍ତ ମନରେ ବିଚାର ।
ଅପାର ପୁଣ୍ୟ ଏ ମଧ୍ୟେ ହୋଇଛି ପୂରିତ
ଇହଲୋକରେ ସମ୍ପଦ ଲଭିବ ବହୁତ ।
ଆଉର ଅଶେଷ ବିଘ୍ନ ବିନାଶ କରଇ
ଶ୍ରୀହରି କରୁଣା ସଦା କାଳେ ଲାଭହୋଇ ।
ଜପ ତପ ତୀର୍ଥ ବ୍ରତ ଜ୍ଞାନ ଆଦି ଯେତେ
ଏ ଗ୍ରନ୍ଥ ସଙ୍ଗରେ ସମ ନୁହଁନ୍ତି ସମସ୍ତେ ।
ଅପୁତ୍ରିକ ଜନ ଯେବେ ମନ କର୍ଣ୍ଣ ଦେଇ
ଅଭ୍ୟାସ କରିଣ ଏହି ଗ୍ରନ୍ଥକୁ ପଢ଼ଇ ।
ପୁତ୍ର ପୌତ୍ରୀ ଆଦି ଲାଭ ହୁଅଇ ତାହାର
ଅନ୍ତଃକାଳେ ବିଷ୍ଣୁଲୋକେ ବସଇ ସୁଖରୀ
ଧନହୀନ ବ୍ୟକ୍ତି ଯେବେ ଏହାକୁ ପଢ଼ଇ
କୁବେର ସଙ୍ଗରେ ସେହୁ ଗଣନା ହୁଅଇ ।
ମୂର୍ଖ ଲୋକ କର୍ଣ୍ଣେ ଯେବେ ଶୁଣଇ ଏ ଗ୍ରନ୍ଥ
ପଣ୍ଡିତ ମାନଙ୍କ ସଙ୍ଗେ ହୁଅଇ ଗଣିତ ।
ବ୍ୟାଧିବନ୍ତ ଜନ ଯେବେ ପଢ଼ଇ ଶ୍ରଦ୍ଧାରେ
ସକଳ ବ୍ୟାଧିରୁ ମୁକ୍ତ ହୁଏ ସେ ଅଚିରେ ।
ଅନ୍ଧ ବଧିର ବା କୁଷ୍ଠ ହୋଇଥିବ ଯେହୁ
ଏ ଗ୍ରନ୍ଥ ପଢ଼ିଲେ ମୁକ୍ତ ହୋଇବ ସେ ସେହୁ
ଶ୍ରୀକ୍ଷେତ୍ର ଦର୍ଶନେ ଯେଉଁ ଫଳ ଲଭେ ଜନ
ଏ ଗ୍ରନ୍ଥ ପଠନେ ତହୁଁ ହୁଏ ବେଶି ପୁଣ୍ୟ ।
ପବିତ୍ର ଭାବରେ ଯେହୁ ସଙ୍କଳପ କରି
ଏହି ଗ୍ରନ୍ଥ ପଢ଼େ ଅବା ଶୁଣେ କର୍ଣ୍ଣଡେରି ।
ତାହାର ପୁଣ୍ୟ କେତେ ବା କହିବି ମୁଖରେ
ଗଣନା ହୁଅଇ ସେହୁ ସାଧୁ ସମାଜରେ ।
ସକଳ କଳୁଷ ନାଶି ବୈକୁଣ୍ଠେ ବସଇ
କିବା ଗୋଲୋକରେ କୃଷ୍ଣ ସେବକ ହୁଅଇ ।

ଯେ ପ୍ରଭୁଙ୍କ ପାଦପଦ୍ମେ ହୋଇଯାଏ ଲୀନ
ଯୋନିରେ ଜନ୍ମ ନହୁଏ ସେହୁ କଦାଚିନ ।
ଏମନ୍ତ ମହିମା ଏହି ଗ୍ରନ୍ଥର ଅଟଇ
ପାଠକଲେ ଜନେ ଲଭ ପାଇବେ ଯେ ତହିଁ ।
ଆଦ୍ୟେ ବ୍ରହ୍ମଖଣ୍ଡ ଆଉ ଦ୍ୱିତୀୟରେ ଜାଣ
ପ୍ରକୃତି ଖଣ୍ଡ ରଚନା ହୋଇଅଛି ପୁଣ ।
ତୃତୀୟେ ଗଣେଶଖଣ୍ଡ ପୁଣି ଚତୁର୍ଥରେ
ଶ୍ରୀକୃଷ୍ଣଙ୍କ ଜନ୍ମଖଣ୍ଡ ହୋଇଛି ବିଧିରେ ।
ଏହି ଚାରିଖଣ୍ଡେ କିଏ କିଏ କେଉଁ ଫଳ
ମନକର୍ଣ୍ଣ ଦେଇ ତାହା ଶୁଣନ୍ତୁ ସକଳ ।
ଯେବେ ବ୍ରହ୍ମଖଣ୍ଡ ଆଦ୍ୟେ ପଠନ କରିବ
ଅପାର ପୁଣ୍ୟ ଅରଜି ବ୍ରହ୍ମଦର୍ଶୀ ହେବ ।
ତା'ପରେ ପ୍ରକୃତିଖଣ୍ଡ କରିଲେ ପଠନ
ପ୍ରକୃତି ଦେବୀଙ୍କ ଦୟା ଲଭିବ ବହନ ।
ବ୍ରହ୍ମ ଓ ପ୍ରକୃତି ଦୁହେଁ ଅଭେଦ୍ୟ ଅଟନ୍ତି
ପାଠ କଲେ ଜନେ ନିଶ୍ଚେ ଲଭିବେ ମୁକତି ।
ତୃତୀୟେ ଗଣେଶ ଖଣ୍ଡ ପଢ଼ିଲେ ଶୁଣିଲେ
ଜ୍ଞାନୀ ବୋଲାଇବ ଗଣେଶଙ୍କ ଦୟାବଳେ ।
ଚତୁର୍ଥରେ ଶ୍ରୀକୃଷ୍ଣଙ୍କ ଜନ୍ମ ସମାଚାର
ଶ୍ରବଣ କରିଲେ ପାପ ତାପ ହେବ ଦୂର ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଦୟା ସଦା ସେ ପାଇବ
ଅନ୍ତେ ଅଭୟ ପଦରେ ଲୀନ ହୋଇଯିବ ।
ସପତ ଜନ୍ମର ପାପ ହୋଇବ ମୁକତ
ଧନ ଧାନ୍ୟ ଆଦି ସେ ବଢ଼ିବ ଅପ୍ରମିତ ।
ଆହେ ଋଷିଗଣମାନେ ଶୁଣ ମୋର ଗିର
ଏହିଠାରେ ଶେଷ ହେଲା ଗ୍ରନ୍ଥ ସମାଚାର ।
ଗୁରୁଙ୍କ ମୁଖରୁ ପୂର୍ବେ ଯାହା ଶୁଣିଥିଲି
ତୁମ୍ଭେ ପୁଚ୍ଛିବାରୁ ତାହା ବୟାନ କରିଲି ।
ଆଦ୍ୟଠାରୁ ପ୍ରାନ୍ତଯାଏ ଯଥାର୍ଥ ଭାବରେ
ବର୍ଣ୍ଣନା କରିଲି ଏବେ ତୁମ୍ଭ ଅଗ୍ରତରେ ।
ଆଉ ଯେବେ କିଛି ଶୁଣିବାକୁ ଥାଏ ମନ
[illegible] ସମ୍ପୂର୍ଣ୍ଣେ ଆସି କରିବି ଗାୟନ ।

ତେଣୁ ମୁଁ ଜଣାଉଅଛି ସଭିଙ୍କ ପାଶରେ
ବିଦାୟ ଦିଅନ୍ତୁ ମୋତେ ଆନନ୍ଦ ମନରେ ।
ଏତିକ ମାତର ମୁହିଁ କରେ ନିବେଦନ
କାୟ ମନୋବାକ୍ୟ ଦିଅ ହରି ପାଦେ ମନ ।
ତାହାଙ୍କ ବ୍ୟତୀତ ଆନ କେହି ରଖିବାକୁ
ସମର୍ଥ ନ ହେବେ କେଭେଁ ବିଚାର ମନକୁ ।
ସେହି ପରମ ପୁରୁଷ ସକଳ ଘଟରେ
ବିରାଜ କରିଅଛନ୍ତି ଆତ୍ମା ସ୍ୱରୂପରେ ।
ତାହାଙ୍କ ଚରଣ ତଳେ ସଦା କରି ଧ୍ୟାନ
ଏହି ଭବ ବନ୍ଧନରୁ ହୁଅ ହେ ମୋଚନ ।
ଏତେ କହି ମୁନିବର ମଉନ ହୋଇଲେ
ସକଳ ଋଷିଏ ତାଙ୍କୁ ବିଦାୟ କରିଲେ ।
ଏହିଠାରୁ ଶେଷ ହେଲା ବ୍ରହ୍ମବଇବର୍ତ୍ତ
ଶ୍ରବଣ ପଠନ କରି ହୁଅ ସର୍ବେ ମୁକ୍ତ ।
ଅଧମ କ୍ଷେତ୍ରମୋହନ ଯୋଡ଼ି ବେନିକର
ଜଣାଉଛି ସୁଜ୍ଞ ସାଧୁମାନଙ୍କ ପୟର ।
ଯେବେ ଏ ଗ୍ରନ୍ଥରେ କିଛି ତ୍ରୁଟି ରହିଥିବ
ଅପାର କରୁଣା ଗୁଣେ ଦାସକୁ କ୍ଷମିବ ।
ମୁନିନାଞ୍ଚ ମତିଭ୍ରମ ରହିଛି ଶାସ୍ତ୍ରରେ
ମୁନିମାନଙ୍କର ମଧ୍ୟ ଦୋଷ ରହିପାରେ ।
ମୁହିଁ ତ ସାମାନ୍ୟ ନର ନ ଜାଣଇ କିଛି
ଜଗତ ଜନନୀ ପାଦ ସୁମରି ଲେଖୁଛି ।
ନ ଜାଣଇ ଧର୍ମ କର୍ମ ନାହିଁ ବୁଦ୍ଧି ଜ୍ଞାନ
ସାଧୁ ସଙ୍ଗେ ବସିବାକୁ ହୋଇନି ଭାଜନ ।
ତେଣୁ ପୁନର୍ବାର ନିବେଦନ କରେ ମୁହିଁ
ନ ଧରିବେ ଦୋଷ ଦାସପରେ ରୋଷ ନୋହି
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାଇ
ଲେଖିଲି ଏ ଗ୍ରନ୍ଥ ଭଲ ମନ୍ଦ ନ ଜାଣଇ ।
ସୁଜନ ଜନେ କରିବ ଏହାର ବିଚାର
କ୍ଷେତ୍ରମୋହନ ନମଇଁ ସଭିଙ୍କ ପୟର ।

—o—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମ ଖଣ୍ଡେ ପୁରାଣର ଲକ୍ଷଣ ଓ ଫଳ ବିବରଣୀ
କୀର୍ତ୍ତନେ ନାମ ତ୍ରୟସ୍ତ୍ରିଂଶୋତ୍ତରଶତତମୋଽଧ୍ୟାୟଃ ।

ଗ୍ରନ୍ଥ ସମାପ୍ତ



ମୁଦ୍ରାକର—ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ, ଅଲିଶା ବଜାର, କଟକ-୨

| ବିଷୟ | ପୃଷ୍ଠା |
|---|---|
| ଶ୍ରୀକୃଷ୍ଣଙ୍କର ପ୍ରଭାବ ବର୍ଣ୍ଣନ | ୨୧୩ |
| ମହାବିଷ୍ଣୁ ଆଦି ଦେବଗଣମାନଙ୍କର ସଂକ୍ଷିପ୍ତ ଗର୍ବଭଙ୍ଗ ବିବରଣ | ୨୧୫ |
| ମହାଲକ୍ଷ୍ମୀଙ୍କର ବୈରାଗ୍ୟ ମୋଚନ ବର୍ଣ୍ଣନ | ୨୧୮ |
| ପୃଥିବୀ ଆଦି ଦେବୀଗଣମାନଙ୍କର ଗର୍ବଗଞ୍ଜନ ବୃତ୍ତାନ୍ତ ବର୍ଣ୍ଣନ | ୨୨୦ |
| ଇନ୍ଦ୍ରଙ୍କର ଗର୍ବଖର୍ବ ଓ ଶଚୀଙ୍କ କର୍ତ୍ତୃକ ଗୁରୁସ୍ତୁତି କଥନ | ୨୨୦ |
| ନହୁଷଙ୍କ ପ୍ରତି ଋଷିମାନଙ୍କର ଶାପ ଓ ଇନ୍ଦ୍ରଙ୍କର ମୁକ୍ତି କଥନ | ୨୨୬ |
| ଇନ୍ଦ୍ରଙ୍କଦ୍ୱାରା ଅହଲ୍ୟାର ସତୀତ୍ୱ ଅପହରଣ | ୨୨୯ |
| ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ଅହଲ୍ୟା ଉଦ୍ଧାରଣ ଚରିତ ବର୍ଣ୍ଣନ | [illegible] |
| କଂସାସୁରର ଦୁଃସ୍ୱପ୍ନ ଦର୍ଶନ | ୨୩୪ |
| କଂସ ରାଜାର ଯଜ୍ଞ ବିଷୟ କଥନ | ୨୩୬ |
| ଶ୍ରୀକୃଷ୍ଣ ଦର୍ଶନ ସକାଶେ ଅକ୍ରୂରର ଆନନ୍ଦ | ୨୩୮ |
| ରାଧିକାଙ୍କ ସ୍ୱପ୍ନ ଦର୍ଶନ ଓ ଶ୍ରୀକୃଷ୍ଣଠାରୁ ଆଶ୍ୱାସନା ପାଇବା | ୨୩୯ |
| ରାଧିକାଙ୍କ ଅଗ୍ରରେ ଶ୍ରୀକୃଷ୍ଣଙ୍କର ଆଧ୍ୟାତ୍ମିକ ଯୋଗ ବର୍ଣ୍ଣନ | ୨୪୦ |
| ଶ୍ରୀରାଧାଙ୍କର ଶୋକ ବିମୋଚନ | [illegible] |
| ଶ୍ରୀକୃଷ୍ଣଙ୍କ ବିରହରେ ରାଧାଙ୍କର ଶୋକ ଓ ଶ୍ରୀକୃଷ୍ଣଙ୍କର ପୁନର୍ଦର୍ଶନ ଦାନ | ୨୪୪ |
| ଅକ୍ରୂରର ଗୋପପୁର ପ୍ରବେଶ ଓ ଶ୍ରୀକୃଷ୍ଣଙ୍କର ମଥୁରା ଗମନ କାଳରେ ଗୋପୀମାନଙ୍କର ଚାଞ୍ଚଲ୍ୟ | ୨୪୬ |
| ଅକ୍ରୂର ସଙ୍ଗେ ଶ୍ରୀକୃଷ୍ଣଙ୍କର ପ୍ରସ୍ଥାନ ସମୟେ ମଙ୍ଗଳ ବିଧାନ | ୨୪୯ |
| କଂସାସୁର ନିଧନ ଓ ବସୁଦେବ ଦେବକୀଙ୍କର ମୋକ୍ଷଣ | ୨୫୦ |
| ନନ୍ଦ ଯଶୋଦା ଆଦିଙ୍କର ଶୋକ ବର୍ଣ୍ଣନ | ୨୫୫ |
| ନନ୍ଦଙ୍କପ୍ରତି ଶ୍ରୀକୃଷ୍ଣଙ୍କର ସାଂସାରିକ ତତ୍ତ୍ୱ ନିବେଦନ | ୨୫୮ |
| ନନ୍ଦରାଜାଙ୍କ ଅଗ୍ରତରେ ଶ୍ରୀକୃଷ୍ଣଙ୍କର ସଂସାର ନିତ୍ୟ କର୍ତ୍ତବ୍ୟ ବର୍ଣ୍ଣନ | ୨୫୯ |
| ଶ୍ରୀକୃଷ୍ଣଙ୍କର ନନ୍ଦଙ୍କ ଆଗରେ ପାପପୁଣ୍ୟର ଚରିତ୍ର ବର୍ଣ୍ଣନ | ୨୬୩ |
| ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ସ୍ୱପ୍ନ ବିଷୟ ବର୍ଣ୍ଣନ | ୨୬୫ |
| ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଧର୍ମ ତତ୍ତ୍ୱ ବର୍ଣ୍ଣନ | ୨୬୯ |
| ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ତତ୍ତ୍ୱ ବର୍ଣ୍ଣନା | ୨୭୧ |
| ଚନ୍ଦ୍ରଙ୍କ ଦ୍ୱାରା ଗୁରୁପତ୍ନୀ ହରଣ ବୃତ୍ତାନ୍ତ | ୨୭୪ |
| ଶିବଙ୍କର ଚନ୍ଦ୍ରଙ୍କ ପ୍ରତି କୋପ ଓ ବ୍ରହ୍ମମୁନି କର୍ତ୍ତୃକ କ୍ଷମା ପ୍ରାର୍ଥନା | ୨୭୬ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ଦୁଃସ୍ୱପ୍ନର ଫଳାଫଳ ବିବରଣ | ୨୭୯ |
| ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ନାନାବିଧ ଧର୍ମ ତତ୍ତ୍ୱ କଥନ | ୨୮୨ |
| ନନ୍ଦଙ୍କ ଅଗ୍ରରେ ଶ୍ରୀକୃଷ୍ଣଙ୍କର ଗୃହସ୍ଥ ଧର୍ମ ବର୍ଣ୍ଣନ | ୨୮୬ |
| ଗୁଣକର୍ତ୍ତାଙ୍କର ଭକ୍ଷ୍ୟାଭକ୍ଷ ଓ କର୍ମବିପାକ କଥନ | ୧୯୧ |
| ଶ୍ରୀକୃଷ୍ଣଙ୍କ କର୍ତ୍ତୃକ କେଦାରକନ୍ୟା ବୃତ୍ତାନ୍ତ ବର୍ଣ୍ଣନ | ୨୯୬ |
| ଶ୍ରୀକୃଷ୍ଣଙ୍କ ନିକଟକୁ ସନତ୍କୁମାର ଆଦି ମୁନିମାନଙ୍କର ଆଗମନ | ୩୦୧ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ଭଗବତୀ ସ୍ତୋତ୍ର ସ୍ୱରୂପ ବର୍ଣ୍ଣନ | ୩୦୫ |



ଶ୍ରୀକୃଷ୍ଣଜନ୍ମଖଣ୍ଡର ସୂଚିପତ୍ର ସମାପ୍ତ

# ବ୍ରହ୍ମବୈବର୍ତ୍ତ ପୁରାଣ

## ଶ୍ରୀକୃଷ୍ଣ ଜନ୍ମଖଣ୍ଡ

ଜଗଦାନନ୍ଦ କନ୍ଦାୟ ପ୍ରଣତାର୍ତ୍ତିହରାୟଚ
ନୀଳାଚଳ ନିବାସାୟ ଜଗନ୍ନାଥାୟତେ ନମଃ
ଅଚଲ୍ୟାବ୍ୟକ୍ତରୂପାୟ ନିର୍ଗୁଣାୟ ଗୁଣାତ୍ମନେ
ସମସ୍ତ ଜଗଦାଧାର ମୂର୍ତ୍ତୟେ ବ୍ରହ୍ମଣେ ନମଃ

**○**○*○**○**○*○*○*○*○*○*○*○*○*○**○**○**○**

### ପ୍ରଥମ ଅଧ୍ୟାୟ

#### ବନ୍ଦନା

ଜୟ ଜୟ ଜଗନ୍ନାଥ ଅନ୍ତେର ଗତି
ଜୟ ଜୟ ଜଗନ୍ନାଥ ପୂର୍ଣ୍ଣ ବ୍ରହ୍ମମୂର୍ତ୍ତି ।
ତବ ପାଦତଳେ ପ୍ରଭୁ କରୁଛୁ ବନ୍ଦନ
ନ ଆସିବା ପଦମାନ କରନ୍ତୁ ସ୍ମରଣ ।
ଯେଉଁପରି ପାପୀ ତାପୀ ମାନଙ୍କୁ ଉଦ୍ଧାର
ନାମ ଧାରଣ କରିଛ ଦୀନ ଦୁଃଖ ହାରୀ ।
ହେ ପୁଣ୍ଡରୀକ ନୟନକାରୀ ଦୟାମୟ
ବାରେ ମାତ୍ର ଏ ଦୀନରେ ପ୍ରକାଶି ଅଭୟ ।
ସବୁବେଳେ ଥାଇ ପର ପାଶେ ପାଶେ ରହି
ଶ୍ରୁତି ତଟେ ପଦମାନ ଦେଉଥିବ କହି ।
ଏତିକ ମାତର ଅଟେ ବିନତ ଦାସର
କ୍ଷେତ୍ର ମୋହନଙ୍କୁ ସାହା ହୁଅ ଚକ୍ରଧର

—o—

#### ଦୁର୍ଗାଙ୍କ ବନ୍ଦନା

ଜୟ ଜଗତ ତାରଣୀ ଅଭୟ ଦାୟିନୀ
ତ୍ରିଶୂଳ ଡମ୍ବରୁ ପାଶ ଅଙ୍କୁଶ ଧାରିଣୀ ।
ଦୈତ୍ୟ ବିନାଶିନୀ ଭଗବତୀ ମହାମାଈ
ତୋହ ପଙ୍କଜ ପୟରେ ବନ୍ଦନା କରଇ
ଯେଉଁପରି ବଡ଼ ବଡ଼ ଦାନବଙ୍କୁ ମାରି
ଶରଣ ଜନଙ୍କୁ ମାତ ଅଛୁ ରକ୍ଷାକରି ।
ତେମନ୍ତ ଚରଣେ ମାତ କରି ଏ ପ୍ରକାରେ
ଦୟା ରଖିଥାଅ ଏହି ଦୀନ ଜନ ପରେ ।
ନ ଜାଣେ ମୁଁ ଜପ ତପ ନାହିଁ ମୋର ଜ୍ଞାନ
ବସିନାହିଁ କେବେ ସାଧୁ ସନ୍ଥଙ୍କ ସଙ୍ଗେଣ ।
କେବଳ ଦିବସ ନିଶି ଧାଇ ନାନ ଚୋରି
ସନ୍ତରଣ କରୁଅଛୁ ଏ ଭବ ସାଗର ।
ମର୍ତ୍ତ୍ୟ ଦଣ୍ଡଆରେ ମାତ ପ୍ରବେଶିଛୁ ମୁହିଁ
କେତେ ଦୂରେ ଅଛୁ କୂଳ ଅନ ପାଉ ନାହିଁ
ଯେଣିକ ଗୃହିଁଲେ ଖାଲି ଅନ୍ଧାର ଦିଶୁଛି
ଲହରୀ ମାନ ପ୍ରବଳ ବେଗରେ ଆସୁଛି ।
ଅବଶ ହୋଇ ପାଣି ନାକରେ ପଶୁଛି ।
ନିଶ୍ୱାସ ମାରିବା ପାଇଁ ଗଣ୍ଡା ନ ପାଉଛି ।
ତେଣୁ ଅଭୟ ଚରଣେ ମାଗେ ଯୋଡ଼କର
ବନ୍ଧନ କୂଳେ ଲଗାଅ ଭୃତ୍ୟଙ୍କୁ ତୋହର ।
ଏତିକ ମାତର ମାତ ନିବେଦନ ମୋର
କ୍ଷେତ୍ରଙ୍କୁ ସାହା ହୁଅ ବନ୍ଦୁଛି ପୟର ।

Sj. Brajendra Mohan Pattanaik
Kotilinna Road

# ବିଷ୍ଣୁ ଓ ବୈଷ୍ଣବମାନଙ୍କର ଗୁଣ ଗାନକରିବା

ଶୁଣ ଆହେ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ପାପ ତାପ ମାନ ସବୁ ବିନାଶ ହୋଇବ
ଅନ୍ତକାଳେ ଯାଇ ବିଷ୍ଣୁ ଲୋକରେ ବସିବ
ପ୍ରମଥ ଦ୍ୱିତୀୟ ଆଉ ତୃତୀୟରେ ଯାହା
ବିଷୟମାନ ରହିଛି ଶୁଣିଲତ ତାହା ।
ଏଣିକି ଚତୁର୍ଥ ଖଣ୍ଡ କରିବା ବର୍ଣ୍ଣନ
ଶ୍ରବଣ କରିବେ ଏକମନେ ସାଧୁଜନ ।
ନାରଦ ଆଗରେ ନାରାୟଣ ମୁନିବର
ବଖାଣ କରିଲେ ବହୁ ଜ୍ଞାନତତ୍ତ୍ୱ ସାର ।
ଶ୍ରବଣ କରି ନାରଦ ହରଷିତ ହୋଇ
ବୋଇଲେ ନାରାୟଣଙ୍କ ମୁଖକୁ ଅନାଇଁ ।
ଆହେ ତପିବର ମୋରେ ଦୟା କର ବାରେ
ଆଉ ଯାହା ବାକିଅଛି କୁହନ୍ତୁ ଶ୍ରଦ୍ଧାରେ ।
ପିତାଙ୍କ ମୁଖରୁ ବ୍ରହ୍ମଖଣ୍ଡ ଶୁଣିଥିଲି
ତାହାଙ୍କ ଆଦେଶେ ତବ ପାଶକୁ ଆସିଲି ।
ପ୍ରକୃତି ଖଣ୍ଡ ଚରିତ କରାଇ ଶ୍ରବଣ
ପବିତ୍ର କରିଲେ ମୋର ମନ ଆଉ ପ୍ରାଣ ।
ତା ପରେ ଗଣେଶଖଣ୍ଡ କରିଲ ଗାୟନ
ଶ୍ରବଣ ମାତ୍ରେ ଲାଗିଲା ଅମୃତ ସମାନ ।
ଆଦ୍ୟଠାରୁ ପ୍ରାନ୍ତପାଏ ଶୁଣି ସେହି ଗ୍ରନ୍ଥ
ଆଦରଣ କରିଅଛି ମୁହିଁ ବହୁ ତଥ୍ୟ ।
ଆଉ ଯାହା ଯାହା ବାକି ରହିଛି ଗୋସାଇଁ
ଚିତ୍ତ ତୋଷକର ତାହା ଶ୍ରଦ୍ଧାରେ ଶୁଣାଇଁ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଜନ୍ମକାଳର ଚରିତ
ଶ୍ରବଣ କରିବା ପାଇଁ ବଳିଅଛି ଚିତ୍ତ ।
ଯେଉଁ ଚରିତ ଶ୍ରବଣେ ଜନ୍ମ ମୃତ୍ୟୁ ଜରା
ପ୍ରାଣୀ ସନ୍ନିଧିରୁ ଘୁଞ୍ଚିଯାନ୍ତି ହୋଇ ତ୍ୱରା ।
ଭକ୍ତ ମାନଙ୍କର ଯେହୁ ପ୍ରଦୀପ ସମାନ
ହରି ଭକ୍ତି ଜାତ ହୁଏ ତୁଟଇ ବନ୍ଧନ ।
ବୈଷ୍ଣବମାନେ ଯାହାଙ୍କ ପଦ୍ମକୁ ଧ୍ୟାଇ
ଏ ଭବ ସଂସାରୁ ପାର ହୋଇଯାନ୍ତି ସେହି ।
ଯେଉଁ ଚରଣ ଦର୍ଶନ ବାଞ୍ଛାକରି ଶିବେ
କାଳ କାଳ ବସି ତପ କରନ୍ତି ମରତେ
ସେହି ପାଦର ମହିମା ଶୁଣାଅ ମୋହରେ
ଶରଣ ଜନଙ୍କୁ ତ୍ରାଣ କରନ୍ତୁ ସତ୍ୱରେ ।
ଜଗତ ଜୀବନ ପ୍ରଭୁ ରାଧ ପ୍ରାଣନାଥ
କାହା ପ୍ରାର୍ଥନାରେ ମର୍ତ୍ତ୍ୟେ ହେଲେ ଉପସ୍ଥିତ
ଗୋଲୋକ ତେଜି ମର୍ତ୍ତ୍ୟକୁ କାହିଁକି ଆସିଲେ
କେବଣ ଯୁଗରେ କେଉଁ ଅବତାର ହେଲେ
ବସୁଦେବ କେଉଁପରି ହେଲେ ତାଙ୍କ ତାତ
ଦଇବକୀ ପୁଣି କାହିଁପାଇଁ ହେଲେ ମାତ ।
ପୂର୍ବେ ସେ କେଉଁ କୁଳରେ ଜନ୍ମ ହୋଇଥିଲେ
କେଉଁ କେଉଁ ନାମ ତାହାଙ୍କର ଥିଲା କେବେ
କେଉଁପରି ବନ୍ଦି ଘରେ କୃଷ୍ଣ ହେଲେ ଜାତ
ଗୋପକୁ ଗଲେ ସୂତିକା ଗୃହରୁ କେମନ୍ତ ।
କାହିଁକି ମରତେ ପ୍ରଭୁ ଜନମ ଲଭିଲେ
କେଉଁ କର୍ମମାନ ସେହୁ ବାଲ୍ୟକାଳେ କଲେ
ଗୋପାଳ ବେଶରେ ଗୋପେ ରହିଲେ କିମ୍ପାଇ
କି କାର୍ଯ୍ୟମାନ ସାଧନ କରିଲେ ସେ ତହିଁ ।
ଗୋପ ଯୁବତୀଙ୍କ ସେନ ସେ ବୃନ୍ଦାବନରେ
ବିହାର କଲେ କାହିଁକି କେଉଁ କାରଣରେ ।
ଅନନ୍ତ କିଏ ସେ ଗୋପ ଗୁଆଳୀ ସମସ୍ତେ
କିମ୍ପା ସଦାକାଳେ ରହିଥାନ୍ତି କୃଷ୍ଣ ସାଥେ ।
ନନ୍ଦ ଯଶୋଦାଏ ଦୁହେଁ ଅନନ୍ତ ଯେ କେହି
ପୂର୍ବକାଳେ କେଉଁ ତପ କରିଥିଲେ ସେହି
ରାଧା ଠାକୁରାଣୀ କିମ୍ପା ମନୁଷ୍ୟ ରୂପରେ
ଜନମ ଧାରଣ କଲେ ଆସି ମର୍ତ୍ତ୍ୟପୁରେ ।
କିରୂପେ ହୋଇଲେ ପୁଣି ସେହୁ ମହାମାୟା
ବ୍ରଜକନ୍ୟା କେମନ୍ତେ ହେଲେ ହରି ପ୍ରାଣପ୍ରିୟା
କେଉଁ ପରି ଶ୍ରୀକୃଷ୍ଣଙ୍କୁ ବ୍ରଜ-ବାଳାଗଣ
ଲଭ କଲେ କହ ଦେବ ତହିଁର କାରଣ ।
ଆବର ଗଲେ କିପରି ମଥୁରା ପୁରକୁ
ଭାର ନିବାରଣ କଲେ ନାଶିଣ କାହାକୁ ।
ଆଉ ଯେଉଁ ଯେଉଁ କାର୍ଯ୍ୟ କଲେ ନାରାୟଣ
ତାହା ଶୁଣିବା ପାଇଁକି ବଳୁଅଛି ମନ ।
ସଂସାର ସାଗରୁ ହେବେ ତରିବ କିପରି
ଦୟାକରି ମୋହ ଆଗେ କୁହ ତପସ୍ୱୀ ।

ଶ୍ରୀହରି ଚରିତ ଅଟେ ଅନଳ ସମାନ
ଯେତେ ପାପକଳେ ମଧ୍ୟ ତୃଣ ପରି ଜାଣ ।
ହରି ଚରିତ ଶ୍ରବଣ କରିଲେ କର୍ଣ୍ଣରେ
ଭସ୍ମ ହୋଇଯାଏ ପାପମାନ କ୍ଷଣକରେ ।
ଏହି ପରକାର ହରି ଗାଥା ମୋରେ କହି
ହୃଦୟରେ ଜ୍ଞାନ ଦୀପ ଦିଅନ୍ତୁ ଜଳାଇ ।
ଜପ ତପ ଆଉ ତୀର୍ଥ ଦାନ ପର୍ଯ୍ୟଟନ
କେ ଅବା କେଉଁ କୂଳରେ ହୋଇଲେ ଉତ୍ପନ୍ନ ।
ଯଜ୍ଞଦୀକ୍ଷା ଆଦି କର୍ମେ ଯେଉଁ ଫଳ ହୁଏ
ଜ୍ଞାନ ଦାନର ଫଳକୁ ସମାନ ସେ ନୁହେଁ ।
ଆପଣଙ୍କଠାରୁ ଜ୍ଞାନ ପାଇବା ଆଶାରେ
ପେଷିଛନ୍ତି ପିତା ମୋତେ ଅତ୍ୟନ୍ତ ସ୍ନେହରେ ।
ତେଣୁ ବାରବାର ଦେବ ପଚାରୁଛି ମୁହିଁ
ଶ୍ରୀକୃଷ୍ଣ ଚରିତଚନ୍ଦ୍ର ବୁଝିବାର ପାଇଁ ।
ଅମୃତ ସାଗର ନିକଟକୁ ଯାଇ ଜନ
ଆନନ୍ଦ ମନରେ ଯେବେ ନ କରଇ ପାନ ।
ତାହାପରି ଅକାଞ୍ଚନ ମୂଢ଼ ଦୁସ୍ତର
ନ ଥିବେ କେ ଜଣେ ମାତ୍ର ସଂସାର ମଧ୍ୟର ।
ଏହି ପରକାରେ ଶୁଣି ନାରଦଙ୍କ ବାଣୀ
ମନେ ହରଷିତ ହୋଇ ତପିକୁଳ ମଣି ।
ବୋଇଲେ ହେ ଧାତାସୁତ ଅଟ ତୁମ୍ଭେ ଧନ୍ୟ
ତୁମ୍ଭସମ ଜଣେ କେହି ନାହିଁ ତ୍ରିଭୁବନ ।
ପବିତ୍ର କରିବା ପାଇଁ ଏହି ତ୍ରିପୁର
ଜନମ ଲଭିଛ ତୁମ୍ଭେ ଧାତାଙ୍କ ବୀର୍ଯ୍ୟର ।
ତେଣୁ ଦିବସ ରଜନୀ ନ କରି ବିଶ୍ରାମ
ଭ୍ରମଣ କରୁଛ ମନ ଯାନେ ଅବିରାମ ।
ଶିଷ୍ୟ କଳତ୍ର ଦୁହିତା ତନୟ ବାନ୍ଧବ
ପ୍ରଣୟ ପବିତ୍ର ଯଶ ପାଣ୍ଡିତ୍ୟ ସ୍ୱଭାବ ।
ବୁଦ୍ଧିବିଦ୍ୟା ଜ୍ଞାତଜନ ଏହାଙ୍କ ହେତୁରେ
ଲୋକର ହୃଦୟୁ ଗାଥା ଜଣା ଯାଇପାରେ ।
ଜୀବନ ମୁକତ ତୁମ୍ଭେ ହରିଙ୍କର ଭକ୍ତ
ପାଦରଜରେ ଜଗତ କରୁଛ ପବିତ୍ର ।
ଶୁଣିବାପାଇଁକ ସୁମଙ୍ଗଳ ହରିଗାଥା
ଭକ୍ତିଭରେ ପୁନଃ ପୁନଃ କହୁଛ ସର୍ବଥା ।
କୃଷ୍ଣନାମ ଯେଉଁଠାରେ ହୁଅଇ କୀର୍ତ୍ତନ
ସକଳ ଦେବତା ତହିଁ ଥାନ୍ତି ବିଦ୍ୟମାନ ।

ଆଉରି ଯେତେକ ତୀର୍ଥ ଛନ୍ତି ତ୍ରିପୁରେ
ସକଳେ ମିଳନ୍ତି କୃଷ୍ଣନାମ ଚର୍ଚ୍ଚାଠାରେ ।
ସେ ନାମ ଶ୍ରବଣେ ସର୍ବେ ଲଭୁଥାନ୍ତି ପ୍ରୀତି
ମନଦେଇ ଶୁଣ ଆହେ ଧାତାଙ୍କର ସୁତ ।
ଯେଉଁ ଜନ କୃଷ୍ଣ କଥା ଗାନ କରୁଥାଏ
ଆପଣା ସପ୍ତପୁରୁଷ ଉଦ୍ଧାରଣ ହୁଏ ।
ପୁଣି ଶ୍ରୋତା ମାନଙ୍କର ସପ୍ତପୁରୁଷଙ୍କୁ
ଆପଣା ପୁଣ୍ୟ ବଳରେ ପଠାଏ ସ୍ୱର୍ଗକୁ ।
କର୍ଣ୍ଣରେ ମାତ୍ରକ ଯେହୁ କରଇ ଶ୍ରବଣ
ତାହା ପୁଣ୍ୟ କହିନୁହେଁ ମୁଖରେଟି ଜାଣ ।
ଶ୍ରୀହରି ନାମ ମହିମା କହି ତ ମୁହିଁର
ହଜାରେ ମୁଖରେ ଧାତା ବର୍ଣ୍ଣି ନପାରଇ ।
ଅର୍ଚ୍ଚନ ବନ୍ଦନ ଆଉ କୀର୍ତ୍ତନ ଭଜନ
ସ୍ମରଣ ସେବନ ନିତ୍ୟ ଦାସ ନିବେଦନ ।
ଭକ୍ତିର ଲକ୍ଷଣ ଏହା ଅଟଇଟି ଜାଣ
ସକଳ ଶାସ୍ତ୍ରମାନଙ୍କେ ରହିଛି ପ୍ରମାଣ ।
ପବିତ୍ର ଘରରେ ଜାତ ହୁଏ ଯେଉଁ ନର
କୃଷ୍ଣ ଭକତରେ ଥାଏ ସଦା ତା ଅନ୍ତର ।
ଆପଣା ଜୀବନ ସେହୁ କରଇ ସଫଳ
କହି ନୁହେଁ ମୁଖରେ ତାହାର ପୁଣ୍ୟଫଳ ।
ଯେଉଁ କର୍ମମାନ ସେହୁ ପାଞ୍ଚେ କରିବାକୁ
ତିଳମାତ୍ର ବାଧା ଦେଇ ନ ପାରେ କେ ତାକୁ
ଅତ୍ୟନ୍ତ ସୁଖରେ ସେହୁ ଜୀବନ ବିତାଏ
ଜୀବନାନ୍ତେ ବୈକୁଣ୍ଠରେ ଯାଇ ସ୍ଥାନପାଏ ।
ଗରୁଡ଼ ଅଗ୍ରକୁ ସର୍ପ ପଳାଏ ଯେମନ୍ତ
ତାହା ସନ୍ନିଧିରୁ ପାପ ହୋଇଯାଏ ହତ ।
ସର୍ବଦା ପାଶରେ ତାର କୃଷ୍ଣ ରହିଥାନ୍ତି
ଅଣିମାଦି ଅଇଶ୍ୱର୍ଯ୍ୟ ପ୍ରାପତ ହୁଅନ୍ତି ।
ନିତି ଦିବସରେ ସୁଦର୍ଶନ ଚକ୍ର ବର
କୃଷ୍ଣ ଚନ୍ଦ୍ରଙ୍କର ଆଜ୍ଞା ମାନିଣ ସତ୍ୱର ।
ଅଦୃଶ୍ୟ ଭାବରେ ତାର ପାଶେ ବୁଲୁଥାଏ
ସକଳ ବିପଦ ଘଣି ହେଲେ ନିବାରଏ ।
ଜ୍ୱଳନ୍ତ ଅନଳେ ଯେହ୍ନେ ପତଙ୍ଗ ମରନ୍ତି
ସେହିପରି ହରି ନାମେ ପାପ ନାଶଯାନ୍ତି ।
ଯମଦୂତମାନେ କେହି ନ ଯାନ୍ତି ପାଶକୁ
ଦୂରୁ ପଳାଇ ଆସନ୍ତି ଦେଖିଲେ ତାହାକୁ ।

ବ୍ୟାଧିମାନେ ସେହିପରି ତାହାଙ୍କୁ ଡରଇ
ନ ଯାନ୍ତି ପାଶକୁ ତାର ମନ ଦେଇ ଶୁଣ ।
ଦେବତା ଆବର ମୁନି ଋଷି ସନ୍ତତରେ
ସନ୍ତୁଷ୍ଟ ହୋଇଣ ଥାନ୍ତି ସଦା ତାହାପରେ ।
ଶ୍ରୀକୃଷ୍ଣଙ୍କର ଦୟାରୁ ଲଭଇ ସେ ଜ୍ଞାନ
ସାଧୁ ଜନମାନଙ୍କର ସଙ୍ଗେ ହୁଏ ଗଣ୍ୟ ।
କୁଳର ତାତ ଅଟନ୍ତି କୃଷ୍ଣଙ୍କର ଭକ୍ତ
ତେଣୁ ଶ୍ରୀକୃଷ୍ଣ କଥାରେ କୁଳେ ଯେ ଆସକ୍ତ
ଯେବଣ ଭାବ ରହଇ ତାହା ପିତାଠାରେ
ସଙ୍କ୍ରମିତ ହୁଏ ତାହା ପୁତ୍ରର ଅଙ୍ଗରେ ।
ଆହେ ଦ୍ୱିଜବର ଏହି ପ୍ରଶଂସା କୁଳର
ଅଧିକ ନୁହଇ ବୋଲି ମନରେ ବିଚାର ।
ଜନ୍ମ ହୋଇଥାଏ ଯେଉଁ କୁଳେ ଯେଉଁଜନ
ତାର ଅନୁରୂପେ ସେହି ହୁଅଇଟି ଜାଣ ।
ଭୃଗୁ ତ ଜନ୍ମ ହୋଇଣ ବ୍ରହ୍ମ ମାନସରେ
ବ୍ରହ୍ମଙ୍କର ଭକ୍ତ ତେଣୁ ଅଟେ ସେ ବିଧିରେ ।
କୃଷ୍ଣଙ୍କ କଥାରେ ଯେହୁ ଅଙ୍ଗ ପୁଲକାଇ
ଦିବସ ରଜନୀ ସଦା ମତ୍ତ ହୋଇ ଥାଇ ।
ତାହାଙ୍କୁ ପଣ୍ଡିତ ଜନେ ବୋଲନ୍ତି ଭକତ
ଜୀବନ ମୁକତ ତାର ହୋଇଥାଏ ସତ୍ୟ ।
ପୁତ୍ର ଦାର ଆଦି କରି ସକଳ ସମ୍ପତ୍ତି
ହରିଙ୍କର ଅଟେ ବୋଲିଥାଏ ଯାର ମତି ।
ଆତ୍ମା ମନ ବଚନରେ ଭକ୍ତ ଜାତ ହୁଏ
ସେ ମଧ୍ୟ ଶ୍ରୀହରିଙ୍କର ଭକତ ବୋଲାଏ ।
ସକଳ ଜୀବରେ ତାର ଦୟା ପ୍ରକାଶଇ
ସର୍ବ ଘଟରେ ଶ୍ରୀକୃଷ୍ଣ ଥିବା ସେ ଜାଣଇ ।
ସେହି ଜ୍ଞାନୀଗଣଙ୍କର ମଧ୍ୟେ ଅଟେ ଶ୍ରେଷ୍ଠ
ଆବର ଭକତଙ୍କର ମଧ୍ୟରେ ଗରିଷ୍ଠ ।
ଯେଉଁମାନେ ଜନ ଶୂନ୍ୟ ଘୋର ଅରଣ୍ୟରେ
ତପ କରୁଥାନ୍ତି ବସି ଏକାନ୍ତ ଚିତ୍ତରେ ।
ସେହି ବଇଷ୍ଣବଗଣ ମଧ୍ୟରେ ପ୍ରଧାନ
ଦୂରରୁ ତାହାଙ୍କୁ ଦେଖି ଡରଇ ଶମନ ।
ଶ୍ରୀକୃଷ୍ଣଙ୍କ ଗୁଣଗାନ ଯେହୁ କରୁଥାନ୍ତି
ତାହାଙ୍କ ନାମ ବା ମନ୍ତ୍ର ସ୍ମରଣ କରନ୍ତି ।
ସେ ଜନ ସଂସାରେ ଅଟେ ଗରିଷ୍ଠ ଦୁର୍ଲ୍ଲଭ
ତାହାଙ୍କୁ ସର ନୁହନ୍ତି ସନ୍ନ୍ୟାସୀ ବୈଷ୍ଣବ ।
ମିଷ୍ଟ ଦ୍ରବ୍ୟ ହରିଙ୍କୁ ଯେ ସମର୍ପଣ କରେ
ଜ୍ଞାନୀଗଣ ମଧ୍ୟେ ଶ୍ରେଷ୍ଠ ଅଟଇ ସଂସାରେ ।
ଶ୍ରୀହରିଙ୍କ ପାଦ ପଙ୍କଜରେ ମନ ଦେଇ
ପୂର୍ବ ଅରଜିଲ କର୍ମ ଭୋଗ କରୁଥାଇ ।
ବିଷୟ ବାସନା ଭୋଗ ଦୋଷକୁହେଁ ତାରି
ସେହୁ ବୈଷ୍ଣବ ଗଣଙ୍କ ମଧ୍ୟେ ଅଟେ ସାର
ଗୁରୁଙ୍କ ମୁଖରୁ ଯେହୁ ଶୁଣେ ବିଷ୍ଣୁମନ୍ତ୍ର
ବଇଷ୍ଣବ ବୋଲି ତାକୁ ବୋଲନ୍ତି ଜଗତ ।
ନିଜ ମାତୃ ପିତୃବଂଶ ଶ୍ରୀହରି ଚରିତ
ସପ୍ତପୁରୁଷ ମାନଙ୍କୁ କରଇ ପବିତ୍ର
ଆବର ସୋଦର ପର୍ଯ୍ୟନ୍ତ ପୁତ୍ର ଆଦି କରି
ବନ୍ଧୁ ବାନ୍ଧବେ ତାହାରେ ଯାଆନ୍ତି ନିସ୍ତରି ।
ବଇଷ୍ଣବଙ୍କ ପରଶ ପାଇବା ନିମନ୍ତେ
ପୁଣ୍ୟ ତୀର୍ଥମାନେ ଇଚ୍ଛା କରିଥାନ୍ତି ନିତ୍ୟେ ।
ଗୋଦୋହନ ମୁହୂର୍ତ୍ତରେ ବଇଷ୍ଣବ ସର୍ବେ
ରହିଥାଏ ସର୍ବତୀର୍ଥ ରହିଥାନ୍ତି ତହିଁ ।
ମହାପାପୀ ହେଲେ ମଧ୍ୟ ମରେ ଯେ ସେଠାରେ
ନରକ ଦର୍ଶନ ନ ଜୁଟଇ ତା ଭାଗ୍ୟରେ ।
ପୁଣି ଯେହୁ ବୃନ୍ଦାରଣ୍ୟ ତୁଳସୀ ବଣରେ
ଗଙ୍ଗା ଆଦି ପୁଣ୍ୟ ତୀର୍ଥସ୍ଥାନ ମାନଙ୍କରେ
ବାସ କଲେ ଯେଉଁପରି ପାପୀଙ୍କର ପାପ
ପୁଣ୍ୟ ସମ୍ପର୍କ ଯୋଗରେ ହୋଇଯାଏ ଲୋପ
ସେହିପରି ବୈଷ୍ଣବଙ୍କ ପରମ ସ୍ପର୍ଶରେ
ସକଳ କଳୁଷ ନାଶ ହୁଅଇ ଅଚିରେ
ଅନୁକୂଳ ବେଳେ ଯେହୁ ଦେଖି ବୈଷ୍ଣବଙ୍କୁ
ପ୍ରତ୍ୟେକ ସ୍ଥାନରେ ଯଶ ମିଳଇ ତାହାକୁ
ଶ୍ରୀହରି ଭକତ ନିଜ ମାତୃ ପିତୃଗଣ
ଉଦ୍ଧାର କରନ୍ତି ସପ୍ତପୁରୁଷଙ୍କୁ ପୁଣ ।
ଶ୍ରୀହରିଙ୍କୁ ଅବା ତାଙ୍କ ଭକତ ଗଣଙ୍କୁ
ନିନ୍ଦା କରଇ ଯେ ମନେ ବିଚାରଣ ଗର୍ବକୁ ।
ଶତ ଜନମର ଯେତେ ପୁଣ୍ୟମାନ ଥାଏ
କ୍ଷଣକ ମାତ୍ରକେ ସବୁ ଧ୍ୱଂସ ହୋଇଯାଏ ।
ଅନ୍ତକାଳେ ସେହୁ ଘୋର ନରକେ ପଡ଼ଇ
ମହାଦୁଃଖ କ୍ଲେଶମାନ ସେ ଭୋଗ କରଇ ।
ଦେଖିଲେ ତାହାଙ୍କୁ ଜନେ ହୁଅନ୍ତି ଅପବିତ୍ର
ଗଙ୍ଗା ସ୍ନାନ କଲେ ମଧ୍ୟ ଶୁଦ୍ଧି ନୋହେ ଗାତ୍ର

ଦେଖିଣ ବୈଷ୍ଣବେ ଯେତକ କରେ ସତକାର
ସେତେକ ଦୁଷ୍କୃତ ଥାଏ ନାଶଯାଏ ତାର ।
ଆପଣା ହୃଦୟ ମଧ୍ୟେ ଥାଇ ନରହରି
ସକଳ ପାତକ ଗ୍ରନ୍ଥି ନାଶନ୍ତି ତାହାରି ।
ଏହି ପରକାରେ ବିଷ୍ଣୁ ବୈଷ୍ଣବଙ୍କ ଗୁଣ
ଆହେ ତପିବର ସବୁ କଲ ତ ଶ୍ରବଣ ।
ଏବେ ଶ୍ରୀହରିଙ୍କ ଜନ୍ମ ଚରିତ ବ୍ୟାନ
ବଖାଣ କରିବା ତାହା ଶୁଣ ଦେଇ ମନ ।
ଏତିକ କହିଣ ମୁନି ହୋଇଲେ ମଉନ
ଗୀତଛନ୍ଦେ ଲେଖେ କ୍ଷେତ୍ରବାସୀ ଦୀନ ହୀନ ।

*—*—*

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବିଷ୍ଣୁ ଓ ବୈଷ୍ଣବ ମାନଙ୍କର ଚରିତ ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟଃ ।

—***—

## ଦ୍ୱିତୀୟ ଅଧ୍ୟାୟ

## ବିରଜାଗୋପୀର ଦେହତ୍ୟାଗ କଥନ

ଶୁଣ ଶୁଣ ମୁନିଜନେ ରତିସୂତ ଦ୍ୱାରେ
ଯାହା ଶ୍ରବଣରେ ପାପ ହଟିଯାଏ ଦୂରେ ।
ନାରାୟଣ ମୁନିବର ନାରଦ ଅଗ୍ରେତ
କହନ୍ତି ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ତୋଷଚିତ୍ତେ ।
ଆହେ ମୁନି ଯାହାଙ୍କର ପ୍ରାର୍ଥନାରେ ହରି
ମହୀତଳକୁ ଆସିଲେ ନରରୂପ ଧରି ।
ଯେଉଁ କାର୍ଯ୍ୟ କରିଣ ସେ ନିଜପୁରେ ଗଲେ
ଯେଉଁ ଭାବରେ ଦୁଷ୍ଟଙ୍କୁ ବିନାଶ କରିଲେ ।
କହିବି ସକଳ ଗାଥା ତୁମ୍ଭ ଅଗ୍ରତରେ
ଆଗ ଶୁଣ କୃଷ୍ଣ କେହ୍ନେ ଗଲେ ଗୋପପୁରେ
ସଂକ୍ଷେପରେ ଶଙ୍ଖଚୂଡ଼ ବଧର ଆଖ୍ୟାନ
କହିଥିଲି ଯାହା ଏବେ ଶୁଣ ଦେଇ ମନ ।
ରାଧାଙ୍କର ସଙ୍ଗତରେ ଗୋଲକ ଧାମରେ
କଳହ କଲା ଶ୍ରୀଦାମା ଗୋପାଳ କ୍ରୋଧରେ ।
ଦେବଜନ ମଧ୍ୟେ ଗଣ୍ଡଗୋଳ ହେଲା ଜାତ
ତହୁଁ ଶ୍ରୀଦାମାଙ୍କୁ ଶାପ ଦେଲେ ଆଦ୍ୟମାତ ।
ସେ ମଧ୍ୟ କ୍ରୋଧିଣ ଶ୍ରୀ ରାଧାଙ୍କୁ ଶାପ ଦେଲେ
ବ୍ରଜବାଳା ହୁଅ ଯାଇ ମର୍ତ୍ତ୍ୟରେ ବୋଇଲେ ।
ତାହାକୁ ତେମନ୍ତ ରାଧାରାଣୀ ଦେଲେ ଶାପ
ବୋଇଲେ ମର୍ତ୍ତ୍ୟରେ ଯାଇ ହୁଅ ତୁ କୌଣପ
ତେଣୁ ଶଙ୍ଖଚୂଡ଼ ରୂପେ ହେଲା ସେହୁ ଜାତ
ରାକ୍ଷସ ଯୋନିରେ ଆସି ହୋଇଲା ସମ୍ଭୂତ ।
ତାହାପରେ ରାଧାରାଣୀଙ୍କର ସମାଚାର
ଶୁଣ ମନକର୍ଣ୍ଣ ଦେଇ ନିର୍ମଳ ଚିତ୍ତର ।
ଶ୍ରୀଦାମା ଶାପକୁ ଶୁଣି ରାଧିକା ସୁନ୍ଦରୀ
ଜଣାଇଲେ ଶ୍ରୀକୃଷ୍ଣଙ୍କୁ ଦୈନ୍ୟ ଭାବ ଧରି ।
ଆହେ ପ୍ରାଣନାଥ ମୁହିଁ ଅଭାଗିନୀ ହେଲି
ଶ୍ରୀଦାମା ସଙ୍ଗେ କଳହ କରିଣ ଅର୍ଜିଲି ।
ସେହି ଶ୍ରୀଦାମାର ଶାପେ ମର୍ତ୍ତ୍ୟପୁରେ ମୁହିଁ
ଜନମ ହୋଇବି ଜାଣ ଗୋପୀରୂପ ବହି ।
ତୁମ୍ଭଙ୍କୁ ତେଜି କପରି ରଖିବି ଜୀବନ
ଏଥିର ଉପାୟ ମୋତେ କୁହନ୍ତୁ ବହନ ।
ନିମିଷ ମାତ୍ର ନ ଦେଖି ତବ ଚନ୍ଦ୍ରମୁଖ
କୋଟି ଯୁଗପରି ମନେ ମଣଇ ମୁଁ ଦୁଃଖ ।
ଶରଦ ଚନ୍ଦ୍ରମା ପରି ବଦନ କମଳ
ଦରଶନ କଲେ ଚିତ୍ତ ହୁଏ ମୋ ଶୀତଳ ।
ପରମ ଆନନ୍ଦ ଲାଭ କରଇ ମୁଁ ନିତ
କିରୂପେ ତେଜି ରହିବି ଆହେ ପ୍ରାଣପତି ।
ତୁମ୍ଭେ ମୋର ମନ ପ୍ରାଣ ତୁମ୍ଭେ ମୋ ଚୈତନ୍ୟ
ତୁମ୍ଭ ବିନା ଏ ଶରୀର ହୋଇବ ଦହନ ।
ସ୍ୱପ୍ନ ଜାଗରଣେ ଅବା ନିଦ୍ରା ସୁସୁପ୍ତିରେ
ସ୍ମରଣ କରଇ ତବ ପାଦ ନିରନ୍ତରେ ।
ତବ ପାଦ ସେବା ବିନା କ୍ଷଣେ ମୋ ପରାଣ
ରହି ନ ପାରିବ ନାଥ କେଉଁଠାରେ ଜାଣ ।

ଏମନ୍ତେ ଶୁଣି ଶ୍ରୀକୃଷ୍ଣ ରାଧାଙ୍କର ଗିର
ପ୍ରବୋଧନା ବାକ୍ୟେ ତାଙ୍କୁ ଦେଲେକ ଉତ୍ତର ।
ବୋଇଲେ ରାସରାସୀ ଗୋ ବରାହ କଳପେ
ଅବତାର ହେବ ମୁହିଁ ମହୀତଳେ ଆପେ ।
ତୁମ୍ଭେ ମଧ୍ୟ ସେତେବେଳେ ମୋହସଙ୍ଗେ ଯିବ
ମାନବ ଲୋକରେ ଯାଇଁ ଜନମ ଲଭିବ ।
ଆଉର ଯେ ବ୍ରଜବାଳା ତୁମ୍ଭ କୁଳେ ଯିବେ
ଗୋପପୁର ମଧ୍ୟେ ଯାଇ ଜନମ ଲଭିବେ ।
ତବ ସହିତରେ ତାଙ୍କୁ ନେଇ ବିହରିବ
ସଭିଙ୍କର ମନବାଞ୍ଛା ପୂରଣ କରିବ ।
ଏମନ୍ତେ ରାଧାଙ୍କୁ କହି ପ୍ରଭୁ ଜଗନ୍ନାଥ
ମଉନ ହୋଇଲେ ଆହେ ଧାତାଙ୍କର ସୁତ ।
ଏହି କାରଣରୁ ନନ୍ଦ ଗୋପାଳ ନଗରେ
ହରି ଜନମ ହୋଇଲେ ସନ୍ତାନ ଆକାରେ ।
ଭୟ ଆଉ ମାୟାତଳେ ରାଧାଙ୍କ ସଙ୍ଗରେ
ବିହାର କରିଲେ ଗୋପେ ନାନାବିଧ ରଙ୍ଗରେ ।
ଆଉର ଗୋପିକାଗଣ ସଙ୍ଗେ ସେହିପରି
ବିହାର କଲେ ଆପଣା ପ୍ରତିଜ୍ଞା ସୁମରି ।
ଧାତାଙ୍କ ପ୍ରାର୍ଥନା ଯୋଗେ ଜନ୍ମି ମହୀତଳେ
ଭବ ଉଦ୍ଧାରିଣ ପ୍ରଭୁ ନିଜପୁରେ ଗଲେ ।
ନାରଦ ବୋଇଲେ ଆହେ ମୁନିଙ୍କର ଈଶ
ରାଧା ସୁଦାମାଙ୍କ କଥା କରିଲେ ପ୍ରକାଶ ।
ତାହା ଶୁଣିବା ପାଇଁକି ବଳିଅଛି ମନ
କୃପାକରି ବାରେ ମାତ୍ର କରନ୍ତୁ ଗାୟନ ।
ତାହା ଶୁଣି ନାରାୟଣ ଆନନ୍ଦ ହୋଇଲେ
ନାରଦଙ୍କ ଅଗ୍ରତରେ ବଖାଣ କରିଲେ ।
ବୋଇଲେ ଗୋଲକ ପୁରେ ଶ୍ରୀରାଧାଙ୍କ ସାଇଁ
ପ୍ରିୟା ସହ ନିର୍ଜନରେ ବିହରିଲେ ଯାଇ ।
ସମ୍ଭୋଗ କାଳରେ ଦେବୀ ହରାଇଣ ଜ୍ଞାନ
ଚିହ୍ନି ନ ପାରିଲେ ପର ଆପଣାର ଜନ ।
ଏହି ସମୟରେ ତାଙ୍କୁ ଛାଡ଼ି ଗୋପୀନାଥ
ବିରଜା ଗୋପୀ ପାଶରେ ହେଲେ ଉପଗତ ।
ସେହି ବିରଜା ଗୋପୀକା ଅତ୍ୟନ୍ତ ସୁନ୍ଦରୀ
ପୂର୍ଣ୍ଣ ଯଉବନା ଘନ ସୁକେଶୀ ଚତୁରୀ ।
ତାର ସମାନରେ ଶତକୋଟି ଗୋପ ବାଳା
ବେଢ଼ି ରହିଥାନ୍ତି ତାକୁ କାଖେ ହୋଇ ମେଳା ।
ସେ ନବ ବନିତା କୃଷ୍ଣଙ୍କର ପ୍ରାଣ ପର,
ଅବସ୍ଥିତା ହୋଇଥିଲା ସିଂହାସନେ ଗୋରୀ ।
ଦେଖି ଶ୍ରୀହରିଙ୍କୁ ପାଶେ ଉଠିଲା ତୁରିତ
ନେତ୍ର କଟାକ୍ଷରେ ତାହାଙ୍କୁ କରିଲା ମୋହିତ ।
ଷୋଡ଼ଶ ବର୍ଷୀୟା ଧନୀ ଅତି ସୁଚକୁଣ୍ଡୀ
ପଙ୍କଜ ମୁଖ ଅଧର ପକ୍ୱବିମ୍ବ ସରି ।
ରତ୍ନ ଅଳଙ୍କାରେ ଅଙ୍ଗ ହୋଇଛି ମଣ୍ଡିତ
କାମଶରେ ତନୁ ମନ ତାର ଜର୍ଜରିତ ।
କୃଷ୍ଣ ଚନ୍ଦ୍ରଙ୍କର ରୂପ ଯହିଁ ନିରେଖି ।
କାମବାଣେ ବ୍ୟାକୁଳିତା ହୋଇ ଚନ୍ଦ୍ରମୁଖୀ ।
ସେ କାମିନୀ ମନକଥା ଜାଣି ଜନାର୍ଦ୍ଦନ,
କୋଳେ ବସାଇ ଗଣ୍ଡରେ ଦେଲେକ ଚୁମ୍ବନ
ସେ ଆସାତେ ବାଳା ଧର୍ଯ୍ୟ ଧରି ନ ପାରିଲା
ରତିରସେ ମାଧବାଙ୍କୁ ସଙ୍କେତ କରିଲା ।
ଜାଣି ତାର ମନ କୃଷ୍ଣ ନିର୍ଜନକୁ ନେଇ
ନାନାବିଧ ରତିକଲେ ମାନସ ରଞ୍ଜାଇ ।
ରତି ଶେଷେ ଦେହଜନ ହରାଇଣ ଜ୍ଞାନ
କୁସୁମ ତଳପ ପରେ କରିଲେ ଶୟନ ।
ସେତିକ ବେଳରେ ରାଧାଙ୍କର ଆନ ସଖୀ
ଦେଖି ତାହା ଶ୍ରୀରାଧାଙ୍କୁ କହିଲାକ ଯାଇ ।
ଶ୍ରବଣ ମାତ୍ରକେ ଦେବୀ ହେଇଣ ଅଧିର
କ୍ରନ୍ଦନ କଲେ ଯେସନେ କୁରରୀ ପ୍ରକାର ।
ତାପରେ ସଖୀଙ୍କୁ ରାଧା ବୋଇଲେ ବଚନ
ଯେବେ ପାରିବୁତ ମୋତେ ଦେଖାଅ ବଦନ ।
ତୋହର ବଚନ ଯେବେ ହୋଇଥାଏ ସତ୍ୟ
ତା ହେବେ ଏକ୍ଷଣି ଫଳ ଦେବଇଁ ତୁରିତ ।
ଦେହି ଜନଙ୍କୁ ଏକତ୍ରେ ଦେଖି ମହାଦେବୀ
ସେହି ପାମରୀକୁ କଏ ରଖିବ ଦେଖିବ ।
ତାକୁ ଯେଉଁ ଶାସ୍ତି ଦେବ ସଭିଏଁ ଦେଖିବେ
ରାଧା ଲାଗି ଏହି ଦଣ୍ଡ ପାଇଲା କହିବେ ।
ଆଉର କୃଷ୍ଣଙ୍କୁ ଯାହା କହିବଟି ମୁହିଁ
ଜାଣିଥା ତାହା ଅନ୍ୟଥା ନ କରିବେ କେହି ।
ଏହିପରି ଶୁଣି ରାଧା ରାଣୀଙ୍କ ବଚନ
ଭୟରେ ଗୋପିକା ମନ କରି ଛନ ଛନ ।
କୃତାଞ୍ଜଳି ହୋଇ ତାଙ୍କୁ ବୋଇଲା ଗୋ ଦେବୀ
ବିରଜା ସହିତେ କୃଷ୍ଣଚନ୍ଦ୍ର ଦେଖାଇବା

ତାଶୁଣି ରାଧିକା ରଥେ କରି ଆରୋହଣ
ବହୁ ଗୋପୀକାଙ୍କୁ ଘେନି ଚଳିଲେ ତକ୍ଷଣ ।
ଶ୍ରୀକୃଷ୍ଣ ବିରଜା ଥିଲେ ଯେବଣ ସ୍ଥାନରେ
ରଥ ଆରୋହଣ କରି ଚଳିଲେ ସତ୍ୱରେ ।
ବାୟୁଠାରୁ ଦ୍ରୁତ ଗତି ଅଟେ ସେ ରଥର
ମଣ୍ଡିତ ହୋଇଛି ଚହିଁ ବହୁ ରତ୍ନସାର ।
ମଣୀନ୍ଦ୍ର ସାର ରଚିତ ଉତ୍ତମ କଳଶ
ରଥ ମଧ୍ୟେ ଥାଇ ଶୋଭା କରନ୍ତି ବିକାଶ ।
ବିବିଧ ଚିତ୍ରଫଳକ ପତ୍ର ବୈଜୟନ୍ତୀ
ସ୍ଥାନେ ୨ ରହି ସେହୁ ଶୋଭା ବିକାଶନ୍ତି ।
ଯୁକ୍ତ ହୋଇଅଛି ବହୁ ଚନ୍ଦ ତା ମଧ୍ୟରେ
ଗମନ କରଇ ସେହୁ ଆପଣା ଇଚ୍ଛାରେ ।
ମଧ୍ୟେ ମଣି ଚନ୍ଦ୍ର ଶୋଭେ ସିନ୍ଦୂର ପରାୟେ
କୃତ୍ରିମ ରତନ ଊର୍ଦ୍ଧ୍ୱଭାଗେ ଶୋଭା ପାଏ ।
କିଙ୍କିଣୀ ସହିତେ ସ୍ୱରଲକ୍ଷ ଚନ୍ଦ ଘଣ୍ଟ
ଝୁଣୁ ଝୁଣୁ ଶବଦ ଯେ କରଇ ପ୍ରକଟ ।
ମାଣିକ୍ୟ ମନ୍ଦିର ରତ୍ନେ ହୋଇଛି ନିର୍ମିତ
ଲାଗିଛି ରତ୍ନ କବାଟ ଚହିଁ ଅପ୍ରମିତ ।
ବହୁ ଅମୂଲ୍ୟ ରତନ ଥିବାରୁ ଚହିଁରେ
ସ୍ୱର୍ଗ ସୁନାଶିରଙ୍କର ପଦ ନିନ୍ଦା କରେ ।
ରତ୍ନଖଟ ପରେ ରତ୍ନମୟ ଶଯ୍ୟାଧାର
ପ୍ରତ୍ୟେକ ଗୃହରେ ଶୋଭା ପାଆନ୍ତି ସତ୍ୱର ।
ପୁଣିସ୍ୱର୍ଣ୍ଣମୟ ଦେବ ଦେବୀ ବହୁଛନ୍ତି
ସୁନ୍ଦର ବେଶରେ ସେଠାବରେ ଶୋଭାପାନ୍ତି ।
ସ୍ୟମନ୍ତକ କଉସ୍ତୁଭ ମଣି ସହିତରେ
ଘନ ଅନ୍ଧକାର ତାର ତେଜେ ଦୂର କରେ ।
ସୁବର୍ଣ୍ଣ ପଦ୍ମ ଯେତେକ ଖଞ୍ଜା ହୋଇଅଛି
କଳନା କରିବା ଶକ୍ତି କାହାର ବା ଅଛି ।
ଏମନ୍ତ ଅଟଇ ସେହି ରଥର ଗଠନ
ଦରଶନେ ମାତ୍ରେ ଲାଖିଯିବ ମନମୀନ ।
ପର୍ବତ ସମାନ ଉଚ୍ଚ ଅଟଇ ସେ ରଥ
ପୁଣି ଯୋଜନ ଯୋଜନ ଅଟେ ବିସ୍ତାରିତ ।
ପାରିଜାତ ପୁଷ୍ପମାନ ମାଳ ମାଳ ଶୋଭେ
ଲୁବ୍ଧ କରୁଥାଇ ଆଉ ଜନମନ ମୋହେ ।
ଯେତେ ସୁବାସିତ ସ୍ୱର୍ଣ୍ଣ ଚମ୍ପା ଥାଏ ଚହିଁ
ତୁଳନା କରିବା ପାଇଁ କାର ଶକ୍ତି ନାହିଁ ।

ସ୍ୟନ୍ଦନ ମାନଙ୍କ ମଧ୍ୟେ ଅଟଇ ସେ ସାର
ମୂଲ୍ୟବାନ ପାଟ ବସ୍ତ୍ର ପହୁରଣ ତାର ।
ଶୃଙ୍ଗାର ରସ ଓ ଚଉଷଠି ବନ୍ଧମାନ
ରଥ ଚଉପାଶେ କରା ହୋଇଛି ଲିଖନ ।
ଏମନ୍ତ ଅଟଇ ଯେଉଁ ସ୍ୟନ୍ଦନ ମହିମା
ଖଣ୍ଡେ ଦୂରେ ରଖାଇଣ ବୃଷଭାନୁ ଜେମା ।
ତା ମଧ୍ୟରୁ ଓହ୍ଲାଇଣ କରୀନ୍ଦ୍ର ଗମନୀ
ଧୀରେ ଧୀରେ ଅଗ୍ରସର ହୋଇଲେକ ଧନୀ ।
ଯେଉଁ ରତ୍ନ ମଣ୍ଡପରେ ବିରଜା ସହିତେ
ଶ୍ରୀକୃଷ୍ଣ ଥିଲେ ସେଠାକୁ ଚଳିଲେ ସମସ୍ତେ ।
ଦେଖିଲେ ଶ୍ରୀଦାମା ଦ୍ୱାର ରକ୍ଷକ ଅଛନ୍ତି
ଅପାର ଗୋପାଳ ତାଙ୍କୁ ବେଢ଼ି ରହିଛନ୍ତି ।
ଶ୍ରୀକୃଷ୍ଣଙ୍କ ପ୍ରିୟପାତ୍ର ଅଟନ୍ତି ସେମାନେ
ପୁଚ୍ଛିଲେ ଶ୍ରୀରାଧା ତାଙ୍କୁ କ୍ରୋଧ ହୋଇ ମନେ
ଦ୍ୱାର ତେଜ ଭୃତ୍ୟମାନେ ଯାଅ ଆଡ଼ ହୋଇ
ସେ ଲମ୍ପଟ କୃଷ୍ଣଙ୍କର ପାଶେ ଯିବି ମୁହିଁ ।
କେଡ଼େ ସୁନ୍ଦରୀ ତାଙ୍କର ହିଶପ୍ୟ ବରଣୀ
ଦେଖିବା ନିମନ୍ତେ ମୁହିଁ ଆସିଅଛି ଜାଣି ।
ଶ୍ରୀମତୀଙ୍କ ଗିର ଶୁଣି ସୁଦାମ ଗୋପାଳ
ରହିଲେ ଓଗାଳ ପଥ ହୋଇଣ ନିଶ୍ଚଳ ।
ଭିତରକୁ ଯିବା ପାଇଁ ନ ଛାଡ଼ିଲେ ପଥ
ନିଶ୍ଚଳ ହୋଇ ସେଠାରେ ରହିଲେ ସମସ୍ତ
ତା ଦେଖି ରାଧିକା ଦେବୀ ସଖୀଙ୍କ ସହିତେ
ଝଟାଇ ପଶିଲେ ତାଙ୍କୁ ନ ମାନି ତୁରିତେ ।
କ୍ଷଣକ ମଧ୍ୟରେ କୋଳାହଳ ଶବ୍ଦ ହେଲା
ଚହିଁରେ ଶ୍ରୀକୃଷ୍ଣଙ୍କର ନିଦ୍ରା ଯେ ଭାଙ୍ଗିଲା ।
କ୍ରୋଧଭରେ ରାଧାରାଣୀ ଆସିଛନ୍ତି ଜାଣି
ଅନ୍ତର୍ଦ୍ଧାନ ହେଲେ ପ୍ରଭୁ ଗୋପ ଚୂଡ଼ାମଣି ।
ବିରଜା ସୁନ୍ଦରୀ ମଧ ତାହା ଜାଣିପାରି
ଯିବାପାଇଁ ପ୍ରଭୁ ସହ ଇଚ୍ଛାକଲେ ଗୋରୀ ।
ମାତ୍ର ରାଧାଠାରୁ ହୋନ୍ତେ ମହାଭୟ ଜାତ
ତାଟକା ହୋଇ ଜୀବନ ତେଜିଲେ ତୁରିତ ।
ଶରୀର ମାତ୍ରକ ପଡ଼ିଥିଲା ସେ ଠାବରେ
ସରିତ ଆକାର ହୋଇଗଲା କ୍ଷଣକରେ ।
ବର୍ତ୍ତୁଳ ହୋଇଣ ସେହୁ ଗୋଲକେ ରହିଲା
ସ୍ୱଚ୍ଛ ସ୍ୱଚ୍ଛ ଜଳପୂରେ ବ୍ୟାପ୍ତ ହୋଇଗଲା ।

ବିସ୍ତୀର୍ଣ୍ଣ ହୋଇଲା ସେହୁ କୋଟିଏ ଯୋଜନ
ଶତ ରେ ଯେ ତଣ୍ଡୁଣ ଉଲଙ୍ଘିଲା ପୁଣ ।
ପବିତ୍ର ନିର୍ମଳ ଜଳଧାର ତା ଅଟଇ
ସକଳ ତୀର୍ଥ ମାନଙ୍କେ ସାର ଯେ ବୋଲାଇ ।
ଏମନ୍ତ ଭାବେ ବିରଜା ନଦୀର ଉତ୍ପତ୍ତି
ହୋଇଲା ଗୀତରେ କ୍ଷେତ୍ର କହେ ଭବଚନ୍ଦ୍ର ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବିରଜାଙ୍କର ଶରୀରନାଶକ କଥନେ ନାମ ଦ୍ୱିତୀୟୋଽଧ୍ୟାୟଃ ।

—*—

# ତୃତୀୟ ଅଧ୍ୟାୟ

## ରାଧିକା କର୍ତ୍ତୃକ ଶ୍ରୀଦାମାଙ୍କର ଶାପ ବୃତ୍ତାନ୍ତ ବର୍ଣ୍ଣନ

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ଶ୍ରୀକୃଷ୍ଣ ଜନ୍ମଖଣ୍ଡ ଅଟନ୍ତି ମହାନ ।
କହନ୍ତି ନାରଦ ଅଗ୍ରତରେ ନାରାୟଣ
ଆହେ ବ୍ରହ୍ମତତ୍ତ୍ୱ ଜ୍ଞାନୀ ମନଦେଇ ଶୁଣ ।
ଶ୍ରୀ ମାନଶ ଶ୍ରୀରାଧାଙ୍କ ମାନିନୀ ରାଧିକା
କୃଷ୍ଣଙ୍କର ରତିଗୃହେ ପ୍ରବେଶିଲେ ଏକା ।
ପତିଙ୍କୁ ଚହିଁ ନ ପାଇ ନିଜଗୃହେ ଗଲେ
ବିରଜା ତ ନଦୀ ହୋଇ ବହି ଯାଇଥିଲେ ।
ତାଙ୍କର ସେ ଗତି ଦେଖି ଶ୍ରୀକୃଷ୍ଣ ସତ୍ୱରେ
ରୋଦନ କଲେ ପ୍ରାକୃତ ଜନ ପରକାରେ
ବୋଇଲେ ଆଗୋ ସଜନୀ ଆସ ମୋ ପାଖକୁ
ନ ରଖି ପାରିବ ତୁମ୍ଭ ବିନେ ଏ ପ୍ରାଣକୁ
ମୂର୍ତ୍ତିମନ୍ତ ହୁଅ ତୁମ୍ଭେ ମୋର କଲ୍ୟାଣରେ
ଥାଅ ନଦୀ ଅଧିଷ୍ଠାତ୍ରୀ ଦେବୀ ସ୍ୱରୂପରେ ।
ପୂର୍ବର ଶରୀର ନଦୀ ହୋଇ ତ ଯାଇଛି
ନୂତନ ବିଗ୍ରହ ଘେନି ଆସ ମୁଁ ବୋଲୁଛି ।
ପୂର୍ବରୂପଠାରୁ ପୁଣି ନୂତନ ଶରୀର
ସୌନ୍ଦର୍ଯ୍ୟ ଗୁଣରେ ହୋଇବ ଯେ ଭରପୂର
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
ଜଳ ମଧ୍ୟରୁ ବାହାରି ବିରଜା ତରୁଣୀ ।
ସେହିକ୍ଷଣି ଆସି ତାଙ୍କ ଆଗେ ଉଭା ହେଲେ
ନେତ୍ର କୋଣେ ଠାରି ବାରବାର ଅନାଇଲେ
ଶ୍ରୀରାଧା ସମାନ ସେହି ଅତ୍ୟନ୍ତ ସୁନ୍ଦରୀ
ସୂକ୍ଷ୍ମ ପୀତ ବସନ ପରିଧାନ କରି ।
ସସ୍ମିତ ବଦନେ ପ୍ରାଣ ନାଥଙ୍କୁ ଅନାଇଁ
ଆସିଲେ ନିକଟେ ଧୀରେ ସ୍ଥିରଭାବ ବହି ।
ମାନିନୀ ସ୍ୱରୂପବତୀ ଗଜେନ୍ଦ୍ର ଗାମିନୀ
ଶରଦଚନ୍ଦ୍ର ବଦନୀ ପୀନୋନ୍ନତସ୍ତନୀ ।
ପକ୍ୱବିମ୍ବାଧରୀ ସ୍ୱଚ୍ଛ ଚମ୍ପକ ବରନା
ସୁନ୍ଦର ଡାଳିମ୍ବ ବୀଜ ବିଜିତା ଦଶନା ।
ନୀଳ ଇନ୍ଦୀବର ତୁଲ୍ୟ ଦିଶଇ ନୟନ
ସିନ୍ଦୂର ବିନ୍ଦୁ ଲଲାଟେ ଦିଶେ ଶୋଭାବନ ।
ମାଳତୀ ମାଳାଭୂଷିତ ରୁରୁ କେଶପାଶ
ଦିଶଇ ବିଦ୍ୟୁତ ଯୁକ୍ତ ନୀରଦ ସଦୃଶ ।
ବକ୍ଷସ୍ଥଳେ ଲମ୍ବି ଅଛି ମଣି ମୁକ୍ତାହାର
କରେ ଶୋଭାପାଏ ଦିବ୍ୟ କଙ୍କଣ କେୟୂର ।
କିଙ୍କିଣୀଗଣ ବେଷ୍ଟିତ ସୁନ୍ଦର ରସନା
କରୁଅଛି ପୁଷ୍ପଧନୁ ପୁଣି ସମ୍ଭାବନା ।
ଏହି ପରକାରେ ଆସି ବିରଜା ସୁନ୍ଦରୀ
ଆଗରେ ଉଭା ହୋଇଲେ ମୁଖ ନତକରି ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ଆନନ୍ଦିତ ହୋଇ
ଗଣ୍ଡେ ଚୁମ୍ବନ ଆଙ୍କିଲେ କୋଳରେ ବସାଇ
ଅପାର ଆନନ୍ଦ ତାଙ୍କ ହୃଦେ ହେଲା ଜାତ
ସଚେତକ ହଜିବା ରତ୍ନ ପାଇଲେ ତୁରିତ ।
ଆବର ନାନା ପ୍ରକାର କାମ କ୍ରୀଡ଼ା କଲେ
ନିର୍ଜନ ସୁନ୍ଦର ଉପବନେ ବିହରିଲେ ।
ବିପରୀତ ରତିରସେ ମାତିଲେ ହରଷେ
ରତୋତ୍ସୁକା ହେଲେ ଚହିଁ ବିରଜା ସନ୍ତୋଷେ

ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ରେତ ଗର୍ଭରେ ତାଙ୍କର
ପତିତ ହୋଇଲା ଜାଣ ଆନନ୍ଦ ଚପିବର ।
ତେଣୁ ସେ ରମଣୀ ମଣୀ ଗର୍ଭବତୀ ହେଲେ
ଦିବ୍ୟ ସହସ୍ର ବରଷ ସେ ଗର୍ଭ ଧରିଲେ ।
ତଦନ୍ତରେ ସାତଗୋଟି ପୁତ୍ର ହେଲେ ଜାତ
କୃଷ୍ଣଙ୍କ ସମାନ ସେହୁ ହେଲେ ବଳବନ୍ତ ।
ସନ୍ତାନେ ଘେନି ବିରଜା ଯେ ଠାବରେ ରହି
ଆନନ୍ଦରେ ଦିବାନିଶି ଦେଉଥିଲେ ବିତାଇ ।
ଏହିଭାବେ କେତେକାଳ ଗତ ହେଲା ପରେ
ଦିନେ ଶ୍ରୀହରିଙ୍କ ସଙ୍ଗେ ନିର୍ଜନ ବନରେ ।
କାମରେ ଆସକ୍ତା ହୋଇ ବିରଜା ସୁନ୍ଦରୀ
ମନ ଆନନ୍ଦରେ ରତିରସରେ ବିହରି ।
ନାନାବିଧ ବନ୍ଧରେ କ୍ରୀଡ଼ା ଆରମ୍ଭ କରିଲେ
କେହି କାହାକୁ ଯେ ହରାଇଣ ନ ପାରିଲେ ।
ଏହି ସମୟରେ ତାଙ୍କ କନିଷ୍ଠ କୁମର
ଆନ ଭ୍ରାତାଠାରୁ ଭୟ ପାଇଣ ସତ୍ୱର ।
ଜନନୀ କୋଳରେ ଆସି ପରବେଶ ହେଲା
ତାହା ଦେଖି କୃଷ୍ଣ ପ୍ରେମେ ବ୍ୟାଘାତ ଘଟିଲା
ସେ ଠାବରେ ମାତା କୁମରଙ୍କୁ ଛାଡ଼ିଦେଇ
ରାଧିକା ଦେବୀଙ୍କ ପୁରେ ପ୍ରବେଶିଲେ ଯାଇ ।
ବାଳକକୁ କୋଳେ ଧରି ବିରଜା ସୁନ୍ଦରୀ
ନାନା କଥାମାନ କହି ପ୍ରବୋଧନା କରି ।
ଦେଖିଲା ଅନାଇଁ ପାଶେ ନାହାନ୍ତି ପ୍ରାଣେଶ
ତେଣୁ ସେହୁ ଶୋକଭରେ ହୋଇଣ ଅବଶ
ଆପଣାର ତନୟଙ୍କୁ ଶାପ ତହୁଁ ଦେଲେ
ସାଗର ସ୍ୱରୂପ ତୁମ୍ଭେ ହୁଅ ଯା ବୋଇଲେ ।
କ୍ରୋଧେ ବୋଇଲେ କନିଷ୍ଠ କୁମରେ ଅନାଇଁ
ଲବଣ ସମୁଦ୍ର ବେଗେ ହୁଅ ତୁହି ଯାଇ ।
ଜଗତରେ ତୋର ଜଳ ନ ପିଅନ୍ତୁ ଜନ
ଦିବାନିଶି ସଦା କରୁଥାଆ ତୁ ଗର୍ଜନ ।
ଏକ୍ଷଣି ମହୀ ତଳକୁ ତୁମ୍ଭେମାନେ ଯାଅ
ଭିନ୍ନ ୨ ସ୍ଥାନେ ସପ୍ତ ଦ୍ୱୀପ ମଧ୍ୟେ ରହ ।
ଯେତେ ନଦୀମାନ ଥିବ ସେ ଦ୍ୱୀପ ମଧ୍ୟରେ
କ୍ରୀଡ଼ା କରି ଆନନ୍ଦରେ ତାହାଙ୍କ ସଙ୍ଗରେ ।
କନିଷ୍ଠ ନନ୍ଦନ ମାତାଠାରୁ ଶାପ ପାଇ
ଆନ ଭାଇଙ୍କ ଅଗ୍ରତେ କହିଲକ ଯାଇ ।

ତା ଶୁଣି ସକଳ ଭାଇ ଦୁଃଖିତ ହୋଇଲେ
ଜନନୀ ନିକଟେ ଯାଇ ସମସ୍ତ ବୁଝିଲେ
ପ୍ରଣାମ ଜଣାଇ ତାଙ୍କୁ ବେଗେ ଚଳିଗଲେ
ସାଗର ହୋଇ ଯେ ଯାହା ରୂପ ପ୍ରକାଶିଲେ ।
ସପତ ଦ୍ୱୀପେ ସମୁଦ୍ର ସ୍ୱରୂପଙ୍କୁ ବହି
ରହିଲେ ଯେ ଯାହା ସ୍ଥାନେ ଏକେହି ନ ହୋଇ
କନିଷ୍ଠରୁ ଜ୍ୟେଷ୍ଠ ଯାଏ ସପତ ସୋଦର
ଦୁଇ ଦୁଇ ଗୁଣ ବୃଦ୍ଧି ପାଇ ସେ କାଳର ।
ଲବଣ ଇକ୍ଷୁକ ସୁରା ଘୃତ ଦଧି କ୍ଷୀର
ଏହି ପରକାରେ ହେଲେ ସେ ସାତ ସୋଦର
ସାରା ଜଗତକୁ ସେହୁ ଘେରିଣ ରହିଲେ
ମାନବ ସମାଜଙ୍କର ହିତ ବାଞ୍ଛା କଲେ ।
ସେ ସପତ ଭାଇ ମାତୃ ଭକ୍ତି ବିରହରେ
କାନ୍ଦିଲେ ବାଲ୍ୟ ସୁଲଭ ଭାବେ ଉଚ୍ଚସ୍ୱରେ ।
ବିରଜା ମଧ୍ୟ ପୁତ୍ରଙ୍କ ବିରହ ବେଦନା
ସହି ନ ପାରି ଶୋକରେ ହାରିଲେ ଚେତନା
ତାହା ଜାଣିପାରି ପ୍ରଭୁ ଜଗତ ଜୀବନ
ବିରଜାଙ୍କର ସନ୍ନିଧେ ମିଳିଲେ ବହନ ।
ତାହାଙ୍କୁ ଦେଖି କାମିନୀ ଶୋକ ତ୍ୟାଗକରି
ମୁଖରେ ଚୁମ୍ବନ ଦେଲା ବେଗେ କୋଳେ ଧରି
ପୁନଶ୍ଚ ନାନା ପ୍ରକାର କ୍ରୀଡ଼ାରେ ମାତିଲା
ବିପରୀତ ଆଦି ରତିରସ ଭୁଞ୍ଜାଇଲା ।
ପୁତ୍ର ବିରହିଣୀ ଜାଣି ତାହାଙ୍କୁ ଶ୍ରୀହରି
ସନ୍ତୋଷ ହୋଇଣ ବର ଦେଲେ କୃପାକରି ।
ବୋଇଲେ ଆଗୋ ବିରଜେ ତବ ସନ୍ନିଧିକୁ
ଆସୁଥିବୁ ଆମ୍ଭେ ପ୍ରତିଦିନ ଦେଖିବାକୁ ।
ଯେରୂପେ ରାଧିକା ମୋର ପ୍ରେୟସୀ ଅଟନ୍ତି
ତୁମ୍ଭେ ମଧ୍ୟ ସେହି ପରକାରେ ଆଗୋ ସତି
ମୋହର ଆଦେଶ ବଳରେ ତୁମ୍ଭେ ପ୍ରତିଦିନେ
ପ୍ରତି ସନ୍ତାନଙ୍କୁ ରଖିଥିବ ସନ୍ନିଧାନେ ।
ଏହିପରି କହି କୃଷ୍ଣଚନ୍ଦ୍ର ବିରଜାଙ୍କୁ
ମଧୁର ବଚନେ ତୋଷ କରିଲେ ତାହାଙ୍କୁ ।
ପୁତ୍ର ବିରହିଣୀ ସେହି ବିରଜା ସୁନ୍ଦରୀ
କୃଷ୍ଣଙ୍କ ଅମିୟ ବାକ୍ୟେ ସବୁ ଭୁଲିକରି ।
ଦର ଦର ହସି ତାଙ୍କ କୋଳରେ ବସିଲେ
ରାଧାଙ୍କର ସଖୀଗଣେ ଦେଖି ତାହା ନେଲେ ।

ତରତରେ ଯାଇ ରାଧା ରାଣୀଙ୍କ ଆଗରେ
କହିଲେ ସମସ୍ତ କଥା ପ୍ରାଞ୍ଜଳ ସ୍ୱରରେ ।
ଆଗୋ ମହାଦେବୀ ଆମ୍ଭେମାନେ ଯାଇଥିଲୁ
ବିରଜା ସଙ୍ଗେ କୃଷ୍ଣଙ୍କ ମିଳନ ଦେଖିଲୁ ।
ଏହା ଶୁଣି ରାଧା କ୍ରୋଧେ ହୋଇ ଜର ଜର
ନୟନରୁ ଧାର ଧାର ବୁହାଇଣ ନୀର ।
କ୍ରୋଧ ମନ୍ଦିରରେ ଯାଇ କରିଲେ ଶୟନ
ଏହି ସମୟେ ମିଳିଲେ ଆସି ଜନାର୍ଦ୍ଦନ ।
ଶ୍ରୀଦାମା ତାହାଙ୍କ ସଙ୍ଗତରେ ରହିଥିଲେ
ବେନି ଜଣେ ଦ୍ୱାରଦେଶେ ଆସି ଉଭାହେଲେ
ତାହାଙ୍କୁ ଦେଖିବା ମାତ୍ରେ ରାଧିକା ସୁନ୍ଦରୀ
କହିଲେ ନାନା କୁବାକ୍ୟ ତିରସ୍କାର କରି ।
ହେ ଶଠ ଲମ୍ପଟ ତୁମ୍ଭେ ବଡ଼ ଦଗାଦାର
ବଞ୍ଚକ ଗୁଣରେ ଅଟ ସର୍ବ ପରେ ସାର ।
ଏ ଗୋଲକେ ବହୁ ପ୍ରିୟା ତୁମ୍ଭର ଅଛନ୍ତି
ଜାଗର ଜାଳି ସେ ଉଜାଗରେ ବସିଛନ୍ତି ।
ମୋହ ନିକଟରେ କେଉଁ କାର୍ଯ୍ୟ ବା ତୁମ୍ଭର
ତାଙ୍କୁ ତୃପ୍ତ କରିବାପାଇଁ ଆସୁଛ ଏଠାର ।
ଯେଉଁ ବିରଜା ତୁମ୍ଭର ମୋହଠାରୁ ପ୍ରିୟ
ନଦୀ ରୂପ ହୋଇଥିଲା ପାଇ ସେହି ଭୟ ।
ତଥାପି ତାହାକୁ ତୁମ୍ଭେ ଭୁଲି ନ ପାରିଲ
ଦିବାନିଶି ତାର ନାମ ଜପାମାଳା କଲ ।
ଦେହତ୍ୟାଗ କଲେ ମଧ୍ୟ ତା ପ୍ରତି ଆସକ୍ତ
ହୋଇଅଛି ଅତିଶୟ ତୁମ୍ଭର ଯେ ଚିତ୍ତ ।
ତେଣୁ ବୋଲୁଅଛି ମୁହିଁ ହେ ଲମ୍ପଟ ଧୂର୍ତ୍ତ
ଯେଉଁ ରମଣୀ ଉପରେ ହୋଇଛ ଆକୃଷ୍ଟ ।
ତାର ତଟଦେଶେ ଖଣ୍ଡେ ନଗର ତୋଳାଇ
ରହ ଦିବସ ରଜନୀ ମନ ତୋଷେ ତହିଁ ।
ନଦୀ ହୋଇ ଯାଇଛି ତ ତବ ପ୍ରିୟବତୀ
ତୁମ୍ଭେ ନଦ ନାମ ବହି ହୁଅ ତାର ପତି ।
ନଦୀ ନଦ ଦୁଇଜଣ ହୋଇଲେ ଏକତ୍ର
ଜଗତ ଜନ ଦେଖିଣ ହେବେ ଯେ ତୃପତ ।
ସକଳେ କହିବେ ଦେବ ଅଧିପତି ହୋଇ
ନଦୀ ସହ ବିହରନ୍ତି ନଗର ତୋଳାଇ ।
ଏହା ନ କରି କମ୍ପାଇ ଲୋକେ ଜାଣିବାକୁ
ମିଛେ ମିଛେ ଆସୁଅଛ ରାଧିକା ପାଶକୁ ।

ଯାଅ ଯାଅ ଦଗାଦାର ଏଠାରେ ନ ରହ
ତେଣେ ନ ଦେଖିଣ ପ୍ରିୟା ଡାକୁଥିବ ଲୁହ ।
ଏହା କହି ରାଧାଦେବୀ ହୋଇଣ ଅସ୍ଥିର
ନାସିକା ଫୁଲାଇ ନେତ୍ରୁ ବୁହାଇଣ ନୀର ।
ବୋଇଲେ ଆଉ ଏଠାରେ ନ ରହିବ କ୍ଷଣେ
ଚାଲିଯାଅ ହେ ଲମ୍ପଟ ମୋର ବୃନ୍ଦାବନେ ।
ଯେବଣ ଜଗତଜନ ବଡ଼ ପ୍ରଭୁ ବୋଲି
ତୁମ୍ଭ ନାମରେ ନାଚରି ପିଟୁଛନ୍ତି ତାଳି ।
ସେମାନେ ଯଦ୍ୟପି ଏହା ଦେଖିବେ ନେତ୍ରରେ
କ ବୋଲି ବୋଲିବେ ଥରେ ଭାବ ତ ମନରେ
କହିବେ ହୋଇଣ ପ୍ରଭୁ ସର୍ବ ଅନ୍ତର୍ଯ୍ୟାମୀ
ନର୍ତ୍ତକୀଏ ଭୋଗ କରୁଛନ୍ତି ହୋଇ କାମୀ ।
ଏମନ୍ତ କହି ରାଧିକା ଅଧର କମ୍ପାଇ
ଭୂମି ଶୟନରେ ପଡ଼ି ରହିଲେଟି ରହି ।
ତାହାଙ୍କ ସନ୍ନିଧେ ଲକ୍ଷେ ଗୋପୀ ରହିଥିଲେ
ନାନାବିଧ ଉପକରଣ ହସ୍ତେ ଧରିଥିଲେ ।
ଶୁକ୍ଳ ଚାମର କାହା ହସ୍ତେ ଥିଲା ରହି
ସୂକ୍ଷ୍ମ ବସ୍ତ୍ରମାନ ଧରିଥିଲେ କେହି କେହି ।
କାହା ହସ୍ତରେ ତାମ୍ବୁଳ କାହାହସ୍ତେ ମାଳ
ଧରିଥିଲ ସ୍ୱର୍ଣ୍ଣ ପାତ୍ରେ କେ ସୁବାସ ଜଳ ।
କେହୁ ରତ୍ନହାର ଯତନରେ ସୁଗନ୍ଧିତ
ପଦ୍ମ ପୁଷ୍ପ ମାଳମାନ ବହିଥିଲ ହସ୍ତ ।
କଜ୍ଜ୍ୱଳ ସିନ୍ଦୂର ଆଉ ଚନ୍ଦନ କର୍ପୂର
ଧରିଥିଲ କେଉଁ ସଖୀ ସୁବର୍ଣ୍ଣ ପାତ୍ରର ।
ବେଣୁ ବୀଣା ମର୍ଦ୍ଦଳ ବା ଝାଞ୍ଜ ତାଳମାନ
ମୃଦଙ୍ଗ ମହୁରୀ ଢ଼ୋଲ ଟମକ ନିଶାଣ ।
ବହିଥିଲେ ସଖୀମାନେ ହରଷିତ ହୋଇ
କଙ୍କତିକା ସହ ତୈଳ ଧରିଥିଲେ କେହି ।
କେହୁ ପୁଷ୍ପାଞ୍ଜଳି ଧରି କରୁଥିଲେ ସ୍ତୁତି
ଏରୂପେ ଯେ ଯାହା କାର୍ଯ୍ୟେ ସକଳ ଯୁବତୀ
ଲାଗି ରହିଥାନ୍ତି ରାଧା ଦେବୀଙ୍କ ପାଶରେ
ଆଉ କେତେ ରହିଥିଲେ ଦୁଆରେ ବାହାରେ
ବେତ୍ର ହସ୍ତେ ଦ୍ୱାରେ ଥିଲେ ଯେତେକ ପ୍ରହରୀ
କୃଷ୍ଣଙ୍କୁ ବାରଣ କଲେ ଭିତରକୁ ଗୋରୀ ।
ଯେଥିଲାଗି ରାସେଶ୍ୱର ଦୁଆର ବାହାରେ
ଉଭାହେଲେ ଶ୍ରୀଦାମାଙ୍କୁ ଘେନିଣ ସଙ୍ଗରେ ।

ତାହାଙ୍କୁ ଅନାଇଁ ରାଧା ନମ୍ର ବଚନ
କମ୍ପିଲେ ଶୋଣିତ ବର୍ଣ୍ଣ କରିଣ ନୟନ ।
ବୋଇଲେ ଆହେ ବ୍ରଜାକାନ୍ତ କାନ୍ତିପାଇଁ
ମୋତେ ହନ୍ତସନ୍ତ କରି ମାରୁଛ କନ୍ଦାଇ ।
ଅନୁରୋଧ କରୁଅଛୁ ବେଗ ହୋଇଯାଅ
ପ୍ରିୟାମାନେ ଯହିଁଥିବେ ସନ୍ତୋଷ କରାଅ ।
ପଦ୍ମାବତୀ ରତ୍ନମାଳା ମନୋରମା ବାମା
ସୁକେଶୀ ଚଞ୍ଚଳା ଜୟା ରମା ତିଳୋତ୍ତମା ।
ସବୁତରେ ଯେତେ ବାଳା ଗୋଲୋକେ ଅଛନ୍ତି
ସେମାନେ ସର୍ବେ ଅଟନ୍ତି ତବ ପ୍ରିୟବତୀ ।
ନୋହିଲେ ଯାଅ ହେ ବନମାଳା ସମୀପକୁ
ଯହିଁ ବସିଥିବ ସଦା ଯହିଁ ତା ମୁଖକୁ ।
ଆହେ ନଗାକାନ୍ତ ଦେବ ଦେବଙ୍କର ଶ୍ରେଷ୍ଠ
ମୋହ ପାଶେ କିଛି କାର୍ଯ୍ୟ ନାହିଁ ଆହେ ଶଠ
ମନୁଷ୍ୟ ପ୍ରାୟେ ସ୍ୱଭାବ ତୁମ୍ଭର ଅଟଇ
ତିଳେମାତ୍ର ମୋ ସନ୍ନିଧେ ତବ କାର୍ଯ୍ୟ ନାହିଁ
ଗୋଲୋକ ତେଜ ମରତ ଭୁବନକୁ ଯାଅ
ମାନବ ଯୋନିରେ ବେଗ ହୋଇ ଜାତ ହୁଅ
ହେ ସୁଶୀଳା ଶଶୀକଳା ପଦ୍ମାବତୀ ତୁମ୍ଭେ
ନିବାର ଶଠକୁ ଆଜ୍ଞା ଦେଇଅଛୁ ଆମ୍ଭେ ।
ରାଧାଙ୍କ ବଚନ ଶୁଣି ସେ ଗୋପୀକା ଗଣ
ଶ୍ରୀକୃଷ୍ଣ ଚନ୍ଦ୍ରେ ଉପାୟ ଦେଲେ ବତାଇଣ ।
କେ ବୋଇଲା ମୋର ବୋଲ ମାନ କ୍ଷଣେମାତ୍ର
ଅପେକ୍ଷା କର ବାହାରେ ରହିଣ ଗୁପତ ।
ଦେବୀଙ୍କ ମନକୁ ଆମ୍ଭେମାନେ ବୋଧଲାଇ
ଭେଟ କରାଇବୁ ତବ ସନ୍ନିଧିରେ ନେଇ ।
କେ ବୋଇଲା ଦଣ୍ଡେ ମାତ୍ର ତୁହ ଧୈର୍ଯ୍ୟଧର
ତୁମ୍ଭଙ୍କୁ ତେଜ କି ବଞ୍ଚି ପାରିବେ ସୁନ୍ଦରୀ ।
ପୁଣି କେ ବୋଇଲେ ବୃନ୍ଦାବନେ କ୍ଷଣେ ରୁହ
ତାଙ୍କ ମନ ଆମ୍ଭେ ଶାନ୍ତ କରିବୁ ନିଶ୍ଚୟ ।
କେହୁ ପରିହାସ କରି ବୋଲଇ ବଚନ
ପାଦ ଧରି ଶ୍ରୀମତୀଙ୍କୁ କରାଅ ପ୍ରସନ୍ନ ।
କେ ବୋଇଲା ଅନ୍ୟ ସ୍ତ୍ରୀର ସେବେ ସୁଖେ ରୁହ
ସରଣୀ ତ୍ୟାଗ କରିବା ଫଳ ଏବେ ପାଅ ।
କେ ବୋଲେ ଯହିଁଲେ ଅବା ହେବ କେଉଁ ଫଳ
ନିକଟକୁ ଯାଇ ଉଠାଇଣ କର କୋଳ ।
ଦୁଷ୍ଟାମି କରିଣ କେଉଁ ଗୋପିକା କମ୍ପିଲେ
ଆଉ ନ ଦେଖିବ ରାଧା ମୁଖକୁ ବୋଇଲେ ।
କେ ବୋଇଲା ଦୂରଦେଶେ ରହ କିଛି ଦିନ
କୋପ ଶାନ୍ତ କଲେ ପ୍ରିୟା ଆସିବ କହନ ।
ଏହିପରି କହି ଗୋପୀଗଣ ଅକାତରେ
ନିବାରିଲେ ଶ୍ରୀକୃଷ୍ଣଙ୍କୁ ଯେ ଯାହା ମତରେ ।
ଶ୍ରୀବାମା ଶୁଣିଣ ତାହା ସହି ନ ପାରିଲେ
ଶ୍ରୀ ରାଧା ଦେବୀଙ୍କ ମୁଖ ଅନାଇଁ ବୋଇଲେ
ବୋଇଲେ ଗୋ ଦେବୀ ତୁମ୍ଭେ ନ କର ବିସ୍ମର
ବ୍ରହ୍ମାଣ୍ଡ ନାଥଙ୍କୁ ବୃଥା ତିରସ୍କାର କର ।
ଯାହାଙ୍କ କୃପାରେ ଆଜ ସକଳ ଜନରେ
ପୂଜ୍ୟା ହୋଇଅଛ ତୁମ୍ଭେ ତିନ ଜଗତରେ
ଦିବସ ରଜନୀ ସେବା କର ଯାହାଙ୍କର
ଜଗତେଶ୍ୱରୀ ହୋଇଛ ତାଙ୍କୁ ନିନ୍ଦା କର ।
ତୁମ୍ଭଙ୍କୁ ତ ସବୁ କଥା ଗୋଚର ଅଟଇ
ଅଧିକ ବୁଝାଇ ଅବା କି କହିବ ମୁହିଁ ।
ନିମିଷମାତ୍ରେକ ଇଚ୍ଛା କଲେ ଭଗବାନ
ତୁମ୍ଭ ପରି କୋଟି ରାଧା କରିବେ ସର୍ଜନ ।
ତେମନ୍ତ ପ୍ରଭୁଙ୍କୁ ଯାହା ନ ଚିହ୍ନୁଛ ତୁମ୍ଭେ
ଏଇଥି ନିମନ୍ତେ ଦୁଃଖ କରୁଅଛୁ ଆମ୍ଭେ ।
ବଇକୁଣ୍ଠ ଭବନରେ ଲକ୍ଷ୍ମୀ ଯାହାଙ୍କର
ସର୍ବଦା ସେବା କରନ୍ତି ପୂଜଣ ପଦ୍ମର ।
ଆବର ଭକତି ଭରେ ଦେବୀ ସରସ୍ୱତୀ
ସୁଧାସମ ଗୀତ ଗାଇ କରୁଛନ୍ତି ସ୍ତୁତି ।
ସକଳ ଜୀବରୂପିଣୀ ଦେବୀ ମହାମାୟା
ପ୍ରକୃତି ରୂପିଣୀ ଦେବୀ ସର୍ବବ୍ୟାପି କାୟା ।
ଯାହାଙ୍କୁ ସ୍ତୁତି କରନ୍ତି ଦେବଗଣ ସାଥେ
ତାହାଙ୍କ ମହିମା ତୁମ୍ଭେ ନ ଜାଣ କେମନ୍ତେ
ସକଳ ସୃଷ୍ଟି କରତା ବ୍ରହ୍ମା ଦେବପତି
ଚତୁର୍ମୁଖରେ ଯାହାଙ୍କ ନାମକୁ ଭଜନ୍ତି ।
ପାଞ୍ଚମୁଖେ ସଦାଶିବ ଯୋଗୀଗଣ ଗୁରୁ
ଯାହାଙ୍କ ସ୍ତବ ପଢନ୍ତି ସୃଷ୍ଟି ଆରମ୍ଭରୁ ।
ସେ ମହାପ୍ରଭୁଙ୍କୁ କର ଏତେ ଅବମାନନା
ମହା ଅପରାଧେ ଭାଗୀ ହେଉଅଛ କନା
ଦ୍ୱି ସହସ୍ର ଜିହ୍ୱା ସେନ ସହସ୍ର ବଦନ
ଅନନ୍ତ ଯାହାଙ୍କୁ ସଦା କରନ୍ତି ଭଜନ ।

ପୁଣି ଧର୍ମପୁତ୍ରଙ୍କ ସାକ୍ଷୀ ଧର୍ମ କରନ୍ତରେ
ଯାହାଙ୍କୁ ସେବା କରନ୍ତି ସନ୍ତୁଷ୍ଟ ଚିତ୍ତରେ ।
ଯାହାଙ୍କ ଅଂଶରେ ଜନ୍ମ ଦେବ ନାରାୟଣ
ଶ୍ୱେତଦ୍ୱୀପେ ବସି ସଦା କରନ୍ତି ଭଜନ
ସୁରାସୁର ମୁନିଋଷି ତାପସ ମାନବ
ଯାହାଙ୍କ ନାମ ଜପନ୍ତି ବହି ଭକ୍ତିଭାବ ।
ତାହାଙ୍କୁ ନ ଜାଣି ତୁହି କଥା ତିରସ୍କାର
କରୁଅଛ ଆଗୋ ଦେବୀ ମାନ ମୋର ଗିର ।
ଅନ୍ତର ମଧ୍ୟରୁ ସର୍ବ କ୍ରୋଧ ପରିହରି
ତାହାଙ୍କୁ ଭଜନ କର ଭକ୍ତିଭାବ ଧରି ।
ନିମିଷେ ପତନ ହେଲେ ଯେଉଁ ଦେବଙ୍କର
ବ୍ରହ୍ମାଙ୍କ ପତନ ହୋଇଥାଏ ବାରମ୍ବାର ।
ଯାହାଙ୍କର ଦିନେ ହେଲେ ଅଷ୍ଟବିଂଶ ଇନ୍ଦ୍ର
ପତିତ ହୁଅନ୍ତି କ୍ଷଣେ ନ ହୋଇଣ ବନ୍ଦ ।
ଏହିପରି ଅଷ୍ଟାଧିକ ଶତେକ ବରଷ
ଯେଉଁ ଜଗତ କର୍ତ୍ତାଙ୍କ ଅଟଇ ଆୟୁଷ ।
ତାହାଙ୍କୁ ତୁମ୍ଭେ କି ବସ୍ତୁ ଦେବୀ ତୁମ୍ଭପରି
ଏକଶତ ହେଲେ ମଧ୍ୟ କି ପାରିବେ କରି ।
ଶ୍ରୀଦାମା ଏହା କହନ୍ତେ ରାଧାଦେବୀଙ୍କର
ମନ ମଧ୍ୟରେ ଯେ କ୍ରୋଧ ହୋଇଲା ଅପାର
ତତକ୍ଷଣେ ଉଠି ତାଙ୍କ ମୁଖକୁ ଅନାଇଁ
ବେନି ନୟନକୁ ରଙ୍ଗ କରିଣ ବୁଲାଇ ।
ବୋଇଲେ ତୁହିରେ ମୂର୍ଖ ଅଟୁ ଜ୍ଞାନହୀନ
ବଡ଼ ବଡ଼ କରି କେତେ କହୁଛୁ ବଚନ ।
ଏକମାତ୍ର ତୁହି ଜାଣି ପାରୁ ସର୍ବ ଗିର
ଚିହ୍ନିବାକୁ ତୋ ପ୍ରଭୁଙ୍କୁ ଶକ୍ତି ନାହିଁ ମୋର ।
ପଳାପଳା ଏଠାରୁ କ୍ଷଣେହେଁ ନ ରହି
ତୋ ଠାକୁର କୃଷ୍ଣ ମୋର ନ ଅଟଇ କେହି
ଜାଣିଲି ତୋହର କଥା ମୂର୍ଖ ଭଳିକରି
ପିତାର ସେବକ ତୁହି ମାତା ତୋ ବଇରି
ଦାନବମାନେ ଯେପରି ଦେବତାଗଣଙ୍କୁ
ନିନ୍ଦା କରନ୍ତି ସର୍ବଦା ଦେଖାଇ ଗର୍ବକୁ ।
ସେହିପରି ତୁହି ଆସି ନିନ୍ଦା କରୁ ମୋରେ
ତେଣୁ ନିଷ୍ଟେ ଶାପ ମୋର ଫଳିବ ତୋଠାରେ
ଯେଣୁ ଦାନବ ସମାନ ବୁଦ୍ଧି ଅଟେ ତୋର
ମର୍ତ୍ତ୍ୟରେ ଦାନବ ରୂପେ ହୁଅ ଅବତାର ।
କ୍ରୋଧଭରେ ଯେଉଁ ଶାପ ଦେଇଅଛି ମୁହିଁ
ଏକଥା ଅନ୍ୟଥା କରି ନ ପାରିବେ କେହି ।
ଏମନ୍ତ କହିଣ ଦେବୀ ମଉନ ହୋଇଲେ
କ୍ରୋଧ ମନ୍ଦିରରେ ପୁଣି ଶୟନ କଲେ ।
ଯେଉଁ ସଖୀମାନେ ଥିଲେ ସନ୍ନିଧରେ ରହି
ଯେ ଯାହା ସେବା ଖଟିଲେ ପରସ୍ପର ଚହିଁ ।
ଏଣେ ଶ୍ରୀଦାମା ରାଧାଙ୍କ ଶାପ ଶୁଣି କର୍ଣ୍ଣେ
ଭଜାଣି ତାହାଙ୍କୁ ଶାପ ଦେଲା କ୍ରୋଧ ମନେ
ବୋଇଲେ ଯେଣୁ ମନୁଷ୍ୟ ପରି ତବ ଭାବ
ମାନବ ଯୋନିରେ ଯାଇ ହୁଅ ଯା ଉଦ୍ଭବ ।
ପରଗନ୍ଥା ହେବ ପୁଣି ପୃଥ୍ୱୀରେ କଳାରେ
କଳଙ୍କିନୀ ବୋଲାଇବ ବ୍ରହ୍ମାଣ୍ଡ ମଧ୍ୟରେ ।
ବିଷ୍ଣୁଙ୍କର ଅଂଶେ ଏକ ବୈଶ୍ୟ କୁଳେ ଜନ୍ମ
ହୋଇବ ପୁରୁଷ ଜଣେ ରାୟାଣ ତା ନାମ ।
ଗୋକୁଳେ ତାହାଙ୍କୁ ସେନ ବିବାହିବ ତୁମ୍ଭେ
ଯାହା କହିଲି ଅନ୍ୟଥା ନ ହୋଇବ କେବେ
କେତେକାଳପରେ ସେହି ଗୋକୁଳରେ ପୁଣି
ହେବ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ପ୍ରାଣର ଘରଣୀ ।
ଶତେକ ବର୍ଷ ଯାଏ କୃଷ୍ଣ ସଙ୍ଗମ ଅଭାବ
ହେବାରୁ ମହାକଷ୍ଟରେ ଦେହ ଧରି ଥିବ ।
ତଦନ୍ତେ ମାତ୍ର ଅଳପ କାଳ ସଙ୍ଗ ପାଇ
ଆସିବ ଗୋଲୋକେ ନର ଦେହ ଛାଡ଼ିଦେଇ ।
ଏମନ୍ତେ ଶାପ ଦେଇଣ ଶ୍ରୀଦାମା ଗୋପାଳ
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ପାଶେ କହିଲେ ସକଳ ।
ପୁଣି ତାଙ୍କ ପାଦେ ପଡ଼ି ଅପାର କାନ୍ଦିଲେ
ଯାଉଛି ମର୍ତ୍ତ୍ୟକୁ ବୋଲି ବିଦାୟ ମାଗିଲେ ।
ଦେଖି ଶ୍ରୀଦାମାଙ୍କ ଦଶା ବୋଇଲେ ମାଧବ
ସ୍ଥିର ହୋଇ ବସ ମନେ କିଛିହିଁ ନ ଭାବ ।
ଆମ୍ଭ ଦୟା ଯେବେ ରହିଥିବ ତବ ପ୍ରତି
ତିଳେ ମାତ୍ର କେହି କରି ନ ପାରିବେ କ୍ଷତି ।
ମର୍ତ୍ତ୍ୟରେ ହୋଇବ ତୁମ୍ଭେ ଦାନବ ରାଜନ
ତିନିପୁରେ କେହି ଜିଣି ନ ପାରିବେ ଜାଣ ।
ପୁଣି କେତେ କାଳପରେ ଶିବଙ୍କ ଶୂଳରେ
ବିନାଶ ହୋଇ ଆସିବ ଗୋଲୋକ ନଗରେ ।
ତାହା ଶୁଣିଣ ଶ୍ରୀଦାମା ଆଶ୍ୱାସନା ପାଇ
ବୋଇଲେ ତୁମ୍ଭର ଭକ୍ତ ସଦା ଥିବ ହୋଇ ।
ଭକ୍ତିରୁ କଦାପି ମୋତେ ଆନ ନ କରିବ
ତୁମ୍ଭ ପାଦପଦ୍ମେ ସଦା ମନ ରହିଥିବ ।

ଏମନ୍ତେ କୃଷ୍ଣଙ୍କୁ କହି ଯାଆନ୍ତେ ସେ ଚଳି
ଦୁଃଖିତ ହେଲେ ରାଧିକା ସେ କଥାକୁ ଭାଳି ।
ସେହି ଶ୍ରୀଦାମା ଯେ ଅଟେ ଶଙ୍ଖଚୂଡ଼ ବୀର
ତୁଳସୀ ଦେବୀ ହୋଇଲେ ପତ୍ନୀ ତାହାଙ୍କର ।
ଏହାପରେ ଆନଗାଥା ଶୁଣ ଦେଇ ମନ
ଶ୍ରୀଦାମାକୁ ଶାପ ଦେଇସାରି ମହାସତୀ ।
ମନ ମଧ୍ୟରେ କହନ୍ତି କ୍ଷଣ ଭାବି ଚିନ୍ତି
ରୋଷ ମଧ୍ୟରୁ ଉଠିଲେ ମାନକୁ ଘୁଞ୍ଚାଇ
ଭାବିଲେ ଆଜ ମୁଁ କେଡ଼େ ନୀଚକର୍ମ କଲି
ପଥର ପରାୟେ ଶାଳ ଗ୍ରାମକୁ ଫିଙ୍ଗିଲି ।
ଖାର ମଣିଣ କ୍ଷୀରକୁ କଲି ବର୍ଜନ
କାଞ୍ଚନକୁ କାଚ ସଙ୍ଗେ କଲି ଯେ ସମାନ ।
ଯେଉଁ ପ୍ରଭୁଙ୍କର ବଳେ ବଳୀୟାନ ହୋଇ
ଏ ଗୋଲୋକେ ରାସେଶ୍ୱରୀ ନାମ ଅଛି ବହି ।
ଯାହା ଦୟାବଳେ ଆଜ କୋଟି କୋଟି ଦାସୀ
ମୋହ ପାଦତଳେ ଖଟୁଛନ୍ତି ଅହର୍ନିଶି ।
ତାହାଙ୍କୁ ପୁଣି ମୁଁ ମୂଢ଼ ହେୟ ଜ୍ଞାନ କରି
ନାନା କଟୁ କଥାମାନ କହିଅଛି ଘୋର ।
ତେବେହେଁ ମୋପ୍ରତି ସେହୁ ନ ହୋଇ ନିର୍ଦ୍ଦୟ
ଦୋଷିପରେ ଉଗ୍ର ହୋଇଥାନ୍ତି ଦୟାମୟ ।
ଏହି ତିନିପୁରେ ଯେତେ ଜନ ଛନ୍ତି ରହି
ତାଙ୍କୁ ସନ୍ତୁଷ୍ଟ କରିବା ଭାର ଛନ୍ତି ବହି ।
ବିରଜା ଯେଣୁ ସେବାରେ କରିଅଛି ତୃପ୍ତ
ତାହାପ୍ରତି ପ୍ରଭୁ ହୋଇ ଅଛନ୍ତି ଆସକ୍ତ ।
ତାଙ୍କୁ ଦୋଷ ଦେବା ମୋର ଉଚିତ ନୁହଇଁ
ଯେଣୁ ଜଗତର ନାଥ ନାମଛନ୍ତି ବହି ।
ପୋଡ଼ି ଯାଉ ମୋର ମାନ ପୋଡ଼ି ମୋ ମହତ
ପୋଡ଼ିଯାଉ ମୋର ଗର୍ବ ଗୌରବ ସମସ୍ତ ।
ଏକମାତ୍ର ପ୍ରାଣପତି କୃଷ୍ଣ ଯେବେ ଥିବେ
ସକଳ ବୈଭବ ଆସି ପାଦରେ ଖଟିବେ ।
ଧନ୍ୟରେ ଶ୍ରୀଦାମା ଧନ୍ୟ ତୋହର ଭକତି
ଯେଣୁ କୃଷ୍ଣଚନ୍ଦ୍ର ମୋହ ପରେ ସଦା ତୃପ୍ତି ।
ଏହି ପରକାରେ ମନେ ପାଞ୍ଚି ରାଧାରାଣୀ
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ପାଶେ ପ୍ରବେଶିଲେ ଯାଇ ।
ଖଣ୍ଡେ ଦୂରରେ ଥାଇ ମାତ ହସି ଦର ଦର
ପାଦପଦ୍ମ ତଳେ ପଡ଼ି ବୋଇଲେକ ଗିର ।
ଯାହା ଯାହା ଅପରାଧ କରିଅଛି ମୁହିଁ
କ୍ଷମା ଦିଅ ଆହେ ପ୍ରାଣନାଥ ଦୟା ବହି ।
ଏହା ଶୁଣି କୃଷ୍ଣଚନ୍ଦ୍ର ବଢ଼ାଇଣ କର
ତୋଳି ଧରିଣ ରାଧାଙ୍କୁ ବୋଇଲେ ସଇର ।
କିବା ଛାର କଥା ପାଇଁ ମାଗୁଅଛ କ୍ଷମା
ମୋହ ଜାଣିବାରେ ତବ ଦୋଷ ନାହିଁ ଜମା ।
ମୁହିଁ ମଧ୍ୟ ସେହିକଥା ଭାବୁଥିଲି ଧନୀ
ତବ ସନ୍ନିଧିକୁ ଯାଇଥାନ୍ତି କ୍ଷମାପାଇଁ ।
ଥାଉ ଥାଉ ପ୍ରଭୁ ଆଉ ନ ଶୁଣା ଏ ଗିର
ସବୁ ଅପରାଧ କରିଅଛି ମୁଁ ମାତର
ସେ କଥାମାନ କେବେହେଁ ନ ଧର ମନରେ
ଦାସୀ ତୁଛି ଦୟାକର ବହନ୍ତୁ ସଇରେ ।
ଶୁଣି କୃଷ୍ଣଚନ୍ଦ୍ର ମନେ ହୋଇ ହରଷିତ
ଶ୍ରୀରାଧାଙ୍କୁ କୋଳେ ତୋଳି ନେଲେକ ତୁରିତ
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ କୋଳେ ବସି ରାସେଶ୍ୱରୀ
ବୋଇଲେ କୋମଳ ବାକ୍ୟେ ଦରହସି କରି ।
ଶ୍ରୀଦାମା ଗୋପାଳ ମୋତେ ଶାପ ଅଛି ଦେଇ
ମନୁଷ୍ୟ ଲୋକରେ ମୁହିଁ ଜାତ ହେବିଯାଇ ।
ଏହା ଶୁଣି କୃଷ୍ଣ ତାଙ୍କୁ କହିଲେ ବୁଝାଇ
ଭାବନା କରିବା ତବ ଉଚିତ ନୁହଇଁ ।
ମନୁଷ୍ୟ ଲୋକରେ ତୁମେ ହେବାବେଳେ ଜାତ
ମୁହିଁଯାଇ କରି ଦେବି ସବୁ ବନ୍ଦୋବସ୍ତ ।
ଏହାଶୁଣି ରାଧାଦେବୀ ଆନନ୍ଦ ହୋଇଲେ
ପୁଣ ପୁଣ ଶ୍ରୀକୃଷ୍ଣଙ୍କୁ ପ୍ରଣିପାତ କଲେ ।
ଶୁଣ ଆହେ ମୁନିବର ଦେଇ ମନକର୍ଣ୍ଣ
ଶ୍ରୀକୃଷ୍ଣ ରାଧାଙ୍କ ଗାଥା ଅଟଇଁ ମହାନ ।
ଶ୍ରୀକୃଷ୍ଣ ସଖା ଯେଉଁ ଶ୍ରୀଦାମା ଗୋପାଳ
ସେହି ଶଙ୍ଖଚୂଡ଼ ରୂପେ ଖ୍ୟାତ ଭୂମିତଳ ।
ରାଧା ଦେବୀ ସେହିପରି ବରାହ କଳ୍ପରେ
ବୃଷଭାନୁଙ୍କରସୁତା ହୋଇଲେ ଗୋପରେ ।
ପଚାରିଲ ଯାହା ମୋତେ ଦେଲଇଁ ବତାଇ
ଆଉ କିଛି ଥିଲେ ପୁଚ୍ଛ ମୋର ମନା ନାହିଁ ।
ଏମନ୍ତେ କହିଣ ମୁନି ହୋଇଲେ ମଉନ
ଶ୍ରୀଛନ୍ଦେ ଗ୍ରନ୍ଥ ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକା କର୍ତ୍ତୃକ ଶ୍ରୀଦାମଙ୍କର ଶାପ ବୃତ୍ତାନ୍ତ ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

## ଗୋଲୋକ ପୁରର ସମସ୍ତ ବର୍ଣ୍ଣନା

ଧାତା ନନ୍ଦନ ବୋଇଲେ ଶୁଣ ତପସ୍ୱୀ
କାହାର ପ୍ରାର୍ଥନା ଶୁଣି ପ୍ରଭୁ ଚକ୍ରଧାରୀ ।
ମାନବ ଲୋକରେ ଆସି ହୋଇଲେକ ଜାତ
ତାହାର କାରଣମାନ କହ ତପୋବନ୍ତ ।
ଶୁଣି ନାରାୟଣ ମୁନି ନାରଦଙ୍କ ଗିର
ମନ ମଧ୍ୟରେ ହରଷ ହୋଇଣ ଅପାର ।
ବୋଇଲେ ବରାହ କଳ୍ପେ ଭାରାକ୍ରାନ୍ତ ହୋଇ
ଅତ୍ୟନ୍ତ ଆକୁଳଚିତ୍ତରେ ଶୋକାକୁଳେ ମହୀ ।
ଧାତାଙ୍କ ସନ୍ନିଧେ ଯାଇ ପ୍ରବେଶ ହୋଇଲେ
ଚରଣ ତଳେ ତାହାଙ୍କ ନମସ୍କାର କଲେ ।
ଦେଖିଲେ ଆସନେ ବସିଛନ୍ତି ବେଦଧର
ବ୍ରହ୍ମ ତେଜରୁ ଜଳୁଛି ଶରୀର ତାଙ୍କର ।
ମୁନିଋଷି ସିଦ୍ଧଗଣେ ସେବା କରୁଛନ୍ତି
ଅପସରୀମାନେ ଆଗେ ନୃତ୍ୟ ଆରମ୍ଭନ୍ତି ।
ସଙ୍ଗୀତ ଗାନ କରିଣ ଗନ୍ଧର୍ବ ନିକର
ବଜାଉ ଅଛନ୍ତି ବାଦ୍ୟ ନାନା ପରକାର ।
ଧାତା ଆନନ୍ଦରେ ଦୃଷ୍ଟି ଦେଇ ତାଙ୍କ ପ୍ରତି
ଏଣେ ପରମ୍ ବ୍ରହ୍ମ ଲୟ ଲଗାଇ ଅଛନ୍ତି ।
ଏହି ସମୟରେ ମହୀ ଯୋଡ଼ି ବେନିକର
ବେନି ନୟନୁ ବୁହାଇ ଲୋତକର ଧାର ।
ଦେବତାଙ୍କର ସହିତେ ସ୍ତୁତି ଆରମ୍ଭିଲେ
ତାହା ଦେଖି ବେଦଧର ମହୀଙ୍କୁ ପୁଚ୍ଛିଲେ ।
କହ କହ ମହୀ କେଉଁ କାରଣରୁ ତୁହି
ମୋହ ନିକଟକୁ ଏତେଦୂର ଆସିଛୁଇଁ ।
ପୁଣି କାହିଁପାଇଁ କୁହ କରୁଛୁ ରୋଦନ
କ୍ରନ୍ଦନ ବନ୍ଦ କରିଣ କହ ତା ବହନ ।
ଏହି ପରକାରେ ପୃଥିବୀକୁ ପଚାରିଣ
ଦେବତା ମାନଙ୍କୁ ପୁଣି ପୁଚ୍ଛିଲେ ତକ୍ଷଣ ।
କୁହ କୁହ ତୁମ୍ଭେମାନେ ଆସିଛ କିମ୍ପାଇ
କେବଣ ବିପଦ ସ୍ୱରଗରେ ପଡ଼ିଛଇଁ ।
ତାହାଙ୍କ ବଚନ ଶୁଣି ସକଳ ଅମର
ଧରଣୀକୁ ସର୍ବାଗ୍ରେ ରଖି ଶିରେ ଦେଇ କର ।

ବୋଇଲେ ଭ୍ରୋଦେବ ଆମ୍ଭେ ଦୈତ୍ୟଙ୍କ ପୀଡ଼ାରେ
ରକ୍ଷା ନ ପାଇ ଆସିଲୁ ତବ ପାଶେ ଖରେ ।
ତୁମ୍ଭେ ତ କାରଣ ଏକ ମାତ୍ର ତ୍ରିପୁରର
ଖଣ୍ଡନ କରନ୍ତୁ ବେଗେ ବିପଦ ଆମ୍ଭର ।
ଧରା ସହିତରେ ଆମ୍ଭେ ସକଳ ଦେବତା
ପୀଡ଼ିତ ହୋଇଛୁ ଜାଣ ଆହେ ସୃଷ୍ଟିକର୍ତ୍ତା ।
ତାହାଙ୍କ ମୁଖରୁ ଏହା ଶୁଣି ବେଦବର
ବୋଇଲେ ମୋହର ବାକ୍ୟେ ଭୟ ତ୍ୟାଗକର
କୁହ କାହା ଯୋଗେ ଭୟ କରୁଅଛ ତୁମ୍ଭେ
ତାର ପ୍ରତିକାର ନିଶ୍ଚେ କରାଇବା ଆମ୍ଭେ ।
ପୃଥିବୀ ବୋଇଲେ ପିତା ମାନସିକ ବ୍ୟଥା
ଅପର ଜନେ କହିବା ଅଟେ ସିନା ବୃଥା ।
ନିଜର ବାନ୍ଧବ ଆଗେ କହିବା ଉଚିତ
ଏରୂପେ ନିୟମମାନ ଅଛଇ ହେ ତାତ ।
ଯାହାଠାରୁ ମୁହିଁ ପୀଡ଼ା ପାଉଅଛି ଅତି
ସେ କଥାମାନ କହୁଛି ଶୁଣ ବେଦପତି ।
ଯେଉଁମାନେ ଶ୍ରୀକୃଷ୍ଣଙ୍କ ଭକତି ବହିନ
କୃଷ୍ଣ ଭକତଙ୍କୁ ଅବା କରନ୍ତି ନିନ୍ଦନ ।
ସେମାନେ ମହାପାତକୀ ସଂସାରେ ଅଟନ୍ତି
ତାଙ୍କୁ ବହିବାରେ ମୁହିଁ ପୀଡ଼ା ପାଏ ଅତି ।
ଧର୍ମହୀନ ନିଗୋଚର ଜ୍ଞହୀନ ଯେ ଜନ
ସେମାନଙ୍କ ଭାରେ ପୀଡ଼ା ପାଏ ମୁହିଁ ଜାଣ ।
ଯେବଣ ଜନେ କୁଟୁମ୍ବ ପୋଷି ନ ପାରନ୍ତି
ତାହାଙ୍କ ଭାରରେ ପୀଡ଼ା ପାଏ ମୁହିଁ ଅତି ।
ସତ୍ୟହୀନ ଦେବଗୁରୁ ନିନ୍ଦୁକ ଯେ ଜନ
ନକରି ପାରଇ ମୁହିଁ ତାହାଙ୍କୁ ବହନ ।
ମିତ୍ରଦ୍ରୋହୀ ମିଥ୍ୟାସାକ୍ଷୀ ବିଶ୍ୱାସଘାତକ
ଅଟଇ ଯେ ମୋତେ ଭାରଲାଗେ ସେହିଲୋକ
ଜୀବଘାତୀ ଗୁରୁଦ୍ରୋହୀ ଗ୍ରାମ୍ୟଯାଜୀ ନର
ଲୁବ୍ଧକ ଶୂଦ୍ର ଯାଜୀଙ୍କୁ ମଣଇଁ ମୁଁ ଭାର ।
ଚୂଡ଼ାପଞ୍ଚ ଉପବାସ ବ୍ରତାଦି ରହିତ
ଅଟନ୍ତି ଯେ ତାଙ୍କ ଭାରେ ହୁଏ ମୁଁ ପୀଡ଼ିତ ।

ଦ୍ୱେଷ କରନ୍ତି ଯେ ସୁର ଦ୍ୱିଜ ବୈଷ୍ଣବଙ୍କୁ
ଘୋର ବୋଲି ଭାବନା ମୁଁ କରଇ ତାହାଙ୍କୁ
ପ୍ରବଳ ପ୍ରତାପୀ ଶଙ୍ଖ ଆଦି ଦୈତ୍ୟଗଣ
ପୀଡ଼ା ଦେଉଅଛନ୍ତି ସର୍ବେ କେବଳ ମୋତେ ଜାଣ
ଅନାଥା ପରାୟେ ହୋଇ ତୁମ୍ଭ ନିକଟରେ
ଶରଣ ପଶୁଛି ଏବେ ରକ୍ଷା କର ବାରେ
ଏରୂପେ କହି ପୃଥିବୀ କରନ୍ତେ ରୋଦନ
ପ୍ରବୋଧନା କରି ତାଙ୍କୁ କମଳ ଆସନ ।
ବୋଇଲେ ଭାର ହରଣ କରିବ ଈଶ୍ୱର
ସେଥିପାଇଁ ତୁମ୍ଭେ କିଛି ଭାବନା ନ କର ।
ଉପାୟ କରିବା ଯେଉଁରୂପେ ହେବ ଶାନ୍ତ
ଉପାୟରେ କାର୍ଯ୍ୟ ସିଦ୍ଧି ହୁଏ ବସୁମତି ।
ଜଗତ ଈଶ୍ୱର ପ୍ରଭୁ ସ୍ୱୟଂ ନାରାୟଣ
ଅବଶ୍ୟ କରିବେ କାଳେ ଦୁଃଖ ନିବାରଣ ।
ଯନ୍ତ୍ର ମଙ୍ଗଳ କଳସ କୁଙ୍କୁମ ଚନ୍ଦନ
ଶିବଲିଙ୍ଗ ମଧୁଭାଣ୍ଡ କସ୍ତୁରିକା ପୁଣ ।
ତୀର୍ଥ ମୃତ୍ତିକା ଖଡ଼ଗ ଘଣ୍ଟିକ ରୁଦ୍ରାକ୍ଷ
ମରକତ ଚନ୍ଦ୍ରମଣି ଶାଳଗ୍ରାମ ମୁଖ୍ୟ ।
ସୂର୍ଯ୍ୟକାନ୍ତମଣି କୁଶମୂଳ ଯେ ତୁଳସୀ
ପ୍ରତିମା ଉତ୍ତଳ ଶଙ୍ଖ ପ୍ରଦୀପକ ରାଶି ।
ଘଣ୍ଟିକା ନୈବେଦ୍ୟ ପୁଣ ହରିଦ୍ରବର୍ଣ୍ଣ ମଣି
ଗ୍ରନ୍ଥଯୁକ୍ତ ଯଜ୍ଞସୂତ୍ର ଶ୍ୱେତଚନ୍ଦନ ଶ୍ରେଣୀ ।
ଶୁକଳ ଚାମର ମୁକ୍ତା ଗୋରଚନାବଳୀ
ଶୁକ୍ତି ମାଣିକ୍ୟ କର୍ପୂର ବହ୍ନି ଅର୍ଘ୍ୟଥାଳୀ ।
ସୁବର୍ଣ୍ଣ ସଂହିତା ରତ୍ନ ରଜତ ପ୍ରବାଳ
କୁଶ ଦ୍ୱିଜ ଧେନୁ ମୃଗ ଗବ୍ୟ ତୀର୍ଥ ଜଳ ।
ଏମାନେ ତୁମ୍ଭ ଉପରେ ରଖନ୍ତି ଯେ ମୂଢ଼
ଅନ୍ତଃକାଳେ ବସନ୍ତି ସେ ପିପୀଲିକା କୁଣ୍ଡ ।
ଆଉର ଅପୂର୍ବ ବର୍ଷ କାଳସୂତ୍ରେ ପଡ଼ି
ମହାଘୋର କଷ୍ଟ ସହି ଯାଉଥାନ୍ତି ସଡ଼ି ।
ଏହିରୂପେ ଆଶ୍ୱାସନା କରିଣ ପୃଥ୍ୱୀଙ୍କୁ
ଗଲେ ପ୍ରଜାପତି ମହାଦେବଙ୍କ ପୁରକୁ ।
ଦେଖିଲେ ଦିବ୍ୟଆଶ୍ରମେ ଅକ୍ଷୟବଟ ମୂଳେ
ବସିଅଛନ୍ତି ଶଙ୍କର ସହଚର କୂଳ ।
ପରିଧାନ କରିଛନ୍ତି ବ୍ୟାଘ୍ର ଦେହ ଚର୍ମ
ଦକ୍ଷକନ୍ୟା ଅସ୍ଥିମାଳା ଶରୀରେ ଧାରଣ ।
ପଞ୍ଚମୁଖ ତ୍ରିଲୋଚନ ଜଟାଳ ଶୋଭିତ
ତ୍ରିଶୂଳ ପଟ୍ଟିଶ ଆଦି ଧରନ୍ତି ହସ୍ତ ।
କେତେ ବନ୍ଦନ୍ତି ମାନେ ସିଦ୍ଧ ଯୋଗୀଗଣ
ନୃତ୍ୟ କରୁଛନ୍ତି ସ୍ୱର୍ଗବେଶ୍ୟାଏ ଆସିଣ ।
ଗନ୍ଧର୍ବଗଣ ସୁସ୍ୱରେ ଗାଉଛନ୍ତି ଗୀତ
ଶ୍ରବଣ କରନ୍ତି ତାହା ଦେଇକରି ଚିତ୍ତ ।
ପଞ୍ଚମୁଖେ ଶ୍ରୀହରିଙ୍କ ନାମର ସ୍ମରଣ
କରୁଛନ୍ତି ପୁଲକିତ ଅଙ୍ଗେ ପୁନଃପୁନଃ ।
ମନ୍ଦାକିନୀ ପଦ୍ମବୀଜ ମାଳା ଘେନି କରେ
ଜପ କରୁଛନ୍ତି କୃଷ୍ଣ ମନ୍ତ୍ର ସଧୀରେ ।
ଏମନ୍ତ ସମୟେ ବ୍ରହ୍ମା ତାଙ୍କ ଆଗେ ଥାଇ
ନମସ୍କରିଲେ ପୃଥ୍ୱୀ ସହି ଦେବତାଙ୍କୁ ନେଇ ।
ସେମାନଙ୍କୁ ଦେଖି ଶିବ ହରଷରେ ଉଠିଲେ
ଯଥାବିଧି ସମ୍ମାନନା ବିଧାତାଙ୍କୁ କଲେ ।
ଶିବଙ୍କ ପାଦରେ ନମି ସକଳ ଦେବତା
ପୃଥିବୀ ସହିତେ ସ୍ତୁତି କଲେ ଗୁଢ଼ ଚିନ୍ତା ।
ଆଶୀର୍ବାଦ କରି ହର ଆନନ୍ଦିତ ହେଲେ
ବ୍ରହ୍ମାଙ୍କ ଏଥିଁ ଆସିବା କାରଣ ପଚ୍ଛିଲେ ।
ଆମୂଳ ଚରି ସମସ୍ତ କହିଲେ ବିଧାତା
ଶଙ୍କର ଶୁଣିଲେ ଯାବନ୍ତ ହୋଇଲେ ଦୁଃଖିତା
ସେ ଅନନ୍ତର ବ୍ରହ୍ମା ଶିବ ଦୁହେଁ ମିଶିକରି
ପୃଥ୍ୱୀ ସଙ୍ଗେ ଦେବତାଙ୍କୁ କହି ନାନାମତି ।
ପ୍ରବୋଧନା କରି ତହୁଁ ଫେରାଇଣ ଦେଲେ
ଦୁହେଁ ଯାଇ ଧର୍ମଙ୍କର ମନ୍ଦିରେ ମିଳିଲେ ।
ଆଲୋଚନା କରି ତାଙ୍କ ସହିତେ କ୍ଷଣେ
ମିଳିଲେ ସମସ୍ତେ ଯାଇଁ ହରିଙ୍କ ଭବନେ ।
ଦେଖିଲେ ସେ ବୈକୁଣ୍ଠପୁର ମନୋହର
ବାୟୁରେ ଧାର୍ଯ୍ୟ ହୋଇଛି ବ୍ରହ୍ମାଣ୍ଡ ଉପର
ବ୍ରହ୍ମଲୋକରୁ କୋଟିଏ ଯୋଜନ ଊର୍ଦ୍ଧ୍ୱରେ
ରହିଛି ସେ ପୂର୍ଣ୍ଣ ହୋଇ ସ୍ୱର୍ଣ୍ଣ ରତନରେ ।
ପଦ୍ମରାଗ ଚନ୍ଦ୍ରମଣି କୋଟି କୋଟି
ସେ ଭୁବନ ମଧ୍ୟ ଆସି ହୋଇଛନ୍ତି ଗୋଟି ।
ଏମନ୍ତ ଯେ ଶ୍ରୀହରିଙ୍କ ଭୁବନ ବହିରେ
ପ୍ରବେଶ ହେଲେ ସେମାନେ କ୍ଷଣକ ମଧ୍ୟରେ ।
କ୍ରମେ ଯାଇ ପୁଣି ଅନ୍ତଃପୁରେ ଉପସ୍ଥିତ
ହେଲେ ପୃଥିବୀ ସହିତେ ସକଳ ଦେବତ ।

ଦେଖିଲେ ଉତ୍ତମ ରତ୍ନସିଂହାସନ ପରେ
ବସି ଅଛନ୍ତି ହରି ହରଷ ମନରେ ।
ରତ୍ନାଙ୍କେୟୂର ବଳୟ ରତନ ନୂପୁର
ଶୋଭା ପାଉଛନ୍ତି ହସ୍ତ ପାଦେ ତାହାଙ୍କର ।
କର୍ଣ୍ଣଯୋଗେ ସ୍ୱର୍ଣ୍ଣମୟ ମକର କୁଣ୍ଡଳ
ଥିବାରୁ ଝଟକୁଅଛି ବେନି ଗଣ୍ଡସ୍ଥଳ ।
ପୀତବସ୍ତ୍ର ପରିଧାନ କରିଛନ୍ତି ଅଙ୍ଗେ
ବନମାଳା ଶୋଭା ପ୍ରକାଶଇ ତାହା ସଙ୍ଗେ ।
ଶାନ୍ତମୂର୍ତ୍ତି ପ୍ରଭୁ ଲକ୍ଷ୍ମୀ ସରସ୍ୱତୀ ପତି
କୋଟି କନ୍ଦର୍ପ ସମାନ ଦିଶେ ଦେହକାନ୍ତି ।
ଚତୁର୍ଭୁଜ ସ୍ମିତମୁଖ ପାର୍ଷଦ ସେବିତ
ସକଳ ଅଙ୍ଗ ହୋଇଛି ଚନ୍ଦନ ଚର୍ଚ୍ଚିତ ।
ଏମନ୍ତ ଯେ କୃଷ୍ଣ ତାଙ୍କୁ ଦେଖି ବ୍ରହ୍ମା ହର
ପ୍ରଣମିଲେ ପୁଣି ତହିଁ ଦେବତା ନିକର ।
ସେ ଅନ୍ତରେ ପ୍ରଜାପତି କରଯୋଡ଼ି ଶିରେ
ସ୍ତୁତି ଆରମ୍ଭିଲେ ଭକ୍ତି ବନ୍ଧଣ ଅନ୍ତରେ ।
ବୋଇଲେ ନମସ୍ତେ ଦେବ ଶ୍ରୀକମଳାକାନ୍ତ
ସର୍ବେଶ୍ୱର ସର୍ବମୟ ସର୍ବରୂପ ଶାନ୍ତ ।
ତୁମ୍ଭ ଅଂଶ କଳାରେ ଯେ ସର୍ବସୁରଗଣ
ମୁନିମାନଙ୍କ ଦାନବ ଜନ୍ମର କାରଣ ।
ଜାତ ହୋଇଛନ୍ତି ଆହେ ତ୍ରିଜଗତପତି
ପ୍ରସନ୍ନ ହୋଇଣ ଘେନ ଆମ୍ଭର ବିନତି ।
ଶଙ୍କର ବୋଇଲେ ଦେବ ପରମପୁରୁଷ
ଅବ୍ୟକ୍ତ ଅକ୍ଷର ସର୍ବରୂପ ସର୍ବେଶ ।
ଅଣିମାଦି ସିଦ୍ଧି ହେତୁ ସକଳ କାରଣ
ସିଦ୍ଧିପ୍ରଦ ଜ୍ଞାନମୟ ଦେବ ଜନାର୍ଦ୍ଦନ ।
ସେ ଅନ୍ତେ ଧର୍ମ ଦେବତା ଯୋଡ଼ି ବେନିକର
ବୋଇଲେ ଶ୍ରୀନାରାୟଣ ତ୍ରୈଲୋକ୍ୟ ଈଶ୍ୱର
ବେଦରେ ଅବାଚ୍ୟ ଅଟେ ଯେ ତୁମ୍ଭର ରୂପ
ଆଦିର ନିତ୍ୟ ନିର୍ଗୁଣ ସର୍ବଜ୍ଞ ସ୍ୱରୂପ ।
ତାହାର ବର୍ଣ୍ଣନା ଅବା କେ ପାରିବ କରି
ଆମ୍ଭର ବିନତି ଘେନ ଦେବ ନରହରି ।
ଏହିରୂପେ ବ୍ରହ୍ମାରୁଦ୍ର ଧର୍ମ ଦେବଙ୍କର
ସ୍ତୁତିପାଠ ପାରାୟଣ କରେ ଯେଉଁ ନର ।
ସମସ୍ତ ବିଘ୍ନବିନାଶ ହୁଅଇ ନିଶ୍ଚିତ
ସିଦ୍ଧି ହୁଏ ପୁଣି ତାର ମାନସ ବାଞ୍ଛିତ ।

ବ୍ରହ୍ମାଦି ଦେବଙ୍କଠାରୁ ସ୍ତବନକୁ ଶୁଣି
ଆନନ୍ଦିତ ହୋଇ ପ୍ରଭୁ ଶଙ୍ଖ ଚକ୍ର ପାଣି
ବୋଇଲେ ହେ ଦେବଗଣ ଗୋଲୋକକୁ ତୁମ୍ଭେ
ଯାଅ ଆଗ ତୁମ୍ଭ ପଛେ ଯାଉଅଛୁ ଆମ୍ଭେ ।
ଶ୍ୱେତଦ୍ୱୀପରୁ ଯେ ନର ନାରାୟଣ ଦୁହେଁ
ଲକ୍ଷ୍ମୀ ସରସ୍ୱତୀ ମିଶି ଯିବେ ସେ ସ୍ଥଳହେଁ ।
ଆଉର ଅନନ୍ତ ମୋର ମାୟା ବଇଷ୍ଣବୀ
ବେଦଜନନୀ ଅଟନ୍ତି ଯେ ସାବିତ୍ରୀ ଦେବୀ ।
ଗଣେଶ କାର୍ତ୍ତିକ ବେନି ଦେବଙ୍କ ସହିତ
ଉପସ୍ଥିତ ହେବେ ତୁମ୍ଭ ପାଶରେ ତ୍ୱରିତେ ।
ଦ୍ୱିଭୁଜ ଶ୍ରୀକୃଷ୍ଣରୂପେ ଗୋଲୋକକୁ ମୁହିଁ
ରାଧିକା ଗୋପୀଙ୍କ ସଙ୍ଗେ ଘେନିଣ ଅଛଇ ।
ଏହିଠାରେ ସୁନନ୍ଦାଦି ପାର୍ଷଦଙ୍କୁ ଘେନି
ବୋଲାଉଅଛନ୍ତି ଲକ୍ଷ୍ମୀ ସରସ୍ୱତୀ ଯାନି ।
ଶ୍ୱେତଦ୍ୱୀପେ ନାରାୟଣ ରୂପରେ ମୁଁ ଅଛି
ମୋର ଆଦିଅନ୍ତ କେହି ନ ଜାଣନ୍ତି କିଛି ।
ଅଂଶ କଳାରୁ ଉତ୍ପନ୍ନ ସୁରାସୁର ନରେ
ହୋଇଛନ୍ତି ଜାଣ ଏହି ଜଗତ ମଧ୍ୟରେ ।
ଏ ସକାଶୁଁ ତୁମ୍ଭେ ଏବେ ଗୋଲୋକକୁ ଯାଇ
ମୁଁ ଯିବା ପର୍ଯ୍ୟନ୍ତ ସେହିଠାରେ ଥାଅ ରହି ।
ଏରୂପେ କହିଣ ସଭା ମଧ୍ୟରେ ଶ୍ରୀହରି
ବିରତ ହୋଇଲେ ଜାଣ ଆହେ ତପସ୍ୱୀ ।
ଦେବତାମାନେ ତାହାଙ୍କଠାରୁ ଏହା ଶୁଣି
ଗୋଲୋକ ପୁରକୁ ଗଲେ ଘେନିଣ ମେଲାଣି ।
ଦେଖିଲେ ସେ ପୁର ଅଟେ ଅତ୍ୟନ୍ତ ସୁନ୍ଦର
ପାଞ୍ଚଶକୋଟି ଯୋଜନ ବିସ୍ତୃତ ତାହାର ।
ଈଶ୍ୱର ଇଚ୍ଛାରେ ସେହୁ ଅଟଇ ନିର୍ମିତ
ଅନିର୍ବଚନୀୟ ନାନା ଶୋଭାରେ ରଞ୍ଜିତ ।
ସେଠାରେ ପ୍ରବେଶ ହୋଇ ସର୍ବ ଦେବଗଣ
ବିରଜା ନଦୀକୁ ଆଗେ ଦେଖିଲେ ସେ ପୁଣ ।
ଶୁଦ୍ଧସ୍ଫଟିକ ପରାଏ ଦିଶଇ ତା ଜ୍ୟୋତି
ସୁବିସ୍ତୀର୍ଣ୍ଣ ସୁନିର୍ମଳ ମନୋହର ଅତି ।
ସ୍ଥଳ ପାଶେ ମୁକ୍ତାମଣି ନାନାବିଧ ରତ୍ନ
ବିରାଜନ୍ତି ବସିବାରୁ ହୋଇ ଅତି ଯତ୍ନ ।
ପ୍ରବାଳ ଅମୂଲ୍ୟ ରତ୍ନାକର କେଉଁଠାରେ
ଶୋଭା ପାଉଅଛି ପଦ୍ମରାଗ ସହିତରେ ।

କେଉଁଠାରେ ରକ୍ତପୀତ ନୀଳବର୍ଣ୍ଣ ମଣି
ଅଛି କେଉଁଠାରେ ଦିବ୍ୟ କଉସ୍ତୁଭ ଶ୍ରେଣି ।
କେଉଁ କେଉଁ ସ୍ଥାନେ ରମ୍ୟ କ୍ରୀଡ଼ାରଙ୍ଗ ସ୍ଥଳ
ବିବିଧ ରତ୍ନଗଣରେ ଦିଶଇ ଉଜ୍ଜ୍ୱଳ ।
ଏରୂପେ ବିରଜାନଦୀ ରୂପ ଦେଖି କରି
ଆଶ୍ଚର୍ଯ୍ୟ ହୋଇଣ କ୍ରମେ ହେଲେ ତାକୁ ପାରି
ସେ ଅନ୍ତେ ଦେଖିଲେ ଶତଶୃଙ୍ଗ ଗିରିବର
ପାରିଜାତ ତରୁଗଣେ ଦିଶଇ ସୁନ୍ଦର ।
ଆବର ବହୁତ କାମଧେନୁ କଳ୍ପବୃକ୍ଷ
ଥିବାରୁ ଯେ ହୋଇଅଛି ଶୋଭାର ସପକ୍ଷ
କୋଟିଏ ଯୋଜନ ଉଚ୍ଚ ଦୈର୍ଘ୍ୟ ଦଶଗୁଣ
ପ୍ରସ୍ଥ ପ୍ରମାଣ ଅଟଇ କୋଟିଏ ଯୋଜନ ।
ଶିଖର ଦେଶରେ ରାସମଣ୍ଡଳ ଶୋଭିତ
ବର୍ତ୍ତୁଳ ଆକାର ବଶ ଯୋଜନ ବିସ୍ତୃତ ।
ସୁଗନ୍ଧ ପୁଷ୍ପମଣ୍ଡିତ କୁସୁମ ଉଦ୍ୟାନ
ନାନାଜାତି ବୃକ୍ଷଗଣେ ଦିଶେ ଶୋଭାବନ ।
କୋକିଳ ମଧୁପବୃନ୍ଦ ଆନନ୍ଦ ମନରେ
ଭ୍ରମଣ କରନ୍ତି ଏଣେ ତେଣେ ନିରନ୍ତରେ ।
ରତନ ଖଚିତ ଦିବ୍ୟ ସୁରଚିତ ମନ୍ଦିର
ମଣ୍ଡପ ସହିତେ ଦିଶୁଅଛି ମନୋହର ।
ସୁବର୍ଣ୍ଣ ସୋପାନ ରତ୍ନ କଳଶ ଅନେକ
ହୀରକ ମଣି କିରଣେ ଦିଶେ ଜକ ଜକ ।
ସିନ୍ଦୂର ବରନ ମଣି ସ୍ତମ୍ଭପାଶେ ସାଜେ
ମଧ୍ୟଦେଶେ ଇନ୍ଦ୍ର ନୀଳମଣିଟଣ ରାଜେ ।
ସୁବର୍ଣ୍ଣ ପ୍ରାକାର ରତ୍ନ ଦୁଆର କବାଟ
ରଜତ କଣ୍ଟକ ତହିଁ ଦିଶେ ଝଟ ଝଟ ।
କଦଳୀସ୍ତମ୍ଭ ରସାଳ ପଲ୍ଲବ ତୋରଣ
ବାହ୍ୟଦେଶରେ ଥାଇଣ ଦିଶେ ମନୋରମ ।
କସ୍ତୁରୀ କୁଙ୍କୁମ ଦିବ୍ୟଚନ୍ଦନ ଚର୍ଚ୍ଚିତ
ହେବାରୁ ଶୋଭିତ ଦିଶୁଅଛି ରାଜପଥ ।
ପୁର ରହିଛନ୍ତି ତହିଁ ଗୋପକନ୍ୟାଗଣ
ଭିଡ଼ିଛନ୍ତି ଅଙ୍ଗଦେଶେ ନାନା ଆଭରଣ ।
ରତ୍ନ କେୟୂର ନୂପୁର ସୁବର୍ଣ୍ଣ କୁଣ୍ଡଳ
ରତନ ଅଙ୍ଗୁରୀୟକ ରତ୍ନହେମମାଳ ।
ଆବର ରତ୍ନମୁକୁଟ ପାଶକ ଭୂଷଣ
ଯୁକ୍ତ ହୋଇଛନ୍ତି ଦିବ୍ୟ ମୁକ୍ତାମଣିଗଣ ।

ଗଜେନ୍ଦ୍ର ମୌକ୍ତିକ ନାସା ମଧ୍ୟରେ ଶୋଭିତ
ଲଲାଟ ଦେଶେ ସିନ୍ଦୂର ବିନ୍ଦୁ ବିରାଜିତ ।
ସଦ୍ବୃତ୍ତ ଶରୀର ସ୍ୱଚ୍ଛଚମ୍ପକ ବରନ
ସର୍ବେ କରିଛନ୍ତି ପୀତବସ୍ତ୍ର ପରିଧାନ ।
ଶରତ ଚନ୍ଦ୍ରମା ପ୍ରଭା ସଦୃଶ ବଦନ
ନୀଳୋତ୍ପଳ ଦଳ ତୁଲ୍ୟ ବିଶାଳ ଲୋଚନ
କସ୍ତୁରୀ କୁଙ୍କୁମ ପତ୍ର ଲଲାଟ ଦେଶରେ
ଶୋଭଇ ମାଳତୀମାଳା କେଶପାଶ ପରେ ।
କୁସୁମ ଲିପ୍ସେ ଲୋଲୁପ ମଧୁପ ନିକର
ଭ୍ରମଣ କରନ୍ତି ତାହା ପାଶେ ନିରନ୍ତର ।
ଗମନରେ ଗଜ ଖଞ୍ଜରୀଟ ଗତି ଜିଣି
ବର୍ଣ୍ଣନ ମାତ୍ରକେ ମନ ନେଉଛନ୍ତି କିଣି ।
ସସ୍ମିତ ବଦନ ନେତ୍ର କଟାକ୍ଷ ସାକ୍ଷିତ
ହରଣ କରିପାରେ ଯେ ଯୋଗୀଜନ ଚିତ୍ତ ।
ପକ୍ୱ ଦାଡ଼ିମ୍ବର ବୀଜତୁଲ୍ୟ ଦନ୍ତପନ୍ତି
ଉନ୍ନତ ନାସାରେ ମୁଖ ଶୋଭାପାଏ ଅତି ।
କଠିନ ପୀବର ସ୍ତନଭରେ ଅବନତ
ନିତମ୍ବ ଉରୁଯୁଗରେ ଦିଶନ୍ତି ଶୋଭିତ ।
କନ୍ଦର୍ପ ସାୟକେ ଚିତ୍ତ ଜର୍ଜ୍ଜରିତ କରି
ମୁଖ ସୌନ୍ଦର୍ଯ୍ୟ ଦେଖନ୍ତି ଦରପଣ ଧରି ।
ରାଧାଙ୍କ ସେବାରେ ମନଦେଇ ନିରନ୍ତର
ହୋଇଛନ୍ତି ତାଙ୍କ ଆଜ୍ଞା ପାଳନେ ତତ୍ପର ।
ରହିଅଛି ସ୍ଥାନେ ସ୍ଥାନେ କ୍ରୀଡ଼ା ସରୋବର
ଫୁଟିଛନ୍ତି ଶ୍ୱେତ ରକ୍ତପଙ୍କଜ ନିକର ।
ଗୁଣୁ ଗୁଣୁ ରବ କରି ମଧୁକରବୃନ୍ଦ
ବୁଲି ବୁଲି ପାନ କରୁଛନ୍ତି ମକରନ୍ଦ ।
ସହସ୍ର କୋଟି ସଂଖ୍ୟକ କୁସୁମ ଉଦ୍ୟାନ
କୁଞ୍ଜଲତା ଯୁକ୍ତ ହୋଇ ଦିଶନ୍ତି ଶୋଭନ
ତାମ୍ବୁଳ ବସନ ଆଦି ଭୋଗ ଦ୍ରବ୍ୟଗଣ
ରହିଛନ୍ତି କାନ୍ତି ଶ୍ୱେତ ଚାମର ଦର୍ପଣ ।
ବିଚିତ୍ର କୁସୁମମାଳା ଲମ୍ବି ସ୍ଥାନେ ସ୍ଥାନେ
ଦିଶୁଅଛି ଦେବ ସ୍ୱର୍ଗ୍ୟ ମନ୍ଦିର ସମାନେ ।
ସେ ରାସମଣ୍ଡଳ ଦେଖି ତହୁଁ ଚଳିଗଲେ
ବିଲକ୍ଷଣ ରମ୍ୟବନ କୋଟିଏ ଦେଖିଲେ ।
ବୃନ୍ଦାବନ ବୋଲି ଅଟେ ସେ ବନର ନାମ
ରାଧା ମାଧବଙ୍କର ସେ ଅଟେ କ୍ରୀଡ଼ା ଧାମ ।

ଫଳଭରା ନମ୍ର ତଟରେ ଅବସ୍ଥିତ ସେହି
କୁସୁମିତ ହୋଇଛନ୍ତି ବୃକ୍ଷଗଣ ତହିଁ ।
କୋକିଳ କପୋତ ଡାଳେ ବସି ମୃଦୁ ସ୍ୱରେ
ଗାନ କରୁଛନ୍ତି ତୋଷ ଜନ୍ମାଇ ମନରେ ।
କେଉଁଠାରେ ମନୋରମ କଦମ୍ବ କାନନ
ଦିଶୁଅଛନ୍ତି ଉଚ୍ଚରେ ପର୍ବତ ସମାନ ।
ଚନ୍ଦନ ଚମ୍ପକ ବନେ ପୂରି ଗନ୍ଧବହ
ସୁବାସରେ ପୁଲକିତ କରୁଅଛି ଦେହ ।
ପନସ ତାଳ ତମାଳ ଚୂତ ନାରିକେଳ
ନାଗରଙ୍ଗ ବୃକ୍ଷ କାହିଁ ଦିଶନ୍ତି ମଞ୍ଜୁଳ ।
ଖର୍ଜ୍ଜୁର ବଦରୀ ଜମ୍ବୁ ଗୁବାକ ଜମ୍ବୀର
କଦଳୀ ଶ୍ରୀଫଳ ବୃକ୍ଷ କାହିଁ ମନୋହର ।
କେଉଁଠାରେ ପକ୍ୱଫଳ ପଡ଼ି ମହୀଦେଶେ
ହରି ନେଉଛନ୍ତି ମନ ନେତ୍ର ଦୁହିଁଙ୍କୁ ସେ ।
ସବୁଆଡ଼େ ଲକ୍ଷ ଲକ୍ଷ କଳ୍ପ ବୃକ୍ଷ ପନ୍ତି
ଥିବାରୁ ପରମ ଶୋଭା ପ୍ରକାଶ କରନ୍ତି ।
ମଲ୍ଲିକା ମାଧବୀ କୁନ୍ଦ କେତକୀ ନଜର
ମାଳତୀ ଯୂଥିକା ସଙ୍ଗେ ଦିଶନ୍ତି ସୁନ୍ଦର ।
ପଞ୍ଚଶତ କୋଟି ବୃନ୍ଦ କୁଟୀର ନିକୁଞ୍ଜ
ରହି ଅଛନ୍ତି ତହିଁରେ ପୁଷ୍ପତରୁପୁଞ୍ଜ ।
ପ୍ରତ୍ୟେକ ଗୃହରେ ଅଷ୍ଟରତ୍ନ ଦୀପାବଳୀ
ଦିଶୁଛନ୍ତି କିରଣରେ ଟଳମଳ ଜଳି ।
ବହୁତ ଶୃଙ୍ଗାର ଦ୍ରବ୍ୟ ଥିବାରୁ ତହିଁରେ
ଦେଖିବା ମାତ୍ରକେ ମନ ନୟନକୁ ହରେ ।
ସୁବାସିତ ଗନ୍ଧପୁଷ୍ପ ସୁବାସ ତଇଳ
କେତେକ ଗୃହ ମଧ୍ୟରେ ହୋଇଛନ୍ତି ଠୁଳ ।
ତାହାଙ୍କୁ ପରଶ କରି ମନ୍ଦ ଗନ୍ଧବହ
ବହିବାରୁ ପୁଲକିତ ହେଉଅଛି ଦେହ ।
ସ୍ଥାନେ ସ୍ଥାନେ ମଧୁ ଲୁବ୍ଧ ମଧୁବ୍ରତଗଣ
ଗୁଣୁ ଗୁଣୁ ଶବ୍ଦ କରି କରନ୍ତି ଭ୍ରମଣ ।
ସ୍ୱର୍ଣ୍ଣ ରତ୍ନ ଅଳଙ୍କାରେ ମଣ୍ଡି ଆପଣ
ପୂରି ରହିଛନ୍ତି କେତେ ତରୁଣୀ ରତନ ।
ପଞ୍ଚାଶତ କୋଟି ସଂଖ୍ୟା ଗୋପକୁଳ ସ୍ତ୍ରୀ
ରହିଛନ୍ତି ରାଧିକାଙ୍କ ଆଜ୍ଞା ମାନିକରି ।
ସେ ବନ ମଧ୍ୟରେ ପୁଣି ଦ୍ୱାତ୍ରିଂଶ କାନନ
ରହିଛନ୍ତି ପରସ୍ପର ସନ୍ନିଧିରେ ଜାଣ ।

ସୁପକ୍ୱ ମଧୁର ସ୍ୱାଦୁଫଳ ଅପ୍ରମିତ
ହୋଇଛନ୍ତି ପ୍ରତିବୃକ୍ଷ ଶାଖାରେ ପୂରିତ ।
ସୁଗନ୍ଧ ପୁଷ୍ପ ଭୂଷିତ କୁସୁମ ଉଦ୍ୟାନ
ରହିଛନ୍ତି ପୂରି ତହିଁ ମଧୁଲିହଗଣ ।
ପଞ୍ଚାଶତ କୋଟି ଗୋପ ଜନଙ୍କ ନିବାସ
ବିରାଜିତ ହୋଇଛନ୍ତି ସେ ବନର ପାଶ ।
ଏହିରୂପେ ବୃନ୍ଦାବନ ସୌନ୍ଦର୍ଯ୍ୟକୁ ଦେଖି
ଆନନ୍ଦରେ ଦେବଗଣ ହୋଇ ଅତି ସୁଖୀ ।
ଗୋଲୋକ ଭୁବନେ ଯାଇ ପ୍ରବେଶ ହୋଇଲେ
ବର୍ତ୍ତୁଳ ଆକାର ତାହା ହୋଇଛି ଦେଖିଲେ ।
କୋଟିଏ ଯୋଜନ ଅଟେ ତାହାର ବିସ୍ତାର
ବେଢ଼ାଇ ରହିଛି ଦିବ୍ୟ ସୁବର୍ଣ୍ଣ ପ୍ରକାର ।
ଚାରିଦ୍ୱାରେ ଚାରିକୋଟି ରତନ କବାଟ
ମାଣିକ୍ୟ ହୀରକ ଯୋଗେ ଦିଶେ ଝଟ ଝଟ ।
ସ୍ୱର୍ଣ୍ଣବେତ୍ର କରେ ଘେନି ଅସଂଖ୍ୟ ଗୋପାଳ
ରହିଛନ୍ତି କେଲନ୍ତ ସେ ପୁରଦ୍ୱାର ପାଳ ।
ଶ୍ରୀକୃଷ୍ଣଙ୍କ ଭୃତ୍ୟରୂପେ ପଞ୍ଚ ଶତ କୋଟି
ଗୋପଗଣ ସେହିଠାରେ ହୋଇଛନ୍ତି ଗୋଟି
ଶତେକ କୋଟି ପୁଣି ନିଜ ନିଜ ଆଶ୍ରମରେ
ରହିଛନ୍ତି ଭକ୍ତବର ଶ୍ରୀକୃଷ୍ଣଙ୍କଠାରେ ।
ସେ ଅନ୍ତେ ଦେଖିଲେ ପୁଣି ପାରିଷଦଙ୍କର
ରହିଛି ସ୍ୱର୍ଣ୍ଣନିର୍ମିତ ଆଶ୍ରମ ଅପାର ।
ଶ୍ରୀକୃଷ୍ଣ ସମାନ ଯେଉଁ ପାର୍ଷଦ ପ୍ରବରେ
ତାହାଙ୍କ ଆଶ୍ରମ ମଧ୍ୟ ଅଛି ସେହିଠାରେ ।
ଦ୍ୱାଦଶ ଅଯୁତ କୋଟି ତାହାର ପ୍ରମାଣ
ଉତ୍ତମ ସ୍ୱର୍ଣ୍ଣ ରତ୍ନରେ ହୋଇଛି ନିର୍ମାଣ ।
ଆବର ରାଧିକା ଭକ୍ତ ଗୋପୀଙ୍କ ଆଶ୍ରମ
ଦିଶୁଛନ୍ତି ତା ପାଶରେ ଅତି ମନୋରମ ।
ଦ୍ୱାତ୍ରିଂଶ କୋଟି ପ୍ରମାଣ ଗଣନେରେ ସେହି
ଅଷ୍ଟରତ୍ନରେ ନିର୍ମିତ ଅଛନ୍ତି ସେ ହୋଇ ।
ତାଙ୍କ ପାଶେ ଯେତେ ଛନ୍ତି ପରିଗ୍ରହଗଣ
ସେହିଠାରେ ଅଛି ମଧ୍ୟ ତାହାଙ୍କ ଭବନ ।
ଗଣନାରେ ଦଶକୋଟି ଅଟେ ସେ ସମସ୍ତ
ହୋଇଅଛି ଦିବ୍ୟ ମଣିଗଣରେ ନିର୍ମିତ ।
ଶତଜନ୍ମ ତପକରି ଯେଉଁ ଭକ୍ତମାନେ
ଶ୍ରୀକୃଷ୍ଣଙ୍କ ନାମ ଭଜୁଥାନ୍ତି ନିଶିଦିନେ ।

ତାଙ୍କର ନିବାସ ସ୍ଥାନ ଅଛି ସେହିଠାରେ
ନିର୍ମିତ ହୋଇଅଛି ସେ ସ୍ୱର୍ଣ୍ଣ ରତନରେ ।
ପୁଷ୍ପଶଯ୍ୟା ପୁଷ୍ପମାଳା ଶୁକ୍ଳ ଚାମର
ରତ୍ନ ଦର୍ପଣରେ ଦିଶେ ଅତି ମନୋହର ।
ଅମୂଲ୍ୟ ସ୍ୱର୍ଣ୍ଣ କଳସ ସୂକ୍ଷ୍ମ ବସ୍ତ୍ରମାନ
ସେ ପୁର ମଧ୍ୟରେ ଥାଇ ସୁନ୍ଦର ଦିଶନ୍ତି ।
ଏରୂପେ ଅଦ୍ଭୁତ ଦୃଶ୍ୟ ଦେଖି ଦେବତାଏ
ମିଳିଲେ ଅକ୍ଷୟ ବଟ ପାଶରେ ସର୍ବେ ।
ପଞ୍ଚ ଯୋଜନ ବିସ୍ତୀର୍ଣ୍ଣ ପାଞ୍ଚଗୁଣ ଉଚ୍ଚ
ରହିଛି ଅସଂଖ୍ୟ ଶାଖା ହୋଇ ଅତି ବଙ୍କ ।
ରକ୍ତ ତୁଲ୍ୟ ପକ୍ୱଫଳ ପରିପୂର୍ଣ୍ଣ ହୋଇ
ଥିବାରୁ ଗୈରିକ ଗିରି ସଦୃଶ ଦିଶଇ ।
ମୂଳ ପ୍ରଦେଶରେ ତାର ରତ୍ନମୟ ବେଦୀ
ରହିଅଛି ବିଶଦାଣ ମହୀତଳ ଭେଦି ।
ଶ୍ରୀକୃଷ୍ଣ ସଦୃଶ ଗୋପ ବାଳକ ତହିଁରେ
କ୍ରୀଡ଼ା କରନ୍ତି ଅତି ହରଷ ମନରେ ।
ସମସ୍ତେ ପିନ୍ଧିଅଛନ୍ତି ଝୀନ ପୀତବାସ
ଅଙ୍ଗେ ଭରିଛନ୍ତି ସ୍ୱର୍ଣ୍ଣ ଭୂଷଣ ବିନେଶ ।
ସେଅନନ୍ତ ଦେବତାମାନେ ଦେଖିଲେ ସେଠାରେ
ଶ୍ରୀକୃଷ୍ଣଙ୍କ ପାରିଷଦଙ୍କୁ ନେତ୍ରରେ ।
ପୁଣି କିଛି ଦୂରେ ରାଜ୍ୟମାର୍ଗକୁ ଦେଖିଲେ
ଜଡ଼ିତ ହୋଇଛି ଇନ୍ଦ୍ରନୀଳମଣି ତୁଲେ ।
ତାର ପାଶେ ପଦ୍ମରାଗ ସ୍ତମ୍ଭକ ନିର୍ମିତ
ରତନ ମଣ୍ଡପ ଅଛି ହୋଇ ସୁସଜ୍ଜିତ ।
ଚନ୍ଦନ କସ୍ତୁରୀ ତୁଲ୍ୟ କୁଙ୍କୁମର ଜଳ
ପଡ଼ିବାରୁ ପୁଣି ହୋଇଅଛି ସେ ପଙ୍କିଳ ।
ଦଧିପୂର୍ଣ୍ଣ ଲାଜାଫଳ ପୁଷ୍ପ ଦୁର୍ବାଙ୍କୁର
ଶ୍ରୀଖଣ୍ଡ ପଲ୍ଲବ ଗ୍ରନ୍ଥିଯୁକ୍ତ ବସ୍ତ୍ରସାର ।
କଦଳୀ ସ୍ତମ୍ଭକୋମଳ ଚୂତପତ୍ର ରାଜ
ରତ୍ନମୟ ସ୍ତମ୍ଭେ ଦିଶୁଅଛନ୍ତି ବିରାଜ ।
ସୁନ୍ଦର କନକ ଘଟ ଫଳ ଚୂତ ଡାଳେ
ଯୁକ୍ତହୋଇ ବସା ହୋଇଛନ୍ତି ସ୍ଥଳେ ସ୍ଥଳେ ।
ଆବର କୁଙ୍କୁମ ଗନ୍ଧ ଚନ୍ଦନ ଚର୍ଚ୍ଚିତ ।
ହୋଇଛନ୍ତି ପୁଣି ପୁଷ୍ପମାଳା ବିଭୂଷିତ
ଗୋପିକା ସମୂହ ବସି କ୍ରୀଡ଼ା କଉତୁକେ
ଦିନ ନେଉଛନ୍ତି କଥାବାର୍ତ୍ତା ହୋଇଥୋକେ ।

କେଉଁଠାରେ ବନ୍ଧି ଶୁକ୍ଳ ବସନ ଚାମର
ରଖାଯାଇଅଛି କାଞ୍ଚି ବହୁମୂଲ୍ୟ ହାର
ରତନ ତଳପ ପଡ଼ି ପର୍ଯ୍ୟଙ୍କ ଉପରେ
ସୁସଜ୍ଜିତ ହୋଇଅଛି କେତେକ ମନ୍ଦିରେ ।
କେଉଁ ଗୃହେ ଲାଗିଅଛି ଷୋଡ଼ଶଟି ଦ୍ୱାର
ଜଗି ରହିଛନ୍ତି ଦ୍ୱାରପାଳେ ତା ପାଶର
ଗୃହଆଡ଼େ ରହିଅଛି ପରିଖା ବେଢ଼ାଇ
ଦେଖିବାକୁ ଭୟଙ୍କର ହୋଇଅଛି ସେହି ।
ଏରୂପେ ଦେବତାମାନେ ଦେଖି ଦେଖି ଗଲେ
ଅଳ୍ପଦୂରେ ପୁଣି ଏକ ଆଶ୍ରମ ଦେଖିଲେ ।
ସେ ଆଶ୍ରମ ରାଧାଙ୍କର ଅଟଇଟି ଜାଣ
ବର୍ତ୍ତୁଳ ଆକାର ବାରକୋଶ ପରିମାଣ ।
ସେ ମଧ୍ୟରେ ରହିଅଛି ଶତେକ ମନ୍ଦିର
ପୂର୍ଣ୍ଣ ହୋଇଛନ୍ତି ନୂତ୍ନ ସୁବର୍ଣ୍ଣ କଳସ ।
ଦୁର୍ଲଙ୍ଘ୍ୟ ଗମ୍ଭୀର ଜଳ ଥାଇ ଚାରିପାଶେ
ସମୁଦ୍ର ବେଷ୍ଟିତ ସ୍ୱର୍ଣ୍ଣ ଗିରିପ୍ରାୟେ ଦିଶେ ।
ଅମୂଲ୍ୟ ରତନମୟ ପ୍ରାକାର ବେଷ୍ଟିତ
ଆବର ହୋଇଛି ପୁଷ୍ପୋଦ୍ୟାନ ପରିବୃତ ।
ସାତଗୋଟି ଦ୍ୱାର ରଖାଯାଇଛି ତହିଁରେ
ରତ୍ନମୟ ବେଦୀ କେତେ ଅଛି ତା ପାଶରେ ।
କ୍ରମେ କ୍ରମେ ଭିତରକୁ ସାତ ସାତ ଦ୍ୱାର
ଥିବାରୁ ସେ ହୋଇଅଛି ଅତି ମନୋହର ।
ମଧ୍ୟଗୃହରେ ଲାଗିଛି ଷୋଡ଼ଶ କବାଟ
ରତ୍ନମୟ କଣ୍ଟକରେ ହୋଇଛି ସେ ଆଣ୍ଟ ।
ସେ ଆଶ୍ରମ ଗୃହପାଶେ ଅତି ଉଚ୍ଚ ହୋଇ
ସ୍ତମ୍ଭ ନାହିଁ ନୋହିଁ ତାକୁ ଅଛି ବେଢ଼ି ଆଇ ।
ତା ଊର୍ଦ୍ଧ୍ୱରେ ବସିଅଛି ସୁବର୍ଣ୍ଣ କଳସ
ଉଜ୍ଜ୍ୱଳ ହୋଇଛି ତାର ତେଜ ଦିଶ ଦିଶ ।
ତାକୁ ଦେଖି ଦେବଗଣ ପ୍ରଦକ୍ଷିଣ କଲେ
ଆନନ୍ଦରେ ତହିଁ ଷଣ୍ଡେ ଦୂର ଚାଲିଗଲେ ।
ଦେଖିଲେ ମାର୍ଗରେ ଅଛି ଅଦ୍ଭୁତ ଆଶ୍ରମ
ଶତକୋଟି ଲକ୍ଷ ଅଟେ ତାର ପରିମାଣ ।
ଉତ୍ତମ ସୁବର୍ଣ୍ଣ ରତ୍ନେ ନିର୍ମିତ ସକଳ
ବିଶ୍ରାମ କରନ୍ତି ତହିଁ ଗୋପଗୋପୀକୁଳ ।
ଏରୂପେ ଗୋଲୋକପୁର ଦେଖିଣ ଅମରେ
ଉପସ୍ଥିତ ହେଲେ ପୁଣି ପୁଣି ମଧ୍ୟରେ ।

# ପଞ୍ଚମ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ଦେବତାମାନେ ସ୍ତବ ପଠନ କରିବା

ନାରାୟଣ ବୋଇଲେ ହେ ଶୁଣ ତପିବର
ବ୍ରହ୍ମା ଶଙ୍କର ସହିତେ ସକଳ ଅମର ।
ଗୋଲୋକ ଦର୍ଶନ କରି ହରଷିତ ହେଲେ
ରାଧାଙ୍କ ଭବନ ଦ୍ୱାରଦେଶରେ ମିଳିଲେ ।
ଦେଖିଲେ ସେ ପୁର ଅଷ୍ଟରତ୍ନରେ ନିର୍ମିତ
ଦୁଇଗୋଟି ବେଢ଼ା ତାର ପାଶେ ଅବସ୍ଥିତ ।
ହରିତ ବରନ ମଣି ହୀରକ ସହିତେ
ତହିଁ ଉପରେ ଖଚିତ ହୋଇଛନ୍ତି କେତେ ।
ସୁବର୍ଣ୍ଣ କବାଟ ଲାଗିଅଛି ଦ୍ୱାରଦେଶେ
ଦୂରରୁ ମେରୁଶିଖର ଖଣ୍ଡପରି ଦିଶେ ।
ବୀରଭାନୁ ନାମେ ଏକ ଦ୍ୱାରପାଳ ତହିଁ
ଉଭା ହୋଇଅଛି କରେ ସ୍ୱର୍ଣ୍ଣ ବେତ୍ର ବହି ।
ଆଦର କରିଛି ପୀତବସ୍ତ୍ର ପରିଧାନ
ଯେଣିଅଛି ଅଙ୍ଗେ ନାନାରତ୍ନ ବିଭୂଷଣ ।
ତାକୁ ଦେଖି ଦେବ ଗଣ ବୋଇଲେ ହେ ଯାଅ
ଶ୍ରୀକୃଷ୍ଣଙ୍କ ଆଗେ ଆମ୍ଭ ଆସିବାର କହ ।
ଦୁଆରୀ ତା ଶୁଣି ବେଗେ କିଙ୍କରମାନଙ୍କୁ
ଡକାଇପେଷିଲା ଶ୍ରୀକୃଷ୍ଣଙ୍କ ସମୀପକୁ ।
ଅନୁଜ୍ଞା ପାଇ ସେ ପୁଣ ଦେବଙ୍କୁ କହିଲା
ନିଃଶଙ୍କାରେ ଯାଅ ଶ୍ରୀହରିଙ୍କ ଆଜ୍ଞା ହେଲା ।
ଆନନ୍ଦିତ ହୋଇ ଦେବେ ଦ୍ୱିତୀୟ ଦୁଆରେ
ମିଳିଲେ ସେଠାରୁ ଯାଇ ଅତ୍ୟନ୍ତ ବେଗରେ
ଦେଖିଲେ ସେ ଦ୍ୱାର ଅଟେ ଅତି ମନୋରମ
ପ୍ରଥମ ଦୁଆରଠାରୁ ହୋଇଛି ଉତ୍ତମ ।
ଚନ୍ଦ୍ରଭାନୁ ନାମେ ଦ୍ୱାରପାଳ ସେହିଠାରେ
ଜାଗି ରହିଅଛି ବସି ନିଃଶଙ୍କ ମନରେ ।
କିଶୋର ଶ୍ୟାମଳ ବର୍ଣ୍ଣ ସ୍ୱର୍ଣ୍ଣ ବେତ୍ରଧର
ଅଙ୍ଗେ ଭରିଅଛି ନାନାବିଧ ଅଳଙ୍କାର ।
ଗୋପାଳ ବାଳକ ପାଞ୍ଚଲକ୍ଷ ତା ପାଶରେ
ବସିଛନ୍ତି ସେ ଯାହାର ବେଶ ଧରି କରେ ।
ସମ୍ଭାଷଣ କରି ତାହା ସଙ୍ଗେ ଦେବଗଣ
ତୃତୀୟ ଦ୍ୱାରେ ପ୍ରବେଶ ହେଲେ ତତକ୍ଷଣ ।
ପ୍ରଥମ ଦ୍ୱିତୀୟଠାରୁ ସେ ଅଟେ ସୁନ୍ଦର
ପୂରି ରହିଅଛି ମଣି ମାଣିକ୍ୟ ନିକର ।
ସୂର୍ଯ୍ୟଭାନୁ ବୋଲି ଏକ ଦ୍ୱାରପାଳ ତହିଁ
ଶ୍ରୀକୃଷ୍ଣଙ୍କ ଆଜ୍ଞା ଘେନି ଅଛି ଉଭା ହୋଇ ।
ଦ୍ୱିଭୁଜ ମୁରଲୀହସ୍ତ କିଶୋର ବୟସ
ରତ୍ନ କୁଣ୍ଡଳେ ମଣ୍ଡିତ କର୍ଣ୍ଣ ଗଣ୍ଡଦେଶ ।
ନବଲକ୍ଷ ଗୋପୀ ବେଢ଼ି ରହିଛନ୍ତି ତାକୁ
ସୌନ୍ଦର୍ଯ୍ୟରେ ଊଣା କେହି ନୁହନ୍ତି କାହାକୁ
ସମ୍ଭାଷଣ କରି ଦେବେ ପୁଣି ତାହା ଭୁଲେ
ସେଠାରୁ ଯାଇ ଚତୁର୍ଥ ଦୁଆରେ ମିଳିଲେ ।
ପୂର୍ବ ଦୁଆରମାନଙ୍କଠାରୁ ବଳି ସେହି
ସ୍ୱର୍ଣ୍ଣରତ୍ନ କିରଣରେ ଉଜ୍ଜ୍ୱଳ ଦିଶଇ ।
ବସୁଭାନୁ ନାମେ ଏକ ବ୍ରଜ ଅଧୀଶ୍ୱର
ରକ୍ଷା କରୁଅଛି ସେହି ଚତୁର୍ଥ ଦୁଆର ।
କିଶୋର ବୟସ ତାର ହସ୍ତେ ମଣିଦଣ୍ଡ
ତେଜରେ ସେ ନିନ୍ଦାକରେ ଉଦୟ ମାର୍ତ୍ତଣ୍ଡ
ରତ୍ନ ସିଂହାସନ ପରେ ଦେଖିଣ ତାହାକୁ
ସମ୍ଭାଷଣ କରି ଦେବେ ପ୍ରକାଶି ସ୍ନେହକୁ ।
ପଞ୍ଚମ ଦୁଆରେ ଯାଇ ପ୍ରବେଶ ହୋଇଲେ
ବିଚିତ୍ର ନିର୍ମାଣ ସେହି ସ୍ଥାନରେ ଦେଖିଲେ ।

ହୀରକ ଗଠିତ ହୋଇଅଛି କାନ୍ଥମାନ
ଆବର ବହୁତ ରତ୍ନ ମାଳକରେ ମଣ୍ଡି ।
ରହିଁ ଅଛି ଦେବଶମ୍ଭୁ ନାମେ ଦ୍ୱାରପାଳ
ରଖିଅଛି ପାଶେ ସ୍ୱର୍ଣ୍ଣ ବେତ୍ର ମାଦ ମଳ ।
ମସ୍ତକରେ ବାନ୍ଧିଅଛି ମୟୂର ଚନ୍ଦ୍ରିକା
ବସିଛନ୍ତି ତା ପାଶରେ ତିଶଲକ୍ଷ ସଖା ।
ଦେବତାଏ ଦେଖି ତାକୁ କଥାବାର୍ତ୍ତା ହେଲେ
ଷଷ୍ଠ ଦୁଆର ପାଖରେ ପ୍ରବେଶ ହୋଇଲେ
ବଜ୍ର କାନ୍ଥମାନ ତହିଁ ହୋଇଛି ଗଠିତ
ଲମ୍ବିଅଛି ପୁଷ୍ପମାଳ ତହିଁ ଅପ୍ରମିତ ।
ଶଙ୍ଖକର୍ଣ୍ଣ ନାମେ ଏକ ଦ୍ୱାରପାଳ ବସି
ରହିଛି ହସ୍ତରେ ସ୍ୱର୍ଣ୍ଣ ବେତ୍ର ଘେନି କରି ।
ବିବିଧ ଭୂଷଣ ମଣ୍ଡିଅଛି ନିଜ ଅଙ୍ଗେ
ଦଶଲକ୍ଷ ଅନୁଚର ରହିଛନ୍ତି ସଙ୍ଗେ ।
ସୁରଗଣ ଦେଖି ତାକୁ କରି ସମ୍ଭାଷଣ
ସପ୍ତମ ଦ୍ୱାରେ ପ୍ରବେଶ ହେଲେ ଯାଇ ପୁଣ ।
ନାନାବିଧ ଚିତ୍ରପୂର୍ଣ୍ଣ ହୋଇଛି ସେ ଦ୍ୱାର
ଅନ୍ୟ ଷଡ଼ଦ୍ୱାରଠାରୁ ଭିନ୍ନ ତା ପ୍ରକାର ।
ରତ୍ନଭାନୁ ନାମେ ଦ୍ୱାରପାଳ ରହିଅଛି
ଚନ୍ଦନ ଫୁଲରେ ନିଜ ଅଙ୍ଗକୁ ମଣ୍ଡିଛି ।
ମଣି ରତ୍ନ ବିନିର୍ମିତ ନାନା ଅଳଙ୍କାର
ଅଙ୍ଗଦେଶେ ଥାଇ ତାର ଦିଶନ୍ତି ସୁନ୍ଦର ।
ଦ୍ୱାଦଶଲକ୍ଷ ଗୋପାଳ ଅଛନ୍ତି ପାଶରେ
ବସିଅଛି ଦିବ୍ୟ ରତ୍ନ ସିଂହାସନ ପରେ ।
ହସ୍ତରେ ଧରିଛି ଗର୍ବ ସ୍ୱର୍ଣ୍ଣମୟ ବେତ୍ର
ପ୍ରଫୁଲ୍ଲ ପଙ୍କଜ ତୁଲ୍ୟ ହୋଇଛି ତା ନେତ୍ର ।
ସମ୍ଭାଷଣ କରି ତାହା ସଙ୍ଗେ ଦେବଗଣ
ସେକ୍ଷଣି କଲେ ଅଷ୍ଟମ ଦ୍ୱାରକୁ ଗମନ ।
ସପ୍ତଦ୍ୱାରଠାରୁ ସେହି ବିଲକ୍ଷଣ ଅଟେ
ସୁପାର୍ଶ୍ୱ ଦ୍ୱାରପାଳ ଅଛି ତା ନିକଟେ ।
ସସ୍ମିତ ସୁନ୍ଦରଗଣ ମସ୍ତକ ମଣ୍ଡନ
ପ୍ରତ୍ୟଙ୍ଗରେ କରିଛି ସେ ଶ୍ରୀଖଣ୍ଡ ଲେପନ ।
କର୍ଣ୍ଣଯୁଗେ ଶୋଭାପାଏ ମକର କୁଣ୍ଡଳ
ଉଜ୍ଜ୍ୱଳ ଦିଶଇ ତାର ତେଜେ ଗଣ୍ଡସ୍ଥଳ ।
ହସ୍ତେ ଧରିଅଛି ଦିବ୍ୟ ରତ୍ନମୟ ଦଣ୍ଡ
କୋଟିଏ ଗୋପ ତା ପାଶେ ହୋଇଛନ୍ତି ଝୁଣ୍ଡ

ଦେବତାଏ ତା ସଙ୍ଗରେ କଥାବାର୍ତ୍ତା ହୋଇ
ନବମ ଦ୍ୱାରକୁ ପୁଣି ଗଲେ ତୋଷ ବହି ।
ସ୍ଫଟିକୋଟି ବେଢ଼ା ଅଛି ସେ ଦୁଆର ପାଶେ
ଅପୂର୍ବ ବିଚିତ୍ର ଦ୍ରବ୍ୟ ଶୋଭେ ସେ ପ୍ରକାଶେ ।
ସୁବଳ ନାମରେ ଦ୍ୱାରପାଳ ଅଛି ତହିଁ
ମଣ୍ଡିଛି ଶରୀର ନାନା ଅଳଙ୍କାର ଦେଇ ।
ଚତୁର୍ଦ୍ଦଶଲକ୍ଷ ଗୋପ ତା ପାଶେ ଅଛନ୍ତି
ସମସ୍ତେ ସୁନ୍ଦର ବେଶ ଭୂଷା ବହିଛନ୍ତି ।
ବିରାଜଇ ହସ୍ତେ ତାର ସ୍ୱର୍ଣ୍ଣ ଦଣ୍ଡଟାଏ
ସମ୍ଭାଷଣ କରି ତାହା ସଙ୍ଗେ ଦେବତାଏ ।
ଦଶମଦ୍ୱାରେ ପ୍ରବେଶ ହେଲେ ତତକ୍ଷଣ
ଦେଖିଲେ ସେ ସବୁଠାରୁ ଅଟେ ବିଲକ୍ଷଣ ।
ଶ୍ରୀଦାମା ନାମରେ ଦ୍ୱାରପାଳ ଅଛି ତହିଁ
ଶ୍ରୀକୃଷ୍ଣଙ୍କ ସମାନ ସେ ରୂପରେ ଅଟଇ ।
ବିଂଶତିଲକ୍ଷ ଗୋପାଳ ପାର୍ଶ୍ୱେ ତାହାର
ରହିଛନ୍ତି ହୋଇ ଆଜ୍ଞା ପାଳନେ ତତ୍ପର ।
ଦେବଗଣ ତାହା ସଙ୍ଗେ ସମ୍ଭାଷଣ କଲେ
ଏକାଦଶ ଦ୍ୱାରେ ଯାଇ ପ୍ରବେଶ ହୋଇଲେ
ଦ୍ୱାରପାଳ ଥିଲା ତହିଁ ଶ୍ରୀଦାମା ନାମରେ
ଅମୂଲ୍ୟ ରତ୍ନ ଖଚିତ ବେତ୍ର ବହି କରେ ।
ପୁନ ତୁଲ୍ୟ ଅଟଇ ସେ ରାଧା ଦେବୀଙ୍କର
ଘେନିଅଛି ଅଙ୍ଗେ ବହୁମୂଲ୍ୟ ଅଳଙ୍କାର ।
କର୍ଣ୍ଣଯୁଗେ ଭିଡ଼ିଅଛି ସୁବର୍ଣ୍ଣ କୁଣ୍ଡଳ
ତେଜରେ ଉଜ୍ଜ୍ୱଳ ଦିଶେ ବଦନ ମଣ୍ଡଳ ।
ଚନ୍ଦନ କସ୍ତୁରୀ ଆଦି ବୋଳିଛି ଅଙ୍ଗରେ
ଲମ୍ବାଇଅଛି ମାଳତୀ ମାଳା ହୃଦୟରେ ।
ମସ୍ତକରେ ବାନ୍ଧିଅଛି ସୁବର୍ଣ୍ଣ ମୁକୁଟ
ପିନ୍ଧିଛି ଅମୂଲ୍ୟ ପୀତ ବର୍ଣ୍ଣ ଦିବ୍ୟପାଟ ।
କୋଟିଏ ଗୋପାଳ ଛନ୍ତି ପାଶରେ ସତତ
ଯେରୂପେ କାୟା ପାଶରେ ଛାୟା ଅବସ୍ଥିତ ।
କଥାବାର୍ତ୍ତା ହୋଇ ତାହା ସଙ୍ଗେ ଦେବଗଣ
ଦ୍ୱାଦଶ ଦ୍ୱାରେ ପ୍ରବେଶ ହେଲେ ଯାଇ ପୁଣ ।
ସେ ଦ୍ୱାର ରଖିବା ପାଇଁ ଗୋପାଳ କାମିନୀ
ବହୁତ ଅଛନ୍ତି କରେ ହେମବେତ୍ର ଘେନି ।
ସମସ୍ତେ ସୁନ୍ଦର ନବ ଯଉବନବତୀ
ନାନାବିଧ ଅଳଙ୍କାରେ ମଣ୍ଡି ହୋଇଛନ୍ତି ।

ପରିଧାନ କରିଛନ୍ତି ସୁପୀତ ବସନ
ଭିଡ଼ିଛନ୍ତି ରତ୍ନମୟ କେୟୁର କଙ୍କଣ ।
କସ୍ତୁରି ଚନ୍ଦନ ଭୁଲେ କର୍ପୂର ମିଶାଇ
ବୋଳିଛନ୍ତି ନିଜ ନିଜ ଅଙ୍ଗେ ତୋଷ କରି ।
ଦେବତାଏ ତାଙ୍କୁ ଦେଖି ବିସ୍ମିତ ହୋଇଲେ
କ୍ରମେ କ୍ରମେ ଏକ ଏକ ଦ୍ୱାର ଡେଇଁଗଲେ ।
ସେହିଠାରୁ ତିନିଗୋଟି ଦ୍ୱାରେ ସେହିପରି
ଦେଖିଲେ ଜଗିଅଛନ୍ତି ଗୋପବର ସ୍ତ୍ରୀ ।
ସେମାନଙ୍କ ଭୁଲେ ସମ୍ଭାଷଣ କରି ଚଳେ
ଷୋଡ଼ଶ ଦୁଆରେ ସର୍ବେ ପ୍ରବେଶ ହୋଇଲେ
ରାଧାଙ୍କର ଅନ୍ତଃପୁର ଦ୍ୱାର ସେ ଅଟଇ
ବହୁତ ଗୋପିକା ଜଗି ରହିଛନ୍ତି ତହିଁ ।
ଆଉରି ଛତିଶଗୋଟି ରାଧାଙ୍କର ସଖୀ
ଅଛନ୍ତି ସେହିସ୍ଥାନରେ ହୋଇ ମହାସୁଖୀ ।
ରୂପ ଯଉବନବନ୍ତି ଅଟନ୍ତି ସମସ୍ତେ
ସ୍ୱର୍ଣ୍ଣରତ୍ନ ଆଭରଣ ଭିଡ଼ିଛନ୍ତି କେତେ ।
କେଉଁମାନେ ବଇଦୂର୍ଯ୍ୟ ମରକତ ମଣି
ଘେନିଛନ୍ତି ହାରାବଳୀ କେତେକ ରମଣୀ ।
ରଜତରସନା ଗୁଣେ ସୁବର୍ଣ୍ଣ କିଙ୍କିଣୀ
ଥିବାରୁ ଦିଶଇ କାମଧେନୁ ଶୋଭା ଜିଣି ।
ମକର କୁଣ୍ଡଳ କର୍ଣ୍ଣଦେଶେ ବିରାଜିତ
ବକ୍ଷସ୍ଥଳେ ଦିବ୍ୟପୁଷ୍ପ ମାଳା ବିଲମ୍ବିତ ।
ଶରତ ଚନ୍ଦ୍ରମାପରି ସବୁରି ବଦନ
କୁନ୍ଦପୁଷ୍ପ ପ୍ରାୟେ ଦନ୍ତ ଦିଶେ ଶୋଭନ ।
ପାରିଜାତ କୁସୁମରେ ମଣ୍ଡି କେଶ ପାଶ
ଦିଶନ୍ତି ଅମରପୁର ରମଣୀ ସଦୃଶ ।
ତେଜ ବହିଛନ୍ତି ସ୍ୱରୁ ଚମ୍ପା ପୁଷ୍ପପରି
ଅଟନ୍ତି ସମସ୍ତେ ପୀନସ୍ତନୀ କୃଶୋଦରୀ ।
ନାସିକାରେ ଗଜମୁକ୍ତା ଦିଶଇ ସୁନ୍ଦର
ବିଚିତ୍ର ତିଳକ ଭାଲପଟେ ମନୋହର ।
ପୀବର ନିତମ୍ବ ଜାନୁଦ୍ୱାରେ ଆସକତ
ହେବାରୁ ଚଳନ୍ତି ହଂସ ଗଜରାଜବତ ।
ସମସ୍ତେ ଶ୍ରୀକୃଷ୍ଣଙ୍କର ପାଦେ ମନ ଦେଇ
ରହିଅଛନ୍ତି ସର୍ବଦା ତାଙ୍କ ରୂପ ଧ୍ୟାୟି ।
ଦ୍ୱାରେ ଉଭାହୋଇ ଦେବେ ଦେଖି ସେମାନଙ୍କୁ
ବିସ୍ମୟରସରେ ମଗ୍ନ କଲେ ମାନସକୁ ।

ସ୍ୱର୍ଣ୍ଣାଦିକେ ତ ଅଟନ୍ତି ସେ ନାନାମତେ ରଞ୍ଜିତ
ଅନାଇଁ ରହିଲେ ହେମଲତପରି ଚର୍ଚ୍ଚିତ ।
ପୁଣି ନବୀନ ରତ୍ନବେଦୀ ଦେଖିଲେ ସେଠାରେ
ଖଚିତ ହୋଇଛି କେତେ ମଣି ସେ ମଧ୍ୟରେ ।
ଚାରିକୋଣରେ ଫଟିକ ମଣିସ୍ତମ୍ଭମାନ
ମଧ୍ୟସ୍ଥିତ ମଣି ଅଟେ ସିନ୍ଦୂର ବରନ ।
ପାରିଜାତ ପୁଷ୍ପମାଳା ଲମ୍ବିଛି ବେଷ୍ଟିତ
ତହିଁର ସୁଗନ୍ଧ ଘେନି ବହୁଅଛି ବାତ ।
ଏମନ୍ତେ ସେ ପୁରଶୋଭା ଦେଖି ଦେବଗଣ
ସେ ଗୋପସ୍ତ୍ରୀଙ୍କ ସଙ୍ଗେ କରି ସମ୍ଭାଷଣ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ଦର୍ଶନ ଇଚ୍ଛାରେ
ରାଧାଙ୍କ ଅନ୍ତଃପୁରକୁ ଗଲେ ଧୀରେ ଧୀରେ ।
ଖଣ୍ଡେ ଦୂରେ ଦେବୀଙ୍କର ବିଚିତ୍ର ମନ୍ଦିର
ବେଢ଼ାଇ ଅଛି ତା ଗୃହପାଶେ କେତେଘର ।
ଚାରିଗୋଟି ଶାଳାରେ ସେ ହୋଇଛି ବିଭକ୍ତ
ଅମୂଲ୍ୟ ରତ୍ନରେ ସବୁସ୍ଥାନ ବିରଚିତ ।
ସୁବର୍ଣ୍ଣର ସ୍ତମ୍ଭମାନ ବଜ୍ର ସହିତରେ
ନିର୍ମିତ ହୋଇଛି ଇନ୍ଦ୍ର ଧ୍ୱଜ ପରକାରେ ।
ସେ ମଧ୍ୟରେ ପାରିଜାତ ପୁଷ୍ପ ମାଳ ମାଳ
ବନ୍ଧା ହୋଇଅଛି ତାହାସଙ୍ଗେ ମୁକ୍ତାଜାଳ ।
ମାଣିକ୍ୟ ଦର୍ପଣ ଶୁକ୍ଳ ଚାମର ବିଶେଷ
ଥୁଆ ହୋଇଅଛି କାଞ୍ଚି ସୁବର୍ଣ୍ଣ କଳଶ ।
ପଞ୍ଚସୂତ୍ରେ ଗୁନ୍ଥାହୋଇ ଶ୍ରୀଖଣ୍ଡ ପଲ୍ଲବ
ବନ୍ଧା ହୋଇଅଛି ଦ୍ୱାରଦେଶେ କେଉଁଠାବ ।
ସୁରମ୍ୟ ପ୍ରାଙ୍ଗଣ ଗୃହପାଶେ ମଣିସ୍ତମ୍ଭ
ପୋତା ହୋଇ ଊର୍ଦ୍ଧ୍ୱଗ କରିଅଛି ଦମ୍ଭ ।
ଚନ୍ଦନ କୁଙ୍କୁମଦ୍ରବ୍ୟ କସ୍ତୁରୀ ସହିତେ
ଶୁକ୍ଳ ପୁଷ୍ପ ରଖାହୋଇଅଛି ପୂର୍ଣ୍ଣପାତ୍ରେ ।
ଆଉରି ଶୁକଳ ଧାନ୍ୟ ପ୍ରବାଳ ତଣ୍ଡୁଳ
ନିର୍ମଞ୍ଛନ ଦୁର୍ବାକ୍ଷତ ଶୁଭ୍ର ମୁକ୍ତାଫଳ ।
ଯତନରେ ରଖା ହୋଇଅଛି ଯଥାସ୍ଥାନେ
ବ୍ୟବହୃତ ହୁଏ ଯାହା ଶୁଭଆଗମନେ ।
ପାରିଜାତ କୁସୁମରେ ଗୁନ୍ଥାହୋଇ ମାଳ
ଥୁଆ ହୋଇଅଛି ତାହାପାଶେ ହୋଇ ଠୁଳ ।
ସୁଶୀତଳ ସମୀରଣ ବହି ମନ୍ଦ ମନ୍ଦ
ବହି ଆଣୁଅଛି ନାନା କୁସୁମଙ୍କ ଗନ୍ଧ ।

ବ୍ରହ୍ମାଣ୍ଡରେ ଯେଉଁଦ୍ରବ୍ୟ ଅଛଇ ଦୁର୍ଲ୍ଲଭ
ପୂର୍ଣ୍ଣହୋଇ ରହିଅଛି ଯେ ପୁରରେ ସେ ସବୁ ।
ସୁଲଳିତ ରତ୍ନଶଯ୍ୟା ପୁଷ୍ପ ପତ୍ରାଚ୍ଛଦ
ଦେଖା ଯାଉଅଛନ୍ତି ରୂପେ ଅତ୍ୟନ୍ତ ବିଶଦ ।
କୋଟି କୋଟି ରତ୍ନକୁମ୍ଭ ରତ୍ନପାତ୍ରମାନ
ଥିବାରୁ ସୁନ୍ଦର ଦିଶୁଅଛି କେଉଁସ୍ଥାନ ।
ବିବିଧ ପ୍ରକାର ବାଦ୍ୟ ବାଜଣା ନାଦରେ
ଶବ୍ଦିତ ହୋଇଛି ପୁଣି ସ୍ୱର ସପ୍ତସ୍ୱରେ ।
ଆବର ଗୋପବନିତା ସଙ୍ଗୀତ ଗାୟନ
ଶ୍ରବଣ ମାତ୍ରେ ମୋହିତ କରୁଅଛି ମନ ।
ଶ୍ରୀକୃଷ୍ଣ ସମାନ ଯେଉଁ ଗୋପାଳ ଅଛନ୍ତି
ସେହି ପୁରମଧ୍ୟେ ପୂର୍ଣ୍ଣ ହୋଇ ରହିଛନ୍ତି ।
ରାଧାଙ୍କର ସଖୀଗଣ ବେଶଭୂଷା ସାଜ
ସୁନ୍ଦର ପଣରେ ଦିଶୁଅଛନ୍ତି ବିରାଜ ।
ଶ୍ରୀକୃଷ୍ଣ ରାଧିକାଙ୍କର ଚରିତ୍ରମାନ
କେତେ ଗୋପୀ ବର୍ଣ୍ଣି କରୁଅଛନ୍ତି ଗାୟନ ।
ଏହିରୂପେ ଅନ୍ତଃପୁର ଅଭ୍ୟନ୍ତର ଦେଖି
ମାନସରେ ଦେବଗଣେ ହୋଇ ମହାସୁଖୀ ।
ଉତ୍ତମ ଗୀତ ଶ୍ରବଣ କରି ସେ ଅନ୍ତରେ
ବିବିଧ ପ୍ରକାର ନୃତ୍ୟ ଦେଖି ତୋଷଇରେ ।
ଧ୍ୟାନରେ ନିବିଷ୍ଟ କରି ନିଜ ନିଜ ମନ
ଉଭା ହେଲେ ଚିତ୍ରାର୍ପିତ ପିତୁଳା ସମାନ ।
ଦେଖିଲେ ଆଗରେ ଦିବ୍ୟରତ୍ନ ସିଂହାସନ
ମଣ୍ଡଳ ଆକୃତି ଶତେ ଧନୁ ପରିମାଣ ।
ଉତ୍ତମ ରତ୍ନ କଳଶ ଶତ ଶତ ତହିଁ
ରଖାଯାଇଛନ୍ତି ଦିବ୍ୟ ତେଜପୁଞ୍ଜବହି ।
ଚିତ୍ର ପୁତ୍ତଳିକା ଚିତ୍ର ପୁଷ୍ପ କାନନରେ
ପୂର୍ଣ୍ଣ ହୋଇଛି ସେ ସିଂହାସନ ନିରନ୍ତରେ
ସେ ମଧ୍ୟରେ ଜ୍ୟୋତିର୍ମୟ ବ୍ରହ୍ମତେଜ ପୁଞ୍ଜ
ନିନ୍ଦା କରୁଅଛି ଶତଲକ୍ଷ କୋଟିସୂର୍ଯ୍ୟ ।
ଅତ୍ୟନ୍ତ ଆଶ୍ଚର୍ଯ୍ୟ ସେହି ଅଦ୍ଭୁତ ସ୍ୱରୂପ
ସପତ ତାଳପ୍ରମାଣ ଅଟଇ ତା ରୂପ ।
ଆଶ୍ରମରେ ସେତେ ସ୍ୱର୍ଣ୍ଣ ରତ୍ନ ଆଦିକରି
ଅଛନ୍ତି ସବୁରି ତେଜ ରହିଛି ଆବୋରି ।
ସର୍ବବ୍ୟାପି ସର୍ବବୀଜ ଚକ୍ଷୁ ରୋଧକର
ଏମନ୍ତ ତେଜକୁ ଦେଖି ସକଳ ଅମର ।
ଆନନ୍ଦରେ ନିଜ ନିଜ ନୟନରୁ ନୀର
ବୁହାଇ ପୁଲକେ ପୂର୍ଣ୍ଣକରି କଳେବର ।
ସେ ବ୍ରହ୍ମତେଜ ଆଗରେ ଦଣ୍ଡବତ ହୋଇ
ପ୍ରଣାମ କରିଣ ଉଠି ଶିରେ କରଦେଇ ।
ଦକ୍ଷିଣରେ ପ୍ରଜାପତି ବାମେ ମହେଶ୍ୱର
ତାଙ୍କ ସଙ୍ଗେ ଧର୍ମ ପୁଣି ସମସ୍ତ ଅମର
ଭକ୍ତିଭରେ ଜଣେ ପରେ ଜଣେ ଜଣେହୋଇ
ସ୍ତୁତି କଲେ ସେ ପରମ ଜ୍ୟୋତିକୁ ଅନାଇଁ
ଆଗଭର ହୋଇ ବ୍ରହ୍ମା ବୋଇଲେ ଆନନ୍ଦେ
ହେ ବ୍ରହ୍ମପଦାର୍ଥ ନମସ୍କାର ତୁମ୍ଭ ପାଦେ ।
ସକଳ କରତା ତୁମ୍ଭେ ସର୍ବ ତେଜୋମୟ
ତୁମ୍ଭ କୃପାବଳେ ପ୍ରାପ୍ତ ହୁଅଇ ଅଭୟ ।
ଯେ ତୁମ୍ଭ ମଙ୍ଗଳରୂପ ସର୍ବ ଶୁଭକର
ପ୍ରଣାମ କରୁଛି ମୁହିଁ ତୁମ୍ଭ ଶ୍ରୀପୟର ।
ନିର୍ଲିପ୍ତ ଯେ ଆତ୍ମାରୂପ ପରମ ପୁରୁଷ
ନମସ୍କାର କରଇ ମୁଁ ତାଙ୍କ ପାଦଦେଶ ।
ସଗୁଣ ନିର୍ଗୁଣ ବ୍ରହ୍ମନିତ୍ୟ ସନାତନ
ପ୍ରଣାମ କରୁଛି ମୁହିଁ ତାଙ୍କ ଶ୍ରୀଚରଣ ।
ବ୍ୟକ୍ତ ଅବ୍ୟକ୍ତ ସ୍ୱରୂପ ସ୍ୱେଚ୍ଛାମୟ ହରି
ନମସ୍ତେ ନମସ୍ତେ ଦେବ ରାଧିକାବିହାରି ।
ତୁମ୍ଭ କଳାରୁ ସକଳ ସୁରଗଣ ଜାତ
ସେ ଅବା ଜାଣିବେ କାହୁଁ ତୁମ୍ଭରୂପ ତତ୍ତ୍ୱ ।
ସର୍ବ ଧାର ସର୍ବରୂପ ସର୍ବଜୀବ ସ୍ଥିତ
ନମସ୍ତେ ଜଗତଈଶ ପାଳିତ ଜଗତ ।
ଯାହାଙ୍କରୂପ ବର୍ଣ୍ଣନା କରିବାର ପାଇଁ
ତିନିଲୋକ ମଧ୍ୟରେ କେ ସମର୍ଥ ନୁହଇ ।
ବର୍ଣ୍ଣିବାପାଇଁ ତାହାଙ୍କୁ ମୋହର ଶକତି
ହେବ ଅବା କାହୁଁ ମୁଁ ତ ଅଟେ କ୍ଷୁଦ୍ରମତି
ଅଦେହ ବିଗ୍ରହବନ୍ତ ଇନ୍ଦ୍ରିୟଗୋଚର
ଅଟନ୍ତି ଯେ ପୁଣି ବିଜ୍ଞ ଜ୍ଞାନଠାରୁ ପର ।
ସକଳ କର୍ମର ସାକ୍ଷୀ ସର୍ବ ଅନ୍ତର୍ଯ୍ୟାମୀ
ସର୍ବ ଶୁଭଫଳଦାତା ସର୍ବ ଲୋକସ୍ୱାମୀ ।
ହସ୍ତପାଦ ବିରହିତ ତେଜୋମୟ ମୂର୍ତ୍ତି
ତୁମ୍ଭ ଚରଣପଙ୍କଜେ ମୋହର ପ୍ରଣତି ।
ବେଦରେ ଯେ ନିରୂପିତ ଚକ୍ଷୁ ଅଗୋଚର
ସେ ପ୍ରଭୁଙ୍କ ପାଦେ ମୋର କୋଟି ନମସ୍କାର

ମୁଁ ଅଟଇ ସୃଷ୍ଟି କର୍ତ୍ତା ବେଦବିଧାୟକ
ଧର୍ମ ସମ୍ବନ୍ଧରେ ବିଷ୍ଣୁ ଅଟନ୍ତି ପାଳକ ।
ସଂହାରକର୍ତ୍ତା ଅଟନ୍ତି ଦେବ ତ୍ରିଲୋଚନ
ତଥାପି କରିବାପାଇଁ ତୁମ୍ଭର ବର୍ଣ୍ଣନ ।
କେହି ହେଲେ ସମରଥ ନ ହୋଇବୁ ଆମ୍ଭେ
ଆମ୍ଭର ଯେ ହର୍ତ୍ତାକର୍ତ୍ତା ଅଟ ପ୍ରଭୁ ତୁମ୍ଭେ ।
ତୁମ୍ଭ ଆଜ୍ଞାରେ ଜଗତ ରକ୍ଷାକରେ ଧର୍ମ
କରନ୍ତି ସମସ୍ତ ଲୋକ ଯେ ଯାହାର କର୍ମ
ସଂହାରକାଳ ନିଷ୍ଟପୁ ତୁମ୍ଭ କର ଯେବେ
ବିନାଶ କରନ୍ତି ରୁଦ୍ର ଚରାଚର ତେବେ ।
ତୁମ୍ଭପାଦ ସେବି ମୁହିଁ ନିଷେକ କରତା
ବୋଲାଏ ଆବର ତିନ ଭୁବନେ ବିଧାତା ।
ତୁମ୍ଭ ଭକ୍ତମାନଙ୍କର କର୍ମଫଳ ମୁହିଁ
ଦେବାସକାଶେ କଦାପି ସମର୍ଥ୍ୟ ନୁହଇ ।
ତୁମ୍ଭ ସଦୃଶ ଅଟଇ ନିଖିଳ ବ୍ରହ୍ମାଣ୍ଡ
ତୁମ୍ଭକୁ ଚହିଁଲେ ଆମ୍ଭେ ହୋଇ ସର୍ବେ ରୁଣ୍ଡ
ଏହିରୂପେ କେତେ କେତେ ସେବକ ତୁମ୍ଭର
ଅଛନ୍ତି ଜଗତ ମଧ୍ୟେ ହେ ପରମେଶ୍ୱର ।
ଯେଉଁରୂପେ ରେଣୁ ସଂଖ୍ୟା କହି ନ ହୁଅଇ
ସେ ରୂପେ ଜଗତ ଜୀବ ଗଣନା ଅଟଇ ।
ସେ ଜୀବଗଣର ସୃଷ୍ଟି କର୍ତ୍ତା ଯେ ଆପଣ
ଆପଣଙ୍କୁ ସ୍ତୁତିକରି ପାରେ କେବା ପୁଣ ।
ଯେଉଁ ମହାବିଷ୍ଣୁଙ୍କର ଏକଲୋମ ମୂଳେ
ଏକ ଏକ ଚରାଚର ରହିପାରେ ହେଳେ
ତୁମ୍ଭର ଷୋଡ଼ଶ ଅଂଶ ଅଟନ୍ତି ତ ସେହି
ତୁମ୍ଭଙ୍କୁ କଳନାକରି ପାରିବ କା କେହି ।
ଆହେ ପରମ ପୁରୁଷ ପ୍ରଭୁ ଦାମୋଦର
କିଶୋର ସୁନ୍ଦର ରୂପ ଅଟେ ଯେ ତୁମ୍ଭର ।
ନବୀନ ଜଳଦପ୍ରାୟେ ଶ୍ୟାମଳ ବରନ
କଟିତଟରେ ଶୋଭିତ ସୁପୀତବସନ ।
ଦ୍ୱିଭୁଜ ସସ୍ମିତ ମୁଖ ରୂପ ମନୋହର
ମୁରଲୀ ଯନ୍ତ୍ରସଜିତ ଅଟେ ବେଣକର ।
ମୟୂର ପୁଚ୍ଛ ରଚିତ ରମ୍ୟ କେଶ ଜାଳ
ଶୋଭିଦିଶେ ତାର ପରେ ମାଳତୀର ମାଳ ।
ଚନ୍ଦନ କସ୍ତୁରୀ ବୋଳାହୋଇଣ ଦେହରେ
ମୋହିତ କରଇ ସର୍ବଜଗ ସୁଗନ୍ଧରେ ।
କିରୀଟ ମୁକୁଟ ଆଦି ଭୂଷଣ ନିକର
ହେବାରୁ ଶୋଭା ପ୍ରକାଶ ହୁଏ ନିରନ୍ତର ।
ଶରତ ପଙ୍କଜ ତୁଲ୍ୟ ଶ୍ରୀମୁଖ ମଣ୍ଡଳ
ନିନ୍ଦାକରୁଅଛି ଓଷ୍ଠ ପକ୍ୱବିମ୍ବ ଫଳ ।
ଦାଡ଼ିମ୍ବ ବୀଜ ସଦୃଶ ଶୁଭ୍ର ଦନ୍ତପନ୍ତି
ନୀଳ ଉତ୍ପଳର ପ୍ରାୟେ ନୟନର କାନ୍ତି ।
କେଳି କଦମ୍ବ ପାଦପ ମୂଳେ ଅବସ୍ଥିତ
ରାସକ୍ରୀଡ଼ାରେ ଆସକ୍ତ ହୋଇଅଛୁ ଚିତ୍ତ ।
ଏରୂପେ ବାଞ୍ଛିତ ରୂପ ଦେଖିବାକୁ ମୋର
ହେଉଅଛି ପୁନଃ ପୁନଃ ମାନସ ଅସ୍ଥିର ।
ଏମନ୍ତ କହିଣ ବ୍ରହ୍ମା ନମସ୍କାର କଲେ
ଦଣ୍ଡବତ ହୋଇ କରଯୋଡ଼ି ଉଭାହେଲେ ।
ଧର୍ମ ଶିବ ଦୁହେଁ ମଧ୍ୟ ଏହି ସ୍ତୋତ୍ର ପଢ଼ି
ସ୍ତୁତିକଲେ ଯେ ଯା ମତେ ଶିରେ କରଯୋଡ଼ି
ତାଙ୍କ ପାଶରେ ତ ଦେବଗଣ ରହିଥିଲେ
ସମସ୍ତେ ସେରୂପେ ସ୍ତୁତି ସ୍ତୋତ୍ର ଜଣାଇଲେ ।
ଶ୍ରୀକୃଷ୍ଣଙ୍କ ତେଜରେ ସେ ହୋଇଣ ଆବୃତ
ରହିଲେ ସମସ୍ତେ ଯୋଡ଼ି ଯେ ଯାହାର ହାତ
ବ୍ରହ୍ମାଶିବ ଧର୍ମଙ୍କର ବିରଚିତ ସ୍ତୋତ୍ର
ପଢ଼ଇ ଯେ ପୂଜାକଲେ ହୋଇଣ ପବିତ୍ର ।
ହରିଙ୍କଠାରେ ନିଶ୍ଚଳ ଭକ୍ତି ହୁଏ ତାର ।
ଆବର ବାସତ୍ୱ ଲଭ କରଇ ସେ ନର ।
ଅଣିମାଦି ସର୍ବସିଦ୍ଧି ମିଳଇ ତାହାକୁ
ଲଭଇ ସେ ଅକ୍ଲେଶରେ ଉତ୍ତମ ଯଶକୁ ।
ପୁତ୍ରଧନ ଐଶ୍ୱର୍ଯ୍ୟ ଅବଶ୍ୟ ଲଭଇ
ଇହଲୋକେ ବିଷ୍ଣୁ ତୁଲ୍ୟ ପୂଜା ପାଉଥାଇ
ଅନ୍ତଃକାଳେ ବସେ ଯାଇ ଗୋଲୋକ ନଗରେ
ଭକ୍ତି କରିଥାଏ ସଦା ଶ୍ରୀକୃଷ୍ଣ ପୟରେ ।।
ବୋଲେ ଧାନ ହୀନ କ୍ଷେତ୍ର ଆହେ ଭକ୍ତଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ପଢ଼ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ଦେବତାମାନେ ସ୍ତବ ପଠନ କରିବା ନାମ ପଞ୍ଚମୋଽଧ୍ୟାୟଃ ।

# ଷଷ୍ଠ ଅଧ୍ୟାୟ

## କୃଷ୍ଣଙ୍କ ସହିତ ଦେବତାମାନଙ୍କର କଥୋପକଥନ

ନାରଦଙ୍କ ଆଗେ ନାରାୟଣ ମୁନିବର
କହନ୍ତି ପୁରାଣରୂପ ତତ୍ତ୍ୱର ସାର ।
ମନଦେଇ ଶୁଣ ଆହେ ନାରଦ ମହର୍ଷି
ସେ ଦିବ୍ୟତେଜକୁ ଦେଖି ଦେବେ ହୋଇ ତୋଷି
ନିରୀକ୍ଷଣ କରି କିଛି କ୍ଷଣ ଅନାଇଲେ
ତା ମଧ୍ୟରେ କମନୀୟ ଶରୀର ଦେଖିଲେ ।
ସଜଳ ନୀରଦ ପ୍ରାୟେ ଦିଶଇ ବରନ
ସସ୍ମିତ ସୁମନୋହର ହୋଇଛି ଆନନ ।
ପରମାନନ୍ଦ ସ୍ୱରୂପ ତ୍ରୈଲୋକ୍ୟ ଦୁର୍ଲ୍ଲଭ
ସୌନ୍ଦର୍ଯ୍ୟରେ ସମ ନ ହୋଇବ କାମଦେବ ।
କର୍ଣ୍ଣଯୁଗଳେ କୁଣ୍ଡଳ ଦିଶଇ ରଞ୍ଜିତ
ତା ତେଜରେ ଗଣ୍ଡସ୍ଥଳ ଅତି ସୁଶୋଭିତ ।
ଉତ୍ତମ ରତ୍ନନିର୍ମିତ ନୂପୁର ଯୁଗଳ
ଥିବାରୁ ସୁନ୍ଦର ଦିଶେ ଚରଣ କମଳ ।
କଟିତଟେ ବହ୍ନିଶୁଦ୍ଧ ହରିତ ବସନ
ଶରୀରେ ଶୋଭଇ ଦିବ୍ୟ ଅଳଙ୍କାରମାନ ।
ବିମ୍ବଫଳ ତୁଲ୍ୟ ରଙ୍ଗ ଅଧରେ ସୁନ୍ଦର
ମୁରଲୀ ଧାରଣ କରେ ସୁମଧୁର ସ୍ୱର ।
ପ୍ରସନ୍ନ ବଦନ ନେତ୍ର ଭକତ ବତ୍ସଳ
ରତ୍ନପଟ୍ଟ ପ୍ରାୟ ବିରାଜିତ ବକ୍ଷସ୍ଥଳ ।
କଉସ୍ତୁଭ ପ୍ରଭୃଯୁକ୍ତ ରତ୍ନ ଆଭରଣ
ହେବାରୁ ଦ୍ୱିଗୁଣ ହୋଇଅଛି ତା କିରଣ
ସେ ତେଜଭିତରେ ପୁଣି ଦେଖିଲେ ଅମରେ
ରାଧିକା ଦେବୀଙ୍କ ନିଜ ରୂପ ସେ କାଳରେ ।
ବଙ୍କନୟନରେ ଦେବୀ ପତିଙ୍କ ମୁଖକୁ
ଅନାଇ ଅଛନ୍ତି ବହୁ ମନରେ ତୋଷକୁ ।
ଶରତ ଚନ୍ଦ୍ରମା ତୁଲ୍ୟ ପ୍ରସନ୍ନ ବଦନା
ମୁକ୍ତାପଂକ୍ତି ନିନ୍ଦିତ ଶୋଭିତ ଦଶନା ।
ବିକସିତ ପଦ୍ମପରେ ନେତ୍ର ସୁଶୋଭିତ
ବନ୍ଧୁକ କୁସୁମ ରଙ୍ଗ ଓଷ୍ଠ ବିରାଜିତ ।
ଦୁଇପାଦେ ମଣିମୟ ନୂପୁର ଯୁଗଳ
ଦିଶନ୍ତି ଯେ ରୂପେ ପଦ୍ମ ପାଶେ ହଂସଦଳ ।
ରତ୍ନ କିରଣୁ ଅଧିକ ନଖର କିରଣ
ଅଲକ୍ତକ ଯୋଗେ ଶୋଭା ହୋଇଛି ଦ୍ୱିଗୁଣ ।
ବହ୍ନିଶୁଦ୍ଧ ବସ୍ତ୍ର କରିଛନ୍ତି ପରିଧାନ
ତେଜରେ ଦିଶନ୍ତି ପୂର୍ଣ୍ଣ ଚନ୍ଦ୍ରମା ସମାନ ।
ହାର ମଧ୍ୟେ ଶୋଭାପାଏ ମହାମୂଲ୍ୟ ମଣି
ମଧ୍ୟଭାଗେ ରସନାରେ ସୁବର୍ଣ୍ଣ କିଙ୍କିଣୀ ।
ବାହୁରେ ରତ୍ନ କେୟୂର କର୍ଣ୍ଣରେ କୁଣ୍ଡଳ
ହସ୍ତରେ କଙ୍କଣ ଥାଇ ଦିଶଇ ଉଜ୍ଜ୍ୱଳ ।
ନାସିକାରେ ଗଜରାଜ ମୌକ୍ତିକ ଥିବାରୁ
ଦିଶଇ ମୁଖମଣ୍ଡଳ ଅତିଶୟ ଚାରୁ ।
ସୁନ୍ଦର କବରୀ ଭାରେ ମାଳତୀର ଗନ୍ଧ
ମେଘରେ ବିଦ୍ୟୁତପରି ପ୍ରକାଶଇ ଶୋଭା ।
ବକ୍ଷସ୍ଥଳେ କଉସ୍ତୁଭ ମଣି ସହିତରେ
ପାରିଜାତ ପୁଷ୍ପମାଳା ଶୋଭା ପାଏ ଖରେ ।
ଦଶଅଙ୍ଗୁଳିରେ ଶଙ୍ଖ ସୁବର୍ଣ୍ଣ ନିର୍ମିତ
ମୁଦ୍ରିକା ରତ୍ନେଣ ଦିଶୁଅଛି ବିରାଜିତ ।
ତପତ କାଞ୍ଚନ ତୁଲ୍ୟ ସୁନ୍ଦର ବରନ
ଲଳିତ ନିତମ୍ବ ପୀନସ୍ତନ ଶୋଭାବନ ।
ଏ ରୂପେ ଦେବଦେବୀଙ୍କ ସ୍ୱରୂପକୁ ଦେଖି
ଦେବତାଏ ମନେ ମନେ ହୋଇ ଅତି ସୁଖୀ ।
ଭକ୍ତିଭରେ ମସ୍ତକରେ ବେନିକର ଦେଇ
ସ୍ତୁତିକଲେ ଜଣେପରେ ଜଣେ ଠିଆ ହୋଇ ।
ପ୍ରଥମରେ ପ୍ରଜାପତି ବୋଇଲେ ହେଦେବ
ତୁମ୍ଭେ ଅଟ ସର୍ବମୟ ଜୀବଙ୍କର ଜୀବ ।
ତୁମ୍ଭପାଦ ସରୋଜରେ ମୋ ମାନସଭୃଙ୍ଗ
ଭ୍ରମଣ କରୁ ପାଇଣ ଭକ୍ତି ରସ ସଙ୍ଗ ।
ଜନ୍ମ ମରଣ ରୋଗର ଅଟେ ଯେ ଔଷଧି
ସେ ପାଦେ ଆଶ୍ରୟ ମୋତେ ଦିଅ କୃପାନିଧି ।
ଶଙ୍କର ବୋଇଲେ ପ୍ରଭୁ ସଂସାର-ସାଗରେ
ଭ୍ରମୁଛି ମୋ ମନ ମୀନ ଭବ କୂପ ନୀରେ ।
ସୃଷ୍ଟି ସଂହାର ସ୍ୱରୂପ ବିଷୟ ସଂହାର
ତୁମ୍ଭ ପାଦପଦ୍ମେ ଭକ୍ତି ଦିଅ ନିରନ୍ତର ।

ଧର୍ମ ବୋଇଲେ ହେ ପ୍ରଭୁ ତୁମ୍ଭ ଭକ୍ତଙ୍କର
ସଙ୍ଗମ ପ୍ରାପତ ମୋର ହେଉ ନିରନ୍ତର ।
ଯେଉଁରୂପେ ଭକ୍ତି କଲେ ତୁମ୍ଭ ପାଦାଶ୍ରୟ
ମିଳିବ ତାଦୃଶ ଭକ୍ତି ଦିଅ ଦୟାମୟ ।
ନାରଦଙ୍କ ଆଗେ କହୁଛନ୍ତି ନାରାୟଣ
ଏହିରୂପେ ବ୍ରହ୍ମାଆଦି ସର୍ବ ସୁରଗଣ ।
ଶ୍ରୀକୃଷ୍ଣଙ୍କ ଆଗେ ଭୟ ହୋଇଣ ରହିଲେ
ତାହା ଦେଖି ପ୍ରଭୁ ତାଙ୍କୁ ହସିଣ କହିଲେ ।
ବୋଇଲେ ହେ ସୁରଗଣ ନ କରଣ ଭୟ
ମୋ ପାଶକୁ ଆସ ତେଜି ସକଳ ସଂଶୟ ।
ସ୍ୱଭାବରେ ଶୁଭଯୁକ୍ତ ଅଟ ତୁମ୍ଭେମାନେ
ଉଚିତ ନୁହଇ ଶୁଭ ପୁଚ୍ଛିବା ବଚନେ ।
ନିଶ୍ଚିନ୍ତ ହୋଇଣ ଏବେ ରହିଥାଅ ତୁମ୍ଭେ
କାହିଁକି କରୁଛ ଚିନ୍ତା ଥିବାଠାରେ ଆମ୍ଭେ ।
ସକଳ ଜୀବରେ ଗୁପ୍ତରୂପେ ଆମ୍ଭେ ଥାଉଁ
ସ୍ତୁତି କରିବା ମାନଙ୍କେ ନିଜେ ଦେଖାଦେଉ ।
ତୁମ୍ଭର ଯେ ଅଭିପ୍ରାୟ ତାହା ସବୁ ମୁହିଁ
ଜାଣି ପାରିଅଛୁ ଏଥେ ସନ୍ଦେହ ଯେ ନାହିଁ ।
କାଳବଶେ ଶୁଭାଶୁଭ ସମସ୍ତ ଘଟଇ
ମହତ ଯେ କ୍ଷୁଦ୍ର କ୍ଷୁଦ୍ର ମହତ ହୁଅଇ ।
ବୃକ୍ଷରେ କୁସୁମ ଫଳ ଜାତ ହୁଏ କାଳେ
ପକ୍ୱ ହୋଇ ପୁଣି ତାହା ପଡ଼େ ମହୀତଳେ
ସୁଖ ଦୁଃଖ ଶୁଭାଶୁଭ ସମ୍ପଦ ବିପଦ
କାଳେ ଉପସ୍ଥିତ ହୁଏ ଆହେ ସୁରବୃନ୍ଦ ।
କାହାର ପ୍ରିୟ ଅପ୍ରିୟ ନାହିଁ କେ ଜଗତେ
କାଳବଶେ ହୁଏ ତାହା କର୍ମର ଆୟତ୍ତେ ।
ଦେଖିଛ ତ କେତେ ରାଜା ମନୁଙ୍କୁ ମହୀରେ
ସମସ୍ତେ ଚଳିଲେ କାଳେ କର୍ମ ଅନୁସାରେ ।
ଯେଉଁ କ୍ଷଣପାଏ ତୁମ୍ଭେ ହେଲ ଏଥେ ସ୍ଥିତ
ପୃଥ୍ୱୀରେ ହେଲଣି ସପ୍ତ ମନ୍ୱନ୍ତର ଗତ ।
ସାତଗୋଟି ଇନ୍ଦ୍ରଙ୍କର ପୂରିଲାଣି କାଳ
ଅଛନ୍ତି ଏବେ ଅଷ୍ଟମ ସୁରଲୋକପାଳ ।
ଏହିପରି ମୋର ମାୟାବଳେ ନିତ ନିତ
ଭ୍ରମଣ କରୁଛି କାଳଚକ୍ର ଦିନଗତ ।
ଇନ୍ଦ୍ର ମନୁ ସହିତରେ ସର୍ବ ନରନାଥ
ସମସ୍ତେ ଚଳନ୍ତି କାଳଗତି ଅନୁସରି ।

କେବଳ ପାତକ ପୁଣ୍ୟ ଭାରି ବସୁମତୀ
ଏମାନେ କଥାମାନଙ୍କେ ଶେଷ ହୋଇଥାନ୍ତି
ଏବେ ପୃଥିବୀରେ ଯେତେ ଅଛନ୍ତି ରାଜନ
ସମସ୍ତେ ଅଟନ୍ତି ଦୁଷ୍ଟ ମହାବଳବାନ ।
କାଳ ବଶରେ ସେ ସବୁ ଯିବେ ଲୀନ ହୋଇ
ଆହେ ସୁରଗଣ ଏଥି ସନ୍ଦେହ ଯେ ନାହିଁ ।
ମହାଭୟଙ୍କର କାଳ ଆସିଲାଣି ଧାଇଁ
ପ୍ରଚଣ୍ଡ ବେଗରେ ନିତ ପବନ ବହଇ ।
ସଜଳ ନିର୍ମଳ ଆଦି ପଦାର୍ଥ ନିକର
ଦହନ କରୁଅଛନ୍ତି ଦେବ ବୈଶ୍ୱାନର
ପ୍ରଖର କିରଣ ତାଳ ଦିନଅଧିପତି
ସକଳ ଜୀବଙ୍କୁ ଘୋର ଯନ୍ତ୍ରଣା ଦିଅନ୍ତି ।
ଯନ୍ତୁଙ୍କ ଦେହରେ ବ୍ୟାଧି କରିଅଛି ସ୍ଥାନ
ବେଗରେ ମୃତ୍ୟୁଦେବତା କରୁଛି ଧାବନ ।
ମୋହର ଅନୁଜ୍ଞା ପାଇ ଜଳଧରଗଣ
ସର୍ବଦା କରୁଅଛନ୍ତି ଘୋର ବରଷଣ ।
ବ୍ରାହ୍ମଣ ତପସ୍ୱୀ ଯୋଗୀ ବ୍ରହ୍ମର୍ଷିମାନେ
ଭୟରେ ତପସ୍ୟା କରୁଛନ୍ତି ଅନୁକ୍ଷଣେ ।
କେବଳ ମୋହର ଭକ୍ତଗଣ ନିଃଶଙ୍କରେ
ସେବା ପୂଜା କରୁଛନ୍ତି ମୋତେ ନିରନ୍ତରେ
ଆହେ ପ୍ରଜାପତି ମୁହିଁ ଅଟେ ସର୍ବରୂପ
କେହି ଚିହ୍ନି ନ ପାରନ୍ତି ମୋହର ସ୍ୱରୂପ ।
ମୋ ଆଜ୍ଞାରେ ସଂସାରକୁ କରନ୍ତେ ସଂହାର
ରୁଦ୍ରଙ୍କର ଅନ୍ୟ ନାମ ହୋଇଅଛି ହର ।
ସରଜିବା ହେତୁ ସ୍ରଷ୍ଟା ନାମଟି ତୁମ୍ଭର
ପାଳିବାରୁ ଧର୍ମ ବୋଲି ନାମ ଏହାଙ୍କର ।
ବ୍ରହ୍ମଆଦି ତୃଣ ଯାଏ ସମସ୍ତଙ୍କୁ ମୁହିଁ
ସ୍ଥାପିବାରୁ ସର୍ବଲୋକ ଈଶ୍ୱର ଅଟଇ ।
ଯାହାକୁ ସଂହାର କରିବାକୁ ମୋର ମନ
ହେବ ତାହାକୁ କେ ରଖି ନ ପାରିବେ ଜାଣ
ଯାହାକୁ ରଖିବାପାଇଁ ମୋର ଇଚ୍ଛା ଥିବ
ଅନ୍ୟ କେହି ହେଲେ ତାକୁ ମାରି ନ ପାରିବ
ଭକ୍ତଜନଙ୍କୁ ବିପଦ ଦେବାପାଇଁ ମୁହିଁ
କେଉଁ ପରକାରେ ହେଲେ ସମର୍ଥ ନୁହଇ ।
ମୋହର ଯେ ଭକ୍ତ ମୁହିଁ ତାଙ୍କ ସମୀପରେ
ରକ୍ଷା କରିବାକୁ ଜଗିଥାଏ ନିରନ୍ତରେ ।

ବ୍ରହ୍ମାଣ୍ଡ ମଧ୍ୟରେ ଯେତେ ଜୀବଜନ୍ତୁଗଣ
ଲଭୁଥାନ୍ତି ପୁନଃ ପୁନଃ ଜନମ ମରଣ ।
କିନ୍ତୁ ମୋର ଭକ୍ତମାନେ ନିରାପଦ ହୋଇ
ମୋହର ଚିତ୍ତରେ ସବୁବେଳେ ଥାନ୍ତି ରହି ।
ସେ ସକାଶୁ ଜ୍ଞାନବନ୍ତ ଲୋକେ ବସି ନିତି
ମୋର ଦାସ୍ୟ ପାଇବାକୁ କାମନା କରନ୍ତି ।
ସେମାନେହିଁ ଜଗତରେ ପ୍ରଶଂସାର ପାତ୍ର
ବଞ୍ଚିତ ହୋଇବା ଲୋକ ନିନ୍ଦ୍ୟ ଅପବିତ୍ର ।
ମୋର ଭକ୍ତବିନା ଅନ୍ୟ ଲୋକମାନଙ୍କର
ଜନ୍ମମୃତ୍ୟୁ ଜରାବ୍ୟାଧି ଭୋଗଇ ଶରୀର ।
ଭକ୍ତମାନଙ୍କର ମୁହିଁ ଅଟଇ ଜୀବନ
ସେମାନେ ମଧ୍ୟ ମୋହର ଜୀବ ବୋଲି ଜାଣ ।
ମୋତେ ଯେ ସ୍ମରଣ କରେ ସ୍ମରେ ମୁଁ ତାହାଙ୍କୁ
ବିଶେଷରେ ଚିନ୍ତା କରେ ଭକତ ଜନଙ୍କୁ ।
ସୁଦର୍ଶନ ଚକ୍ର ପେଷି ଭକ୍ତଙ୍କର ଦୁଃଖ
ଖଣ୍ଡନ କରଇ ଜାଣ ଆହେ ସୁରଶିଖ ।
ବୈକୁଣ୍ଠେ ଗୋଲୋକେ ଅବା ରାଧାଙ୍କର ପାଶେ
ନ ରହି ମୁଁ ଭକ୍ତଙ୍କର ସମୀପକୁ ଆସେ ।
ପ୍ରାଣରୁ ଅଧିକ ମୋର ରାଧିକାସୁନ୍ଦରୀ
ମହାଲକ୍ଷ୍ମୀ ପୁଣି ତୁମ୍ଭେମାନେ ସେହିପରି ।
ତଥାପି ଭକ୍ତଙ୍କଠାରୁ ଅଧିକରେ କେହି
ସନ୍ତୋଷଜନକ ମୋର ନୁହଁ କହୁଥାଇଁ ।
ଭକ୍ତ ଯାହା ଦିଏ ମୁହିଁ ଘେନଇ ତାହାକୁ
ଅଭକ୍ତ ଦେବା ପଦାର୍ଥ ଯାଏ ବଳିଠାକୁ ।
ଯେଉଁମାନେ ଧନଦ୍ରବ୍ୟ ପତ୍ନୀ ପୁତ୍ର ତେଜି
ସ୍ମରନ୍ତି ମୋତେ ଅନ୍ୟ ଦେବଙ୍କୁ ନ ଭଜି ।
ସେମାନଙ୍କୁ ନିତି ମୁହିଁ ସ୍ମରଣ କରେ
ଅନ୍ତକାଳେ ସ୍ଥାନ ଦିଏ ବଇକୁଣ୍ଠ ପୁରେ ।
ଯେଉଁମାନେ ମୋର ଭକ୍ତ ଦେବ ବ୍ରାହ୍ମଣଙ୍କୁ
ନିନ୍ଦା କରୁଥାନ୍ତି ମନେ ପ୍ରକାଶି ଦ୍ୱେଷକୁ ।
ସେମାନଙ୍କୁ ବିପଦରେ ପକାଇଣ ମୁହିଁ
ବିନାଶ କରଇ ରକ୍ଷି ନ ପାରନ୍ତି କେହି ।
ଅଗ୍ନିରେ ପତଙ୍ଗ ପରି ପଡ଼ି ସେହିମାନେ
ମହାକଷ୍ଟ ଭୋଗ କରୁଥାନ୍ତି ସବୁଦିନେ ।
ଆହେ ଦେବଗଣ ତୁମ୍ଭେ ଯାଅ ଯେଝା ପୁରେ
ପୃଥିବୀକୁ ଯିବୁ ଆମ୍ଭେ ଅଳ୍ପକାଳ ପରେ ।
ତୁମ୍ଭେମାନେ ମଧ୍ୟ ନିଜ ଅଂଶେ ଅବତାର
ମୋ ବୋଲରେ ହୁଅ ଯାଇ ପୃଥିବୀ ମଧ୍ୟରେ ।
ଏରୂପେ ଦେବଙ୍କୁ କହି ଶ୍ରୀକୃଷ୍ଣ ସେକାଳେ
ଗୋପ ଗୋପୀଙ୍କୁ ପାଶକୁ ଡକାଇ କହିଲେ ।
ବୋଇଲେ ହେ ଗୋପଗୋପୀଗଣ ତୁମ୍ଭେମାନେ
ନ ରହ ଅଧିକକାଳ ଗୋଲୋକ ଭୁବନେ ।
ନନ୍ଦ ରାଜାଙ୍କର ବ୍ରଜପୁରେ ଚାଲିଯିବ
ସେଠାରେ ଗୋପାଳ ଘରେ ଜନମ ପାଇବ ।
ରାଧିକାଙ୍କୁ ହରି ପୁଣି କହିଲେ ବଚନ
ତୁମ୍ଭେ ଯାଅ ବୃଷଭାନୁ ଗୋପଙ୍କ ଭବନ ।
ତାଙ୍କ ପ୍ରିୟା କଳାବତୀ ଲକ୍ଷ୍ମୀଅଂଶେ ଜାତ
ଅଟନ୍ତି ତାହାଙ୍କ ଗର୍ଭୁ ହୋଇବ ସମ୍ଭୂତ ।
ଦୁର୍ବାସା ମୁନିଙ୍କ ଶାପ ପାଇ ସେ ବନିତା
ବ୍ରଜପୁରେ ହୋଇଛନ୍ତି ସୁବଳ ଦୁହିତା ।
ତାଙ୍କର ଦୁହିତା ତୁମ୍ଭେ ହେବ ପ୍ରାଣସହି
ବାଳରୂପେ ମୋର ସଙ୍ଗ ପାଇବଟି ତହିଁ ।
ଏରୂପେ ରାଧିକା ଶୁଣି ପତିଙ୍କ ବଚନ
ରହିଲେ ନେତ୍ରକୁ କରି ଲୋତକ ମୋଚନ ।
ସେ ଅନ୍ତେ ଗୋପ ଗୋପୀଙ୍କୁ ଅନାଇଣ ପୁଣି
ବୋଇଲେ ସମସ୍ତେ ତୁମ୍ଭେ ଯାଇ ତତକ୍ଷଣି ।
ବ୍ରଜପୁରେ ଗୋପାଳଙ୍କ ଗୃହେ ଜଣେ ଜଣେ
ଜାତ ହୁଅ ମୋର ବୋଲ ଘେନ ତୋଷମନେ
ଏହି ସମୟରେ ସର୍ବେ ଦେଖିଲେ ସେଠାରେ
ଉତ୍ତମ ରଥ ଗୋଟିଏ ମିଳିଲା ପାଶରେ
ହୀରକ ମଣିରେ ତାହା ହୋଇଛି ନିର୍ମିତ
ଶ୍ୱେତ ଚାମର ଦର୍ପଣ ଖଣ୍ଡରେ ଶୋଭିତ ।
ବହ୍ନିଶୁଦ୍ଧ ଶ୍ୱେତ ସୂକ୍ଷ୍ମ ବସ୍ତ୍ରରେ ସେ ପୁଣି
ସଉନ୍ଦର୍ଯ୍ୟ ପ୍ରକାଶଇ ହିମଶୃଙ୍ଗ ଜିଣି ।
ରତନ କଳସ ପରେ ପାରିଜାତ ମାଳା
ବିରାଜିତ ହୋଇ ଶୋଭା ଦିଶେ ଅନର୍ଗଳା
ମଧ୍ୟାହ୍ନ ଆଦିତ୍ୟ ପରି ତାହାର କିରଣ
ପ୍ରହୃଷ୍ଟ ହୋଇଛନ୍ତି ତହିଁ ପାରିଷଦଗଣ ।
ତାହାଙ୍କ ମଧ୍ୟରେ ଦିବ୍ୟସୁନ୍ଦର ମୂରତି
ସଜଳ ଜଳଦପରି ରୂପ ପ୍ରକାଶନ୍ତି ।
ଚତୁର୍ଭୁଜେ ଶଙ୍ଖଚକ୍ର ଗଦାପଦ୍ମ ଘେନି
ବିଜେ କରିଛନ୍ତି ପ୍ରଭୁ ଦେବ ଶିରୋମଣି ।

କଣ୍ଠେ କୁଣ୍ଡଳ ବନମାଳା ବିଭୂଷିତ
କସ୍ତୁରୀ କୁଙ୍କୁମ ଗନ୍ଧ ଚନ୍ଦନ ଚର୍ଚ୍ଚିତ ।
ମଣିରତ୍ନ ସାରହାର ମଣ୍ଡିତ ଶରୀର
ଭକ୍ତ ଅନୁଗ୍ରହକାରୀ ପରମ ଈଶ୍ୱର ।
ବାମଭାଗେ ବିଦ୍ୟା ଅଧିଷ୍ଠାତ୍ରୀ ସରସ୍ୱତୀ ।
ହସ୍ତରେ ବୀଣା ପୁସ୍ତକ ଧରି ବସିଛନ୍ତି ।
ହିମକୁନ୍ଦ ପୁଷ୍ପପରି ଶୁକ୍ଳ ବରନ
ପରିଧାନ କରିଛନ୍ତି ଶୁକ୍ଳ ସୁବସନ ।
ଦକ୍ଷିଣ ଭାଗରେ ଦେବୀ କମଳ ବାସିନୀ
ବିଜେ କରିଛନ୍ତି ନାନା ବିଭୂଷଣ ଘେନି ।
ତପତ କାଞ୍ଚନ ତୁଲ୍ୟ ତାହାଙ୍କ ଶରୀର
ସ୍ୱର୍ଣ୍ଣରତ୍ନ ଭରଣରେ ଦିଶେ ମନୋହର ।
ପରିଧାନ କରିଛନ୍ତି ମହାମୂଲ୍ୟ ବାସ
ଶୋଭିତ କରଇ ମୁଖ ଈଷତ ମନ୍ଦହାସ ।
ରତ୍ନ କୁଣ୍ଡଳ କେୟୂର କଙ୍କଣକୁ ଆଦି
ଅଳଙ୍କାରମାନ ଭରି ଅଛନ୍ତି ସମ୍ପାଦି ।
ପାରିଜାତ ପୁଷ୍ପମାଳା ବକ୍ଷସ୍ଥଳେ ସାଜେ
ମସ୍ତକ ଦେଶେ ମାଳତୀ ମାଳିକା ବିରାଜେ ।
ଶରତଚନ୍ଦ୍ରମା ପ୍ରାୟେ ବଦନର ପ୍ରଭା
କସ୍ତୁରୀ ସିନ୍ଦୂର ବିନ୍ଦୁ ତହିଁ ପାଏ ଶୋଭା ।
ପ୍ରଫୁଲ୍ଲ ପଙ୍କଜପତ୍ର ସଦୃଶ ନୟନ
ସୁଚାରୁ କଜ୍ଜ୍ୱଳ ରେଖା ତହିଁରେ ଶୋଭନ ।
ବକ୍ର ଚାହାଣିରେ ନାରାୟଣଙ୍କ ମୁଖକୁ
ଅନାଇଁଅଛନ୍ତି ବହି ଅତ୍ୟନ୍ତ ସ୍ନେହକୁ ।
ତାଙ୍କୁ ଦେଖି ସଭାମଧ୍ୟେ ଆଶ୍ଚର୍ଯ୍ୟ ହୋଇଲେ
ଏକ ଦୃଷ୍ଟିରେ ସମସ୍ତେ ଅନାଇଁ ରହିଲେ ।
ଖଣ୍ଡିଦୂରେ ରଥ ରଖି ପ୍ରଭୁ ଚକ୍ରଧର
ଲକ୍ଷ୍ମୀ ସରସ୍ୱତୀଙ୍କୁ ଯେ ଘେନି ସଙ୍ଗତର ।
ପାରିଷଦଗଣ କୁଳେ ସଭାରେ ମିଳିଲେ
ତାହା ଜାଣି ଦେବଗଣ ଆସନୁ ଉଠିଲେ ।
ଆଦରି ଗୋପ ଗୋପିକା ଥିଲେ ଯେତେ ତହିଁ
ସମସ୍ତେ ଉଠିଲେ ବେଗେ ଶିରେ କର ଦେଇ
ସାମବେଦୋକ୍ତ ପ୍ରକାରେ ସ୍ତୁତି ଆରମ୍ଭିଲେ
ତାହାଙ୍କ ସଙ୍ଗରେ ମୁନିଋଷି ଯୋଗ ଦେଲେ ।
ସେ ସମୟେ ନାରାୟଣ କ୍ଷଣକ ମଧ୍ୟରେ
ମିଶିଗଲେ ଯାଇ ଶ୍ରୀକୃଷ୍ଣଙ୍କ ଶରୀରରେ ।

ଏରୂପେ ଆଶ୍ଚର୍ଯ୍ୟ କର୍ମ ଦେଖି ସେ ସମସ୍ତେ
ରହିଲେ ବିସ୍ମୟ ପାଇ ନିଜ ନିଜ ଚିତ୍ତେ ।
ସେ ଅନ୍ତରେ ପୁଣି ସାତକୁମ୍ଭ ମହାମଣ୍ଡ
ପ୍ରବେଶ ହୋଇଣ ସେହି ସ୍ଥାନରେ ଝଟତି ।
ଶ୍ରୀକୃଷ୍ଣଙ୍କ ଅଙ୍ଗେ ଲୀନ ହେଲେ ସେହିପରି
ତା ଦେଖି ରହିଲେ ସର୍ବେ ଚମତ୍କୃତ ପରି ।
ଏଥି ଅନନ୍ତରେ ଦେବ ସଙ୍କର୍ଷଣ ଆସି
କ୍ଷଣକ ମଧ୍ୟରେ ସଭାସ୍ଥଳେ ଗଲେ ପଶି ।
ସହସ୍ରମସ୍ତକ ସେହି ପୁରୁଷ ଉତ୍ତମ
ପ୍ରକାଶିତ କରୁଛନ୍ତି ଶତ ସୂର୍ଯ୍ୟ ଧାମ ।
ଶ୍ରୀକୃଷ୍ଣଙ୍କ ପାଦତଳେ ପ୍ରଣାମ ସେ କଲେ
ଅନୁମତି ପାଇ ତାଙ୍କ ପାଶରେ ବସିଲେ ।
ନରଙ୍କ ସହିତେ ମୁହିଁ ମଧ୍ୟ ସେହିଠାକୁ
ଗଲି ହେ ନାରଦ ମୁନି ସଭା ଦେଖିବାକୁ ।
ଶ୍ରୀକୃଷ୍ଣଙ୍କ ଚରଣରେ ହୋଇଲି ମୁଁ ଲୀନ
ନର ବସିଲେ କେବଳ ପକାଇ ଆସନ ।
ବ୍ରହ୍ମା ଶିବ ଧର୍ମ ଯାଇ ଶେଷଙ୍କ ପାଶରେ
ବସିଲେ ଆନନ୍ଦେ ନିଜ ନିଜ ଆସନରେ ।
ଏ ସମସ୍ତେ ଦେବଗଣ ଦେଖିଲେ ଅନାଇ
ସୁବର୍ଣ୍ଣରଥ ଗୋଟିଏ ପୁଣି ଆସେ ଧାଇଁ ।
ଅଷ୍ଟରତନରେ ସେହି ହୋଇଛି ଜଡ଼ିତ
ଶୁକଳବର୍ଣ୍ଣମର ପଟ୍ଟବସ୍ତ୍ର ସୁଶୋଭିତ ।
ସହସ୍ରେକ ଚକ୍ର ଲଗା ହୋଇଛି ତହିଁରେ
ଗତି କରି ଯାଉଛି ସେ ଆପଣା ଇଚ୍ଛାରେ ।
ପୂର୍ବକାଳେ ବିଶ୍ୱକର୍ମା ଶଙ୍କରଙ୍କ ପାଇଁ
ସେ ରଥ ନିର୍ମିତ କରିଥିଲେ ତୋଷ ବହି ।
ଉଚ୍ଚରେ ଅଟଇ ସେହି ପଚାଶ ଯୋଜନ
ଶତ ଯୋଜନ ବିସ୍ତୃତ ହୋଇଅଛି ପୁଣ ।
ସୁନ୍ଦର ତଳପ ପଡ଼ିଅଛି ସେ ମଧ୍ୟରେ
ପୂର୍ଣ୍ଣ ହୋଇଛି ସେ ରତ୍ନ ବସ୍ତ୍ର ଅଳଙ୍କାରେ ।
ବସି ଅଛନ୍ତି ତହିଁରେ ପ୍ରକୃତି ଈଶ୍ୱରୀ
ସହସ୍ର ହସ୍ତରେ ନାନା ଆୟୁଧକୁ ଧରି ।
ଘେନିଛନ୍ତି ଅଙ୍ଗେ ନାନାବିଧ ଆଭରଣ
ମନ୍ଦହାସେ ସୁଶୋଭିତ ଦିଶୁଛି ବଦନ ।
ମନ୍ଦାର କୁସୁମ ମାଳା ବକ୍ଷସ୍ଥଳେ ଥାଇ
ମୁକୁତା ହାରରେ ଶୋଭା ଦ୍ୱିଗୁଣ କରଇ ।

ଶରତ ପାର୍ବଣଚନ୍ଦ୍ର ତୁଲ୍ୟ ମୁଖକାନ୍ତି
ସାନ୍ଦ୍ରୋଜ୍ଜ୍ୱଳ ପ୍ରଭା ନିନ୍ଦେ ନକ୍ଷତ୍ରର ଜ୍ୟୋତି ।
ଅଧର ଜଣାଇ ବନ୍ଧୁଜୀବ ପୁଷ୍ପପରି
ଦିବ୍ୟ ମାଳତୀ ମାଳାରେ ଭୂଷିତ କବରୀ ।
ପକ୍ଷୀରାଜ ଚଞ୍ଚୁ ସମ ନାସିକା ଅଗ୍ରରେ ।
ଗଜେନ୍ଦ୍ର ମୌକ୍ତିକ ଶୋଭା ପାଏ ନିରନ୍ତରେ ।
ଅଗ୍ନିଶୁଦ୍ଧ ଦିବ୍ୟବସ୍ତ୍ର ପରିଧାନ କରି
ଦିଶୁଛନ୍ତି ତେଜୋମୟ ମାରତଣ୍ଡ ପରି ।
କରିଛନ୍ତି ମହାସିଂହ ପୃଷ୍ଠେ ଆରୋହଣ
ଗଣେଶ କାର୍ତ୍ତିକେୟଙ୍କ ସଙ୍ଗରେ ଶୋଭନ ।
ଦେବସଭା ମଧ୍ୟେ ଦେବୀ ପରବେଶ ହେଲେ
ଶ୍ରୀକୃଷ୍ଣଙ୍କୁ ଭକ୍ତିଭରେ ପ୍ରଣାମ ସେ କଲେ ।
ସେ ଅନ୍ତରେ ରତ୍ନମୟ ସିଂହାସନ ପରେ
ବସିଲେ ଶ୍ରୀକୃଷ୍ଣଙ୍କର ଆଜ୍ଞା ଘେନ ଶିରେ ।
ଗଣପତି କାର୍ତ୍ତିକେୟ ଦୁହେଁ ସେହିପରି
ନମସ୍କାର କଲେ ଶ୍ରୀକୃଷ୍ଣଙ୍କ ପାଦ ଧରି ।
ସେ ଅନ୍ତେ ବ୍ରହ୍ମାଣଙ୍କର ଧର୍ମଦେବତାଙ୍କୁ
ପ୍ରଣାମ କଲେ ମନରେ କହିଣ ତୋଷକୁ ।
ସେ ଦୁହିଁଙ୍କୁ ଦେଖି ଇନ୍ଦ୍ର ଆଦି ସର୍ବସୁରେ
ଆସନୁ ଉଠି ପ୍ରଣାମ କଲେ ଭକ୍ତିଭରେ ।
ଆଶୀର୍ବାଦ କରି କାର୍ତ୍ତିକେୟ ଗଣେଶ୍ୱର
ଆଳାପ କଲେ ବସିଣ ତାହାଙ୍କ ପାଶର ।
ସର୍ବ ଦେବଦେବୀଗଣ କୃଷ୍ଣଙ୍କ ଆଗରେ
ଉପବିଷ୍ଟ ହେଲେ ଗୋପ ଗୋପୀ ସହିତରେ ।
କମଳାଙ୍କ ମୁଖ ଚାହିଁ ପ୍ରଭୁ ନରହରି
କହି ଆରମ୍ଭିଲେ ମନ୍ଦହାସ ମୁଖେ ଧରି ।
ଭୀଷ୍ମକଙ୍କ ଗୃହକୁ ତୁମ୍ଭେ ଯାଅ କମଳଣୀ
ବୈଦର୍ଭୀ ଗର୍ଭରେ ଜାତ ହୁଅ ସନାତନ ।
କୁଣ୍ଡିନ ନଗରେ ଆମ୍ଭେ ଅବତାର ହୋଇ
ତୁମ୍ଭର ପାଣିଗ୍ରହଣ କରିବୁଟି ତହିଁ ।
ଏଥିଅନ୍ତରେ ଶ୍ରୀକୃଷ୍ଣ ପାର୍ବତୀଙ୍କୁ ଚାହିଁ
ବୋଇଲେ ଗୋ ଦେବୀ ତୁମ୍ଭେ ଅଂଶରୂପେଯାଇ
ନନ୍ଦଗୃହେ ଯଶୋଦାଙ୍କ ଗର୍ଭେ ଜାତ ହୁଅ
ମହୀମଣ୍ଡଳର ସର୍ବ ଉଲ୍ଲାସ କରାଅ ।
ପ୍ରତ୍ୟେକ ଗ୍ରାମରେ ପୁଣି ପ୍ରତ୍ୟେକ ଗୃହରେ
ତୁମ୍ଭଙ୍କୁ ପୂଜା କରିବେ ଭକ୍ତିଭରେ ନରେ ।

ସୂତିକା ଗୃହକୁ ତୁମ୍ଭେ ସ୍ପର୍ଶ କଲବେଳେ
ମୋରପିତାବସୁଦେବ ମୋତେ ଘେନିକୋଳେ
ସେଠାରେ ଥୋଇ ତୁମ୍ଭଙ୍କୁ ଉଠାଇ ଆଣିବେ
ମୋ ମାତା ଦେବକୀଙ୍କର କୋଳେ ସମର୍ପିବେ
ଶିଶୁ ରୂପେ ଅଳ୍ପକ୍ଷଣ ମାତ୍ର ରହିଥିବ
କଂସକୁ ଦେଖିଲେ ଅନ୍ତର୍ଦ୍ଧାନ ହୋଇଯିବ ।
ଶିବଙ୍କ ପାଶରେ ଯାଇ ହେବ ପରବେଶ
ସେ ଅନ୍ତେ କରିଣ ମୁହିଁ ଦୁଷ୍ଟଙ୍କୁ ବିନାଶ ।
ନିଜପୁରରେ ଉପସ୍ଥିତ ହେବ କାଳାନ୍ତରେ
ଏରୂପେ ନିଶ୍ଚୟ କରିଅଛୁଟି ମନରେ ।
ତା ଶୁଣି ଦୁର୍ଗା ଦେବୀ ସମ୍ମତ ହେଲେ
ସ୍କନ୍ଦଙ୍କୁ ଅନାଇଁ ପୁଣି ଶ୍ରୀକୃଷ୍ଣ କହିଲେ ।
ବୋଇଲେ ହେ ବତ୍ସ ତୁମ୍ଭେ ଅଂଶ ସ୍ୱରୂପରେ
ଜନମ ହୋଇବ ଜାମ୍ବବତୀଙ୍କ ଗର୍ଭରେ ।
ଆବର ସକଳ ଦେବେ ନିଜ ନିଜ ଅଂଶେ
ମନୁଷ୍ୟ ରୂପରେ ଜନମନ୍ତୁ ମହୀଦେଶେ ।
ତୁମ୍ଭ ସମସ୍ତଙ୍କୁ ମୁହିଁ ଘେନ ମହୀଭାର
ହରଣ କରିବି ଏଥେ ସନ୍ଦେହ ନ କର ।
ଏମନ୍ତ କହି ଶ୍ରୀହରି ବସିଲେ ଆସନେ
ସଭାସଦମାନେ ମଧ୍ୟ ରହିଲେ ମଉନେ ।
କ୍ଷଣକ ଅନ୍ତରେ ପୁଣି ଉଠି ପ୍ରଜାପତି
କରଯୋଡ଼ି ଶ୍ରୀକୃଷ୍ଣଙ୍କ ଆଗରେ ସ୍ଥିତି ।
ଉଭାହୋଇ ବିନୟରେ କହିଲେ ବଚନ
ବୋଇଲେ ଯା ଆଜ୍ଞା ହେଲା ପ୍ରଭୁ ଭଗବାନ ।
ପାଳନ କରିବୁ ଆମ୍ଭେ ସକଳ ଦେବତା
ଦ୍ୱରବାପାଇଁ ତହିଁ ନାହିଁ କେଉଁ କଥା ।
ଅକୁଣ୍ଠିତ ଚିତ୍ତେ ପ୍ରଭୁ ଆଜ୍ଞା ଯେ ପାଳଇ
ଭୃତ୍ୟଙ୍କ ମଧ୍ୟରେ ସେହୁ ଉତ୍ତମ ଅଟଇ ।
କିଏ କେଉଁଠାରେ କାହାଘରେ କାହିଁ ପାଇଁ
ଜନମ ହୋଇବେ ତାହା କହନ୍ତୁ ବତାଇ ।
ଏରୂପେ ବ୍ରହ୍ମାଙ୍କଠାରୁ ଶୁଣି ରାଧାକାନ୍ତ
ବୋଇଲେ କହିବା ଶୁଣ ତହିଁର ବୃତ୍ତାନ୍ତ ।
ରୌକ୍ମଣେୟନାମେ ଜାତ ହେବେକାମଦେବ
ମାୟାବତୀ ବୋଲି ରତିଙ୍କର ନାମ ହେବ ।
ସେନ୍ତି ମାୟାବତୀ ପ୍ରିୟାରୂପେ ଯାଇକରି
ରହିବେ ଶମ୍ବର ଗୃହେ ହୋଇ ପରସ୍ପର ।

ତାଙ୍କ ଗର୍ଭରୁ ହୋଇବେ ଜନମ ଆପଣ
ଅନିରୁଦ୍ଧ ବୋଲିକରି ବହିବେଟି ନାମ ।
ବାଣାସୁର ସ୍ତ୍ରୀ ଗର୍ଭେ ଦେବୀ ସରସ୍ୱତୀ
ଶୋଣିତନାମ ନଗରେ ହେବେ ଉତପତ୍ତି ।
ଶେଷଦେବ ରୋହିଣୀଙ୍କଠାରୁ ଜନମିବେ
ରେବତୀ ଦେବୀଙ୍କ ପାଣିଗ୍ରହଣ କରିବେ ।
ମାୟାରେ ଗର୍ଭରୁ କଢ଼ିବାରୁ ସଂକର୍ଷଣ
ସଂକର୍ଷଣ ନାମକୁ ସେ ପାଇବେଟି ଜାଣ ।
ଗଙ୍ଗାଅଂଶେ ସୂର୍ଯ୍ୟସୁତ କାଳନ୍ଦୀ ହୋଇବେ
ଲକ୍ଷଣା ନାମେ ତୁଳସୀ ଜନମ ପାଇବେ ।
ନାଗ୍ନଜିତୀ ନାମେ ଜାତ ହୋଇବେ ସାବିତ୍ରୀ
ସତ୍ୟଭାମା ବୋଲାଇବେ ଦେବୀ ବସୁମତୀ ।
ସରସ୍ୱତୀ ଜନମିବେ ଶୈବ୍ୟା ନାମ ବହି
ରୋହିଣୀ ଜନ୍ମିବେ ମିତ୍ରବିନ୍ଦା ଯେ ବୋଲାଇ ।
କଳାଏକ ସୂର୍ଯ୍ୟପତ୍ନୀ ହେବେ ରତ୍ନମାଳା
ସ୍ୱାହା ଅଂଶରେ ଉତ୍ପନ୍ନ ହୋଇବେ ସୁଶୀଳା ।
ଆଉର ରୁକ୍ମିଣୀ ଆଦି ଆଠଗୋଟି ପ୍ରିୟା
ହେବେ ସେହି ସ୍ୱାହାଙ୍କର ଅଂଶ ରୂପ ଧରି ।
ଦୁର୍ଗାଙ୍କ ଅର୍ଦ୍ଧଅଂଶରେ ଜାମ୍ବବତୀ ହେବେ
ଦଶମ ମହିଷୀ ହୋଇ ସେହିଟି ରହିବେ ।
ଶୃଙ୍ଗାର ଦାନ କରିବାପାଇଁ ସେ ବିଷ୍ଣୁଙ୍କୁ
ପାଇଛନ୍ତି ପୂର୍ବେ ସଦାଶିବଙ୍କ ଆଜ୍ଞାରୁ ।
ତାହାଶୁଣି ପ୍ରଜାପତି ବୋଇଲେ ଜଗତ
ଶିବଙ୍କ ଆଜ୍ଞା ପାଇଲେ ତ୍ରୈଲୋକ୍ୟଈଶ୍ୱର ।
ବିଷଦ ରୂପରେ ତାହା କହ ନରହରି
ଶୁଣିଲେ ସଂଶୟ ଦୂର ହୋଇବ ମୋହର ।
ଏହିରୂପେ ବ୍ରହ୍ମାଙ୍କର ବଚନକୁ ଶୁଣି
କହି ଆରମ୍ଭିଲେ କୃଷ୍ଣ ପୂର୍ବର କାହାଣୀ ।
ବୋଇଲେ ଗଣେଶଙ୍କର ଜନ୍ମ ସମୟରେ
ଦେଖିବାପାଇଁ କି ଆସିଥିଲେ ସର୍ବସୁରେ ।
ଶିବଙ୍କ ସ୍ତୁତିରେ କୃଷ୍ଣ ହୋଇ ନାରାୟଣ
ଶ୍ୱେତଦ୍ୱୀପ ତ୍ୟାଗ କରି ଆସିଲେ ବହନ ।
ରତ୍ନସିଂହାସନ ପରେ ବିଜେକଲେ ସାଇଁ
ତ୍ରୈଲୋକ୍ୟ ମୋହନ ବପୁ ସୁନ୍ଦର ଅଟଇ ।
ଶ୍ୟାମଳ ବରନ ନବଯୌବନ ବୟସ
କଟିତଟେ ଶୋଭାପାଏ ସ୍ୱଚ୍ଛ ପୀତବାସ ।

କଣ୍ଠେ କୁଣ୍ଡଳ ଆଦି ଅଳଙ୍କାର ମାନ
ଦିଶନ୍ତି ଅଙ୍ଗରେ ରତ୍ନ ଅତି ଶୋଭାବନ ।
କୁଙ୍କୁମ କସ୍ତୁରୀ ଗନ୍ଧ ଚନ୍ଦନ ଲେପିତ
ହେବାରୁ ଶରୀର ବାସ କରେ ବିତରିତ ।
ଚାରିପାଶେ ବେଷ୍ଟିଛନ୍ତି ପାରିଷଦଗଣ
ଶିବ ଆଦି ସୁରଗଣ କରନ୍ତି ବନ୍ଦନ ।
ଏମନ୍ତ ସମୟେ ଦେବୀ ପାର୍ବତୀ ସେଠାରେ
ପ୍ରବେଶ ହୋଇ ବିଷ୍ଣୁଙ୍କୁ ଦେଖିଲେ ନେତ୍ରରେ
ସ୍ୱଭାବରେ ସ୍ତ୍ରୀ ସମସ୍ତ ଅଟେ ତ ଚଞ୍ଚଳ
ନିବାରିଲେ ସ୍ଥିରକରି ନୟନ ଯୁଗଳ ।
ଅତ୍ୟନ୍ତ ସୁନ୍ଦର ଦିଶୁଥିଲେ ତ ଶ୍ରୀହରି
ଅନାଇଁଲେ ପୁଣି ମୁଖେ ବସ୍ତ୍ର ଦେଇକରି ।
ସେ ସକାଶୁ ପୁଲକିତ ହୋଇଲା ଶରୀର
ସୁଖ ସମୁଦ୍ରରେ ମଗ୍ନ ହେଲା ମନେନ୍ଦ୍ରିୟ ।
କ୍ଷଣେ ଯାଏ ନିରେଖିଲେ ପଞ୍ଚବଦନଙ୍କୁ
ଅନାଇଁ ରହନ୍ତି ପୁଣି କ୍ଷଣେ ଶ୍ରୀହରିଙ୍କୁ ।
ସେ ଦୁହିଙ୍କ ରୂପ ବେଶ ଅଟଇ ସମାନ
ଦେଖି ଶ୍ରୀହରିଙ୍କ ଆଗେ କହନ୍ତି ବଚନ ।
ବିଷ୍ଣୁ ମାୟାରେ ମୋହିତ ହୋଇ ମହାମାୟୀ
ଭାବିଲେ ମୋଠାରୁ ଜାତ ଅଟନ୍ତି ଏ ଦୁଇ ।
ବ୍ରହ୍ମା ମଧ୍ୟ ଏହାଙ୍କର ଅଗ୍ରଜ ଅଟନ୍ତି
ସତ୍ତ୍ୱଗୁଣକୁ ବହନ ବିଷ୍ଣୁ କରନ୍ତି ।
ତେଣୁ ସେ ଦୁହିଙ୍କଠାରୁ ଅଟନ୍ତି ଉତ୍ତମ
ସକଳ ପ୍ରକାର ଗୁଣ ତେଜରୂପ ଧାମ ।
ଏମନ୍ତ ଭାବ ତାହାଙ୍କ ମନରେ ବୁଝିଲେ
ଯୋଗବଳେ ମହାଦେବ ବୁଝି ତା ପାରିଲେ ।
ସର୍ବଅନ୍ତର୍ଯ୍ୟାମୀ ସେ ତ ଜଗତକରତା
ତାହାଙ୍କର ଅବିଦିତ ଅଟେ କେଉଁକଥା ।
ଦେବୀଙ୍କୁ ସଙ୍ଗରେ ଘେନି ଏକାନ୍ତକୁ ଗଲେ
ହିତତଥ୍ୟ କଥା କହି ପ୍ରବୋଧନା କଲେ ।
ବୋଇଲେ ହେ ଶୈଳପୁତ୍ରୀ ଶୁଣ ମୋ ବଚନ
ନିର୍ଭୟରେ ଶ୍ରୀହରିଙ୍କୁ କର ଉତ୍ତଦାନ ।
ବ୍ରହ୍ମାବିଷ୍ଣୁ ମହେଶ୍ୱର ରୂପ ଅଟେ ମୁହିଁ
ଲଜ୍ଜିବାପାଇଁ ଏଥିରେ କଥା କିଛି ନାହିଁ ।
ବିଧିହରିହର ତିନିମୂର୍ତ୍ତି ହୋଇ ଆମ୍ଭେ
ପ୍ରକାଶିତ ହୋଇଅଛୁ ବୋଲି ଜାଣ ତୁମ୍ଭେ ।

ଏକା ପ୍ରକୃତି ଯେ ତୁମ୍ଭେ ସର୍ବଙ୍କ ଜନନୀ
ଭିନ୍ନ ଭିନ୍ନ ରୂପେ ଜାତ ହୋଇଅଛ ଜାଣି ।
ବ୍ରହ୍ମାଙ୍କ ପାଶରେ ବାଣୀରୂପେ ରହିଅଛ
ବିଷ୍ଣୁଙ୍କର ବକ୍ଷସ୍ଥଳେ ଲକ୍ଷ୍ମୀ ବୋଲାଉଛ ।
ମୋ ପାଶରେ ଦୁର୍ଗା ଦେବୀ ହୋଇଅଛ ପୁଣି
ଗୋଲୋକ ଭୁବନେ ରାଧା ଶ୍ରୀକୃଷ୍ଣଘରଣୀ ।
ଏହିରୂପେ ଶୁଣି ମହାଦେବଙ୍କ ବଚନ
କହିଲେ ତାହାଙ୍କୁ ଦେବୀ ହୋଇଣ ବିମନ ।
ବୋଇଲେ ହେ ପ୍ରାଣନାଥ ବହୁ ତପସ୍ୟାରେ
ତୁମ୍ଭଙ୍କୁ ପାଇଛୁ ମୂର୍ତ୍ତି ପତି ସ୍ୱରୂପରେ ।
କାହିଁପାଇଁ ହୋଇଲ ବା ମୋଠାରେ ନିର୍ଦ୍ଦୟ
ଏମନ୍ତ ବଚନ କହୁଅଛ ପ୍ରାଣପ୍ରିୟ ।
ତଥାପି ତୁମ୍ଭର ଦାସୀ ଅଟଇ ତ ମୁହିଁ
ଯାହା ବୋଲିବ ସେ କଥା ନିଶ୍ଚେ କରିବଇଁ ।
ବେଦାନ୍ତରେ ଶ୍ରୀହରିଙ୍କୁ କରିବି ଭଜନ
ଅନ୍ୟଥା ନ ହେବ ଆଜ ତୁମ୍ଭର ବଚନ ।
ଦେବୀଙ୍କଠାରୁ ଏରୂପେ ଶୁଣିବାରୁ ହର
ଅଭୟ ଦେଲେ ତାହାଙ୍କୁ ହସି କରବର ।
ଆହେ ପ୍ରଜାପତି ସଦାଶିବଙ୍କ ବଚନ
ପାଳିବାକୁ ଦୁର୍ଗା ଜାମ୍ବବତୀ ହେବେ ଜାଣ ।
ରାଧାତ ବୋଇଲେ ଦେବ ପୃଥିବୀ ମଧ୍ୟରେ
ଭକ୍ତବଂଶୀୟ ଅନେକ ନୃପ ଥିବାଠାରେ ।
ଭଲ୍ଲୁକ ଗୃହରେ କିପାଁ ଦେବୀଙ୍କର ଜନ୍ମ
ହୋଇବ କହିଲ କହ ତହିଁର କାରଣ
ଶ୍ରୀକୃଷ୍ଣ ବୋଇଲେ ପୂର୍ବେ ତ୍ରେତୟା ଯୁଗରେ
ଜାମ୍ବବ ଜନ୍ମିଲେ ବ୍ରହ୍ମାଜସ୍ୟଙ୍କ ଅଂଶରେ ।
ଭଲ୍ଲୁକ ରାଜନ ସେହି ଶ୍ରୀରାମ କଙ୍କର
ଲଙ୍କାରେ ରାବଣ ସଙ୍ଗେ କଲେ ରଣଘୋର ।
ତାଙ୍କଗୁଣରେ ସନ୍ତୁଷ୍ଟ ହୋଇ ଦାଶରଥି
ଚିରଞ୍ଜୀବ ବରଦାନ କଲେ ମହାମତି ।
ସେ ସକାଶୁ ମହାବଳୀ ଋକ୍ଷ ଅଧୀଶ୍ୱର
ଜୀବିତ ଅଛନ୍ତି ଜାଣ ଆହେ ବେଦବର ।
ଦୁର୍ଗାଙ୍କର ପିତୃଅଂଶେ ହେବାରୁ ସେ ଜାତ
ଅଂଶରେ ତାଙ୍କ ଦୁହିତା ହେବେ ଆଦ୍ୟମାତ ।
ଆବର ସକଳ ଦେବଗଣ ଅଂଶରୂପେ
କ୍ଷତ୍ରିୟଙ୍କ ଗୃହେ ଜାତହେବେ ଯାଇ ଆପେ ।
ପୃଷ୍ଠରେ ମୋର ସହାୟ ହୋଇଣ ରହିବେ
ଦୁଷ୍ଟ ନିବାରି ପୃଥିବୀ ଭାର ଉଶ୍ୱାସିବେ ।
କମଳା ଦେବୀଙ୍କ କଳା ଯେତେକ ବହୁତ
ନୃପତିକନ୍ୟକା ରୂପେ ହେବେ ମଧ୍ୟ ଜାତ ।
ଷୋଡ଼ଶ ସହସ୍ର ସଂଖ୍ୟା ହେବ ତାହାଙ୍କର
ସମସ୍ତେ ରହିବେ ପତ୍ନୀ ହୋଇଣ ମୋହର ।
ପାଣ୍ଡୁଙ୍କ ଭାର୍ଯ୍ୟା ଗର୍ଭେ ଅଂଶରୂପେ ରହି
ଧର୍ମ ଜାତହେବେ ଯୁଧିଷ୍ଠିର ନାମ ବହି ।
ବାୟୁଙ୍କ ଅଂଶରେ ଭୀମ ଇନ୍ଦ୍ରାଂଶେ ଅର୍ଜ୍ଜୁନ
ଅଶ୍ୱିନୀକୁମାର ଅଂଶେ ହେବେ ଦୁଇଜଣ ।
ତାହାଙ୍କ ନାମ ନକୁଳ ସହଦେବ ହେବ
ସୂର୍ଯ୍ୟ ଅଂଶେ କର୍ଣ୍ଣବୀର ଜନମ ପାଇବ ।
ସମୁଦ୍ର ଅଂଶରେ ହେବେ ଶାନ୍ତନୁ ନୃପତି
ଦୁର୍ଯ୍ୟୋଧନ ହେବେ କଳିଅଂଶେ ଉତପତ୍ତି ।
ଶମନ ଅଂଶେ ବିଦୁର ଜନମ ପାଇବେ
ଅଶ୍ୱତ୍ଥାମା ରୁଦ୍ରଙ୍କର ଅଂଶେ ଜାତ ହେବେ ।
ଦ୍ରୋଣଦ୍ୱିଜ ହେବେ ବହ୍ନି ଅଂଶରେ ସମ୍ଭୂତ
ଚନ୍ଦ୍ରଅଂଶେ ଅଭିମନ୍ୟୁ ବୀର ହେବ ଜାତ ।
ଭୀଷ୍ମ ବସୁ ଭୀଷ୍ମ ନାମେ ଉତ୍ପନ୍ନ ହୋଇବେ
କଶ୍ୟପ ଅଂଶରେ ବସୁଦେବ ଜନ୍ମ ହେବେ ।
ଦେବକୀ ଅଦିତି ଅଂଶେ ଜାତ ହୋଇ କରି
ବସୁଦେବ ନୃପଙ୍କର ହେବେ ମନୋହାରୀ ।
ଜନମିବେ ନନ୍ଦ ଗୋପ ବସୁ ଅଂଶ ଘେନ
ଯଶୋଦା ହୋଇବେ ପୁଣି ତାହାଙ୍କ କାମିନୀ ।
ଅଗ୍ନିକୁଣ୍ଡରୁ ଦ୍ରୌପଦୀ କମଳା ଅଂଶରେ
ଜାତ ହେବେ ଦ୍ରୁପଦଙ୍କ ଯଜ୍ଞ ସମୟରେ ।
ଆବର ତାହାଙ୍କ ସଙ୍ଗେ ଧୃଷ୍ଟଦ୍ୟୁମ୍ନ ରୂପେ
ବାହାର ହୋଇବେ ହୁତାଶନ ଦେବ ଆପେ ।
ଦେବକୀ ଗର୍ଭରୁ ଶତରୂପାଙ୍କ ଅଂଶରେ
ସୁଭଦ୍ରା ଜନ୍ମିବେ ମୋର ଭଗିନୀ ଭାବରେ ।
ଏହିରୂପେ ଦେବଗଣ ନିଜ ଅଂଶ ଧରି
ଜନମ ହୁଅନ୍ତି ଦେବୀଗଣ ସେହିପରି ।
ଏମନ୍ତ କହି ଶ୍ରୀକୃଷ୍ଣ ମଉନେ ରହିଲେ
ବ୍ରହ୍ମା ତ ତା ଶୁଣି ସବୁ ବୁଝିଣ ବସିଲେ ।
ଶ୍ରୀକୃଷ୍ଣଙ୍କ ବାମଭାଗେ ଦେବୀ ସରସ୍ୱତୀ
ଦକ୍ଷିଣ ଭାଗେ କମଳା ବସିଲେ ଝଟତି ।

ଆଗରେ ବସିଲେ ତୁନି ହୋଇ ଦେବଗଣ
କେହି କିଛି ହେଲେ ଆଜ୍ଞା ନ କହି ବଚନ ।
ପାର୍ଶ୍ୱ ସନ୍ନିହିତେ ସର୍ବ ଗୋପଗୋପୀଗଣେ
ବସିଲେ ସେକାଳେ ଯାଇ ଯେ ଯାହାର ସ୍ଥାନେ
ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳେ ଥିଲେ ତ ରାଧିକା
ପତିଙ୍କ ମୁଖକୁ ଚାହିଁ କହିଲେ ସେ ଏକା ।
ବୋଇଲେ ହେ ପ୍ରାଣେଶ୍ୱର ଶୁଣ ମୋ ବଚନ
ତୁମ୍ଭ କଥା ଶୁଣି ଦଗ୍ଧ ହେଉଛି ମୋ ମନ
ନିମେଷ ମାତ୍ରକ ତୁମ୍ଭ ଦରଶନ ବିନା
ଆତୁର ହୋଇ ମୁଁ କେତେ କରଇ ଭାବନା
ଏକା ହୋଇକରି ଯେବେ ମର୍ତ୍ତ୍ୟଲୋକେ ଯିବ
କହ କେତେଦିନେ ତୁମ୍ଭ ଦର୍ଶନ ପାଇବି ।
କେଉଁ ସମୟରେ ବ୍ରଜ ନଗରେ ଆମ୍ଭର
ମିଳନ ହେବ କିରୂପେ କହ ମୋ ଆଗର ।
ଯୁଗଶତ ପରି ବୋଧ ହୋଇବ ନିମିଷ
କାହାକୁ ଦେଖି ମୁଁ କ୍ଷଣେ ଲଭିବି ଆଶ୍ୱାସ ।
ତୁମ୍ଭ ବିନା ପିତାମାତା ବନ୍ଧୁ ଭାଇ ସୁତ
କାହାଠାରେ ହେଲେ ରତି ହେବନାହିଁ ଚିତ୍ତ
ମାୟାରେ ଆଚ୍ଛନ୍ନ କରି ମୋର ପଞ୍ଚପ୍ରାଣ
ମର୍ତ୍ତ୍ୟ ଲୋକକୁ ଯେ ପୁଣି କରୁଛ ପ୍ରେରଣ ।
ଶପଥ କରିଣ ମୋତେ କହିଥାଅ ସ୍ଥିରେ
ଜନମ ହୋଇବି ମୁହିଁ ଯେବଣ ସ୍ଥାନରେ ।
ତୁମ୍ଭ ପଦ ପଙ୍କଜରେ ମୋ ମାନସ-ଭୃଙ୍ଗ
ଭକ୍ତିରସ ପିଇବାକୁ କରିଥିବ ସଙ୍ଗ ।
ଶ୍ରୀକୃଷ୍ଣ ତୁମ୍ଭେ ରାଧିକା ଅଟଇ ତ ମୁହିଁ
ଯେମନ୍ତେ ଦାମ୍ପତ୍ୟସ୍ନେହ ପାସୋରିବ ନାହିଁ
ତେମନ୍ତବର ପ୍ରଦାନ କର ପ୍ରାଣନାଥ
ତୁମ୍ଭ କୃପାବଳେ ମୋର ପୂରୁ ମନୋରଥ ।
ଯେରୂପ ଶରୀର ସଙ୍ଗେ ଛାୟା ଜାବ ଥାନ୍ତ
ସେହିପରି ମୁହିଁ ରହିଥିବି ତୁମ୍ଭକତ ।
ମର୍ତ୍ତ୍ୟପୁରର ମୁହୂର୍ତ୍ତେକ ଆମ୍ଭ ଦୁହିଙ୍କର
ବିରହ ନୋହିବ ମୋତେ ଦିଅ ଏହି ବର ।
ତୁମ୍ଭର ଶରୀର ମୋର ପ୍ରାଣ ସହିତରେ
ନିର୍ମିତ ହୋଇଛି ଅବା ଧାତାଙ୍କ ଇଚ୍ଛାରେ ।
ଜଗତରେ କେତେ ସ୍ତ୍ରୀ ପୁରୁଷ ନାହାନ୍ତି
ନ ଥିବ ମୋ ପରି ଭାର୍ଯ୍ୟା ତୁମ୍ଭପରି ପତି
ତୁମ୍ଭଦେହ ଅର୍ଦ୍ଧଭାଗେ ମୋହର ବିଗ୍ରହ
କେ ଅବା ନିର୍ମାଣ କରିଅଛି ବନ୍ଧି ସ୍ନେହ ।
ନୋହିଲେ କାହିଁକି ମୋର ମନ ତୁମ୍ଭଠାରେ
ଅତ୍ୟନ୍ତ ଆସକ୍ତ ହୋଇଥାନ୍ତା ନିରନ୍ତରେ ।
ବିରହ ବାରତା ଶୁଣି ହୃଦୟ ବେଦନା
ପ୍ରାଣୀକୁ ପୀଡ଼ିତ କରୁଅଛି ମହାମନା ।
ଏମନ୍ତ ବୋଲିଣ ଦେବୀ ସେ ଦେବ ସଭାରେ
ଶ୍ରୀକୃଷ୍ଣ ଚରଣ ଧରି କାନ୍ଦିଲେ ଉଚ୍ଚରେ ।
ତା ଦେଖି ଶ୍ରୀକୃଷ୍ଣ ତାଙ୍କୁ କୋଳରେ ବସାଇ
ବୋଧକଲେ ନାନାବିଧ ପ୍ରିୟବାକ୍ୟ କହି ।
ବୋଇଲେ ଗୋ ଦେବୀ ଶୁଣ ଆଧ୍ୟାତ୍ମିକଯୋଗ
ଯାହାକୁ ଜାଣିଲେ ନଷ୍ଟ ହୁଏ ଦୁଃଖଭୋଗ ।
ନିଖିଳ ବ୍ରହ୍ମାଣ୍ଡ ଅଟେ ଲୋକର ଆଶ୍ରୟ
ସକଳ ପ୍ରାଣୀକୁ ସେହି କରିଅଛି ଥୟ ।
ଆଶ୍ରୟବିନା ପଦାର୍ଥ ରହି ନ ପାରଇ
ପଣ୍ଡିତଜନେ ଏମନ୍ତ ଶାସ୍ତ୍ରେ ଛନ୍ତି କହି ।
ଫଳର ଆଶ୍ରୟ ପୁଷ୍ପ ପୁଷ୍ପ ଧାର ପତ୍ର
ପତ୍ରର ଆଶ୍ରୟ ଶାଖା ହୋଇଥାଏ ମାତ୍ର ।
ସେ ଶାଖାଆଧାର ସ୍କନ୍ଧ ସ୍କନ୍ଧାଶ୍ରୟ ତରୁ
ତରୁ ଆଶ୍ରୟ ଅଙ୍କୁର ହୁଏ ପ୍ରଥମରୁ ।
ସେ ଅଙ୍କୁର ବୀଜଶକ୍ତି ଯୋଗେ ଜାତହୁଏ
ପୃଥିବୀ ବୀଜକୁ ନିଜ ଦେହେ ଧରିଥାଏ ।
ପୃଥିବୀକୁ ଶେଷଦେବ ବହିଛନ୍ତି ଶିରେ
କଚ୍ଛପ ଧରିଅଛଇ ତାଙ୍କୁ ନିଜପରେ ।
କଚ୍ଛପକୁ ବହିଛନ୍ତି ପ୍ରଭଞ୍ଜନ ଦେବ
ସେ ପୁଣି କରିଅଛନ୍ତି ମୋର ଅଙ୍ଗେ ଠାବ ।
ମୋହର ଆଶ୍ରୟ ରୂପ ଅଟ ତୁମ୍ଭେ ଜାଣ
ତୁମ୍ଭବିନା କେଉଁଠାରେ ନାହିଁ ମୋର ସ୍ଥାନ
ତ୍ରିଗୁଣ ଆଧାର ସର୍ବଶକ୍ତି ସ୍ୱରୂପିଣୀ
ଶରୀର ବୋଲିଅ ମୋତେ ଆମ୍ଭ ରୂପେ ଘେନି
ତୁମ୍ଭ ବିରହରେ ମୁହିଁ ନିରୀହ ଅଟଇ
ଚେଷ୍ଟାବାନ ହୁଏ ପୁଣି ସଙ୍ଗ ଯେବେ ପାଇ ।
ପୁରୁଷ ଅଙ୍ଗରୁ ବୀର୍ଯ୍ୟ ହୁଅଇ ଉତ୍ପନ୍ନ
ବୀର୍ଯ୍ୟରୁ ପୁଣି ଜନମ ହୁଅଇ ସନ୍ତାନ ।
ସେ ଦୁହିଙ୍କ ଆଶ୍ରୟ ଯେ ଅଟଇ କାମିନୀ
ସଂସାର ଉତ୍ପନ୍ନ ତେଣୁ ହୁଏ ତାହା ଘେନି ।

କାମିନୀର ଜନ୍ମ ଅଟେ ପ୍ରକୃତି ଅଂଶରେ
ସୃଷ୍ଟି ହୋଇଥାଏ ସେହୁ ରଜସ ଗୁଣରେ ।
ଆଶ୍ରୟ ନ ଥିଲେ ଆତ୍ମା ରହିବ ନ ପାରଇ
ବିନା ଆତ୍ମାରେ ଶରୀର ରହିବ ବା କାହିଁ ।
ସେ ସକାଶୁଁ ପ୍ରକୃତିର ପ୍ରାଧାନ୍ୟ ଅଧିକ
ସ୍ତ୍ରୀ ପୁରୁଷ ଯୋଗରେ ସେହି ଜାତକରେ ଲୋକ
ପ୍ରକୃତି ପୁରୁଷବିନା ସୃଷ୍ଟି ସରଜନ
ହୋଇ ନପାରଇ କେତେବେଳେ ହେଲେ ଜାଣ
ଆମ୍ଭେ ଦୁହେଁ ଅଟୁଁ ଯେଣୁ ସଂସାରର ବୀଜ
ଆମ୍ଭର ପ୍ରଭେଦ କାହିଁ ନାହିଁ ମନେ ହେଜ ।
ଯେଉଁରୂପେ କ୍ଷୀରଠାରେ ଧବଳତା ଥାଏ
ଅନଳରେ ଦାହକର୍ତ୍ତ୍ରୀ ଶକ୍ତି ଦେଖାଯାଏ ।
ପୃଥିବୀରେ ଗନ୍ଧ ଜଳେ ଶୈତ୍ୟରୂପ ଗୁଣ
ସେ ରୂପେ ମୁଁ ତୁମ୍ଭଠାରେ ଅଛି ବୋଲି ଜାଣ
ମୁଁ ନ ଥିଲେ ଜୀବଶୂନ୍ୟ ହୋଇଥିବ ତୁମ୍ଭେ
ତୁମ୍ଭ ବିନା ଦୃଶ୍ୟ ହୋଇ ନ ପାରିବୁ ଆମ୍ଭେ ।
କୁମ୍ଭକାର ସ୍ୱର୍ଣ୍ଣକାର ଦୁହେଁ ଯେଉଁ ମତ
ମୃତ୍ସ୍ୱର୍ଣ୍ଣ ବିନା କାର୍ଯ୍ୟ କରି ନ ପାରନ୍ତ ।
ତୁମ୍ଭ ସାହାଯ୍ୟ ନଥିଲେ ମୁହିଁ ସେହିପରି
ସୃଷ୍ଟି ସରଜନ କାର୍ଯ୍ୟ ନ ପାରଇ କରି ।
ନିତ୍ୟ ନିରାମୟ ଅଟେ ଆତ୍ମା ଯେ ପ୍ରକାରେ
ପ୍ରକୃତି ରୂପିଣୀ ତୁମ୍ଭେ ଅଟ ସେ ରୂପରେ ।
ବ୍ରହ୍ମା ଶିବ ଧର୍ମ ପୁଣି ଲକ୍ଷ୍ମୀ ସରସ୍ୱତୀ
ଏମାନେ ମୋହର ପ୍ରାଣ ସମାନ ଅଟନ୍ତି ।
ପ୍ରାଣରୁ ଅଧିକ ତୁମ୍ଭେ ଅଟ ଗୋ ପ୍ରେୟସି
ବୋଇଲେ ତ ବକ୍ଷସ୍ଥଳେ ଥାଅ ଅହର୍ନିଶି ।
ଏବେ ମୋର ବୋଲକରି ଶୋକ ପରିହରି
ନିଜାଂଶରେ ଘେନି ମର୍ତ୍ତ୍ୟଲୋକେ ଅବତରି ।
ବୃଷଭାନୁ ପ୍ରାଣପ୍ରିୟା କଳାବତୀ ସତୀ
ତାହାଙ୍କ ଜଠରେ ବେଗେ କରି ଯାଇ ସ୍ଥିତି ।
ବାୟୁପୂର୍ଣ୍ଣ କରି ନବମାସ ତହିଁ ରହି
ଦଶମ ମାସରେ କନ୍ୟାରୂପେ ଜାତ ହୁଅ ।
ଅନ୍ତର ହୋଇଲେ ବାୟୁ ମାତାଙ୍କ ପାଶରେ
କ୍ରନ୍ଦନ କରିବ କ୍ଷଣେ ବାଲ୍ୟ ସ୍ୱଭାବରେ ।
ମୁଁ ମଧ୍ୟ ଯଶୋଦାଙ୍କର ଗର୍ଭୁ ସେହିପରି
ଜାତ ହେବ ଯଥାକାଳେ ଶିଶୁରୂପ ଧରି ।

ଏହିରୂପେ ବାୟୁଯୋଗେ ଆମ୍ଭେ ଜାତ ହୋଇ
ଅଯୋନିସମ୍ଭବ ବୋଲାଇବା ଜାଣ ତହିଁ ।
ତୁମ୍ଭ ସକାଶରେ ମୁହିଁ ମର୍ତ୍ତ୍ୟଲୋକେ ଜାତ
ହୋଇବ କପଟେ ନାଶିବାକୁ କଂସ ଦୈତ୍ୟ ।
ଭୂମିରେ ପଡ଼ିବା ମାତ୍ରେ ଜନକ ମୋହର
ରଖି ଆସିବେଟି ମୋତେ ଯଶୋଦା ମନ୍ଦିର ।
ଗୋପପୁରେ ମୋର ଦରଶନ ତୁମ୍ଭେ ନିତ
ପାଇବ ମନରେ କିଛି ନ କର ଗୋ ଚିନ୍ତ ।
ବର ଦେଉଅଛି ଏବେ ଶୁଣ ବିଧୁମୁଖୀ
ସ୍ମରଣ କରିବ ପୂର୍ବକଥା ମୋତେ ଦେଖି ।
ତୁମ୍ଭଙ୍କୁ ଘେନି ବିହାର କରିବ ମୁଁ ରଙ୍ଗେ
ନାନାବିଧ କାମକ୍ରୀଡ଼ା କରିବ ମୋ ସଙ୍ଗେ ।
ସୁନ୍ଦର ବୃନ୍ଦାବନରେ ବୁଲି ଅନୁକ୍ଷଣେ
ବନ ନେଇଥିବ ମୋତେ ଘେନି ଘୋଷମନେ
ଏକବିଂଶ ଶତକୋଟି ଗୋପୀ ସଙ୍ଗେ ଧରି
ବ୍ରଜପୁରକୁ ଗମନ କର ଗୋ ସୁନ୍ଦରୀ ।
ଆଉରି ତେତିଶ କୋଟି ବୟସୀଙ୍କୁ ନିଅ
ଆଜି ଯେତେ ଜନ୍ତୁ ତାଙ୍କୁ ଏଠାରେ ରଖାଅ
କୋମଳ ବଚନେ କହି ପ୍ରବୋଧନା କରି
ଯେଉରୂପେ ତୁମ୍ଭ ବିରହେ ନୁହନ୍ତି ଆତୁର ।
ତୁମ୍ଭେ ଯିବାପରେ କେତେକାଳ ଅନ୍ତେ ମୁହିଁ
ଅସଂଖ୍ୟ ଗୋପଙ୍କୁ ଏହି ଗୋଲୋକେ ରଖାଇ
ମଥୁରା କଟକେ ବସୁଦେବଙ୍କ ଗୃହରେ
ଜନ୍ମ ହେବ ତାଙ୍କ ପ୍ରିୟା ଦେବକୀ ଉଦରେ
ମୋର ପ୍ରିୟତମ ଯେଉଁ କୋଟିଏ ଗୋପାଳ
ବଲ୍ଲଭ ନଗରେ ଜାତ ହୁଅନ୍ତୁ ସକଳ ।
ଏରୂପେ କହି ଶ୍ରୀକୃଷ୍ଣ ବିରତ ହୋଇଲେ
ସଭାସଦଗଣ ତାଙ୍କୁ ଅନାଇଁ ବସିଲେ ।
ବ୍ରହ୍ମା ଶିବ ଧର୍ମଦେବ ଅନନ୍ତ ଆଉରି
ଦୁର୍ଗା ସରସ୍ୱତୀ ଆଦି ଯୋଡ଼ି ବେନିକର ।
ଭକ୍ତିଭରେ ଶ୍ରୀକୃଷ୍ଣଙ୍କୁ ସ୍ତୁତି କଲେ ତହିଁ
ଏ ସମୟେ ଗୋପଗୋପୀଗଣ ଉଭା ହୋଇ ।
ଶ୍ରୀକୃଷ୍ଣଙ୍କ ପାଦ ଧରି ପ୍ରଣାମ କରିଲେ
ଆଗଭର ହୋଇ ରାଧା ପୁଣି ଉଭାହେଲେ ।
ଅଶ୍ରୁପୂର୍ଣ୍ଣ ନୟନରେ ଅନାଇଁ ତାହାଙ୍କୁ
ଶୀତା ହେଲପରି ପୁଣି ପୋତିଲେ ମୁଖକୁ ।

ତାହା ଦେଖିଣ ଶ୍ରୀକୃଷ୍ଣ ବୋଇଲେ ସୁନ୍ଦରୀ
ମୁଁ ଥିବାଠାରୁ କିପାଇଁ ଶୋକ କର ଡରି ।
ମର୍ତ୍ତ୍ୟଲୋକେ ଭୟ କିଛୁ ନୋହିବ ତୁମ୍ଭର
ମାତ୍ର କଥା ଟିଏ କହୁଅଛୁ ହେଜୁ କର ।
ଶ୍ରୀଦାମା ଶାପରେ ଶତବର୍ଷ ପୂର୍ଣ୍ଣ ହେଲେ
ମୋହର ବିଚ୍ଛେଦ ତୁମ୍ଭେ ପାଇବଟି ଭଲେ ।
ମୁଁ ମଧ୍ୟ ମଥୁରାପୁରେ କରିବି ଗମନ
ପିତାମାତାଙ୍କୁ ବନ୍ଧନୁ ରଖିବାକୁ ଜାଣ ।
ଆବର ସେ ମାଳାକାର ଚନ୍ଦ୍ରବାସୁ କୁଳେ
କୁବୁଜକା ତରୁଣୀକୁ ମୁକ୍ତକରି କାଳେ ।
ଯବନକୁ ମାରି ମୁଚକୁନ୍ଦକୁ ତାରିବି
ଦ୍ୱାରକା ନାମରେ ପୁରୀ ନିର୍ମାଣ କରିବି ।
ପୁଣି ରାଜସୂୟ ଯାଗ କରି ବରଣନ
ଷୋଳସସ୍ର ରାଜକନ୍ୟା କରିବି ଗ୍ରହଣ ।
ଶତେ ଦଶଗୋଟି ଶତ୍ରୁ ସଂହାରି କଷ୍ଟତେ
ମିତ୍ରଙ୍କର ଉପକାର କରି ନାନାମତେ ।
ବାଣାସୁର ଭୁଜ ଛେଦି ପୁରକୁ ତାହାର
ଦଗ୍ଧ କରାଇବି ପେଷି ଅଗ୍ନି ଅସ୍ତ୍ର ଶର ।
ସେ ସମୟେ ଶିବଙ୍କର ସଙ୍ଗେ ଯୁଦ୍ଧ କରି
ବିମୁଖ କରାଇ ଦେବି ଦିବ୍ୟ ଅସ୍ତ୍ରମାରି ।
ସତ୍ୟଭାମା ପ୍ରୀତିପାଇଁ ପାରିଜାତ ଫୁଲ
ଆଣିବି ସ୍ୱର୍ଗରୁ ଇନ୍ଦ୍ର ସଙ୍ଗେ କରି ଗୋଳ ।
ତୀର୍ଥଯାତ୍ରା କରି ତହୁଁ ମୁନିଙ୍କ ବର୍ଣ୍ଣନ
ଯଥା ସମୟରେ ଯାଇ କରି ସମାପନ ।
ବନ୍ଧୁଙ୍କ ସହିତ ସମ୍ଭାଷଣ କଲାପରେ
ସମାପ୍ତ କରିବି ଯଜ୍ଞ ବିଧି ଅନୁସାରେ ।
ପିତାଙ୍କୁ ଦର୍ଶନ କରି ଶୁଭ ମୁହୂର୍ତ୍ତରେ
ସାକ୍ଷାତ ହୋଇବି ପୁଣି ତୁମ୍ଭ ସଙ୍ଗତରେ ।
ସେ ଅନ୍ତେ ଗୋପଗୋପିକା ଗଣଙ୍କୁ ଦେଖିବି
ତୁମ୍ଭଙ୍କୁ ଉତ୍ତମ ସତ୍ୟଜ୍ଞାନ ବୁଝାଇବି ।
ଏହିରୂପେ କେତେକାଳ ଗତ ହେବା ପରେ
ପ୍ରବେଶ ହେବି ତୁମ୍ଭଙ୍କୁ ଘେନି ବ୍ରଜପୁରେ ।
ଶତେବର୍ଷକାଳ ଯାହା ବିରହ ହୋଇବ
ସ୍ୱପ୍ନରେ ତୁମ୍ଭର ମୋର ଦେଖା ହେଉଥିବ ।
ମୋର ନାରାୟଣ ଅଂଶ ଦ୍ୱାରକାରେ ଯାଇ
ରହିବ ନିଶ୍ଚୟ ବୋଲି ଜାଣ ପ୍ରିୟସହି ।
ଶତବର୍ଷ ମଧ୍ୟେ କାର୍ଯ୍ୟ ସମାପନ କରି
ତୁମ୍ଭ ସହିତରେ ପୁଣି ହେବି ବନବାସୀ ।
ସେହିଠାରେ ଗୋପାଳଙ୍କ ଶାନ୍ତ୍ୱନା କରିବି
ତାହାଙ୍କ ମନରୁ ଦୁଃଖଶୋକ ନିବାରିବି ।
ମଣି ମହୀକାର ଘର ଉଣ୍ଟାପିଣ ହେଲେ
ନିଜପୁରେ ଯିବି ଗୋପଗୋପୀଙ୍କର ମେଳେ ।
ମୋ ସଙ୍ଗରେ ମଧ୍ୟ ତୁମ୍ଭେ ଆସିବ ସୁନ୍ଦରୀ
ସେହିଦିନ ଯାଏ ମାତ୍ର ଥିବ ଦେହ ଧରି ।
ଯେ ମୋହର ନାରାୟଣ ଅଂଶେ ଅବତାର
ଲକ୍ଷ୍ମୀ ସରସ୍ୱତୀଙ୍କୁ ସେ ଘେନି ସଙ୍ଗତର ।
ବଇକୁଣ୍ଠ ଭୁବନକୁ ଗମନ କରିବେ
ପାରିଷଦଗଣ ସହ ସ୍ୱସ୍ଥାନେ ରହିବେ ।
ଦେବଦେବୀଙ୍କର ଅଂଶେ ଯେ ହୋଇବେ ଜାତ
ସେମାନେ ମଧ୍ୟ ସେକାଳେ ହୋଇବେ ନିବୃତ୍ତ
ଏହିରୂପେ ଭବିଷ୍ୟତ ଘଟନା ବୃତ୍ତାନ୍ତ
ଶୁଣିଲ ତ ସୁସ୍ଥହୁଅ ସ୍ଥିରକରି ଚିତ୍ତ ।
ନିରୂପିତ କରିଅଛୁ ଯେଉଁକଥା ମୁହିଁ
ଅବଶ୍ୟ ସେ କଥା ଶେଷ ହେବ କହୁଥାଇଁ ।
ଏମନ୍ତ କହି ଶ୍ରୀକୃଷ୍ଣ ରାଧିକାଙ୍କୁ ଘେନି
ବସିଲେ ସେ ଦେବସଭାମଧ୍ୟେ ହୋଇ ତୁନି ।
ଦେବ ଦେବୀଗଣ ମଧ୍ୟ ତାହାଙ୍କ ଆଗରେ
ବସିଲେ ବିସ୍ମିତ ହୋଇ ଯେ ଯା ଆସନରେ
ଶ୍ରୀକୃଷ୍ଣ ପୁଣି ତାହାଙ୍କୁ ଅନାଇ କହିଲେ
ନିଜ ନିଜ ପୁରେ ତୁମ୍ଭେ ଯାଅ ଏବେ ଭଲେ ।
ଦୁର୍ଗାଙ୍କୁ ବୋଇଲେ ବେନି ତନୟଙ୍କୁ ତୁମ୍ଭେ
ସଙ୍ଗେ ଘେନି କୈଳାସକୁ ଯାଅ ବୋଲୁଆମ୍ଭେ ।
ଯେଉଁରୂପେ ଯାହାକୁ ମୁହିଁ କଲି ନିୟୋଜିତ
ସେହିରୂପେ କଳାଅଂଶେ ଜନ୍ମିବ ସମସ୍ତ ।
ଲମ୍ବୋଦରଙ୍କ ବ୍ୟତୀତ ସାନବଡ଼ ଯେତେ
ମର୍ତ୍ତ୍ୟପୁରେ ଅବତାର ଘେନ ଯେ ଯା ମତେ ।
ଏହା ଶୁଣି ଦେବଗଣ ସେକ୍ଷଣି ଉଠିଲେ
ଶ୍ରୀକୃଷ୍ଣଙ୍କ ପାଦଧରି ନମସ୍କାର କଲେ ।
ଆନନ୍ଦରେ ନିଜ ନିଜ ପୁରେ ଗଲେ ଚଳି
ଆପଣା କର୍ତ୍ତବ୍ୟ କାର୍ଯ୍ୟ ସମ୍ପାଦିବେ ବୋଲି ।
ଲକ୍ଷ୍ମୀ ସରସ୍ୱତୀ ଦୁହେଁ କୃଷ୍ଣଙ୍କୁ ପ୍ରଣମି
ସେହିକ୍ଷଣି ପରବେଶ ହେଲେ ମର୍ତ୍ତ୍ୟଭୂମି ।

ଏରୂପେ ବିଦାୟ ଦେଇ ସେ ଦେବଦେବୀଙ୍କୁ
କହିଲେ ପୁଣି ଶ୍ରୀକୃଷ୍ଣ ଅନାଇ ରାଧାଙ୍କୁ ।
ଗୋପଗୋପୀଙ୍କ ସଙ୍ଗରେ ଶୀଘ୍ର ତୁମ୍ଭେ ଯାଅ
ବୃଷଭାନୁ ଗୋପାଳର ଘରେ ଜାତ ହୁଅ ।
ତୁମ୍ଭ ପଛେ ଚଳେ ମୁହିଁ ମଥୁରାକୁ ଯିବି
କଂସବଧୁ ନିକେ ଗୋପପୁରେ ପ୍ରବେଶିବି ।
ସେଠାରେ ତୁମ୍ଭ ସଙ୍ଗତେ ଭେଟ ହେବ ମୋର
ଏଥିରେ କିଞ୍ଚିତ ମାତ୍ର ସନ୍ଦେହ ନ କର ।
ଏରୂପେ ଶୁଣି ରାଧିକା ଶ୍ରୀକୃଷ୍ଣଙ୍କ ଠାରୁ
କ୍ରନ୍ଦନ କଲେ ବିରହବାଧା ଜନ୍ମିବାରୁ ।
ରହି ରହି ପୁଣି ଖଣ୍ଡଦୂର ସ୍ଥଳ ଯାନ୍ତ
ବାହୁଡ଼ି ଆସି ହରିଙ୍କ ମୁଖକୁ ଅନାନ୍ତ ।
ଏମନ୍ତେ ବହୁତବାର ଗଲାପରେ ସଖି
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି ପ୍ରକାଶିଣ ଅତି ।
ସାତଥର ପ୍ରଦକ୍ଷିଣ କରି ଉଭା ହେଲେ
ମର୍ତ୍ତ୍ୟଲୋକକୁ ଯିବାକୁ ବିଦାୟ ମାଗିଲେ ।
ଏହିକାଳେ ଏକତ୍ରିଂଶ କୋଟି ଗୋପୀଗଣ
ତାହାଙ୍କ ପାଶରେ ଆସି ମିଳିଲେ ବହନ ।
ଗୋପାଳେ ମଧ୍ୟ ତାହାଙ୍କ ପଛେ ଆସିଥିଲେ
ରାଧାକୃଷ୍ଣଙ୍କ ପାଶରେ ଉପସ୍ଥିତ ହେଲେ ।
ସେମାନଙ୍କୁ ଦେଖି ତହୁଁ ରାଧିକା ସୁନ୍ଦରୀ
ପ୍ରଣମିଲେ ପୁଣି ଶ୍ରୀକୃଷ୍ଣଙ୍କ ପାଦ ଧରି ।
ଗୋପ ଗୋପୀଗଣ ମଧ୍ୟ ଦଣ୍ଡବତ ହେଲେ
ସମସ୍ତେ ରାଧାଙ୍କ ତୁଲେ ମର୍ତ୍ତ୍ୟଲୋକେ ଗଲେ ।
ବିଦାୟ ଦେଇ ତାହାଙ୍କୁ ଦେବ ନରହରି
କେତେକାଳ ପରେ ଗଲେ ମଥୁରା ନଗରୀ ।
ସେତେବେଳକୁ ଦେବକୀ ଗର୍ଭ ଛଅଗୋଟି
ପୁତ୍ରଙ୍କୁ ମାରିଣ କଂସ ଦେଇଛି ଚକଟି ।
ସପ୍ତମଗର୍ଭେ ଯେ ଶେଷ ଅଂଶେ ଉପୁଜିଲେ
ଯୋଗମାୟା ଦେବୀ ତାଙ୍କୁ ଘେନିଯାଇ ବଳେ ।
ଗୋପପୁରେ ରୋହିଣୀଙ୍କ ଗର୍ଭେ ରଖାଇଲେ
ଶ୍ରୀହରିଙ୍କଠାରୁ ସେତ ଆଜ୍ଞା ପାଇଥିଲେ ।
ଦେବକୀ ଅଷ୍ଟମ ଗର୍ଭେ ଶ୍ରୀକୃଷ୍ଣ ଉତ୍ପତ୍ତି
ହୋଇଥିଲେ ଜାଣ ଆହେ ଦ୍ୱିଜକୁଳପତି ।
କ୍ଷେତ୍ର ମୋହନ କହଇ ଆହେ ସାଧୁଜନେ
ଶ୍ରୀକୃଷ୍ଣ ଚରିତ ଶୁଣ ଆନନ୍ଦିତ ମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ସହିତ ଦେବତାମାନଙ୍କର
କଥୋପକଥନେ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କର ଜନ୍ମ ଓ ବ୍ରହ୍ମାଆଦି ଦେବତାଙ୍କ ସ୍ତବ ପଠନ

ନାରଦ ବୋଇଲେ ନାରାୟଣ ମୁନିବର
ଶ୍ରୀକୃଷ୍ଣଙ୍କ ଜନ୍ମକଥା କହ ମୋ ଆଗରେ ।
କାହାର ପୁତ୍ର ଅଟନ୍ତି ବସୁଦେବ ରଜା
ଦେବକୀ ଅଟନ୍ତି ଅବା କାହାର ତନୁଜା ।
ସେ ଦୁହିଙ୍କର ବିବାହ ହୋଇଲା କିପରି
କାହିଁକି ମାଇଲା କଂସ ପୁତ୍ରଙ୍କୁ ତାଙ୍କରି ।
କେଉଁ ଦିନରେ ଶ୍ରୀକୃଷ୍ଣ ଜନମ ହୋଇଲେ
ଏ ସମସ୍ତ କଥା ମୋତେ କହ ମୁନି ଭଲେ ।
ତାହା ଶୁଣି ନାରାୟଣ ହରଷିତ ହୋଇ
ବୋଇଲେ କହୁଛି ତାହା ଶୁଣ ମନଦେଇ ।
କଶ୍ୟପ ହୋଇଲେ ବସୁଦେବରୂପେ ଜାତ
ଦେବଜନନୀ ଦେବକୀ ଶ୍ରୀକୃଷ୍ଣଙ୍କ ମାତ ।
ପୂର୍ବ ପୁଣ୍ୟବଳେ ଦୁହେଁ ପୁତ୍ର ସ୍ୱରୂପରେ
ଶ୍ରୀକୃଷ୍ଣଙ୍କୁ ପାଇଲେଟି ମନୁଷ୍ୟ ଲୋକରେ ।
ଦେବତୁଲ୍ୟ ବସୁଦେବ ଶୁଭ ମୁହୂର୍ତ୍ତରେ
ଜାତହେଲେ ଦେବମୀଢ଼ ନୃପଙ୍କ ଭାର୍ଯ୍ୟାରେ ।
ତାହାଙ୍କ ଜନ୍ମ କାଳରେ ସ୍ୱର୍ଗେ ଦେବଗଣ
ଅନେକ ଦୁନ୍ଦୁଭି ଆଦି କଲେକ ବାଦନ ।
ସେ ସକାଶୁ ବିଜ୍ଞବ୍ୟକ୍ତିମାନେ ସେ ପୁତ୍ରକୁ
ବୋଲେ ଆନକ ଦୁନ୍ଦୁଭି ବୋଲିଣ ନାମକୁ ।

ଆହୁକର ପ୍ରିୟସୁତ ଯଦୁବଂଶେ ଜାତ
ଦେବକ ବୋଲି ତାହାର ନାମ ଅଟେ ଖ୍ୟାତ
ଦେବକୀ ଅଟନ୍ତି ସେହି ଦେବକ ଭଗିନୀ
ସକଳ ଗୁଣରେ ଯୁକ୍ତା ଅଟନ୍ତି ସେ ପୁଣି ।
ଆହୁକଙ୍କ ପୁରୋହିତ ଗର୍ଗ ମହାସନ୍ତ
ବେଦଶାସ୍ତ୍ର ତତ୍ତ୍ୱଜ୍ଞାନୀ ପଣ୍ଡିତ ଅଟନ୍ତି ।
ତାଙ୍କ ସନମତେ ବସୁଦେବଙ୍କ ହସ୍ତରେ
ଆହୁକ ଦେଲେ ସୁତାଙ୍କୁ ଅତି ସନ୍ତୋଷରେ ।
ବହୁତ ସମ୍ଭାରେ ନାନା ଉତ୍ସବ କରାଇ
ବଢ଼ାଇଲେ ସୁତାଙ୍କର ବିବାହକୁ ତହିଁ ।
ଆନନ୍ଦିତ ହୋଇ ନାନା ଯଉତୁକ ଦେଲେ
ହସ୍ତୀ ଅଶ୍ୱ ରଥ ବସ୍ତ୍ର ଅଳଙ୍କାର ଭୁଲେ ।
ସ୍ୱର୍ଣ୍ଣରତ୍ନ ବିଭୂଷିତା ଶତଶତ ଦାସୀ
ପଠାଇଦେଲେ ସଙ୍ଗରେ ହୋଇ ମହାତୋଷୀ
ଆଉର ବହୁତ ଭକ୍ଷଭୋଜ୍ୟ ଦ୍ରବ୍ୟ ଦେଲେ
ତା ସହିତେ ବହୁ ସ୍ୱର୍ଣ୍ଣପାତ୍ର ପଠାଇଲେ ।
ଶତଚନ୍ଦ୍ର ମୁଖୀ ଦିବ୍ୟ ରତ୍ନ ବିଭୂଷିତା
ଦେଲେ ସେକାଳରେ କେତେ ସୁନ୍ଦରୀ ବନିତା
ତାଙ୍କ ସଙ୍ଗେ ରୂପବନ୍ତୀ ନବ ଯଉବନୀ
ଅଶେଷ ଗୁଣ ଭୂଷିତା ତ୍ରୈଲୋକ୍ୟମୋହିନୀ ।
ନବ ସଙ୍ଗମ ଲାଳସୀ ଦେବକୀ ସୁନ୍ଦରୀ
ପତିଙ୍କର ସଙ୍ଗତରେ ଗଲେ ଅନୁସରି ।
ରଥରେ ବସାଇ ତାଙ୍କୁ ବସୁଦେବ ବେଗେ
ନିଜପୁରେ ଯାତ୍ରାକଲେ ଅତି ଅନୁରାଗେ ।
ଭଗିନୀ ବିବାହକାର୍ଯ୍ୟ ଶେଷ କରି କଂସ
ବସୁଦେବଙ୍କ ସହିତେ ଗଲେ ବହି ତୋଷ ।
ସେ ସମୟେ ଆକାଶରୁ ଶୁଭିଲା ଏ ବାଣୀ
କି ଆନନ୍ଦ ହେଉଅଛ ଆହେ ନୃପମଣି ।
ତୁମ୍ଭ ଭଗିନୀ ଦେବକୀ ଅଷ୍ଟମ ଗର୍ଭରେ
ଯେଉଁ ସୁତ ହେବ ବସୁଦେବ ଔରସରେ ।
ତୁମ୍ଭର ମରଣ ହେତୁ ଅଟଇ ସେ ଜାଣ
ଏ କଥାକୁ ଖଣ୍ଡି କରି ନ ପାରିବେ ଆନ ।
ଏରୂପେ ଆକାଶ ବାଣୀ ଶୁଣି କଂସନୃପ
ଖଡ୍ଗ ଧଇଲା ମନେ ବହି ମହାକୋପ ।
ଦେବକୀଙ୍କୁ ହାଣିବାକୁ ସତ୍ୱରେ ଧାଇଁଲା
ତା ଦେଖି ବସୁଦେବଙ୍କ ସାହସ ଉଡ଼ିଲା ।

ସକଳ ମନ୍ତ୍ରରେ ସେ ତ ଅଟନ୍ତି କୁଶଳ
ବୋଧକଲେ କଂସକୁ ସେ ପ୍ରକାଶି କୌଶଳ
ବୋଇଲେ ହେ ଭ୍ରାତ ତୁମ୍ଭେ ରାଜନୀତ ଜ୍ଞ
ନ ଜାଣିଛ ବୋଲି ମୋର ମନକୁ ଆସୁଛି ।
କାମିନୀକୁ ମାରିବାକୁ ତୁମ୍ଭର ମାନସ
ବଳାଉଛ ଯାହା ହେବ ଏଥିରୁ ଅଯଶ ।
ଆଉର ଅନ୍ତକାଳରେ ନରକ ଗମନ
ହୋଇବ ନିଶ୍ଚୟ ବୋଲି ଜାଣ ହେ ରାଜନ ।
ହିଂସ୍ରକ କ୍ଷୁଦ୍ର ଜନ୍ତୁଙ୍କୁ ବଧ ଯେ କରଇ
ଦେହଅନ୍ତେ ଶତେବର୍ଷ ନରକେ ପଡ଼ଇ ।
ଅହିଂସ୍ରକ କ୍ଷୁଦ୍ର ଜନ୍ତୁ ନାଶକଲେ ପୁଣ
ପାତକ ହୁଅଇ ତହୁଁ ବଳି ଦଶଗୁଣ ।
ବଶିଷ୍ଟ ଜନ୍ତୁଙ୍କୁ ଯେବେ ସ୍ୱଇଚ୍ଛାରେ ମାରି
ତାହାଠାରୁ ଶତଗୁଣ ପାପ ଭୋଗକରି ।
ମ୍ଲେଚ୍ଛଜାତି ମନୁଷ୍ୟଙ୍କୁ କଲେ ହିଂସାଭାବ
ପଶୁବଧଠାରୁ ଶତେଗୁଣ ପାପହେବ ।
ଉତ୍ତମ ଶୂଦ୍ରଙ୍କୁ ବଧକଲେ ମହାପାପ
ହୋଇଣ ଦେହକୁ ଦେଇଥାଏ ଘୋରତାପ ।
ଉତ୍ତମ ଶୂଦ୍ରରୁ ଏକଶତ ନାଶ କଲେ
ଯେଉଁ ପାପ ହୁଏ ତାହା ଗୋରୁକୁ ମାଇଲେ
ଭୋଗ କରିବାକୁ ବାଧ୍ୟ ହୋଇଥାଏ ଲୋକ
ନିଶ୍ଚୟ ବୋଲିଣ ଜାଣ ହେ ନରନାୟକ ।
ବ୍ରାହ୍ମଣ ବଧରେ ପାପ ତାର ଦଶଗୁଣ
ଭୋଗ କରିଥାଏ ଶୂଦ୍ର ହେଉ ବା ବ୍ରାହ୍ମଣ ।
ସ୍ତ୍ରୀଙ୍କ ବଧକଲେ ଦ୍ୱିଜହତ୍ୟା ପାପହୁଏ
ଅନ୍ତଃକାଳେ ନରକରେ ନେଇ ଯେ ପକାଏ ।
ଆହେ ନୃପ ତୁମ୍ଭର ଏ ଅଟଇ ଭଗିନୀ
ଲାଳିତ ପାଳିତ ହୋଇଅଛି ତୁମ୍ଭ ଘେନ ।
ଏହାକୁ ନାଶିଲେ ସ୍ତ୍ରୀହତ୍ୟା ଶତଗୁଣ
ହୋଇବ ନିଶ୍ଚୟ ବୋଲି ମାନସରେ ଘେନ ।
ଧାର୍ମିକ ପୁରୁଷମାନେ ତପପୂଜା ଧ୍ୟାନ
ତୀର୍ଥଯାତ୍ରା ହୋମ ଯଜ୍ଞ ବ୍ରାହ୍ମଣଭୋଜନ ।
ସ୍ୱର୍ଗ ଅଭିଳାଷ କରି ଏ ସମସ୍ତ କଥା
ସମ୍ପାଦନ କରିଥାନ୍ତି ଆହେ ମହାରଥୀ ।
ଧର୍ମ ଏକା ଜଗତରେ ଅଟଇ ପ୍ରଧାନ
ସଂସାର ବିଷୟ ଜଳ ବୁଦ୍‌ବୁଦ ସମାନ ।

ଧାର୍ମିକ ପ୍ରବର ତୁମ୍ଭେ ଅଟ ଆହେ ନୃପ
ଭଗିନୀଠାରେ କପାଇଁ କରୁଅଛ କୋପ ।
ସଭାରେ ବହୁତ ଜ୍ଞାନୀ ଲୋକ ବସିଛନ୍ତି
ପଚାର ତାହାଙ୍କୁ ବୁଝ ସ୍ଥିରକର ମନ ।
ଭୟ କରଅଛ ଯେବେ ଅଷ୍ଟମ ଗର୍ଭକୁ
ସେ ଗର୍ଭରୁ ହେବ ଯେଉଁ ପୁତ୍ର ମୁଁ ତୁମ୍ଭଙ୍କୁ ।
ନିଶ୍ଚୟ ଦେବି ଏହା ଯେ କହୁଅଛି ସତ୍ୟ
ନୃଶଂସ କାର୍ଯ୍ୟରେ ବୃଥା ନ ହୁଅ ପ୍ରବୃତ୍ତ ।
ଅଥବା ଯେତେକ ଶିଶୁ ହେବେ ଉତପନ୍ନ
ସବୁ ତୁମ୍ଭ ହସ୍ତେ ନେଇ କରିବ ଅର୍ପଣ ।
କନ୍ୟାତୁଲ୍ୟ ଭଗିନୀକୁ ରଖ ମହାବାହୁ
ତୁମ୍ଭେ ତ ପଣ୍ଡିତ ମୂର୍ଖ କି କହିବି ଆଉ ।
ଏହିରୂପେ ବସୁଦେବ ବଚନକୁ ଶୁଣି
ଭଗିନୀକୁ ନ ମାରିଲା କଂସ ନୃପମଣି ।
ବସୁଦେବଙ୍କ କଥାରେ ସନ୍ତୁଷ୍ଟ ହୋଇଲା
ଅନିଷ୍ଟ ନ କରି ସେହିଠାରୁ ଫେରିଗଲା ।
ପ୍ରିୟାଙ୍କୁ ସଙ୍ଗରେ ଘେନି ବସୁଦେବ ଗଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ସେ ଅନ୍ତରେ ଦେବକୀଙ୍କ ଗର୍ଭରୁ ସମ୍ଭୂତ
ହେଲେ କାଳକ୍ରମେ କ୍ରମେ ଛଅଗୋଟି ସୁତ ।
ସତ୍ୟ ରକ୍ଷା କରିବାକୁ ବସୁଦେବ ନେଇ
ଦେଲେ ସବୁ କଂସରାଜା ହାତକୁ ବଢ଼ାଇ ।
ଗୋଟି ଗୋଟି କରି ତାଙ୍କୁ ନିର୍ଦ୍ଦୟ ଭାବରେ
ମାରି ପକାଇଲା ପିଟି ପଥର ଉପରେ ।
ସପତମ ଗର୍ଭ ଯହୁଁ ହେଲା ଉପସ୍ଥିତ
ବୁଝିଣ ସେ କଥା କଂସ ପଠାଇ ଦୂତ ।
ରକ୍ଷକ ଜଗାଇ ତାଙ୍କୁ ଯତ୍ନେ ରଖାଇଲା
ଜନ୍ମହେଲେ ନାଶିବାକୁ ଉପାୟ ପାଞ୍ଚିଲା ।
ଏ ସମୟେ ଯୋଗମାୟା ନେଇ ସେ ଗର୍ଭକୁ
ରୋହିଣୀ ଉଦରେ ସ୍ଥାନ ଦେଲେ ପୁଣି ତାକୁ
କାହାକୁ ହେଲେ ସେ କଥା ଜଣା ତ ନ ଥିଲା
ରକ୍ଷକଙ୍କ ମନେ ତେଣୁ ସନ୍ଦେହ ହୋଇଲା ।
ଗର୍ଭସ୍ରାବ ହେଲା ବୋଲି ଭାବିଣ ସେମାନେ
ଜଣା କରାଇଲେ କଂସରାଜା ସନ୍ନିଧାନେ ।
ଗର୍ଭରୁ କର୍ଷଣ ହୋଇ ଥିବାରୁ ସେ ରାମ
ଯଥାକାଳରେ ପାଇଲେ ସଙ୍କର୍ଷଣ ନାମ ।

ସେ ଅନ୍ତେ ଦେବକୀଙ୍କର ଅଷ୍ଟମ ଗର୍ଭରେ
ପ୍ରବେଶ ହୋଇଲେ ପ୍ରଭୁ ଆପଣା ଇଚ୍ଛାରେ
କାଳକ୍ରମେ ନଅମାସ ଅତୀତ ହୋଇଲା
ଦଶମ ମାସ ଆସିଣ ଉପସ୍ଥିତ ହେଲା ।
ସର୍ବମୟ ନାରାୟଣ ଜାଣି ସେ କଥାକୁ
ସମ୍ପୂର୍ଣ୍ଣ ରୂପରେ ଦୃଷ୍ଟି ଦେଲେ ସେ ଗର୍ଭକୁ ।
ବସୁଦେବ ପ୍ରିୟପତ୍ନୀ ଦେବକୀ ସୁନ୍ଦରୀ
ଦିଶିଲେ ସ୍ୱର୍ଗବାସିନୀ ଦେବସ୍ତ୍ରୀଙ୍କ ପରି ।
ଏହିରୂପେ ଭଗିନୀର ସ୍ୱରୂପକୁ ଦେଖି
ବିଚାରିଲା କଂସମନେ ହୋଇ ମହାଦୁଃଖୀ ।
ଏ ଗର୍ଭରୁ ଯେଉଁ ପୁତ୍ର ଜନମ ହୋଇବ
ନିଶ୍ଚୟ ସେ କାଳେ ମୋର ମୃତ୍ୟୁ ଘଟାଇବ ।
ଏମନ୍ତ ବିଚାରି ରକ୍ଷୀଗଣ ଡକାଇଲା
ଯତ୍ନରେ ଜଗିବାପାଇଁ ଆଜ୍ଞା ଦେଇଗଲା ।
ଯେତେବେଳେ ଦଶମାସ ହେଲା ସମାପତ
ଗର୍ଭିଣୀ ହୋଇଲା ତହୁଁ ବାୟୁରେ ପୂରିତ ।
ମାତାଙ୍କ ହୃଦୟ-ପଦ୍ମେ ଦେବ ନରହରି
ଅଧିଷ୍ଠାନ କଲେ ନିଜେ କ୍ଷୁଦ୍ରରୂପ ଧରି ।
ଅଶେଷ ବ୍ରହ୍ମାଣ୍ଡ ସ୍ଥିତ ଯାହାଙ୍କ ଉଦରେ
ରହିଲେ ସେ ମାୟାବଳେ ଜନନୀ ଜଠରେ ।
ସେ ସକାଶୁ ଜଡ଼ରୂପ ହୋଇଣ ଦେବକୀ
କ୍ଷଣେ ଚଳୁଥାନ୍ତି କ୍ଷଣେ ରହୁଥାନ୍ତି ଥକି ।
କେତେବେଳେ କଥାବାର୍ତ୍ତା ହୁଅନ୍ତି ସଧୀରେ
ନିସ୍ପନ୍ଦ ହୋଇ ରହନ୍ତି ପର ମୁହୂର୍ତ୍ତରେ ।
ଏହିରୂପେ କେତେଦିନ ଯିବାପରେ ପୁଣି
ଦୂତଙ୍କ ମୁଖରୁ କଂସ ସେ ବାରତା ଶୁଣି ।
ସପତ ଦୁଆର କରି ଅନ୍ତ ଗୁପତରେ
ରଖାଇଲା ପତିପତ୍ନୀ ବେନିଙ୍କୁ ସେଠାରେ ।
ଆସନ୍ନପ୍ରସବା ଯହୁଁ ହେଲେ ନିଜ କାନ୍ତା
ବସୁଦେବଙ୍କର ମନେ ପ୍ରବେଶିଲା ଚିନ୍ତା ।
ରତନ ପ୍ରଦୀପମୟ ମନ୍ଦିରେ ପ୍ରିୟାଙ୍କୁ
ରଖାଇଣ ସୁମରଣା କଲେ ଶ୍ରୀକୃଷ୍ଣଙ୍କୁ ।
ଆବର ଖଡ୍ଗ ଲୌହ ତୈଳ ହୁତାଶନ
ମାଙ୍ଗଳିକ ଦ୍ରବ୍ୟ ନେଇ ଦେଲେ ସନ୍ନିଧାନ
ମନ୍ତ୍ରଜ୍ଞ ଲୋକଙ୍କୁ ଡାକି ପାଖେ ରଖାଇଲେ
ବନ୍ଧୁବାନ୍ଧବ ପ୍ରଭୃତିଙ୍କୁ ଡକାଇ ଆଣିଲେ ।

ସେମାନଙ୍କୁ ବିନୟରେ କହି ସବୁକଥା
ପାଶେ ବସାଇଲେ ବସୁଦେବ ମହାରଥୀ ।
ଏଥୁଅନ୍ତେ ଅର୍ଦ୍ଧରାତ୍ରି ସମୟରେ ଘନେ
ବିଜୁଳି ସହିତେ ମେଘ ଘୋଟିଲା ଗଗନେ ।
ଘୁଟୁଁ ଘୁଟୁଁ ଦଶଦିଗ ଅନ୍ଧାର ହୋଇଲା
କାହାରିକୁ କେହି ହେଲେ ଦେଖି ନ ପାଇଲା
ପ୍ରବଳ ଝଞ୍ଜାପବନ ବହେ ଖରତର
କମ୍ପିତ ହେଲେ ପୃଥିବୀ ପର୍ବତ ସାଗର ।
ବସୁଦେବ ପୁରେ ଯେଉଁ ରକ୍ଷିଗଣ ଥିଲେ
ସମସ୍ତେ ନିଦ୍ରାରେ ଜ୍ଞାନ ହରାଇ ଶୋଇଲେ ।
ତା ଜାଣି ଦେବତାଗଣ ସେହିଠାକୁ ଆସି
ଗର୍ଭସ୍ଥ ଦେବଙ୍କୁ ସ୍ତୁତିକଲେ ହୋଇ ତୋଷୀ
ବ୍ରହ୍ମା ଶିବ ସୁର ରୁଦ୍ର ସଙ୍ଗେ ପୁରନ୍ଦର
ସ୍ତୁତିକଲେ ଯେ ଯାହାର ଶିରେ ଯୋଡ଼ି କର
ବୋଇଲେ ନମସ୍ତେ ଦେବ ସର୍ବଲୋକମୟ
ନମେ ନମଃ ନାରାୟଣ ଅନନ୍ତ ଅବ୍ୟୟ ।
ଜ୍ୟୋତିରୂପ ନିରାକାର ସାକାର ନିର୍ଗୁଣ
ମହତ ଅବ୍ୟକ୍ତକାୟ ପ୍ରଭୁ ସନାତନ ।
ସ୍ୱେଚ୍ଛାମୟ ସର୍ବେଶ୍ୱର ସର୍ବ ଗୁଣାଶ୍ରୟ
ଦୁଃଖ ସୁଖ ବିଧାୟକ ଶୁଦ୍ଧ ନିରାମୟ ।
ନିଃଶଙ୍କ ନିରୁପଦ୍ରବ ନିତ୍ୟ ପୂର୍ଣ୍ଣକାମ
ଦୁର୍ଭଗ ସୁଭଗ ଦୁରାରାଧ୍ୟ ଆତ୍ମାରାମ ।
ବେଦହେତୁ ବେଦଅଙ୍ଗ ବେଦବିଜ୍ଞ ପ୍ରଭୁ
ନମସ୍ତେ ପରମଈଶ ବିଭୁଙ୍କର ବିଭୁ ।
ଏତେବୋଲି ଦେବଗଣ ନମସ୍କାର କଲେ
ବସୁଦେବ ଭବନରେ ପୁଷ୍ପ ବରଷିଲେ ।
ସେ ଅନ୍ତେ ଯେ ଯାହା ପୁରେପରବେଶ ହୋଇ
ରହିଲେ କୃଷ୍ଣଙ୍କୁ ନିଜ ନିଜ ମନେ ଧ୍ୟାୟି ।
ଏଥୁଅନ୍ତେ ଶ୍ରୀକୃଷ୍ଣଙ୍କ ଯୋଗମାୟାବଳେ
ମେଘଗଣ ଆକାଶକୁ ଘୋଡ଼ାଇ ଉଠିଲେ ।
ଘୁଟୁଁ ଘୁଟୁଁ ମହାଘୋର ଅନ୍ଧାର ଘୋଟିଲା
ବଜ୍ର ପଥର ସହିତେ ମହାବୃଷ୍ଟି ହେଲା ।
ମଥୁରା ନଗରେ ଯେତେ ଜୀବଜନ୍ତୁ ଥିଲେ
ନିଦ୍ରାରେ ଆସକ୍ତ ହୋଇ ସମସ୍ତେ ଶୋଇଲେ
ସପତ ମୁହୂର୍ତ୍ତ ଅନ୍ତେ ଅଷ୍ଟମୁହୂର୍ତ୍ତରେ
ହେବ ଅତିରିକ୍ତ ଦିବ୍ୟ ଉତ୍କୃଷ୍ଟ କ୍ଷଣରେ ।
ଶୁଭଗ୍ରହ ବିଲୋକିତ ଲଗ୍ନ ଶୁଦ୍ଧତାରେ
ରୋହିଣୀ ନକ୍ଷତ୍ର ଯୁକ୍ତ ଅଷ୍ଟମୀ ତିଥିରେ ।
ଅର୍ଦ୍ଧରାତ୍ରେ ଅର୍ଦ୍ଧକାୟ ଚନ୍ଦ୍ରମା ଉଦୟେ
ଜୟନ୍ତୀ ନାମକ ଯୋଗ ସଂଯୋଗ ସମୟେ ।
ବିଧାତାଙ୍କ ଆଦେଶରେ ସୂର୍ଯ୍ୟ ଆଦି ଗ୍ରହ
ରହିଲେ ଏକାଦଶରେ ସରଳ ତା ବ୍ୟୂହ ।
ସୁଶୀତଳ ଗନ୍ଧବହ ମନ୍ଦ ମନ୍ଦ ହୋଇ
ବହିବାରୁ ସୁଗନ୍ଧରେ ପୂରିଗଲା ମହୀ ।
ପ୍ରସନ୍ନ ହୋଇଣ ଦଶଦିଗ ଦେଖାଗଲେ
ମୁନିଋଷିମାନେ ତୋଷେ ସ୍ତୁତିପାଠ କଲେ ।
ଦେବତା ଗନ୍ଧର୍ବ ଯକ୍ଷ ପନ୍ନଗ କିନ୍ନର
ଶ୍ରୀକୃଷ୍ଣଙ୍କ ସ୍ତବଗାନ କଲେ ଯୋଡ଼ି କର ।
ବିଦ୍ୟାଧରମାନେ ବିଦ୍ୟାଧରୀଙ୍କ ସହିତେ
ନୃତ୍ୟଗୀତ ଆରମ୍ଭିଲେ ହରଷିତ ଚିତ୍ତେ ।
ସ୍ୱର୍ଗପୁରେ ଦେବବାଦ୍ୟ ଦୁନ୍ଦୁଭି ବାଜିଲା
ତା ସଙ୍ଗରେ ପାରିଜାତ ପୁଷ୍ପ ବୃଷ୍ଟି ହେଲା ।
ନାରୀରୂପ ଧରି ବେଗେ ଦେବୀ ବସୁମତୀ
ସୂତିକା ଗୃହେ ପ୍ରବେଶ ହୋଇଲେ ଝଟତି ।
ଏହିକାଳେ ବସୁଦେବ ପ୍ରିୟ ସହତରି
ଦେବକୀ ପଡ଼ିଲେ ତଳେ ଛିନ୍ନ ବୃକ୍ଷପରି ।
ଚେତନା ହରାଇ ଦେବୀ ମହୀରେ ଶୋଇଲେ
ତାହାଦେଖି ପ୍ରଭଞ୍ଜନ ଗର୍ଭୁ ବାହାରିଲେ ।
ବାଳକରୂପେ ଶ୍ରୀକୃଷ୍ଣ ଥିଲେ ତ ଜଠରେ
ଦିବ୍ୟରୂପ ଧରି ଜାତ ହେଲେ ସେ କାଳରେ
ଦେବକୀହୃଦୟ ଉଦ୍ଭେଦି ନରହରି
ବାହାରିଲେ ମନୋରମ ଶରୀରକୁ ଧରି ।
ଦ୍ୱିଭୁଜ ମୁରଲୀହସ୍ତ ସସ୍ମିତ ବଦନ
ମକର କୁଣ୍ଡଳ କର୍ଣ୍ଣଯୁଗେ ଶୋଭାବନ ।
ଶ୍ରୀଅଙ୍ଗ ଦିଶଇ ନବନୀରଦ ଶ୍ୟାମଳ
କଟିତଟରେ ଶୋଭଇ ଦିବ୍ୟ ପୀତଚେଳ ।
କୁଙ୍କୁମ କସ୍ତୁରୀ ଗନ୍ଧ ଚନ୍ଦନ ଦେହରେ
ବିଲେପିତ ହୋଇ ଦିବ୍ୟ ସୁବାସ ଭରେ ।
ଶରତ ପାର୍ବଣଚନ୍ଦ୍ର ମୁଖ ବିମ୍ବାଧର
ସୁବର୍ଣ୍ଣ କୁଣ୍ଡଳ କର୍ଣ୍ଣେ ଦିଶଇ ସୁନ୍ଦର ।
ମସ୍ତକରେ ରତ୍ନମୟ ଉଜ୍ଜ୍ୱଳ ମୁକୁଟ
ବିଦ୍ୟୁତ ପ୍ରଭାସମାନ ଦିଶେ ଝଟ ଝଟ ।

ଶ୍ରୀବତ୍ସ କୌସ୍ତୁଭମଣି ବକ୍ଷସ୍ଥଳେ ରତ୍ନ
ଦେଖିବା ମାତ୍ରକେ ମନ ମୋହନ ହରଇ ।
ତାହା ଦେଖି ବସୁଦେବ ବିସ୍ମିତ ହୋଇଲେ
ଶ୍ରୀକୃଷ୍ଣ ବୋଲି ତାହାଙ୍କୁ ମନେ ସ୍ଥିରକଲେ
ସେ ସକାଶୁ ଭକ୍ତିଭରେ ଯୋଡ଼ି ବେନିକର
ସ୍ତୁତିକଲେ ପୁଲକରେ ପୂରଇ ଶରୀର ।
ବୋଇଲେ ନମସ୍ତେ ଦେବ ଶ୍ରୀବତ୍ସ ଲାଞ୍ଛନ
ଅବ୍ୟକ୍ତ ଅକ୍ଷରରୂପେ ନିତ୍ୟ ସନାତନ ।
ସ୍ୱେଚ୍ଛାମୟ ସର୍ବରୂପ ସର୍ବରୂପଧର
ନିର୍ଲିପ୍ତ ପରମବ୍ରହ୍ମ ତ୍ରୈଲୋକ୍ୟ ଈଶ୍ୱର ।
ସୂକ୍ଷ୍ମଠାରୁ ସୂକ୍ଷ୍ମତର ସ୍ଥୂଳଠାରୁ ସ୍ଥୂଳ
ସର୍ବଲୋକ ସାକ୍ଷୀ ତୁମ୍ଭେ ଅଟ ଆଦିମୂଳ ।
ଶରୀରବନ୍ତ ଶରୀରୀମାନ ତୁମ୍ଭେ ଅଟ
ପ୍ରକୃତି ପ୍ରକୃତୀଶ୍ୱର ରୂପରେ ପ୍ରକଟ ।
ସର୍ବଈଶ ସର୍ବମୟ ସର୍ବାନ୍ତର ସ୍ଥିତ
ସକଳ ଲୋକ ଆଶ୍ରୟ କାରଣ ରହିତ ।
ଏମନ୍ତ ଯେ ପ୍ରଭୁ ତୁମ୍ଭେ ତୁମ୍ଭର ସ୍ତବନ
କି ବୁଝି ପାରିବ ମୂର୍ଖ ଅଟେ ହୀନ ଜନ ।
ସହସ୍ର ମୁଖେ ଅନନ୍ତ ଓଡ଼୍ମୁଖେ କୁମାର
ପଞ୍ଚମୁଖେ ଶିବ ଚାରିମୁଖେ ବେଦବର ।
ତୁମ୍ଭ ସ୍ତୁତି ପଢ଼ିବାକୁ ସମର୍ଥ ନୋହିବେ
କେତେକ ଅଟନ୍ତି ଅବା ଇନ୍ଦ୍ର ଆଦି ଦେବେ
ପରମଯୋଗୀ ଈଶ୍ୱର ଦେବଗଣପତି
ବିଦ୍ୟା ଅଧିଷ୍ଠାତ୍ରୀ ଜ୍ଞାନରୂପା ସରସ୍ୱତୀ ।
ତୁମ୍ଭ ମହିମା କହିତେ ନ ପାରିବେ କାଳି
ମୋହର ବଚନ ଯେନ ପ୍ରଭୁ ବନମାଳି ।
ଏ ତୁମ୍ଭର ନିଜରୂପ ପରିତ୍ୟାଗ କରି
ବାଳକରୂପେ ପ୍ରକାଶ ହୁଅ ନରହରି ।
ବସୁଦେବକୃତ ସ୍ତୋତ୍ର ପଢ଼ଇ ଯେ ଜନ
ଅନ୍ତକାଳେ ଛୁଇଁ ତାକୁ ନପାରେ ଶମନ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ଭକ୍ତ ଜାତହୁଏ
ଧନଜନ ଆଦି ସବୁ ସମ୍ପଦ ସେ ପାଏ ।
ଶୁଣ ହେ ନାରଦ ମୁନି ଦେଇ ମନକର୍ଣ୍ଣ
ଏହିରୂପେ ବସୁଦେବ କରନ୍ତେ ସ୍ତବନ ।
ଭକତବତ୍ସଳ ପ୍ରଭୁ ଶ୍ରୀରାଧିକାପତି
ପ୍ରସନ୍ନ ମୁଖରେ ତାଙ୍କୁ ଅନାଇଁ ଭଣନ୍ତି ।

ବୋଇଲେ ତୁମ୍ଭର ପୂର୍ବଜନ୍ମ ତପସ୍ୟାରେ
ପୁତ୍ରରୂପେ ଆମ୍ଭେ ଜାତ ହେଲୁ ତୁମ୍ଭଘରେ ।
ପୂର୍ବେ ତୁମ୍ଭେ ଥିଲ ପୃଥ୍ୱୀ ନାମେ ପ୍ରଜାପତି
ସୁତପା ତୁମ୍ଭର ପତ୍ନୀ ପତିବ୍ରତା ସତୀ
ମୋ ସମାନ ପୁତ୍ର ଲଭ ହେଉ ବୋଲି ମୋତେ
ବର ମାଗିବାରୁ ତାହା ଦେଲି ତୋଷଚିତ୍ତେ
ସେ ଅନ୍ତରେ ବସି ମନେ ମନେ ବିଚାରିଲି
ତିନି ଭୁବନରେ କେହି ନାହିଁତ ମୋଭଳି ।
ଦେଇଥିବା ବର ସାର୍ଥ କରିବାର ପାଇଁ
ନିଜେ ଜନ୍ମ ହେବି ତାଙ୍କ ପୁତ୍ରରୂପ ବହି ।
ଏମନ୍ତ ବିଚାରି ତୁମ୍ଭ ପତ୍ନୀଙ୍କ ଉଦରେ
ଜନମ ଗ୍ରହଣ କରିଅଛୁ ଏହିଠାରେ ।
ତପ ପ୍ରଭାବରେ ତୁମ୍ଭେ କଶ୍ୟପଙ୍କ ଅଂଶେ
ବସୁଦେବ ନାମେ ଜାତହେଲ ମହୀଦେଶେ ।
ତୁମ୍ଭପତ୍ନୀ ଦେବକୀ ଯେ ଅଦିତି ଅଂଶରେ
ଜାତ ହୋଇଛନ୍ତି ଜାଣ ତପ ପ୍ରଭାବରେ ।
ଭାଗ୍ୟବଳେ ତୁମ୍ଭେ ଦୁହେଁ ପୁତ୍ରରୂପେମୋତେ
ପାଇଛ ସନ୍ଦେହ ଏଥି ନାହିଁଟି କହୁଛି ।
ପୁତ୍ରରୂପେ ଅବା ବ୍ରହ୍ମରୂପେ ମୋର ରୂପ
ଭାବନା କରି ଖଣ୍ଡିତ କର ସର୍ବପାପ ।
ଜୀବନ ମୁକତ ତୁମ୍ଭେ ହୋଇବ ନିଶ୍ଚୟ
ଆହେ ତାତ ଏଥି କିଛି ନକର ସଂଶୟ ।
ଏହିକ୍ଷଣି ଘେନି ମୋତେ ବ୍ରଜପୁରେ ଯାଅ
ନନ୍ଦପତ୍ନୀ ଯଶୋଦାଙ୍କ କୋଳେ ନେଇ ଥୁଅ
ତାଙ୍କ ଗର୍ଭେ ମହାମାୟା କନ୍ୟାରୂପ ବହି
ଜନମିଛନ୍ତି ଉଶ୍ୱାସ କରିବାକୁ ମହୀ ।
ତାହାଙ୍କୁ ଘେନି ସେଠାରୁ ଆସିଣ ସତ୍ୱରି
ରଖ ଏହିସ୍ଥାନେ ଆଜ୍ଞା କିଛି ନ ପଚାରି ।
ଏହିରୂପେ କହି ହରି ବାଳରୂପ ହେଲେ
ବୈଷ୍ଣବୀ ମାୟାରେ ବସୁଦେବଙ୍କୁ ମୋହିଲେ ।
ସେ ସକାଶୁ ସବୁକଥା ସ୍ୱପ୍ନ ପରକାରେ
ବିଚାରେ କଲେ ସେ ବସି ଆପଣା ମନରେ ।
କହିତ ମାତ୍ର ସ୍ମରଣ ହୋଇବାରୁ ଉଠି
ଦୁଇହସ୍ତରେ ଶିଶୁକୁ ଧରିଲେ ସାଉଁଟି ।
ନନ୍ଦ ଗୋପଗୃହେ ଯାଇ ପ୍ରବେଶ ହୋଇଲେ
ସୂତିକାଗୃହେ ଯଶୋଦା ଶୋଇଛି ଦେଖିଲେ ।

ଆବର ନନ୍ଦ ପ୍ରଭୃତି ଯେତେକ ଗୋପାଳ
ସମସ୍ତେ ହୋଇ ଅଜ୍ଞାନ ନିଦ୍ରାରେ ଆକୁଳ ।
ଅଟେଷ୍ଟ ଶଯ୍ୟା ଉପରେ ବାଳିକା ଗୋଟିଏ
ଦିଶୁଛି ତପତ ହେମ ପ୍ରତିମା ପରାୟେ ।
ଈଷତ ହାସ୍ୟ ବଦନ ରୂପ ମନୋହର
ତେଜରେ ନିନ୍ଦା କରଇ ପୂର୍ଣ୍ଣ କଳାକାର ।
ସେ କନ୍ୟାକୁ ଦେଖି ବସୁଦେବ ମହାମନା
ବିସ୍ମିତ ହୋଇ ମୁହୂର୍ତ୍ତେ କଲେଣ ଭାବନା ।
ପୁତ୍ରକୁ ଯଶୋଦାକୋଳେ ଥୋଇ ତତକାଳ
କନ୍ୟାକୁ ଉଠାଇ ତତ୍ପର କଲେ ଆଣି କୋଳ
ବେଗ ବେଗ ହୋଇ ନିଜପୁରେ ପ୍ରବେଶିଲେ
ଦେବକୀ ପାଶରେ ତାକୁ ନେଇଣ ରଖିଲେ ।
କନ୍ୟକା ସୁଲଭ ଭାବେ ଦେବୀ ମହାମାୟା
ରୋଦନ କଲେ ଉଚ୍ଚରେ କମ୍ପାଇଣ ତ୍ରସ୍ତା ।
ସେ ରୋଦନ ଶୁଣି ସବୁ ରକ୍ଷକେ ଉଠିଲେ
ବାଳକା ଗୋଟିଏ ଜନ୍ମ ହୋଇଛି ଦେଖିଲେ
କଂସର ଆଜ୍ଞା ପ୍ରମାଣେ ଘେନି ତାକୁ ବେଗେ
ପରବେଶ ହେଲେ ସେହିକ୍ଷଣି ତାର ଆଗେ ।
ତାହା ଦେଖି ବସୁଦେବ ଦେବକୀ ଉଭୟେ
ଗଲେ ପଛେ ପଛେ ଶୋକକରି ଅତିଶୟେ ।
ସେ ବାଳକା ରୂପ ଦେଖି କଂସ ଦୁଷ୍ଟମତି
ବିସ୍ମିତ ହୋଇଣ ନିଜ ମାନସରେ ଅତି ।
ନିର୍ଦ୍ଦୟ ଭାବରେ ତାକୁ ଧରି ଶିଳାପରେ
କଚାଡ଼ିବାପାଇଁ ଯତ୍ନ କରିବା କାଳରେ ।
ପହିଭୁଲେ ବସୁଦେବ ବିନୟରେ ତାକୁ
ବୋଇଲେ ରାଜନ ଶୁଣ ଆମ୍ଭ ବଚନକୁ ।
ଇଷ୍ଟବନ୍ଧୁ ହୋଇ ତୁମ୍ଭେ ଆମ୍ଭ ପୁତ୍ରଙ୍କର
ବିନାଶ କଲଣି ଏବେ ଛଅଟି କୁମର ।
ଅଷ୍ଟମ ଗର୍ଭରେ ଜନ୍ମିଅଛି ଏ କୁମାରୀ
କି ଯଶ ପାଇବ ଅବା ଏହାକୁ ସଂହାରି ।
ସ୍ୱଭାବରେ ତ ଅବଳା ଅଟେ ସ୍ତ୍ରୀଜନ
ତୁମ୍ଭଙ୍କୁ କି ମାରିବ ଏ କରି ଆୟୋଜନ ।
ଏହିରୂପେ କହି ପତିପତ୍ନୀ ଦୁହେଁ ତହିଁ
ରୋଦନ କଲେ ବାଳକା ରୂପକୁ ଅନାଇଁ ।
ତା ଦେଖି କଂସ ନୃପତି ବୋଇଲେ ହେ ଭ୍ରାତ
ଶୁଣ ମୋହର ବଚନ ଦେଇକରି ଚିତ୍ତ ।
ତୃଣରେ ପର୍ବତ ନାଶ ହୁଏ ଦୈବବଳେ
ନାଠଙ୍କ ମୁଖରେ ସିଂହ ନାଶଯାଏ କାଳେ ।
ଦଇବ ଯୋଗେ ମଶକ ନାଶଇ ଗଜକୁ
କ୍ଷୁଦ୍ରଲୋକ ମାରିପାରେ ବୀର ପୁରୁଷକୁ ।
ଭକ୍ଷି ପାରଇ ମୂଷିକ ମାର୍ଜାରର ମୁଣ୍ଡ
ମଣ୍ଡୁକ ଛିଣ୍ଡାଇ ପାରେ ମହାସର୍ପ ପିଣ୍ଡ ।
ବିନଷ୍ଟ କରଇ ଅଗ୍ନି ସମୁଦ୍ରର ଜଳ
ଶୁଷ୍କ ତୃଣରେ ବିନାଶ ହୁଅଇ ଅନଳ ।
ଦଇବ ଇଚ୍ଛାରେ ଦ୍ରବ ହୋଇପାରେ ଦାରୁ
ନିମିଷକେ ରସାତଳ ଭେଳ ମହାମେରୁ ।
ସାମାନ୍ୟ ବ୍ରାହ୍ମଣ ହୋଇ ଅଗସ୍ତ୍ୟ ମହର୍ଷି
ସମୁଦ୍ର ସଲିଳ ହେଳେ ପକାଇଲେ ଶୋଷି
ଏରୂପେ ବିଚିତ୍ର ଅଟେ ବିଧାତାର ଗତି
ଅଘଟ ଘଟନ କର୍ତ୍ତାଦେବ ବିଶ୍ୱପତି ।
ଦଇବ ଯୋଗେ ମୋହର ମୃତ୍ୟୁର କାରଣ
ଏ କ୍ଷୁଦ୍ର ବାଳକା ଜାତେ ହୋଇପାରେ ପୁଣ
ନ୍ୟାୟ ବା ଅନ୍ୟାୟ ହେଉ ଏହାର ଜୀବନ
ଘେନିବି ସଂଶୟ ଏଥି ନାହିଁ ବୋଲି ଜାଣ ।
ଏମନ୍ତ ବୋଲି ସେକାଳେ ଦୁଷ୍ଟ କଂସାସୁର
ବାଳକାକୁ ମାରିବାକୁ ହୋଇଲା ତତ୍ପର ।
ସେ ସମୟେ ଆକାଶରୁ ଶୁଭିଲା ଏ ବାଣୀ
ବାତୁଳ ହେଲୁ କି କଂସ ମୂରୁଖ ଅଗ୍ରଣୀ ।
ବିଧାତାର ଘଟନା ତୁ ଜାଣିନାହୁଁ କିଛି
ତୋତେ ଯେ ମାରିବ ସେ ତ ଗୋପପୁରେଅଛି
ନିରୀହା ବାଳକା ବଧ କଲେ କି ତୋହର
ଜୀବନ ରହିବ ବୋଲି ଭାବୁଛୁ ମନର ।
ଏରୂପେ ଆକାଶବାଣୀ ଶୁଣିବାରୁ କଂସ
ତ୍ୟାଗକଲା ବାଳକାକୁ ହୋଇଣ ବିରସ ।
ପତିଙ୍କ ସହିତେ ଦେବୀ ଦେବକୀ ସୁନ୍ଦରୀ
ଗଲେ ନିଜ ଦୁହିତାକୁ ବକ୍ଷସ୍ଥଳେ ଧରି ।
ମୃତ୍ୟୁ ହାତରୁ ଛଡ଼ାଇ ଆଣିଲା ପରାୟେ
ତାହାକୁ ପାଇ ଆନନ୍ଦ ହେଲେ ଅତିଶୟେ ।
ଶ୍ରୀକୃଷ୍ଣ ଭଗିନୀ ସେ ଯେ ଏକାକଂସା ନାମ
ପାର୍ବତୀ ଦେବୀଙ୍କ ଅଂଶେ ତାହାର ଜନମ ।
ଈଶ୍ୱର ଅଂଶେ ଦୁର୍ବାସା ଋଷି ଜନ୍ମିଥିଲେ
ବସୁଦେବ ସେ କନ୍ୟାକୁ ତାଙ୍କୁ ଦାନ କଲେ

ରୁକ୍ମିଣୀ ବିବାହ ବେଳେ ସେହି କନ୍ୟାଙ୍କର
ପାଣିଗ୍ରହଣ ହୋଇଲା ଆହେ ମୁନିବର ।
କୃଷ୍ଣଙ୍କ ଜନମ କଥା ଶୁଣିଲ ତ ବସି
ଆଉ କି ଶୁଣିବା ଇଚ୍ଛା ଥିଲେ ଆହେ ଋଷି ।
ପଚାର ଏକ୍ଷଣି ସବୁ କହିବା ବତାଇ
ଏତେ ବୋଲି ନାରାୟଣ ଗଲେ ତୁନି ହୋଇ ।
କ୍ଷେତ୍ରମୋହନ ବୋଲଇ ଆହେ କୃପାମୟ
ସଂସାରୁ ଉଦ୍ଧର ମୋତେ ହୋଇଣ ସଦୟ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ଜନ୍ମ ଓ ବ୍ରହ୍ମାଦି ଦେବତାଙ୍କ ସ୍ତବ ପଠନ ନାମ ସପ୍ତମୋଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ

### ଜନ୍ମାଷ୍ଟମୀ ବ୍ରତବିଧି ନିରୂପଣ

ନାରଦ ବୋଇଲେ ନାରାୟଣ ମୁନିବର
ଜନ୍ମାଷ୍ଟମୀ ବ୍ରତବିଧି କହ ମୋ ଆଗର ।
ଉପବାସ ପୂଜାବିଧି ଧ୍ୟାନ ସ୍ତୋତ୍ର ଯେତେ
କହ ତାର ଫଳାଫଳ କାରଣ ସହିତେ ।
ନ କରିବ ଯେବା ତାର ହେବ କେଉଁ ଦୋଷ
ଏ ସମସ୍ତ କଥା କର ମୋ ଆଗେ ପ୍ରକାଶ ।
ତାହା ଶୁଣି ନାରାୟଣ ତୋଷ ବହି ମନେ
ବୋଇଲେ କହିବା ତାହା ଶୁଣ ସାବଧାନେ ।
ସପ୍ତମୀ ଦିବସରେ ହବିଷ୍ୟ କରିବ
ଶ୍ରୀକୃଷ୍ଣଙ୍କ ଠାରେ ମନ ନିବେଶି ରହିବ ।
ଆରଦିନ ପ୍ରଭାତରୁ ଉଠିଣ ସତ୍ୱର
ସ୍ନାନସନ୍ଧ୍ୟା ଆଦି କାର୍ଯ୍ୟେ ହେବ ତତପର ।
ସେ ଅନ୍ତରେ ଯଥାବିଧି ସଙ୍କଳ୍ପ କରିବ
ପିତୃ ଲୋକଙ୍କୁ ଉଦ୍ଦେଶି ଜଳାଞ୍ଜଳି ଦେବ ।
ମନ୍ୱାଦି ଦିବସେ ସ୍ନାନ ଦାନ ପୂଜାକଲେ
ତହିଁରୁ ଯେ ଫଳଲାଭ ହୁଅଇଟି ଭଲେ ।
ଶ୍ରୀକୃଷ୍ଣ ଜନମାଷ୍ଟମୀ ଦିବସ ମଧ୍ୟରେ
ଶ୍ରାଦ୍ଧ ତରପଣ ଆଦି ଯେଉଁ ଲୋକ କରେ ।
ଶତଗୁଣ ଫଳ ତାର ହୁଅଇ ନିଶ୍ଚୟ
ଏଥିରେ କଥିତ ମାତ୍ର ନାହିଁ ଯେ ସଂଶୟ ।
ସ୍ନାନ ଆଦି ନିତ୍ୟକର୍ମ ଶେଷ ହେବାପରେ
ସୂତିକା ଗୃହ ଗୋଟିଏ କରିବ ସତ୍ୱରେ ।
ଲୌହଖଡ୍ଗ ନାଡ଼ୀ ଛେଦ କର୍ତ୍ତରିକା ଆଣି
ଯତନେ ରଖିବ ନାନାବିଧ ଦ୍ରବ୍ୟ ପୁଣି ।
ଅଗ୍ନି ସ୍ୱରୂପେ କାମିନୀ ଜଣକୁ ରଖିବ
ପୂଜା ସକାଶରେ ଉପସ୍କର ଅଣାଇବ ।
ଅଷ୍ଟଫଳ ଅଷ୍ଟଫୁଲ ରଖିବ ଯତନେ
ସୁଗନ୍ଧ ଚନ୍ଦନ ରଖାଇବ ସନ୍ନିଧାନେ ।
ଜାତିଫଳ କକ୍‌କୋଳକ ଦାଡ଼ିମ୍ବ ଶ୍ରୀଫଳ
ଜମ୍ବୀର କୁଷ୍ମାଣ୍ଡ ତାଳ ଚୂତ ନାଉକେଳ ।
ଏହିରୂପେ ଫଳମାନ ରଖିବ ସମାଦି
ପୁଣି ରଖିବ ଆସନ ପାଦାସନ ଆଦି ।
ପାଦ ପ୍ରକ୍ଷାଳନ କରି ଧଉତ ବସନ
ପରିଧାନ କଲାପରେ କରି ଆଚମନ ।
ଆସନରେ ବସି ସ୍ୱସ୍ତି ବାଚନ କରିବ,
ପୂର୍ଣ୍ଣକୁମ୍ଭ ଗୋଟି ଆଣି ଆଗେ ରଖାଇବ ।
ପଞ୍ଚ ଦେବତାଙ୍କୁ ପୂଜା କରି ସେ କୁମ୍ଭରେ
ଶ୍ରୀକୃଷ୍ଣଙ୍କୁ ଆବାହନ କରିବ ସେଠାରେ ।
ବସୁଦେବ ଦେବକୀ ଯେ ନନ୍ଦ ଯଶୋବତୀ
ରୋହିଣୀ ଅଚ୍ୟୁତାଗ୍ରଜ ଷଷ୍ଠୀ ବସୁମତୀ ।
ଅଶ୍ୱତ୍ଥାମା ବଳିବ୍ୟାସ ହନୁ ବିଭୀଷଣ
କୃପାଚାର୍ଯ୍ୟ ପର୍ଶୁରାମ ମୃକଣ୍ଡୁ ନନ୍ଦନ ।
ଏମାନଙ୍କୁ ଆବାହନ କରି ସେ ଅନ୍ତରେ
ଶ୍ରୀହରିଙ୍କ ଧ୍ୟାନ ମନ୍ତ୍ର ପଢ଼ିବ ତୋଷରେ ।
ସାମବେଦ ଉକ୍ତ ସେହି ଧ୍ୟାନର ସ୍ୱରୂପ
ପୂର୍ବେ କୁମାରଙ୍କୁ କହିଲେ ଯା କୁମ୍ଭ ବାପ ।
କହୁଅଛୁ ମୁହିଁ ଏବେ ଶୁଣ ମନଦେଇ
ସଂସାର ମଧ୍ୟରେ ତାହା ଅତୁଲ୍ୟ ଅଟଇ ।

ବାଳକ ସ୍ୱରୂପ ନୀଳ ନୀରଦ ବରନ
ଅତ୍ୟନ୍ତ ରୁଚିର ଶରଚନ୍ଦ୍ରମା ବଦନ ।
ବ୍ରହ୍ମା ଶିବ ଧର୍ମ ଦେବ ଶେଷଙ୍କ ମୁଖରେ
ସ୍ତୁତ୍ୟ ଅଟନ୍ତି ସେ ପ୍ରଭୁ ଦିବସ ନିଶାରେ ।
ସିଦ୍ଧ ମୁନି ଋଷିମାନେ ଯାହାଙ୍କ ମୂରତି
ଯୋଗ ଆସନରେ ବସି ଧ୍ୟାନ କରୁଥାନ୍ତି ।
ସେ ପ୍ରଭୁଙ୍କ ପାଦପଦ୍ମେ ମୋହର ମାନସ
ସର୍ବଦା ଆସକ୍ତ ହୋଇଥାଉ ବନ୍ଧୁ ତୋଷ ।
ଏହିରୂପେ ଧ୍ୟାନକରି ଷୋଳ ଉପଚାର
ଦେବ କ୍ରମେ କ୍ରମେ ମନ୍ତ୍ର ପଢ଼ି ତାହାଙ୍କର ।
ପ୍ରଥମେ ବୋଲିବ ଦେବ ବିଚିତ୍ର ଆସନ
ଗ୍ରହଣ କର ମୋଠାରୁ ଶ୍ରୀରାଧାରମଣ
ସେ ଅନ୍ତେ ବସନ ପାଦ ପ୍ରକ୍ଷାଳନ ଜଳ ।
ଗ୍ରହଣ କର ମୋଠାରୁ ପ୍ରଭୁ ଆଦିମୂଳ ।
ଏମନ୍ତ ବୋଲିଣ କ୍ରମେ ମଧୁ ସର୍ପି କ୍ଷୀର
ଦୁର୍ବାକ୍ଷତ ଶୁକ୍ଳ ପୁଷ୍ପ ସୁବାସିତ ନୀର ।
ସ୍ନାନୀୟ ସୂକ୍ଷ୍ମ ବସନ ଶଯ୍ୟା ଉପାଧାନ
ଗନ୍ଧପୁଷ୍ପ ଅନ୍ତେ ନାନା ନଇବେଦ୍ୟମାନ ।
କର୍ପୂର ଯୁକ୍ତ ତାମ୍ବୁଳ ଧୂପ ଦୀପ ଦେଇ
ପାନ ଅର୍ଥେ ଦେବ ସୁବାସିତ ଜଳ ନେଇ ।
ସେ ଅନ୍ତରେ ସୁଶୋଭିତ ମାଲ୍ୟ ସମର୍ପିବ
ପୁଣି ନାନାବିଧ ଭୋଗ୍ୟ ଦ୍ରବ୍ୟ ମାନ ଦେବ ।
ବହୁତ ଫଳ ସେ ଅନ୍ତେ ସମର୍ପଣ କରି
ବୋଲିବ ନମସ୍ତେ ଦେବ ରାଧିକାବିହାରୀ ।
ଏହିରୂପେ ଶ୍ରୀହରିଙ୍କ ପୂଜା ଅବସାନେ
ଅନ୍ୟଦେବତାଙ୍କ ପୂଜା କରିବ ସୁମନେ ।
ସୁନନ୍ଦ ନନ୍ଦ କୁମୁଦ ଗୋପ ଗୋପୀଗଣ
ରାଧିକାଦେବୀଙ୍କ କୁଳେ ପୂଜି ତତକ୍ଷଣ ।
ଗଣେଶ କାର୍ତ୍ତିକେଶ୍ୱର ବ୍ରହ୍ମା ପଶୁପତି
ଦିଗପାଳଗଣ ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ ।
ନବଗ୍ରହ ଶେଷଦେବ ପାର୍ଷଦ ପ୍ରବର
ସୁଦର୍ଶନ ଚକ୍ର ଆଦି ଆୟୁଧ ନିକର ।
ଏମାନଙ୍କୁ ପୂଜାକରି ପୁଷ୍ପାଞ୍ଜଳି ଦେବ
ଦଣ୍ଡବତ ହୋଇ ପୁଣି ପ୍ରଣାମ କରିବ ।
ବ୍ରାହ୍ମଣଙ୍କୁ ଶ୍ରୀକୃଷ୍ଣଙ୍କ ନଇବେଦ୍ୟ ଦେଇ
ଦକ୍ଷିଣା ଦେବ ମନକୁ ସନ୍ତୁଷ୍ଟ କରାଇ ।

ଜନମ ଅଧ୍ୟାୟ କଥା ଶୁଣି ଭକ୍ତିଭରେ
ଉଜାଗର ହେବ ବସି କୁଶ ଆସନରେ ।
ପ୍ରଭାତେ ଆହ୍ନିକ କର୍ମ ବିଧି ଶେଷ କରି
ଶ୍ରୀହରିଙ୍କୁ ପୁନଃପୁନଃ ମନରେ ସୁମରି ।
ବ୍ରାହ୍ମଣଙ୍କୁ ଉଜାଇଣ ଭୁଞ୍ଜିବାକୁ ଦେବ
ସେ ଅନ୍ତେ ନିଜେ ପାରଣା କାର୍ଯ୍ୟ କରାଇବ ।
ନାରଦ ବୋଇଲେ ଦେବ ସେ ମହାବ୍ରତରେ
ବେଦୋକ୍ତ ବ୍ୟବସ୍ଥା କହ ମୋହର ଆଗରେ ।
ଉପବାସ ଜାଗରଣ କଲେ ଯେତେ ଫଳ
ହୁଅଇ ବିସ୍ତାରି ମୋତେ କହ ତା ସକଳ ।
ଯେଉଁ ଲୋକ ଏହି ବ୍ରତ ନ ପାରଇ କରି
କି ପାପ କିରୂପେ ଅବା ହୁଅଇ ତାହାରି ।
ଏହା ଶୁଣିବାକୁ ମୋର ହେଉଅଛି ମନ
ବିଷଦ ଭାବରେ ସବୁ କହ ତପୋଧନ ।
ଏହିପରି ନାରଦଙ୍କ ବଚନକୁ ଶୁଣି
କହି ଆରମ୍ଭିଲେ ନାରାୟଣ ଋଷିମଣି
ବୋଇଲେ ନିଶୀଥକାଳେ ପାଦଯୁକ୍ତ ହୋଇ
ଅଷ୍ଟମୀ ତିଥି ପ୍ରକାଶ ଯେବେହିଁ ହୁଅଇ ।
ସେହି ଏକା ମୁଖ୍ୟକାଳ ଅଟଇ ବ୍ରତର
ଶ୍ରୀକୃଷ୍ଣ ଜନମ ହୋଇଥିଲେ ସେ କାଳର ।
ଏ ବ୍ରତ ବିଜୟ ପୁଣ୍ୟ ଉଦୟ ହୁଅଇ
ସେ ହେତୁ ଜୟନ୍ତୀ ବ୍ରତ ନାମ ଅଛି କହି ।
ସର୍ବସମ୍ମତ ପ୍ରସିଦ୍ଧି କାଳ ଅଟେ ଏହି
ପୂର୍ବରେ ବିଧାତା ବେଦଶାସ୍ତ୍ରେ ଛନ୍ତି କହି ।
ଏହି କାଳ ଯୋଗେ ବ୍ରତ ଉପବାସ କରି
ଜାଗର ହେବ ମନରେ ଶ୍ରୀକୃଷ୍ଣ ସୁମରି ।
କୋଟି ଜନ୍ମ ପାତକରୁ ମୁକତି ପାଇବ
ଅନ୍ତଃକାଳେ ବଇକୁଣ୍ଠ ଭୁବନକୁ ଯିବ ।
ସପ୍ତମୀ-ସହିତାଷ୍ଟମୀ ହୋଇଥିବ ଯେବେ
ଉପବାସ ବ୍ରତାରମ୍ଭ ନ କରିବ ତେବେ ।
ନକ୍ଷତ୍ର ଯୁକ୍ତ ହେଲେହେଁ ସପ୍ତମୀ ଯୋଗରେ
ଶୁଦ୍ଧ ନ ହୁଅଇ ବ୍ରତାରମ୍ଭ ସେ କାଳରେ ।
ଅତଏବ ନକ୍ଷତ୍ରଯୁକ୍ତ ଅଷ୍ଟମୀରେ ହରି
ଜାତ ହୋଇଥିଲେ ମର୍ତ୍ତ୍ୟେ ନରଦେହ ଧରି ।
ବେଦଶାସ୍ତ୍ର ନିରୂପିତ ମଙ୍ଗଳ କ୍ଷଣରେ
ଜନମ ହୋଇଲେ ବସୁଦେବଙ୍କ ଗୃହରେ ।

ସେହିଦିନ ବ୍ରତ ଉପବାସ କରିଥିବ
ସୂର୍ଯ୍ୟ ଅସ୍ତ ହେଲାପରେ ପାରଣା କରିବ ।
ଯେଉଁ ଲୋକ ଆରଦିନ ପ୍ରଭାତ କାଳରେ
ସ୍ନାନ ସନ୍ଧ୍ୟା ସାରି ବ୍ରତ ପାରଣା ଆଚରେ
ଅଶେଷ ଫଳ ପ୍ରାପତ ହୁଅଇ ତାହାର
ବିନାଶ ହୁଅନ୍ତି ଦୁଃଖ କଳୁଷ ନିକର ।
ପାରଣାଟି ଉପବାସ ଅଙ୍ଗ ବୋଲିଯାଏ
ପାରଣା ନ କଲେ ବ୍ରତ ଫଳ ନଷ୍ଟ ହୁଏ ।
ଅନ୍ୟ ବ୍ରତମାନଙ୍କରେ ଦିବସେ ପାରଣ
ପ୍ରଶସ୍ତ ଅଟଇ ଆହେ ଋଷି କୁଳଗଣ ।
କେବଳ ରୋହିଣୀ ବ୍ରତେ ନିଶା ସମୟରେ
କରିବ ପାରଣା ଶାସ୍ତ୍ର ମତ ଅନୁସାରେ ।
ବୁଧ ସୋମ ଯୁକ୍ତ ଯେବେ ଜୟନ୍ତୀ ହୁଅଇ
ତହିଁରେ ଯେ ଗର୍ଭବାସ କରି ନ ଯୋଗାଇ
ଉଦୟକାଳେ ଅଷ୍ଟମୀ ନବମୀ ସହିତ
ହୁଏ ଯେବେ ପ୍ରଜାପତି ଋକ୍ଷରେ ଯୁକତ ।
ଆବର ବୁଧ ଚନ୍ଦ୍ରମ ସଂଯୁକ୍ତ ହୁଅଇ
ଦୁର୍ଲ୍ଲଭ ତିଥି ସେ ବ୍ରତ କରିବାର ପାଇଁ ।
ସେ ତିଥିରେ ବ୍ରତ କଲେ ସପତ ପୁରୁଷ
ବଇକୁଣ୍ଠ ଭବନରେ କରନ୍ତି ନିବାସ ।
ବ୍ରତ କରି ନ ପାରିଲେ ଉପବାସ କରି
ଧନ ରତ୍ନ ଦେବ ଦ୍ୱିଜ ଜନଙ୍କୁ ହକାରି ।
ତେମନ୍ତ ହେଲେ ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୁଅନ୍ତି
ଧନଜନ ଐଶ୍ୱର୍ଯ୍ୟ ମୁକତି ଦିଅନ୍ତି ।
ଧନଲୋଭ ନ କରେ ଯେ ବହୁଫଳ ତାର
ହୁଅଇ କଞ୍ଚିତ ଫଳ ଧନ ଲୋଲୁପର ।
ଅଷ୍ଟମୀ ତିଥି ରୋହିଣୀ ନକ୍ଷତ୍ର ଦିନରେ
ଯେଉଁ ଲୋକ ଉପବାସ ପାରଣା ଆଚରେ ।
ଉପବାସ ବ୍ରତ ଫଳ ନାଶ ତାର ହୁଏ
ଆବର ପୂର୍ବ ସୁକୃତ ଲୋପ ହୋଇଯାଏ ।
ତିଥିଯୋଗେ ହୁଏ ଅଷ୍ଟ ଗୁଣଫଳ ନାଶ
ନକ୍ଷତ୍ର କରଇ ଦ୍ୱିଗୁଣକୁ ବିନାଶ ।
ସେ ସକାଶୁ ତିଥି ନକ୍ଷତ୍ରର ଅବସାନେ
ପାରଣା ବିଧି କରନ୍ତି ଶାସ୍ତ୍ରଜ୍ଞାମୀ ଜନେ ।
ମହାନିଶା ଉପସ୍ଥିତ ହୁଅଇଟି ଯେବେ
ବୃଷସ୍ଥ ଦିନେ ପାରଣା ବିଧି ହୁଏ ତେବେ ।

ତିଥି ନକ୍ଷତ୍ର ଶେଷରେ ରାତ୍ରି ଉପସ୍ଥିତ
ହେଲେ ମହାନିଶା ନାମେ ହୁଏ ସେ କଥିତ
ତହିଁରେ ପାରଣା କଲେ ବ୍ରହ୍ମହତ୍ୟା ଦୋଷ
ଲାଗଇ ସନ୍ଦେହ ଏଥି ନାହିଁ ଜାଣ ଲେଶ ।
ଅନ୍ନ ଭୋଜନ କରିବା କଥା ଦୂରେ ଥାଉ
ତାମ୍ବୁଳ ମାତ୍ର ଭୋଜନ କରିଥାଏ ଯେହୁ ।
ମଳ ମୂତ୍ର ଗୋମାଂସର ଭକ୍ଷଣ ସମାନ
ସେହି ତାମ୍ବୁଳ ଭୋଜନ ଅଟଇଟି ଜାଣ ।
ଆଦିଅନ୍ତ ଦୁଇ ଦୁଇ ଘଟିକା ରାତ୍ରିର
ଦିବସର ଅଂଶ ତାକୁ ବୋଲି ମନେକର ।
ଜନ୍ମାଷ୍ଟମୀ ସୂକ୍ଷ୍ମା ହୋଇଥିଲେ ସେ ଦିନରେ
ଯେଉଁ ଲୋକ ବ୍ରତ ଉପବାସ ଆଦି କରେ ।
ଶତଜନ୍ମ କୃତ ପାପ ନାଶ ଯାଏ ତାର
ବଶିଷ୍ଠ ବୋଲନ୍ତି ଏହା ଜାଣ ମୁନିବର ।
କେବଳ ଯେ ଉପବାସ କରେ ଶୁଦ୍ଧଚିତ୍ତେ
ଅଶ୍ୱମେଧ ଯାଗଫଳ ଲଭଇ କଞ୍ଚିତେ ।
ଶ୍ରୀକୃଷ୍ଣ ଜନମାଷ୍ଟମୀ ଦିନେ ଯେ ଭୁଞ୍ଜଇ
ଶତକୋଟି ବ୍ରହ୍ମହତ୍ୟା ପାପକୁ ଲଭଇ ।
କୋଟିଏ ଜନ୍ମ ଅର୍ଜିତ ପୁଣ୍ୟ ନାଶଯାଏ
ଦେବ ପିତୃ କାର୍ଯ୍ୟକୁ ସେ ଉପଯୁକ୍ତ ନୁହେଁ
ଅନ୍ତକାଳେ କାଳସୂତ୍ର ନରକରେ ପଡ଼ି
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଘୋର ଦୁଃଖେ ସଢ଼େ
ଶୂଳ ତୁଲ୍ୟ କୃମିଗଣ ତୀକ୍ଷ୍ଣ ଦନ୍ତ କାଢ଼ି
ଖେବାଉଥାନ୍ତି ତାହାର ଶରୀରପାଶେ ବେଢ଼ି ।
ତହିଁରୁ ମୁକତି ପାଇ ଭାରତ ବର୍ଷରେ
ଜନମ ହୁଅଇ ଯେବେ ବହୁ କାଳାନ୍ତରେ
ଷାଠିଏ ସହସ୍ର ବର୍ଷ ବିଷ୍ଠାରେ ସେ ଲୋକ
ଘାଣ୍ଟି ହେଉଥାଏ ପଡ଼ି ହୋଇ କୃମିପୋକ
କୋଟିଏ ସହସ୍ର ବର୍ଷ ଗୃଧ୍ରଜନ୍ମ ପାଏ
ଶୂକର ହୁଅଇ ଏକଶତ ଜନ୍ମ ଯାଏ ।
ଶତଜନ୍ମ ଯାଏ ହୁଏ ଶ୍ୱାପଦ ଶୃଗାଳ
କାଳ ସର୍ପ ରୂପ ରହେ ଶତବର୍ଷ କାଳ ।
ସେ ଅନ୍ତେ ମନୁଷ୍ୟ ହେଲେ କୁଷ୍ଠରୋଗୀ ହୁଏ
ସର୍ବଦା ଜୀବ ସଂହାରି ଜୀବ ରଖିଥାଏ ।

ପୁଣି ଯେତେକ ଦେହଅଛନ୍ତି ପାଏ ନରଜନ୍ମ
କରଇ ତସ୍କର ଖଣ୍ଡ ଦସ୍ୟୁଙ୍କର କର୍ମ ।
ସେ ଅନ୍ତେ ରଜକ ତୈଳକାର ଜନ୍ମ ପାଏ
ଶେଷରେ ନୀଚ ବ୍ରାହ୍ମଣ ଘରେ ଜାତ ହୁଏ ।
ଉପବାସ କରିବାକୁ ଅସମର୍ଥ ହେଲେ
ବିପ୍ର ଜଣକୁ ଭୋଜାଇ କରିଇବ ଭଲେ ।
ତାର ମନ ତୋଷକରି ଧନରତ୍ନ ଦେବ
ତେବେ ସେ ବ୍ରତର ଫଳ ନିଶ୍ଚୟ ପାଇବ ।
ସହସ୍ରେକ ପ୍ରାଣାୟାମ ଉପକଳ୍ପ ପରେ
ସୂକ୍ତ ସ୍ତୋତ୍ର ଆଦି ସବୁ ପଢ଼ିବ ଭକ୍ତିରେ ।
ଏହିରୂପେ ଜନ୍ମାଷ୍ଟମୀ ବ୍ରତର ବିଧାନ
ଧର୍ମଙ୍କ ମୁଖରୁ କରିଥିଲି ମୁଁ ଶ୍ରବଣ ।
ପୁଚ୍ଛିବାରୁ ତୁମ୍ଭ ଆଗେ କହିଲି ସକଳ
ଆଉ କି ଶୁଣିବ ପୁଚ୍ଛ କର ତପଶୀଳ ।
ଏମନ୍ତ କହି ମଉନ ହେଲେ ମୁନିବର
ଭଣିଲେ ଉଗ୍ରଶ୍ରବା ପଦ୍ୟେ ଶୌନକଙ୍କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଜନ୍ମାଷ୍ଟମୀ ବ୍ରତବିଧି ନିରୂପଣ କଥନେ ନାମ ଅଷ୍ଟମୋଽଧ୍ୟାୟଃ ।

## ନ ବ ମ ଅ ଧ୍ୟା ୟ

## ଶ୍ରୀକୃଷ୍ଣଙ୍କର ଜନ୍ମବୃତ୍ତାନ୍ତ ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ଋଷିସାଇଁ
ଶ୍ରୀକୃଷ୍ଣଙ୍କୁ ବସୁଦେବ ନନ୍ଦପୁରେ ଥୋଇ ।
ସ୍ୱଗୃହକୁ ଗଲା ପରେ ନନ୍ଦ ଶ୍ରୀକୃଷ୍ଣଙ୍କୁ
ଦେଖିଣ କିରୂପେ କଲେ ଜନ୍ମ ଉତ୍ସବକୁ ।
ଗୋକୁଳେ ରହି ଶ୍ରୀକୃଷ୍ଣ କେଉଁ କର୍ମକଲେ
କିରୂପେ ବାଲ୍ୟ ସମୟେ କ୍ରୀଡ଼ା ଦେଖାଇଲେ ।
ରାଧାଙ୍କ ଆଜ୍ଞାରେ ଯେଉଁ ପ୍ରତିଜ୍ଞା ଶ୍ରୀହରି
କରି ଆସିଥିଲେ ତାହା ପାଳିଲେ କିପରି ।
କେମନ୍ତ ଅଟଇ ବୃନ୍ଦାବନର ପ୍ରକାର
ରାସମଣ୍ଡଳ ଅଟଇ କେମନ୍ତ ସୁନ୍ଦର ।
ତହିଁରେ କିରୂପେ କ୍ରୀଡ଼ା କଲେ ବ୍ରହ୍ମଋଷି
ଏ ସମସ୍ତ କଥା କହ ମୋ ଆଗେ ବିଶେଷି ।
ନନ୍ଦ ଯଶୋଦା ରୋହିଣୀ କେଉଁ ତପକରି
ଶ୍ରୀହରିଙ୍କୁ ପୁତ୍ରରୂପେ ପାଇଲେ କିପରି ।
ଶ୍ରୀକୃଷ୍ଣଙ୍କ ଜନ୍ମ ଆଗେ ବଳଦେବଙ୍କର
କିରୂପେ ଜନ୍ମ ହୋଇଲା କେଉଁଣ ସ୍ଥାନର ।
ପୀୟୂଷ ରସ ସମାନ ଏ ଦିବ୍ୟ ଚରିତ
ଶୁଣିଲେ ତୁମ୍ଭ ମୁଖରୁ ତୋଷ ହେବ ଚିତ୍ତ ।
ବିଶେଷରେ କବିମୁଖେ ପୁରାଣ ଆଖ୍ୟାନ
ଶୁଣିଲେ ବୋଧ ହୁଅଇ ଅମୃତ ସମାନ ।
ଆପଣ ଅଟନ୍ତି ପୁଣି ଶ୍ରୀକୃଷ୍ଣଙ୍କ ଅଂଶ
ସର୍ବଲୋକ ଜ୍ଞାନଗୁରୁ ଯୋଗୀଜନ ଈଶ ।
ସେ ସକାଶୁ ଶ୍ରୀକୃଷ୍ଣଙ୍କ ଚରିତକୁ ତୁମ୍ଭେ
କହିଲେ ଶୁଣି ପବିତ୍ର ହେବୁ ନିଶ୍ଚେ ଆମ୍ଭେ ।
ଏହା ଶୁଣି ନାରାୟଣ ସନ୍ତୁଷ୍ଟ ହୋଇଲେ
ପୁରାଣ ଚରିତ କହିବାକୁ ଆରମ୍ଭିଲେ ।
ବୋଇଲେ ହେ ମୁନିବର ତୁମ୍ଭେ ଅଟ ଧନ୍ୟ
ଶ୍ରୀକୃଷ୍ଣ କଥାରେ ଯାହା ବଳାଇଛ ମନ ।
ତୁମ୍ଭପରି ଭକ୍ତଙ୍କୁ ଶ୍ରୀହରି ଚରିତ
କହିବା ଲୋକର ଜନ୍ମ ହୁଅଇ କୃତାର୍ଥ ।
ଶ୍ରୀକୃଷ୍ଣ ଅଂଶରେ ବ୍ରହ୍ମା ଶିବ ଗଣେଶ୍ୱର
ଶେଷଦେବ ଧର୍ମ କୂର୍ମ ନାରାୟଣ ନର ।
କାର୍ତ୍ତିକେୟ ସହିତରେ ଅବତାର ହୋଇ ।
ଶ୍ରେଷ୍ଠ ବୈଷ୍ଣବ ନାମରେ ବିଖ୍ୟାତ ଏ ମହୀ
ଗୋଲୋକନାଥଙ୍କର ଯେ ମହିମା ଅପାର ।
ତାହାକୁ ବର୍ଣ୍ଣିବାପାଇଁ ଶକତି କାହାର ।
ଆମ୍ଭେମାନେ ଅଂଶ ଜାତ ହେଲେହେଁ ତାହାଙ୍କୁ
ଜାଣି ନ ପାରି କାଞ୍ଚିତ ହେଉଅଛୁ ଯାହୁ ।
ଅନ୍ୟ ଲୋକଙ୍କର ଜ୍ଞାନ ଅଟେ ବା କେତେକ
ଜାଣିବେ ସେ ଶ୍ରୀକୃଷ୍ଣଙ୍କ ଚରିତ ଯେତେକ ।

ଶୂକର କଚ୍ଛପ କଲ୍କି କପିଳ ବାମନ
ଶୌନକ ମିଶି ଏମାନେ ଅଂଶ ଜାତ ପୁଣ ।
କଳାରୁ ସମ୍ଭବ ଆଉ ବହୁତ ଲୋକରେ
ଅଛନ୍ତି ଯେ ଯାହା କାର୍ଯ୍ୟକାଳ କୌତୁକରେ
ନୃସିଂହ ବାମନ ଶ୍ୱେତଦ୍ୱୀପ ନାରାୟଣ
ପୂର୍ଣ୍ଣ ଅଂଶରେ ଅଟଇ ଏହାଙ୍କର ଜନ୍ମ ।
ବଇକୁଣ୍ଠେ ଗୋଲୋକରେ ପରିପୂର୍ଣ୍ଣରୂପେ
ବିଜୟେ ହୋଇ ଅଛନ୍ତି ଶ୍ରୀହରି ଯେ ଆପେ ।
ବୈକୁଣ୍ଠରେ ଚତୁର୍ଭୁଜ କମଳାବଲ୍ଲଭ
ଗୋଲୋକେ ଦ୍ୱିଭୁଜ ରାଧାକାନ୍ତ ଦେବ ଦେବ ।
ଏହାଙ୍କ ତେଜକୁ ଭକ୍ତ ଯୋଗୀଜନମାନେ
ଚିନ୍ତା କରୁଥାନ୍ତି ନିତ୍ୟ ବସି ନିଶିଦିନେ ।
ନନ୍ଦ ଯଶୋଦା ରୋହିଣୀ ଯେଉଁ କର୍ମକରି
କୃଷ୍ଣଙ୍କୁ ପାଇଲେ ଶୁଣ କହିବା ବିସ୍ତାରି ।
ବସୁଶ୍ରେଷ୍ଠ ଦ୍ରୋଣନାମେ ତପସ୍ୱୀ ଉତ୍ତମ
ଧରା ଅଟେ ତାଙ୍କ ପ୍ରିୟ ପତ୍ନୀଙ୍କର ନାମ ।
ସର୍ପଙ୍କର ମାତା କଦ୍ରୁ ନାମେ ମହାସତୀ
ଏମାନେ ନନ୍ଦ ଯଶୋଦା ରୋହିଣୀ ଅଟନ୍ତି ।
ଏକଦିନେ ଧରା ଦ୍ରୋଣ ଦୁହେଁ ଚଳିଗଲେ
ଗନ୍ଧମାର୍ଦ୍ଦନ ପର୍ବତେ ପ୍ରବେଶ ହୋଇଲେ ।
ଗଉତମ ଆଶ୍ରମର ନିକଟରେ ରହି
ତପ କଲେ ଶ୍ରୀକୃଷ୍ଣଙ୍କୁ ଦେଖିବାର ପାଇଁ ।
ଅୟୁତ ବରଷ ତହିଁ ଅତୀତ ହୋଇଲା
ପରେ ହେଲେ ଶ୍ରୀକୃଷ୍ଣଙ୍କ ଦେଖା ନ ମିଳିଲା ।
ସେ ସକାଶୁ ମହାଦୁଃଖେ ପତିପତ୍ନୀ ବେନି
ଅଗ୍ନିକୁଣ୍ଡ ସଜାଡ଼ିଲେ ଝାସଦେବା ପେନି ।
ମରିବାପାଇଁକି ମନ ଉପେକ୍ଷିଲେ ଚିନ୍ତା
ଶ୍ରୀହରିଙ୍କ ବିନା ସେହି ଗୃହସ୍ଥ ବନିତା ।
ସେ ସମୟେ ଆକାଶରୁ ଶୁଭିଲା ବଚନ
ଅଗ୍ନିରେ ଝାସ ନ ଦିଅ ଆହେ ତପୋଧନ ।
ଜନ୍ମାନ୍ତରେ ଗୋକୁଳରେ ପୁତ୍ର ସ୍ୱରୂପରେ
ହରିଙ୍କୁ ଦେଖିବ ତୁମ୍ଭେ ବେନି ନୟନରେ ।
ଯାହାଙ୍କ ରୂପକୁ ଯୋଗୀଜନେ ଚିନ୍ତାକରି
ଦେଖିବାକୁ ବସିଥାନ୍ତି ଦିବସ ଶର୍ବରୀ ।
ଏ ଦେହରେ ତୁମ୍ଭେ ତାଙ୍କୁ ଦେଖି ନ ପାରିବ
ବୃଥା କାହିଁ ଝାସଦେଇ ଜୀବନ ତେଜିବ ।

ଏରୂପେ ଆକାଶ ବାଣୀ ଶୁଣି ସେ ଉଭୟେ
ନିଜପୁରେ ଗଲେ ତୋଷ ବହି ଅତିଶୟେ ।
କେତେକାଳ ଅନ୍ତେ ବ୍ରଜପୁରେ ଜାତ ହୋଇ
ଦେଖିଲେ କୃଷ୍ଣଙ୍କୁ ପୁତ୍ର ସ୍ୱରୂପରେ ପାଇ ।
ରୋହିଣୀ ଚରିତ ଏବେ କହୁଅଛୁ ଶୁଣ
ଦେବଜନନୀ ଅଦିତି ଯାହାଙ୍କର ନାମ ।
ଦିନେ ସେ କୁସୁମବତୀ ହୋଇଥିଲା ବେଳେ
ଦୂତହସ୍ତେ କଶ୍ୟପଙ୍କୁ ସମ୍ବାଦ ସେ ଦେଲେ ।
ପରଦିନ ଶୁଦ୍ଧସ୍ନାନ କରିଣ ସୁନ୍ଦରୀ
ମଣ୍ଡିଲେ ଶରୀରେ ନାନାଅଳଙ୍କାର ଭରି
କସ୍ତୁରୀ ସିନ୍ଦୁର ବିନ୍ଦୁ ଲଲାଟ ପଟରେ
ଦେଇଲେ ମୁଖ ସୌନ୍ଦର୍ଯ୍ୟ ରଚିବା ଇଚ୍ଛାରେ ।
କର୍ଣ୍ଣେ ସୁବର୍ଣ୍ଣ କୁଣ୍ଡଳ ନାସାରେ ମୌକ୍ତିକ
ଅତ୍ୟନ୍ତ କିରଣ ଯୋଗେ ଦିଶେ ଜକଜକ ।
ଶରତ ପାର୍ବଣ ଚନ୍ଦ୍ର ସଦୃଶ ଆନନ
ମାତାପୂଜ କଳ ତୁଲ୍ୟ ବିଶାଳ ଲୋଚନ ।
କଜ୍ଜଳ ରେଖାରଞ୍ଜିତ ବଙ୍କିମ ଚାହାଣି
ଦିଶୁଥିଲା କାମଦେବ ଅସ୍ତ୍ର ଶୋଭା ଜିଣି ।
ସୁପକ୍ୱ ବିମ୍ବ ଅଧରେ ମନ୍ଦ ମନ୍ଦ ହାସ
ଡାଳିମ୍ବବୀଜ ସଦୃଶ ଦଶନର ଦୃଶ୍ୟ ।
ଏହିରୂପେ ନିଜ ରୂପ ଦରପଣେ ଦେଖି
ଅଦିତି ଦେବୀ ମନରେ ହୋଇ ମହାସୁଖୀ
କାମବାଣରେ ପୀଡ଼ିତ ହୋଇ ପୁନଃପୁନଃ
ପତିଙ୍କ ମାର୍ଗକୁ ଚାହିଁ ବସିଲେ ବଦନ ।
ସେ ଅନ୍ତେ ଦୂତ ମୁଖରୁ ଶୁଣିଲେ ସେ ପୁଣି
କଶ୍ୟପ ଅଛନ୍ତି କଦ୍ରୁ ବନିତାକୁ ଘେନି ।
ସୁରତି ରସରେ ମାତି ବସାଇ କୋଳରେ
ଚୁମ୍ବନ ଦେଉଅଛନ୍ତି ତା ଗଣ୍ଡସ୍ଥଳରେ ।
ତାହା ଶୁଣି କ୍ରୋଧଭରେ ଅଦିତି ସୁନ୍ଦରୀ
ଦୁଃଖିତ ହେଲେ କନ୍ଦର୍ପ ଶରେ ହୋଇ ଘାରି
ସ୍ନେହରେ ପତିଙ୍କୁ କିଛି ଶାପ ସେ ନ ଦେଲେ
କଦ୍ରୁଙ୍କୁ କେବଳ ଶାପ ଦେଲେ ସେହିକାଳେ ।
ବୋଇଲେ ସେ ଦୁର୍ବୃତ୍ତା ଧର୍ମବିନାଶିନୀ
ସ୍ୱର୍ଗଭ୍ରଷ୍ଟା ହୋଇ ମର୍ତ୍ତ୍ୟେ ପାଉ ନରଯୋନି ।
ଏହିରୂପେ ଶାପଦେଇ ଦେବଙ୍କର ମାତା
ରହିଲେ ପତିଙ୍କୁ ମନେ ମନେ କରି ଚିନ୍ତା ।

ସେ ଶାପକୁ ଦୁଃଖମୁଖେ କଦ୍ରୁ ଦେବୀ ଶୁଣି
ଅଦିତିଙ୍କୁ କ୍ରୋଧେ ଶାପ ଦେଲେ ସେହି ପୁଣି ।
ବୋଇଲେ ମୋତେ ହେ ଶାପ ଦେଲ ଅକାରଣେ
ମୁଁ ମଧ୍ୟ ତାହାକୁ ଶାପ ଦେବି କ୍ରୋଧମନେ ।
ମନୁଷ୍ୟ ଯୋନିରେ ସେହି ମର୍ତ୍ତ୍ୟଲୋକେ ଜାତ
ହୋଇବ ଯେବେ ଧରମ ଶାସ୍ତ୍ର ଅଟେ ସତ ।
ଜଳରେ ପୀଡ଼ିତ ହୋଇ ତାହାର ଶରୀର
ସଂସାର ବିଷୟ ଭୋଗେ ନ ହୋଇବ ସ୍ଥିର ।
ଏହି ପ୍ରକାରେ ସେ ଦୁହେଁ ପରସ୍ପରେ ଶାପ
ଦେବାର ଶୁଣି ଦୁଃଖିତ ହୋଇଣ କଶ୍ୟପ ।
କଦ୍ରୁଙ୍କୁ ବୋଇଲେ ଭୟ ନ କର କଦାଚିତ
ମର୍ତ୍ତ୍ୟଲୋକେ ଯିବ ତୁମ୍ଭେ ମୋହର ସହିତେ ।
ଶ୍ରୀହରିଙ୍କୁ ଦରଶନ କରିବ ସେଠାରେ
ମହାସୁଖେ ରହିଥାଅ ଆନନ୍ଦ ମନରେ ।
ଏହିରୂପେ ପ୍ରିୟାଙ୍କୁ ସେ ଆଶ୍ୱାସନା କଲେ
ଅଦିତି ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ତାହାଙ୍କର ମନୋରଥ ପୂର୍ଣ୍ଣ କରି ତର୍ଣ୍ଣି
ପ୍ରବୋଧନା କଲେ ପୁଣି ନାନାକଥା କହି ।
ସେହି ସଙ୍ଗ-କାଳରେ ମହେନ୍ଦ୍ର ଉତ୍ପନ୍ନ
ହୋଇଲେ ଦୁହିଙ୍କଠାରୁ ଆହେ ତପୋଧନ ।
ଦେବକୀ ସ୍ୱରୂପେ ଜାତ ହେବେ ସେ ଅଦିତି
ରୋହିଣୀରୂପେ ଜନ୍ମିଲେ କଦ୍ରୁ ମହାସତୀ
କଶ୍ୟପ ଯେ ବସୁଦେବ ଶ୍ରୀକୃଷ୍ଣ ଜନକ
ଅତ୍ୟନ୍ତ ସେ ସାଧୁ ବିଜ୍ଞ ଗୁଣରେ ଅଧିକ ।
ବଳଦେବଙ୍କ ଜନମ ଚରିତକୁ ଶୁଣ
ସହସ୍ର ମସ୍ତକ ସେହି ଶେଷଦେବ ଜାଣ ।
ବସୁଦେବଙ୍କ ଭାରିଯା ରୋହିଣୀ କାମିନୀ
ଗୋକୁଳକୁ ଗଲେ ନିଜ ପତିଆଜ୍ଞା ଘେନି ।
କଂସଠାରୁ ଭୟ ପାଇ ସେ ରମଣୀବର
ପଳାଇଲେ ରଖିବାକୁ ଗର୍ଭର କୁମର ।
ସେ କାଳରେ ଯୋଗମାୟା ଶ୍ରୀକୃଷ୍ଣ ଆଜ୍ଞାରେ
ଦେବକୀ ସପ୍ତମ ଗର୍ଭେ ନେଇ ଗୋପନରେ ।
ରୋହିଣୀ ଗର୍ଭରେ ରଖି କୈଳାସକୁ ଗଲେ
ନନ୍ଦ ମନ୍ଦିରେ ରୋହିଣୀ ନିଶ୍ଚିନ୍ତେ ରହିଲେ ।
କେତେକାଳ ପରେ ଜାତ କଲେ ଏକସୁତ
ଦିଶଇ ତା ଅଙ୍ଗ ଯେହ୍ନେ ତପତ ରଜତ ।
ସ୍ୱଚ୍ଛତେଜରେ ସେ ହୋଇଅଛି ତେଜସ୍କର
ଈଷତ ହାସ୍ୟ ବଦନେ ଦିଶଇ ସୁନ୍ଦର ।
ସେ ପୁତ୍ର ଜନମ ହେବା ମାତ୍ରେ ଦେବଗଣ
ଆନନ୍ଦିତ ମନେ କଲେ ପୁଷ୍ପ ବରଷଣ ।
ଗୋପକୁଳ ଅଧିପତି ନନ୍ଦ ସେ ପୁତ୍ରକୁ
ଦେଖିଣ ଆନନ୍ଦ ଜଳେ ବୁଡ଼ାଇ ମନକୁ ।
ବ୍ରାହ୍ମଣଙ୍କୁ ଧନ ରତ୍ନ ବହୁତ ଦିଆଇ
ଜାତକର୍ମ କଲେ ପୁରୋହିତଙ୍କୁ ଡକାଇ ।
ନାଡ଼ି ଛେଦ ପରେ ଶୁଦ୍ଧସ୍ନାନ କରାଇଲେ
ନଗରେ ନାନାପ୍ରକାର ଉତ୍ସବ ସେ କଲେ ।
ଦରସୁସପଙ୍କ କେତେ ଦାନ ପୁଣ୍ୟମାନ
ଅକୁଣ୍ଠିତ ମନେ ରଜା କଲେ ସମ୍ପାଦନ ।
ବ୍ରାହ୍ମଣୀଗଣଙ୍କୁ ଡାକି ଯଶୋଦା ସେ କାଳେ
ଇଷ୍ଟ ଅନୁସାରେ ଧନ ରତ୍ନ ବସ୍ତ୍ର ଦେଲେ ।
ଏହିରୂପେ ବଳଦେବ ଜନମ ବୃତ୍ତାନ୍ତ
ଶୁଣିଲ ତ ଭଲ କରି ଆହେ ନୃପ ବନ୍ତ ।
ଏବେ ଶ୍ରୀକୃଷ୍ଣ ଜନମ ଚରିତକୁ ଋଷି
କହିବା ଶୁଣ ସକଳ କଥାକୁ ବିଶେଷି ।
ନନ୍ଦପୁରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ରଖି
କନ୍ୟା ଘେନି ମନେ ମନେ ହୋଇ ମହାଦୁଃଖୀ ।
ଆପଣାର ଭବନକୁ ଫେରିଗଲେ ପରେ
ନନ୍ଦ ଯଶୋଦା ଉଭୟେ ଉଠିଲେ ସତ୍ୱରେ ।
ଦେଖିଲେ ସୂତିକା ଗୃହେ ଶୋଇଛି ବାଳକ
ନବଘନ ପ୍ରାୟେ ଦିଶୁଅଛି ଦେହଯାକ ।
ଶରଦ ପାର୍ବଣ ଚନ୍ଦ୍ର ବଦନ ସୁନ୍ଦର
କାନ୍ଦୁଅଛି କ୍ଷଣେ ହସୁଅଛି ସେ ପ୍ରକାର ।
ଦୁଇହାତ ତଳେ ଦେଇ ଘୁଞ୍ଚୁଅଛି ଗୋଡ଼
ତା ଦେଖି ଯଶୋଦା ନେଇ କଲେ ବେଗେ କୋଳ
ଧାତ୍ରୀକୁ ଡକାଇ ନାଡ଼ି ଛେଦ କଲ ପରେ
ଗୋପିକାଗଣ ପ୍ରବେଶ ହୋଇଲେ ସେଠାରେ ।
ହରଷରେ ଜୟ ଜୟ ଶବଦ କରି ମୁଖେ
ଶିଶୁକୁ ଆଶିଷବାଦ ଦେଲେ ମହାସୁଖେ ।
କେତେମାନେ ସ୍ନେହ ଭରେ ବସାଇଲେ କୋଳେ
କେ ନେଇ ଚୁମ୍ବନ ବାଳକର ଗଣ୍ଡସ୍ଥଳେ ।
ସ୍ନାନ କରି ନନ୍ଦରାଜ ଧୌତ ବାସ ପିନ୍ଧି
ଜନ୍ମକାଳ କର୍ମମାନ କଲେ ଯଥାବିଧି ।

ବ୍ରାହ୍ମଣଙ୍କୁ ନାନାବିଧ ଦ୍ରବ୍ୟ ଭୁଞ୍ଜାଇଲେ
ଧନଦ୍ରବ୍ୟ ଦେଇ ମନ ତୋଷେ ବିଦାକଲେ ।
ପର୍ବତ ସମାନ ତିଳ ସାନ୍ତଠାରେ ରଖି
ଦକ୍ଷିଣା ସହିତେ ଦାନ କଲେ ହୋଇ ସୁଖୀ
ସୁନା ରୁପା ବସ୍ତ୍ର ଗାଈ ଘୃତ ଦଧି ଦୁଗ୍ଧ
ଦେଲେ ଅପ୍ରମିତ ପୁତ୍ର ଜନ୍ମ ହୋଇ ମୁଗ୍ଧ
ମିଷ୍ଟାନ୍ନ ଲଡ଼ୁକ ସ୍ୱାଦୁ ମୋଦକ ଶର୍କରା
ଦ୍ୱିଜବରଙ୍କୁ ପ୍ରଦାନ କଲେ ବହୁ ଭାର ।
ଆଉରି ତାମ୍ବୁଳ ତୈଳ ଧନ ଧାନ୍ୟ ଆଦି
ଦାନ କଲେ ପୁଣି ଶିଷ୍ଟ ଦ୍ୱିଜଙ୍କୁ ସମ୍ପାଦି ।
ନାନାବିଧ ବାଦ୍ୟମାନ ବଜାଇ ସେ କାଳେ
ଉତ୍ସବ କଲେ ବହୁତ ପ୍ରେମରସ ଭୋଳେ ।
ମନ୍ତ୍ର ତନ୍ତ୍ର ବଶାରଦ ବୃଦ୍ଧ ବ୍ରାହ୍ମଣଙ୍କୁ
ନିଯୁକ୍ତ କଲେ ସୂତିକା ଗୃହ ରଖିବାକୁ ।
ବେଦପାଠ ହରିନାମ ସଙ୍କୀର୍ତ୍ତନ କରି
ପୂଜା କଲେ ପୁଣି ମୁଖ୍ୟ ଦ୍ୱିଜଙ୍କୁ ହକାରି ।
ଗୃହଦେବତାଙ୍କ ପାଶେ କର୍ମ କରାଇଲେ ।
ବ୍ରାହ୍ମଣଙ୍କ ମୁଖେ ଶୁଭଗୀତ ପଢ଼ାଇଲେ ।
ବାଳକମାନେ କାଖରେ କ୍ଷୁଦ୍ର ବାଳକଙ୍କୁ
ଧରିଣ ଆସିଲେ ନନ୍ଦ ରାଜାଙ୍କ ଗୃହକୁ ।
ସେମାନଙ୍କୁ ଧନ ରତ୍ନ ବସ୍ତ୍ର ଅଳଙ୍କାର
ଦେଲେ ଆନନ୍ଦରେ ନନ୍ଦ ହୋଇ ଜର ଜର
ପୁଣି କେତେ ବୃଦ୍ଧ ଗୋପ ବନିତାଏ ଆସି
ଶିଶୁକୁ ଦେଖିଲେ ନୃପ ମନ୍ଦିରେ ପ୍ରବେଶି ।
ଦୈବଜ୍ଞ ଜ୍ୟୋତିଷଗଣ କାଖେ ପୋଥି ଧରି
ଆସିଲେ କୋଷ୍ଠୀ ନିର୍ମାଣ କଥା ମନେ କରି
ନନ୍ଦ ସେମାନଙ୍କୁ ଦେଖି ନମସ୍କାର କଲେ
ଧନ ରତ୍ନ ଦେଇ ପୁଣି ତୋଷ କରାଇଲେ ।
ଭବିଷ୍ୟତ କଥା ସବୁ କହି ସେ ସମସ୍ତେ
ଆପଣା ଗୃହକୁ ଚଳିଗଲେ ଯେଝାମତେ ।
ଏହିରୂପେ ପୁତ୍ର ଜନ୍ମ ଉତ୍ସବ କରାଇ
ନନ୍ଦ ଯଶୋଦା ରୋହିଣୀ ତୋଷହେଲେ ତହିଁ
ଶୁକ୍ଳ ପକ୍ଷେ ଶଶିକଳା ପ୍ରାୟେ ହଳଧର
ବୃଦ୍ଧି ପାଇଲେ ଗୋପରେ ଶ୍ରୀକୃଷ୍ଣ ସଙ୍ଗର
ଆନନ୍ଦରେ ବ୍ରଜବାସୀ ଗୋପିକା ଗୋପାଳେ
ଶ୍ରୀକୃଷ୍ଣ ବଳଦେବଙ୍କୁ ପାଇ ଧନ ନେଲେ ।
ପିନାକ୍ଷୀବାସୀ ବୋଲେ ବ୍ରହ୍ମବୈବର୍ତ୍ତ
ପୁରାଣକୁ ଶୁଣ ସାଧୁଜନେ ଦେଇ ଚିତ୍ତ ।
ଶ୍ରୀକୃଷ୍ଣ ଚରିତ ଏ ଅମୃତ ରସମୟ
ଶୁଣିଲେ ସକଳ ପାପ ହୋଇଯାଏ କ୍ଷୟ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ଜନ୍ମବୃତ୍ତାନ୍ତ ବର୍ଣ୍ଣନେ
ନାମ ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ

### ପୂତନାର ଗୋପ ପ୍ରବେଶ ଓ ଶ୍ରୀକୃଷ୍ଣଙ୍କ ଦ୍ୱାରା ତାହାର ପ୍ରାଣ ନିଧନ

କହୁଛନ୍ତି ନାରାୟଣ ନାରଦ ଆଗରେ
ଶୁଣ ଆହେ ମୁନିବର ଏଥୁ ଅନନ୍ତରେ ।
ଦିନେ ସଭାମଧ୍ୟେ ବସି କଂସ ନୃପମଣି
ଶୁଣିଲା ଆକାଶ ଦେଶେ ଶୁଭୁଅଛି ବାଣୀ ।
ଆହେ କଂସ ନରପତି କି କରୁଛ ବସି
ତୁମ୍ଭର ମୃତ୍ୟୁସମୟ ହୋଇଗଲା ଆସି ।
କାଳରୂପୀ ଜନାର୍ଦ୍ଦନ ମର୍ତ୍ତ୍ୟେ ଅବତରି
ଅଛନ୍ତି ତୁମ୍ଭଙ୍କୁ ନଷ୍ଟ କରାଇବେ ମାରି ।
ନନ୍ଦ ଭବନରେ ବସୁଦେବ ନେଇକରି
ଥୋଇଲେ ପୁତ୍ରକୁ ତୁମ୍ଭ ପ୍ରତାପକୁ ଡରି ।
କନ୍ୟାକୁ ସେଠାରୁ ଆଣି ଆପଣା ମନ୍ଦିରେ
ରଖିଅଛନ୍ତି କପଟ ବିଚାରି ମନରେ ।
ସେ କନ୍ୟାଟି ଯୋଗମାୟା ମନୁଷ୍ୟ ରୂପରେ
ଅବତାର ହୋଇଛନ୍ତି ମରତ ଲୋକରେ ।
ଦେବକୀ ସପ୍ତମଗର୍ଭ ହେଲା ଯେଉଁ ସୁତ
ତାକୁ ଯୋଗମାୟା କଲେ ରୋହିଣୀ ଉଦରେ ।

ରୋହିଣୀ ଗର୍ଭମଧ୍ୟରେ ରଖିଲେ ଯତନ
ଯଥାକାଳେ ତହୁଁ ପୁତ୍ର ଜନମିଲ ବନେ ।
ଶେଷ ଦେବ ଅଂଶରେ ସେ ତନୟ ଉତ୍ପନ୍ନ
କରିବ ନଷ୍ଟସ୍ୱ ତୁମ୍ଭ ଅନିଷ୍ଟ ସାଧନ ।
ଗୋପପୁରେ ଦୁଇଭାଇ ହେଲେଣି ବର୍ଦ୍ଧିତ
କେବଳ ଥାଉଁ ପ୍ରତିକାର କର ନରନାଥ ।
ଏରୂପେ ଆକାଶ ବାଣୀ ଶୁଣି କଂସରାଜା
ଭୟରେ କମ୍ପିତ କରି ଆପଣାର ମଜ୍ଜା ।
ସେ ଦିନୁ ଆହାର ନିଦ୍ରା ପରିତ୍ୟାଗ କଲା
କି କରିବ ବୋଲି ମନେ ମନେ ବିଚାରିଲା ।
ମାୟାରେ କୁଶଳ ଯେଉଁ ପୂତନା ଅସୁରୀ
ଡକାଇ ତାହାକୁ ଗୁପତରେ ଦଣ୍ଡଧାରୀ ।
କହିଲା ଗୋ ପୂତନା ତୁ ବେଗ ହୋଇଯିବୁ
ନନ୍ଦଗୋପାଳ ମନ୍ଦିରେ ପ୍ରବେଶ ହୋଇବୁ
ଅସୁରୀ ରୂପକୁ ଛାଡ଼ି ମନୁଷ୍ୟ ରୂପରେ
ପରିଚୟ ଦେବୁ ଆପଣାର ସେହିଠାରେ ।
ସ୍ତନରେ ବିଷ ଲଗାଇ ଏକାନ୍ତେ ବସିବୁ
ନନ୍ଦର ବେନିବାଳକ କୋଳରେ ଘେନିବୁ ।
ସ୍ତନ୍ୟ ସହିତରେ ବିଷ କରାଇବୁ ପାନ
ଯେରୂପେ ସେ ବେନି ଶିଶୁ ତେଜିବେ ଜୀବନ ।
ଏମନ୍ତ ହେଲେ ମୋହର ହେବ କାର୍ଯ୍ୟ ସିଦ୍ଧି
କି କହିବ ଆଉ ତୁ ତ ଅଟୁ ଗୋ ସୁବୁଦ୍ଧି ।
କଂସର ବଚନ ଶୁଣି ରାକ୍ଷସୀ ପୂତନା
ରାଜକାର୍ଯ୍ୟକୁ ମନରେ କରିଣ ଭାବନା ।
ରାଜାଙ୍କୁ ପ୍ରଣାମ କରି ବିଦାୟ ଘେନିଲା
ମନୁଷ୍ୟ କାମିନୀ ରୂପ ସେହିକ୍ଷଣି ହେଲା ।
ନବଯଉବନବତୀ ଅତ୍ୟନ୍ତ ସୁନ୍ଦରୀ
ଦିଶିଲା ଶରଦପୂର୍ଣ୍ଣ ଚନ୍ଦ୍ରମା ପରି ।
ନାନା ଅଳଙ୍କାର ଦିବ୍ୟ ବସ୍ତ୍ରମାନ ଆଣି
ପିନ୍ଧିଲା ଯତନେ ତାହା ସେ ଦୈତ୍ୟରମଣୀ
ମାୟାବଳେ ଆକାଶରେ ଶୀଘ୍ରଗତି କରି
ମୁହୂର୍ତ୍ତେ ମଧ୍ୟେ ପ୍ରବେଶ ହେଲା ଗୋପପୁରୀ ।
ଦେଖିଲା ନନ୍ଦରାଜାର ବିଚିତ୍ର ଭବନ
ଅମରାବତୀ ପରାୟେ ଦିଶେ ଶୋଭାବନ ।
ଗଭୀର ପରିଖାମାନ ଚାରିପାଶେ ରହି
ଶତ୍ରୁଙ୍କ ମନରେ ବଡ଼ ଭୟ ଉପୁଜାଇ ।

ଇନ୍ଦ୍ରନୀଳ ମରକତ ପଦ୍ମରାଗ ମଣି
ବସିଅଛି ପୁଣି ସ୍ୱର୍ଣ୍ଣ କଳଶର ଶ୍ରେଣୀ ।
ଗଗନ ପରଶ କରି କନକ ପ୍ରାକାର
ଚାରିଟି ଦ୍ୱାରଲାଗି ଦିଶଇ ସୁନ୍ଦର ।
ତହିଁରେ ଲୌହନିର୍ମିତ କବାଟ ଥିବାରୁ
ଦେଖିଲେ ମନରେ ଭୟ ଜାତ ହୁଏ ଦୂରୁ ।
ନାନା ଶସ୍ତ୍ର ଅସ୍ତ୍ର ଘେନ ଦ୍ୱାରପାଳମାନେ
ରକ୍ଷା କରୁଛନ୍ତି ସେ ପୁରକୁ ସାବଧାନେ ।
ପୁରୁଷ କାମିନୀଗଣ ସାଜି ଦିବ୍ୟ ବେଶ
ଦିନ ନେଉଛନ୍ତି ମନେ ଲଭିଣ ହରଷ ।
ଦାସଦାସୀମାନେ ନିଜ ନିଜ କାର୍ଯ୍ୟ କରି
ସେ ଗୋପନଗର ମଧ୍ୟେ ରହିଛନ୍ତି ପୂରି ।
ତାହା ଦେଖିଣ ପୂତନା ବିସ୍ମିତ ହୋଇଲା
ସଳଖରେ ଯଶୋଦାଙ୍କ ମନ୍ଦିରକୁ ଗଲା ।
ଦେବତା ପରାୟେ ରୂପ ଥିବାରୁ ସେ ବହି
ଦୁଷ୍ଟା ବୋଲି ତାକୁ ଚିହ୍ନି ନ ପାରିଲେ କେହି ।
ଗୋପିକାମାନେ ତାହାର ସୌନ୍ଦର୍ଯ୍ୟକୁ ଦେଖି
ଘଡ଼ିଏ ଯାଏ ଟିଗୁଡ଼ି ନ ପାରିଲେ ଆଖି ।
ଲକ୍ଷ୍ମୀ ଅବା ସରସ୍ୱତୀ ପାର୍ବତୀ ଏଠାକୁ
ଆସିଛନ୍ତି ନବଶିଶୁ ରୂପ ଦେଖିବାକୁ ।
ଏମନ୍ତ ବିଚାରି ଗୋପ ବନିତା ସକଳ
ଦେଲେ ନେଇ ଆଗ ତାକୁ ପାଦ୍ୟଅର୍ଘ୍ୟ ଜଳ
ସେ ଅନ୍ତେ ବସିବାପାଇଁ ସିଂହାସନ ଦେଲେ
ମଧୁର ବାକ୍ୟ କୁଶଳ ବାରତା ପୁଚ୍ଛିଲେ ।
ପୁଣି ବୋଇଲେ ଗୋ ଦେବୀ କିଏ ଅଟ ତୁମ୍ଭେ
କେଉଁଠାରୁ ଆସିଲ ତା କହ ପୁଚ୍ଛୁ ଆମ୍ଭେ ।
ସେମାନଙ୍କଠାରୁ ଏହା ଶୁଣି ସେ ରାକ୍ଷସୀ
କହିଲା କପଟେ ତାଙ୍କୁ ମନ୍ଦ ମନ୍ଦ ହସି ।
ମଥୁରାବାସିନୀ ମୁହିଁ ଅଟେ ଗୋପବାଳା
ବ୍ରାହ୍ମଣ ଭାରଯା ହୋଇଅଛି ଗୋ ଅବଳା ।
ଶୁଣିଲି ନନ୍ଦରାଜାଙ୍କ ବୃଦ୍ଧକାଳେ ପୁତ୍ର
ଯଶୋଦା ଦେବୀ ଗର୍ଭରୁ ହୋଇଅଛି ଜାତ ।
ସେ ସକାଶୁ ଦେଖିବାକୁ ଆସିଅଛି ଧାଇଁ
ଶୁଭମୟ ଆଶୀର୍ବାଦ ଦେବି ତୋଷ ବହି ।
ଆଣ ସେ ପୁତ୍ରକୁ ମୋର କୋଳରେ ବସାଇ
ଦେଖିଣ ଯିବି କିଞ୍ଚିତ ମାତ୍ର ଏଥେ ରହି ।

ଏରୂପେ ବ୍ରାହ୍ମଣୀ ବାକ୍ୟ ଶୁଣି ନନ୍ଦରାଣୀ
ପ୍ରଣାମ କଲେ ଧରିଣ ତା ଚରଣ ବେନି ।
କୁମରକୁ ଆଣି ତାର କୋଳେ ସମର୍ପିଲେ
ଏହାଙ୍କି ମୋ ପୁତ୍ରବୋଲି ବଚନେ କହିଲେ ।
ତେତିକିଣ ଆନନ୍ଦ ମନେ ସେ ପୂତନା ବାଳା
କୋଳରେ ବସାଇ ମୁଖ ଚୁମ୍ବନକୁ ଦେଲା
ବିଷସ୍ତନ ଶ୍ରୀକୃଷ୍ଣଙ୍କ ମୁଖରେ ଲଗାଇ
କହିଲା କପଟେ ଗୋପୀଗଣଙ୍କୁ ଅନାଇଁ ।
ପୂର୍ବରେ ନନ୍ଦ ଯଶୋଦା ତପ କରିଥିଲେ
ନୋହିଲେ କି ଏହାପରି ପୁତ୍ରକୁ ପାଇଲେ ।
ପରାକ୍ରମ ଗୁଣରେ ଏ ଶ୍ରୀହରି ସମାନ
ହୋଇବ ବୋଲି ମୋହର ପାଉଅଛୁ ମନ ।
ଏହିପରି କହୁ କହୁ ଶ୍ରୀକୃଷ୍ଣ ତା କୋଳେ
ବସିଣ ବିଷସ୍ତନରୁ କ୍ଷୀରପାନ କଲେ ।
ହସହସ ହୋଇ ହସ୍ତ ଚରଣ ହଲାଇ
କ୍ଷୀର ସହିତରେ ପ୍ରାଣ ଶୋଷିନେଲେ ତହିଁ ।
ସେ ହେତୁରୁ ପୂତନା ବେନି ନୟନ ତରାଟି
କୃଷ୍ଣଙ୍କୁ ଛାଡ଼ି ପଡ଼ିଲା ମହୀପରେ ଲୋଟି ।
ସେତେବେଳେ ଦେଖାଗଲା ତାର ନିଜରୂପ
ବିକୃତ ଆକାର ସେହି ଅତ୍ୟନ୍ତ ବିରୂପ ।
ସ୍ଥୂଳଦେହ ତ୍ୟାଗକରି ସୂକ୍ଷ୍ମ ଶରୀରରେ
ପ୍ରବେଶ ହୋଇଲା ଯାଇ ଆକାଶ ମଧ୍ୟରେ ।
ସେକ୍ଷଣି ଶୂନ୍ୟପଥରୁ ଦିବ୍ୟରଥ ଖସି
ଉପସ୍ଥିତ ହେଲା ତାର ସମୀପରେ ଆସି ।
ନାନା ରତନରେ ତାହା ହୋଇଛି ନିର୍ମିତ
ବସିଅଛନ୍ତି ତହିଁରେ ପାର୍ଷଦ ବହୁତ ।
ଶତଚକ୍ର ଲଗିତୋରୁ ସେ ସ୍ୟନ୍ଦନବର
ପବନ ପରାୟେ ଗଡ଼ୁକରେ ଖରତର ।
ପାରିଷଦମାନେ ସେହି କାମିନୀକୁ ନେଲେ
ରଥପରେ ବସାଇଣ ଶୂନ୍ୟେ ଚଳିଗଲେ ।
ଗୋଲୋକ ଭୁବନେ ଯାଇ ହୋଇଲେ ପ୍ରବେଶ
ଏଥିଅନ୍ତେ ଯାହା ହେଲା ଶୁଣ ମୁନିଈଶ ।

ଗୋପାଳ ଗୋପିକା ଦେଖି ଅଦ୍ଭୁତ ଘଟନା
ଶ୍ରୀକୃଷ୍ଣଙ୍କଠାରେ କଲେ ମଙ୍ଗଳ ଭାବନା ।
ଦୂତମୁଖୁ ପୂତନାର ମରଣକୁ ଶୁଣି
ବିସ୍ମିତ ହୋଇଲା କଂସ ଦୁଷ୍ଟ ଶିରୋମଣି ।
ଯଶୋଦା ନିଜ ପୁତ୍ରକୁ କୋଳେ ନେଇଗଲେ
ବିପ୍ରଙ୍କୁ ଡକାଇ ଶୁଭକର୍ମ କରାଇଲେ ।
ସେ ଅନ୍ତରେ ନନ୍ଦରାଜା ପୂତନାର ଦେହ
ଭୃତ୍ୟଙ୍କ ହସ୍ତରେ ନେଇ କରାଇଲେ ଦାହ ।
ଏମନ୍ତ ଶୁଣି ହରଷେ ନାରଦ ମହର୍ଷି
ନାରାୟଣଙ୍କୁ ପୁଛିଲେ ପୁଣି ହୋଇ ତୋଷି ।
ବୋଇଲେ ହେ ମୁନିବର ପୂତନା କାମିନୀ
ରାକ୍ଷସୀ ରୂପରେ ଜାତ ହୋଇଲା କି ସେନି ।
ପୂର୍ବରେ ସେ କେଉଁଠାରେ କି ରୂପରେ ଥିଲା
କି ପୁଣ୍ୟ ଯୋଗେ ଶ୍ରୀକୃଷ୍ଣ ଭୁବନକୁ ଗଲା ।
ନାରାୟଣ ବୋଇଲେ ହେ ପୂର୍ବେ ବଳିରାଜା
ଯଜ୍ଞକର୍ମରେ ମଜ୍ଜାଇଥିଲେ ନିଜ ମଜ୍ଜା ।
ସେ ସମୟେ ନାରାୟଣ ବାମନ ରୂପରେ
ଉପଗତ ହେଲେ ଆସି ସେ ଯଜ୍ଞ ସ୍ଥାନରେ ।
ତାହାଙ୍କର ମନୋହର ରୂପ ଦେଖିକରି
ବଳୀକନ୍ୟା ରତ୍ନମାଳୀ ତାଙ୍କୁ କୋଳେ ଧରି ।
ଚିନ୍ତିଲା ଏହାପରି ପୁତ୍ରଟିଏ ମୋର
ଥାନ୍ତା ଯେବେ କୋଳେଧରି ଦେଉଥାନ୍ତି କ୍ଷୀର
ଏହିରୂପେ ଅବଳାର ମନକଥା ଜାଣି
କରୁଣାସାଗର ପ୍ରଭୁ ଶଙ୍ଖଚକ୍ରପାଣି ।
କୃଷ୍ଣ ଅବତାରେ ତାର ସ୍ତନ୍ୟ ପାନକଲେ
ମାତୃଗତି ଦେଇ ନିଜପୁରେ ରଖାଇଲେ ।
ପୂତନା ରୂପରେ ଜନ୍ମିଥିଲା ସେହିବାଳା
ଶ୍ରୀକୃଷ୍ଣଙ୍କୁ କ୍ଷୀର ଦେଇ ମୁକତି ପାଇଲା ।
କହଇ କ୍ଷେତ୍ରମୋହନ ଆହେ ନନ୍ଦସୁତ
ଖଣ୍ଡନ କର ମୋହର ଅଶେଷ ଦୁରିତ ।
ଅନ୍ତିମକାଳରେ ତବ ଶ୍ରୀପଦରେ ମନ
ରହିବା ଶକତି ମୋତେ ଦିଅ ନନ୍ଦନାନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ପୂତନାର ଗୋପପ୍ରବେଶ ଓ ଶ୍ରୀକୃଷ୍ଣଙ୍କ ଦ୍ୱାରା ତାହାର ପ୍ରାଣ ନିଧନ କଥନେ ନାମ ଦଶମୋଽଧ୍ୟାୟଃ ।

—*—

## ଏ କା ଦ ଶ ଅ ଧ୍ୟା ୟ

## ନାରାୟଣଙ୍କଠାରୁ ତୃଣାବର୍ତ୍ତ ବଧ ଶ୍ରବଣ

ଏଥୁ ଅନନ୍ତରେ କଥା ଶୁଣ ହେ ନାରଦ
ଦିନେ ଗୋକୁଳରେ ନନ୍ଦରାଣୀ ବହୁ ମୁଦ ।
ଶ୍ରୀକୃଷ୍ଣଙ୍କୁ ବକ୍ଷସ୍ଥଳେ ବସାଇ ସତ୍ୱର
ଆପଣ ଗୃହକାର୍ଯ୍ୟରେ ହେଲେ ତତ୍ପର ।
ସେ ସମୟେ ତୃଣାବର୍ତ୍ତ ବାୟୁରୂପ ବହି
ବହିଲା ଗୋକୁଳ ବୃକ୍ଷ ପର୍ବତ କମ୍ପଇ ।
ସେ କଥା ଜାଣି ଶ୍ରୀକୃଷ୍ଣ ମାତାକୋଳେ ରହି
ଭାରିହେଲେ ଯେରୂପେ ସେ ନ ପାରିବେ ବହି
ସେ ସକାଶୁ ନନ୍ଦରାଣୀ ଥୋଇ ତାଙ୍କୁ ତଳେ
ଯମୁନାଙ୍କୁ ଜଳପାଇଁ ଗଲେ ସେହିକାଳେ ।
ଉଡ଼ାଇଣ ଶ୍ରୀକୃଷ୍ଣଙ୍କୁ ସେ ଦୁଷ୍ଟ ଅସୁର
ବୁଲାଇଲା ନେଇ ଶତ ଯୋଜନ ଉପର ।
ସେ ଅନ୍ତରେ କେତେ ବୃକ୍ଷ ଭାଙ୍ଗି ପକାଇଲା
ଧୂଳି ଉଡ଼ାଇ ଆକାଶ ମାର୍ଗ ଘୋଡ଼ାଇଲା ।
ଗୋପପୁର ସବୁଆଡ଼ ଦିଶିଲା ଅନ୍ଧାର
ବହୁତ ମାୟାଭିଆଣ କରନ୍ତେ ଅସୁର ।
ଶ୍ରୀକୃଷ୍ଣଙ୍କୁ ନେଇ ଦୈତ୍ୟ ଶୂନ୍ୟେ ଭ୍ରମୁଥିଲା
ଶ୍ରୀଅଙ୍ଗ ଲାଗନ୍ତେ ତହିଁ ମୁକତି ପାଇଲା ।
ସେହିକ୍ଷଣି ଅଙ୍ଗୁ ତାର ଜୀବ ଯାନ୍ତେ ଛାଡ଼ି
ପୃଥିବୀ ଉପରେ ବେଗେ ପଡ଼ିଲା କଲ୍ୱଡ଼ି ।
ସୁନ୍ଦର ରଥଉପରେ ବସି ଆତ୍ମା ତାର
ଆକାଶ ମାର୍ଗରେ ଗଲା ଗୋଲୋକ ନଗର ।
ପାଣ୍ଡ୍ୟଦେଶ ନରପତି ଦୁର୍ବାସା ଶାପରେ
ଦୈତ୍ୟରୂପେ ଜନ୍ମ ହୋଇଥିଲା ମର୍ତ୍ତ୍ୟପୁରେ ।
ଶ୍ରୀକୃଷ୍ଣ ପରଶେ ତାର ପାପ ହେଲା କ୍ଷୟ
ଗୋଲୋକ ଭବନେ ରହି ପାଇଲା ଅଭୟ ।
ଗୋପାଳ ଗୋପିକାମାନେ କୃଷ୍ଣଙ୍କୁ ନ ଦେଖି
କି ହେଲା ବୋଲି ମନରେ ହେଲେ ମହାଦୁଃଖୀ
କେଉଁମାନେ ବକ୍ଷସ୍ଥଳ କର ପ୍ରହାରିଲେ
ମୂର୍ଚ୍ଛିତ ହୋଇଣ କେତେ ମହୀରେ ପଡ଼ିଲେ
ଏଣେତେଣେ ବୁଲି ସର୍ବେ ଅନ୍ୱେଷଣ କରି
ଦେଖିଲେ ଯା କୁସୁମଇ ଉଦ୍ୟାନରେ ହରି ।
ଧୂଳି ବୋଳିକରି ଅଙ୍ଗେ ପଡ଼ିଛି ବାଳକ
ଚାହିଁ ଅଛି ଆକାଶକୁ ଭାଙ୍ଗି ହେଉ ବେକ ।
ତାହାଦେଖି ନନ୍ଦରଜା ବେଗେ ଧାଇଁଗଲେ
ଦୁଇଭୁଜ ଧରି ତଳୁ ଉଠାଇ ଆଣିଲେ ।
ବକ୍ଷସ୍ଥଳେ ଘେନି ଚାହିଁ ଚାହିଁ ପୁନଃ ପୁନଃ
ବିକଳ ସ୍ୱରରେ ଉଚ୍ଚେ କଲେକ ରୋଦନ ।
ଯଶୋଦା ରୋହିଣୀ ଦୁହେଁ ନୟନରୁ ନୀର
ବୁହାଇ ଶୋକରେ ପୁଣି ହୋଇଲେ ଅସ୍ଥିର ।
ପୁତ୍ରକୁ ବକ୍ଷରେ ଧରି ମୁଖେ ଚୁମ୍ବ ଦେଲେ
ଘରକୁ ନେଇ ମଙ୍ଗଳ ସ୍ନାନ କରାଇଲେ ।
ନାରଦ ବୋଇଲେ ପାଣ୍ଡ୍ୟଦେଶ ନରପତି
କେଉଁଦୋଷ କରିବାରୁ ଶାପ ଦେଲେ ଯତି ।
ଏକଥା ବିସ୍ତରି ମୋତେ କହ ମୁନିବର
ଶୁଣିବା ପାଇଁକି ଶ୍ରଦ୍ଧା ହେଉଅଛି ମୋର ।
ନାରାୟଣ ବୋଇଲେ ହେ ପାଣ୍ଡ୍ୟ ନରନାଥ
ହୋଇଥିଲେ ସହସ୍ରାକ୍ଷ ନାମରେ ବିଖ୍ୟାତ ।
ଦିନେ ସହସ୍ର ସ୍ତ୍ରୀଙ୍କୁ ସଙ୍ଗତରେ ଘେନି
ଗଲେ ଗନ୍ଧମାଦନକୁ ଆହେ ମହାମୁନି ।
ସେହିଠାରେ ଏକ ନଦୀ ତଟେ ପୁଷ୍ପବନେ
ବିହାର କଲେ ସମସ୍ତେ ହରଷିତ ମନେ ।
ବିପରୀତ ରତି ଆଦି ନାନାକ୍ରୀଡ଼ା କରି
ଯୋଗବଳେ ଦଶଶତ ମୂରତିକୁ ଧରି ।
ବିବସନ ହୋଇ ସର୍ବେ ନଦୀଜଳେ ପଶି
କ୍ରୀଡ଼ାକଲେ ପୁରୁଷେକ ସ୍ତ୍ରୀମାନେ ଏକ ମିଶି ।
ଏହି ସମୟରେ ମୁନିଋଷିଙ୍କ ମଣ୍ଡନ
ଦୁର୍ବାସା ଲକ୍ଷେ ଶିଷ୍ୟଙ୍କୁ ସଙ୍ଗତେ ଘେନଣ ।
ସେହିନଦୀ ତୀରବାଟେ କରୁଥିଲେ ଗତି
ଦେଖିଲେ ହେଳେ ତାହାଙ୍କୁ ପାଣ୍ଡ୍ୟ ଅଧିପତି ।
କାମଶରେ ମତ୍ତହୋଇ ନ କଲେ ବନ୍ଦନା
ସେ ସକାଶୁ ମହାକ୍ରୋଧେ ମୁନି ମହାମନା ।
ରାଜାଙ୍କୁ ଅନାଇଁ ସେହିଠାରେ ଦେଲେ ଶାପ
ବୋଇଲେ ମୋତେ ଅବଜ୍ଞା କଲୁ ଆରେ ପାପ

ଏଣୁ ଅପୂର୍ବ ଯୋନୀରେ ମର୍ତ୍ତ୍ୟ ଜାତ ହୁଅ
ଲକ୍ଷେବର୍ଷ ପର୍ଯ୍ୟନ୍ତେ ସେହିପରି ଥାଅ ।
ଶ୍ରୀହରିଙ୍କ ପାଦରଜ ପାଇବୁଟି ଯେବେ
ଏହି ଶାପରୁ ମୁକତ ହେବୁ ଜାଣ ତେବେ ।
ଏରୂପେ ରଜାଙ୍କୁ କହି କାମିନୀଗଣଙ୍କୁ
ଅନାଇଁ ମଧ୍ୟ ସେକାଳେ ଦେଲେ ସେ ଶାପକୁ
ବୋଇଲେ ଭାରତବର୍ଷେ ଭିନ୍ନ ଭିନ୍ନ ସ୍ଥାନେ
ରାଜାଙ୍କ ଔରସେ ଜାତ ହେବ ତୁମ୍ଭେମାନେ ।
ଶାପ ଦେଇଣ ଏରୂପେ ମୁନି ଭିନ୍ନ ହୋଇ
କୈଳାସକୁ ଗଲେ ଶିବ ଦରଶନପାଇଁ ।
ଶିଷ୍ୟମାନେ ତାହାଙ୍କର ସଙ୍ଗତରେ ଥିଲେ
ରଜାଙ୍କ ଦୁର୍ଦ୍ଦଶା ଦେଖି ହାହାକାର କଲେ ।
ଏଥୁଅନ୍ତେ ନରପତି ପତ୍ନୀଙ୍କର ତୁଲେ
ଶାପ ଶୁଣି ବନନରେ ରୋଦନକୁ କଲେ ।
କାମିନୀମାନେ ବୋଇଲେ ଆହେ ପ୍ରାଣନାଥ
ତୁମ୍ଭଙ୍କ ଛାଡ଼ି ନିଶ୍ଚୟ ହୋଇବୁ ଅନାଥ ।
କାହାକୁ ସଙ୍ଗରେ ଘେନି ପୁଷ୍ପ ଉଦ୍ୟାନରେ
ବିହାର କରିବୁ ଆଉ ଆନନ୍ଦ ମନରେ ।
ଶରଦ ଚନ୍ଦ୍ରମା ତୁଲ୍ୟ ତୁମ୍ଭ ମୁଖ ଶୋଭା
ଦେଖିବାକୁ ଆଉ କାହୁଁ ପାଇବୁଟି ଅବା ।
ଏହା କହି ପତିଙ୍କର ପାଦତଳେ ପଡ଼ି
ବକନରେ ପୁନଃ ପୁନଃ କଲେ ଘୋର ରଡ଼ି
ସହି ନ ପାରିଣ ତାହା ପାଣ୍ଡ୍ୟ ନରପତି
ଅନଳ କୁଣ୍ଡ ନିର୍ମାଣ କଲେ ସେ ଝଟତି ।
ଶ୍ରୀହରିଙ୍କ ପାଦପଦ୍ମ ସୁମରଣା କରି
ଝାସଦେଲେ ଅନଳରେ ପତ୍ନୀଗଣ ଧରି ।
ଦେବତାଏ ଗଗନମାର୍ଗେ ଥାଇ ଦେଖ ଥିଲେ
କୋହଳରବୋଳ ସେକାଳେ ଦୁଃଖିତ ହୋଇଲେ
ମୁନିଏ ବୋଇଲେ ଏହା ଦଇବର କୃତ୍ୟ
ଦଇବକୁ ବଳି କେହି ନାହିଁ ଏ ଜଗତ ।
ଏହିରୂପେ ଶାପ ପାଇବାରୁ ଆହେ ମୁନି
ଜନ୍ମି ଥିଲେ ରଜା ବୈତ୍ୟ ସ୍ୱରୂପକୁ ଘେନି ।
ଶ୍ରୀକୃଷ୍ଣଙ୍କ ପରଶରେ ମୁକତି ପାଇଲେ
ଗୋଲୋକ ଭବନେ ଯାଇ ସୁଖରେ ରହିଲେ
ସେହିପରି ତାହାଙ୍କର ସହସ୍ର କାମିନୀ
ସହସ୍ର ରଜାଙ୍କ ଘରେ ଜନମିଲେ ପୁଣି ।
ଯଥାକାଳରେ ସମସ୍ତେ ମୁକ୍ତିଲାଭ କରି
ଗଲେ ସ୍ୱର୍ଗ ଭୁବନକୁ ଦିବ୍ୟ ରୂପ ଧରି ।
ତୃଣାବର୍ତ୍ତ ରଜାଙ୍କର ମୁକତି ଆଖ୍ୟାନ
ଗୀତରେ ଭଣିଲେ ଦାସ କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡ ନାରାୟଣଙ୍କଠାରୁ ତୃଣାବର୍ତ୍ତ ବଧ ଶ୍ରବଣେ ନାମ ଏକାଦଶୋଧ୍ୟାୟଃ ।

—ଃ—*—ଃ—

## ଦ୍ୱାଦଶ ଅଧ୍ୟାୟ

## କବଚନ୍ୟାସ ଓ ଶକଟ ଭଞ୍ଜନ ବୃତ୍ତାନ୍ତ ବର୍ଣ୍ଣନ

ନାରଦଙ୍କ ଆଗେ କହୁଛନ୍ତି ନାରାୟଣ
ଏଥୁଅନନ୍ତରେ କଥା ଶୁଣ ଋଷିଗଣ ।
ଏକଦିନେ ନନ୍ଦରାଣୀ ଏକାନ୍ତରେ ବସି
ଶ୍ରୀକୃଷ୍ଣଙ୍କୁ କୋଳେ ଧରି ହୋଇ ମନେ ତୋଷି
କ୍ଷୁଧିତ ଦେଖି ପୁତ୍ରକୁ ସ୍ତନ୍ୟଦାନ କଲେ
ନାନାବିଧ କଥା କହି ବୋଧ କରାଇଲେ ।
ଏହି ସମୟରେ ଗୋପୀଗଣ ଆସି ତହିଁ
ମିଳିଲେ ନନ୍ଦରାଣୀଙ୍କୁ ଦେଖିବାର ପାଇଁ
ତାହାଙ୍କ ମଧ୍ୟରେ ବୃଦ୍ଧାସ୍ତ୍ରିଏ କେତେ ଥିଲେ
ଯଶୋଦା ଦେଖି ତାହାଙ୍କୁ ଆସନୁ ଉଠିଲେ ।
ପୁତ୍ରକୁ ଶଯ୍ୟା ଉପରେ ଶୁଆଇ ସତ୍ୱର
ସେ ବୃଦ୍ଧା ସ୍ତ୍ରୀଙ୍କ ପାଦେ କଲେ ନମସ୍କାର ।
ତଇଳ ସିନ୍ଦୂର ପୂର୍ଣ୍ଣ ତାମ୍ବୁଳ ଅଣାଇଁ
ଦେଲେ ସେମାନଙ୍କୁ ମନ ତୋଷିବାର ପାଇଁ
ଆବର ବାସ ଭୂଷଣ ମିଷ୍ଟ ଦ୍ରବ୍ୟମାନ
ଭୃତ୍ୟଙ୍କ ହସ୍ତେ ଅଣାଇ କଲେକ ପ୍ରଦାନ ।

କ୍ଷୁଧାରେ ଆତୁର ହୋଇ ଶ୍ରୀକୃଷ୍ଣ ସେକାଳେ
ରୋଦନ କରି ଚରଣକୁ ପାଦ ପ୍ରହାରିଲେ ।
ପ୍ରହାର ଶକଟ ପରେ ବାଜନ୍ତେ ସେ ଘାଇ
ପଡ଼ିଲା ସେ ଭାଜି ତଳେ ଖଣ୍ଡ ଖଣ୍ଡ ହୋଇ ।
ଦଧି ଦୁଗ୍ଧ ଘୃତ ନବନୀତ ଆଦିକରି
ସେ ଶକଟ ମଧ୍ୟେ ସବୁ ରହିଥିଲା ପୂରି ।
ଶ୍ରୀକୃଷ୍ଣଙ୍କ ପାଦଘାତେ ଭାଜିବାରୁ ସେହି
ମହୀରେ ପଡ଼ିଲା ସବୁ ଅସ୍ତବ୍ୟସ୍ତ ହୋଇ ।
ଗୋପାଳମାନେ ତା ଦେଖି ବିସ୍ମିତ ହୋଇଲେ
ବାଳକଗଣଙ୍କୁ ଭଗ୍ନି କାରଣ ପୁଚ୍ଛିଲେ ।
ଶିଶୁଏ କହିଲେ କୃଷ୍ଣ ଚରଣ ପ୍ରହାରି
ଭଙ୍ଗ ଦେଲେ ଶକଟକୁ ଖଣ୍ଡ ଖଣ୍ଡ କରି ।
ତା ଶୁଣି ଗୋପାଳଗଣ ଗୋପୀଙ୍କର ତୁଲେ
ବିଶ୍ୱାସ ନ କରି ତାହା ଉଚ୍ଚରେ ହସିଲେ ।
ପୁତ୍ରକୁ ଘେନି ଯଶୋଦା କ୍ଷୀର ପିଆଇଲେ
ଦ୍ୱିଜକୁ ଡକାଇ ପୁଣି ସ୍ୱସ୍ତ୍ୟୟନ କଲେ
ବେଦଶାସ୍ତ୍ର ବିଶାରଦ ଏକ ବିପ୍ରବର
କୃଷ୍ଣଙ୍କ ଅଙ୍ଗରେ ଦେଇ ଆପଣାର କର ।
କବଚ ପଠନ କରି ଦୋଷ ଶାନ୍ତକଲେ
ପୁଣି ନାନା ମନ୍ତ୍ର ଯୋଗେ ରକ୍ଷା କରାଇଲେ
ଯେଉଁ କବଚକୁ ଦ୍ୱିଜ ପଢ଼ିଲେ ସେକାଳେ
ବ୍ରହ୍ମାଙ୍କୁ ତ ମହାମାୟା ପୂର୍ବେ ଦେଇଥିଲେ
ଯେତେବେଳେ ନିଦ୍ରାଗତ ଥିଲେ ନାରାୟଣ
ତାଙ୍କ ନାଭିରୁ ପଦ୍ମକ ଜାତ ହେଲା ଜାଣ
ତହିଁରେ ବସି ବିଧାତା ସୃଷ୍ଟି କରୁଥିଲେ
ମଧୁକୈଟଭ ଦୁହିଙ୍କୁ ଦେଖି ଭୟ କଲେ ।
ସେ ସକାଶୁ ମହାମାୟା ଯେ କବଚ ତାଙ୍କୁ
ଦେଲେ ତାହା ପଢ଼ି ସ୍ତୁତିକଲେ ଶ୍ରୀକୃଷ୍ଣଙ୍କୁ ।
ତହିଁର ସ୍ୱରୂପ ଏବେ କହୁଅଛୁ ମୁହିଁ
ଶୁଣ ହେ ନାରଦମୁନି ସାବଧାନ ହୋଇ ।
ଶ୍ରୀହରି କରନ୍ତୁ ମୋର ମୁଖକୁ ରକ୍ଷଣ
ମସ୍ତକ ରକ୍ଷା କରନ୍ତୁ ଶ୍ରୀମଧୁସୂଦନ ।
ଶ୍ରୀକୃଷ୍ଣ ଦେନନେତ୍ରକୁ ପାଳନ କରନ୍ତୁ
ରାଧିକାବଲ୍ଲଭ ମୋର ନାସାକୁ ରଖନ୍ତୁ ।
କର୍ଣ୍ଣଯୁଗଳ କପାଳ କଣ୍ଠକୁ ମୋହର
ରକ୍ଷା କରନ୍ତୁ ମାଧବ ହୋଇ ତତପର ।
ଗୋବିନ୍ଦ ରକ୍ଷାକରନ୍ତୁ କପୋଳଦ୍ୱୟକୁ
କେଶବ ରଖନ୍ତୁ ମୋର କେଶ ଧମ୍ମିଲକୁ ।
ଅଧର ଓଷ୍ଠକୁ ହୃଷୀକେଶ ରକ୍ଷାକର
ଗଦାଗ୍ରଜ ରଖ ଦନ୍ତଶ୍ରେଣୀକୁ ମୋହର ।
ରସନାକୁ ରାସେଶ୍ୱର କରନ୍ତୁ ରକ୍ଷଣ
ତାଳୁଦେଶକୁ ମୋହର ରଖନ୍ତୁ ବାମନ ।
ବକ୍ଷସ୍ଥଳକୁ ମୁକୁନ୍ଦ ପାଳନ କରନ୍ତୁ
ଜଠରକୁ ଦୈତ୍ୟଶତ୍ରୁ ସର୍ବଦା ରଖନ୍ତୁ ।
ନାଭିଦେଶକୁ ରଖନ୍ତୁ ଦେବ ଜନାର୍ଦ୍ଦନ
ମୋ ହନୁକୁ ବିଷ୍ଣୁ ସଦା କରନ୍ତୁ ପାଳନ ।
ନିତମ୍ବ ଯୁଗଳ ଗୁହ୍ୟଦେଶକୁ ଆବର
ରଖନ୍ତୁ ପୁରୁଷୋତ୍ତମ ସର୍ବଦା ମୋହର ।
ଜାନକୀବଲ୍ଲଭ ଜାନୁଦେଶକୁ ରଖନ୍ତୁ
ହସ୍ତକୁ ନୃସିଂହ ସଦା ପାଳନ କରନ୍ତୁ ।
ପାଦଯୁଗକୁ ବରାହ କରନ୍ତୁ ପାଳନ
ରଖନ୍ତୁ ଊର୍ଦ୍ଧ୍ୱଦେଶକୁ ପ୍ରଭୁ ନାରାୟଣ ।
ଅଧକୁ ରକ୍ଷା କରନ୍ତୁ ଶ୍ରୀକମଳାପତି
ପୂର୍ବରେ ରଖନ୍ତୁ ନନ୍ଦଗୋପାଳ ସନ୍ତତି
ଦଶମୁଖ ଅନ୍ତକ ଯେ ରଖ ଅଗ୍ନିକୋଣେ
ବନମାଳୀ ମୋତେ ରକ୍ଷା କରନ୍ତୁ ଦକ୍ଷିଣେ
ନୈର୍ଋତ କୋଣେ ବୈକୁଣ୍ଠ ରକ୍ଷଣ କରନ୍ତୁ
ଶ୍ରୀବାସୁଦେବ ପଶ୍ଚିମଦିଗରେ ପାଳନ୍ତୁ ।
ବାୟୁବ୍ୟେ ବିଷ୍ଟରଶ୍ରବା ରଖନ୍ତୁ ସନ୍ତତ
ଉତ୍ତର ଦିଗେ ପାଳନ କରନ୍ତୁ ଅନନ୍ତ ।
ଐଶାନ୍ୟେ ଈଶ୍ୱର ମୋର ହୁଅ ରକ୍ଷାକାରୀ
ସର୍ବତ୍ର ରକ୍ଷାକରନ୍ତୁ ଦେବ ଶତ୍ରୁହାରୀ ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ନିଦ୍ରା ସମୟରେ
ରଖନ୍ତୁ ରାଘବ ମୋତେ ଅତି ଯତନରେ ।
ଏ ରୂପେ କବଚ ଦେଇ ଦେବୀ ମହାମାୟା
ବ୍ରହ୍ମାଙ୍କୁ ବୋଇଲେ ଶୁଣ କହୁଅଛି ଯାହା
ପୂର୍ବକାଳେ ଶ୍ରୀକୃଷ୍ଣଙ୍କୁ ସୁମରଣା କରି
ଏ କବଚ ପାଇଲି ମୁଁ କୃପାରେ ତାଙ୍କରି ।
ଯୁଦ୍ଧରେ ଶୁମ୍ଭନିଶୁମ୍ଭ ଆଦି ଦୈତ୍ୟକୁଳ
ଏହି କବଚ ପ୍ରଭାବେ ହୋଇଲେ ନିର୍ମୂଳ ।
ଶ୍ରୀକୃଷ୍ଣ ସେକାଳେ ମୋର ଆଗେ ଦେଖାଦେଲେ
କବଚ ମାଳା ଦେଇଣ ଅନ୍ତର୍ଦ୍ଧାନ ହେଲେ ।

ଏବେ ମୁଁ କୃଷ୍ଣଙ୍କ ତାହା ନେଲ ଲୋକଲୋକେ
ଖଣ୍ଡନ ହେବ କୃଷ୍ଣର ଉପଦ୍ରାନ୍ତ ଯେତେ ।
ଏମନ୍ତ କହିଣ ଦେବ ଅନ୍ତର୍ଦ୍ଧାନ ହେଲେ
ନାଭି କମଳରେ ବ୍ରହ୍ମା ନିଃଶଙ୍କେ ରହିଲେ ।
ସକଳ ଦୁରିତହାରୀ ଏ କବଚଶ୍ରେଷ୍ଠ
ଧାରଣ କଲେ ସକଳ ବିଘ୍ନ ହୁଏ ନଷ୍ଟ ।
ଯତନରେ ରଖି ସ୍ୱର୍ଣ୍ଣ ଗୁଟିକା ମଧ୍ୟରେ
ଧାରଣ କରିବ କଣ୍ଠେ ଅଥବା ବାହୁରେ ।
ତାହାହେଲେ ବଜ୍ରଅଗ୍ନି ସର୍ପଠାରୁ ଭୟ
କେବଣ କାଳରେ ହେଲେ ନୁହଇ ଉଦୟ ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ନିଦ୍ରା ସମୟରେ
ରକ୍ଷା କରନ୍ତି ଈଶ୍ୱର ରହି ସମୀପରେ ।
ଶଙ୍କର ଏହାକୁ ପୂର୍ବେ କଣ୍ଠଦେଶେ ବାନ୍ଧି
ଛେଦିଲେ ତ୍ରିପୁର ଶିର କ୍ଷଣକରେ ବାନ୍ଧି ।

ବାମ ବାହୁରେ ଧାରଣ କରନ୍ତେ କାଳିକା
ରକ୍ତବୀଜ ରାକ୍ଷସକୁ ବିନାଶିଲେ ଏକା ।
ନାଗରାଜ ଶେଷଦେବ ଦକ୍ଷିଣ ଭୁଜରେ
ଏ କବଚ ଯୋଗୁଁ ମହୀ ବହିଅଛନ୍ତି ଶିରେ ।
ଧର୍ମଦେବତା ସକଳ କର୍ମ ସାକ୍ଷୀ ହେଲେ
ଯେଣୁ ଏ କବଚ ନିଜକଣ୍ଠରେ ବାନ୍ଧିଲେ ।
ଏମନ୍ତ ଦିବ୍ୟ କବଚ ଘେନି ନନ୍ଦ ବେଗେ
ଶ୍ରୀକୃଷ୍ଣ ଗଳାରେ ତାହା ବାନ୍ଧିଲେ ସରାଗେ
ଆପଣା କବଚ ଦେଖି ଶ୍ରୀକୃଷ୍ଣ ହରଷେ
ଗ୍ରହଣ କଲେ ତାହାକୁ ନିଜ କଣ୍ଠଦେଶେ ।
ଏହିରୂପେ କବଚର ପ୍ରଭାବ ଅଟଇ
କହିଲି କୃଷ୍ଣ ଆଗରେ ସମସ୍ତ ବତାଇ ।
ଦୀନ କ୍ଷେତ୍ରବାସୀ ବୋଲେ ସାଧୁଜନେ ଶୁଣ
ଅପୂର୍ବ ଚରିତ ବ୍ରହ୍ମବୈବର୍ତ୍ତ ପୁରାଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କବଚନ୍ୟାସ ଶକଟଭଞ୍ଜନ ବୃତ୍ତାନ୍ତ କଥନେ ନାମ ଦ୍ୱାଦଶୋଧ୍ୟାୟଃ ।

—*—

## ତ୍ର ୟୋ ଦ ଶ ଅ ଧ୍ୟା ୟ

## ଗର୍ଗ ଓ ନନ୍ଦଙ୍କର କଥୋପକଥନ ଏବଂ ଶ୍ରୀକୃଷ୍ଣଙ୍କର ଅନ୍ନପ୍ରାଶନ ନାମକରଣ ପ୍ରସ୍ତାବ

ନାରାୟଣ ବୋଇଲେ ହେ ଶ୍ରୀକୃଷ୍ଣ ଚରିତ
କହୁଅଛି ଶୁଣ ମୁନି ଦେଇ କରି ଚିତ୍ତ ।
ଆଉ ଦିନେ ନନ୍ଦରାଣୀ ରତ୍ନସିଂହାସନେ
ବସିଥିଲେ ଶ୍ରୀକୃଷ୍ଣଙ୍କୁ ଘେନି ତୋଷମନେ ।
ତାହାଙ୍କ ପାଶରେ ଆସି ଏକ ଦ୍ୱିଜବର
ମିଳିଲେ ଶିଷ୍ୟଗଣଙ୍କୁ ଘେନି ସଙ୍ଗତର ।
ବ୍ରହ୍ମତେଜରେ ଜଳୁଛି ତାହାଙ୍କର ଅଙ୍ଗ
ପରମ ବ୍ରହ୍ମକୁ କରିଛନ୍ତି ହୃଦେ ସଙ୍ଗ
ହସ୍ତେ ଧରିଛନ୍ତି ବ୍ରହ୍ମଦଣ୍ଡ ପୁଣି ଛତ୍ର
ଯଜ୍ଞସୂତ୍ରରେ ଶୋଭିତ ହୋଇଅଛି ଗାତ୍ର ।
ମସ୍ତକରେ ଜଟାଭାର ଦିଶଇ ସୁନ୍ଦର
ତପତକାଞ୍ଚନ ତୁଲ୍ୟ ଦେହ ମନୋହର ।

ଶରତ ପାର୍ବଣ ଚନ୍ଦ୍ର ସଦୃଶ ବଦନ
ନୀଳୋତ୍ପଳ ଦଳପରି ବିଶାଳ ଲୋଚନ ।
ଶିବଙ୍କର ଶିଷ୍ୟ ସେହି ଶ୍ରୀହରିଙ୍କ ଭକ୍ତ ।
ଶିଷ୍ୟଙ୍କୁ କହୁଅଛନ୍ତି ବେଦ ଶାସ୍ତ୍ର ତତ୍ତ୍ୱ ।
ସାକ୍ଷାତରେ ସରସ୍ୱତୀ କଣ୍ଠେ ତାହାଙ୍କର
ଥିବାପରି ଜଣାଯାଉଥିଲା ସେ କାଳର ।
ଶ୍ରୀକୃଷ୍ଣ ଚରଣ ଯୁଗେ ଦେଇଣ ମାନସ
ଧ୍ୟାନ କରନ୍ତି ସର୍ବଦା ଯୋଗୀଜନ ଈଶ ।
ତାହାଙ୍କୁ ଦେଖି ଯଶୋଦା ନମସ୍କାର କଲେ
ପାଦ୍ୟ ଅର୍ଘ୍ୟ ଦେଇ ସିଂହାସନେ ବସାଇଲେ
ଆଶୀର୍ବାଦ କରି ମୁନି ଆନନ୍ଦରେ ବସି
ଶ୍ରୀହରିଙ୍କୁ ସୁମରଣା କଲେ ହୋଇ ତୋଷି ।

ଯଶୋଦା ତାଙ୍କ ପାଶକୁ କୃଷ୍ଣଙ୍କୁ ଆଣାଇ
ନମସ୍କାର କରାଇଲେ ଭକତି ଦେଖାଇ ।
ତାହା ଦେଖି ମୁନିବର ପ୍ରୀତମନ୍ତ ହେଲେ
ଶାସ୍ତ୍ରବିଧି ଅନୁସାରେ ଆଶୀର୍ବାଦ କଲେ ।
ପୁଣି ମନେ ମନେ ତାଙ୍କୁ ଶତେକ ପ୍ରଣାମ
କଲେ ଭକତି ଦେଖାଇ ସେ ମୁନିଉତ୍ତମ ।
ମୁନି ଶିଷ୍ୟଙ୍କୁ ଯଶୋଦା ଦଣ୍ଡବତ ହେଲେ
ପାଦ୍ୟଅର୍ଘ୍ୟ ଦେଇ ନାନାସମ୍ଭାବନା କଲେ ।
ଆଶୀର୍ବାଦ କରି ସର୍ବେ ବସନ୍ତେ ଆସନେ
ପ୍ରବେଶ ହେଲେ ଯଶୋଦା ତାଙ୍କ ସନ୍ନିଧାନେ
କୃତାଞ୍ଜଳି ହୋଇ ପୁଣି ମସ୍ତକ ନୁଆଇ
ବୋଇଲେ ଶୁଣିବା ହେଉ ତପସ୍ୱୀ ଗୋସାଇଁ ।
ସ୍ୱଭାବେ ଅବଳା ମୁହିଁ ଅଟେ ବୁଦ୍ଧିହୀନ
ଆପଣଙ୍କୁ କିବା କରି ପାରିବି ସମ୍ମାନ ।
ଆପଣ ଅଙ୍ଗିରା ଅବା ମରୀଚି ଅଟନ୍ତି
କି ଅବା କ୍ରତୁ ପ୍ରଚେତା ପଉଲସ୍ତ୍ୟ ପତି ।
ପୁଲହ ଦୁର୍ବାସା ଅବା କର୍ଦ୍ଦମ ବଶିଷ୍ଠ
ଗର୍ଗ ଜୈଗୀଷବ୍ୟ କିମ୍ବା ଭୃଗୁ ମୁନିଶ୍ରେଷ୍ଠ ।
ସନକ ସନନ୍ଦ ସନାତନ ବା କପିଳ
ସନତ୍କୁମାର ପଞ୍ଚଶିଖ ତପଶୀଳ ।
ଆସୁରି ସୌଭରି ବିଶ୍ୱାମିତ୍ର କି ବାଲ୍ମୀକି
ବାମଦେବ କଶ୍ୟପ ବା କି ଉତଥ୍ୟ ଶୁକ ।
ଭୃଗୁ ତଥ୍ୟନରନାରାୟଣ ବା ଚ୍ୟବନ
ଶୁକ ପରାଶର ବ୍ୟାସ କିବା କାତ୍ୟାୟନ ।
ଜୈମିନି ମାର୍କଣ୍ଡେୟ ଲୋମଶ ଆସ୍ତିକ
ଜରତ୍କାରୁ ଋଷ୍ୟଶୃଙ୍ଗ ଶୃଙ୍ଗୀ ବିଭାଣ୍ଡକ ।
ପୌଲସ୍ତ୍ୟ ଅଗସ୍ତ୍ୟ ଅବା ଶମୀକ ଅରିଷ୍ଟ
ନେମି ପୈଳସାକଲ୍ୟ ଯେ ମୁନିଗଣ ଶ୍ରେଷ୍ଠ ।
ଅଷ୍ଟାବକ୍ର ହଂସୀ ଯାଜ୍ଞବଲ୍କ୍ୟ ଯେ ଜାବାଳି
ବୈଶମ୍ପାୟନ ଉପମନ୍ୟୁ ତପଶାଳୀ ।
ଭରଦ୍ୱାଜ ଦେବର୍ଷି ଶଙ୍ଖ କର୍ଣ୍ଣମୁନି
ଶଉନକ ବିଭାଣ୍ଡକ ଶାକ୍ୟ ମହାଜ୍ଞାନୀ ।
ଏହାଙ୍କ ମଧ୍ୟରୁ କିଏ ଅଟନ୍ତି ଆପଣ
ଜାଣିବାପାଇଁକି ମୋର ହେଉଅଛି ମନ ।
ଆପଣ ଅଟନ୍ତି ପ୍ରଭୁ ମୁଁ ଅଟେ କିଙ୍କରୀ
ପୁଚ୍ଛିବାକୁ ଯୋଗ୍ୟ ହେଉଅଛି ତେଣୁକରି ।

କିଙ୍କର କିଙ୍କରୀମାନେ ପ୍ରଭୁଙ୍କ ଛାମୁରେ
ପଚାରି ପାରନ୍ତି ଯାହା ହେଲେ ଅଭିମତେ ।
ଆପଣଙ୍କୁ ପାଇ ଆଜ ଧନ୍ୟ ହେଲି ମୁହିଁ
ମଣୁଛି ମୋ ପରି ଜଗତରେ କେହି ନାହିଁ ।
ସଫଳ ହୋଇଲା ମଧ୍ୟ ମୋହର ଜୀବନ
ତୁମ୍ଭ ପାଦ ଲାଗି ଧ୍ୱସ୍ତ ହେଲା ପାପମାନ ।
ଅଶେଷ ତୀର୍ଥ ସ୍ୱରୂପ ଏ ମୋର ଆଶ୍ରମ
ହୋଇଲା ତୁମ୍ଭ ସକାଶୁ ଆହେ ଦ୍ୱିଜୋତ୍ତମ ।
ପୁରାଣ ଶାସ୍ତ୍ରରେ ଯେଉଁ ତପସ୍ୱୀଙ୍କୁ ମୁହିଁ
ଶୁଣିଥିଲି ଆଜ ତପବନେ ଦେଖିଲଇଁ ।
ମୂର୍ତ୍ତିମନ୍ତ ବେଦପରି ତୁମ୍ଭ ଶିଷ୍ୟଗଣ
ମୋର ଆଶ୍ରମ ପବିତ୍ର କଲେ ଆଜ ଜାଣ ।
ଆଶୀର୍ବାଦ ଦେବାପାଇଁ ଆପଣ ହେ ଯୋଗ୍ୟ
ଆପଣଙ୍କୁ ପାଇଅଛି ଥିବାରୁ ମୋ ଭାଗ୍ୟ ।
ଏହିପରି ନନ୍ଦରାଣୀ କହି ଭକ୍ତିଭରେ
ଉଭା ହେଲେ ଶିଷ୍ୟଯୁକ୍ତ ମୁନିଙ୍କ ଆଗରେ ।
ନନ୍ଦଙ୍କୁ ଡାକିବାପାଇଁ ଦୂତ ପଠାଇଲେ
ଦେଖି ତାହା ମୁନିବର ସନ୍ତୁଷ୍ଟ ହୋଇଲେ ।
ଶିଷ୍ୟ ସମ୍ମତରେ ଈଷତେ ହାସ ପରକାଶି
ଧବଳିତ କଲେ ଦଶ ଦିଗକୁ ବିଶେଷି ।
ସେ ଅନ୍ତରେ ହିତ ତଥ୍ୟ ମିତମଧୁ ବାଣୀ
କହି ଆରମ୍ଭିଲେ ଗର୍ଗ ଋଷିକୁଳମଣି ।
ବୋଇଲେ ଗୋ ନନ୍ଦରାଣୀ ଅମୃତ ସମାନ
ଅତ୍ୟନ୍ତ ମଧୁର ଅଟେ ତୁମ୍ଭର ବଚନ ।
ଉଚ୍ଚକୁଳେ ଯେବେ ଲୋକ ଜନ୍ମ ଲଭିଥାଏ
ତାହାର ବୁଦ୍ଧି ସେ ରୂପେ ଉତ୍ତମ ଯେ ହୁଏ ।
ସକଳ ଗୋପାଳ ପର୍ବ ମଧ୍ୟେ ଗିରିରାଜୁ
ଈଶ୍ୱରଙ୍କ ସମାନରେ ବହିଛନ୍ତି ତନୁ ।
ତାହାଙ୍କର ପ୍ରିୟପତ୍ନୀ ନାମ ପଦ୍ମାବତୀ
ସେ ଦୁହିଙ୍କଠାରୁ ତୁମ୍ଭେ ଜନମିଛ ସତୀ ।
ବଲ୍ଲଭ ଗଣରେ ରାଜା ହୋଇଛନ୍ତି ନନ୍ଦ
ବଢ଼ାଇ ଆପଣା ଜନମନରେ ଆନନ୍ଦ ।
ନନ୍ଦ ତୁମ୍ଭେ ତୁମ୍ଭଠାରୁ ଜନ୍ମିଛି ଯେ ବାଳ
ସମସ୍ତଙ୍କ କଥା ମୋତେ ହୋଇଛି ଗୋଚର ।
ଏକାନ୍ତରେ ତାହା ସବୁ କହିବି ନନ୍ଦଙ୍କୁ
ସେଥିପାଇଁ ଆସିଅଛି ଏ ଗୋପପୁରକୁ ।

ଯଦୁକୁଳ ପୁରୋହିତ ଗର୍ଗନାମ ମୁନି
ଯେ ପଠାଇଥିଲେ ବସୁଦେବ ଗୁପ୍ତ କଥା କହି ।
ଏହିରୂପେ ମୁନିବର କହୁଥିଲେ ବସି
ସେହିଠାରେ ନନ୍ଦରାଜା ମିଳିଗଲେ ଆସି ।
ମୁନିଙ୍କ ଚରଣ ଧରି ଦଣ୍ଡବତ ହେଲେ
ଶିଷ୍ୟମାନଙ୍କୁ ଯେପରି ନମସ୍କାର କଲେ ।
ଆଶୀର୍ବାଦ ଦେଇ ଗର୍ଗମୁନି ସେହିକ୍ଷଣି
ନନ୍ଦ ଯଶୋଦା ଦୁହିଙ୍କ ସଙ୍ଗତରେ ଘେନି ।
ଅନ୍ତଃପୁର ମଧ୍ୟ ଯାଇଁ ପ୍ରବେଶ ହୋଇଲେ
ରହସ୍ୟମୟ ବଚନ କହି ଆରମ୍ଭିଲେ ।
ବୋଇଲେ ହେ ନନ୍ଦ ତୁମ୍ଭ ଶୁଭକଥାମାନ
କହିବା ପାଇଁକି ମୁନି କଲି ଆଗମନ ।
ଯେଉଁଦିନ ତୁମ୍ଭପତ୍ନୀ ପ୍ରସବିନୀ ହେଲେ
ସେଦିନ ଯଶୋଦା ମଧ୍ୟ ପୁତ୍ରଜାତ କଲେ ।
ଅର୍ଦ୍ଧରାତ୍ର ସମୟରେ ଘୋର ବୃଷ୍ଟି ହେଲା
ପ୍ରଚଣ୍ଡ ପବନ ସବୁଆଡ଼ରେ ବହିଲା ।
ସେତେବେଳେ ବସୁଦେବ କୁମରକୁ ଧରି
ଉପସ୍ଥିତ ହେଲେ ଆସି ଏ ଗୋପ ନଗରୀ ।
ଦେବକୀ ଗର୍ଭରୁ କୃଷ୍ଣ ଜାତ ହୋଇଥିଲେ
କଂସ ଭୟେ ବସୁଦେବ ଏଠାକୁ ଆଣିଲେ ।
ତୁମ୍ଭ ପତ୍ନୀଙ୍କ କୋଳରେ ଥୋଇଣ ତାହାଙ୍କୁ
ଫେରିଗଲେ ଘେନି ତୁମ୍ଭ ଔରସ କନ୍ୟାକୁ ।
ସେହିଦିନଠାରୁ ବସୁଦେବ ତାଙ୍କ ମୋତେ
କହି ଅଛନ୍ତି ଏହିକୁ ବଡ଼ସ୍ଥ ଗୁପତେ ।
ଏହାଙ୍କର ଅନ୍ନପ୍ରାଶ ନାମକର୍ମ ପାଇଁ
ଏବେ ଜାଣ ଏହିଠାକୁ ଅଛନ୍ତି ପଠାଇ ।
ଏ ଦୁଇ କର୍ମ ସମାପ୍ତ ହେବାର ଯତନ
ବିଧି ଅନୁସାରେ ତୁମ୍ଭେ କରିଅ ରାଜନ ।
ତୁମ୍ଭର ପୁତ୍ର ଅଟନ୍ତି ପରଂବ୍ରହ୍ମ ହରି
ମହୀଭାର ନାଶିବାକୁ ଛନ୍ତି ଅବତରି ।
ଗୋଲୋକର ଅଧୀଶ୍ୱର ଶ୍ରୀରାଧିକାପତି
ବୈକୁଣ୍ଠେ ନାରାୟଣ ରୂପେ ବିରାଜନ୍ତି ।
ଶ୍ୱେତଦ୍ୱୀପେ ବିଷ୍ଣୁ ଏହି ବୋଲାନ୍ତି ଜାଣ
କପିଳ ମୁନି ଏହାଙ୍କଠାରୁ ଉତପନ୍ନ ।
ଆଉର ଯେ ନରନାରାୟଣ ଋଷିବେନି
ଅଛନ୍ତି ଜାଣ ଏହାଙ୍କଠାରୁ ଜନ୍ମବେନି ।

ତେଜ ସ୍ୱରୂପରେ ବସୁଦେବଙ୍କ ଗୃହରେ
ଦେଖାଦେଇ ପୁଣି ଜାତହେଲେ ସେହିଠାରେ
ତୁମ୍ଭ ସୂତିକା ଗୃହକୁ ଆସି ତତକ୍ଷଣ
ପ୍ରକାଶିତ ହେଲେ ତୁମ୍ଭ ସୁତରୂପେ ଜାଣ ।
ବାୟୁରେ ସମ୍ପୂର୍ଣ୍ଣ କରି ମାତାଙ୍କ ଗର୍ଭକୁ
ଜାତ ହେଲେ ପରକାଶି ଆପଣା ରୂପକୁ ।
ବସୁଦେବଙ୍କୁ ସେରୂପ ଦେଖାଇ ତ୍ୱରିତ
ଶିଶୁ ରୂପକୁ ଧଇଲେ ନିଜଗତତାତ ।
ଶୁକ୍ଳ ରକ୍ତପୀତ ଆଦି ନାନା ବରନରେ
ଅବତାର ହୋଇଛନ୍ତି ଅନେକ ଯୁଗରେ ।
ଏହି ଯୁଗେ ଏବେ କୃଷ୍ଣବର୍ଣ୍ଣ ହୋଇଛନ୍ତି
ନବଘନଦ ପରାୟେ ସୁନ୍ଦର ଦିଶନ୍ତି ।
ସେ ସକାଶୁ କୃଷ୍ଣ ବୋଲି ଏହାଙ୍କର ନାମ
ଆଜଠାରୁ ହେବ ଆହେ ଗୋପାଳଉତ୍ତମ ।
କ ଅକ୍ଷର ଅଟଇଟି ବ୍ରହ୍ମାଙ୍କ ବାଚକ
ଋକାର ଅଟଇ ପୁଣି ଅନନ୍ତ ବୋଧକ ।
ଷକାର ସଦାଶିବଙ୍କ ବାଚକ ଅଟଇ
ଣ ଅକ୍ଷର ପୂର୍ଣ୍ଣରୂପେ ଧର୍ମକୁ ବୁଝାଇ ।
ଅାକାର ଯେ ଶ୍ୱେତଦ୍ୱୀପ ବିଷ୍ଣୁ ପ୍ରବୋଧକ
ବିସର୍ଗଟି ନର ନାରାୟଣଙ୍କ ବାଚକ ।
ସକଳ ତେଜର ମୂର୍ତ୍ତି ସର୍ବବିଶ୍ୱରୂପ
ସର୍ବାଧାର ସର୍ବ ଲୋକ ଚୈତନ୍ୟ ସ୍ୱରୂପ ।
ଏ ସକାଶୁ କୃଷ୍ଣ ବୋଲି ନାମ ଏହାଙ୍କର
ହେବ ଆହେ ନନ୍ଦ ଗୋପରାଜ ମନେକର ।
ଅନ୍ୟପ୍ରକାର ବ୍ୟୁତ୍ପତ୍ତି କହୁଅଛୁ ଶୁଣ
କୃଷି ଶବଦ ଅଟଇ ନିର୍ବାଣ ବଚନ ।
ଣକାର ମୋକ୍ଷ ଅର୍ଥକୁ ବୁଝାଏ ସତତ
ଆକାର ଦାତୃବାଚକ ଅଟଇ ନିୟତ ।
ଏହିରୂପେ କୃଷ୍ଣ ନାମ ସାର୍ଥ ହେଉଅଛୁ
ଶୁଣ ଏବେ ଆଉ ଏକ ପ୍ରକାରେ କହୁଛୁ ।
ନିଃଶେଷ ବଚନ କୃଷି ଶବଦ ଅଟଇ
ଣକାର ପୁଣି ଭକତି ଅର୍ଥର ବୁଝାଇ ।
ଅକାର ଦାତୃ ବଚନ ହେବାରୁ ସେ ଜାଣ
କୃଷ୍ଣ ବୋଲିକରି ଏବେ ପାଇଛନ୍ତି ନାମ ।
ଶ୍ରୀହରିଙ୍କ କୋଟି ନାମ ସୁମରଣା କଲେ
ଯେଉଁଫଳ ଲଭ ହୋଇଥାଏ ମହୀତଳେ ।

ଶ୍ରୀକୃଷ୍ଣ ବୋଲିଣ ଥରେ କଲେ ଉଚ୍ଚାରଣ
ସେଷ୍ଟଫଳ ଲଭି ହୋଇଥାଏ ନିଷ୍ଟେ ଜାଣ ।
ବିଷ୍ଣୁ ସହସ୍ର ନାମ ଯେ ସଂସାରରେ ସାର
କୃଷ୍ଣ ନାମ ଗୋଟି ତହିଁ ଅଟଇ ସୁନ୍ଦର ।
ଏ ନାମ ସ୍ମରଣ କଲେ ଅଶେଷ ଭକତ
ଦାସ୍ୟ ଆଦିକରି ସବୁ ହୁଅଇ ପ୍ରାପତ ।
କକାର ସ୍ମରଣ କଲେ ଭକ୍ତ ସେ ହୁଅଇ
ଋକାର ପୁଣି ଅତୁଳ ଦାସ୍ୟ ବିତରଇ ।
ଷକାର ହୁଅଇ ଦିବ୍ୟଜ୍ଞାନ ଅବିରତେ
ଣକାର ଯେ ସହବାସ କରାଏ ସନ୍ତତେ ।
ବିସର୍ଗରୁ ଶ୍ରୀକୃଷ୍ଣଙ୍କ ସାରୂପ୍ୟ ହୁଅଇ
ଆହେ ନନ୍ଦ ଏଥି କିଛି ସନ୍ଦେହ ଯେ ନାହିଁ ।
କକାର ଶୁଣିଲେ ଯମ କିଙ୍କର ଡରନ୍ତି
ଋକାର ଯୋଗେ ଅନିଷ୍ଟ ନ ଆସଇ କତି ।
ଷକାରରେ ନାଶ ଯାନ୍ତି ପାତକ ନିକର
ଣକାର ହେତୁରେ ବ୍ୟାଧି ହୋଇଯାନ୍ତି ଦୂର
ଅକାର ଶୁଣିଲେ ମୃତ୍ୟୁ ନ ଆସଇ ପାଶ
ନାମ ଉଚ୍ଚାରଣେ ସର୍ବାରିଷ୍ଟ ହୁଏ ଧ୍ୱଂସ ।
ମୃତ୍ୟୁକାଳେ କୃଷ୍ଣନାମ ଯେ ପାଠ କରଇ
ବିଷ୍ଣୁ ଦୂତେ ତା ପାଶକୁ ଆସନ୍ତି ଧାଇଁ ।
ରଥରେ ବସାଇ ତାକୁ ଗୋଲୋକେ ନିଅନ୍ତି ।
ଶ୍ରୀକୃଷ୍ଣଙ୍କ ସମୀପରେ ଆଶ୍ରୟ ଦିଅନ୍ତି ।
ପୂର୍ବକାଳେ କୈଳାସରେ ଶିବଙ୍କ ମୁଖରୁ
ଶ୍ରୀକୃଷ୍ଣ ମହିମା ଶୁଣିଛନ୍ତି ଆମ୍ଭ ଗୁରୁ ।
ବ୍ରହ୍ମବନ୍ତ ଧର୍ମଦେବ ସୁର ବ୍ରହ୍ମଋଷି
ନ ଜାଣନ୍ତି ଶ୍ରୀକୃଷ୍ଣଙ୍କ କଥାକୁ ବିଶେଷି ।
ଆଉର ଯେ ଦେବଗଣ ତହିଁରୁ କିଞ୍ଚିତେ
କହି ନ ପାରିବେ ଆହେ ନନ୍ଦ ମହାମତେ ।
ଏମନ୍ତେ ତୁମ୍ଭ ପୁତ୍ରର ମହିମା ଅପାର
ଶୁଣିଥିବାରୁ କହିଲି ତୁମ୍ଭର ଆଗର ।
କୃଷ୍ଣ ପୀତାମ୍ବର ଶ୍ରୀଶ ଦେବକୀ ନନ୍ଦନ
ଆଉର ନନ୍ଦଯଶୋଦା ଆନନ୍ଦ ବର୍ଦ୍ଧନ ।
କଂସରିପୁ ସନାତନ ବିଷ୍ଣୁ ସର୍ବେଶ
ଅଚ୍ୟୁତ ବିଷ୍ଟରଶ୍ରବା ତ୍ରୈଲୋକ୍ୟ ନିବାସ ।
ରାଧାବନ୍ଧୁ ରାଧିକାତ୍ମା ରାଧିକା ଜୀବନ
ରାଧା ସହଚର ରାଧା ହୃଦୟ ରତନ ।

ପରିପୂର୍ଣ୍ଣତମ ପ୍ରଭୁ ଗୋଲୋକର ନାଥ
ଯେ ବେଦ ତ୍ରୈଗୁଣ୍ୟଜ କୈବଲ୍ୟ ପଥ ।
ଏହିରୂପେ ଶ୍ରୀକୃଷ୍ଣଙ୍କ ନାମ ଉଚ୍ଚାରଣ
କଲେ ଜନ୍ମ ଜରାମୃତ୍ୟୁ ନ ରହିବ ଜାଣ ।
ତୁମ୍ଭ ପୁତ୍ରଙ୍କର ଆଜଠାରୁ ଏ ପ୍ରକାର
ନାମ ହେଲା ଆହେ ମହାରାଜ ମନୋହର ।
ରୋହିଣୀ ଗର୍ଭରୁ ଯେଉଁ ପୁତ୍ର ଜନମିଛି
ତାହାର ନାମକୁ ମଧ୍ୟ ଶୁଣ କହୁଅଛି ।
ସଙ୍କର୍ଷଣ ବଳଦେବ ହଳୀ ପୀତବାସ
ନୀଳାମ୍ବର ମୁଷଳୀ ଯେ ରେବତୀ ଅଧୀଶ ।
ରୌହିଣେୟ ଏହିପରି କେତେଗୋଟି ନାମ
ହେବେ ଜାଣ ଆହେ ନନ୍ଦ ଗୋପଙ୍କ ଉତ୍ତମ
ଯଥାସୁଖେ ନିଜଗୃହେ ଥାଅ ତୁମ୍ଭେ ରହି
ନିଜ ଆଶ୍ରମକୁ ଏବେ ଯାଉଅଛୁ ମୁହିଁ ।
ଏହିରୂପ ବ୍ରାହ୍ମଣଙ୍କ ବଚନକୁ ଶୁଣି
ନିଷ୍ଟେଷ୍ଟ ହୋଇଲେ ନନ୍ଦ ଯଶୋଦା ତରୁଣୀ
କରଯୋଡ଼ି ପୁଣି ତାଙ୍କ ଆଗେ ଉଭା ହେଲେ
ବିନୟ ପ୍ରକାଶ କରି ବଚନ କହିଲେ ।
ବୋଇଲେ ହେ ମୁନି ତୁମ୍ଭେ ଗଲେ ଏହିକ୍ଷଣି
କର୍ମ କରାଇବୁ ଆମ୍ଭେ କାହା ଯୋଗେ ପୁଣି ।
ନାମ ଅନ୍ନପ୍ରାଶନରେ ଯେଉଁ କର୍ମ ହେବ
ଆପଣ ଥାଇଣ ତାହା ସମାପ୍ତ କରିବ ।
ଏହା ଶୁଣି ମୁନିବର ଅଳପ ହସିଲେ
ପରମ ରହସ୍ୟ କଥା କହି ଆରମ୍ଭିଲେ ।
ବୋଇଲେ ହେ ନନ୍ଦ ଆମ୍ଭେ କହୁଅଛୁ ଯାହା
ମନ ଦେଇ କରି ଏବେ ଶୁଣ ବସି ତାହା ।
ଅତ୍ୟନ୍ତ ଗୁପତ ଯେଉଁ ଗୋଲୋକ ବୃତ୍ତାନ୍ତ
ଶିବଙ୍କ ମୁଖରୁ ଶୁଣିଅଛୁ ମୁଁ ସମସ୍ତ ।
ଶ୍ରୀଦାମା ରାଧିକା ଦୁହେଁ କଳହ ରଚିଲେ
କ୍ରୋଧଭରେ ପରସ୍ପରେ ଶାପ ତହୁଁ ଦେଲେ
ସେ ହେତୁ ରାଧିକା ଦେବୀ ବୃଷଭାନୁ ଘରେ
ଜନ୍ମିଲେ ତାହାଙ୍କ ପ୍ରିୟା କଳାବତୀ ଠାରେ ।
ଶ୍ରୀକୃଷ୍ଣଙ୍କ ଆଦେଶରେ ମାତାଙ୍କ ଗର୍ଭକୁ
ବାୟୁପୂର୍ଣ୍ଣ କରି ଯଥାକାଳେ ପୁଣି ତାକୁ ।
ବିସ୍ତୃତ କରାଇ ତହିଁ ବାଳକ ରୂପରେ
ପ୍ରକାଶିତ ହୋଇ ବଢ଼ୁଛନ୍ତି ତାଙ୍କ ଘରେ ।

ଶୁକ୍ଳପକ୍ଷେ ଚନ୍ଦ୍ରକଳା ପ୍ରାୟେ ନିତ୍ୟ ନିତ୍ୟ
ସକଳ ଶାସ୍ତ୍ରରେ ପୁଷ୍ଟି ପାଇ ଯେ ଅଛନ୍ତି ।
ଶ୍ରୀକୃଷ୍ଣ ନନ୍ଦ ପୁରେ ଅବତାର ହୋଇ
ପାଳିତ ତ ହୋଇଅଛନ୍ତି ନନ୍ଦପାଶେ ରହି ।
ରୂପଗୁଣ ସୌନ୍ଦର୍ଯ୍ୟରେ କେହିହେ ସମାନ
ତାହାଠାରୁ କେହି ତଳେ ନୁହନ୍ତି ନିଶ୍ଚନ ।
ମାତ୍ର ବୃଷଭାନୁ ଗୋପକନ୍ୟା ଯେ ରାଧିକା
ବୟସରେ ନନ୍ଦ ପୁତ୍ରଠାରୁ ସେ ଅଧିକା ।
ତଥାପି ଭକ୍ତିରେ ନିଜ ପୂର୍ବ ଭାବ ଚିନ୍ତି
ପରସ୍ପରଠାରେ ମନ ବଳାଇ ଅଛନ୍ତି ।
ଧ୍ୟାନ କରନ୍ତି ରାଧିକା ନନ୍ଦ କୁମରଙ୍କୁ
ନନ୍ଦ ପୁତ୍ର ମଧ୍ୟ ଧ୍ୟାନ କରୁଛନ୍ତି ତାଙ୍କୁ ।
ରାଧାଙ୍କର ଅନୁରୋଧ ରକ୍ଷାକରି ହରି
ରହିଛନ୍ତି ନନ୍ଦପୁରେ ଶିଶୁରୂପ ଧରି ।
କଂସଭୟ ଛଳରେ ଯେ ପ୍ରତିଜ୍ଞା ପାଳନ
କରିବାକୁ ଗୋପପୁରେ ଆସିଛନ୍ତି ଜାଣ ।
ଯେ ପ୍ରଭୁ ଅଟନ୍ତି ଭୟହେତୁ ଜଗତର
ତାଙ୍କୁ ପୁଣି ଭୟ ଦେଇପାରେ କେହୁଛାର ।
ରାଧାଶବ୍ଦ ବ୍ୟୁତ୍ପତ୍ତି ପୂର୍ବେ ନାରାୟଣ
ବ୍ରହ୍ମାଙ୍କୁ ନାଭିକମଳେ କହିଥିଲେ ଜାଣ ।
ବ୍ରହ୍ମାଙ୍କ ମୁଖରୁ ଶୁଣିଥିଲେ ସଦାଶିବ
ସେ ମୋତେ କହିଲେ ମନେ ବହି ସ୍ନେହଭାବ ।
ନନ୍ଦଙ୍କୁ ସେ କଥା ଏବେ କହୁଅଛି ମୁହିଁ
ଆହେ ଗୋପାଳରାଜନ ଶୁଣ ସ୍ଥିର ହୋଇ ।
ରେଫଅଟେ କୋଟି ଜନ୍ମ ପାପ ବିନାଶକ
ଆକାର ଜନମ ମୃତ୍ୟୁ ଜରା ନିବାରକ ।
ଧକାର ଆୟୁଷହାନି କରାଏ ନିଶ୍ଚୟ
ଆକାର ଯୋଗରେ ଭବକର୍ମ ଯାଏ କ୍ଷୟ ।
ଆବର ଅନ୍ୟପ୍ରକାର କହୁଅଛି ଶୁଣ
ରକାର ଶ୍ରୀକୃଷ୍ଣ ଦାସ୍ୟଭାବ ଦିଏ ପୁଣ ।
ଚିରକାଳ ସହବାସ ଦିଅଇ ଧକାର
ଆକାର ଦିଅଇ ଦାନ ଶକତି ଅପାର ।
ପୁଣି ଯୋଗଦାନ ଶକ୍ତି ପ୍ରାପତ ହୁଅଇ
ସକଳ ପାତକ ଅଙ୍ଗୁ ଦୂର ହୋଇଯାଇ ।
ଏରୂପେ ରାଧାକୃଷ୍ଣଙ୍କ ମହିମା କୀର୍ତ୍ତିତ
ଶୁଣିଥିଲି ଯାହା କଲି ନନ୍ଦ ଆଗେ ବ୍ୟକ୍ତ ।

ଅଳପ ସମୟପରେ ବୃନ୍ଦାବନ ମଧ୍ୟେ
ରାଧାକୃଷ୍ଣଙ୍କ ବିବାହ ହେବ ଯଥାସାଧ୍ୟେ ।
ପୁରୋହିତ ହେବେ ତହିଁ ଜଗତର ଧାତା
ଅନଳ ସାକ୍ଷୀସ୍ୱରୂପେ ରହିବେ ସର୍ବଥା ।
ସେ ଅନ୍ତେ କୁବେର ସୁତ ମୁକତି ବିଧାନ
କରାଇବେ କୃଷ୍ଣ ଦଧି ଘୃତାପହରଣ ।
ଧେନୁକା ସଂହାରି ତାଳ ଭକ୍ଷଣ କରିବେ
ବକ କେଶୀ ପ୍ରଳମ୍ବକ ଦୈତ୍ୟଙ୍କୁ ମାରିବେ ।
ଦ୍ୱିଜପତ୍ନୀଙ୍କୁ ମୁକତିଦେଇ ସେ ଅନ୍ତରେ
ମିଷ୍ଟାନ୍ନ ଭୁଞ୍ଜିବେ ବସି ହରଷ ମନରେ ।
ଶକ୍ର ଦର୍ପ ଭଗ୍ନକରି ଗୋକୁଳ ରଖିବେ
ଗୋପୀଙ୍କ ବସ୍ତ୍ରହରଣ ବ୍ରତ ସମ୍ପାଦିବେ ।
ପୁଣି ତାଙ୍କୁ ବସ୍ତ୍ରଭୂଲେ ବରଦାନ କରି
ସନ୍ତୁଷ୍ଟ କରିବେ ତାଙ୍କ ସଙ୍ଗରେ ବିହରି ।
ପୂର୍ଣ୍ଣଚନ୍ଦ୍ର ଉଦୟରେ ରାସ କ୍ରୀଡ଼ାସ୍ଥଳେ
ନବ ଯଉବନବତୀ ଗୋପୀଙ୍କର ମେଳେ ।
କ୍ରୀଡ଼ା କରି ତାଙ୍କମନ ସନ୍ତୁଷ୍ଟ କରିବେ
ଜଣଜଣକରେ ଯାଚ ବର ଦେଇଯିବେ ।
ଶ୍ରୀଦାମାଙ୍କ ଶାପଯୋଗୁ ଶତେବର୍ଷ ଯାଏ
ବିଚ୍ଛେଦ ଘଟିବ ଜାଣ ଆହେ ଗୋପରାୟେ ।
ମଥୁରାପୁରକୁ କୃଷ୍ଣ ଯିବା ସକାଶରୁ
ଗୋପୀଏ ଶୋକ କରିବେ ହୋଇ ଅତିଶାରୁ ।
କେତେକାଳ ପରେ ତାଙ୍କୁ ପ୍ରବୋଧନାକରି
ଅଧ୍ୟାତ୍ମ୍ୟ ଜ୍ଞାନର ତତ୍ତ୍ୱ କହିବେ ଶ୍ରୀହରି ।
ରଥପରେ ବସି ପୁଣି ଯମୁନା ପର୍ଯ୍ୟନ୍ତ
ଯିବେ ପିତାମାତାବନ୍ଧୁ ବାନ୍ଧବ ସହିତ ।
ଅକ୍ରୂରଙ୍କୁ ନିଜରୂପ ଦେଖାଇ ସେଠାରେ
ଦିବ୍ୟଜ୍ଞାନ ଦେବେ କୃଷ୍ଣ ହୋଇଣ ଭକ୍ତିରେ
କୌତୁକେ ନଗରୋତ୍ସବ ଦରଶନ କରି
ମାଳାକାର ତନ୍ତୁବାୟୀ କୁବ୍ଜାଙ୍କୁ ନିସ୍ତାରି
ଧନୁଭଙ୍ଗ କରି ଯାଗସ୍ଥାନରେ ମିଳିବେ
ଗଜମଲ୍ଲଙ୍କୁ ନିପାତି କଂସପୁରେ ଯିବେ ।
ଦରଶନ ମାତ୍ରେ କଂସରାଜାଙ୍କୁ ବିନାଶି
ମାତାପିତାଙ୍କ ବନ୍ଧନ ଫିଟାଇବେ ଆସି ।
ନନ୍ଦଙ୍କୁ ପ୍ରବୋଧି ଉଗ୍ରସେନଙ୍କୁ ସେଠାରେ
ଅଭିଷେକ କରାଇବେ ବିବିଧ ସମ୍ଭାରେ ।

ତାଙ୍କ ପୁତ୍ର ବଧୂଙ୍କର ଶୋକ ବିନାଶନ
କରାଇବେ ଦେଇ ତାଙ୍କୁ ଦିବ୍ୟ ଚକ୍ଷୁଜ୍ଞାନ ।
ଭ୍ରାତା ସଙ୍ଗତରେ ନିଜେ ଉପନୀତ ହେବେ
ଗୁରୁଙ୍କ ମୁଖରୁ ନାନା ବିଦ୍ୟାକୁ ଶିଖିବେ ।
ଯମ ଭୁବନରୁ ଗୁରୁ ପୁତ୍ରଙ୍କୁ ଆଣାଇ
ସନ୍ତୋଷ କରିବେ ତାଙ୍କୁ ସମୀପରେ ଦେଇ ।
ନୃପ ସୈନ୍ୟ ସଙ୍ଗତରେ ଯବନକୁ ମାରି
ନିର୍ମାଣ କରିବେ ଦ୍ୱାରବତୀ ନାମେ ପୁରୀ ।
ମୁଚୁକୁନ୍ଦକୁ ମୁକତି ଦେଇ ତହୁଁ ପୁଣି
ଦ୍ୱାରକାପୁରୀକୁ ଯିବେ ଯାଦବଙ୍କୁ ଘେନି ।
ବହୁତ କାମିନୀ ନିଜେ ବିବାହ କରଇ
ତାଙ୍କ ସଙ୍ଗତରେ କ୍ରୀଡ଼ା କରିବେ ସେ ତହିଁ
ପୁତ୍ର ପୌତ୍ର ସଉଭାଗ୍ୟେ ଦେଇ ସେମାନଙ୍କୁ
ପାଣ୍ଡବଙ୍କ ପାଶେ ଯିବେ ସାହାଯ୍ୟ ଦେବାକୁ ।
ଭାରତ ଯୁଦ୍ଧ ଅନ୍ତରେ ପୃଥିବୀର ଭାର
ଉଶ୍ୱାସ କରିବେ ଏହିରୂପେ ମନେକରି ।
ପୁଣି ଯୁଧିଷ୍ଠିରଙ୍କର ରାଜସୂୟ ଯାଗ
ହେଲାବେଳେ ସେହିଠାରେ ହେବେଯାଇଯୋଗ
ସେ ଅନ୍ତରେ ପାରିଜାତ ହରଣ କରିବେ
ସେତେବେଳେ ଇନ୍ଦ୍ରଙ୍କର ଗର୍ବ ବିନାଶିବେ ।
ପୂର୍ଣ୍ଣ ହେବାପରେ ସତ୍ୟଭାମାଙ୍କର ବ୍ରତ
ଛେଦିବେ ବାଣାସୁରର ଦୁଇଗୋଟି ହସ୍ତ ।
ସୈନ୍ୟ ତୁଲେ ଶଙ୍କରଙ୍କୁ ଦମନ କରିବେ
ବାଣ ଦୁହିତାକୁ ନାତି ସଙ୍ଗେ ବିଭାହେବେ ।
ପ୍ରଚଣ୍ଡ ଅନଳ ବାଣେ ନଗରକୁ ଦହି
ବିପ୍ରଙ୍କୁ ତୋଷିବେ ବହୁ ଧନ ଦ୍ରବ୍ୟ ଦେଇ
ତୀର୍ଥଯାତ୍ରା ପ୍ରସଙ୍ଗରେ ତୁମ୍ଭମାନଙ୍କର
ଦର୍ଶନ ପାଇବେ ଜାଣ ଆହେ ବ୍ରଜେଶ୍ୱର ।
ରାଧାଙ୍କ ସଙ୍ଗତେ ସେହି ବ୍ରଜକୁ ଆସିବେ
ଦ୍ୱାରକାରେ ନାରାୟଣ ଅଂଶ ରଖାଇବେ ।
କେତେକ ସମୟପରେ ରାଧିକାଙ୍କୁ ଧରି
ଗୋଲୋକ ଭୁବନ ଯାତ୍ରା କରିବେ ଶ୍ରୀହରି ।
ଦ୍ୱାରକା ନଗରେ ଯେଉଁ ଅଂଶ ରହିଥିବେ
ସେ ମଧ୍ୟ ଲକ୍ଷ୍ମୀ ସଙ୍ଗତେ ବଇକୁଣ୍ଠେ ଯିବେ ।
ବେନ ଋଷି ଯିବେ ତହୁଁ ଧର୍ମଙ୍କ ପୁରକୁ
ପ୍ରସ୍ଥାନ କରିବେ ବିଷ୍ଣୁ କ୍ଷୀର ସମୁଦ୍ରକୁ ।

ଏହିରୂପେ ଭବିଷ୍ୟତ କଥା ଆହେ ନନ୍ଦ
କହିଲା କୃଷ୍ଣ ଆଗରେ ନ ରଖିଣ ଛନ୍ଦ ।
ଯେଉଁ ବିଷୟରେ ଏଥେ ଆସିଅଛୁ ମୁହିଁ
ଶୁଣ ତା ତୁମ୍ଭକୁ ଏବେ କହୁଛୁ ଫିଟାଇ ।
ମାଘମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
କର୍ମ ଆରମ୍ଭ କରିବ ବୃଦ୍ଧି ଶୁଭକ୍ଷଣ ।
ସେହିଦିନ ଗୁରୁବାର ରେବତୀ ନକ୍ଷତ୍ର
ବିଶୁଦ୍ଧ ଚନ୍ଦ୍ର ତାରକ ସମସ୍ତ ପବିତ୍ର ।
ଚନ୍ଦ୍ରସ୍ଥିତ ମୀନଲଗ୍ନ ପୂର୍ଣ୍ଣଚନ୍ଦ୍ର ଯୁକ୍ତ
ବାଣିଜ୍ୟ କରଣ ଶୁଭଯୋଗରେ ସଂଯୁକ୍ତ ।
ଦୁର୍ଲ୍ଲଭ ଦିନଟି ଯେହ୍ନେ ଅଟେ ମୋ ମତରେ
କର୍ମ କର ବୁଝି ତୁମ୍ଭେ ପଣ୍ଡିତଙ୍କ ଠାରେ ।
ଏହା କହି ମୁନିବର ଅନ୍ତଃପୁର ଭେଜି
ଯଜ୍ଞରେ ବସିଲେ ଯାଇ ଆସନେ ଆଭଜ ।
ହରଷରେ ନନ୍ଦରଜା ଯଶୋଦାଙ୍କ କୁଳେ
ପୁତ୍ରର ମଙ୍ଗଳୋତ୍ସବ ଉଦ୍ଯୋଗ କଲେ ।
ଏହି ସମୟରେ ଗୋପ ଗୋପୀଗଣ ଆସି
ସଭାରେ ମିଳିଲେ ତହୁଁ ଥିଲେ ମୁନି ବସି ।
ଦେଖିଲେ ମଧ୍ୟାହ୍ନ ସୂର୍ଯ୍ୟପରି ତାଙ୍କ ତେଜ
ଦଶ ଦିଗ ଆକାଶ କରୁଅଛୁ ଉଜ ।
ଚାରିପାଶେ ଶିଷ୍ୟଗଣ ବେଢ଼ି ରହିଛନ୍ତି
ସମସ୍ତେ ବ୍ରହ୍ମତେଜରେ ସୁନ୍ଦର ଦିଶନ୍ତି ।
ସ୍ୱର୍ଣ୍ଣ ସିଂହାସନେ ବସନ କରିଛନ୍ତି ମୁନି
ହସ୍ତରେ ସ୍ଫଟିକ ରୁଦ୍ରାକ୍ଷମାଳା ଘେନି ।
ପରମବ୍ରହ୍ମଙ୍କୁ ହୃଦେ କରୁଛନ୍ତି ଧ୍ୟାନ
ଦେଖି ତାଙ୍କୁ ପ୍ରଣମିଲେ ଗୋପ ଗୋପୀଗଣ ।
ହରଷ ମନରେ ମୁନି ଆଶୀର୍ବାଦ କଲେ
ପୁରେ ଯିବାପାଇଁ ପୁଣି ଅନୁମତି ଦେଲେ ।
ବିଦାୟ ଘେନି ବଲ୍ଲବ ବଲ୍ଲବୀ ସମସ୍ତେ
ଚଳିଗଲେ ଯେ ଯାହାର ପୁରେ ଇଚ୍ଛାମତେ ।
ଆନନ୍ଦ ହୋଇଣ ନନ୍ଦ ବନ୍ଧୁଙ୍କ ପାଶକୁ
ପଠାଇଲେ ଦୂତ ହସ୍ତେ ମଙ୍ଗଳ ପତ୍ରକୁ ।
ଦଧି ଦୁଗ୍ଧ ଘୃତ ଗୁଡ଼ ତୈଳ ନବନୀତ
ମଧୁ ଶର୍କରା ଆଦି ଜମା କଲେ ସେ ବହୁତ ।
ତଣ୍ଡୁଳ ସୂପବ୍ୟଞ୍ଜନୀ ପର୍ବତ ସମାନ
ଘୃତ ଯୁକ୍ତ ଲବଣ ଆଦି ନାନା ଦ୍ରବ୍ୟମାନ ।

ସ୍ଥାନେ ସ୍ଥାନେ ଯତନର ରଖାଇଲେ ନେଇ
ଯବଗୋଧୂମ ମାଷର ଚୂର୍ଣ୍ଣକୁ ଅଣାଇ ।
ଘୃତ ପକ୍ୱ ପିଷ୍ଟକ ଯେ ଲଡ୍ଡୁକ ସହିତେ
ମୋଦକ ସ୍ୱସ୍ତିକ କରାଇଲେ ପୁଣି କେତେ ।
କର୍ପୂର ମିଶ୍ରିତ କରି ତାମ୍ବୂଳ ବହୁତ
ରଖାଇଲେ କେତେ ସ୍ଥାନେ କରି ସୁସଜ୍ଜିତ
କର୍ପୂର ବାସଚନ୍ଦନ ମୃଗନାଭି ଜଳ
ରଖାଇଲେ ରତ୍ନ କଳସରେ କରି ଠୁଳ ।
ନାନାବିଧ ସ୍ୱର୍ଣ୍ଣ ରତ୍ନ ବସନ ଭୂଷଣ
ପୁତ୍ରଙ୍କ ସକାଶେ ନନ୍ଦ କଲେ ସମ୍ପାଦନ ।
ପ୍ରାଙ୍ଗଣରେ ରମ୍ଭାବୃକ୍ଷ ରୋପଣ କରାଇ
ରସାଳ ପଲ୍ଲବମାଳ ବନ୍ଧାଇଲେ ତହିଁ ।
ଆସନ ଯେ ପାଦାସନ ମଧୁପର୍କ ଜଳ
ଆଉର ବହୁତ ସ୍ୱାଦୁପକ୍ୱ ଫଳ ମୂଳ ।
ପ୍ରତ୍ୟେକ ଗୃହରେ ତହିଁ ପୂର୍ଣ୍ଣ କରାଇଲେ
ଖାଦ୍ୟପେୟ ଦ୍ରବ୍ୟମାନ ବହୁତ ଆଣିଲେ ।
ପଟହ ମୁରଜ ଆଦି ନାନାବିଧ ବାଦ୍ୟ
ଅଣାଇଲେ ନନ୍ଦରାଜା ହୃଦେ ବହି ମୁଦ ।
ଆଉର କାଂସ୍ୟ ସୁବର୍ଣ୍ଣ ରଜତର ଭାର
ମର୍ଦ୍ଦଳ ସହିତେ ରଖାଇଲେ ମନ୍ଦ୍ର ମାନ
ବଂଶୀ ସନହମା ସ୍ୱର ଯନ୍ତ୍ର ଅପ୍ରମିତ
ରଖାଇଲେ କରତାଳ ଖଞ୍ଜଣୀ ସହିତ ।
ଗନ୍ଧର୍ବମାନେ ସେଠାରେ ଦିବ୍ୟ ଗୀତ ଗାଇ
ନୃତ୍ୟ କରାଇଲେ ବିଦ୍ୟାଧରୀଙ୍କୁ ବତାଇ ।
ଏହିକାଳେ ଦୂତ ଆସି କହିଲା ନନ୍ଦଙ୍କୁ
ଆସିଲେଣି ଗିରିଜନୁ କୁମ୍ଭର ପୁରକୁ ।
ସଙ୍ଗତରେ ଭାରଯାଙ୍କୁ ଅଣାଇ ଅଛନ୍ତି
ଆଉର ପଦାତି ରଥ ଗଜ ପନ୍ତ ପନ୍ତ ।
ମୁନି ଋଷି ବିପ୍ର ବନ୍ଦୀ ପଣ୍ଡିତ ନିକର
ଆସିଛନ୍ତି ମଧ୍ୟ ସର୍ବେ ତାହାଙ୍କ ସଙ୍ଗର ।
ଗୋପାଳ ଗୋପିକା ଯେତେ ପାଶରେ ଅଛନ୍ତି
କଳନା କରିବ କେବା କେତେ ସେ ଅଟନ୍ତି ।
ଏହା ଶୁଣି ନନ୍ଦରାଜା ଉଠି ତତକ୍ଷଣ
କଲେ ସେ ଗିରିଜନୁଙ୍କୁ ପାଛୋଟି ଗମନ ।
ଖଣ୍ଡେ ଦୂରେ ଭେଟି ତାଙ୍କୁ ଆଣି ସମାଦରେ
ପୂଜାକଲେ ବସାଇଣ ପ୍ରାଙ୍ଗଣ ମଧ୍ୟରେ ।

ତାଙ୍କ ସଙ୍ଗେ ଯେତେ ମୁନି ଋଷି ଆସିଥିଲେ
ସମସ୍ତଙ୍କ ପାଦ ଧରି ନମସ୍କାର କଲେ
ସେ ଅନ୍ତରେ ପାଦ୍ୟ ଅର୍ଘ୍ୟ ଆସନକୁ ଦେଲେ
ମଧୁର ବଚନ କହି ତୋଷ କରାଇଲେ ।
ସେହି ସମୟରେ ନନ୍ଦ ରାଜାଙ୍କ ଭବନ
ହେଲା ନାନା ଦ୍ରବ୍ୟ ବନ୍ଧୁଗଣରେ ସମ୍ପୂର୍ଣ୍ଣ ।
ସମୁଦ୍ର ମନ୍ଥିଲା ପ୍ରାୟେ ଶବଦ ଶୁଭିଲା
କାହାର କଥାକୁ କେହି ଶୁଣି ନ ପାରିଲା ।
ଶ୍ରୀକୃଷ୍ଣଙ୍କ ତୋଷପାଇଁ କୁବେର ସେକାଳେ
ବ୍ରଜପୁରେ ସ୍ୱର୍ଣ୍ଣ ରତ୍ନ ବହୁତ ବର୍ଷିଲେ ।
ନନ୍ଦଙ୍କର ବନ୍ଧୁମାନେ ସେ ସମ୍ପଦ ଦେଖି
ନିଜ ଉପହାରମାନ ଗୁପତରେ ରଖି ।
ରକ୍ତହସ୍ତ ହୋଇ ତାଙ୍କ ଆଗେ ଦେଖାଦେଲେ
ନାନା ପ୍ରକାର କୁଶଳ ପ୍ରଶ୍ନ ପ୍ରଚାରିଲେ ।
ଆହ୍ନିକ କର୍ମ ସମାପ୍ତ କରି ବ୍ରଜେଶ୍ୱର
ପରିଧାନ କଲେ ଦିବ୍ୟ ଧଉତ ଅମ୍ବର ।
ଚନ୍ଦନ ଅଗୁରୁ ଘେନି ଶୁଚିମନ୍ତ ହେଲେ
ପାଦ ପ୍ରକ୍ଷାଳନ କରି ଆସନେ ବସିଲେ
ଗର୍ଗମୁନିଙ୍କ ଆଦେଶ ପ୍ରକାରେ ସମସ୍ତ
ସ୍ୱସ୍ତିବାଚନପୂର୍ବକ କଲେ ବିଧିମତ ।
ବେଦବିଧି ଅନୁସାରେ କର୍ମ ଶେଷ କଲେ
ବାଳକକୁ କୋଳେ ଧରି ଅନ୍ନ ଭୁଞ୍ଜାଇଲେ ।
ମୁନିଙ୍କ ଆଜ୍ଞାରେ ପୁଣି କୃଷ୍ଣ ବୋଲିକରି
ନାମ ରଖାଇଲେ ଶୁଭ ମୁହୂର୍ତ୍ତ ବିଚାରି ।
ଘୃତପାକ ନାନାଦ୍ରବ୍ୟ ଭୁଞ୍ଜାଇ ପୁତ୍ରକୁ
ମଙ୍ଗଳ ଉତ୍ସବ କଲେ ବଜାଇ ବାଦ୍ୟକୁ ।
ଶୁଚିମନ୍ତ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ
ଭୁଞ୍ଜିବା ସକାଶେ ମିଷ୍ଟ ଦ୍ରବ୍ୟମାନ ଦେଲେ ।
ଆଉର ବହୁତ ସ୍ୱର୍ଣ୍ଣ ରତ୍ନ ଦିବ୍ୟବାସ
ଦାନ କରିଣ ତୋଷିଲେ ସବୁରି ମାନସ ।
ଭିକ୍ଷୁକ ସୂତ ପାଠକ ଯେତେ ଆସିଥିଲେ
ସମସ୍ତଙ୍କୁ ମନ ତୋଷି ଧନରତ୍ନ ଦେଲେ
ବ୍ରାହ୍ମଣ ଭିକ୍ଷୁକ ବନ୍ଦୀ ବନ୍ଧୁବର୍ଗ ଯେତେ
ସମସ୍ତଙ୍କୁ ଖାଦ୍ୟଦ୍ରବ୍ୟ ଦେଲେ ଅପ୍ରମିତେ
ଦିଅ ଦିଅ ଖାଅ ଖାଅ ଶବ୍ଦ ସବୁଠାରେ
ଶୁଣାଗଲା ସେତେବେଳେ ନନ୍ଦ ଭବନରେ ।

ଏଥୁ ଅନନ୍ତରେ ଗର୍ଗ ମୁନିଙ୍କୁ ଡକାଇ
ଆନନ୍ଦରେ ନାନାଦ୍ରବ୍ୟ ଭୁଞ୍ଜିବାକୁ ଦେଇ
ସୁବର୍ଣ୍ଣ ରଜତମଣି ମୌକ୍ତିକ ପ୍ରବାଳ
ମାଣିକ୍ୟ ଦିବ୍ୟଭୂଷଣ ନାନାବିଧ ଚେଳ ।
ଥୁଆଇ ତାହାଙ୍କ ପାଶେ ବ୍ରଜ ଅଧିପତି
କର ଯୋଡ଼ିଣ ବୋଇଲେ ଆହେ ମହାମତି
ଦୟାକରି ଘେନ ମୋର ପ୍ରୀତି ଉପହାର
ସନ୍ତୋଷେ ଘେନିଲେ ତାହା ଶୁଣି ମୁନିବର ।
ଶିଷ୍ୟମାନେ ଯେତେ ତାଙ୍କ ସଙ୍ଗତରେ ଥିଲେ
ସେମାନଙ୍କୁ ମଧ୍ୟ ନନ୍ଦ ଉପହାର ଦେଲେ
ଶୁଣ ହେ ନାରଦ ମୁନି ବଚନ ରହସ୍ୟ
ଶ୍ରୀକୃଷ୍ଣଙ୍କୁ ଘେନି ଗର୍ଗ ଦ୍ୱିଜକୁଳଈଶ ;
ଏକାନ୍ତ ସ୍ଥାନକୁ ନେଇ ଦଣ୍ଡବତ ହେଲେ
କରଯୋଡ଼ି ଭକ୍ତିଭରେ ସ୍ତୁତି ଆରମ୍ଭିଲେ ।
ବୋଇଲେ ନମସ୍ତେ ଦେବ ଜଗତ କାରଣ
ଭକତବତ୍ସଳ ପ୍ରଭୁ ଶ୍ରୀରାଧାରମଣ ।
ପ୍ରସନ୍ନ ହୋଇଣ ତବ ପାଦ ପଙ୍କଜରେ
ଆଶ୍ରୟ ଦେଇ ମୋତେ ଦୟାକରିବାରେ
କୃଷ୍ଣ ପିତା ଏବେ ମୋତେ ଦେଲେ ବହୁଧନ
ସେଥିରେ ମୋହର ଅଛି କିବା ପ୍ରୟୋଜନ ।
ଜ୍ଞାନତତ୍ତ୍ୱ ବେଦରତ୍ନ ବା ସିଦ୍ଧି ମୁକ୍ତି ଯୋଗ
ଏଥିରେ ମଧ୍ୟ କାଙ୍କ୍ଷିତେ ନାହିଁ ଅନୁରାଗ ।
ସ୍ୱର୍ଗ ଭୋଗରେ ତୃପତି ନ ହେବ ମୋହର
ଦାସତ୍ୱ ପ୍ରଦାନ କର ଚରଣେ କୃଷ୍ଣର ।
କୃଷ୍ଣ ପାଦ ସେବା ବିନା ସାଲୋକ୍ୟାଦି ଯେତେ
ତହିଁରେ ମାନସ ବଳୁନାହିଁ ମୋ କାଙ୍କ୍ଷିତେ ।
ଗୋଲୋକଭୁବନେ ଅବା ପାତାଳ ନଗରେ
ଥିଲେ ହେଲେ ମୋ ମାନସ କୃଷ୍ଣ ଚରଣରେ
ରହିବ ଯେରୂପେ ତାହା କରିଅ ସତ୍ୱରେ
ଏହିକ ମାତ୍ର ପ୍ରାର୍ଥନା ପଙ୍କଜ-ପଦରେ ।
ପୂର୍ବଜନ୍ମ ତପବଳେ ବେଦତତ୍ତ୍ୱ ଜ୍ଞାନ
ଶିବଙ୍କ କରୁଣା ଯୋଗେ କଲି ମୁଁ ଗ୍ରହଣ ।
ସେ ସକାଶୁ ସର୍ବଦର୍ଶୀ ସର୍ବଜ୍ଞ ହୋଇଲି
ସକଳ ସ୍ଥାନକୁ ପୁଣି ଗତାୟାତ କଲି ।
ଆହେ ପ୍ରଭୁ କୃପାମୟ ଦୟାକରି ମୋତେ
ରଖାଅ ସର୍ବଦା କୃଷ୍ଣ ଚରଣ ଅଗ୍ରତେ ।

କୃଷ୍ଣ ପାଦ ସେବାକରି ଦେବ ଶୂଳପାଣି
ଅମର ହୋଇଲେ ମୃତ୍ୟୁ ଦେବତାକୁ ଜିଣି
ଆଦର ଯୋଗୀଙ୍କ ମଧ୍ୟେ ଶ୍ରେଷ୍ଠ ବୋଲାଇଲେ
ସକଳ ଲୋକରେ ପୂଜା ପାଇଣ ରହିଲେ ।
ବ୍ରହ୍ମା ସେହିମତି କୃଷ୍ଣ ପାଦ ସେବାକରି
ଜିଣିଲେ ଇନ୍ଦ୍ରାଦ୍ୟ ନାମ ଷଣ୍ଢଗାଟି ଧରି ।
ସେ ଅନନ୍ତରେ ତିନିଲୋକ ସରଜନା କଲେ
ସକଳ ବେଦ ଶାସ୍ତ୍ରରେ ପାରଙ୍ଗମ ହେଲେ ।
ଧର୍ମ କୃଷ୍ଣ ପାଦ ସେବାକରି ଏକମନେ
ସକଳ କର୍ମର ସାକ୍ଷୀ ହେଲେ ତ୍ରିଭୁବନେ
ସହସ୍ରଶିର ଅନନ୍ତ କୃଷ୍ଣ ଶ୍ରୀଚରଣେ
ମନ ଦେଇକରି ସେବା କଲେ ଅନୁକ୍ଷଣେ
ସେ ସକାଶୁ ମସ୍ତକରେ ପୃଥିବୀକୁ ଧରି
ରଖିଅଛନ୍ତି ସାମାନ୍ୟ ସିଦ୍ଧାର୍ଥର ପରି ।
ସକଳ ସମ୍ପଦଦାତ୍ରୀ କମଳବାସିନୀ
ଜଗତ ପାଳନ୍ତି କୃଷ୍ଣ ପାଦସେବ ଘେନି ।
ପ୍ରକୃତି ଯେ ସର୍ବବୀଜ ସର୍ବ ଶକ୍ତିମୟୀ
ସ୍ମରଣ କରନ୍ତି କୃଷ୍ଣ ପାଦେ ମନ ଦେଇ ।
ଦେବୀଙ୍କ ମଧ୍ୟରେ ଶ୍ରେଷ୍ଠା ପର୍ବତ କୁମାରୀ
ଧ୍ୟାନ ନେଉଛନ୍ତି କୃଷ୍ଣ ଚରଣ ସୁମରି ।
ବିଦ୍ୟା ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ ନିତି
କୃଷ୍ଣ ଚରଣ-ପଙ୍କଜ ସେବିଅଛନ୍ତି ମତି ।
ସେ ସକାଶୁଁ ସର୍ବଲୋକପୂଜ୍ୟା ସେ ହୋଇଲେ
ଅଶେଷ ବିଦ୍ୟାରେ ଜନ ମୂର୍ତ୍ତିକୁ ରଚିଲେ ।
ସାବିତ୍ରୀ ହୋଇଲେ ବେଦଜନନୀ ଦେବତା
କୃଷ୍ଣପାଦପୂଜା ସହୁଁ କଲେ ଜଡ଼ ଚିନ୍ତା ।
ରତ୍ନଗର୍ଭା ବସୁନ୍ଧରା କୃଷ୍ଣ ପାଦତଳେ
ମନଦେଇ ଜଗତର ପ୍ରାଣୀଙ୍କୁ ବହିଲେ ।
ବାମ ଅଂଶରୁ ଜନ୍ମିଲା ଅନନ୍ତ ରାଧିକା
ତଥାପି କୃଷ୍ଣର ସେହି ପରମ ସେବିକା ।
ଆହେ ପ୍ରଭୁ ମୁହିଁ କୃଷ୍ଣ ଦାସ ହେବାପାଇଁ
ଇଚ୍ଛା କରିଅଛି ପୂର୍ଣ୍ଣ କର ତା ଗୋସାଇଁ ।
ଏଠାରୁ ବାହୁଡ଼ି ଆଉ ଘରକୁ ନ ଯିବି
ଏ ଧନ ପଦାର୍ଥ ଏହିଠାରେ ଥୋଇଦେବି ।
ଚିରଣ ସେବକ ହୋଇ ରହିବି କୃଷ୍ଣର
ଆହେ ଦେବ ପୂର୍ଣ୍ଣକର କାମନା ମୋହର ।

ଏହିରୂପେ ସ୍ତୁତିକରି ସେ ଗର୍ଗ ମହର୍ଷି
ପଡ଼ିଲେ ଶ୍ରୀକୃଷ୍ଣଙ୍କର ପାଦତଳେ ଆସି ।
ମୁନିଙ୍କ ବଚନ ଶୁଣି ପ୍ରଭୁ ନରହରି
କହିଲେ ତାହାଙ୍କୁ ମୁଖେ ମନ୍ଦହାସ ଧରି ।
ବୋଇଲେ ହେ ମୁନିବର ତୁମ୍ଭର ମୋଠାରେ
ନିଶ୍ଚଳ ଅଖଣ୍ଡ ଭକ୍ତି ରହୁ ନିରନ୍ତରେ ।
ଗର୍ଗମୁନିକୃତ ଏହି ଶ୍ରୀହରିଙ୍କ ସ୍ତୋତ୍ର
ପଢ଼ିଲେ ଯେ ତ୍ରିସନ୍ଧ୍ୟାରେ ହୁଏ ସେ ପବିତ୍ର ।
ଶ୍ରୀକୃଷ୍ଣଙ୍କ ଚରଣରେ ଦାସତ୍ୱ ଲଭଇ
ଅନ୍ତଃକାଳେ ଗୋଲୋକରେ ନିବାସ କରଇ ।
ଶୁଣ ହେ ନାରଦ ମୁନି ଏଥୁ ଅନନ୍ତରେ
ଶ୍ରୀକୃଷ୍ଣଙ୍କୁ ଗର୍ଗ ଋଷି ଘେନି ସଙ୍ଗତରେ ।
ନନ୍ଦ ସମୀପରେ ନେଇ ସମର୍ପଣ କଲେ
ପୁରକୁ ଯାଉଛୁ ବୋଲି ବିଦାୟ ମାଗିଲେ ।
ସଂସାର ମୋହଜାଲ ତ ଅଟଇ ବିଚିତ୍ର
ତହିଁରେ ପଡ଼ିଣ ଜୀବ କ୍ଲେଶ ପାଏ ମାତ୍ର ।
ସାଧୁ ସଙ୍ଗମ ବିଚ୍ଛେଦ ମରଣରୁ ବଳି
ଯନ୍ତ୍ରଣା ହୁଅଇ ଯାହା ନୋହିବ ସମ୍ଭାଳି ।
ଶିଷ୍ୟ ସହିତରେ ମୁନି ଯିବାକୁ ଉଦ୍ୟତ
ଦେଖି ଗୋପ ଅଧିପତି ହେଲେଣ ଦୁଃଖିତ ।
ଯଶୋଦା ସହିତେ ସର୍ବ ଗୋପାଳଙ୍କୁ ଧରି
ଶୋକ କଲେ ନୟନରୁ ବୁହାଇଣ ବାରି ।
ଶୁଭ ଆଶୀର୍ବାଦ ଦେଇ ସମସ୍ତଙ୍କୁ ମୁନି
ମଥୁରା ପୁରକୁ ଚାଲିଗଲେ ହୋଇ ତୁନି ।
ଆଉ ଯେତେ ମୁନି ଋଷିମାନେ ଆସିଥିଲେ
ଧନରତ୍ନ ପାଇ ଯେ ଯା ଭବନକୁ ଗଲେ ।
ନନ୍ଦ ରଜାଙ୍କର ବନ୍ଧୁ ବାନ୍ଧବ ସମସ୍ତେ
ସମ୍ଭାବନା ପାଇକରି ଗଲେ ଯେଝାମତେ ।
ବନ୍ଦୀମାନେ ଧନନେଇ ଇଚ୍ଛା ଅନୁସାରେ
ବିଦାୟ ହୋଇଣ ଗଲେ ନିଜ ନିଜ ପୁରେ ।
ଆକଣ୍ଠ ଭୋଜନ କରି ଭିକ୍ଷୁକ ନିକର
ଚାଲି ନ ପାରିଣ ବାଟେ ହେଲେ ଥରହର ।
ବହୁତ ସୁବର୍ଣ୍ଣରତ୍ନ ବସ୍ତ୍ର ନେଇଥିଲେ
ମାର୍ଗରେ ବହୁତ ବାର ରହି ରହି ଗଲେ ।
କେତେମାନେ ପଡ଼ି ଉଠି ଘୋଷାରି ଘୋଷାରି
ନିଜମନ୍ଦିରେ ନେଲେ ସବୁ ଦ୍ରବ୍ୟଯାକ ଧରି ।
କେତେମାନେ ଆନନ୍ଦରେ ଗୀତ ଗାଉଥିଲେ
କେତେମାନେ ପରସ୍ପରେ କଥା ହୋଇ ଗଲେ
ମରୁତ ଶ୍ୱେତ ସଗର ମାନ୍ଧାତା ନହୁଷ
ଉତ୍ତାନପାଦ ଯେ ନଳ ଚନ୍ଦ୍ର ନରକେଶ ।
ଶ୍ରୀରାମ ଆଦି ଯେତେକ ମହାବୀରଗଣ
ତାଙ୍କ ବିଷୟରେ କଥା ହେଲେ କେତେଜଣ
କେତେମାନେ ରହି ରହି ଶୋଇ ଶୋଇ ଗଲେ
ହରଷରେ ନିଜ ନିଜ ଗ୍ରାମରେ ମିଳିଲେ ।
ଶ୍ରୀକୃଷ୍ଣଙ୍କୁ ଘେନି ନନ୍ଦ ଯଶୋଦା ଉଭୟେ
ରହିଲେ ଆନନ୍ଦ ଲଭିକରି ଅତିଶୟେ ।
କ୍ରମେ କ୍ରମେ ବଳରାମ କୃଷ୍ଣ ବେନିଭାଇ
ବଢ଼ିଲେ ପିତାମାତାଙ୍କ ଶାସନରେ ରହି ।
ଶୁକ୍ଳପକ୍ଷେ ଚନ୍ଦ୍ରକଳା ତୁଲ୍ୟ ତାହାଙ୍କର
ଦିନକୁ ଦିନ ବର୍ଦ୍ଧିତ ହୋଇଲା ଶରୀର ।
ଜାନୁ ଡାଉ ଧରି ଧୀରେ ଧୀରେ ସେ ଚାଲିଲେ
ଦେଖିଣ ନନ୍ଦ ଯଶୋଦା ଆନନ୍ଦିତ ହେଲେ ।
ଶ୍ରୀକୃଷ୍ଣଙ୍କଠାରୁ ରାମ ବର୍ଷକରେ ବଡ଼
ହେଲେହେଁ ବେନିହେଁ ଦେଖାଗଲେ ସମତୁଲ୍ୟ ।
ଦନ୍ତଗୁଣ୍ଠି ବଚନ ଆଗେ କେତେଦିନ କହି
ସ୍ପଷ୍ଟବାକ୍ୟ ଉଚ୍ଚାରଣ କଲେ ବେନିଭାଇ ।
ଏଣେ ଗର୍ଗ ମୁନି ଆସି ମଥୁରା ନଗରେ
ପ୍ରବେଶ ହୋଇଲେ ବସୁଦେବଙ୍କ ପାଖରେ ।
ଦେଖି ତାଙ୍କୁ ବସୁଦେବ ନମସ୍କାର କଲେ
ଆସନରେ ବସାଇଣ କୁଶଳ ପୁଚ୍ଛିଲେ ।
ଆଶୀର୍ବାଦ କରି ମୁନି କହିଲେ ସମସ୍ତ
ଯାହା ଜାଣିଥିଲେ ଗୋପ ନଗର ବୃତ୍ତାନ୍ତ ।
ତାହା ଶୁଣି ବସୁଦେବ ଦେବକୀ ତାହାଙ୍କୁ
ତନ୍ନ ତନ୍ନ କରି ପଚାରିଲେ ସମ୍ବାଦକୁ ।
ଆନନ୍ଦରେ ଦୁହିଁଙ୍କର ନୟନରୁ ବାରି
ବହିଗଲା ପର୍ବତରୁ ଝରଣା ଯେପରି ।
ଆଶୀର୍ବାଦ କରି ଗର୍ଗ ନିଜସ୍ଥାନେ ଗଲେ
ବସୁଦେବ ଦେବକୀ ସେ ପୁରେ ପ୍ରବେଶିଲେ
ଏହିରୂପେ ଶ୍ରୀକୃଷ୍ଣଙ୍କ ନାମ ଅନ୍ନପ୍ରାଶ
ଚରିତ କହିଲି ତୁମ୍ଭ ଆଗେ ମୁନିଈଶ ।

ବିଶେଷରେ ଅଟ ତୁମ୍ଭେ ସ୍ୱାମାଙ୍କର ବର
ପୁଣି ଲୋକ ପିତାମହ ଧାତାଙ୍କ କୁମର ।
ବୈଷ୍ଣବ ପଣରେ ତୁମ୍ଭପରି ଏ ଜଗତେ
ନ ଥିବ କେ ବୋଲି ମୁହିଁ ଭାବୁଅଛି ଚିତ୍ତେ ।
ଶ୍ରୀକୃଷ୍ଣ ଚରିତ ପାଦ ଶୁଣିଲ କଥିତ
ପଞ୍ଚମରୁ ଅଧିକ କହୁ କରିବା ବ୍ୟକତ ।
ବୋଲେ ପାନ କ୍ଷେତ୍ରବାସୀ ଆନନ୍ଦ ସୁଧାକାନ୍ତ
ଖଣ୍ଡନ କର ମୋହର ଅଶେଷ ଦୁରିତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ଗର୍ଗ ଓ ନନ୍ଦଙ୍କର କଥୋପକଥନ ଏବଂ
ଶ୍ରୀକୃଷ୍ଣଙ୍କର ଅନ୍ନପ୍ରାଶନ ନାମକରଣ ପ୍ରସ୍ତାବେ ନାମ ତ୍ରୟୋଦଶୋଽଧ୍ୟାୟଃ ।

# ଚତୁର୍ଦ୍ଦଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ ଦ୍ୱାରା ଅର୍ଜ୍ଜୁନ ବୃକ୍ଷ ଭଙ୍ଗ ବୃତ୍ତାନ୍ତ ବର୍ଣ୍ଣନ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦ
ଶୁଣ ଅରଜୁନବୃକ୍ଷ ଭଞ୍ଜନ ସମ୍ବାଦ ।
ଏକଦିନେ ନନ୍ଦପତ୍ନୀ ସ୍ନାନ କରିବାକୁ
ଗଲେ ଯମୁନାକୁ ଘରେ ଛାଡ଼ିଣ ପୁତ୍ରକୁ ।
ଦଧି ଦୁଗ୍ଧ ଘୃତ ପୂର୍ଣ୍ଣ ହୋଇଥିଲା ଘର
ତହିଁରେ ଶ୍ରୀକୃଷ୍ଣଙ୍କର ପଡ଼ିଲେ ନଜର ।
ଉଠିଯାଇ ଲୋହଦଣ୍ଡେ କଲା ଭଗ୍ନ ହାଣ୍ଡି
ଦଧି ଦୁଗ୍ଧ ଘୃତ ଆଦି ଖାଇଲେ ଅସରଣ୍ଡି
ପୀତବସ୍ତ୍ର ଅଞ୍ଚଳରେ ମୁଖ ପୋଛିବାକୁ
ଯିବାବେଳେ ଯଶୋଦା ଦେଖିଣ ତାହାଙ୍କୁ ।
ନ କହି କିଛି ମନ୍ଦିର ଭିତରକୁ ଗଲେ
ଦଧି ଦୁଗ୍ଧ ହାଣ୍ଡି ସବୁ ଭାଜିଛି ଦେଖିଲେ
ବାଳକମାନଙ୍କୁ ତହୁଁ ପାଶକୁ ଡକାଇ
ପଚାରିଲେ ତତ୍ତ୍ୱକଥା ବୁଝିବାର ପାଇଁ ।
ବାଳକେ ବୋଇଲେ ତୁମ୍ଭ ପୁତ୍ର ସେ ସମସ୍ତ
ଖାଇଲା ଆମ୍ଭଙ୍କୁ ତହୁଁ ନ ଦେଇ କିଞ୍ଚିତ ।
ତାହା ଶୁଣି ନନ୍ଦରାଣୀ ବେତ ଧରି ହାତେ
ଗୋଡ଼ାଇଲେ ଶ୍ରୀକୃଷ୍ଣଙ୍କୁ ପିଟିବା ନିମନ୍ତେ ।
ତା ଦେଖି ଶ୍ରୀକୃଷ୍ଣ ଭୟେ କାତର ହୋଇ
ପଳାଇଲେ ମାତାଙ୍କର ପାଶରେ ନ ରହି ।
ଗୋଡ଼ାଇ ଗୋଡ଼ାଇ ମାତା ନ ପାରିଲେ ଧରି
ରହିଲେ ଦେହରୁ ଜାତ କରି ସ୍ୱେଦବାରି ।
ତାହାଙ୍କର କଣ୍ଠତାଳୁ ଓଷ୍ଠ ଶୁଖିଲେ
ଦେଖି ଶ୍ରୀକୃଷ୍ଣଙ୍କ ମନେ ଦୟା ଜାତହେଲା ।
ତହୁଁ ସେ ମାତାଙ୍କ ଆଗେ ସୁସ୍ଥିରେ ରହିଲେ
ଯଶୋଦା ସେକାଳେ ତାଙ୍କୁ ଧରି ସେନଇଲେ
ଅର୍ଜ୍ଜୁନ ବୃକ୍ଷରେ ବସ୍ତ୍ର ଗୁଡ଼ାଇ ସତ୍ୱର
ବାନ୍ଧିଲେ ଏକସ୍ଥାନରେ ରଖି ଦେନଭର ।
କହିଇଲେ ଯେ ଦୋଷ ଆଜି କରିଅଛୁ ତୁହି
ଦଣ୍ଡ ଭୋଗ କର ସେହିଠାରେ ବନ୍ଧାହୋଇ
ଏମନ୍ତ ବୋଲି ଘରକୁ ଗଲେ ସେ ବାହାରି
ରହିଲେ ବୃକ୍ଷମୂଳରେ ପ୍ରଭୁ ଦଇତ୍ୟାରି ।
ସେ ବୃକ୍ଷ ଶ୍ରୀକୃଷ୍ଣଙ୍କର ପରଶ ମାତ୍ରେର
କଟକଟ ହୋଇ ଭାଙ୍ଗି ପଡ଼ିଲା ମହୀରେ ।
ସୁନ୍ଦରଶ ଦିବ୍ୟପୁରୁଷ ତାହାର ମଧ୍ୟରୁ
ବାହାରିଲା ରୂପ ତାର ଦର୍ଶ ଅତି ସ୍ୱଚ୍ଛ ।
ସେ ସମୟେ ଆକାଶରୁ ଦିବ୍ୟରଥ ଖସି
ମିଳିଲା ସେ ପୁରୁଷର ସମୀପରେ ଆସି ।
ଦେଖିଣ ଗନ୍ଧର୍ବ ଅତି ହରଷିତ ହେଲା
ଶ୍ରୀକୃଷ୍ଣଙ୍କ ପଦ ଧରି ନମସ୍କାର କଲା ।
ବିଦାୟ ଗ୍ରହଣ କରି ବସି ସେ ରଥରେ
ଗଲା ନିଜ ଭବନକୁ ଆକାଶ ମାର୍ଗରେ ।
ବୃକ୍ଷ ଭାଜିବା ଦେଖି ଶୁଣି ନନ୍ଦରାଣୀ
ଗୃହକାର୍ଯ୍ୟ ଛାଡ଼ି ଧାଇଁ ଆସିଲେ ସେକ୍ଷଣି ।
ଦେଖିଲେ ଗଛ ଉପୁଡ଼ି ପଡ଼ିଅଛି ତଳେ
ତା ପାଶରେ ରହି ଶିଶୁ କାନ୍ଦୁଛି ଭୋ ଭୋ କରି
ତହୁଁ ତରତରେ ଆଣି ବସାଇ କୋଳରେ
ଭିଜାଇଲେ ବକ୍ଷସ୍ଥଳ ନୟନ ଜଳରେ ।

ଗୋପଗୋପୀଗଣ ସେହ୍ନ ସମସ୍ତେ ମିଳି
ବହୁତ ପ୍ରକାରେ ଦେଲେ ଯଶୋଦାଙ୍କୁ ଗାଳି
ନାନାକଥା କହି ବୋଧ କଲେ ଶ୍ରୀକୃଷ୍ଣଙ୍କୁ
କହିଲେ ପୁଣି ଶାନ୍ତ କରାଇ ହରିଙ୍କୁ ।
ପୁଣି ବୋଇଲେ ଗୋ ନନ୍ଦରାଣୀ ତୁମ୍ଭ ମନ
କରୁଣପ ହୋଇଲା କହ କିସ୍ପାଇଁ ଏସନ ।
ସାମାନ୍ୟ ଗୋରସ ଲାଗି ବାଳକ ପୁତ୍ରକୁ
ବୃକ୍ଷରେ ବନ୍ଧନ କରିଦେଲେ ଯେ ଦଣ୍ଡକୁ ।
ଦଇବରେ ବୃକ୍ଷଗୋଟି ଭାଙ୍ଗି ତ ପଡ଼ିଲା
ଭାଗ୍ୟବଳେ ବାଳକର ଅଙ୍ଗ ନ ବାଜିଲା ।
ସେ ସକାଶୁ ତୁମ୍ଭେ ଚିନ୍ତା ପୁତ୍ରବନ୍ତୀ ହୋଇ
ବସିଅଛ ଏତେବେଳେ ଆନ୍ତମୁଖ ସ୍ପର୍ଶି ।
ଯେବେ ଏ ବାଳକଗୋଟି ନଷ୍ଟ ହୋଇଥାନ୍ତା
ତେବେ କି ତୁମ୍ଭର ଆଉ ଜୀବନ ରହନ୍ତା ।
ପୁତ୍ରପାଇଁ ଚିନ୍ତା ଲୋକ ଅର୍ଜଇ ପଦାର୍ଥ
ପୁତ୍ର ନଥିବା ଲୋକର ଅଟେ ସବୁ ବ୍ୟର୍ଥ ।
ଏହିପରି କହି ସର୍ବେ ଗଲେ ଯେଝାପୁରେ
ମିଳିଲେ ନନ୍ଦ ଧନ୍ନନ ଯଶୋଦା ମନ୍ଦିରେ ।
ପତ୍ନୀଙ୍କୁ ଅନାଇଁ କ୍ରୋଧେ ନେତ୍ର ରଙ୍ଗ କରି
ବୋଇଲେ ଯା ତୁମ୍ଭେ କରୁଅଛ ଏତେ ସରି
ତୁମ୍ଭ ସମୀପରେ ଆଉ ଦଣ୍ଡେ ନ ରହିବି
ପୁତ୍ରକୁ କାନ୍ଧରେ ନେଇ ଗୃହ ଛାଡ଼ି ଯିବି ।
ନୋହିଲେ ତୁମ୍ଭେ ଏକଷି ପାଅ ଅଡ଼ ହୋଇ
ତୁମ୍ଭଠାରେ ମୋର କିଛି ପ୍ରୟୋଜନ ନାହିଁ ।
ବାପୀ ଅଟଇ ଶତେକ କୂପର ସମାନ
ଶତେ ବାପୀ ତୁଲ୍ୟ ଏକ ସରୋବର ଜାଣ ।
ଶତ ସରୋବର ସମ ଅଟେ ଏକ ଯାଗ
ଉତ୍ତମ ପୁତ୍ର ଅଟଇ ତାର ଶତଭାଗ ।
ସନ୍ତାପ ଦେବକ ମନମୋହନ ଔଷଧ
ବିଷୟ ଭୋଗରେ ସଦା କରଇ ଯେ ବାଧ
ତାହାଠାରୁ ବଳି ପୁତ୍ର ଅଟେ ପ୍ରିୟତମ୍
ସକଳ ବନ୍ଧୁ ମଧ୍ୟରେ ପୁତ୍ରଟି ଉତ୍ତମ ।
ଏହିରୂପେ କହି ନନ୍ଦ ବିରତ ହୋଇଲେ
ଦୁଃଖିତ ମନରେ ନିଜ ମନ୍ଦିରକୁ ଗଲେ
ନାରଦ ବୋଇଲେ ଆହେ ଋଷିଗଣ ଈଶ
ବୃକ୍ଷରୂପ ହୋଇଥିଲେ କେବଣ ପୁରୁଷ ।
କାହିଁପାଇଁ ଅବା ଗୋପପୁରକୁ ଆସିଲେ
ଏଥିର କାରଣ ମୋର ଆଗେ କହ ଭଲେ ।
ନାରପୁଣ ବୋଇଲେ ହେ ଶୁଣ ମୁନିବର
କୁବେର ପୁତ୍ର ଅଟନ୍ତି ସେ ନଳ କୁବେର ।
ତାହାଙ୍କ ଭାରିଜା ଅଟେ ରମ୍ଭା ଅପସରୀ
ହିନେ ପ୍ରଭାତରେ ତାକୁ ସଙ୍ଗତରେ ଧରି ।
ବିହାର କରିବା ପାଇଁ ନନ୍ଦନ ବନକୁ
ଗଲେ କାମଶର ଜଳେ ଭିଜାଇ ମନକୁ ।
ନିର୍ଜନ ପୁଷ୍ପ ଉଦ୍ୟାନ ମଧ୍ୟେ ପ୍ରବେଶିଲେ
ବଟବୃକ୍ଷ ମୂଳେ ପୁଷ୍ପ ତଳପ ରଚିଲେ ।
ତହିଁରେ କୁଙ୍କୁମ ଦ୍ରବ୍ୟ ସୁବାସ ଚନ୍ଦନ
କସ୍ତୁରୀ କର୍ପୂର ଆଦି କଲେ ବିଲେପନ ।
ରମ୍ଭା ବନିତାକୁ ଘେନି ସେ ତଳପ ପରେ
ନାନାବିଧ କାମ କ୍ରୀଡ଼ା କଲେ ହରଷରେ ।
ବିପରୀତ ଆଦି ଆଠ ପ୍ରକାରେ ଶୃଙ୍ଗାର
ଅଙ୍ଗ ପ୍ରତ୍ୟଙ୍ଗ ସଂଯୋଗ ଚୁମ୍ବନ ଆଦର ।
ନଖ ଦନ୍ତ କର କ୍ରୀଡ଼ା ବିବିଧ ଆଶ୍ଳେଷ
ଏହିପରି ରତି ଭୋଗ କଲେ ସେ ବିଶେଷ ।
ସେ ସମୟେ ତାଙ୍କ ପାଶେ ଦେବଳ ମହର୍ଷି
ଅକସ୍ମାତେ କେଉଁ ଆଡ଼ୁ ପ୍ରବେଶିଲେ ଆସି
ଦେଖିଲେ ଉଲଗ୍ନ ହୋଇ ରମ୍ଭା ଅପସରୀ
କ୍ରୀଡ଼ା କରୁଅଛି ନିଜ ବଲ୍ଲଭକୁ ଧରି ।
କାମରେ ଆସକ୍ତ ହୋଇ ପତିର ମୁଖକୁ ।
ସ୍ପର୍ଶି ଅଛି ପୁନଃପୁନଃ ବୁଲାଇ ନେତ୍ରକୁ
ଝୁଲାଇ କର୍ଣ୍ଣଯୁଗଳେ ସୁବର୍ଣ୍ଣ କୁଣ୍ଡଳ
ମଣ୍ଡି ଅଛି ବକ୍ଷ ସ୍ଥଳେ ଅଷ୍ଟରତ୍ନ ମାଳ ।
କଟିତଟେ ବାନ୍ଧିଅଛି ସୁବର୍ଣ୍ଣ କଙ୍କଣୀ
ଦିଶଇ ସେ କାମଧେନୁ ଗୁଣଶୋଭା ଭଣି ।
ତାର ସଙ୍ଗେ ସ୍ୱର୍ଗପୁର କୁବେର ନନ୍ଦନ
ମାତିଅଛି ରତିରସେ ହରାଇଣ ଜ୍ଞାନ ।
ମୁନିକୁ ପାଶରେ ଦୁହେଁ ଦେଖିଲେହେଁ କେହି
ଉଠି ବସିବାକୁ ମନ ବଳାଇଲେ ନାହିଁ ।
ତାହା ଦେଖି ମୁନିବର ମହାକ୍ରୋଧ କଲେ
କୁବେର ପୁତ୍ରକୁ ସ୍ପର୍ଶି ଶାପ ସେ ଦିହଲେ ।
ବୋଇଲେ ତୁ ଅମାନନା କଲୁ ମୋହଠାରେ
ତେଣୁ ବୃକ୍ଷରୂପ ହୋଇ ରହ ଗୋପପୁରେ ।

ଯେତେବେଳେ ଶ୍ରୀକୃଷ୍ଣଙ୍କ ପରଶ ପାଇବୁ
ତେବେ ମୁକତି ପାଇଣ ନିଜସ୍ଥାନେ ଯିବୁ ।
ରମ୍ଭାକୁ ଅନାଇଁ ପୁଣି ବୋଇଲେ ଗୋ ତୁମ୍ଭ
ମନୁଷ୍ୟ ଯୋନିରେ ଜାତହେବୁ ଏଥି ପାଇ
ଜନ୍ମେଜୟ ରାଜାଙ୍କର ପ୍ରିୟବତି ହେବୁ
ଇନ୍ଦ୍ରଙ୍କ ସମ୍ଭୋଗ କରି ମୁକତି ପାଇବୁ ।
ଏରୂପେ ଦୁହିଙ୍କୁ ଶାପ ଦେଇ ମୁନିବର
ପ୍ରବେଶ ହୋଇଲେ ଯାଇ ଆପଣା ମନ୍ଦିର
ସେହିଦିନୁ ବୃକ୍ଷରୂପେ କୁବେର ତନୟ
ରହିଲେ ଗୋପନଗରେ ପାଇଣ ଆଶ୍ରୟ ।
ଦ୍ୱରଜବରଷେ ରମ୍ଭା ସୁଚନ୍ଦ୍ରଙ୍କ ଘରେ
ଜନ୍ମଲାଭ କଲେ ତାଙ୍କ କନ୍ୟା ସ୍ୱରୂପରେ
ରୂପ ଗୁଣରେ ତାହାଙ୍କ ପରି ଏକା ସେହି
ଦେଖିବାକୁ ଦୋଷ ତାଙ୍କଠାରେ କିଛି ନାହିଁ
କେତେ ଦିନପରେ ଯହୁଁ ହେଲେ ସେ ଯୁବତୀ
ଜନ୍ମେଜୟଙ୍କୁ ବିବାହ କଲେ ନରପତି ।
ତାଙ୍କୁ ପାଇ ଜନ୍ମେଜୟ ସନ୍ତୁଷ୍ଟ ହୋଇଲେ
ନିର୍ଜନ ସ୍ଥାନରେ ମିଳି କାମ କ୍ରୀଡ଼ା କଲେ ।
ଦୁହେଁ ତ ଅତ୍ୟନ୍ତ କାମଶାସ୍ତ୍ରରେ ଉତ୍ତମ
ଯଥାବିଧି କଲେ ରତିରସ ସମ୍ପାଦନ ।
ଏହିପରି ଗତ ହୋନ୍ତେ କେତେକ ଦିବସ
ଯାଗ ଆରମ୍ଭିଲେ ଜନ୍ମେଜୟ ନରଈଶ ।

ସେ ସମୟେ ଇନ୍ଦ୍ର ଆସି ରାଜାଙ୍କ ନଗରେ
ପ୍ରବେଶ ହୋଇଲେ ନିଜେ ଗୁପତ ବେଶରେ
ଅଶ୍ୱଶାଳରେ ନିଶ୍ଚେତ ରହି ସୁରପତି
ବାନ୍ଧି ରଖିଲେ ଅଶ୍ୱକୁ ଆପଣାର କତି ।
ସେ ସମୟେ ଜନ୍ମେଜୟ ରାଜାଙ୍କ ମହିଷୀ
ଅଶ୍ୱକୁ ଦେଖିବାପାଇଁ ହୋଇଣ ଲଳସୀ ।
ଏକାକିନୀ ଯାଇଁ ଅଶ୍ୱଶାଳରେ ମିଳିଲେ
ତାହାକୁ ଦେଖିଣ ଇନ୍ଦ୍ର ଧରଷଣ କଲେ ।
ନିବାରଣ କଲେ କେତେ ସେ ସତୀରମଣୀ
ତଥାପି ସେ କଥା ଇନ୍ଦ୍ର କର୍ଣ୍ଣରେ ନ ଶୁଣି ।
ବଳାତ୍କାରେ ଧରି ତାକୁ ଉପଭୋଗ କଲେ
ମୂର୍ଚ୍ଛିତ ମୁଖରେ ଦୁହେଁ ଜ୍ଞାନ ହରାଇଲେ ।
ମୁକତି ପାଇ ସେକ୍ଷଣି ରମ୍ଭା ଅପସରା
ସ୍ୱର୍ଗକୁ ଗଲେ ମୁନିଙ୍କ ବଚନ ସୁମରି ।
ଲଜ୍ଜା ଭୟ ଘେନି ଇନ୍ଦ୍ର ମୁହଁ ନ ରହି
ଗଲେ ମଧ୍ୟ ସ୍ୱର୍ଗପୁରେ ଉଦବେଗ ହୋଇ ।
ଏହିରୂପେ ବୃକ୍ଷାର୍ଜ୍ଜୁନ ଭଞ୍ଜନ ବୃତ୍ତାନ୍ତ
କହିଲି ତୁମ୍ଭ ଆଗରେ ଆହେ ତପୋବନ୍ତ ।
ଆଉ ଯେତେ ଯେତେ କର୍ମ କଲେ ନରହରି
କହିବି କ୍ରମରେ ତାହା ଆଦ୍ୟନ୍ତ କରି ।
ଘନ କ୍ଷେତ୍ରବାସୀ ବୋଇଲେ ଯାମଳା ଅର୍ଜ୍ଜୁନ
ଚରିତକୁ ଶୁଣ ସାଧୁଜନେ ଦେଇ ମନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଅର୍ଜ୍ଜୁନବୃକ୍ଷ ଭଙ୍ଗ ବୃତ୍ତାନ୍ତ ବର୍ଣ୍ଣନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



## ପଞ୍ଚଦଶ ଅଧ୍ୟାୟ

## ରାଧାକୃଷ୍ଣଙ୍କର ବିବାହ ବିଷୟ ବର୍ଣ୍ଣନ

ନାରାୟଣ ବୋଇଲେ ହେ ଶୁଣ ମହାମୁନି
ଦିନେ ନନ୍ଦ ଶ୍ରୀକୃଷ୍ଣଙ୍କୁ ସଙ୍ଗତରେ ଘେନି ।
ବୃନ୍ଦାବନ ମଧ୍ୟେ ଯାଇ ପ୍ରବେଶ ହୋଇଲେ
ଗୋଗୋଷ୍ଠକୁ ଚରାଇବା ପାଇଁ ଛାଡ଼ିଦେଲେ ।
ସରୋବର ସ୍ୱାଦୁନୀର ପିଆଇଲେ ନେଇ
ଜମାକଲେ ପୁଣି ବୃକ୍ଷମୂଳେ ଅଡ଼ାଇ ।

ସେ ଅନ୍ତରେ ଶ୍ରୀକୃଷ୍ଣଙ୍କୁ କକ୍ଷରେ ବସାଇ
ବଟବୃକ୍ଷକୁ ଆଉଜି ବସିଲେକ ଯାଇ ।
ଏହି ସମୟରେ କୃଷ୍ଣ ମାୟା ଉଆଇଲେ
ମେଘରେ ଆକାଶମାର୍ଗ ପୂର୍ଣ୍ଣ କରିଦେଲେ ।
ପ୍ରଚଣ୍ଡ ବେଗରେ ଝଞ୍ଜା ପବନ ବହିଲା
ବଡ଼ ବଡ଼ ବୃକ୍ଷମାନ ଉପୁଡ଼ି ପଡ଼ିଲା ।

କେତେ କେତେ ବୃକ୍ଷପରୁ ଭାଙ୍ଗି ଶାଖାମାନ
ପଡ଼ିଲେ ମହୀ ଉପରେ କରି ଘୋରସ୍ୱନ ।
ତାହା ଦେଖି ବ୍ରଜବାସୀ ମହାଭୟ କଲେ
କହୁଁପେ ବୃନ୍ଦକୁ ମିଳା ବୋଲି ବିସ୍ମୟଲେ ।
ପୁଣି ଭାବିଲେ କି ରୂପେ ଗୋଗୋଷ୍ଠକୁ ନେଇ
ଗ୍ରାମ ସମୀପରେ ଦେଖୀ ପ୍ରବେଶ କରାଇ ।
ଯେତେବେ ଏହିଠାରୁ ଆଜ ନ ଯାଇ ରହିବ
ବାଳକକୁ ପତନରେ କେମନ୍ତେ ରଖିବ ।
ଏରୂପେ ବହୁତ ଚିନ୍ତା କରୁଥିଲେ ନନ୍ଦ
ଶ୍ରୀକୃଷ୍ଣ ତାହାଙ୍କ କଣ୍ଠେ ଦେଇ ହସ୍ତ ଛନ୍ଦ ।
ମାୟାରେ କ୍ରନ୍ଦନ କରି ଭୟକଲ ଭ୍ରାନ୍ତେ
ଆଲିଙ୍ଗନ ପାଇ ତାଙ୍କୁ କଲେ ଅତିଶୟେ ।
ଏହି ସମୟରେ ରାଧା ଶ୍ରୀକୃଷ୍ଣଙ୍କ ପାଶେ
ଉପଗତ ହେଲ ଆସି ସେ ନିର୍ଜନ ଦେଶେ ।
ଶରତ ପାର୍ବଣଚନ୍ଦ୍ର ତୁଲ୍ୟ ତାହାଙ୍କର
ମୁଖ ଦିଶୁଥିଲ ଅତିଶୟ ମନୋହର ।
ଶରତୋତ୍ପଳ ଦଳପଦ୍ମ ବିଶାଳ ଲୋଚନ
ନାସିକା ଅଟେ ଖଗେନ୍ଦ୍ର ଚଞ୍ଚୁର ସମାନ ।
ତହିଁରେ କଳିତ ହୋଇ ରମ୍ୟ ମୁକ୍ତାଫଳ
ସମୁଦ୍ର ଫେନ ପରାୟେ ଦିଶଇ ଉଜ୍ଜ୍ୱଳ ।
ସୁନ୍ଦର କବରୀ ଭାର ମାଳତି ମାଳାରେ
ଦେଖିବା ଲକ୍ଷଣେ ମନ ନୟନକୁ ହରେ ।
ଦେନି କର୍ଣ୍ଣରେ ଶୋଭିତ ସୁବର୍ଣ୍ଣ କୁଣ୍ଡଳ
କିରଣରେ ଗଣ୍ଡଯୁଗ କରଇ ଉଜ୍ଜ୍ୱଳ ।
ଓଷ୍ଠଦେଶ ଦିଶେ ପକ୍ୱବିମ୍ବ ଫଳ ପରି
ବିଜିଣଇ ଦନ୍ତପନ୍ତ ମୁକ୍ତାଫଳ ସରି ।
କପାଳରେ ସୁଶୋଭିତ କସ୍ତୁରୀ ତିଳକ
ତା ମଧ୍ୟେ ସିନ୍ଦୂର ବିନ୍ଦୁ ଦିଶେ ଜକଜକ ।
ବକ୍ଷସ୍ଥଳେ ସମୁଜ୍ଜ୍ୱଳ ରତ୍ନମୟ ହାର
ଲମ୍ବିତ ହୋଇ ଦିଶଇ ଅତ୍ୟନ୍ତ ସୁନ୍ଦର ।
ସୁବୃତ୍ତ ଶ୍ରୀଫଳାକାର ରମ୍ୟ ବେନିସ୍ତନ
କଠିନ ପୀନ ଶ୍ରେଣୀରେ ଅତି ଶୋଭାବନ ।
ନିବଳୀ ରଞ୍ଜିତ ନମ୍ରନାଭି ତାହା ତଳେ
କାମଦେବର ବାପିକା ସୌନ୍ଦର୍ଯ୍ୟରୁ ବଳେ ।
ତା ପାଶରେ ବିଦ୍ୟୁତ୍ଜନ୍ନ କାଞ୍ଚିଗୁଣ ଥାଇ
କୁସୁମଶାୟକ ଧନୁ ଗୁଣକୁ ନିନ୍ଦଇ ।

ପୀବର ନିତମ୍ବ ବିମ୍ବ ଅତି ଶୋଭାବନ
ସ୍ଥଳପଦ୍ମ ପ୍ରାୟେ ଦିଶେ ତା ଦେନି ଚରଣ ।
ସଦ୍ରତ୍ନସାର ଖଚିତ ନୂପୁର ଯୁଗଳ
ରତନ ଶୃଙ୍ଖଳାବନ୍ଧ ପୁଣି ତାର ତଳ ।
ଭୁଜରେ ସୁବର୍ଣ୍ଣମୟ କେୟୂର କଙ୍କଣ
ଜଡ଼ିତ ହୋଇଛି ତହିଁ ବହୁତ ରତନ ।
ଚମ୍ପକ କୁସୁମପ୍ରଭା ପୁଷ୍ଟ କଳେବର
ବହ୍ନିଶୁଦ୍ଧ ବସ୍ତ୍ରଯୋଗେ ଅତ୍ୟନ୍ତ ସୁନ୍ଦର ।
ମୁଖଶ୍ରୀ ଦେଖିବା ପାଇଁ ରତନ ଦର୍ପଣ
ଧରିଅଛନ୍ତି ହସ୍ତରେ ସେ ସ୍ତ୍ରୀ ରତନ ।
ଏହିରୂପେ ରାଧିକାଙ୍କୁ ନିର୍ଜନ ବନରେ
ବିସ୍ମିତ ହୋଇଲେ ନନ୍ଦ ଦେଖି ସେକାଳରେ
ପୁଣି ଭକ୍ତିଭରେ ତାଙ୍କ ମୁଖକୁ ଅନାଇଁ
ବୋଇଲେ ଗୋ ଦେବୀ ତୁମ୍ଭେ ଅଟ ମହାମାୟି
ଗର୍ଗଙ୍କ ମୁଖରୁ ସବୁ ଶୁଣିଅଛି ମୁହିଁ
ତୁମ୍ଭେ ସେ ଶ୍ରୀକୃଷ୍ଣଙ୍କର ପ୍ରାଣପ୍ରିୟା ସହି ।
ମୋହର ନନ୍ଦନ ନୁହେଁ ଶ୍ରୀକୃଷ୍ଣ ଅଟନ୍ତି
ମାୟା ମନୁଷ୍ୟ ରୂପରେ ଜନମି ଅଛନ୍ତି ।
ଏହାଙ୍କୁ ଉତ୍ତମରୂପେ ଜାଣିଅଛି ମୁହିଁ
ତଥାପି ବିଷ୍ଣୁ ମାୟାରେ ମୋହିତ ହୁଅଇ ।
ତୁମ୍ଭର ପ୍ରାଣନାଥଙ୍କୁ ଯାଅ ଏବେ ନେଇ
ମନୋରଥ ପୂର୍ଣ୍ଣକରି ଦେବ ମୋତେ ଆଣି ।
ଏହିରୂପେ କହି ନନ୍ଦ ଶ୍ରୀକୃଷ୍ଣଙ୍କୁ ଧରି
ରାଧିକାଙ୍କ ପାଶେ ଦେଲେ ସମର୍ପଣ କରି ।
ତାହା ଦେଖି ଶ୍ରୀମତୀ ସେ ହରଷିତା ହେଲେ
ନନ୍ଦଙ୍କୁ ଅନାଇଁ ଅଳ୍ପ ହସିଣ କହିଲେ ।
ବୋଇଲେ ତୁମ୍ଭର ପୂର୍ବ ସୁକୃତ ଫଳରେ
ଦେଖିଲ ଆମ୍ଭଙ୍କୁ ଆଜି ଏକାନ୍ତ ସ୍ଥାନରେ ।
ଗର୍ଗ ମୁନିଙ୍କ ବଚନେ ତୁମ୍ଭର ଯେ ଜ୍ଞାନ
ହୋଇଅଛି ତାହା ଲଭି ନ ପାରଇ ଆନ ।
ମାତ୍ର ଆମ୍ଭ ଦୁହିଙ୍କର ମିଳନ ବୃତ୍ତାନ୍ତ
ଅନ୍ୟ ଲୋକ ଆଗେ ନ କରିବ ପ୍ରକାଶିତ ।
ତୁମ୍ଭଠାରେ ହୋଇଅଛି ସନ୍ତୋଷ ମୋହର
ଆପଣା ଇଚ୍ଛା ପ୍ରକାରେ ମାଗି ନେଇ ବର ।
ରାଧିକା ବଚନ ଶୁଣି ବ୍ରଜ ଅଧିପତି
ବୋଇଲେ ତୁମ୍ଭ ଦୁହିଙ୍କ ଚରଣେ ଭକତି ।

ଯେଉଁରୂପେ ସବୁବେଳେ ରହିଥିବ ମୋର
କେବଳ ମୁଁ ଲୋଡ଼ୁଅଛୁ ଏହି ଏକ ବର ।
ଅନ୍ତଃକାଳେ ତୁମ୍ଭପାଶେ ରହିବ ନିଶ୍ଚୟେ
ନ ପଡ଼ିବ ପୁଣି ଆଉ ଭବସିନ୍ଧୁ ଜଳେ ।
ଏହାଠାରୁ ବଳି ଆଉ ଇଚ୍ଛା ନାହିଁ କିଛି
ହେଉ ଯେବେ ମୋହଠାରେ ଅନୁଗ୍ରହ ଅଛି ।
ତାହା ଶୁଣି ରାଧାଦେବୀ ସନ୍ତୁଷ୍ଟ ହୋଇଲେ
ଜନ୍ମାନ୍ତରେ ଦାସତ୍ୱ ପାଇବ ବୋଇଲେ ।
ଆବର ବୋଇଲେ ଏବେ ନିଶ୍ଚୟ ଭକତ
ହେଉ ଆମ୍ଭ ପ୍ରସାଦରେ ଆହେ ମହାମତ ।
ଆମ୍ଭ ଦୁହିଙ୍କର ପାଦ ପଙ୍କଜକୁ ତୁମ୍ଭେ
ସୁମରଣା କରୁଥାଅ ବୋଲୁଅଛୁ ଆମ୍ଭେ ।
ଅନ୍ତଃକାଳେ ତ୍ୟାଗ କରି ମନୁଷ୍ୟ ଶରୀର
ଗୋଲୋକ ରହିବ ପାଶେ ଆମ୍ଭ ଦୁହିଙ୍କର ।
ଏମନ୍ତ କହିଣ ରାଧା ଶ୍ରୀକୃଷ୍ଣଙ୍କୁ ଧରି
ପ୍ରବେଶ ହୋଇଲେ ବନ ମଧ୍ୟେ ଯାଇକରି ।
ରାସ ମଣ୍ଡଳକୁ ମନେ ସୁମରଣା କଲେ
ପୁଲକରେ ସର୍ବ ଅଙ୍ଗ ପୂର୍ଣ୍ଣ କରିଦେଲେ ।
ସେହି ସମୟରେ ରତ୍ନମଣ୍ଡପ ଗୋଟିଏ
ଦେଖିଲେ ଆଗରେ ରତ୍ନ ଦ୍ରବ୍ୟ ଶୋଭାପାଏ ।
ଶତ ଶତ ସ୍ୱର୍ଣ୍ଣମୟ କଳସ ତହିଁରେ
ଥୁଆ ହୋଇଅଛି ସ୍ଥାନେ ସ୍ଥାନେ ଯତନରେ ।
ସିନ୍ଦୂର ବରନ ମଣି ସ୍ତମ୍ଭରେ ଶୋଭିତ
ଆବର ବହୁତ ଚିତ୍ରରୂପ ସମନ୍ୱିତ ।
ଚନ୍ଦନ କୁଙ୍କୁମ ଦ୍ରବ୍ୟ ହେବାରୁ ସେ ବନ
ସୁଗନ୍ଧରେ ଆମୋଦିତ ହୁଏ ମନ ପ୍ରାଣ ।
ମଧ୍ୟରେ ପୁଷ୍ପଉଦ୍ୟାନ ଅତି ମନୋହର
ତହିଁରେ ଅଛଇ କେତେ କ୍ରୀଡ଼ା ଦର୍ମୀସର ।
ବିବିଧ ବସ୍ତ୍ର ଭୂଷଣ ରହିଅଛି ପୂରି
ସ୍ୱର୍ଗ ଭୁବନ ପର୍ଯ୍ୟନ୍ତେ ତାହାର ମାଧୁରୀ ।
ଏରୂପେ ମଣ୍ଡପ ଗୋଟି ଦେଖିଣ ଶ୍ରୀମତୀ
ଗଲେ ତା ମଧ୍ୟକୁ ମାନସରେ ବହି ପ୍ରୀତି ।
ତହିଁରେ ଦେଖିଲେ ଦ୍ରବ୍ୟ କର୍ପୂର ତାମ୍ବୁଳ
ଆବର ଅମୃତତୁଲ୍ୟ ସୁବାସିତ ଜଳ ।
ବିବିଧ ସୁବର୍ଣ୍ଣମୟ କଳସ ଅନେକ
ଥୁଆ ହୋଇଣ ଦୂରକୁ ଦିଶେ ଜକ ଜକ ।

ସେହିଠାରେ ଉପସ୍ଥିତ ହୋଇଲେ ସେତେବେଳେ
ଦେଖିଲେ ଶ୍ରୀକୃଷ୍ଣଙ୍କର ସ୍ୱରୂପକୁ ଡୋଳେ ।
ସସ୍ମିତ ସୁମନୋହର ବଦନ-ପଙ୍କଜ
ପାର୍ବଣ ଚନ୍ଦ୍ରମା ପ୍ରାୟେ ପ୍ରକାଶଇ ତେଜ
କଟିତଟେ ପୀତବାସ ଦିଶଇ ସୁନ୍ଦର
ପାଦରେ ହୋଇଛି ଝଞ୍ଜି ରତନ ନୂପୁର ।
ବାହୁଯୁଗେ ମଣିମୟ କେୟୂର କଙ୍କଣ
ମକର କୁଣ୍ଡଳ ଦେନି କର୍ଣ୍ଣରେ ଶୋଭନ ।
ବକ୍ଷସ୍ଥଳେ ବିଲମ୍ବିତ କଉସ୍ତୁଭ ମଣି
ଦିଶଇ ସଜଳ ନବ ମେଘ ପ୍ରାୟ କାନ୍ତି ।
ଶରତ ପ୍ରଫୁଲ୍ଲ ପଦ୍ମ ସଦୃଶ ଲୋଚନ
ମସ୍ତକରେ ଶିଖୀପୁଚ୍ଛ ଅତି ଶୋଭାବନ ।
ତ୍ରିଭଙ୍ଗୀ ଛନ୍ଦରେ ଯୁକ୍ତ ହୋଇଅଛି ପାଦ
ରଖିଛନ୍ତି ରତ୍ନ-ଅଧରକୁ ବଂଶୀ ମୁଦ ।
କୁସୁମ ତଳପ ଉପରେ ଶୋଇଛନ୍ତି ସୁଖେ
ପ୍ରକାଶ କରନ୍ତି ମନ୍ଦ ମନ୍ଦ ହାସ ମୁଖେ ।
ଏରୂପେ ସୁନ୍ଦର ବେଶ ଦେଖି ମହାସତୀ
କାମ-ରସରେ ନିମଗ୍ନ କଲେ ନିଜ ମତି ।
ଏକାଗ୍ର ଦୃଷ୍ଟିରେ ତାଙ୍କୁ ଅନାଇ ରହିଲେ
କୋଳରେ ଶ୍ରୀକୃଷ୍ଣ ଆଉ ନାହାନ୍ତି ଦେଖିଲେ ।
ବିସ୍ମିତ ହୋଇଲେ ତେଣୁ ତାହାଙ୍କୁ ଅନାଇଁ
ଭରସି ପଦେହେଁ କଥା ନ ପାରିଲେ କହି ।
ତା ଦେଖି ଶ୍ରୀକୃଷ୍ଣ ମନ୍ଦ ହାସ ପରକାଶି
ବୋଇଲେ ଆଗୋ ରାଧିକେ ଶୁଭ୍ରମନ୍ଦହାସୀ ।
ଗୋଲୋକରେ ପ୍ରତିଜ୍ଞା ଯା କରିଥିଲ ମୁହିଁ
ସମ୍ପୂର୍ଣ୍ଣ କରନ୍ତି ତାହା ତୁମ୍ଭପାଶେ ରହି ।
ପ୍ରାଣରୁ ଅଧିକ ତୁମ୍ଭେ ଅଟ ଯେ ମୋହର
କଳ୍ପିତ ପ୍ରଭେଦ ନାହିଁ ଆମ୍ଭ ଦୁହିଙ୍କର ।
ଯେଉଁରୂପେ କ୍ଷୀର ଦେହେ ଧବଳତା ଥାଏ
ପୃଥିବୀଠାରୁ ସୁଗନ୍ଧ ପ୍ରକାଶିତ ହୁଏ ।
ସେହିପରି ସତତରେ ମୁଁ ତୁମର ଦେହେ
ସାମାନ୍ୟ ଧର୍ମ ପରାୟେ ପଶି ରହିଥାଏ ।
ଯେଉଁରୂପେ କୁମ୍ଭକାର ସ୍ୱର୍ଣ୍ଣକାରଗଣ
ନ ଥାଏ ପାଖରେ ଯେବେ ମୃତ୍ତିକା ସୁବର୍ଣ୍ଣ ।
ଘଟ କୁଣ୍ଡଳ ନିର୍ମାଣ କରି ନ ପାରନ୍ତି
ସେହିରୂପେ ତୁମ୍ଭେ ଯେବେ ନ ଥିବ ମୋ କତି

ସୃଷ୍ଟି ସରଜନା କରିବାକୁ ମୁଁ ସମର୍ଥ
ନ ହୋଇବି କେତେବେଳେ କହୁଛୁ ଯଥାର୍ଥ ।
ଆସ ଆସ ପ୍ରାଣସଖି ତଳପରେ ବସ
ମୋହର ଅଙ୍ଗରେ ତୁମ୍ଭ ଶ୍ରୀଅଙ୍ଗକୁ ଘଷ ।
ତୁମ୍ଭ ବିନା ମୋର ଦେହ ହୁଏ ଶିବହୀନ
ସେ ହେତୁ ଶ୍ରୀକୃଷ୍ଣ ମୋତେ ବୋଲୁଥାନ୍ତି ଜନ
ଶିବ ସମ୍ପତ୍ତି ମୋହର ଅଟ ଏକା ତୁମ୍ଭେ
ତୁମ୍ଭବିନା କ୍ଷଣେ ରହି ନ ପାରିବ ଆମ୍ଭେ ।
ସକଳ ଲୋକର ଶକ୍ତି ବୋଲାଅ ଜଗତେ
ତୁମ୍ଭଙ୍କୁ ଛାଡ଼ି ମୁଁ ରହି ନ ପାରେ କଷ୍ଟତେ ।
ପ୍ରିୟା ଅଟ ତୁମ୍ଭେ ମୁହିଁ ଅଟଇ ପୁରୁଷ
ଯେଉଁଠାରେ ଥାଅ ତୁମ୍ଭେ ମୋର ତହିଁ ବାସ
ଯେତେବେଳେ ତେଜରୂପେ ରହୁଥାଏ ମୁହିଁ
ତୁମ୍ଭେ ମଧ୍ୟ ଥାଅ ତେଜ ସ୍ୱରୂପକୁ ବହି ।
ଅଶରୀର ହୋଇ ମୁହିଁ ଥିବା ସମୟରେ
ଶରୀର ବିହୀନ ତୁମ୍ଭେ ହୁଅ ନିଶ୍ଚୟରେ ।
ଯେବେ ମୁଁ ସକଳ ବୀଜ ସ୍ୱରୂପକୁ ଧରେ
ପ୍ରକାଶିତ ହୁଅ ତୁମ୍ଭେ ଶକ୍ତି ସ୍ୱରୂପରେ ।
ବୁଦ୍ଧି ଜ୍ଞାନ ପରାକ୍ରମ ଗୁଣରେ ସମାନ
ହେବ ତୁମ୍ଭେ ମୋର ସଙ୍ଗେ ବୋଲକର ଜାଣ
ଯେଉଁ ଲୋକ ଆମ୍ଭଠାରେ ଭେଦବୁଦ୍ଧି କରେ
ଅନ୍ତଃକାଳେ ପଡ଼ଇ ସେ ନରକ ମଧ୍ୟରେ ।
ପୂର୍ବପର ସାତ ସାତ ପୁରୁଷଙ୍କୁ ସେହି
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ନରକେ ରଖଇ ।
କୋଟି ଜନ୍ମ ଉପାର୍ଜିତ ପୁଣ୍ୟ ନଷ୍ଟ ହୁଏ
ଜୀବ ଥିବାଯାଏ କଷ୍ଟ ଭୋଗ ହେଉଥାଏ ।
ଅଜ୍ଞାନରେ ଯେହୁ ନିନ୍ଦା କରଇ ଆମ୍ଭଙ୍କୁ
ନରକେ ପକାନ୍ତି ଯମ କଙ୍କରେ ତାହାକୁ ।
ରା ଶବ୍ଦକୁ ମୁଖରେ ଯେ ନିତ୍ୟ ଉଚ୍ଚାରଇ
ତାହାକୁ ନିଶ୍ଚଳ ଭକ୍ତି ଦାନ ମୁଁ କରଇ ।
ଧା ଶବ୍ଦ ଯା ମୁଖରୁ ହୁଅଇ ବାହାର
ଶୁଣିମା ଇଚ୍ଛାରେ ମୁହିଁ ସଙ୍ଗେ ଥାଏ ତାର ।
ଯେଉଁ ଲୋକ ଷୋଡ଼ଶ ଉପଚାର ଫୁଲେ
ଭକ୍ତିଭାବରେ ମୋତେ ପୂଜା କରୁଥାଏ ଭଲେ ।
ତହିଁରୁ ଯେଉଁ ପୀରତି ହୁଏ ମୋର ଜାତ
ରାଧା ଶବ୍ଦ ଉଚ୍ଚାରଣେ ତାଠାରୁ ବହୁତ ।

ବ୍ରହ୍ମା ଶିବ ଶେଷ ଦେବ ନର ନାରାୟଣ
କପିଳ ଗଣେଶ ଧର୍ମ କାର୍ତ୍ତିକେୟ ପୁଣ ।
ଆବର ସାବିତ୍ରୀ ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ
ଏମାନେ ମୋର ପ୍ରାଣର ସମାନ ଅଟନ୍ତି ।
କିନ୍ତୁ ତୁମ୍ଭେ ପ୍ରାଣ ତହୁଁ ହେବାରୁ ଅଧିକ
ସମସ୍ତଙ୍କଠାରୁ ତୁମ୍ଭ ନାମଗୋଟି ଠିକ ।
ଭିନ୍ନ ସ୍ଥାନରେ ସେମାନେ ଅଛନ୍ତି ସମସ୍ତେ
ବକ୍ଷସ୍ଥଳେ ରହିଅଛ ତୁମ୍ଭେ ଯେ ସତତେ ।
ଏମନ୍ତ କହି ଶ୍ରୀକୃଷ୍ଣ ତଳପ ଉପରେ
ଶୟନକଲେ ରାଧାଙ୍କୁ ଅନାଇଁଣ ଧୀରେ ।
ତା ଦେଖି ରାଧିକାଦେବୀ ଆନନ୍ଦିତା ହେଲେ
କରଯୋଡ଼ି ପତିଙ୍କର ଆଗେ ଜଣାଇଲେ ।
ବୋଇଲେ ହେନାଥ ପୂର୍ବକାଳର ବୃତ୍ତାନ୍ତ
ସମ୍ପ୍ରତିରୂପେ ସ୍ମରଣା କରୁଛୁ ସନ୍ତତ ।
ମୋତେଙ୍କୁ ଯାହା ବଡ଼ବୋଲି କହୁଛ ଆପଣ
ତୁମ୍ଭ ପାଦ ସେବାରେ ତ ସେ ଫଳ ବୋଲି ଜାଣ
ମାୟାରେ ମୋହିତ ସିନା କରୁଅଛ ଦେବ
ତୁମ୍ଭ ବିନା ଜଗତେ କେ ବଡ଼ ବୋଲାଇବ ।
ତୁମ୍ଭ ମାୟାରେ ସର୍ବଦା ତ୍ରିଭୁବନ ସାରା
ଭ୍ରମଣ କରଇ ଯେହ୍ନେ ରଥ ଚକ୍ରଧାରା ।
ଆବର ମୋର ସମାନ କହୁଛ କାମିନୀ
ମୋହିତ ହୁଅନ୍ତି ତୁମ୍ଭ ମାୟାଜାଲ ହେନି ।
ତୁମ୍ଭ ଭକତର ଶାପେ ଗୋପନାରୀ ହୋଇ
ଜାତହେଲି ମର୍ତ୍ତ୍ୟ ଲୋକେ ଦେଖ ଏବେ ମୁହିଁ ।
ପୁଣି ଶତେବର୍ଷ ଯାଏ ତୁମ୍ଭର ସହିତ
ବିରହ ଅବସ୍ଥା ମୋର ହୋଇବ ନିଶ୍ଚିତ ।
ସାକ୍ଷାତେ ଜଗଦୀଶ୍ୱର ଅଟ ତୁମ୍ଭ ଯେଣୁ
ପ୍ରିୟ ଅପ୍ରିୟ ତୁମ୍ଭର ନାହିଁ କେହି ତେଣୁ ।
ଯେଉଁରୂପେ ଭଜନ୍ତି ଯେହୁ କରେ ତୁମ୍ଭଠାରେ
ଦୟା କରିଥାଅ ପ୍ରଭୁ ତୁମ୍ଭେ ସେ ପ୍ରକାରେ ।
ତୃଣକୁ ପର୍ବତ ପୁଣି ପର୍ବତକୁ ତୃଣ
କରିବାକୁ ସମରଥ ଅଟ ଜନାର୍ଦ୍ଦନ ।
ତଥାପି ଦମ୍ପତିଭାବ ଥିବାରୁଟି ମୁହିଁ
ତୁମ୍ଭ ବିରହ ବେଦନା ସହି ନ ପାରଇ ।
ପ୍ରଥମରେ କେନ ପାଦପଦ୍ମରେ ତୁମ୍ଭର
ପଡ଼ିଅଛୁ ମୋର ନେତ୍ର ଯେରୂପେ ଭ୍ରମର ।

କିନ୍ତୁ ସେ ପ୍ରତ୍ୟେକ ଅଙ୍ଗ ଦେଖିବା ଇଚ୍ଛାରେ
ନିବର୍ତ୍ତାଇ ନେଇଅଛୁ ମୁଁ ଅତି ଯତ୍ନରେ ।
ଏରୂପେ ରାଧିକା ବାକ୍ୟ ଶୁଣି ଜନାର୍ଦ୍ଦନ
ହସିଣ ତାହାଙ୍କୁ ପୁଣି କହିଲେ ବଚନ ।
ବୋଇଲେ ଗୋ ଦେବୀ ଯାହା ହେବ ସେତେବେଳେ
ପୂର୍ବରୁ ତା ନିରୂପିତ କରଇ ମୁଁ ହେଳେ ।
ଆବର ଯାହାର କର୍ମେ ଥାଏ ଯେଉଁ କଥ
ମୁଁ ମଧ୍ୟ ତାହା ନ କରି ପାରଇ ଅନ୍ୟଥା ।
ବିଧାତାର ବିଧାତା ମୁଁ ଅଟଇଟି ଜାଣ
ଯାହାର ଲଲାଟେ ଯାହା କରଇ ଲେଖନ ।
ଖଣ୍ଡନ କରିବା ପାଇଁ ତହିଁରୁ କଶ୍ଚିତ
ତିନିଭୁବନରେ କେହି ନୁହେଁ ସମରଥ ।
ତୁମ୍ଭେ ଏବେ ଏଠାରେ କ୍ଷଣେମାତ୍ର ରହ
ତୁମ୍ଭ ମନୋରଥ ପୂର୍ଣ୍ଣ କରିବ ନିଶ୍ଚୟ ।
ଏମନ୍ତ କହି ଶ୍ରୀକୃଷ୍ଣ ତୁନି ହେବା କାଳେ
ବ୍ରହ୍ମା ଆସି ତାଙ୍କ ଆଗେ ପ୍ରବେଶ ହୋଇଲେ
ଅକ୍ଷମାଳା କମଣ୍ଡଳୁ ହସ୍ତେ ତାହାଙ୍କର
ବ୍ରହ୍ମତେଜ ଅଙ୍ଗରେ ଝଟଇ ସୁନ୍ଦର ।
ପ୍ରଥମରେ ଶ୍ରୀକୃଷ୍ଣଙ୍କ ପାଦେ ପ୍ରଜାପତି
ମସ୍ତକ ଲଗାଇ କଲେ ବହୁତ ଯେ ସ୍ତୁତି ।
ସେ ଅନ୍ତେ ରାଧାଦେବୀଙ୍କ ପାଶରେ ମିଳିଲେ
ମସ୍ତକ ନୁଆଇଁ ତାଙ୍କ ପାଦରେ ନମିଲେ ।
ପୁଣି କମଣ୍ଡଳୁ ଜଳ ନେଇ ତତକ୍ଷଣ
ଭକ୍ତିରେ କଲେ ବେନି ହସ୍ତେ ପ୍ରକ୍ଷାଳନ ।
ଆଗେ ଜଗାହୋଇ ତହୁଁ ଆରମ୍ଭିଲେ ସ୍ତୁତି
ବୋଇଲେ ନମସ୍ତେ କୃଷ୍ଣପ୍ରିୟା ଭଗବତୀ ।
ହେ ମାତ ଶ୍ରୀକୃଷ୍ଣଙ୍କର ପ୍ରସାଦରେ ମୁହିଁ
ତୁମ୍ଭ ପାଦ ଦରଶନ କଲି ଏହିଠାଇଁ ।
ଷାଠିଏ ସହସ୍ର ବର୍ଷ ପୁଷ୍କର ତୀର୍ଥରେ
ତପ କଲି ମନ ଦେଇ ଶ୍ରୀକୃଷ୍ଣଙ୍କଠାରେ ।
ସେ ସକାଶୁ ପରମାତ୍ମା ପ୍ରସନ୍ନ ହୋଇଲେ
ବର ଦେବାପାଇଁ ମୋର ପାଶକୁ ଆସିଲେ ।
ବୋଇଲେ ହେ ପିତାମହ ଇଚ୍ଛା ଅଛି ଯାହା
ମାଗ ଏହିକ୍ଷଣି ଆମ୍ଭେ ଦେଇଯିବୁ ତାହା ।
ତାହା ଶୁଣି ହରଷରେ ବୋଇଲି ହେ ଦେବ
ରାଧିକା ଚରଣ-ପଦ୍ମ ମୋତେ ଦେଖାଇବ ।

ଶ୍ରୀକୃଷ୍ଣ ବୋଇଲେ ବତ୍ସ କାଳାନ୍ତରେ ମୁହିଁ
ଦରଶନ କରାଇବି ସମୀପରେ ରହି ।
ଏମନ୍ତ ବୋଲି ସେ ତହୁଁ ଅନ୍ତର ହୋଇଲେ
ଏଥିଠାରେ ଏବେ ତାହା ପୂର୍ଣ୍ଣ କରାଇଲେ ।
ମହତ ଲୋକଙ୍କ କଥା ନୁହଇ ତ ଆନ
ସେ ଯୋଗୁ କଲି ମୁଁ ତୁମ୍ଭ ପାଦ ଦରଶନ ।
ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ ଆଦି କରି ଯେତେ
ପ୍ରକୃତି ଅଂଶରେ ଜାତ ଅଟନ୍ତି ସମସ୍ତେ ।
ତୁମ୍ଭେ ଏକା ଶ୍ରୀକୃଷ୍ଣଙ୍କ ଅର୍ଦ୍ଧାଙ୍ଗରୁ ଜାତ
ସକଳ ଗୁଣେ ତାହାଙ୍କ ତୁଲ୍ୟ ଅଟ ମାତ ।
ରାଧାକୃଷ୍ଣ ଦୁହିଙ୍କର ଭେଦ ଭାବ କରୁ
ବେଦଶାସ୍ତ୍ରେ କେଉଁଠାରେ ମୁହିଁ ନ ଦେଖିଛୁ ।
କେଉଁଠାରେ ବ୍ରହ୍ମାଣ୍ଡରେ ଚରାଚର ପ୍ରାଣୀ
ଜନମି ଅଛନ୍ତି ଶ୍ରୀକୃଷ୍ଣଙ୍କ ଅଂଶ ଯେନି ।
ସେରୂପେ ତୁମ୍ଭର ଅଂଶ ହୋଇଛି ମିଶ୍ରିତ
ଅଟ ଯେଣୁ ତୁମ୍ଭେ ସର୍ବ ଶକ୍ତିରୂପେ ସ୍ଥିତ ।
ପୁରୁଷେ ଶ୍ରୀହରିଙ୍କର ଅଂଶଜ ଅଟନ୍ତି
ତୁମ୍ଭ ଅଂଶରେ ସମ୍ଭୂତ ଅଟେ ସ୍ତ୍ରୀଜାତି ।
କୃଷ୍ଣଙ୍କ ଆତ୍ମାରେ ତୁମ୍ଭେ ଅଛ ଦେହ ଧରି
ତୁମ୍ଭ ଆତ୍ମା ଯେନି ରହିଅଛନ୍ତି ଶ୍ରୀହରି ।।
ଦୁହିଙ୍କୁ ନିର୍ମିତ କଲା କେଉଁ ଶିଳ୍ପିକାର
ବିଚାରିଲେ ହେଲେ କହି ହେଉନାହିଁ ସାର ।
ମୋହଠାରୁ ଯେଉଁ ଚାରିବେଦ ଜନ୍ମିଛନ୍ତି
ତାହାଙ୍କୁ ପଢ଼ିଣ ଲୋକେ ପଣ୍ଡିତ ବୋଲାନ୍ତି ।
ସେ ଚାରିବେଦ ମଧ୍ୟରେ ତୁମ୍ଭ ଗୁଣରାଶି
କେଉଁଠାରେ ହେଲେ କୁହାନୋହିଛି ବିଶେଷି
ବେଦ ଅବା ବିଜ୍ଞଜନେ ନ କହିବେ ଯାହା
ସାମାନ୍ୟ ଲୋକ କି କହିପାରେ କେବେ ତାହା
ତୁମ୍ଭଙ୍କୁ ସ୍ତୁତି କରିବା ପାଇଁ କେ ସମର୍ଥ
ହେବା ପରି ମୋତେ ଦିଶୁନାହିଁ ଏ ଜଗତ ।
ବୁଦ୍ଧିର ଜନନୀ ତୁମ୍ଭେ ଅଟ ମହାସତୀ
କେ ପାରିବ ଅବା କରି ତୁମ୍ଭର ଯେ ସ୍ତୁତି ।
ଯେଉଁ ପଦାର୍ଥ ଚକ୍ଷୁର ଗୋଚର ଅଟଇ
ତାହାକୁ ତ ବର୍ଣ୍ଣିବାର ସହଜ ନୁହଇ ।
ଅଦୃଶ୍ୟ-ଅଶ୍ରୁତ ପୂର୍ବ ଯେବଣ ପଦାର୍ଥ
ତାକୁ ବର୍ଣ୍ଣିବାକୁ କେବା ହେବ ସମରଥ ।

ପୁଣି ଅବା ସଦାଶିବ କି ଅବା ଅନନ୍ତ
ଧର୍ମ ଆଦି କେହି ନ ଜାଣନ୍ତି ତୁମ୍ଭ ଅନ୍ତ ।
ଏଥିପାଇଁ ମୋତେ ଦେବୀ ନିନ୍ଦା ନ କରିବ ।
କ୍ଷମାଗୁଣେ ଦୋଷାଦୋଷ ବିଚାର କରିବ ।
ଆଶ୍ରିତ ଜନଙ୍କର ଦୋଷଗୁଣ ଯେତେ ଯେତେ
କ୍ଷଣକରେ ପରବୃତ୍ତି ହେଉଥାଏ ନିତ୍ୟେ ।
ଈଶ୍ୱର ଈଶ୍ୱରୀଙ୍କର ଯୋଗ୍ୟାଯୋଗ୍ୟଠାରେ
ଦୟା ଜାତ ହୋଇଥାଏ ସମାନ ପ୍ରକାରେ ।
ନିଜ ପୁତ୍ର ଦୁଷ୍କୃତିକୁ ଜନକ ଜନନୀ
କ୍ଷମା କରନ୍ତି ତାହାର ଦୋଷକୁ ନ ଘେନି ।
ଏହିରୂପେ କହି ବ୍ରହ୍ମା ଦୁହିଙ୍କ ଆଗରେ
ଉଭାହୋଇ ବନ୍ଦନ କରି ଯୋଡ଼ି ଭକ୍ତିଭରେ ।
ବ୍ରହ୍ମାଙ୍କ ରଚିତ ଏହି ଶ୍ରୀକୃଷ୍ଣଙ୍କ ସ୍ତୋତ୍ର
ପଠନ କଲେ ଶରୀର ହୁଅଇ ପବିତ୍ର ।
ରାଧା ଶ୍ରୀକୃଷ୍ଣଙ୍କ ପାଦେ ଦାସତ୍ୱ ମିଳଇ
ଜରା ବ୍ୟାଧି ମୃତ୍ୟୁ ଆଦି ବାଧି ନ ପାରଇ ।
ଅନ୍ତକାଳେ ସର୍ବଲୋକ ଅତିକ୍ରମ କରି
ଗୋଲୋକରେ ରହେ ମହା ସୁଖେ ବିହରି ।
ଆହେ ନାରଦ ମହର୍ଷି ଶୁଣ ଦେଇ ମନ
ଶୁଣିଣ ରାଧିକା ପ୍ରଜାପତିଙ୍କ ବଚନ ।
ବୋଇଲେ ଆହେ ବିଧାତା ତୁମ୍ଭଠାରେ ମୋର
ସନ୍ତୋଷ ହୋଇଲା ମାଗ ଇଚ୍ଛା ମତେ ବର ।
ବ୍ରହ୍ମା ବୋଇଲେଗୋ ଦେବୀ ତୁମ୍ଭ ପାଦତଳେ
ମୋହର ମନ ଆସକ୍ତ ହେଉ ସବୁବେଳେ ।
ତାହା ଶୁଣି ରାଧାଦେବୀ ବୋଇଲେ ତା ହେଉ
ଆମ୍ଭ ପାଦ ପଙ୍କଜରେ ତୁମ୍ଭ ମନ ରହୁ ।
ସେ ଅନ୍ତରେ ପ୍ରଜାପତି ଶ୍ରୀକୃଷ୍ଣ ରାଧାଙ୍କୁ
ପ୍ରଣାମ କଲେ ମନରେ ପ୍ରକାଶି ଭକ୍ତିକୁ ।
ପୁଣି ବେଗେ ଯାଇ ଶୁଷ୍କକାଷ୍ଠ ହୁତାଶନ
ଆଣାଇ ଦୁହିଙ୍କ ପାଶେ ଜାଳିଲେ ବହନ ।
ତା ଦେଖି ଶ୍ରୀକୃଷ୍ଣ ଶଯ୍ୟା ଉପରୁ ଉଠିଲେ
ରାଧାଙ୍କୁ ଘେନି ଅନଳ ପାଶରେ ବସିଲେ ।
ବେଦୋକ୍ତ ବିଧି ପ୍ରକାରେ ତହୁଁ ପ୍ରଜାପତି
ତୃପତ କଲେ ବହ୍ନିଙ୍କୁ ଦେଇଣ ଆହୁତି ।
ସେ ଅନ୍ତେ ରାଧାକୃଷ୍ଣଙ୍କୁ ଉଠାଇ ଆଣିଲେ
ସାତଥର ପ୍ରଦକ୍ଷିଣ କରାଇଣ ଦେଲେ ।
ଆସନେ ବସାଇ ପୁଣି ଦୁହିଙ୍କ ହସ୍ତକୁ
ଏକତ୍ର ରଖି ବାନ୍ଧିଲେ ପଢ଼ିଣ ମନ୍ତ୍ରକୁ ।
ପାରିଜାତ ପୁଷ୍ପମାଳା ରାଧାଙ୍କ ହସ୍ତରେ
ଘେନାଇଁ ଦେଲେ ସେ ନେଇ କୃଷ୍ଣଙ୍କ ଗଳାରେ
ସେହିପରି ଶ୍ରୀକୃଷ୍ଣଙ୍କ ହସ୍ତେ ଏକମାଳା
ଘେନାଇ ଭୂଷିତ କଲେ ରାଧାଙ୍କର ଗଳା ।
ପୁଣି ନବ ପୀଠପରେ କୃଷ୍ଣଙ୍କୁ ବସାଇ
ରାଧାଙ୍କୁ ରଖିଲେ ତାଙ୍କ ବାମଭାଗେ ନେଇ ।
କୃତାଞ୍ଜଳି କରାଇଣ ସେ ବରକନ୍ୟାଙ୍କୁ
ପଢ଼ାଇଲେ ବେଦ ବିଧି ପ୍ରକାରେ ମନ୍ତ୍ରକୁ ।
ଭକ୍ତିଭରେ ପୁଣି ତାଙ୍କୁ ନିଜେ ପ୍ରଣମିଲେ
ରାଧାଙ୍କୁ ଶ୍ରୀକୃଷ୍ଣହସ୍ତେ ସମର୍ପଣ କଲେ ।
କରଯୋଡ଼ି ଦୁହିଙ୍କର ଆଗେ ଉଭାହୋଇ
ସ୍ତୁତିକଲେ ସେ ଅନ୍ତରେ ମସ୍ତକ ନୁଆଇଁ ।
ଯେଉଁରୂପେ କନ୍ୟା ପିତା ଆପଣା ସୁତାକୁ
ବରହସ୍ତେ ଦେଇ ଅନୁନୟ କରେ ତାକୁ ।
ସେହିପରି ପ୍ରଜାପତି ଶ୍ରୀକୃଷ୍ଣଙ୍କ ହାତେ
ରାଧାଙ୍କୁ ସମର୍ପି ସ୍ତୁତି କଲେ ତୋଷଚିତ୍ତେ ।
ଆକାଶରେ ଥାଇ ତାହା ଦେଖି ଦେବଗଣ
ଦୁନ୍ଦୁଭି ବଜାଇ କଲେ ପୁଷ୍ପ ବରଷଣ ।
ଗନ୍ଧର୍ବେ ପଞ୍ଚମସ୍ୱରେ ଗାଇଲେ ସଙ୍ଗୀତ
ଅପସରାଗଣ କଲେ ନାନାବିଧ ନୃତ୍ୟ ।
ସ୍ତୁତିଅନ୍ତେ ପ୍ରଜାପତି ପୁଣି ଶ୍ରୀକୃଷ୍ଣଙ୍କୁ
ବୋଇଲେ ହେ ପ୍ରଭୁ ମୋରେ କରୁଣ ଦୟାଳୁ
ତୁମ୍ଭ ଦୁହିଙ୍କ ପାଦରେ ନିଶ୍ଚଳ ଭକତି
ଦକ୍ଷିଣା ସ୍ୱରୂପେ ମୋତେ ଦିଅ ରାଧାପତି ।
ବ୍ରହ୍ମାଙ୍କ ବଚନ ଶୁଣି ଦେବ ନରହରି
ବୋଇଲେ ମାଗିଲ ଯାହା ଆହେ କୁଶଧାରି ।
ସନ୍ତୁଷ୍ଟ ମନରେ ତାହା ଦେଉଅଛୁ ମୁହିଁ
ଘେନ ଦକ୍ଷିଣା ସ୍ୱରୂପେ ପୀଢ଼ିକ ବହି ।
ସ୍ୱସ୍ଥାନକୁ ଯାଇ ଏବେ ନିଜ କର୍ମ କର
ମୋହର ଆଜ୍ଞାରେ ଶୁଭ ହୋଇବ ତୁମ୍ଭର ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
ନମସ୍କାର କରି ବ୍ରହ୍ମା ସେ ଦୁହିଙ୍କୁ ପୁଣି ।
ନିଜ ଭବନରେ ଯାଇ ପ୍ରବେଶ ହୋଇଲେ
ଏଥିଅନ୍ତରେ ଯାହା ହେଲା ଶୁଣ ଏବେ ଭଲେ ।

ପାଶରୁ ଅନ୍ତର ସହୁଁ ହେଲେ ପ୍ରଜାପତି
ଶ୍ରୀକୃଷ୍ଣଙ୍କ ମୁଖ ଗହୁଁ ରାଧିକା ଶ୍ରୀମତୀ ।
ଲଜ୍ଜାବଶେ କ୍ଷଣେ ମୁଖ ପୋତିଣ ରହିଲେ
ପୁଣି ପତିଙ୍କର ପାଦ ଧରି ପ୍ରଣମିଲେ ।
ସେ ଅନନ୍ତେ କର୍ପୂର ମିଶା ଚନ୍ଦନ ଅଣାଇ
ତିଳକ ଦେଲେ ତାହାଙ୍କ ଲଲାଟରେ ନେଇ ।
କେତେକ ପୁଷ୍ପି ଶ୍ରୀଅଙ୍ଗେ ବୋଳିଣ ହରଷେ
ସୁଧା ମଧୁ ପୂର୍ଣ୍ଣ ପାତ୍ର ଦେଲେ ନେଇ ପାଶେ ।
ଭୋଜନ କଲା ଉତ୍ତାରେ ଦେବ ଜନାର୍ଦ୍ଦନ
ଉତ୍ତମ ତାମ୍ବୁଳ ତହୁଁ କଲେ ସମର୍ପଣ ।
ଚର୍ବିତ କରିଣ ତାହା ପ୍ରିୟାଙ୍କୁ ସେ ପୁଣି
ଦିଅନ୍ତେ ଆନନ୍ଦେ ସେବନକଲେ ଠାକୁରାଣୀ
ଶ୍ରୀକୃଷ୍ଣ ତାହାଙ୍କଠାରୁ ଚର୍ବିତ ତାମ୍ବୁଳ
ମାଗିବାରୁ ନ ଦେଇ ସେ ହସିଣ କେବଳ ।
ତା ଦେଖି ଚନ୍ଦନ ଭୁଲେ ସୁବାସ କର୍ପୂର
ମିଶାଇ ପ୍ରିୟାଙ୍କ ଅଙ୍ଗେ ବୋଳି ଦାମୋଦର ।
କାମଶରେ ବଶ ହୋଇ କୋଳାଗତ କଲେ
ବିବିଧ ପ୍ରକାରେ ରତିରସରେ ମାତିଲେ ।
ଯେଉଁ କାମ ତାଙ୍କୁ ଧ୍ୟାନ କରୁଥାଏ ନିତି
ଜଉତୁକେ ହେଲେ ପ୍ରଭୁ ତାର ବଶବର୍ତ୍ତୀ ।
ଯାହାଙ୍କର ଭକ୍ତଗଣ ଜିଣନ୍ତି କାମକୁ
ସେ ପୁଣି ଜିଣିଲ ଏବେ ସେ ମହାପ୍ରଭୁଙ୍କୁ ।
ବିଧାତାର ବିଧାନ ତ ବିଚିତ୍ର ଅଟଇ
ସହଜରେ ମନୁଷ୍ୟ ତା ଜାଣି ନ ପାରଇ ।
ବକ୍ଷସ୍ଥଳେ ବସାଇଣ ଶ୍ରୀକୃଷ୍ଣ ରାଧାଙ୍କୁ
ମାଳାବନ୍ଧ ଫେଇ ମୁଖେ ଦେଲେ ଚୁମ୍ବନକୁ ।
ରତିଯୁଦ୍ଧେ ରାଧାଙ୍କର କ୍ଷୁଦ୍ରଘଣ୍ଟି ଛିଡ଼ି
ଗୋଟି ଗୋଟି ହୋଇ ମହୀପରେ ଗଲା ଗଡ଼ି ।
ଚୁମ୍ବନରେ ଓଷ୍ଠରାଗ ଆଶ୍ଳେଷେ ପତ୍ରକ
ଶୃଙ୍ଗାରେ କଜ୍ଜଳ ଆଉ ସିନ୍ଦୂର ତିଳକ ।
ବିପରୀତ ସମ୍ଭୋଗରେ ଅଳକ୍ତକ ଚିହ୍ନ
କ୍ରମେ କ୍ରମେ ହୋଇଗଲା ସବୁ ଭିନ୍ନ ଭିନ୍ନ ।
ନବସଙ୍ଗମ ସୁଖରେ ବିମୋହିତ ହୋଇ
କୋମଳ ଶଯ୍ୟାରେ ଦେବୀ ପଡ଼ିବାରୁ ଶୋଇ ।
ଆକର୍ଷଣ କରି ତାଙ୍କୁ ପୁଣି ଦେବହରି
ନଖଦନ୍ତକ୍ଷତ ଦେଲେ ଅଙ୍ଗେ ନେଇକରି ।
ଶୃଙ୍ଗାର ସମୟେ କର କଙ୍କଣ କିଙ୍କିଣୀ
ଶବଦରେ କାମଧନୁ ଟଙ୍କାରକୁ ଜିଣି ।
ଶ୍ରୀକୃଷ୍ଣ ରାଧାଙ୍କୁ ନେଇ ଏକାନ୍ତ ସ୍ଥାନରେ
ବିବସନ ମୁକ୍ତକେଶ କଲେ କୌତୁକରେ ।
ସେହିପରି ରାଧା ଦେବୀ ତ ଭୂଷାବେଶବାସ
ଶ୍ରୀକୃଷ୍ଣଙ୍କଠାରୁ ସେହିକ୍ଷଣି କଲେ ହ୍ରାସ ।
ତା ଦେଖି ଶ୍ରୀକୃଷ୍ଣ ତାଙ୍କ ହସ୍ତରୁ ଓଟାରି
ରତ୍ନ ଦରପଣ ନେଲେ ପରିହାସ କରି ।
ରାଧିକା ମଧ୍ୟ ତାହାଙ୍କ ହସ୍ତରୁ ମୁରଲୀ
ଛିଙ୍କିନେଲେ ଏବେ ମୁହିଁ ଶୁଝାଇଲି ବୋଲି
ପରସ୍ପରେ ରତିରସେ ପରସ୍ପରର ମନ
ସନ୍ତୁଷ୍ଟ କଲେ ସେକାଳେ ଆନନ୍ଦ ତପୋଧନ ।
ଏହିପରି କେତେକ୍ଷଣ ପରେ କାମଯୁଦ୍ଧ
ପ୍ରବର୍ତ୍ତିଲା ଦୁହିଁଙ୍କର ହୋନ୍ତେ ମନବୋଧ ।
ସେ ସକାଶୁ ମୁରଲୀକୁ ରାଧା ଦେବୀ ନେଇ
ଶ୍ରୀକୃଷ୍ଣଙ୍କ ହସ୍ତେ ଦେଲେ ସେକ୍ଷଣି ଫେରାଇ ।
ଶ୍ରୀକୃଷ୍ଣ ମଧ୍ୟ ରତନ ଦରପଣ ଗୋଟି
ଫେରାଇଲେ ରାଧାଙ୍କର ସମୀପରେ ଭେଟି ।
ପୁଣି ତାଙ୍କ କେଶପାଶ ମଣ୍ଡି କୁସୁମରେ
ବେଶ କରାଇଲେ ଅତି ଉତ୍ତମ ପ୍ରକାରେ ।
ସେ କାଳରେ ଉଠେ ରାଧା ଶ୍ରୀକୃଷ୍ଣଙ୍କୁ ବେଶ
କରିବା ପାଇଁ ବିଚାର କରନ୍ତେ ମାନସ ।
ତରୁଣ ବପୁ ସରୂପ ତେଜି ଭାବଗ୍ରାହୀ
ଶପୂନ କଲେ ବାଳକ ଆକୃତିକୁ ବହି ।
ଯେରୂପେ ନନ୍ଦ ହସ୍ତରୁ ଆଣିଥିଲେ ସଖୀ
ଦେଖିଲେ ସେହି ପ୍ରକାର ହୋଇଛନ୍ତି ପତି ।
ସେ ସକାଶୁ ଦୁଃଖଭରେ ନିଶ୍ୱାସ ପକାଇ
କୋଇଲେହେ ପ୍ରାଣେଶ୍ୱର ମୋଠାରେ କପାଇଁ
ନିର୍ଦ୍ଦୟ ହୋଇଣ ମାୟାରୂପ ଦେଖାଇଲ
ଏଥିରେ କି ଅବା ଯଶ ପୌରୁଷ ପାଇଲ ।
ଏମନ୍ତ ବୋଲି ଉଚ୍ଚରେ କଲେ ସେ ରୋଦନ
ପଡ଼ିଲେ ମହୀ ଉପରେ ହରାଇଣ ଜ୍ଞାନ ।
ଶ୍ରୀକୃଷ୍ଣ ମଧ୍ୟ ତାହାଙ୍କୁ ଅନାଇ କାନ୍ଦିଲେ
ବାଳକକଳକୁ ସେ ତ ଆଶ୍ରେ କରିଥିଲେ ।
ସେ ସମୟେ ଆକାଶରୁ ଶୁଭିଲା ଏ ବାଣୀ
କାହିଁକି କ୍ରନ୍ଦନ କରୁଅଛ ଠାକୁରାଣୀ ।

ଶ୍ରୀକୃଷ୍ଣଙ୍କ ପାଦପଦ୍ମ ସୁମରଣା କରି
ସକଳ ଦୁଃଖ ଖଣ୍ଡିତ ହୋଇବ ତୁମ୍ଭର ।
ସ୍ୱୟଂମୂରତି ସ୍ଥାପନ କରି ନିଜ ଘରେ
ଉପସ୍ଥିତ ହୋଇଥିବ ରାସ ମଣ୍ଡଳରେ ।
ସେହିଠାରେ ପତିଙ୍କର ସଙ୍ଗମ ପାଇବ
ତୁମ୍ଭର କାମନା ପୂର୍ଣ୍ଣ କରିବେ ମାଧବ ।
ଏବେ ଶିଶୁ ରୂପଧାରୀ ଶ୍ରୀକୃଷ୍ଣଙ୍କୁ ଧରି
ବ୍ରଜପୁରକୁ ପ୍ରୟାଣ କର ଗୋ ସୁନ୍ଦରୀ ।
ଏହା ଶୁଣି ବୃଷଭାନୁ କନ୍ୟକା ସତ୍ୱରେ
ଶ୍ରୀକୃଷ୍ଣଙ୍କୁ କୋଳେ ଘେନି ଗଲେ ଗୋପପୁରେ
ତତ୍କ୍ଷଣରେ ଯୋଗମାୟା ଅନ୍ତର୍ହିତ ସେହି
ମନପବନ ବେଗରେ ପ୍ରବେଶିଲେ ଯାଇ ।
ବରଷା ପବନ ବାଜି ତାହାଙ୍କ ଶରୀର
କମ୍ପିତ ହୋଇଛି ବସ୍ତ୍ର ସିକ୍ତ ଅଛି ନୀର ।
ଯଶୋଦାଙ୍କ ସମୀପରେ ପ୍ରବେଶ ହୋଇଲେ
ତୁମ୍ଭରକୁ ନିଅ ବୋଲି କୋଳେ ସମର୍ପିଲେ ।
ଆବର ବୋଇଲେ ଗୋଷ୍ଠେ ଥିଲେ ତୁମ୍ଭ ପତି
ଏ ବାଳକ ରଖିଥିଲେ ତାହାଙ୍କର କତି ।
ଏହି ସମୟରେ ଘୋର ବରଷା ହୋଇଲା
ପବନ ବଜ୍ରାଘାତରେ ପୃଥିବୀ କମ୍ପିଲା ।
ଅନ୍ଧକାରେ ସର୍ବଦିଗ ହୋଇଲା ଆବୃତ
ତାହା ଦେଖି ବ୍ରଜରାଜ ଭୟ ଘେନି ଚିତ୍ତ ।
ମୋତେ ବୋଇଲେ ଗୋ ଶୀଘ୍ରେ ବାଳକକୁ ନିଅ
ଯତନରେ ଯଶୋଦାଙ୍କ ସମୀପରେ ଦିଅ ।
ତାଙ୍କ ଆଜ୍ଞା ପରମାଣେ ଏହାଙ୍କୁ ମୁଁ ଧରି
ଆସିଲି ବରଷାଜଳ ପବନରେ ଥରି ।
ବହୁତ କଷ୍ଟରେ ତୁମ୍ଭ ପାଶକୁ ଆଣିଲି
ଯତନରେ ରଖ ମୁହିଁ ଯିବି ଗୃହେ ଚଳି ।
ଏରୂପେ କହି ରାଧିକା ନିଜପୁରେ ଗଲେ
ଯଶୋଦା ପୁତ୍ରକୁ ଘେନି ଆନନ୍ଦେ ରହିଲେ ।
ସେହିଦିନଠାରୁ ରାଧାଦେବୀ ନିତି ନିତି
ସନ୍ଧ୍ୟାସମୟରେ ରାସମଣ୍ଡଳକୁ ଯାନ୍ତି ।
ଶ୍ରୀକୃଷ୍ଣଙ୍କ ସଙ୍ଗେ କ୍ରୀଡ଼ା କରି ସେହିଠାରେ
ବାହୁଡ଼ି ଆସନ୍ତି ପୁଣି ପ୍ରଭାତ କାଳରେ ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବିବାହ ସମ୍ବାଦ
ଶୁଣିଲ ତ ଭଲକରି ହେ ମୁନି ନାରଦ ।
ଆଉ ଯେଉଁ କର୍ମମାନ କରିଛନ୍ତି ସେହି
ଆମୂଳ କରି କହିବା ଶୁଣ ମନଦେଇ ।
କହଇ କ୍ଷେତ୍ରମୋହନ ଆହେ ରାଧାକାନ୍ତ
ଖଣ୍ଡନ କର ମୋହର ଅଶେଷ ଦୁରିତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧାକୃଷ୍ଣଙ୍କର ବିବାହ ବିଷୟ
ବର୍ଣ୍ଣନେ ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡ଼ଶ ଅଧ୍ୟାୟ

### ଶ୍ରୀକୃଷ୍ଣ ଦ୍ୱାରା ବକ, କେଶୀ, ପ୍ରଲମ୍ବାଦି ଦାନବମାନଙ୍କର ମୃତ୍ୟୁ ଓ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଯାତ୍ରା ପ୍ରସ୍ତାବ

କହୁଛନ୍ତି ନାରାୟଣ ନାରଦ ଆଗରେ
ଶୁଣ ମୁନି ଯାହା ହେଲା ଏଥୁ ଅନନ୍ତରେ ।
ଦିନେ ଗୋପାଳ ଶିଶୁଙ୍କୁ ଘେନି ନନ୍ଦସୁତ
ଶ୍ରୀବନ ମଧ୍ୟରେ ଯାଇ ହେଲେ ଉପସ୍ଥିତ ।
ଗୋରୁ ଚରାଇବା ପାଇଁ ବୁଲି ସ୍ଥାନେ ସ୍ଥାନେ
ସେଠାରୁ ଯାଇ ପ୍ରବେଶ ହେଲେ ମଧୁବନେ ।
ସେ ବନରେ ବଳଦେବ ସହିତେ ଶ୍ରୀହରି
ଭ୍ରମଣକଲେ ସୁସ୍ୱାଦୁ ଜଳପାନ କରି ।
ସେ ବନରେ ଭୟଙ୍କର ରାକ୍ଷସ ଗୋଟାଏ
ଥିଲା ପର୍ବତ ପରାୟେ ଅଟେ ତାର କାୟେ ।
ଧାରଣ କରିଥାଏ ସେ ବକର ଆକୃତି
ଦେଖିବା ଲୋକର ମନେ ଜନମାଏ ଭୀତି ।

ଗୋପାଳ ବାଳକ ମେଳେ ଶ୍ରୀକୃଷ୍ଣ ରାମଙ୍କୁ
ବୁଲବାର ଦେଖି ବଢ଼ାଇଲା ସେ ତୁଣ୍ଡକୁ ।
ଯେରୂପେ ଅଗସ୍ତ୍ୟ ମୁନି ଇଲ୍ୱଳ ଭାଇକ
ଗ୍ରାସକଲେ ତାର ଜୀବ ନାଶିବା ପାଇଁକ ।
ସେହିପରି ଗୋପଶିଶୁ ଗଣ ସହିତରେ
ସେ ଦୁଇଭାଇଙ୍କି ଗିଳିଦେଲା ନେସ ସତ୍ୱରେ ।
ଶ୍ରୀକୃଷ୍ଣଙ୍କୁ ବକଦୈତ୍ୟ କରିବାରୁ ଗ୍ରାସ
ଦେଖି ଦେବତାଙ୍କ ମନେ ଜନମିଲା ତ୍ରାସ ।
ହାହାକାର କରି ସର୍ବେ ଶସ୍ତ୍ର ଧରି କରେ
ପ୍ରହାରକଲେ ସେ ଦୁଷ୍ଟ ରାକ୍ଷସ ଉପରେ ।
ଦଧୀଚିଙ୍କ ଅସ୍ଥିଜାତ ବଜ୍ର ଝମକାଇ
ଫିଙ୍ଗିଲେ ବାସବ ତାର ପୃଷ୍ଠକୁ ଲକ୍ଷାଇ ।
ସେ ଘାତରେ ରାକ୍ଷସର ଜୀବନ ନ ଗଲା
କେବଳ ପକ୍ଷୀଗୋଟିଏ ପୋଡ଼ି ଭସ୍ମ ହେଲା ।
ନୀହାର ଅସ୍ତ୍ରପ୍ରହାର କଲେ ନିଶାପତି
ତହିଁରେ ନ ମଲା ମଧ୍ୟ ଦୈତ୍ୟ ଦୁଷ୍ଟମତି ।
କାଳଦଣ୍ଡ ପ୍ରହାରିଲେ ଜନ୍ତୁଙ୍କର ନାଥ
ଦୈତ୍ୟ ଦେହେ ବାଜି ତାହା ହେଲା ଧୂଳିସାତ
ବାୟବ୍ୟ ଅସ୍ତ୍ରକୁ ବାୟୁ ଛାଡ଼ିଲେ ସତ୍ୱରେ
ନ ମାରି ସେ ରାକ୍ଷସଙ୍କୁ ଫିଙ୍ଗିଲା ସେ ଦୂରେ ।
ଜଳ ବରଷଣ କଲେ ବରୁଣ ରାଜନ
ତହିଁରେ ମଧ୍ୟ ନ ମଲା ଦୁଷ୍ଟ ଯାତୁଧାନ ।
ହୁତାଶନ ଅଗ୍ନିଜ୍ୱାଳା ବରଷଣ କରି
ପୋଡ଼ିଲେ ହେଁକେ ତା ପକ୍ଷ ନ ପାରିଲେ ମାରି
କୁବେରଙ୍କ ଅର୍ଦ୍ଧଚନ୍ଦ୍ର ଈଶାନଙ୍କ ଶୂଳ
କରି ନ ପାରିଲେ ନିଶାଚରକୁ ନିର୍ମୂଳ ।
ଶ୍ରୀକୃଷ୍ଣ ଗର୍ଭରେ ଥାଇ ସେ କଥା ଜାଣିଲେ
ବ୍ରହ୍ମ-ଅନଳରେ ତାକୁ ପୋଡ଼ି ପକାଇଲେ ।
ସେ ସକାଶୁଁ ବକରୂପ ଛାଡ଼ି ନିଶାଚର
ମହୀରେ ପଡ଼ିଲା ଗରଜନ କରି ଘୋର ।
ଛଟପଟ ହୋଇ କ୍ଷଣେ ଜୀବନ ଛାଡ଼ିଲା
ତା ଦେଖି ଗୋପଶିଶୁଙ୍କ ଆନନ୍ଦ ବଢ଼ିଲା ।
ଏଥୁଅନ୍ତେ ସେମାନଙ୍କ ସଙ୍ଗରେ ଶ୍ରୀହରି
କଦମ୍ବ ବନକୁ ଗଲେ ଗୋଚାରଣ କରି ।
ସେହିଠାରେ ବୃଷରୂପୀ ପ୍ରଳମ୍ବ ଅସୁର
ଉପଗତ ହେଲା ଆସି ତାହାଙ୍କ ଆଗର ।
ଗରଜନ କରି ବେନି ଶୃଙ୍ଗ ଦୋହଲାଇ
ଶ୍ରୀକୃଷ୍ଣଙ୍କୁ ଟେକି ଦେବେ ଗଲା ବେଗେ ଧାଇଁ ।
ବାଳକମାନେ ତା ଦେଖି ଭୟେ ପଳାଇଲେ
କେତେମାନେ କୃଷ୍ଣ କୃଷ୍ଣ ବୋଲିଣ କାନ୍ଦିଲେ ।
ତାହା ଦେଖି ବଳରାମ ବୋଇଲେ ରେ ଭାଇ
କ୍ଷଣେମାତ୍ର ରହ କାନ୍ଦୁଅଛ କହିଁପାଇଁ ।
ଏକ୍ଷଣି ମାରିବୁ ଆମ୍ଭେ ଏ ଦୁଷ୍ଟ ଜୀବକୁ
ଆମ୍ଭେ ଥାଇଁ ଥାଇଁ ଭୟ କରୁଛ କାହାକୁ ।
ଏତେବୋଲି ବେନିଭାଇ ବୃଷରାକ୍ଷସର
ଦୁଇଶୃଙ୍ଗ ଧରି କଲେ ଓଟାରି ପଥର ।
ବିଶାଳ ଶିଳାଉପରେ କଚାଡ଼ିଲେ ନେଇ
ଜୀବନ ଛାଡ଼ିଲା ଦୈତ୍ୟ ନେତ୍ର ଲେଉଟାଇ ।
ଗୋପବାଳକେ ତା ଦେଖି ହରଷିତ ହେଲେ
ରାମକୃଷ୍ଣଙ୍କୁ ବହୁତ ପ୍ରଶଂସା କଲେ ।
ଏଥି ଅନ୍ତେ ଶ୍ରୀକୃଷ୍ଣ ଜ୍ୟେଷ୍ଠ ଭାଇଙ୍କ ସଙ୍ଗରେ
ଗୋଧନ ଘେନି ମିଳିଲେ ଭାଣ୍ଡୀର ବନରେ ।
ଗୋପ ଶିଶୁଗଣ ତାଙ୍କ ନିକଟରେ ରହି
ଖେଳିଲେ ଆଗରେ ଗୋରୁ ଗୋଷ୍ଠକୁ ଅଡ଼ାଇ ।
ଏହି ସମୟରେ କେଶୀ ନାମେ ନିଶାଚର
ପ୍ରବେଶ ହୋଇଲା ଆସି କୃଷ୍ଣଙ୍କ ଆଗର
ବେନିକର ବଢ଼ାଇଣ ଝିମ୍ପିନେଇ ତାଙ୍କୁ
କନ୍ଧରେ ବସାଇଗଲା ଆକାଶ ମାର୍ଗକୁ ।
ପୁଣି ଆସି ମହୀପରେ ପ୍ରବେଶ ହୋଇଲା
ତୁଣ୍ଡରେ ପୂରାଇ ଶ୍ରୀକୃଷ୍ଣଙ୍କୁ ଚୋବାଇଲା ।
ତାର ଅଭିପ୍ରାୟ ଯହୁଁ ଶ୍ରୀକୃଷ୍ଣ ଜାଣିଲେ
ବଜ୍ରପରି ଆପଣାର ଶରୀରକୁ କଲେ ।
ସେ ସକାଶୁ ରାକ୍ଷସର ଦୁଇପାଟି ଦନ୍ତ
ଭଡ଼ଭଡ଼ ଭାଜି ତଳେ ପଡ଼ିଲା ଭରତ ।
ଯେଉଁରୂପେ ଶିଳାଖଣ୍ଡ ଚୋବାଇଲେ ଲୋକ
ଉପୁଡ଼ି ପଡ଼ଇ ତାର ସବୁ ଦାନ୍ତଯାକ ।
ସେହିପରି ସେ ଦୈତ୍ୟର ହୁଅନ୍ତେ ଅବସ୍ଥା
ଯଥାଯୋଗେ ଆଉ କହି ନ ପାରିଲା କଥା ।
କ୍ଷଣେ ପଦଘାତେ ପଡ଼ି ଛଟପଟ ହେଲା
ଦେହ ଛାଡ଼ି ଯମ ନଗରକୁ ଚାଲିଗଲା ।
ତାହା ଦେଖି ଦେବଗଣ ଦୁନ୍ଦୁଭି ବଜାଇ ।
ପୁଷ୍ପ ବରଷିଲେ ଶ୍ରୀକୃଷ୍ଣଙ୍କ ଶିରେ ନେଇ ।

ଏହି ସମୟରେ ତହିଁ ପାର୍ଷଦଗଣ
ଆସିଲେ କରି ଉତ୍ତମ ରଥ ଆରୋହଣ ।
ମସ୍ତକେ କିରୀଟ ପୀତବସ୍ତ୍ର ପରିହିତ
କଣ୍ଠେ କୁଣ୍ଡଳ ବନମାଳା ବିଭୂଷିତ ।
କିଶୋରବୟସ ମଣ୍ଡିତ ପ୍ରସନ୍ନ ବଦନ
ଅଙ୍ଗରେ ଶୋଭିତ ଅଟେ ଅଳଙ୍କାରମାନ ।
ଭଣ୍ଡୀର ବନରେ ହରି ଥିଲେ ଯେଉଁଠାରେ
ସମସ୍ତେ ପ୍ରବେଶ ତହିଁ ହୋଇଲେ ସତ୍ୱରେ ।
ଶ୍ରୀକୃଷ୍ଣଙ୍କ ପାଦ ଧରି ନମସ୍କାର କଲେ
ଗୁପ୍ତଦେହ ତ୍ୟାଗକରି ଗୋଲୋକକୁ ଗଲେ ।
ସେଠାରେ ଦାନବ ତନୁ ବହିଣ ଯେମାନେ
ରହିଲେ କୃଷ୍ଣଙ୍କୁ ଧ୍ୟାନକରି ମନେ ମନେ ।
ନାରଦ ବୋଇଲେ ଅବ୍ୟୟୁ ଋଷେ କପାଇଁ
ଦାନବ ଦେହ ବହିଲେ କହ ଋଷିସାଇଁ ।
ନାରାୟଣ ବୋଇଲେ ହେ ମୁନିଗଣଈଶ
ଶୁଣ କହିବା ବିସ୍ତାରି ପୂର୍ବ ଇତିହାସ ।
ଶ୍ରୀହରିଙ୍କ ଗୁଣଗ୍ରାମ ବର୍ଣ୍ଣନା କାଳରେ
କହିଛନ୍ତି ଶଙ୍କର ସେ ପୁଷ୍କର ତୀର୍ଥରେ ।
ସେ କଥା ତୁମ୍ଭ ଆଗରେ କରିବି ପ୍ରକାଶ
ଆମୂଳ କାରଣ ଏବେ ଶୁଣି ହୁଅ ତୋଷ ।
ପୂର୍ବେ ଗନ୍ଧମାଦନରେ ଗନ୍ଧବାହ ନାମେ
ଗନ୍ଧର୍ବେକ ତପ କରୁଥିଲା ଯଥାକ୍ରମେ ।
ତାର ଧର୍ମ ପତ୍ନୀଠାରୁ ସପ୍ତଗୋଟି ସୁତ
ଜାତହେଲେ ବୁଦ୍ଧି ଗୁଣେ ଅତ୍ୟନ୍ତ ଅଦ୍ଭୁତ ।
ଶ୍ରୀକୃଷ୍ଣଙ୍କ ଚରଣରେ ଦେଇଣ ମାନସ
ପୂଜା କରନ୍ତି ପ୍ରତ୍ୟହ ଦେଇ ପଦ୍ମପୁଷ୍ପ ।
ସେ ଅନ୍ତେ ସେବନ କରି ପାଦୋଦକ ଜଳ
ଦିନ ନେଉଥାନ୍ତି ସବୁବେଳେ ହୋଇ ମେଳ ।
ସେମାନେ ଦୁର୍ବାସାଙ୍କର ଶିଷ୍ୟରୂପେ ରହି
ସେବାକଲେ ଶ୍ରୀହରିଙ୍କ ପାଦପଦ୍ମ ଧ୍ୟାୟି ।
ତାହାଙ୍କର ନାମମାନ କହୁଅଛୁ ଶୁଣ
ବସୁଦେବ ସୁପାର୍ଶ୍ୱକ ସୁବର୍ଣ୍ଣକ ପୁଣ ।
ସହୋଦର ଏହି ପ୍ରକାରେ ସପ୍ତଗୋଟି ଭାଇ
ଗୁରୁଙ୍କର ଉପଦେଶ ମସ୍ତକରେ ବହି ।
ପୁଷ୍କର ତୀର୍ଥେ ଦୁଷ୍କର ତପ ଆଚରିଲେ
କେତେକାଳ ପରେ ସିଦ୍ଧିସଙ୍ଗେ ଲଭ କଲେ ।
ଦୁର୍ବାସା ମୁନିଙ୍କଠାରୁ ଯୋଗ ଶିକ୍ଷା କରି
ଜ୍ୟେଷ୍ଠ ସହୋଦର ବସୁଦେବ ତପସ୍ୱୀ ।
ଦାର ପରିଗ୍ରହ ଆଦି ସଂସାର ବିଷୟ
ତ୍ୟାଗ କରି ତପୋବଳେ ହେଲେ ବ୍ରହ୍ମମୟ
ସେଅନ୍ତରେ ମୋର ଦେହ ଗୂଢ଼ ଗୋଲୋକରେ
ରହିଲେ ଶ୍ରୀକୃଷ୍ଣଙ୍କର ପାର୍ଶ୍ୱଦ ରୂପରେ ।
ଅନ୍ୟ ଭାଇମାନେ ନିଜ ତପସ୍ୟାରେ ରତ
ହୋଇ ଶ୍ରୀକୃଷ୍ଣଙ୍କଠାରେ ନିବେଶିଲେ ଚିତ୍ତ ।
ଦିନେ ପଦ୍ମପୁଷ୍ପ ତୋଳି ଆଣିବାର ପାଇଁ
ଚିତ୍ର ସରୋବରଠାକୁ ଗଲେ ଛଅଭାଇ ।
ଫୁଲ ତୋଳି ସାରି ତହୁଁ ଫେରିବାରବେଳେ
ଶିବ ଦୂତଗଣେ ଆସି ସେଠାରେ ମିଳିଲେ ।
ତାଙ୍କୁ ଦେଖି ବୋଇଲେରେ ତୁମ୍ଭେ ଅଟ କିଏ
ଏ ସ୍ଥାନକୁ ଆସି ଫୁଲ ନେଉଛ ନିର୍ଭୟେ ।
ଏମନ୍ତ ବୋଲି ସେକ୍ଷଣି ଗୋଡ଼ାଇ ଧଇଲେ
ହସ୍ତ ପାଦ ବାନ୍ଧି ଶିବଙ୍କର ପାଶେ ନେଲେ
ଶଙ୍କରଙ୍କୁ ଦେଖି ଆଗେ ସେ ମୁନି ତନୟେ
ଭକ୍ତିରେ କରଯୋଡ଼ି କହିଲେ ବିନୟେ ।
ଆଶୀର୍ବାଦ କରି ତାଙ୍କୁ ପ୍ରଭୁ ଶୂଳପାଣି
ବୋଇଲେ କିଏସେ ତୁମ୍ଭେ ଅଟ ଆହେ ମୁନି
ପାର୍ବତୀଙ୍କ ସରୋବରେ ଇଚ୍ଛାମତେ ଯାଇ
ଫୁଲ ତୋଳି ନେଉଅଛ କାହାକୁ ନ କହି ।
ସହସ୍ର ଯକ୍ଷ ରକ୍ଷିତ ଯେଉଁ ସରୋବର
ତହିଁକି ଆସିଲ କପାଁ ନ କରି ବିଚାର ।
ପ୍ରତିଦିନ ଦଶଶତ ପଦ୍ମ କୁସୁମରେ
ପୂଜା କରନ୍ତି ପାର୍ବତୀ ଶ୍ରୀହରି ପଦ୍ମରେ ।
ଛଅମାସ ପୂର୍ଣ୍ଣ ହେବାଯାଏ ଏହିପରି
ଉପାସନା କରିବେ ସେ ବ୍ରତ ଅନୁସରି ।
ତୁମ୍ଭେମାନେ ତାହାଙ୍କର ବ୍ରତ ଭଗ୍ନ କଲ
ସେ ସକାଶୁ ନଷ୍ଟପୁରେ ଦଣ୍ଡକୁ ପାଇଲ ।
ଶିବଙ୍କ ବଚନ ଶୁଣି ସେ ବୈଷ୍ଣବଦୟ
କରଯୋଡ଼ି ଜଣାଇଲେ କରି ମହାଭୟ ।
ବୋଇଲେ ହେ ଦେବ ଆମ୍ଭେ ଗନ୍ଧର୍ବପ୍ରବର
କୁମର ଅଟୁ ସମସ୍ତେ ଗନ୍ଧବାହଙ୍କର ।
ଶ୍ରୀହରିଙ୍କୁ ପ୍ରତିଦିନ ପଦ୍ମ ପୁଷ୍ପ ଦେଇ
ଜଳପାନ କରୁଅଛୁ ତାଙ୍କ ପାଦ ଧ୍ୟାୟି ।

ବହୁତସ୍ଥାନରେ ଖୋଜ କେଉଁଠାରେ ହେଲେ
କାମଳ ଗୋଟିଏ ଦେଖି ନ ପାଇଲୁ ଡୋଳେ ।
ସେ ସକାଶୁ ଏଥିଠାକୁ ଆସିଲୁ ହେ ଦେବ
ଗ୍ରହଣ କରିବୁ ଯେଉଁ ଦଣ୍ଡ ଆଜ୍ଞା ହେବ ।
ପାର୍ବତୀଙ୍କ ସରୋବର ବୋଲିଣ ଏହାକୁ
ନ ଜାଣିବା ଯୋଗେ କଲୁ ଏମନ୍ତ କର୍ମକୁ ।
ଆପଣଙ୍କ ପାଦେ ଏବେ ଦେଲୁ ଏ ସମସ୍ତ
ପ୍ରସନ୍ନ ହୋଇବ ଆମ୍ଭଠାରେ ଆହେ ନାଥ ।
ଆପଣଙ୍କୁ ସମର୍ପଣ କଲେ ଏ କମଳ
ସେ ଅନ୍ତରେ ଆମ୍ଭେ ପାନ କରିବୁ ଜଳ ।
ଯେଉଁ ଦେବତାଙ୍କୁ ଆମ୍ଭେ ଦେଉଅଛୁ ଦତ୍ତ
ତାହାଙ୍କର ଅର୍ଦ୍ଧ ଅଂଶ ଆପଣ ଅଟନ୍ତି ।
ଅଥବା ଏକ ସ୍ୱରୂପ ଅଟେ ଦୁହିଙ୍କର
ନାମ ମାତ୍ରେ ବହିଅଛୁ ଭିନ୍ନ ଆକାର ।
ଆମ୍ଭଠାରୁ ପଦ୍ମପୁଷ୍ପ ଉପହାର ଘେନ
ସମ୍ପୂର୍ଣ୍ଣ କର ଆମ୍ଭର ମନକଥା ଜାଣି ।
କିନ୍ତୁ ସେ ରୂପକୁ ଆମ୍ଭେ ଭାବୁଅଛୁ ନିତ୍ୟ
ସେ ରୂପ ଦେଖାଅ ପ୍ରଭୁ ଦୟାକରି ସତ୍ୟ ।
ଦ୍ୱିଭୁଜ ମୁରଲୀ ହସ୍ତ ଶ୍ୟାମଳ ସୁନ୍ଦର
ଏକ ମୁଖ ଦ୍ୱିନୟନ ପୀତବାସ ଧର ।
ପ୍ରସନ୍ନ ବଦନ ରତ୍ନ ଭୂଷଣ ଭୂଷିତ
କୌସ୍ତୁଭ ମଣିରେ ବକ୍ଷସ୍ଥଳ ବିରାଜିତ ।
ପାରିଜାତ ପୁଷ୍ପମାଳା ଶୋଭିତ ଶରୀର
ଲୀଳାମୟ କୋଟିକାମ ରୂପ ମନୋହର ।
ନବଯୁବା ରାଧାଦେବୀ ହୃଦୟ ରତନ
ବ୍ରହ୍ମା ଆଦି ଦେବଙ୍କର ବନ୍ଦିତ ଚରଣ ।
ଆମ୍ଭସମ ଭକ୍ତଜନ ଅନୁଗତକାରୀ
ଏମନ୍ତରୂପେ ପ୍ରକାଶ ହୁଅ ହି ପୁରାରି ।
ଏହିରୂପେ କହି ସେହି ଗନ୍ଧର୍ବପ୍ରବର
କରଯୋଡ଼ି ଉଭାହେଲେ ଶମ୍ଭୁଙ୍କ ଛାମୁର ।
ଶ୍ରୀକୃଷ୍ଣ ରୂପ ସ୍ମରଣ ମାତ୍ରେ ତାହାଙ୍କର
ପୁଲକ ଜନ୍ମିଲା ନେତ୍ରୁ ବହିଗଲା ନୀର ।
ତାହାଦେଖି ମହାଦେବ ଅତି ଆନନ୍ଦରେ
ବୋଇଲେ ଶୁଣିବାହେଉ ଆହେ ତପୀବରେ ।
ଜାଣିଲି ବୈଷ୍ଣବମୁଖ୍ୟ ଅଟ ତୁମ୍ଭେମାନେ
ବିଷ୍ଣୁଙ୍କ ଅର୍ଚ୍ଚନା କରୁଅଛ ସବୁଦିନେ ।
ପାଦରଜରେ ପବିତ୍ର କରିବାକୁ ମହୀ
ଭ୍ରମଣ କରୁଛ ଏଥେ ସନ୍ଦେହ ସେ ନାହିଁ ।
ଶ୍ରୀକୃଷ୍ଣ ଭକ୍ତଙ୍କୁ ଦେଖିବାକୁ ମୋର ମନ
ଉତ୍ସୁକ ଅଟଇ ଜାଣ ଆହେ ତପୋଧନ ।
ସାଧୁ ସମାଗମ ଅଟେ ତିନିଲୋକେ ସାର
ଦର୍ଶନ ଦୁର୍ଲ୍ଲଭ ସାଧୁଜନମାନଙ୍କର ।
ତୁମ୍ଭେମାନେ ଅଟ ସବୁ ଦେବଙ୍କର ପ୍ରିୟ
ଆସକ୍ତ ହେଉଛି ତୁମ୍ଭଠାରେ ମୋ ହୃଦୟ ।
କିନ୍ତୁ ମୁଁ ପୂର୍ବରୁ ଯାହା କରିଛୁ ସ୍ୱୀକାର
ଅନ୍ୟଥା ନୋହିବ ତାହା କେତେକ ମାତର
ତାହାର ସ୍ୱରୂପ ଏବେ କହୁଅଛୁ ଶୁଣ
ପାର୍ବତୀଙ୍କ ବ୍ରତେ ହୋଇଅଛି ଯେ ବିଧାନ ।
ବ୍ରତ ସମାପତ ନ ହେଉଣୁ ଯେହୁ ଆସି
ପଦ୍ମପୁଷ୍ପ ତୋଳିନେବ ସରୋବରେ ପଶି ।
ଅସୁର ଯୋନିରେ ତାର ଜନମ ହୋଇବ
ଏକଥାକୁ କେହି ଆନ କରି ନ ପାରିବ ।
ଏରୂପେ ଶାପ ବିଧାନ କରିଅଛୁ ମୁହିଁ
ତୁମ୍ଭଙ୍କୁ ଦେଖିଣ ଏବେ ସନ୍ତୋଷ ଲଭଇ ।
ଶ୍ରୀକୃଷ୍ଣ ଭକତ ତୁମ୍ଭେମାନେ ଅଟ ଯେଣୁ
ଶାପ ଭୋଗିବାକୁ ବାଧ ହେବ ସେ କାରଣୁ ।
ମୋହର ମନ ଦୁଃଖିତ ହେଲେହେଁ ସେ ପାଇଁ
ପ୍ରତିକାର କରିବାକୁ ବାଟ ଦିଶୁନାହିଁ ।
ଶ୍ରୀକୃଷ୍ଣ ଭକତଙ୍କର ଅଶୁଭ କଳ୍ପିତ
କରିବାର କେତେବେଳେ ନୁହଇ ଉଚିତ ।
ସେ ସକାଶୁ ତୁମ୍ଭେମାନେ ଆମ୍ଭ ଶାପ ମାନି
ଦାନବ ଯୋନିରେ ଜାତ ହେବ ଯାଇ ପୁଣି ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ବାଞ୍ଛିଅଛ ମନେ
ଦେଖିବ ସେ ଘେନି ତାଙ୍କ ରୂପ ବୃନ୍ଦାବନେ ।
ତେତେବେଳେ ଦେହ ତେଜି ଦିବ୍ୟରଥେ ବସି
ଗୋଲୋକ ଭୁବନେ ଯିବ ଜାଣ ଆହେ ଋଷି ।
ଶ୍ରୀକୃଷ୍ଣଙ୍କ ପାରିଷଦ ହୋଇଣ ରହିବ
ଏରୂପେ ତୁମ୍ଭର ବାଞ୍ଛା ସମ୍ପୂର୍ଣ୍ଣ ହୋଇବ ।
ବର୍ତ୍ତମାନ ମୋହଠାରେ ଯାହା ଦେଖିବାକୁ
ଇଚ୍ଛା କରିଅଛ ସୁଖେ ଦେଖ ସେ ରୂପକୁ ।
ଏମନ୍ତ ବୋଲି ଶଙ୍କର ବିଷ୍ଣୁଙ୍କ ରୂପରେ
ପ୍ରକାଶିତ ହେଲେ ସେହି ମୁନିଙ୍କ ଆଗରେ ।

ତା ଦେଖି ସେମାନେ ଅତି ଆନନ୍ଦିତ ହେଲେ
ଲୋତକ ବୁହାଇ କର ଯୋଡ଼ି ପ୍ରଣମିଲେ ।
ସେ ଅନ୍ତେ ଦାନବଯୋନି ଲଭି କେତେକାଳେ
ମଥୁରା ନଗରେ ଆସି ସମସ୍ତେ ରହିଲେ ।
ପୂର୍ବରୁ ତ ବାସୁଦେବ ହୋଇଥିଲେ ମୁକ୍ତ
ସୁହୋତ୍ର ହୋଇଲେ ବକାସୁର ରୂପେ ଜାତ
ସୁଦର୍ଶନ ଜାତ ହେଲେ ପ୍ରଲମ୍ବ ନାମରେ
ସୁପାର୍ଶ୍ୱ ଜନ୍ମିଲେ କେଶୀ ରାକ୍ଷସ ରୂପରେ ।
ଶିବଙ୍କର ବରଦାନେ ଶ୍ରୀକୃଷ୍ଣଙ୍କୁ ଦେଖି
ମୁକ୍ତି ପାଇ ଗୋଲୋକକୁ ଗଲେ ହୋଇ ସୁଖୀ
ନାରଦ ବୋଇଲେ ଆହେ ମୁନିଗଣଈଶ
ଶୁଣିଲି ତୁମ୍ଭ ମୁଖରୁ ଚରିତ ବିଶେଷ ।
ଏବେ ପାର୍ବତୀ ଦେବୀଙ୍କ ବ୍ରତର ବିଧାନ
ଶୁଣିବା ପାଇଁକି ମୋର ହେଉଅଛି ମନ ।
ଏ ବ୍ରତର ଅନ୍ତେ କେ ଆରାଧ୍ୟ ଦେବତା
ଫଳରେ ଅବା ପ୍ରାପତ ହୁଏ କେଉଁକଥା ।
ପୂଜାରେ ପ୍ରଦାନ କରାଯାଏ କି ପଦାର୍ଥ
କେତେକାଳପରେ ଏହା ହୁଏ ସମାପତ ।
ବ୍ରତର ସମସ୍ତ କଥା କହ ମୋ ଆଗରେ
ଶୁଣିଲେ ସଂଶୟ ମନୁ ପଳାଇବ ଦୂରେ ।
ଏହାଶୁଣି ନାରାୟଣ ସନ୍ତୁଷ୍ଟ ହୋଇଲେ
ପାର୍ବତୀଙ୍କ ବ୍ରତ ବିଧି କହି ଆରମ୍ଭିଲେ ।
ବୋଇଲେ ଏ ବ୍ରତ ନାମ ଅଟେ ତ୍ରୈମାସିକ
ଆରାଧ୍ୟ ଦେବତା ଏଥି ଶ୍ରୀ ରାଧାନାୟକ ।
ବର୍ଷର ସମୟେ ଏହା ଆରମ୍ଭ ହୁଅଇ
ଦକ୍ଷିଣାୟନରେ ସମାପନ କରାଯାଇ ।
ପୂର୍ବ ଦିବସରେ ବ୍ରତୀ ହବିଷ୍ୟ କରିବ
ଯଥାବିଧି ଅଧିବାସ କର୍ମ କରାଇବ ।
ତହିଁ ଆରଦିନ ବ୍ରତ ଆରମ୍ଭ କରିବ
ସଂଗ୍ରହ କରିବ ମଣି ଶାଳଗ୍ରାମ କୁମ୍ଭ ।
ବୈଶାଖ ମାସରେ ଯେଉଁ ସଂକ୍ରାନ୍ତି ହୁଅଇ
ସେହିଟି ବ୍ରତ ଆରମ୍ଭ ଦିବସ ଅଟଇ ।
ପ୍ରାତଃକାଳେ ସ୍ନାନ ସନ୍ଧ୍ୟା ତରପଣ ସାରି
ସଂକଳ୍ପ କରିବ ଯେନ ମହାକାମ ଧାରି ।
ସେ ଅନ୍ତରେ ଘଟେ ମଣିଶାଳଗ୍ରାମେ ଜଳେ
ପୂଜା କରିବ ସୁବାସ ଗନ୍ଧପୁଷ୍ପ ଫଳେ ।

ପୁଣି ପଞ୍ଚ ଦେବତାଙ୍କ ଅର୍ଚ୍ଚନା କରିବ
ପଛରେ ତେବେ ଶ୍ରୀକୃଷ୍ଣଙ୍କ ଧ୍ୟାନକୁ ପଢ଼ିବ ।
ସେହି ଧ୍ୟାନର ସ୍ୱରୂପ ଶୁଣ ମୁନିବର
ପ୍ରଥମେ ବୋଲିବ ନମୋ ଶ୍ୟାମଳ ସୁନ୍ଦର ।
ଶରତ ପାର୍ବଣ ଚନ୍ଦ୍ର ସଦୃଶ ବଦନ
ପୀତବାସେ କଟିତଟ ଅତି ଶୋଭାବନ ।
ଗୋପ ଗୋପୀଜନ ମନ ମୋହନ କାରଣ
ରାଧିକାଦେବୀ ହୃଦୟ ତାପ ନିବାରଣ ।
ବ୍ରହ୍ମା ଇନ୍ଦ୍ରାଦି ଦେବତା ଗଣରେ ପୂଜିତ
ନମସ୍ତେ ଶ୍ରୀ ନରହରି ଗୋଲୋକର ନାଥ
ଏମନ୍ତ ପ୍ରକାରେ ଧ୍ୟାନ କଲାପରେ ବ୍ରତୀ
ରାଧାଦେବୀଙ୍କ ଧ୍ୟାନରେ ନିବେଶିତ ମତି ।
ବୋଲିବ ନମସ୍ତେ ରାଧା ରାସ ଅଧୀଶ୍ୱରୀ ।
ରାସ ଅଧିଷ୍ଠାତ୍ରୀ ଦେବୀ କୃଷ୍ଣମନୋହାରୀ ।
ରାସେଶ୍ୱର ବକ୍ଷସ୍ଥଳ ନିବାସକାରିଣୀ
ରସିକା ରସିକପ୍ରିୟା ପ୍ରେମ ତରଙ୍ଗିଣୀ ।
ରସିକପ୍ରବରା ରମ୍ୟାସ୍ମରୁ ମନୋରମା
ଶରତ-ପଙ୍କଜ-ନେତ୍ରୀ ସୁସ୍ମିତୁ ମଧ୍ୟମା ।
ଭଙ୍ଗିମା କଟାକ୍ଷଯୁକ୍ତ ରଞ୍ଜିତ ଲୋଚନା
ଶରତ ପୂର୍ଣ୍ଣିମା ଚନ୍ଦ୍ର ସୁନ୍ଦର ବଦନା ।
ସ୍ୱର୍ଣ୍ଣ-ଚମ୍ପକ-ବରନା ଚନ୍ଦନ ଚର୍ଚ୍ଚିତା
କସ୍ତୁରୀ ସିନ୍ଦୂର ବିନ୍ଦୁ କୁଙ୍କୁମ ଶୋଭିତା ।
ବହ୍ନି ଶୁଦ୍ଧ ବସନରେ ଶ୍ରୀଅଙ୍ଗର ଶୋଭା
ବିରାଜଇ ଯେହ୍ନେ ମଧ୍ୟ ରବି ଶଶିପ୍ରଭା ।
କର୍ଣ୍ଣଯୁଗେ ସୁଶୋଭିତ ମକର କୁଣ୍ଡଳ
ରତ୍ନହାରହାରେ ବିରାଜିତ ବକ୍ଷସ୍ଥଳ ।
କେୟୂର କଙ୍କଣ ଗୁରୁ ମଞ୍ଜୀର ଧାରିଣୀ
ନମସ୍ତେ ରାଧିକା ଦେବୀ ତ୍ରୈଲୋକ୍ୟ ପାବନୀ
ଏହିରୂପେ ଧ୍ୟାନକରି ଶ୍ରୀକୃଷ୍ଣ ରାଧାଙ୍କୁ
ପୂଜିବ ଦେଇଣ ଯେ ଷୋଡ଼ଶୋପଚାରକୁ ।
ଭିନ୍ନ ଭିନ୍ନ କରି ସବୁ ବେଦମନ୍ତ୍ର ପଢ଼ି
ଆଗରେ ରଖିବ ନାନା ଫଳପୁଷ୍ପ ବାଢ଼ି ।
ସହସ୍ରେ କମଳ ତାହା ସଙ୍ଗରେ ରଖିବ
ସ୍ୱାହା ଉଚ୍ଚାରଣ କରି ସମର୍ପିଣ ଦେବ ।
ରସାଳ କଦଳୀ ଆଦି ସ୍ୱାଦୁ ପକ୍ୱଫଳ
ଦେବ ପାନ ସକାଶରେ ସୁବାସିତ ଜଳ ।

ଶତେ ଆଠେକ ବ୍ରାହ୍ମଣ ଡକାଇ ଆଣିବ
ଭୋଜନ ଦେଇ ତାହାଙ୍କୁ ସନ୍ତୁଷ୍ଟ କରିବ ।
ଏ ବାହାରେ ଅଷ୍ଟୋତ୍ତର ଶତେକ ଆହୁତି
ଦେବ ହୋମ ଅନଳରେ ମନ୍ତ୍ର ପଢ଼ି ବ୍ରତୀ ।
ବିବିଧ ପ୍ରକାରେ ବାଦ୍ୟ ବଜାଇବ ଆଣି
ନୃତ୍ୟ ଗୀତ କରାଇବ ପୂଜାକାଳ ଜାଣି ।
ଏହିପରି ତିନିମାସ ଶେଷ ହେବା ପରେ
ପ୍ରତିଷ୍ଠା କରିବ ପୁଣି ବିଧି ଅନୁସାରେ ।
ନବେ ଗୋଟି ପଦ୍ମଫୁଲ ତୋଳାଇ ଆଣିବ
ତା ସଙ୍ଗେ ସହସ୍ରେ ଦୁବା ଅକ୍ଷତ ରଖିବ ।
ନବସହସ୍ର ସପ୍ତଶତ ବଣଗୋଟି ଫଳ
ରଖିବ ପୁଣି ତାହାଙ୍କ ସଙ୍ଗେ କରି ଠୁଳ ।
ଆଉର ବିବିଧ ଦ୍ରବ୍ୟ ଅଣାଇ ବାଢ଼ିବ
ନଇବେଦ୍ୟ ସକାଶରେ ସେ ସକଳ ଦେବ ।
ସଂସ୍କୃତ ଅଗ୍ନିରେ ନବସହସ୍ର ପ୍ରମାଣେ
ଆହୁତିଦେବ ବେଦୋକ୍ତ ବିଧିର ସମାନେ ।
ନବସହସ୍ର ବ୍ରାହ୍ମଣ ଆମନ୍ତ୍ରଣ କରି ।
ଭୁଞ୍ଜିବାକୁ ଦେବ ତାଙ୍କୁ ନାନା ଦ୍ରବ୍ୟ ଭରି ।
ନବଗୋଟି ଲଡ଼ୁ ଦାନ କରିବେ ଦ୍ୱିଜଙ୍କୁ
ପୁଣି ଦେବ ନବଗୋଟି ପୂର୍ଣ୍ଣ କଳଶଙ୍କୁ ।
ଏରୂପେ ବ୍ରତ ସମାପ୍ତ ହେବା ସମୟରେ
ଆଚାର୍ଯ୍ୟ ଦକ୍ଷିଣାଦେବ ବେଦୋକ୍ତ ପ୍ରକାରେ
ସୁବର୍ଣ୍ଣ ଶୃଙ୍ଗ ସହସ୍ରେ ବୃଷଭ ଅଣାଇଁ
ତାହାଙ୍କୁ ଦାନକରିବ ଦକ୍ଷିଣାକୁ ଦେଇ ।
ଏରୂପେ ବ୍ରତ ବିଧାନ ଅଟେ ଆହେ ମୁନି
ଧନ ଜନ ସଉଭାଗ୍ୟ ହୁଏ ଏହା ଘେନି ।
ଯେଉଁ ସ୍ତ୍ରୀ କରେ ଯଥାବିଧି ଏ ବ୍ରତକୁ
ପତି ପୁତ୍ର ଅଇଶ୍ୱର୍ଯ୍ୟ ମିଳଇ ତାହାକୁ ।
ଦାସପରି ପୁତ୍ର ହୋଇଥାଏ ଆଜ୍ଞାକାରୀ
ବାକ୍ୟ ପାଳନ କରଇ ଭରତା ତାହାରି ।
ଶୟନ ସ୍ୱପନ ଜ୍ଞାନେ ଶ୍ରୀହରି ସ୍ମରଣ
ହୁଅଇ ତାହାର ସବୁ ସମୟରେ ଜାଣ ।
ପ୍ରଥମରେ ଏହି ବ୍ରତ କଲେ ଯେଉଁମାନେ
ତାହାଙ୍କ ନାମ କହୁଛି ଶୁଣ ସାବଧାନେ ।
ସ୍ୱୟମ୍ଭୁବ ମନୁପ୍ରିୟା ଶତରୂପା ସତୀ
ଏ ମହା ବ୍ରତରେ ଆଗେ ନିବେଶିଲେ ମତି ।
ଅତ୍ରେୟ ମୁନି ତାଙ୍କର ପ୍ରେରିତ ହେଲେ
ତାଙ୍କ ସମ୍ମତରେ ଦେବହୂତି ମଧ୍ୟ କଲେ ।
ହବିର୍ଭୂତି ପୁଲସ୍ତ୍ୟଙ୍କ ପ୍ରେରିତ ପଣେ
ନିଯୁକ୍ତ କଲେ ଏ ମହାବ୍ରତ ଆଚରଣେ ।
ମେଘ୍ୱଣୀ ମଧ୍ୟ ମନୁଙ୍କ ଆଦେଶ ପ୍ରକାରେ
ଆଚରିଲେ ଏ ବ୍ରତକୁ ବିଧି ଅନୁସାରେ ।
ଗୌତମଙ୍କ ପ୍ରେରିତ କରି ରତିଦେବୀ
କଲେ ଏ ବ୍ରତକୁ ତାଙ୍କ ପାଦୋଦକ ସେବି ।
ବୃହସ୍ପତିଙ୍କ କାମିନୀ ତାରା ମହାସତୀ
ଏ ବ୍ରତ କଲେ ବଶିଷ୍ଠ ମୁନିଙ୍କୁ ନିଜତି ।
ଶଚୀଦେବୀ ତାଙ୍କଠାରୁ ଦେଖି ସେ କାଳରେ
ବୃହସ୍ପତିଙ୍କୁ ପ୍ରବୋଧି କରିଣ ସତ୍ୱରେ ।
ଏହି ବ୍ରତରେ ସକଳ ସମ୍ଭାର ମିଶାଇ
ପୂଜା କଲେ ଶ୍ରୀକୃଷ୍ଣଙ୍କଠାରେ ମନଦେଇ ।
ମରୀଚଙ୍କ ଉପଦେଶ ଘେନି ସ୍ୱାହାବଳା
ଆଚରିଲେ ଏହି ବ୍ରତ ନ କରିଣ ହେଳା ।
ତା ଦେଖି ପାର୍ବତୀ ଦେବୀ ଶିବଙ୍କ ଆଗରେ
ଉଭା ହୋଇଣ କହିଲେ କର ଯୋଡ଼ି ଶିରେ ।
ବୋଇଲେ ହେ ନାଥ ମୁହିଁ କରିବି ଏ ବ୍ରତ
ପ୍ରସନ୍ନ ହୋଇ ଅନୁଜ୍ଞା ଦିଅନ୍ତୁ ତୁରିତ ।
ସକଳ ମଙ୍ଗଳ ହେତୁ ଏ ବ୍ରତ ଅଟଇ
ଶ୍ରୀହରିଙ୍କ ଆରାଧନା ଏଥିରେ ହୁଅଇ ।
ବେଦପାଠ ଅଧ୍ୟୟନ ମହୀ ପ୍ରଦକ୍ଷିଣ
ଶ୍ରୀହରିଙ୍କ ପୂଜାଠାରୁ ଅଟଇ ନିଊନ ।
କରଇ ଯେ ସୁମରଣ ଶ୍ରୀହରିଙ୍କୁ ନିତି
ଜୀବ ଥାଉ ଥାଉ ତାକୁ ମିଳଇ ମୁକତି ।
ତାରପାଦ ଧୂଳି ଲାଗି ପୂତ ହୁଏ ମହୀ
ଦରଶନେ ତିନିଲୋକ ପବିତ୍ର ହୁଅଇ ।
ବ୍ରହ୍ମା ବିଷ୍ଣୁ ସଦାଶିବ ଧର୍ମ ସନାତନ
ଅନନ୍ତ ଗଣେଶ ଆଦି ସର୍ବ ଦେବଗଣ ।
ଯାହାଙ୍କର ଦରଶନେ କୃତକୃତ୍ୟ ହୋଇ
ଧ୍ୟାନ କରୁଥାନ୍ତି ଯାହା ପାଦେ ଚିତ୍ତ ଦେଇ ।
ସେ ପ୍ରଭୁଙ୍କୁ ଆରାଧନା କରେ ଯେଉଁ ଲୋକ
ତାପରି ଜଗତେ କେହି ନୁହଇ ବିବେକ ।
ସେହି ତ ଅଟନ୍ତି ଇଷ୍ଟ ଦେବତା ମୋହର
ପାଇଛି ତାଙ୍କ ପ୍ରସାଦେ ମୁଁ ଦିବ୍ୟକୁମର ।

ଆପଣଙ୍କ ଶତରୂପେ ପାଇଅଛୁ ପୁଣି
ପିତା ମୋର ହିମାଳୟ ପର୍ବତ ଅଗ୍ରଣୀ ।
ଯେଉଁ ସ୍ତ୍ରୀମାନଙ୍କର ପତି ପୁତ୍ର ପିତା
ଯୋଗ୍ୟ ଅଟନ୍ତି ତାଙ୍କର ନାହିଁ କିଛି ଚିନ୍ତା ।
ଏରୂପେ ପାର୍ବତୀଙ୍କର ବଚନକୁ ଶୁଣି
ହସିଣ ଶଙ୍କର ତାଙ୍କୁ କହିଲେ ଏ ବାଣୀ ।
ବୋଇଲେ ଗୋ ଦେବୀ ତୁମ୍ଭେ ଲକ୍ଷ୍ମୀ ସ୍ୱରୂପିଣୀ
ଆବର ଶକ୍ତି ସ୍ୱରୂପା ଜଗତ ଜନନୀ ।
ଯାହାଙ୍କର ଥିବ ତୁମ୍ଭେ ତାଠାରେ ସକଳ
ଐଶ୍ୱର୍ଯ୍ୟ ଆସି ନିଜେ ହେଉଥିବେ ଠୁଳ ।
ବ୍ରହ୍ମା ବିଷ୍ଣୁ ମୁଁ ଏପରି ଆମ୍ଭେ ତିନିଜଣ
କରୁଅଛୁଁ ଯାହା ସୃଷ୍ଟି ସ୍ଥିତି ସଂହାରଣ ।
ତୁମ୍ଭ ପ୍ରସାଦରେ ତାହା ହେଉଅଛୁ ଜାଣ
ତୁମ୍ଭ ବିନା ଜଗତେ କେ ହୁଏ ବଳବାନ ।
ହିମାଳୟ ମୂର୍ତ୍ତି ପୁଣି ଗଣେଶ କାର୍ତ୍ତିକ
ତୁମ୍ଭ ହେତୁ ବୋଲାଉଛୁ ସଂସାରେ ଅଧିକ ।
ବେଦରେ ଲିଖିତ ଅଛି ପତି ଆଜ୍ଞା ହେତୁ
ଇଷ୍ଟ କାର୍ଯ୍ୟରେ ପ୍ରବୃତ୍ତ ହୋଇବ କାମିନୀ ।
ସେ ସକାଶୁ ତୁମ୍ଭେ ଏବେ ମୋ ଆଜ୍ଞା ପ୍ରକାରେ
କର ଏ ଉତ୍ତମ ବ୍ରତ ବିଧି ଅନୁସାରେ ।
ଯେଉଁ ସ୍ତ୍ରୀମାନେ ଏହା କରିଛନ୍ତି ଶେଷ
ତାଙ୍କଠାରୁ ତୁମ୍ଭେ କର କିଞ୍ଚିତ ବିଶେଷ ।
ସନତ୍କୁମାର ମୁନି ପୁରୋହିତ ହୋଇ
ଥିବେ ବ୍ରତପାରଣ କର୍ମ କରାଇବା ପାଇଁ ।
ପୁଷ୍ପଫଳ ଆଦି ଯେତେ ଦ୍ରବ୍ୟ ଲୋଡ଼ା ହେବ
ଯତ୍ନ ଅନ୍ତରେ ମୁହିଁ ଅଣାଇବି ସବୁ ।
ଆବର ଦ୍ୱିଜଙ୍କୁ ଡାକି ମିଷ୍ଟଦ୍ରବ୍ୟମାନ
ଉପଯୁକ୍ତ ସମୟରେ ଭୁଞ୍ଜାଇବ ଜାଣ ।
ଭଣ୍ଡାର ରକ୍ଷକ ହେବେ ଧନ ଅଧୀଶ୍ୱର
ଦାନାଧ୍ୟକ୍ଷ ହେବି ମୁହିଁ ବ୍ରତରେ ତୁମ୍ଭର ।
ଧନଦାତ୍ରୀ ହେବେ ଦେବୀ କମଳବାସିନୀ
ଜଳଦାତା ବରୁଣ ଯେ ସୂପକାର ବହ୍ନି ।
ବସ୍ତ୍ର ବାହକ ହୋଇବେ ଯକ୍ଷ ରକ୍ଷଗଣ
ତାହାଙ୍କର ଅଧ୍ୟକ୍ଷ ହେବେ ଷଡ଼ାନନ ।
ସ୍ଥାନ ସଂସ୍କାର କରତା ପବନ ହୋଇବେ
ପରିବେଷ୍ଟ ପଣେ ସୁରସଜ୍ଜନ ରହିବେ ।

ତହିଁରେ ଅଧିନାୟକ ହେବେ ଶଶଧର
ଯୋଗ୍ୟାଯୋଗ୍ୟ ସଂକଳନା କରିବେ ଭାସ୍କର ।
ବ୍ରତ ଉପଯୁକ୍ତ ସବୁ ଦ୍ରବ୍ୟ ସମର୍ପିବ
ଫଳ ପୁଷ୍ପ ଆଦି ତହୁଁ ଅଧିକରେ ଦେବ ।
କର୍ମଠ ଦ୍ୱିଜଙ୍କୁ ଆଣି ନିମନ୍ତ୍ରଣ କରି
ସନ୍ତୁଷ୍ଟ କର ମାନସ ଦାନରେ ତାଙ୍କରି ।
ସମାପତ ଯେଉଁଦିନ ହୋଇବ ଏ ବ୍ରତ
ଦକ୍ଷିଣା ଦେଇ ତାହାଙ୍କୁ କରିବ ତୃପତ ।
ଏହିରୂପେ ଆଜ୍ଞା ଦ୍ୟନ୍ତେ ଦେବ ପଶୁପତି
ଏ ମହାବ୍ରତକୁ କଲେ ପର୍ବତ ଦୁହିତା ।
ବ୍ରତଶେଷେ ଦ୍ୱିଜଗଣ ରତ୍ନ ହାର ହାର
ଦକ୍ଷିଣାସ୍ୱରୂପେ ବହି ନେଲେ ସେ ଅପାର ।
ଆହେ ନାରଦ ମହର୍ଷି ଇତିହାସ କଥା
ଶୁଣିଲ ତ ପାର୍ବତୀଙ୍କ ବ୍ରତର ବ୍ୟବସ୍ଥା ।
ଏବେ ଶ୍ରୀକୃଷ୍ଣଙ୍କ ବାଳ ଚରିତକୁ ଶୁଣ
ଦାନବଙ୍କୁ ନାଶକରି ପ୍ରଭୁ ଜନାର୍ଦ୍ଦନ ।
ଗୋପାଳ ଶିଶୁଙ୍କୁ ଘେନି ନିଜ ଗୃହେ ଗଲେ
ବାଳକେ ସମସ୍ତ କଥା ବିସ୍ତାରି କହିଲେ ।
ତାହା ଶୁଣି ଗୋପଗଣ ହେଲେ ଆଚମ୍ବିତ
ଭୟରେ ନନ୍ଦ ରାଜନ ହୋଇଲେ ସ୍ତମ୍ଭିତ ।
ବୃଦ୍ଧ ଗୋପମାନେ ମିଳି ସଭାରେ ବସିଲେ
ନାନା ଦରକାର ଯୁକ୍ତି ତର୍କ ଆରମ୍ଭିଲେ ।
ତାହାଙ୍କ କଥା ପ୍ରକାରେ ସେ ନନ୍ଦ ରାଜନ
ନିଶ୍ଚୟ କଲେ ଛାଡ଼ିବାପାଇଁ ସେହି ସ୍ଥାନ ।
ବୃନ୍ଦାବନକୁ ଯିବାକୁ ମନେ ବିଚାରିଲେ
ଭୃତ୍ୟଙ୍କୁ ଡକାଇ ଏକ ଶକଟ ରଚିଲେ ।
ନନ୍ଦଙ୍କ ଅନୁଜ୍ଞା ପାଇ ବାଳବୃଦ୍ଧ ତୁଲେ
ଶ୍ରୀକୃଷ୍ଣ ରାମଙ୍କୁ ସଙ୍ଗେ ଘେନି ବାହାରିଲେ ।
ଶ୍ରୀକୃଷ୍ଣଙ୍କ ଗୁଣମାନ କରି କେଉଁମାନେ
ଚଳିଲେ ବିବିଧ ବେଶ ସଜାଇ ଯତନେ ।
କେଉଁମାନେ ଗଲେ ହସ୍ତେ ବେଣୁଶାଖା ଧରି
କେ ଗୃଳଲ ଗୀତ ଗାଇ କରତାଳ ମାରି ।
ସ୍ୱରଯନ୍ତ୍ର ଧରି କେହୁ ବଜାଇଲେ ଧୀରେ
ଖୋଷିଲେ କେ ନବପୁଷ୍ପ କର୍ଣ୍ଣର ଉପରେ ।
ମୁକୁଳ କୁସୁମ କେହୁ ମୁଣ୍ଡପରେ ଖୋଷି
ଡେଇଁ ଡେଇଁ ଗଲେ କେବା କଣକୁ ଆଉଁଷି ।

ନବକୋଟି ଗଲେ ଚଢ଼ି ଗୋପାଳ ବାଳକ
ଗୋପିକା ଚଳିଲେ ସପ୍ତ କୋଟିରୁ ଅଧିକ ।
ରାଧାଙ୍କର ସହଚରୀ ସୁଶୀଳା ପ୍ରଭୃତି
ଗଲେ ତାହାଙ୍କ ସଙ୍ଗରେ ଆନନ୍ଦରେ ମାତି ।
ସମସ୍ତେ ଦ୍ରବ୍ୟ ବସନ ଅଳଙ୍କାରମାନ
ଭରିଥିଲେ ଅଙ୍ଗଦେଶେ କାଞ୍ଚନ ରଚନ ।
କେଉଁଠାରେ ଗଲେ ବସି ଶିବିକା ଉପରେ
କେତେ କାମିନୀ ଚଳିଲେ ବସିଣ ରଥରେ ।
ସୁବର୍ଣ୍ଣ ନିର୍ମିତ ରଥେ ରାଧିକା ବସିଲେ
ଶତ ଶତ ଦାସୀ ତାଙ୍କ ସଙ୍ଗତରେ ଗଲେ ।
ନନ୍ଦ ସୁନନ୍ଦ ଶ୍ରୀଦାମା ଆଉ ଚନ୍ଦ୍ରଭାନୁ
ବଳଭଦ୍ର ଆଦି ଯେତେ ମୁଖ୍ୟ ଗୋପସୂନୁ ।
ଗଜ ଉପରେ ସମସ୍ତେ ବସିଣ ଚଳିଲେ
ଯଶୋଦା ରୋହିଣୀ ଗଲେ ନନ୍ଦରାଜ କୁଳେ ।
ବିବିଧ ରତ୍ନ ଭୂଷଣ ମଣ୍ଡି ଅଙ୍ଗଦେଶେ
ଗଲେ ଯେ ଯାହାର ଯାନ ଆରୋହି ହରଷେ
କୃଷ୍ଣ ବଳରାମ ଦୁହେଁ ସୁବର୍ଣ୍ଣ ରଥରେ
ଆରୋହଣ କରି ଗଲେ ଅତ୍ୟନ୍ତ ସୁଖରେ ।
ସେହିପରି ରଥ ଗଜ ଅଶ୍ୱମାନ ଚଢ଼ି ।
ଗଲେ ଗୋପିଗଣ ସେ କାଳରେ ଆଗେ ବଢ଼ି
ରାଧାଙ୍କ ସଙ୍ଗରେ ଯେତେ ପରିଚାରୀ ଥିଲେ
ଚନ୍ଦନ କୁସୁମ ଆଦି ଘେନିଣ ଚଳିଲେ ।
କେତେଁ ମାନେ ଶ୍ୱେତଛତ୍ର ଚାମର ଆଲଟ
ଧରିଣ ଚଳିଲେ ଆଗେ ଦେଖାଇଣ ବାଟ ।

ଶ୍ୱେତ ବେଶଦ୍ରବ୍ୟମାନ ଧରି ଯେତେ ବଳା
ଗଲେ କେତେଁମାନେ ଘେନି ଦ୍ରବ୍ୟ ପୁଷ୍ପମାଳା ।
କୋଟି କୋଟି ଅଶ୍ୱ ଗଜ ଗର୍ଦ୍ଦଭ ଉଷ୍ଟ୍ର ରଥ
ଚାଲିବାରେ ଲୋକେ ସ୍ଥାନ ନ ପାଇଲେ ପଥ ।
ସମସ୍ତେ ଯାଇ ପ୍ରବେଶ ହେଲେ ବୃନ୍ଦାବନେ
ଦେଖିଲେ ଗୃହ ଗୋଟିଏ ନାହିଁ ସେହିସ୍ଥାନେ
ସେ ସକାଶୁ ବୃକ୍ଷମୂଳେ ଶିବିର ସଜାଇ
ରହିଲେ ଯେ ଯାହା ସ୍ଥାନେ ସରଞ୍ଜାମ ଥୋଇ
ତା ଦେଖି ଶ୍ରୀକୃଷ୍ଣ ତାଙ୍କୁ ବୋଇଲେ ଏଠାରେ
କାହିଁପାଇଁ ତୁମ୍ଭେମାନେ ରହିବ ପଦାରେ ।
ଦେବ ନିର୍ମିତ ସଦନ ବହୁତ ଅଛଇ
ଦେବଙ୍କୁ ସନ୍ତୁଷ୍ଟ କଲେ ଦେଖାଯିବେ ସେହି ।
ବିନା ଦେବତା ପ୍ରସାଦେ ଗୋଟିଏ ଚକ୍ଷୁରୁ
ନ ଦିଶିବ ବୋଲି ଜାଣ ମୋର କହିବାରୁ ।
ପ୍ରଚ୍ଛନ୍ନ ଭାବରେ ଏହିଠାରେ ସବୁ ଅଛି ।
ଦେବ ମାୟାରେ କାହାକୁ ନ ଦିଶିବ କିଛି ।
ବଟମୂଳେ ଚଣ୍ଡୀଙ୍କର ପୂଜା କରି ଏବେ
ପ୍ରସନ୍ନ ହୋଇ ସେ ସବୁ ଗୃହ ଦେଖାଇବେ ।
ଶ୍ରୀକୃଷ୍ଣଙ୍କଠାରୁ ଏହା ଶୁଣି ସେ ଗୋପାଳେ
ଚଣ୍ଡିକା ଦେବୀଙ୍କୁ ଯଥାବିଧି ପୂଜାକଲେ ।
ସେ ଅନ୍ତେ ଭୋଜନ ସାଧି ଶୁଅନ୍ତେ ସମସ୍ତେ
ପ୍ରବେଶିଲେ ନିଦ୍ରାଦେବୀ ସବୁଙ୍କର ନେତ୍ରେ ।
ଅଧମ କ୍ଷେତ୍ରର ବୋଲେ ଶ୍ରୀକୃଷ୍ଣଙ୍କ ପାଦେ
ମୋହର ମାନସ ସଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ବକ କେଶୀ ପ୍ରଳମ୍ବାଦି ଦାନବମାନଙ୍କର ମୃତ୍ୟୁ ଓ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଯାତ୍ରା ପ୍ରସ୍ତାବେ ନାମ ଷୋଡ଼ଶୋଽଧ୍ୟାୟଃ ।

—*—

## ସପ୍ତଦଶ ଅଧ୍ୟାୟ

## ନାରାୟଣ ଦ୍ୱାରା ବୃନ୍ଦାବନ ନଗର ବର୍ଣ୍ଣନ ବୃତ୍ତାନ୍ତ କଥନ

ନାରାୟଣ ବୋଇଲେ ହେ ନାରଦ ମହର୍ଷି
ଶୟନ କଲେ ତ ଗୋପେ ବୃନ୍ଦାବନେ ଆସି
ସେ ସମସ୍ତେ ପୂର୍ଣ୍ଣଚନ୍ଦ୍ର କିରଣର ସ୍ରୋତ ।
ପଡ଼ିବାରୁ ମହୀ ବସୁଥିଲା ଉଜ୍ଜ୍ୱଳିତ ।

ତାହାଙ୍କର ବକ୍ଷସ୍ଥଳେ ଦେବ ନରହରି
ଶୟନ କଲେ ସେକାଳେ ଚେତନାକୁ ହରି ।
ଆଉରି ଯେତେକ ବାଳବୃଦ୍ଧ ଯୁବା ଥିଲେ
ସମସ୍ତେ ଯେ ଯାହା ସୁଖେ ନିଦ୍ରାରେ ଶୋଇଲେ

ନାନା କୁସୁମରୁ ଗନ୍ଧ ବହି ଗନ୍ଧବହ
ଆନନ୍ଦିତ କରୁଥିଲା ଦେବାଙ୍କର ଦେହ
ଏମନ୍ତ ସମସ୍ତ ବିଶ୍ୱକର୍ମା ଶିଳ୍ପଗୁରୁ
ପଞ୍ଚମ ମୁହୂର୍ତ୍ତ ଯୋଗ ଦୁଇଜନେ ସ୍ୱର୍ଗରୁ ।
ବୃନ୍ଦାବନେ ଆସି ବେଗେ ପ୍ରବେଶ ହୋଇଲେ
କୁବେର କିଙ୍କରଗଣ ତାଙ୍କ ସଙ୍ଗେ ଥିଲେ ।
କାମଦେବ ତୁଲ୍ୟ ସେହୁ ଅତ୍ୟନ୍ତ ସୁନ୍ଦର
ଭରିଛନ୍ତି ଅଙ୍ଗେ ଦିବ୍ୟବସ୍ତ୍ର ଅଳଙ୍କାର ।
ଥିଲେ ତାଙ୍କ ପାଶେ ପାଶେ ଅନୁଚରଗଣ
ସମସ୍ତେ ବିବିଧ ଶିଳ୍ପ ବିଦ୍ୟାରେ ନିପୁଣ ।
ସଂଖ୍ୟାରେ ସେ ତିନିକୋଟି ସହସ୍ର ଅତ୍ୟନ୍ତ
ମଣିସାର ହେମରତ୍ନ ଅସ୍ତ୍ର ଧରିଛନ୍ତି
ଶୈଳଜ ପ୍ରସ୍ତର କେତେ ଯକ୍ଷଙ୍କର ହସ୍ତେ
ଥିବାରୁ ଭୀଷଣ ରୂପ ଦିଶନ୍ତି ସମସ୍ତେ ।
କେଉଁମାନେ ସ୍ୱର୍ଣ୍ଣକନ୍ଧ ସ୍ଫୀତ ବକ୍ଷସ୍ଥଳ
ତାଳଗଛ ପରି କେହୁ ଦିଶନ୍ତି ବିଶାଳ
ପଦ୍ମରାଗ ଇନ୍ଦ୍ରନୀଳ ସୂର୍ଯ୍ୟ ଚନ୍ଦ୍ରକାନ୍ତ
ମଣିମୟ ଅସ୍ତ୍ର ଧରିଅଛନ୍ତି କେ ହସ୍ତ ।
ପରଶୁ ଲୌହନିର୍ମିତ ଦଣ୍ଡ ଯେବେ କରେ
ରହିଛନ୍ତି କେଉଁମାନେ ଗର୍ବିତ ଭାବରେ ।
ସୁନ୍ଦର ଦର୍ପଣ ସ୍ୱର୍ଣ୍ଣଘଟ ପାତ୍ର ଆଦି
ଧରିଛନ୍ତି କେଉଁ ଯକ୍ଷ ଗନ୍ଧର୍ବେ ସମ୍ପାଦି ।
ସେମାନଙ୍କୁ ଦେଖି ବିଶ୍ୱକର୍ମା ତୋଷ ହେଲେ
ଶ୍ରୀକୃଷ୍ଣ ସୁନ୍ଦର ପୁର କାର୍ଯ୍ୟ ଆରମ୍ଭିଲେ ।
ପଞ୍ଚଯୋଜନ ବିସ୍ତାର ଅଟଇ ସେ ପୁର
ପୁଣ୍ୟକ୍ଷେତ୍ର ଅଟଇ ସେ ତୀର୍ଥଗଣ ସାର ।
ମୁମୁକ୍ଷୁ ମହର୍ଷିମାନେ ସେହିଠାରେ ରହି
ନିର୍ବାଣ ଲଭ କରନ୍ତି ପାପରାଶି ଦହି ।
ଗୋଲୋକର ସୋପାନ ଯେ ପୁଣ୍ୟମୟ କ୍ଷେତ୍ର
ତହିଁରେ ରହିଲେ ଲୋକ ହୁଅଇ ପବିତ୍ର ।
ସେ ପୁରର ଚାରିପାଶେ ଚାରିଗୋଟି ଶାଳା
ଖଞ୍ଜା ହୋଇଛି ତହିଁରେ ସ୍ୱର୍ଣ୍ଣ ରତ୍ନମାଳା
କବାଟ ସୋପାନ ସ୍ତମ୍ଭ କନକ ନିର୍ମିତ
ବସା ହୋଇଛି ତା ଦେହେ ହୀରକ ବହୁତ ।
ତଳଉପରେ ବସି ରତ୍ନ ପୁତ୍ତଳିକାଗଣ
ଦେଖିବା ମାତ୍ରକେ ହରି ନେଉଛନ୍ତି ମନ ।

ଶୈଳଜ ପ୍ରସ୍ତରମୟ ପ୍ରାଙ୍ଗଣ ବେଦିକା
ଦେଶଭାଗରେ ଦିଶଇ ସେହୁ ସବୁଠାରୁ ଠିକା ।
ଚାରିପାଶେ ଚାରୁଣିକା ସୁଦୃଢ଼ ପ୍ରାକାର
ବସିଛି ତା ମଧ୍ୟେ ଉଚ୍ଚମତ ଦେବଦ୍ୱାର ।
ସେ ପୁର ମଧ୍ୟରେ ଚାରିଗୋଟି ଶାଳାଥାଇ
ସ୍ଫଟିକ ମଣିଶିଳାରେ ସୁନ୍ଦର ଦିଶଇ ।
ଧବଳ ସୋପାନ ଗନ୍ଧସାର ବିନିର୍ମିତ
କବାଟ ହୋଇଛି ଲୌହ ରଜତରେ ଯୁକ୍ତ
ଉପଯୁକ୍ତ ସ୍ଥାନ ଦେଖି ବଲ୍ଲବଙ୍କ ପାଇଁ
ରଚିତ ହୋଇଛି କେତେ ଦିବ୍ୟଗୃହ ତହିଁ
ବଂଶଗୃହ ଶାଳା ଥାଇ ବୃଷଭାନୁ ଘରେ
ଗଠିତ ହୋଇଛି ହେମ ମଣି ରତନରେ ।
ସବୁଗୃହ ଊର୍ଦ୍ଧ୍ୱ ଦେଶେ ସୁବର୍ଣ୍ଣ କଳସ
ବସିଛି ଉତ୍ତମ ଶୋଭା କରି ପରକାଶ ।
ସେ ନଗର ଏକଦେଶେ ନିର୍ଜନ ସ୍ଥାନରେ
ଉଦ୍ୟାନେକ ଅଛି ପୂରି ଚମ୍ପକ ବୃକ୍ଷରେ ।
କଳାବତୀ ଦେବୀ ନିଜ ସ୍ୱାମୀଙ୍କ ସହିତେ
କ୍ରୀଡ଼ା କରିବା ସକାଶେ ତହିଁରେ ଏକାନ୍ତେ
ଇନ୍ଦ୍ରନୀଳ ଆଦି ମଣି ମରକତମାନ
ଖଚିତ ହୋଇଛି ତାର ତଳଦେଶେ ଜାଣ ।
ଅତ୍ୟନ୍ତ ଉନ୍ନତ ସେହୁ ସର୍ବ ବିଲକ୍ଷଣ
ନିନ୍ଦା କରଇ ଶୋଭାରେ ନନ୍ଦନ କାନନ ।
ଏମନ୍ତ ଶୁଣି ନାରଦ ବୋଇଲେ ହେ ମୁନି
ଅଟନ୍ତି ସେ କଳାବତୀ କାହାର କାମିନୀ ।
ତାଙ୍କପାଇଁ ବିଶ୍ୱକର୍ମା ଯତ୍ନ ସହକାରେ
କାହିଁକି କଲେ ଉତ୍ତମ କାନନ ସେଠାରେ ।
ନାରାୟଣ ବୋଇଲେ ହେ ପିତୃଗଣଙ୍କର
ମାନସୀ କନ୍ୟା ସେ କଳାବତୀ ରମାବର ।
ଶ୍ରୀକୃଷ୍ଣଙ୍କ ପ୍ରାଣପ୍ରିୟା ରାଧିକା ସୁନ୍ଦରୀ
ତାଙ୍କ ଗର୍ଭରୁ ଜନ୍ମିଲେ ଆହେ ତପସ୍ୱୀ ।
ନାରଦ ବୋଇଲେ କଳାବତୀ କି ହେତୁରେ
ରହିଲେ ଆସି ମାନବ ଲୋକେ ଗୋପପୁରେ
କେଉଁ ପୁଣ୍ୟକରି ବୃଷଭାନୁ ବ୍ରଜପତି
କଳାବତୀଙ୍କୁ ବିବାହ କଲେ ଆହେ ଯତି ।
ପୂର୍ବରେ ସେ କେଉଁ ମହା ପୁଣ୍ୟବନ୍ତ ଥିଲେ
କିରୂପେ ରାଧିକା ତାଙ୍କ କୁମାରୀ ହୋଇଲେ ।

ତାହା ଶୁଣି ନାରଦପୁଣ ମୁନିଗଣେଶ
ହର୍ଷେଣ ବୋଇଲେ ଶୁଣ ବ୍ରହ୍ମାଙ୍କର ଶିଷ୍ୟ ।
ତିନିଗୋଟି କନ୍ୟାଜାତ ହେଲେ ପିତୃଙ୍କର
କଳାବତୀ ରତ୍ନମାଳା ମେନକା ଆବର ।
ଜନକ ଋଷିଙ୍କୁ ବରହେଲେ ରତ୍ନମାଳା
ହିମାଳୟଙ୍କୁ ବରିଲେ ମେନକା ମହିଳା ।
ରତ୍ନମାଳାଙ୍କ କୁମାରୀ ପତିବ୍ରତା ସତୀ
ଅଯୋନିସମ୍ଭବା ସୀତା ରୂପଗୁଣବତୀ ।
ଶ୍ରୀରାମଙ୍କ ପ୍ରିୟପତ୍ନୀ ହୋଇଥିଲେ ସେହି
ତାହାଙ୍କ ଯୋଗେ ବିନାଶ ହେଲା ଲଙ୍କସାଇଁ ।
ମେନକା ଦେବୀଙ୍କ କନ୍ୟା ଅଟନ୍ତି ପାର୍ବତୀ
ଅଯୋନିସମ୍ଭବା ସେହି ଶିବ ପ୍ରିୟବତୀ ।
ବହୁତ ତପସ୍ୟା କରି ସଦାଶିବଙ୍କର
ପାଣି ଗ୍ରହଣ କଲେ ସେ ରମଣୀଙ୍କ ବର ।
ମନୁବଂଶରେ ଉତ୍ପନ୍ନ ସୁଚନ୍ଦ୍ର ନୃପତି
ତାହାଙ୍କର ପ୍ରିୟପତ୍ନୀ ହେଲେ କଳାବତୀ ।
ସେ ରାଜା ଶ୍ରୀହରିଙ୍କର ଅଂଶେ ଜନ୍ମିଥିଲେ
କଳାବତୀଙ୍କୁ ପାଇଣ ମନେ ହରଷିଲେ ।
ଏ କାମିନୀ ସୌନ୍ଦର୍ଯ୍ୟରେ ଅଟଇ ଅତୁଳ
ଲଜିତ ଶରଦଚନ୍ଦ୍ର ସଦୃଶ କୋମଳ ।
ଗଜ ଖଞ୍ଜରୀଟ ଗତି ଗଞ୍ଜିତ ଗମନ
କଟାକ୍ଷ ଲକ୍ଷ୍ୟରେ ମୁଗ୍ଧ ହେବ ମୁନିମନ ।
ରମ୍ଭାସ୍ତମ୍ଭ ସମାନରେ ଦିଶେ ଊରୁଯୁଗ
ସୁଲଳିତ ଶ୍ରୋଣିଦ୍ୱୟ ହୋଇଅଛି ସଙ୍ଗ ।
କଠିନ ଉନ୍ନତ ପୀନ ବର୍ତ୍ତୁ ବେନି ସ୍ତନ
ନିତମ୍ବ ଯୁଗଳ ଦିଶେ ଅତି ଶୋଭାବନ ।
ରକ୍ତବର୍ଣ୍ଣ ହସ୍ତଦ୍ୱୟ ପକ୍ୱ ବିମ୍ବାଧର
ଦାଡ଼ିମ ବୀଜ ପରାୟେ ଦନ୍ତ ମନୋହର ।
ଶରତ ମଧ୍ୟାହ୍ନ ପଦ୍ମ ସମାନ ଲୋଚନ
ଭୂଷିତ ହୋଇଛି ଅଙ୍ଗେ ବିବିଧ ଭୂଷଣ ।
ଏମନ୍ତ ବିଗ୍ରହ କାମବାଣେ ପୀଡ଼ା ପାଇ
ତାଙ୍କୁ ଘେନି ଏକାନ୍ତରେ କ୍ରୀଡ଼ା କଲେ ଯାଇଁ
ସୁନ୍ଦର ମଳୟ ଦ୍ରୋଣୀ ପର୍ବତକୁ ଗଲେ
ଚନ୍ଦନ ଚମ୍ପକ ବନ ମଧ୍ୟେ ବିହରିଲେ ।
ପୁଷ୍ପଭଦ୍ରା ନଦୀତଟେ ନିର୍ଜନ ସ୍ଥାନରେ
ମାଳତୀ ମଲ୍ଲି କାପୁଷ୍ପ ତଳପ ଉପରେ ।
ଶୟନ କରି ସେ ଜାୟାପତି କୌତୁକମନେ
କ୍ରୀଡ଼ା କଲେ କ୍ରୀଡ଼ାକେତ ସେ ରମ୍ୟସ୍ଥାନେ
ଆବର ସୁନ୍ଦର ନଦୀ ପର୍ବତ କନ୍ଦରେ
ଯଥାସୁଖେ ଉପଭୋଗ କଲେ ପରସ୍ପରେ ।
ନବ ସମାଗମ ସୁଖେ ଦୁହିଙ୍କର ଚିତ୍ତ
ଦିନ ରାତ୍ରି ସବୁବେଳେ ହେଲା ଆନନ୍ଦିତ ।
ଏରୂପେ ସହସ୍ରେ ବର୍ଷ ମୁହୂର୍ତ୍ତେକ ପରି
ଶେଷକଲେ ସେ ବେନିଏ କାମେ ହୋଇଘାରି
ଚିରକାଳ କାମଭୋଗ କରନ୍ତେ ନୃପତି
ନିବୃତ୍ତ ହୋଇ ତହିଁରୁ ଫେରିଲେ ମତି ।
ତପସ୍ୟା କରିବା ପାଇଁ ବିନ୍ଧ୍ୟ ପର୍ବତରେ ।
ମିଳିଲେ ପ୍ରିୟବତୀଙ୍କୁ ଘେନି ସଙ୍ଗତରେ ।
ସେଠାରେ ପୁଲହଙ୍କର ପବିତ୍ର ଆଶ୍ରମ
ନାନା ଶୋଭାରେ ଦିଶଇ ଅତି ମନୋରମ ।
ଦିବ୍ୟ ସହସ୍ରେ ବରଷ ସେ ଆଶ୍ରମ ତପ
ନିରାହାର ହୋଇ କଲେ ସେ ନର ଅଧିପ ।
ମୋକ୍ଷ ଅଭିଳାଷେ ଶ୍ରୀକୃଷ୍ଣଙ୍କଠାରେ ମନ
ନିବେଶି ସର୍ବଦା ତାଙ୍କୁ କରୁଥାନ୍ତି ଧ୍ୟାନ ।
କ୍ରମେ କ୍ରମେ ମୂର୍ଚ୍ଛା ଆସି ଦେହେ ପ୍ରବେଶିଲା
ଚଳିବା ପାଇଁକି ଆଉ ବଳ ନ ପାଇଲା ।
ବସିବା ସ୍ଥାନରେ ଘଟକେ ପଡ଼ିଲେ ସେ ଢଳି
ସକଳରେ ଉଇମାନେ ସ୍ୱରପାଶେ ବଳି ।
କେତେଦିନ ଅନ୍ତେ ତାହା ଜାଣି କଳାବତୀ
ବାହାର କଲେ ତହିଁରୁ ଯତନରେ ଅତି ।
ଦେଖିଲେ ପତିଙ୍କ ଦେହ ଦିଶଇ ବିବର୍ଣ୍ଣ
ଛାଡ଼ିଯାଇ ଅଛି ତାହାଙ୍କର ପଞ୍ଚପ୍ରାଣ ।
ବହୁତ କାଳରୁ ତପ କରିବା ହେତୁରେ
ଅସ୍ଥି ମାତ୍ର ଅବଶିଷ୍ଟ ରହିଛି ଦେହରେ ।
ତାହା ଦେଖି ବିକଳରେ ନାଥ ନାଥ ବୋଲି
କାନ୍ଦିଲେ ସେ ଉଚ୍ଚସ୍ୱରେ ନ ପାରି ସମ୍ଭାଳି ।
ତାଙ୍କ କ୍ରନ୍ଦନରେ ବନ ପଶୁପକ୍ଷୀଗଣ
ନୀରବ ନିସ୍ତବ୍ଧଭାବେ ରହିଲେଟି ଜାଣ ।
ଏମନ୍ତ ସମୟେ ବ୍ରହ୍ମା ଆସି ସେହିଠାରେ
ପ୍ରବେଶ ହୋଇଲେ କଳାବତୀଙ୍କ ପାଖରେ ।
ରାଜାଙ୍କୁ ଉଠାଇ ତହୁଁ କୋଳରେ ଧଇଲେ
ସଞ୍ଜୀବନୀ ମନ୍ତ୍ରେ ଜୀବଦାନ ତାଙ୍କୁ ଦେଲେ ।

ସେ ସବାଶୁ ଚେତା ପାଇ ସୁଚନ୍ଦ୍ର ରାଜନ
ଦେଖିଲେ ଅନନ୍ତ ପାଶେ କମଳଆସନ ।
ସେହିକ୍ଷଣି ତାହାଙ୍କର ବେଳପାଦ ଧରି
ଭକ୍ତିଦେଲେ ଆଗେ କରି ମସ୍ତକରେ ଭରି ।
ବ୍ରହ୍ମା ବୋଇଲେ ହେ ବତ୍ସ ହୋଇଲି ସନ୍ତୁଷ୍ଟ
ବର ମାଗ ଯେ ତୁମ୍ଭର ହେଉଅଛି ଇଷ୍ଟ ।
ସୁଚନ୍ଦ୍ର ବୋଇଲେ ମୁକ୍ତି ପାଇବାକୁ ମୁହିଁ
ତପ କରୁଥିଲି ତାହା ଦିଅ ଦୟା ବହି ।
ତାହା ଶୁଣି ପ୍ରଜାପତି ବର ଦେବାପାଇଁ
ଉଦ୍ୟତ ହୁଅନ୍ତେ କଳାବତୀ ତାଙ୍କୁ ଚାହିଁ ।
ବୋଇଲେ ହେ ଦେବ ଯେବେ ମୋହର ପତିଙ୍କୁ
ଦୟାକରି ଆସିଅଛ ମୁକତି ଦେବାକୁ ।
ମୁହିଁ ତ ଅବଳା ଅଟେ ତାଙ୍କ ସହଚରୀ
କହ କି ପ୍ରକାର ଗତି ହୋଇବ ମୋହରି ।
ପତିବ୍ରତା କାମିନୀର ପତି ଏକ ଗୁରୁ
ଅଧିକ ପୂଜ୍ୟ ହୋଇ କେ ନାହିଁ ପତିଠାରୁ ।
ସମସ୍ତଙ୍କଠାରୁ ପ୍ରିୟତମ ସେ ଅଟନ୍ତି
ତାଙ୍କଠାରୁ ବଳି ବନ୍ଧୁ କେହି ଯେ ନୁହନ୍ତି ।
ବ୍ରତଦାନ ଉପବାସ ମହା ପ୍ରଦକ୍ଷିଣ
ପୁଣ୍ୟତୀର୍ଥ ସ୍ନାନ ଜପ ବେଦ ଅଧ୍ୟୟନ ।
ବ୍ରାହ୍ମଣ ସେବାଦି ଯେତେ ଧର୍ମ କାର୍ଯ୍ୟମାନ
ନୁହନ୍ତି ସେ ସବୁ ପତି ସେବାରେ ସମାନ ।
ସ୍ୱାମୀସେବା ହୀନ ଅଟେ ଯେଉଁ ମାନବୀ
ଆଦର ପତିର ନିନ୍ଦା କରଇ ଯେ ପୁଣି ।
ସେହିମାନେ କାଳସୂତ୍ର ନରକରେ ପଡ଼ି
ଚନ୍ଦ୍ରସୂର୍ଯ୍ୟ ଥିବାଯାକ ରହିଥାନ୍ତି ସଢ଼ି ।
କ୍ଷୁଧାତୃଷା ହେଲେ ଶ୍ଳେଷ ମୂତ୍ରକୁ ଭକ୍ଷନ୍ତି
ଯମଦୂତଙ୍କ ହସ୍ତରୁ ମାଡ଼ ଖାଉଥାନ୍ତି ।
ଏହିରୂପେ ବେଦଶାସ୍ତ୍ର-ଜ୍ଞାନୀଙ୍କ ମୁଖରୁ
ଶୁଣିଛୁ ପୂର୍ବରେ ମୁହିଁ ଆହେ ଲୋକଗୁରୁ ।
ସ୍ୱଭାବରେ ସ୍ତ୍ରୀଜାତି ଅଟଇ ତ ମୂଢ଼
ଆପଣଙ୍କୁ ଅବା କିସ କହିବି କହାଇ ।
ସର୍ବଜ୍ଞ ସକଳ ଲୋକ କରତା ଆପଣ
ମୋହର ଅଦୃଷ୍ଟ ସ୍ଥିତ କଥା ସବୁ ଜାଣ ।
ମୁକତି ପାଇବ ଯେବେ ମୋ ପ୍ରିୟ ରମଣ
କେ ରକ୍ଷା କରିବ ମୋର ଧରି ଯଉବନ ।
ବାଲ୍ୟ କାଳରେ ଜନକ ରକ୍ଷା କରିଥାଏ
ଯଉବନ ହୋଇଲେ ପତି ପାଶେ ଛାଡ଼ିଦିଏ ।
ପତିଙ୍କ ଉତ୍ତାରେ ପୁତ୍ର ପାଳନ କରଇ
ଏହିପରି ସ୍ତ୍ରୀଙ୍କର କାଳକ୍ଷେପ ହୋଇ ।
ସ୍ୱତନ୍ତ୍ର ଭାବରେ ଯେଉଁ କାମିନୀଏ ଥାନ୍ତି
ସକଳ ଧର୍ମରୁ ସେହୁ ବଞ୍ଚିତ ହୁଅନ୍ତି ।
ଶତଜନ୍ମ କୃତ ପୁଣ୍ୟ ବିନଷ୍ଟ ହୁଅଇ
ଅନ୍ତ୍ୟକାଳେ ନରକରେ ପଡ଼ିଥାନ୍ତି ସେହି ।
ପତିବ୍ରତା କାମିନୀର ପତି ପୁତ୍ର ଠାରେ
ସମାନ ସ୍ନେହ ରହଇ ସବୁ ସମୟରେ ।
ସ୍ତନାନ୍ଧ ବାଳକଠାରେ ସ୍ତନ୍ୟପାନ ଶେଷେ
ଅବସାନେ ମିଷ୍ଟ ଅନ୍ନ ଭୋଜନ ବିଶେଷେ ।
ସତୀସ୍ତ୍ରୀଙ୍କର ଶ୍ରଦ୍ଧା ଦୂର ହୋଇଥାଏ
କିନ୍ତୁ ପତିଠାରେ ଚିରକାଳ ଯାଏ ରହେ ।
ପତିବିନା ଅନ୍ନଜଳ ଭୋଜନ ପାନରେ
ଅଭିଳାଷ ନ ରହଇ କେବଣ ପ୍ରକାରେ ।
ଯେଉଁରୂପେ କୃଷ୍ଣପାଦେ ବୈଷ୍ଣବଙ୍କ ମନ
ସର୍ବଦା ହୁଅଇ ଭକ୍ତିଭାବରେ ନିମଗ୍ନ ।
ଆବର ଅପତ୍ୟଠାରେ ଏକ ପୁତ୍ରିଣୀର
ଯେରୂପେ ହୁଅଇ ମନ ସର୍ବଦା ତତ୍ପର ।
କାମୁକ ଲୋକର ଯଥା ରୂପବତୀଠାରେ
ଆସକ୍ତ ହୋଇଣ ଚିତ୍ତ ଥାଏ ନିରନ୍ତରେ ।
ସେହିପରି ପତିବ୍ରତା ସ୍ତ୍ରୀଙ୍କ ମାନସ
ସବୁକାଳେ ହୋଇଥାଏ ପତିଙ୍କର ବଶ ।
ଯେଉଁମାନେ ଅନ୍ୟ ଅର୍ଥେ ଶୋକ କରୁଥାନ୍ତି
ପାନ ଭୋଜନରେ ତାହା ନିବୃତ୍ତ କରନ୍ତି ।
କିନ୍ତୁ ପତି ବିରହରେ ବିପରୀତ ହୁଏ
ଭୋଜନ ପାନ ତାହାକୁ ବର୍ଦ୍ଧିତ କରାଏ ।
ଆପଣ ଯଦ୍ୟପି ମୋତେ ଏକାକିନୀ ରଖି
ମୁକତି ଦେବେ ପତିଙ୍କୁ କରୁଣା ଉପେକ୍ଷି ।
ତେବେ ମୁହିଁ ଆପଣଙ୍କୁ ଶାପ ଆଗ ଦେଇ
ଝାସଦେବି ଏହିଠାରେ ଅନଳ ଜଳାଇ ।
ଏରୂପେ ବିଧାତା କଳାବତୀଠାରୁ ଶୁଣି
ସାନ୍ତ୍ୱନା କରି ତାହାଙ୍କୁ କହିଲେ ଏ ବାଣୀ ।
ବୋଇଲେ ଗୋ ବତ୍ସେ ଆଉ ଭାବନା ନକର
ମୁକତି ନୋହିବ ତୁମ୍ଭ ବିନା ପତିଙ୍କର ।

ତାଙ୍କ ସଙ୍ଗତରେ ତୁମ୍ଭେ ନିଶ୍ଚେ ହେବ ମୋକ୍ଷ
ଜାଣିଅଛି ମୁହିଁ ଏହା ଅଟଇ ପ୍ରତ୍ୟକ୍ଷ ।
ଭୋଗ ନ କରିବା ଯେବକ ମୁକତି ନ ପାଇ
ଯୋଗଶାସ୍ତ୍ରରେ ଏ କଥା ଲେଖାଅଛି ହୋଇ ।
ଏ ସକାଶୁ ବୋଲୁଅଛି ପତିଙ୍କ ସହିତେ
ସ୍ୱର୍ଗପୁରେ ରହି ଭୋଗ କର ଦିନାକେତେ ।
ସେ ଅନ୍ତେ ଦୁହେଁ ଜନ୍ମିବ ଭାରତବର୍ଷରେ
ଦ୍ୱାପର ଯୁଗେ ଗୋପାଳ ପାଳିତ ନଗରେ ।
ଯେତେବେଳେ ସ୍ୱଧା ହେବେ କୃଷ୍ଣର କୁମାରୀ
ଗୋଲୋକକୁ ଯିବ ତେବେ ଦେହ ତ୍ୟାଗକରି
ଏମନ୍ତ କହି ରାଜାଙ୍କୁ ବୋଇଲେ ସେ ପୁଣି
ପ୍ରିୟା ସଙ୍ଗେ ସ୍ୱର୍ଗେ ସୁଖ ଭୁଞ୍ଜ ନରମଣି ।
ଯେଉଁ ଉପାୟରେ ହେବ ତୁମ୍ଭର ମଙ୍ଗଳ
ଅବଶ୍ୟ ସେ ଉପାୟ ମୁଁ କରିବି କେବଳ
ସାଧୁଜନେ ସତ୍ତ୍ୱଗୁଣେ ଅଟନ୍ତି ସମ୍ପୂର୍ଣ୍ଣ
ବିଚାର କରନ୍ତି ସେହି ହିତାହିତମାନ ।
ଏ ସକାଶୁ ବୋଲୁଅଛି ଆହେ ତପସ୍ୱୀ
ରହ କେତେକ ସମୟ ସୁଖ ଭୋଗକରି ।
ଏମନ୍ତ କହି ବିଧାତା ନୀରବ ହୋଇଲେ
ଶୁଣି ସେ ବେନହେଁ ତାଙ୍କ ପାଦେ ପ୍ରଣମିଲେ ।
ସେ ଅନ୍ତେ ପ୍ରବେଶ ହେଲେ ଆପଣାର ପୁରେ
ବ୍ରହ୍ମ ଲୋକକୁ ବିଧାତା ଗମିଲେ ସତ୍ୱରେ ।
ଆହେ ନାରଦ ମହର୍ଷି କେତେଦିନ ଅନ୍ତେ
ସେ ଦୁହେଁ ଆସି ଜନମ ହୋଇଲେ ଭାରତେ
ବୃଷଭାନୁ ରୂପେ ଜାତ ହେଲେ ନରପତି
ତାଙ୍କ ପିତା ସୁରଭାନୁ ମାତା ପଦ୍ମାବତୀ ।
ଜାତିସ୍ମର ଅଟନ୍ତି ସେ ଶ୍ରୀହରିଙ୍କ ବଂଶ
ସକଳ ଗୁଣରେ ପୂର୍ଣ୍ଣ ସୁନ୍ଦର ବିଶେଷ ।
ସବୁବେଳେ ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ମନ
ନିବେଶିତ କରିଥାନ୍ତି ସେ ଗୋପ ନନ୍ଦନ ।
ନନ୍ଦରାଜାଙ୍କର ସେହି ପରମ ବାନ୍ଧବ
ପରସ୍ପରଙ୍କ ମଧ୍ୟରେ ଥାଏ ସ୍ନେହ ଭାବ ।
କାନ୍ୟକୁବ୍ଜ ଅଧୀଶ୍ୱର ସୁନନ୍ଦନ ନାମ
ସେ ମଧ୍ୟ ଅଟନ୍ତି ସବୁ ଗୁଣରେ ଉତ୍ତମ ।
କଳାବତୀ ଦେବୀ ସେହି ରାଜାଙ୍କ ଗୃହରେ ।
ଜାତ ହେଲେ ଯଥାକାଳେ କମଳା ଅଂଶରେ
ସୁନ୍ଦରୀ ଗଣରେ ତାଙ୍କ ପରି ଏକା ସେହି
ନାହିଁ ବ୍ରହ୍ମ ସୃଷ୍ଟିମଧ୍ୟେ ଗୁଣବତୀ ହୋଇ ।
ତାଙ୍କଠାରୁ ଅଧିକ ଯେ ନ ଥିବ ଜଗତେ
ଜନମ ବୃତ୍ତାନ୍ତ ଶୁଣ ଏବେ ସ୍ଥିର ଚିତ୍ତେ ।
ଯୋଗଅନ୍ତେ ନରପତି ଦେଖିଲେ ସେଠାରେ
ବାଳିକା ଗୋଟିଏ ଯଜ୍ଞ କୁଣ୍ଡର ମଧ୍ୟରେ ।
ଉଲଗ୍ନ ହୋଇଣ ପଡ଼ି କାନ୍ଦୁଛି ସେଦିନ
ତପତ କାଞ୍ଚନ ପରି ଦିଶେ ତା ବରନ ।
ଦେଖି ତାକୁ ବେନହସ୍ତେ ଉଠାଇ ଆଣିଲେ
ନିଜପ୍ରିୟା ମାଳାବତୀ କୋଳେ ନେଇଦେଲେ ।
ଯତନରେ ରଖି ତହୁଁ ଦେବୀ ମହାସତୀ
ପାଳନ କଲେ କନ୍ୟାକୁ ତୋଷ କରି ମତି ।
ନାମ ଦେବା ସମୟରେ ଆକାଶରୁ ବାଣୀ
ଶୁଭିଲା ଶୁଣ ଗୋ ଦେବୀ ମାଳାବତୀ ରାଣୀ ।
ଆହେ ନରପତି ସତୀଗଣଙ୍କ ଉତ୍ତମ
କଳାବତୀ ବୋଲି ରଖ ଏ କନ୍ୟାର ନାମ ।
ତାହା ଶୁଣି ସେ ସ୍ୱଜନ ସେହିପରି କଲେ
ବ୍ରାହ୍ମଣଙ୍କୁ ଡାକି ବହୁ ଧନ ରତ୍ନ ଦେଲେ ।
ଭୋଜନ ଦେଇ ତୋଷିଲେ ବନ୍ଧୁ ବାନ୍ଧବଙ୍କୁ
କରାଇଲେ ନାନାବିଧି ଉତ୍ସବମାନଙ୍କୁ ।
ଯତନରେ ସେ କନ୍ୟାକୁ କରନ୍ତେ ପାଳନ
କ୍ରମେ କ୍ରମେ ଆସି ତାର ହେଲା ଯଉବନ ।
ଅତ୍ୟନ୍ତ ସୁନ୍ଦର ହବୁ ଶରୀର ଦିଶିଲା
ଶରତ ଚନ୍ଦ୍ରମା ପରି ପ୍ରଭା ପ୍ରକାଶିଲା ।
ସ୍ୱର୍ଣ୍ଣ ଚମ୍ପକ ବରନ ରୂପ ମନୋହର
ଈଷତ ହାସ୍ୟ ପ୍ରସନ୍ନ ବଦନ ମଧୁର ।
ଦୁର୍ବହ ନିତମ୍ବ ଭରେ ଅଳସଗାମିନୀ
ଦାଡ଼ିମ ଫଳ ନିନ୍ଦିତ ଘନ ପୀନସ୍ତନୀ ।
ପରିଧାନ କରି ବହ୍ନି ବିଶୁଦ୍ଧ ବସନ
ଅଙ୍ଗେ ଘେନି ସ୍ୱର୍ଣ୍ଣ ରତ୍ନ ଅଳଙ୍କାରମାନ ।
ଦିନେ ରାଜମାର୍ଗେ ବାଳା କରୁଥିଲା ଗତି
ଦେଖିଲେ ତାହାଙ୍କୁ ନନ୍ଦ ଗୋପ ଅଧିପତି ।
ଜିତେନ୍ଦ୍ରିୟ ହେଲେ ମଧ୍ୟ ତା ରୂପକୁ ଦେଖି
ଘଡ଼ିଏ ଯାଏ ପିଛାଡ଼ି ନ ପାରିଲେ ଆଖି
ସେ ଅନ୍ତେ ମୋହିତ ହୋଇ ପଥିକ ଜନଙ୍କୁ
ପଚାରିଲେ ପୁନଃ ପୁନଃ ହରାଇ ଧୈର୍ଯ୍ୟକୁ ।

ବୋଇଲେ ମାର୍ଗରେ ଯାଉଅଛୁ ଯେ କାମିନୀ
କିଏ ସେ ଅଟଇ ଅବା କାହାର ନନ୍ଦିନୀ ।
ଲୋକେ ବୋଇଲେ ଏ କନ୍ୟା ସୁନନ୍ଦନ ସୁତା
କମଳା ଦେବୀଙ୍କ ଅଂଶେ ହୋଇଛନ୍ତି ସମ୍ଭୂତା ।
କ୍ରୀଡ଼ା କଉତୁକ ପାଇଁ ସଖୀଙ୍କ ଗୃହକୁ
ଯାଉଛନ୍ତି ସଜାଇ ଅଙ୍ଗେ ବାସ ଭୂଷଣକୁ ।
ତାହା ଶୁଣି ନନ୍ଦରାଜା ଆନନ୍ଦିତ ହେଲେ
ସୁନନ୍ଦନପୁର ଦ୍ୱାରେ ରଥ ରଖାଇଲେ ।
ଓହ୍ଲାଇ ସେକ୍ଷଣି ତାଙ୍କ ସଭା ମଧ୍ୟେ ଯାଇ
ପ୍ରବେଶ ହୋଇଲେ କଥାବାର୍ତ୍ତା ହେବାପାଇଁ
ତାହାଙ୍କୁ ଦେଖି ସୁନନ୍ଦ ବସାଇ ଆସନେ
ବିବିଧ ମିଷ୍ଟ ଆଳାପ କଲେ ତୋଷମନେ ।
ନନ୍ଦ ବୋଇଲେ ସଜ୍ଜନ ତୁମ୍ଭଠାରୁ ମୁହିଁ
ଆସିଛୁ ଯେଉଁ କାର୍ଯ୍ୟରେ ଶୁଣ କହୁଥାଇ ।
ତ୍ରୈଲୋକ୍ୟମୋହିନୀ ଅଟେ ତୁମ୍ଭର କୁମାରୀ
ଅଯୋନିସମ୍ଭବା ଜାତିସ୍ମରା ସୁକୁମାରୀ ।
ତାର ଅନୁରୂପ ବର ବୁଝିଅଛୁ ମୁହିଁ
ବିବାହ କରାଅ ବିଳମ୍ବରେ କାର୍ଯ୍ୟ ନାହିଁ ।
ସୁରଭାନୁ ଜ୍ୟେଷ୍ଠସୁତ ବୃଷଭାନୁ ନାମ
ସୌନ୍ଦର୍ଯ୍ୟ ଗୁଣରେ ତାଙ୍କୁ ସରି ନୁହେଁ କାମ
ଜାତିସ୍ମର ଯୋଗଜନ୍ମା ସ୍ଥିର ଯଉବନ
ସକଳ ଶାସ୍ତ୍ର ଜ୍ଞାନରେ ଅଟନ୍ତି ନିପୁଣ ।
ତାଙ୍କ ସଙ୍ଗେ କଲେ ତୁମ୍ଭେ କନ୍ୟାର ବିବାହ
ମଣି କାଞ୍ଚନ ସଂଯୋଗ ହୋଇବ ନିଶ୍ଚୟ ।
ଚତୁର ପୁରୁଷ ତୁଲେ ଚତୁରୀ କନ୍ୟାକୁ
ବିବାହ କରିବ ଯାଇ ଭବ ସମ୍ବନ୍ଧକୁ ।
ଏ ରୂପେ ନନ୍ଦଙ୍କ ବାକ୍ୟ ଶୁଣି ସୁନନ୍ଦନ
ସାଦରେ କହିଲେ ତାଙ୍କୁ ମଧୁର ବଚନ ।
ବୋଇଲେ ହେ ମହାରାଜା ବିବାହ ସମ୍ବନ୍ଧ
ଅଟଇ ନିଶ୍ଚୟ ପ୍ରଜାପତିଙ୍କ ନିର୍ବନ୍ଧ ।
କେ କାହାର କନ୍ୟା ଅବା କେ କାହାର ବର
ସବୁର ହର୍ତ୍ତା କରତା ଅଟନ୍ତି ଈଶ୍ୱର ।
ଧର୍ମ ଅନୁରୂପ ଫଳ ଦିଅନ୍ତି ସେ ଜାଣି
ଭୂତଭବ୍ୟ କର୍ମଦାତା ପ୍ରଭୁ ଚକ୍ରପାଣି ।
ଯେବେ ବୃଷଭାନୁଙ୍କର ପ୍ରିୟା ହେବାପାଇଁ
ମୋ ସୁତାର ଲଲାଟରେ ଲେଖିଥିବ ବିହି ।
ଛେଦିବ ତାହା କେ ବା କରିପାରିବ ଅନ୍ୟଥା
ବିଧି ସମ୍ବନ୍ଧ ବିହିତ ଅଟେ ସବୁ କଥା ।
ଏମନ୍ତ କହିଣ ରାଜା ବିନୟ ଭାବରେ
ନନ୍ଦଙ୍କୁ ସଙ୍ଗରେ ଘେନି ଗଲେ ନିଜପୁରେ ।
ସୁସ୍ୱାଦୁ ମଧୁର ମିଷ୍ଟ ଦ୍ରବ୍ୟ ଅଣାଇଲେ
ଭୋଜନ କରାଇ ତାଙ୍କ ମନକୁ ତୋଷିଲେ ।
ସେଅନ୍ତେ ବୋଇଲେ ତୁମ୍ଭେ ବେଗହୋଇଯାଇ
ସୁରଭାନୁଙ୍କ ସମ୍ମତି କର ତାଙ୍କୁ କହି ।
ତାହା ଶୁଣି ନନ୍ଦ ଗୋପପୁରେ ଚାଲିଗଲେ
ସୁରଭାନୁଙ୍କ ଆଗରେ ସମସ୍ତ କହିଲେ ।
ମଧ୍ୟସ୍ଥ ହୋଇ ଦୁହିଙ୍କ ମଧ୍ୟରେ ସମ୍ବନ୍ଧ
କରାଇବାରୁ ବେନିହେଁ ହୋଇଲେ ଆନନ୍ଦ ।
ପୁରୋହିତ ହେଲେ ତହିଁ ଗର୍ଗ ମୁନିବର
ସମାପ୍ତ କଲେ ସମସ୍ତ କର୍ମ ସେ କାଳର ।
ସନ୍ତୋଷରେ ନରପତି ଯୌତୁକ ବହୁତ
ଦେଲେ ଗଜ ଅଶ୍ୱ ଧନ ରତ୍ନର ସହିତ ।
କଳାବତୀଙ୍କୁ ପାଇଣ ବୃଷଭାନୁ ତୋଷେ
କ୍ରୀଡ଼ା କଲେ ନିର୍ଜ୍ଜନରେ ମାତି ରତିରସେ ।
କେତେବେଳେ ଗଲା ଦିନ ରାତି ନ ଜାଣିଲେ
ପରସ୍ପରଠାରେ ଦୁହେଁ ଆସକ୍ତ ହୋଇଲେ ।
ଉଭୟେ ତ ଜନ୍ମିଥିଲେ ଜାତିସ୍ମର ହୋଇ
ପୂର୍ବଜନ୍ମ କଥା ସବୁ ମନେ ପଡ଼ୁଥାଇ ।
ବଢ଼ିଲା ଦୁହିଙ୍କଠାରେ ଦୁହିଙ୍କର ପ୍ରେମ
ପ୍ରକୃତରେ ଦୁହେଁ ହୋଇଥିଲେ ତ ସକାମ
କାଳବଶେ କଳାବତୀ ଗର୍ଭବତୀ ହେଲେ
ରାଧିକାଦେବୀ ତାହାଙ୍କଠାରୁ ଜନମିଲେ ।
ଶାପ ପାଇଥିଲେ ସେ ତ ଶ୍ରୀଦାମାଙ୍କଠାରୁ
ମନୁଷ୍ୟ ଜନ୍ମ ପାଇଲେ ସେହି କାରଣରୁ ।
ମାତା ପିତା ଦୁହେଁ ତାଙ୍କୁ ଦରଶନ କରି
ମୁକତି ପାଇଲେ ଜାଣ ଆହେ ତପସ୍ୱୀ ।
ଶ୍ରବଣ କଲ ତା ଇତିହାସ ଉପାଖ୍ୟାନ
ପ୍ରକୃତ ବିଷୟ ଏବେ ଶୁଣ ଦେଇ ମନ ।
ଶିଳ୍ପବର ବିଶ୍ୱକର୍ମା ବୃଷଭାନୁ ଗୃହ
ନିର୍ମାଣ କରି ଆପଣା ଅନୁଚର ସହ ।
ସ୍ଥାନାନ୍ତରେ ଯାଇ ପୁଣି ପ୍ରବେଶ ହୋଇଲେ
ନନ୍ଦଙ୍କ ଗୃହ ନିର୍ମାଣ ଆରମ୍ଭ ସେ କଲେ ।

ଏକକ୍ରୋଶ ପରିମାଣ ଅଟଇ ତାହାର
ସମାନ ନୋହିବ ତାକୁ ଇନ୍ଦ୍ରଙ୍କ ନଗର ।
ଗମ୍ଭୀର ପରିଖା ଚାରିଗୋଟି ଚାରିପାଶେ
ରଖିଲେ ଶତ୍ରୁ ପ୍ରବେଶ ନୋହିବା ସକାଶେ ।
ସେ ମଧ୍ୟରେ ମନୋହର କୁସୁମ ଉଦ୍ୟାନ
ଥିଲେ ତହିଁରେ ପୁଷ୍ପିତ ବୃକ୍ଷଲତାମାନ ।
ଆବର ଚମ୍ପକ ପାରିଜାତ କଣିଅର
କେତକୀ କଦମ୍ବ ହେମ ପୁଷ୍ପ ନାଗେଶ୍ୱର ।
ଗୁବାକ ପନସ ଜମ୍ବୁ ନାରିକେଳ ଚୂତ
ଦାଡ଼ିମ୍ବ ଶ୍ରୀଫଳ ନାଗରଙ୍ଗ ଅପ୍ରମିତ ।
ଥିଲେ ସେ ନଗର ଚାରିପାର୍ଶ୍ୱରେ ବେଢ଼ି
ଶୋଭା ପାଉଥିଲେ ଫଳ କୁସୁମରେ ପୂରି ।
ପୁରଦ୍ୱାର ନିକଟରେ କଦଳୀ କାନନ
ଶ୍ୟାମଳ ପତ୍ରରେ ଦିଶୁଥିଲା ଶୋଭାବନ ।
ପରିଖା ମଧ୍ୟେ ପ୍ରବେଶ ଦ୍ୱାର ବିରଚିଲେ
ଶତ୍ରୁଙ୍କୁ ଦୁର୍ଗମ ଯାହା ଅଟେ ସବୁକାଳେ ।
ନିଜ ଜନଙ୍କର ଯିବା ଆସିବାର ପଥ
ନିରୂପିତ କରି ରଖିଥିଲେ ତାହା ସାଥ ।
ସେ ମାର୍ଗରେ କେତେଗୋଟି ମଣିସ୍ତମ୍ଭ ଥାଏ
ଗତାଗତ ହେଲାବେଳେ ସଙ୍କେତକୁ ଦିଏ ।
ଅଳପ ଜଳ ହେତୁରେ ସୁଗମ ହୁଅଇ
ଅମିତ୍ର ଲୋକଙ୍କୁ ତାହା ଗୋଚର ନୁହଇ ।
ସେହି ପରିଖା ତଟରେ ରୁଚିର ପ୍ରକାର
ଧନୁ ଶତ ପରିମାଣ ଅଟଇ ତାହାର ।
ଅତି ଆଣ୍ଠ ପୁଣି ଦୀର୍ଘ ପ୍ରସ୍ଥରେ ସମାନ
ପାଷାଣ ସୁଧା ଖଣ୍ଡରେ ହୋଇଛି ନିର୍ମାଣ ।
ମଧ୍ୟଭାଗେ ସ୍ୱର୍ଣ୍ଣମୟ ତୋରଣ କବାଟ
ବଜ୍ର କଳସ ପରସ୍ପେ ଅଟଇ ସେ ଆଣ୍ଠ ।
ଚତୁଃବିଂଶ ଚତୁଃଶାଳା ହୋଇଛି ସେ ପୁରେ
ନାନାବିଧ ମଣି ରତ୍ନ ବସିଛି ତହିଁରେ ।
ଆବର ସ୍ୱର୍ଣ୍ଣ କବାଟ ସୁବର୍ଣ୍ଣ କଳସ
ଖଞ୍ଜା ହୋଇ ସଉନ୍ଦର୍ଯ୍ୟ କରଇ ପ୍ରକାଶ ।
ଏହିରୂପେ ବିଶ୍ୱକର୍ମା ନନ୍ଦଙ୍କ ମନ୍ଦିର
ନିର୍ମାଣ କରି ସେଠାରୁ ଯାଇଣ ସତ୍ୱର ।
ଶୃଙ୍ଗାଟକ ରାଜପଥ ଶିଖର ସୋପାନ
କଲେ ସବୁ ସ୍ୱର୍ଣ୍ଣ ରତ୍ନ ଶିଳାରେ ଗଠନ ।

ସବୁଠାରେ ମଣିମୟ ମଣ୍ଡପ ବେଦିକା
ସଜାଇଲେ ହେବାପାଇଁ ଦ୍ରବ୍ୟ ବଣାଦିକା ।
ସେ ଅନ୍ତରେ ବୃନ୍ଦାବନେ ପ୍ରବେଶ ହୋଇଲେ
ସୁନ୍ଦର ରାସମଣ୍ଡଳ ଗୃହ ଆରମ୍ଭିଲେ ।
ବର୍ତ୍ତୁଳ ଆକାର ନାନା ରତ୍ନ ବିରଚିତ
ଉଭୟ ଭାଗରେ ଏକ ଯୋଜନ ବିସ୍ତୃତ ।
ନବଗୋଟି ମଣିମୟ ପୀଠ ବେଦିମାନ
ହୋଇଛନ୍ତି ନାନା ବର୍ଣ୍ଣ ରତ୍ନରେ ଯତନ ।
ଶୃଙ୍ଗାର ଯୋଗ୍ୟ ମଣ୍ଡପ ବନ୍ଧିତ ତହିଁରେ
ରଚିଲେ ବିଚିତ୍ର ରତ୍ନ ଶଯ୍ୟା ସନ୍ନତରେ ।
ନାନାଜାତି ସୁବାସିତ କୁସୁମର ବାସ
ବହି ଚହିବହ କରେ ମନକୁ ଉଲ୍ଲାସ ।
ଚାରିପାଶେ ସ୍ୱର୍ଣ୍ଣମୟ କଳସ ପ୍ରଦୀପ
ଥିବାରୁ ସେ ହୋଇଥିଲା ତେଜ ପ୍ରତିରୂପ
ପୁଷ୍ପିତ କୁସୁମ ବନ କ୍ରୀଡ଼ା ସରୋବର
ସେ ମଧ୍ୟେ ନିର୍ମାଣ କରି ଦେଲେ ସେ ଅପାର
ସେ ଅନ୍ତରେ ଅନ୍ୟସ୍ଥାନେ ଉପସ୍ଥିତ ହେଲେ
ଉତ୍ତମ ଗୃହ କେତେକ ନିର୍ମାଣ କରିଲେ ।
ତେତିଶ ଗୋଟି ସୁନ୍ଦର ବିଲକ୍ଷଣ ବନ
ରାଧାକୃଷ୍ଣଙ୍କ ସକାଶେ କଲେ ବିରଚନ ।
ପୁଣି ମଧୁବନ ପାଶେ ବଟବୃକ୍ଷ ମୂଳେ
କେତକୀ ଚମ୍ପକ ବୃକ୍ଷ ଶାଖାରେ ଗଢ଼ିଲେ ।
ରତ୍ନ ମଣ୍ଡପ ଗୋଟିଏ ଯତନରେ କଲେ
ମଣି ବୈଦୂର୍ଯ୍ୟ ବନ୍ଧିତ ତହିଁରେ ଖଞ୍ଜିଲେ ।
ତା ଚାରିପାଶରେ ବେଦୀ କଲେ ଚାରିଗୋଟି
ବସାଇଲେ ତହିଁ ରତ୍ନଶିଳା କୋଟି କୋଟି ।
ରତ୍ନସାର ବିରଚିତ ଶତ ଶତ ସ୍ତମ୍ଭ
ବସାଇ ଥିଲେ ସେଥିରେ ହେବାପାଇଁ ଦମ୍ଭ ।
ନବ ଦୁଆରେ ନୂତନ କବାଟ ଖଞ୍ଜିଲେ
କାନ୍ଥମାନଙ୍କରେ କେତେ ଚିତ୍ର ଲେଖାଇଲେ
ଉତ୍ତମ ରତ୍ନ ଖଚିତ କଳସ ଉପରେ
ବାନ୍ଧିଲେ ପତାକା ଧ୍ୱଜ ଦଣ୍ଡ ସହିତରେ ।
ଶ୍ୱେତ ଚାମର ଦର୍ପଣ ଛତ୍ର ଆଦିକରି
ଯଥା ସ୍ଥାନରେ ସ୍ଥାପନ କଲେ ସେହିପରି ।
ସେ ପୁର ବିସ୍ତାରେ ଶତହସ୍ତ ପରିମିତ
ଆବର ଧନୁ ସହସ୍ର ପ୍ରମାଣ ଉନ୍ନତ ।

ସେ ମଧ୍ୟରେ ରତ୍ନତଳ୍ପ ବହ୍ନିଶୁଦ୍ଧ ବାସ
ଉପଧାନ ସହିତରେ ରହିଛି ବିଶେଷ ।
ରତ୍ନପାତ୍ରମାନଙ୍କରେ କର୍ପୂର ତାମ୍ବୁଳ
ପୂରା ହୋଇଅଛି କାହିଁ ସୁବାସିତ ଜଳ ।
ମଲ୍ଲିକା ମାଳତୀ ଜାଇ ଯୁଣ୍ଡି ନାଗେଶ୍ବର
ଥିବାରୁ ସୁଗନ୍ଧ ଜାତ ହୁଏ ନିରନ୍ତର ।
ଏକେକ ସ୍ଥାନରେ ପୂର୍ଣ୍ଣରତ୍ନସିଂହାସନ
ନିର୍ମାଣ କଲେ ସେକାଳେ ହୋଇ ସାବଧାନ ।
ନବ ଉପଭୋଗ ଯୋଗ୍ୟ ହୋଇଥିଲା ସେହି
ତା ସମାନ ସ୍ବର୍ଗ ରାଜ୍ୟ ପୁର ଥିବ ନାହିଁ ।
ଏହିରୂପେ ବୃନ୍ଦାବନ ମଧ୍ୟରେ ବହୁତ
ମନ୍ଦିର କଲେ ସେ ବିଶ୍ବକର୍ମା ଦେଇ ଚିତ୍ତ ।
ଯାହା ସକାଶରେ ଯେଉଁ ଗୃହ ତୋଳିଥିଲେ
ତାହାଙ୍କ ନାମ ସେ ଗୃହ କାନ୍ଥରେ ଲେଖିଲେ
ପରିଜନ ସହିତରେ ଶ୍ରୀକୃଷ୍ଣଙ୍କ ପାଶେ
ପ୍ରବେଶ ହୋଇଲେ ତହିଁ ଯାଇଣ ହରଷେ ।
ନିଦ୍ରାରେ ଆସକ୍ତ ହୋଇ ଥିବାରୁ ତାହାଙ୍କୁ
ଦେଖି ନମସ୍କାର କଲେ ଧରିଣ ପାଦକୁ
ସେ ଅନ୍ତେ ଅନୁଚରଙ୍କୁ ସଙ୍ଗତରେ ଧରି
ମିଳିଲେ କ୍ଷଣକେ ଯାଇ ଆପଣା ନଗରୀ ।
ଏରୂପେ ଶ୍ରୀକୃଷ୍ଣଙ୍କର ଇଚ୍ଛା ଅନୁସାରେ
ଉତ୍ତମ ପୁର ନିର୍ମିତ ହେଲା ସେହିଠାରେ ।
ନାରଦ ବୋଇଲେ ଦେବ ବୃନ୍ଦାବନ ନାମେ
କିରୂପେ କାନନଟିଏ ହେଲା ମର୍ତ୍ତ୍ୟଧାମେ ।
ଏଥିର କାରଣ ମୋତେ କହ ସମଜାଇ
ଶୁଣିଲେ ତୁମ୍ଭ ମୁଖରୁ ପ୍ରୀତେ ଯିବ ମୁହିଁ ।
ନାରାୟଣ ବୋଇଲେ ହେ ମୁନିଙ୍କ ମଣ୍ଡନ
କହୁଅଛି ତାହା ଏବେ ଶୁଣ ଦେଇ ମନ ।
ପୂର୍ବକାଳେ ସତ୍ୟଯୁଗେ କେଦାର ନୃପତି
ଥିଲେ ସେ ଅଟନ୍ତି ସପ୍ତଦ୍ୱୀପ ଅଧିପତି ।
ଧାର୍ମିକ ପଣରେ ତାଙ୍କପରି ଏକା ସେହି
ଇନ୍ଦ୍ର ସମାନ ପାଳନା କରୁଥାନ୍ତି ମହୀ ।
ବିଧି ଅନୁସାରେ କରି ଶତ ଶତ ଯାଗ
ଦେବତାମାନଙ୍କୁ ଦେଉଥାନ୍ତି ହବିର୍ଭାଗ ।
ତଥାପି ଇନ୍ଦ୍ରତ୍ବ ପାଇବାକୁ ତାହାଙ୍କର
କାମନା ନ ଥାଏ ଜାଣ ଆହେ ମୁନିବର ।
ନାନାବିଧ ଦାନ ଧର୍ମ ଅନୁଷ୍ଠାନ କରି
ଫଳବାଞ୍ଛା ନ କରନ୍ତି ସେ ନରକେଶରୀ ।
ଶ୍ରୀକୃଷ୍ଣ ଚରଣେ ସଦା ଦେଇଥାନ୍ତି ଚିତ୍ତ
ତାଙ୍କପରି ରାଜା କାହିଁ ନୋହିଛନ୍ତି ଜାତ ।
ଜୈଗୀଷବ୍ୟ ଉପଦେଶ ପୁତ୍ରଙ୍କ ଉପରେ
ରାଜ୍ୟଭାର ଦେଇ ତପ କରିବା ଇଚ୍ଛାରେ ।
ନିବିଡ଼ ବନ ମଧ୍ୟରେ ଯାଇ ସେ ମିଳିଲେ
ଶ୍ରୀହରିଙ୍କୁ ଧ୍ୟାନକରି ତପ ଆରମ୍ଭିଲେ ।
କେତେକାଳ ଅନ୍ତେ ଦେବ ଗୋଲୋକ ଈଶ୍ୱର
ରଖାଇଲେ ନେଇ ତାଙ୍କୁ ଆପଣା ପାଶରେ ।
ଯେଉଁଠାରେ ତପ କରିଥିଲେ ସେ ନୃପତି
କେଦାର ତୀର୍ଥନାମରେ ହେଲା ତାର ଖ୍ୟାତି ।
ଏବେ ମଧ୍ୟ ସେ ତୀର୍ଥରେ ମରଇ ଯେ ଜନ
ମୁକତ ହୁଅଇ ଜାଣ ଆହେ ତପୋଧନ ।
ସେ କେଦାର ନୃପଙ୍କର ଔରସୀ ନନ୍ଦନୀ
ଅଶେଷ ଗୁଣରେ ପୂର୍ଣ୍ଣ ଅଟେ ସେ କାମିନୀ ।
କମଳା ଅଂଶରେ ଜାତ ହୋଇଥିଲା ସେହି
ନଥିବ ସୌନ୍ଦର୍ଯ୍ୟ ପଣେ ତା ସମାନ କେହି ।
ଦୁର୍ବାସା ମୁନିଙ୍କଠାରୁ ମନ୍ତ୍ରଟିଏ ଶିଖି
ଜପକଲା ବନେ ଯାଇ ସେ ସୁଧାଂଶୁମୁଖୀ ।
ସଂସାର ବିଷୟ ତ୍ୟାଗ କଲା ତାର ମନ
ଭାବନା କଲା ନିରତେ ଶ୍ରୀହରି ଚରଣ ।
ତାହା ଜାଣି ଦେବ ଦେବ ଗୋଲୋକ ଈଶ୍ୱର
ନିଜରୂପ ଧରି ଉଭା ହେଲେ ତା ଆଗର ।
ପ୍ରସନ୍ନ ବଦନେ ତାଙ୍କୁ ବୋଇଲେ ସୁନ୍ଦରି
ବର ମାଗ ଯାହା ଇଚ୍ଛା ହେଉଛି ତୁମ୍ଭରି ।
ଏରୂପେ ଶ୍ରୀକୃଷ୍ଣଙ୍କର ବଚନକୁ ଶୁଣି
ବଦନ ଟେକି ଚାହିଁଲା ସେ ରମଣୀମଣି ।
ଦେଖିଲା କନ୍ଦର୍ପ ତୁଲ୍ୟ ସୁନ୍ଦର ମୂରତି
ବର ଦେବାପାଇଁ ଆଗେ ଉଭା ହୋଇଛନ୍ତି ।
ତାଙ୍କ ରୂପରେ ମୋହିତ ହୋଇ ସେହିକ୍ଷଣି
କନ୍ଦର୍ପ ବାଣକୁ ଆଉ ନ ପାରିଲା ଜିଣି ।
ସେ ସକାଶୁ ଲଜ୍ଜା ଛାଡ଼ି ବୋଇଲା ହେ ଦେବ
ଆଜଠାରୁ ତୁମ୍ଭେ ମୋର ପତି ହେବ ।
ବର ଦେବାପାଇଁ ଯେବେ କଲ ଅନୁଗ୍ରହ
ଏ ବର ମାଗୁଛି ମୋତେ ଦିଅ ବଦ୍ଧସ୍ନେହ ।

ତାହା ଶୁଣିଣ ଶ୍ରୀକୃଷ୍ଣ ସନମତ କଲେ
ସେ କନ୍ୟାକୁ କୋଳେ ଧରି ଉତ୍ତରେମାଣ୍ଡଲେ
କେତେଦିନେ ସେହିଠାରେ କରି ଅବସ୍ଥାନ
ସଙ୍ଗେ ତାକୁ ଘେନି କଲେ ଗୋଲୋକେ ଗମନ
ଆହେ ମୁନିବର ତାର ନାମ ବୃନ୍ଦାବତୀ
ରାଧିକା ସମାନ ସେହୁ ଅଟେ ମହାସତୀ ।
ଯେଉଁ ବନରେ ସେ ବୃନ୍ଦା ତପ କରିଥିଲା
ବୃନ୍ଦାବନ ବୋଲିକରି ତା ନାମ ରହିଲା ।
ଅନ୍ୟପ୍ରକାର କାରଣ ଅଛି ମଧ୍ୟ ତହିଁ
କହିବା ସେ କଥା ଏବେ ଶୁଣ ମନଦେଇ ।
କୁଶଧ୍ୱଜଙ୍କର ହେଲ କନ୍ୟା ଜାତ ହେଲେ
ତୁଳସୀ ବେଦବତୀ ସେ ନାମକୁ ବହିଲେ ।
ବେଦବତୀ ଚିରକାଳ ତପ କଲା ପରେ
ଜନ୍ମ ହେଲେ ସୀତା ନାମ ଜନକ-ଗୃହରେ
ତପବଳେ ରାମରୂପୀ ନାରାୟଣଙ୍କର
ପତ୍ନୀ ହୋଇଲେ ସେକାଳେ ରମଣୀଙ୍କ ବର ।
ତୁଳସୀ ମଧ୍ୟ ବହୁତ ତପ ଆଚରିଲେ
ଶ୍ରୀହରିଙ୍କୁ ପତିରୂପେ ବରଣ ସେ କଲେ ।
ମାତ୍ର ଦୁର୍ବାସା ମୁନିଙ୍କ ଶାପ ସକାଶରୁ
ଶଙ୍ଖାସୁରକୁ ବରଣ କଲେ ଗୃହୁଭୁରୁ ।
ଶାପଅନ୍ତେ ପୁଣି ନାରାୟଣଙ୍କୁ ପାଇଲେ
ଦଇବେ କଳହ ଜାତ ହେଲା ତାଙ୍କ ତୁଲେ ।
ସେ ସକାଶୁ ନାରାୟଣ କରି ମହାକୋପ
ବୋଇଲେ ଏକ୍ଷଣି ତୁମ୍ଭେ ହୁଅ ବୃକ୍ଷରୂପ ।
ଦେବୀମଧ୍ୟ କ୍ରୋଧଭରେ ବୋଇଲେ ଯେ ତୁମ୍ଭେ
ଶିଳାରୂପ ହୁଅ ଶାପ ଦେଉଅଛୁ ଆମ୍ଭେ ।
ସେହି ଶିଳା ଶାଳଗ୍ରାମ ନାମରେ ବିଖ୍ୟାତ
ତାଙ୍କୁ ପୂଜାକଲେ ଲୋକ ହୁଅଇ ମୁକତ ।
ସେହିଠାରୁ ଶାଳଗ୍ରାମ ଶିଳାପରେ ନିତ
ବିଷ୍ଣୁପୂଜକେ ସର୍ବଦା ତୁଳସୀ ଦିଅନ୍ତି ।
ତୁଳସୀ ଚରିତ ପୂର୍ବେ କହିଛୁ ବିସ୍ତାରି
ତଥାପି କଥା ପ୍ରସଙ୍ଗେ କହିଗଲି ଫେରି ।
ସେ ତୁଳସୀ ଅନ୍ୟ ନାମ ବୃନ୍ଦା ଅଟେ ଜାଣ
ତାର ତପୋବନ ନାମେ ହେଲା ବୃନ୍ଦାବନ ।
ରାଧାଙ୍କ ଷୋଡ଼ଶ ନାମ ମଧ୍ୟରେଟି ବୃନ୍ଦା
ନାମଗୋଟି ଅଛି ଏଥି ନାହିଁ କିଛି ଧନ୍ଦା ।
ଯେ ହେତୁରୁ ରାଧାଙ୍କର କ୍ରୀଡ଼ା ନିକେତନ
ଅଟେ ଯେଣୁ ନାମ ତାର ହେଲା ବୃନ୍ଦାବନ
ପୂର୍ବକାଳେ ଗୋଲୋକରେ ପ୍ରଭୁ ନରହରି
ବୃନ୍ଦାବନ ନାମେ ଏକ ବନେ ଥିଲେ କରି ।
ମର୍ତ୍ତ୍ୟଲୋକେ ଅବତାର ହେବା ସମୟରେ
ନିରୂପିତ କଲେ ଏହି ବନ ସେ ନାମରେ ।
ନାରଦ ବୋଇଲେ ରାଧା ଦେବୀଙ୍କ ଷୋଡ଼ଶ
ନାମମାନ ମୋ ଆଗରେ କହ ମୁନିଈଶ ।
ସାମବେଦେ ନିରୂପିତ ସହସ୍ରେକ ନାମ
ଶୁଣିଛି ପୂର୍ବରେଯାହା ଅଟଇ ଉତ୍ତମ ।
ଏବେ ଯେଉଁ ନାମ କହୁଅଛନ୍ତି ଆପଣ
ତହିଁରୁ ଏ ପୃଥକ୍ ରୂପେ ଅଟନ୍ତି କି ଭିନ୍ନ ।
କି ଅବା ସେଥି ମଧ୍ୟରେ ଥିବାରୁ କେତେକ
ଅଟନ୍ତି ବତାଇ କହ ମୁନିଙ୍କ ନାୟକ ।
ନାରାୟଣ ବୋଇଲେ ହେ ଶୁଣ ମନଦେଇ
ସେହି ଷୋଡ଼ଶ ନାମକୁ କହୁଅଛି ମୁହିଁ ।
ରାଧା ରାସଅଧୀଶ୍ୱରୀ ରାସ ନିବାସିନୀ
ରସିକଈଶ୍ୱରୀ କୃଷ୍ଣପ୍ରେମତରଙ୍ଗିଣୀ ।
କୃଷ୍ଣପ୍ରାଣାଧିକା କୃଷ୍ଣବାମାଂଶ ସମ୍ଭୂତା
କୃଷ୍ଣସ୍ୱରୂପା ପରମାନନ୍ଦ ବୀଜଲତା ।
କୃଷ୍ଣ ବୃନ୍ଦାବନପ୍ରିୟା ବୃନ୍ଦାବୃନ୍ଦାବତୀ
ଚନ୍ଦ୍ରାବତୀ ଚନ୍ଦ୍ରକାନ୍ତା ଶ୍ରୁତ ଚନ୍ଦ୍ରାନନୀ ।
ଏହିପରି ଷୋଳ ନାମ ରାଧା ଦେବୀଙ୍କର
ଅନ୍ତର୍ଗତ ଅଟନ୍ତିଟି ସହସ୍ର ମଧ୍ୟର ।
ପ୍ରତ୍ୟେକ ନାମର ବ୍ୟୁତ୍ପତ୍ତିକୁ ଏବେ ଶୁଣ
ରା ଶବଦ ଅଟେ ଦାନ ବାଚକଟି ଜାଣ
ଧା ଶବଦ ଅର୍ଥ ଅଟେ ସାଯୁଜ୍ୟ ମୁକତି
ଏମନ୍ତ ପ୍ରକାରେ ରାଧା ଶବ୍ଦର ବ୍ୟୁତ୍ପତ୍ତି ।
ରାସେଶ୍ୱର ପତ୍ନୀ ହେତୁ ରାସ ଅଧୀଶ୍ୱରୀ ।
ରାସେ ବାସ କରିବାରୁ ବାସିନୀ ସେପରି ।
ରସିକ ଈଶ୍ୱର ପ୍ରଭୁ ଅଟନ୍ତି ଶ୍ରୀହରି
ତାଙ୍କ ଭାର୍ଯ୍ୟା ହେବାରୁ ସେ ରସିକଈଶ୍ୱରୀ ।
ଶ୍ରୀକୃଷ୍ଣଙ୍କ ପ୍ରାଣଠାରୁ ରାଧିକା ଅଟନ୍ତି
ତେଣୁ କୃଷ୍ଣ ପ୍ରାଣାଧିକା ନାମେ ହେଲା ଖ୍ୟାତି
ପ୍ରୀତିକାରିଣୀ ପୁଣି ହୋଇବାରୁ ସେହି
କୃଷ୍ଣପ୍ରିୟା ବୋଲିକରି ନାମ ଅଛି ବହି ।

ସମର୍ଥ ଅଟନ୍ତି କୃଷ୍ଣ ରୂପ ବହିବାକୁ
ସେ ହେତୁ କୃଷ୍ଣସ୍ୱରୂପା ବୋଲନ୍ତି ତାହାଙ୍କୁ ।
ଶ୍ରୀକୃଷ୍ଣଙ୍କ ବାମ ଅଂଶୁ ଜାତ ହୋଇବାରୁ
କୃଷ୍ଣବାମାଙ୍ଗନା ବୋଲାଇଲେ ସ୍ୱରୂପରୁ
ବେଦଶାସ୍ତ୍ରରେ ପରମାନନ୍ଦରାଜଲତା
ଉଲ୍ଲେଖ ଥିବାରୁ ସେହି ନାମେ ହେଲେ ଖ୍ୟାତା।
କୃଷ୍ଣ ଶବଦ ଅଟଇ ମୋକ୍ଷାର୍ଥ ବାଚକ
ଉତ୍କୃଷ୍ଟ ଅର୍ଥ ବୁଝାଏ ଣ ଅକ୍ଷର ଏକ ।
ଆକାର ଦାତୃବଚନ ଅଟଇଟି ଜାଣ
ସେ ସକାଶୁ କୃଷ୍ଣା ବୋଲି ନାମ ହେଲା ପୁଣ ।
ତାଙ୍କ ସକାଶରେ କ୍ରୀଡ଼ାସ୍ଥଳ ବୃନ୍ଦାବନ
ତେଣୁ ବୃନ୍ଦାବନୀ ବୋଲି ପାଇଲେ ସେ ନାମ ।
ବୃନ୍ଦାବନ ଅଧିଷ୍ଠାତ୍ରୀ ଦେବତା ସେ ଯହୁଁ
ବୃନ୍ଦାବନାଧି ଦେବତା ବୋଲନ୍ତିଟି ତହୁଁ ।
ସଖୀବୃନ୍ଦରେ ବେଷ୍ଟିତ ହେବାରୁଟି ସେହି
ବୃନ୍ଦା ନାମ ତାହାଙ୍କର ପ୍ରସିଦ୍ଧ ଅଟଇ ।
ବିନୋଦ ଶବଦ ଅଟେ ଆନନ୍ଦ ବାଚକ
ବୃନ୍ଦାବନ ବିନୋଦିନୀ ହେଲା ତହୁଁ ଠିକ ।
ତାହାଙ୍କର ନଖ ଚନ୍ଦ୍ରାବଳୀ ବିରାଜଇ
ଆଉର ବଦନ ଚନ୍ଦ୍ର ସଦୃଶ ଅଟଇ ।
ସେ ସକାଶୁ ଚନ୍ଦ୍ରାବଳୀ ନାମ ଖ୍ୟାତ ହେଲା
ମନଦେଇ ଶୁଣ ଆହେ ବ୍ରହ୍ମାଙ୍କର ବାଳା ।
ଶରଦଚନ୍ଦ୍ର ସମାନ ଅଟେ ତାଙ୍କ କାନ୍ତି
ସେ ସକାଶୁ ଚନ୍ଦ୍ରକାନ୍ତା ନାମ ସେ ବହନ୍ତି ।
ଶତଚନ୍ଦ୍ର ପରି ଶୋଭା ବହେ ମୁଖଶିରୀ
ତେଣୁ ଶତଚନ୍ଦ୍ରମୁଖୀ ନାମ ତାହାଙ୍କର ।
ଏମନ୍ତ ଷୋଡ଼ଶ ନାମ ବ୍ୟୁତ୍ପତ୍ତି ସହିତ
ନାଭିପଦ୍ମରେ ବ୍ରହ୍ମାଙ୍କୁ ଦେଲେ ପଦ୍ମନେତ୍ର ।
ଧର୍ମଙ୍କୁ ପ୍ରଦାନ କଲେ ବ୍ରହ୍ମା ପ୍ରଜାପତି
କରୁଣାକରି ଧର୍ମ ମୋତେ ଦେଲେ ଆହେ ଯତି
ଏବେ ତୁମ୍ଭ ଆଗେ ମୁହିଁ କଲି ପରକାଶ
ଶୁଣିଲେ ଏହାକୁ ସର୍ବପାପ ହୁଏ ନାଶ ।
ତ୍ରିସନ୍ଧ୍ୟା କାଳରେ ଏହା ପଠନ ଯେ କରେ
ପ୍ରସନ୍ନ ହୁଅନ୍ତି ରାଧା କୃଷ୍ଣ ତାହାଠାରେ ।
ଇହଲୋକରେ ସକଳ ସମ୍ପଦ ସେ ପାଏ
ଦେହ ଅନ୍ତରେ ଗୋଲୋକ ଭୁବନକୁ ଯାଏ

ବ୍ରତ ଉପବାସ ଦାନ ଯଜ୍ଞଆଦି ଯେତେ
ଏହାର ସମାନ ନ ହୋଇବ କଦାଚିତେ ।
ନାରଦ ବୋଇଲେ ଋଷିଗଣଙ୍କ ମଣ୍ଡନ
ଶୁଣିଲେ ଅପୂର୍ବ ରାଧାସ୍ତୋତ୍ର ଉପାଖ୍ୟାନ ।
ପ୍ରକୃତ ବିଷୟ ଏବେ କହ ଭଲକରି
ଶୁଣିବାପାଇଁକି ଶ୍ରଦ୍ଧା ହେଉଛି ମୋହରି
ପ୍ରାତଃକାଳେ ଉଠି ନନ୍ଦଆଦି ଗୋପଗଣ
କି ବିସ୍ମୟ କଲେ ନବ ମନ୍ଦିର ଦେଖିଣ ।
ନାରାୟଣ ବୋଇଲେ ହେ ନିଶା ଅବଶେଷେ
ଦିଶିଲା ଅରୁଣକର ପୂରୁବ ଆକାଶେ ।
ଶଯ୍ୟା ତ୍ୟାଗକରି ସର୍ବେ ଗୋପ ଗୋପୀଜନ
ଯଥାବିଧି ନିତ୍ୟକର୍ମ କଲେ ସମାପନ ।
କ୍ରମେ କ୍ରମେ ଦଶଦିଗ ହୁଅନ୍ତେ ଉଜ୍ଜ୍ୱଳ
ଉଦୟ ହୋଇଲା ନବମାର୍ତ୍ତଣ୍ଡ ମଣ୍ଡଳ ।
ସେକାଳେ ନନ୍ଦ ପ୍ରଭୃତି ସର୍ବଗୋପନର
ଦେଖିଲେ ବୃନ୍ଦାବନରେ ବିଚିତ୍ର ନଗର ।
ଆଶ୍ଚର୍ଯ୍ୟ ହୋଇଣ ପରସ୍ପର ମୁଖ ଚାହିଁ
ବୋଇଲେ କି ଅଦଭୁତ କଥା ଏ ଅଟଇ ।
ଅରଣ୍ୟ ମଧ୍ୟରେ କାହୁଁ ହେଲା ଦିବ୍ୟପୁର
କେଉଁ ସମୟରେ ଆସି କଲା କେ ତିଆର
ଗର୍ଗମୁନିଙ୍କ ବଚନ ସୁମରନ୍ତେ ନନ୍ଦ
ପ୍ରବେଶ କଲା ମନରେ ଅଶେଷ ଆନନ୍ଦ ।
ଭାବିଲେ ଅଟଇ ଏହା ଶ୍ରୀହରିଙ୍କ କୃତ୍ୟ
ନୋହିଲେ କି ଆନ ହୋଇ ପାରେ ସମରଥ
ଅଖିଳ ଜଗତ ଅଟେ ତାହାଙ୍କ ଅଧୀନ
କ୍ଷଣକରେ ସବୁ କରି ପାରନ୍ତି ସେ ଆନ ।
ବ୍ରହ୍ମା ସଦାଶିବ ଇନ୍ଦ୍ର ଆଦି ଦେବଗଣ
ଧ୍ୟାନ କରୁଥାନ୍ତି ସଦା ତାଙ୍କ ଶ୍ରୀଚରଣ ।
ଜାତ ହୋଇଛନ୍ତି ମାୟା ନରରୂପ ଧରି
ତାଙ୍କର ଅସାଧ୍ୟ କିବା ଅଛି ତନପୁଣି ।
ଏମନ୍ତ ବିଚାରି ପୁର ମଧ୍ୟରେ ପଶିଲେ
ନାମ ପାଠକରି ଯାହା ଘର ତାକୁ ନେଲେ ।
ଶୁଭ ମୁହୂର୍ତ୍ତରେ ନନ୍ଦ ବୃଷଭାନୁ ଦୁହେଁ
ଆପଣା ଆପଣା ଗୃହେ ବାସ କଲେ ସ୍ନେହେ ।
ଆନନ୍ଦରେ ସର୍ବଗୋପ ଗୋପିକା ସକଳ
ରହିଲେ ସେ ପୁରେ ପରସ୍ପରେ ବାନ୍ଧି ମେଳ

ବଳଦେବ ସହିତରେ ଦେବ ନରହରି
କ୍ରୀଡ଼ାକଲେ ତହିଁ ଗୋପବାଳକଙ୍କୁ ଧରି ।
ଏହିଠାରେ ବୃନ୍ଦାବନ ନଗର ନିର୍ମିତ
ବର୍ଣ୍ଣନା ସମାପ୍ତ କଲେ ଧ୍ୟାନଜ୍ଞାନ ଶ୍ରେଷ୍ଠ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ନାରାୟଣଙ୍କଦ୍ୱାରା ବୃନ୍ଦାବନ ନଗର ବୃତ୍ତାନ୍ତ ବର୍ଣ୍ଣନେ ନାମ ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ

## ବିପ୍ରରମଣୀମାନଙ୍କର ମୋକ୍ଷଣ ପ୍ରସ୍ତାବ

ଶଉନକ ବୋଇଲେ ହେ ସୂତ ମୁନିବର
ନାରାୟଣଙ୍କ ମୁଖରୁ ଶୁଣି କଥାସାର ।
ନାରଦ ମହର୍ଷି ଆଉ କି ପୁଚ୍ଛିଲେ ତାଙ୍କୁ
ଆମୂଳ କରିଣ ଏବେ କହ ତା ଆମ୍ଭଙ୍କୁ ।
ତାହା ଶୁଣି ସୂତ ମୁନି ବୋଇଲେ ନାରଦ
ଶୁଣିକରି ବୃନ୍ଦାବନ ନଗର ସମ୍ବାଦ ।
ନାରାୟଣଙ୍କ ମୁଖକୁ ସାଦରେ ଅନାଇଁ
ବୋଇଲେ ଶୁଣିବା ହେଉ ଆହେ ଋଷିସାଇଁ ।
ଶ୍ରୀକୃଷ୍ଣ ଚରିତ ଆଉ ଜାଣିଅଛ ଯାହା
କହ ଶୁଣିବାକୁ ଜାତ ହେଉଛି ଉତ୍ସାହ ।
ଏରୂପେ ନାରଦଙ୍କର ବଚନକୁ ଶୁଣି
ଆନନ୍ଦେ କହିଲେ ନାରାୟଣ ଋଷିମଣି ।
ବୋଇଲେ ଏକଦା କୃଷ୍ଣ ବଳରାମ ଭୁଲେ
ଗୋଗୋଷ୍ଠ ଘେନିଣ ମଧୁବନରେ ମିଳିଲେ ।
ସେଠାରେ ଗୋପବାଳକେ ଯାଇଥିଲେ ଯେତେ
ଗୋରୁ ଚରାଇବା ପାଇଁ ବୁଲିଲେ ସମସ୍ତେ ।
କେତେକ ସମୟପରେ ଛାଡ଼ିଣ ଗାଈଙ୍କୁ
କ୍ରୀଡ଼ା କଲେ ଘେନି ବଳରାମ ଶ୍ରୀକୃଷ୍ଣଙ୍କୁ ।
କ୍ଷୁଧାତୃଷାରେ ଆକୁଳ ହେଲେ ଯେତେବେଳେ
ଶ୍ରୀକୃଷ୍ଣଙ୍କୁ ଅନାଇଁଣ ବଚନ କହିଲେ ।
ବୋଇଲେ ହେ କୃଷ୍ଣ ଆମ୍ଭେ କ୍ଷୁଧା ପିପାସାରେ
ପୀଡ଼ିତ ହୋଇଲୁ କି କରିବୁ କହ ବାରେ ।
ତାହାଙ୍କ ବଚନ ଶୁଣି ଦେବ ନରହରି
କହିଲେ ହିତ ବଚନ ମନେ ଦୟାକରି ।
ବୋଇଲେ ଦ୍ୱିଜଙ୍କ ଯଜ୍ଞସ୍ଥାନେ ତୁମ୍ଭେ ଯାଅ
ଅନ୍ନ ବ୍ୟଞ୍ଜନାଦି ସେମାନଙ୍କୁ ମାଗି ଖାଅ ।
ଏହି ବନ ନିକଟରେ ଅନେକ ବ୍ରାହ୍ମଣ
ଯାଗ କରୁଛନ୍ତି ମୁକ୍ତି ପାଇବାକୁ ଜାଣ ।
ଆଗ ତୁମ୍ଭେମାନେ ତାଙ୍କୁ ମାଗିବ ଭୋଜନ
କାର୍ଯ୍ୟରେ ଆସକ୍ତ ଥିବ ଯେବେ ତାଙ୍କ ମନ ।
ବିରକ୍ତ ନ କରି ପୁନ ହେଲେ ତହୁଁ ଯିବ
ବ୍ରାହ୍ମଣୀମାନଙ୍କୁ ମାଗି ଖାଇଣ ଆସିବ ।
ଶ୍ରୀକୃଷ୍ଣ ବଚନ ଶୁଣି ଗୋପ ଶିଶୁଗଣେ
ଗଲେ ଯହିଁ ଯାଗ କରୁଥିଲେ ସେ ବ୍ରାହ୍ମଣେ ।
ତାହାଙ୍କ ଆଗରେ କରଯୋଡ଼ି ଉଭା ହେଲେ
ଅନ୍ନ ଦିଅ ବେଗେ ଆମ୍ଭେ ଖାଇବୁ ବୋଇଲେ ।
ବ୍ରାହ୍ମଣେ ତ ଯାଗକର୍ମେ ଥିଲେ ଭକ୍ତିଭର
ଶୁଣିଲେ ହେଲେ ଶିଶୁଙ୍କୁ ନ ଦେଲେ ଉତ୍ତର ।
ତାହା ଦେଖିଣ ବାଳକେ ସେଠାରୁ ଯାଇ
ମିଳିଲେ ଅଛନ୍ତି ଦ୍ୱିଜପତ୍ନୀଗଣ ଯହିଁ ।
ଦେଖି ତାଙ୍କୁ କରଯୋଡ଼ି ବୋଇଲେ ହେ ମାତ
କ୍ଷୁଧା ହେଉଛି ଆମ୍ଭଙ୍କୁ ଦିଅ ବେଗେ ଭାତ ।
ବ୍ରାହ୍ମଣୀଏ ଶୁଣି ତାହା ହସ ହସ ହୋଇ
ବୋଇଲେ କିଏସେ ତୁମ୍ଭେ ଅଛ କେଉଁଠାଇଁ
ସତ କରିଣ ଏ କଥା ଆମ୍ଭ ଆଗେ କହ
ଉତ୍ତମ ଅନ୍ନବ୍ୟଞ୍ଜନ ଦେବୁ ପଛେ ନିଅ ।
ଏରୂପେ ତାହାଙ୍କଠାରୁ ଶୁଣିଣ ଉତ୍ତର
ମହାଆନନ୍ଦରେ ସବୁ ଗୋପାଳ କୁମର ।
ବୋଇଲେ ସମସ୍ତେ ଆମ୍ଭେ ଅଟୁ ଗୋପସୁତ
ଗୋରୁ ଚରାଇବା ପାଇଁ ଆସିଲୁ ତ୍ୱରିତ ।
ରାମକୃଷ୍ଣ ଦୁହେଁ ଆମ୍ଭ ସଙ୍ଗେ ଆସିଛନ୍ତି
ମଧୁବନେ ବଟବୃକ୍ଷ ତଳରେ ଅଛନ୍ତି ।

ସେ ବୃନ୍ଦ ମଧ୍ୟ କ୍ଷୁଧାରେ ହୋଇଲେ ଆତୁର
ପେଷିଲେ ଆମ୍ଭମାନଙ୍କୁ କୃଷ୍ଣ ସମୀପର ।
ଦେବ କି ନ ଦେବ ତାହା କହ ବେଗେ କରି
ଦେଲେ ରକ୍ଷିବୁ ନୋହିଲେ ଫିରୁ ସବେ ଫେରି
ଗୋପଙ୍କ ବଚନ ଶୁଣି ଦ୍ୱିଜ ସ୍ତ୍ରୀଗଣ
ଜାଣିଲେ ଶ୍ରୀକୃଷ୍ଣ ନରରୂପୀ ନାରାୟଣ ।
ସେ ସବାଶୁ ଭକ୍ତିଭରେ ହୃଷ୍ଟାଇ ମାନସ
ଆଣିଲେ ଅନ୍ନବ୍ୟଞ୍ଜନ ପିଷ୍ଟକ ପାୟସ ।
ଦଧି ଦୁଗ୍ଧ ଘୃତ ମଧୁ ଲବଣ ସହିତେ
ସ୍ୱର୍ଣ୍ଣ ରୌପ୍ୟ କାଂସ୍ୟ ଆଦି ନାନାବିଧପାତ୍ରେ
ନିଜ ନିଜ ହସ୍ତେ ଘେନି ବାହାରି ହୋଇଲେ
ଶ୍ରୀକୃଷ୍ଣଙ୍କ ସମୀପରେ ଯାଇଣ ମିଳିଲେ ।
ସହଜେ ତ ଅଟନ୍ତି ସେ ପତିବ୍ରତାସତୀ
ଜାଗିଲା ତାଙ୍କ ହୃଦରେ ଶ୍ରୀକୃଷ୍ଣ ଭକତି ।
ଦେଖିଲେ ବସିଅଛନ୍ତି କୃଷ୍ଣ ବଳରାମ
ରୂପରେ ତାହାଙ୍କୁ ସରି ନ ହୋଇବ କାମ ।
ଶ୍ରୀକୃଷ୍ଣଙ୍କ ଦେହ ନବନୀରଦ ଶ୍ୟାମଳ
ସସ୍ମିତ ସୁନ୍ଦର ଶାନ୍ତ ଶ୍ରୀମୁଖ ମଣ୍ଡଳ ।
ଦିବ୍ୟ ସ୍ୱର୍ଣ୍ଣ ରତ୍ନ ଅଳଙ୍କାର ବିଭୂଷିତ
ମଣିଯୁକ୍ତ ହେମମାଳା ଆଜାନୁଲମ୍ବିତ ।
ଆବର ମାଳତୀ ପୁଷ୍ପହାରେ ବକ୍ଷସ୍ଥଳ
ତାରକାମୟ ଆକାଶ ସଦୃଶ ମଞ୍ଜୁଳ ।
ମସ୍ତକରେ ଶିଖୀପୁଚ୍ଛ ଅତି ମନୋହର
କଦମ୍ବ କୁସୁମ ବେନି କର୍ଣ୍ଣର ଉପର ।
ଏରୂପେ କୃଷ୍ଣଙ୍କୁ ଦେଖି ଦ୍ୱିଜପତ୍ନୀଗଣ
ସ୍ତୁତିକଲେ ବେନିହସ୍ତ ଯୋଡ଼ି ତତକ୍ଷଣ ।
ବୋଇଲେ ନମସ୍ତେ ଦେବ ପରମ ପୁରୁଷ
ତୁମ୍ଭେ ଅଟ ନିରାକାର ସାକାର ବିଶେଷ ।
ନିର୍ଲିପ୍ତ ପରମଆତ୍ମା ଜଗତ କାରଣ
ସୃଷ୍ଟି-ସ୍ଥିତି-ଲୟକର୍ତ୍ତା ପ୍ରଭୁ ନାରାୟଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତୁମ୍ଭ ଅଂଶେ ଜାତ
ତୁମ୍ଭ ଲୋମମୂଳେ ଲୀନ ଅଶେଷ ଜଗତ ।
ମହାବିରାଟ ପୁରୁଷ ଜନ୍ମର କାରଣ
ଆବର ସକଳ ଲୋକଦେହରୁ ସେ ଆପଣ ।
ତେଜ ତେଜସ୍କର ଜ୍ଞାନୀ ପରମ ଈଶ୍ୱର
ଅନିର୍ବଚନୀୟ ବୁଦ୍ଧି ବେଦଙ୍କ ମଧ୍ୟର ।
ମହଦାଦି ସୃଷ୍ଟି ହେତୁ ସର୍ବଶକ୍ତିମୟ
ତୁମ୍ଭ ଚରଣ ସେବିଲେ ମିଳଇ ଅଭୟ ।
ଇନ୍ଦ୍ରିୟ ରହିତ ପ୍ରଭୁ ହେଲେହେଁ ଆପଣ
ସକଳ ଇନ୍ଦ୍ରିୟ ଭାବ ବିଷୟକୁ ଜାଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଧର୍ମ ଶେଷଦେବ ।
ସଙ୍କଳନା କରି ନ ପାରନ୍ତି ତୁମ୍ଭ ଭାବ ।
ଆବର ପାର୍ବତୀ ଲକ୍ଷ୍ମୀ ରାଧା ସରସ୍ୱତୀ
ତୁମ୍ଭର ମହିମା ଭଲେ ଜାଣି ନ ପାରନ୍ତି ।
ସ୍ତବକରେ ମୂଢ଼ ଆମ୍ଭେ ଅଟୁ ସ୍ତ୍ରୀଜାତି
କି ଜାଣି ପାରିବୁ ପ୍ରଭୁ ତୁମ୍ଭ ପାଦ ଭକ୍ତି ।
ପ୍ରସନ୍ନ ହୋଇଣ ଆମ୍ଭଠାରେ ଦୟାକର
ଅହେ ପ୍ରଭୁ ରାଧାହୃଦ ପଙ୍କଜ-ଭ୍ରମର ।
ଏତେବୋଲି ବିପ୍ର ସ୍ତ୍ରୀଗଣ ପ୍ରଭୁଙ୍କର
ପାଦ ଧରି କରଯୋଡ଼ି କଲେ ନମସ୍କାର ।
ଅଭୟ ଦେଲେ ତାହାଙ୍କୁ ନନ୍ଦରଜା ସୁତ
ଆବର ବୋଇଲେ ଶଙ୍କା ତ୍ୟାଗକର ମାତ ।
ବିପ୍ରପତ୍ନୀକୃତ ସ୍ତୋତ୍ର ପଢ଼ଇ ଯେ ନିତି
ତାହାକୁ ପରଶ କରି ନ ପାରେ ବିପତ୍ତି ।
ଆହେ ନାରଦ ମହର୍ଷି ସେ ବିପ୍ର ପତ୍ନୀଙ୍କୁ
ଶ୍ରୀକୃଷ୍ଣ ବୋଇଲେ ମାଗି ଘେନ ଗୋ ବରକୁ
ତାହା ଶୁଣି ବ୍ରାହ୍ମଣୀଏ ବୋଇଲେ ଶ୍ରୀଦେବ
ଦିଅ ତୁମ୍ଭ ପାଦପଦ୍ମେ ଦୃଢ଼ ଭକ୍ତିଭାବ ।
ଆବର ଦାସତ୍ୱ ଦାନକର ନରହରି ।
ଯେରୂପେ ହୋଇବୁ ଆମ୍ଭେ ତୁମ୍ଭର କିଙ୍କରୀ ।
ସବୁବେଳେ ତୁମ୍ଭ ମୁଖ ଦର୍ଶନ କରିବୁ
କେତେବେଳେ ହେଲେପାଶୁ ଅନ୍ତର ନୋହିବୁ
ଏହା ଶୁଣିଣ ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୋଇଲେ
ଯାହା ଲୋଡ଼ୁଅଛ ତାହା ଦେଲି ମୁଁ ବୋଇଲେ
ସେ ଅନ୍ତରେ ଯେଉଁ ଅନ୍ନ ବ୍ୟଞ୍ଜନ ପାୟସ
ଦେଇଥିଲେ ତାହା ସବୁ କଲେ ସୁଖେ ଗ୍ରାସ ।
ସବୁ ଗୋପ ବାଳକଙ୍କୁ ବାଣ୍ଟି କରି କେତେ
ଦିଅନ୍ତେ ବସି ଭୋଜନ କଲେ ଯେ ଯା ମତେ
ଏହି ସମୟରେ ଦିବ୍ୟ କନକ ସ୍ୟନ୍ଦନ
ଆକାଶ ମାର୍ଗରୁ ଖସି ଆସିଲା ବହନ
ତହିଁରେ ରତ୍ନ ଦର୍ପଣ ସ୍ୱର୍ଣ୍ଣକୁମ୍ଭମାନ
ଥିବାରୁ ସେ ଦିଶୁଥିଲା ଅତି ଶୋଭାବନ ।

ଶୁକଳ ଚାମର ଶୋଭି ବିଶୁଦ୍ଧ ଅମ୍ବର
ପାରିଜାତ ଆଦି ପୁଷ୍ପ ସୁଶୋଭିତ ହାର
ସ୍ଥାନେ ସ୍ଥାନେ ବନ୍ଧାହୋଇ ରହିଛି ଯତନେ
ବସିଛନ୍ତି ତହିଁ କୃଷ୍ଣ ପାରିଷଦ ଗଣେ ।
ସେମାନେ ଶ୍ରୀକୃଷ୍ଣଙ୍କର ସମାନ ଅଟନ୍ତି
ସମସ୍ତେ ଗୋପାଳ ବେଶଭୂଷା ବହିଛନ୍ତି ।
ମୁହୂର୍ତ୍ତି ମଧ୍ୟରେ ରଥ ମଣ୍ଡଳେ ଆସି
ପ୍ରବେଶ ହୋଇଲା ସୂର୍ଯ୍ୟବିମ୍ବ ପ୍ରାୟେ ଦିଶି ।
ପାର୍ଷଦଗଣେ ତହୁଁ ଓହ୍ଲାଇଣ ଧୀରେ
ବ୍ରାହ୍ମଣମାନଙ୍କୁ ତହିଁ ବୋଇଲେ ଏଥିରେ ।
ଆରୋହଣ କର ମାତ ଗୋଲୋକକୁ ଯିବ
ଶ୍ରୀହରିଙ୍କ ପାଦସେବା କରିଣ ରହିବ ।
ତାହା ଶୁଣି ଦ୍ୱିଜପତ୍ନୀଗଣ ହରଷରେ
ପ୍ରଣାମ କରି ସେକ୍ଷଣି ଶ୍ରୀକୃଷ୍ଣ ପଦରେ ।
ବିମାନରେ ବସି ଗଲେ ଗୋଲୋକ ଭୁବନ
ସେଠାରେ ମନୁଷ୍ୟ ଦେହ ତ୍ୟାଗକରି ପୁଣ ।
ଗୋପିକା ରୂପରେ ମହା ସନ୍ତୋଷେ ରହିଲେ
ସେ ଅନ୍ତରେ ଯାହାହେଲା ଶୁଣ ଏବେ ଭଲେ
ସେମାନଙ୍କୁ ମୁକ୍ତ କରି ଶ୍ରୀ ନନ୍ଦନନ୍ଦନ
ସରଜନା କରି ମାୟା ଦ୍ୱିଜପତ୍ନୀଗଣ ।
ବ୍ରାହ୍ମଣଙ୍କ ସମୀପକୁ ପଠିଆଇ ଦେଲେ
ପ୍ରକୃତ ବ୍ରାହ୍ମଣୀ ପରି ସେମାନେ ଦିଶିଲେ ।
ପତ୍ନୀଙ୍କୁ ନ ଦେଖି ଏଣେ ସକଳ ବ୍ରାହ୍ମଣ
ଏଣେତେଣେ ବୁଲି କରୁଥିଲେ ଅନ୍ୱେଷଣ ।
ଦେଖିଲେ ମାର୍ଗରେ ସର୍ବେ ଆସିବାର ଫେରି
ବୁଝିଲେ ସକଳ କଥା ତାହାଙ୍କ ପଚାରି ।
ସେ ସକାଶୁ ସନ୍ତୋଷରେ ବୋଇଲେ ସେତୁମ୍ଭେ
ଧନ୍ୟ ଅଟ ନିଶ୍ଚେ ଏହା ଜାଣୁଅଛୁ ଆମ୍ଭେ ।
ବେଦଶାସ୍ତ୍ର ପୁରାଣରେ ହୋଇଅଛି ଲେଖା
ଶ୍ରୀହରି ଅଟନ୍ତି ସର୍ବଲୋକଙ୍କର ସଖା ।
ଜପ ତପ ବ୍ରତ ଦାନ ତୀର୍ଥ ପର୍ଯ୍ୟଟନ
ନୁହନ୍ତି କେ ଶ୍ରୀକୃଷ୍ଣଙ୍କ ସେବାରେ ସମାନ ।
ଯାହାକୁ କଳପତରୁ ପ୍ରାପତ ହୋଇବ
ଅନ୍ୟ ବୃକ୍ଷକୁ ସେ କପାଁ କାମନା କରିବ ।
ସେହିପରି ଶ୍ରୀକୃଷ୍ଣଙ୍କ ଭକ୍ତ ଯାର ହୃଦେ
ସ୍ଥିର ସେ ସେବିବ କପାଁ ଅନ୍ୟ ଦେବପାଦେ ।

ଏମନ୍ତ ବୋଲି ବ୍ରାହ୍ମଣେ ମାୟା ରମଣୀଙ୍କୁ
ସଙ୍ଗେ ନେଇଗଲେ ନିଜ ନିଜ ଭବନକୁ ।
ତ୍ୱରପରି ତାହାଙ୍କର ସଙ୍ଗେ କ୍ରୀଡ଼ାକଲେ
ଶ୍ରୀକୃଷ୍ଣଙ୍କ ମାୟାକଥା କେହି ନ ଜାଣିଲେ ।
ବଳଦେବ ହରିତରେ ଯଶୋଦା କୁମର
ଗୋପାଳ ଶିଶୁଙ୍କୁ ଘେନିଗଲେ ନିଜପୁର ।
ନାରଦ ବୋଇଲେ ଅହେ ମୁନିଗଣଙ୍କର
ଶୁଣି ତୋଷ ହେଲା ପୁଣ୍ୟ ଚରିତ ବିଶେଷ ।
ମାତ୍ର ଆଜ କିଛି ଶୁଣିବାକୁ ମନ ମୋର
ଇଚ୍ଛା କରୁଅଛି ତାହା କହ ମୁନିବର ।
ମୁକତି ପାଇଲେ ସେହି ଦ୍ୱିଜପତ୍ନୀ ଗଣ
ପୂର୍ବେ କେଉଁଠାରେ କରିଥିଲେ ଅବସ୍ଥାନ ।
କାହିଁକି ମର୍ତ୍ତ୍ୟ ଲୋକରେ ଜାତ ହେଲେ ଆସି
କେଉଁ ତପ କଲେ ଅବା କହ ତା ବିଶେଷି ।
ନାରାୟଣ ବୋଇଲେ ହେ ସପ୍ତଋଷିଙ୍କର
ପତ୍ନୀଗଣ ଥିଲେ ସର୍ବ ରମଣୀଙ୍କ ବର ।
ସୁଶୀଳା ସୁନ୍ଦରୀ ନବ ଯଉବନବନ୍ତୀ
ସକଳ ସ୍ତ୍ରୀ ଗୁଣରେ ଭୂଷିତା ଅଟନ୍ତି ।
ଦିନେ ସେ କାମିନୀମାନେ ସ୍ନାନ କରୁଥିଲେ
ଅନଳ ଦେବତା ସେହି ସ୍ଥାନେ ତ ମିଳିଲେ ।
ଋଷିପତ୍ନୀଙ୍କର ରୂପ ଯଉବନ ବେଶ
ଦେଖି କାମଧାସ୍ୟକରେ ହେଲେ ସେ ବିବଶ ।
ସ୍ଥିର ହୋଇ ନ ପାରିଣ ବେଗେ ବେଗେ ଗଲେ
ସେ ସ୍ତ୍ରୀମାନଙ୍କୁ ବଳେ ଆଲିଙ୍ଗନ କଲେ ।
ପତିବ୍ରତା ଅଟନ୍ତି ତ ସେ ଯୁବତୀଗଣେ
ଧ୍ୟାନ କରୁଥିଲେ ତାଙ୍କ ପତିଙ୍କ ଚରଣେ ।
ସେ ସକାଶୁଁ ଅଗ୍ନି ତାଙ୍କୁ ଛୁଇଁବା କାଳରେ
ଜାଣି ନ ପାରିଲେ ପର ପରଶକୁ ଥରେ ।
ଅନଳ ମଧ୍ୟ ସତୀଙ୍କ ଅଙ୍ଗ ଛୁଇଁ କରି
ପଡ଼ିଲେ ମହୀଉପରେ ଚେତନାକୁ ହାରି ।
ସେହି ସମୟେ ଅଙ୍ଗିର ଅନଳଙ୍କ ଗତି
ଜାଣିବାକୁ ମନେ ମନେ ହୋଇଣ ଦୁଃଖିତ ।
ବୋଇଲେ ହେ ଅଗ୍ନି ତୁମ୍ଭେ କଲ ପାପକର୍ମ
ସର୍ବଭକ୍ଷ ହେବ ତେଣୁ ତେଜି ନିଜଧର୍ମ ।
ଚେତନା ପାଇ ଅନଳ ଶୁଣି ସେ ଶାପକୁ
ଲଜ୍ଜା ପାଇ ସ୍ତୁତିକଲେ ଅଙ୍ଗିର ମୁନିଙ୍କୁ ।

ସେ କାଳରେ ମୁନିବର କାମିନୀଙ୍କୁ ଦୃଷ୍ଟି
ହୋଇଲେ କ୍ରୋଧରେ ରଙ୍ଗକର ନେତ୍ର ଦୁଇ
ତୁମ୍ଭେମାନେ ଜାଣି ଜାଣି ଅରଜିଲ ପାପ
ଏଣୁ ନରଜନ୍ମ ପାଅ ହେବ ଆମ୍ଭ ଶାପ ।
ବ୍ରାହ୍ମଣ କୁଳରେ ମର୍ତ୍ତ୍ୟେ ଜନମ ପାଇବ
ଆମ୍ଭ କୁଳଜନ୍ମିଙ୍କୁ ବିବାହ ହୋଇବ ।
ତାହା ଶୁଣି ସ୍ତ୍ରୀଗଣ କାତର ହୋଇଲେ
ଅଙ୍ଗିରା ମୁନିଙ୍କୁ କରଯୋଡ଼ି ଜଣାଇଲେ ।
ବୋଇଲେ ଆମ୍ଭର ଏଥି ନାହିଁ କିଛି ଦୋଷ
ତ୍ୟାଗ ନ କର ଆମ୍ଭଙ୍କୁ ମୁନିଗଣେଶ ।
ବଜ୍ରପାତ ଖଡ୍ଗ ଶକ୍ତି ପ୍ରହାରୁ ଅଧିକ
ଅଭୀଷ୍ଟ ସ୍ୱଜନଙ୍କର ବିରହଜ ଦୁଃଖ ।
ଇଚ୍ଛାରେ ଅଗ୍ନିଙ୍କୁ ଆମ୍ଭେ କରନାହୁଁ ସ୍ପର୍ଶ
ସେ ଆସି ଛୁଇଁଲେ ହୋଇ କାମ ପରବଶ
ପୂର୍ବକାଳେ ଅହଲ୍ୟାଙ୍କୁ ବଳେ ଶଚୀପତି
ଧରିନେଇ ଏକାନ୍ତରେ ଆରମ୍ଭିଲେ ରତି ।
ତାହା ଜାଣି ଗୌତମ ମହାକ୍ରୋଧ କଲେ
ଦୁହିଁଙ୍କୁ ସେ କାଳେ ମହାଘୋର ଶାପଦେଲେ
କେତେକାଳଅନ୍ତେ ମୁକ୍ତି ପାଇଣ ଅହଲ୍ୟା
ହେଲେ ପୁଣି ଗୌତମଙ୍କର ଗଳାମାଳା ।
ସଂଭୋଗ ପାପରୁ ସେ ତ ମୁକ୍ତି ପାଇଥିଲେ
ଆମ୍ଭଙ୍କୁ ସିନା ଅନଳ ବଳେ ଛୁଇଁଦେଲେ ।
ଏଥିରୁ କିରୂପେ ଆମ୍ଭେ ପାଇବୁ ମୁକତି
ବିସ୍ତର କରଣ ତହିଁ କହ ମହାଯତି ।
ଅନ୍ୟଠାରୁ ଭୟ ହେଲେ ସ୍ତ୍ରୀମାନଙ୍କର
ଶରଣ ପଶନ୍ତି ନିଜ ପତିଙ୍କ ପାଶର ।
ପତିଠାରୁ ଯେବେ ଭୟ ପାଇବେଟି ସେହି
କାହାଠାରୁ ଯିବେ ଦୁଃଖ ଜଣାଇବା ପାଇଁ ।
ଆପଣ ତ ଏହାସବୁ ଜାଣ ଭଲକରି
ଆମ୍ଭଙ୍କୁ ନିଗ୍ରହ କର୍ପା କର ନ ବିସ୍ମରି
ଏରୂପେ ସ୍ତ୍ରୀଙ୍କ ବାକ୍ୟ ଶୁଣିଣ ଅଙ୍ଗିରା
ବିଚ୍ଛେଦ ଦୁଃଖରେ ଶୋକକଲେ ହୋଇଉଗ୍ର
ଋଷିମାନଙ୍କୁ ଡାକିଣ ସକଳ କହିଲେ
ଏକତ୍ର ବସି ସମସ୍ତେ ଆଲୋଚନା କଲେ ।
ସେଅନ୍ତେ ପତ୍ନୀଙ୍କୁ ଡ଼ାକବୋଇଲେ ଗୋ ତୁମ୍ଭେ
ମନଦେଇ ଶୁଣ ଯାହା କହୁଅଛୁ ଆମ୍ଭେ ।

ଶାସ୍ତ୍ରେ ଲେଖାଅଛି ନିଜକର୍ମ ଭୋଗ ଯାଏ
ଜୀବଙ୍କ ମଧ୍ୟରେ ପରସ୍ପର ସଙ୍ଗ ଥାଏ ।
କର୍ମଭୋଗ ଶେଷ ସଙ୍ଗେ ହୁଅନ୍ତି ବିଚ୍ଛିନ୍ନ
ଆସକ୍ତ ନୁହଇଁ କାହାଠାରେ କାହା ମନ ।
ତୁମ୍ଭମାନଙ୍କର ଅଙ୍ଗ ସଙ୍ଗ ଉପଭୋଗ
ଶେଷ ହେବାରୁ ନିଶ୍ଚୟ ହେଉଛି ବିଯୋଗ
ଭୋଗକାଳ ନ ସରିଲେ କାହାର ବନିତା
ବିଚ୍ଛିନ୍ନ ନୁହଇ ଏହା ସୁନିଶ୍ଚିତ କଥା ।
ପର କାମିନୀକୁ ଯେହୁ ବଳେ ଭୋଗକରେ
ପଡ଼ଇ ସେ କୁମ୍ଭୀପାକ ନରକ ମଧ୍ୟରେ ।
ତାହାଠାରୁ ଦେବ ପିତୃଗଣ କେତେବେଳେ
ସ୍ପର୍ଶ ନ କରନ୍ତି ଜଳ ଆଦି କିଛି ଦେଲେ ।
ସେ ସକାଶୁ କଳତ୍ରଙ୍କୁ ଯତନେ ରଖିବ
ନୋହିଲେ ନିଶ୍ଚୟ କୁମ୍ଭୀପାକରେ ପଡ଼ିବ ।
ନିଜ ପତିଙ୍କୁ ବଞ୍ଚନା କରି ଯେଉଁ ସ୍ତ୍ରୀ
ଆସକ୍ତ ହୁଅଇ ପର ପୁରୁଷକୁ ଧରି ।
ସେ ମଧ୍ୟ କୁମ୍ଭୀପାକରେ ପଡ଼ଇ ନିଶ୍ଚିତ
ମହାଦଂଷ୍ଟ୍ର କୀଟଗଣ ଭକ୍ଷନ୍ତି ତା ଗାତ୍ର ।
ଯମଦୂତେ ନାନାମତେ ପ୍ରହାର କରନ୍ତି
ପ୍ରାଣରେ ନ ମରି ନାନାକଷ୍ଟ ଦେଉଥାନ୍ତି ।
ପତିବ୍ରତା ଅବା ପତିଭକ୍ତାଷିଣୀ ଯେହି
ଛାଡ଼ିବ ବୋଲି ତାହାକୁ ଲେଖିଛନ୍ତି ବିହି ।
କୁଳମର୍ଯ୍ୟାଦା ରଖି ଯେ ସ୍ୱାମୀସେବା କରେ
ସେ ସ୍ତ୍ରୀ ବସଇ ଅନ୍ତେ ବୈକୁଣ୍ଠ ନଗରେ
ତୁମ୍ଭେମାନେ ଏବେ ନରଦେହ ଘେନିଯାଅ
କେତେକାଳ ସକାଶରେ ମର୍ତ୍ତ୍ୟପୁରେ ରହ ।
ଶ୍ରୀକୃଷ୍ଣଙ୍କୁ ଦରଶନ କରିବଟି ଯେବେ ।
ମୁକତି ପାଇଣ ଗୋଲୋକକୁ ଯିବ ତେବେ
ଶ୍ରୀକୃଷ୍ଣ ନିର୍ମିତ ମାୟାରୂପା ମୂର୍ତ୍ତିମାନ
ତୋଷ କରାଇବେ ଯେତେ ଦ୍ୱିଜଙ୍କର ମନ ।
ସେ ଅନ୍ତରେ ଆମ୍ଭ ନିକଟକୁ ସେ ଆସିବେ
ପତ୍ନୀ ସ୍ୱରୂପରେ ଆମ୍ଭପାଶେ ରହିଥିବେ ।
ତୁମ୍ଭେମାନେ ପୁଣି କଳାଅଂଶେ ତାହାଙ୍କର
ପ୍ରବେଶ କରିବ ଦେହେ ସନ୍ଦେହ ନ କର ।
ଏବେ ଯେଉଁ ଶାପ ତୁମ୍ଭେମାନେ ଅଛ ପାଇ
ବରଠାରୁ ହେଲେ ତାହା ଅଧିକ ଅଟଇ ।

ଏହିରୂପେ ପ୍ରିୟଙ୍କୁ କହି ଯେ ସମସ୍ତ ମୁନି
ମସ୍ତକ ପୋତି ବସିଲେ ହୋଇକରି କୁନି ।
ଆହେ ନାରଦ ମହର୍ଷି ସେ କାମିନୀଗଣ
ମୁକତ ହେଲେ ଦେଇଣ ଶ୍ରୀକୃଷ୍ଣଙ୍କୁ ଅନ୍ନ ।
ସାଧୁଜନଙ୍କର କ୍ରୋଧ ହୁଏ ଶୁଭକାରୀ
ବିପଦରେ ସମ୍ପଦକୁ ଆଣଇ ଓଟାରି ।
ବିପଦ ବିନା ମହିମା କାହାରି ଜଗତେ
ପ୍ରକାଶ ହୋଇବ ବୋଲି ନ ବିଚାରି ଚିତ୍ତେ ।
କାଳ ପରିତ୍ୟାଗ ହେବୁ ବିପ୍ରପତ୍ନୀମାନେ
ମୁକତି ପାଇ ବସିଲେ ଗୋଲୋକ ଭୁବନେ ।
ଶ୍ରୀକୃଷ୍ଣ ଚରିତ ଯାହା ଅଟେ ପୁଣ୍ୟମୟ
ଶୁଣିଲତ ସବୁ ବସି ବ୍ରହ୍ମାଙ୍କ ତନୟ ।
ଆଉ କି ଶୁଣିବାପାଇଁ ଇଚ୍ଛା ଅଛି ଯେବେ
ପଚାର କହିବା ଆଦ୍ୟପ୍ରାନ୍ତ କରି ତେବେ ।
ଏତେକ ବୋଲି ମଉନ ହେଲେ ମୁନିବର
କ୍ଷେତ୍ରମୋହନ ସେ ପାଦେ କରଇ ଯୁହାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ବିପ୍ରରମଣୀମାନଙ୍କର ମୋକ୍ଷଣ ପ୍ରସ୍ତାବେ
ନାମ ଅଷ୍ଟାଦଶୋଽଧ୍ୟାୟଃ ।

## ଊ ନ ବିଂ ଶ ଅ ଧ୍ୟା ୟ

## ଶ୍ରୀକୃଷ୍ଣଙ୍କ ଦ୍ୱାରା ଦାବାଗ୍ନି ମୋକ୍ଷଣ ବୃତ୍ତାନ୍ତ ବର୍ଣ୍ଣନ

ପୁଣି ନାରାୟଣଙ୍କର ମୁଖକୁ ଅନାଇ
ପୁଚ୍ଛିଲେ ନାରଦମୁନି ତୋଷମତି ହୋଇ ।
ବୋଇଲେ ହେ ମୁନିବର ଶ୍ରୀକୃଷ୍ଣ ଚରିତ
କହ ଯାହା ଅଛି ଆଉ ଭୁବନର ହିତ ।
ତାହା ଶୁଣି ନାରାୟଣ ହସ ହସ ହେଲେ
ପୁରୁଣ ଚରିତ କହିବାକୁ ଆରମ୍ଭିଲେ ।
ବୋଇଲେ ଦିନେ ଶ୍ରୀକୃଷ୍ଣ ଗୋପ ବାଳକଙ୍କୁ
ସଙ୍ଗତରେ ଘେନିଗଲେ ଯମୁନା ତୀରକୁ ।
ସେହିଠାରେ କାଳୀୟର ଅଟେ ବାସସ୍ଥାନ
ବର୍ଦ୍ଧିତ ନୂତନ ତହିଁ ବୃକ୍ଷଲତା ମାନ ।
ଶ୍ରୀକୃଷ୍ଣ ବହୁତ ସ୍ୱାଦୁ ଫଳମୂଳ ଖାଇ
ଜଳପାନ କଲେ ତୃଷା ନିବାରିବା ପାଇଁ ।
ସେ ଅନ୍ତରେ ଗୋଗଣଙ୍କୁ ଅଡ଼ାଇଣ ନେଲେ
ନବତୃଣପୂର୍ଣ୍ଣ ବନସ୍ଥଳୀରେ ଛାଡ଼ିଲେ ।
ପୁଣି ଗୋପବାଳକଙ୍କୁ ଘେନି ସଙ୍ଗତରେ
ନାନାମତେ କ୍ରୀଡ଼ା ଆରମ୍ଭିଲେ ସେହିଠାରେ
ଏ ସମୟେ ଧେନୁଗଣ ସୁକୋମଳ ଘାସ
ଖାଇଣି ଆନନ୍ଦେ ବିହରିଲେ ନାନାଦେଶ ।
ତୃଷା ହୁଅନ୍ତେ ଯମୁନା ନିକଟକୁ ଗଲେ
ବିଷ ମିଶ୍ରିତ ଜଳକୁ ପାନ ତହିଁ କଲେ ।
ସେହିକ୍ଷଣି କାଳକୂଟ ବିଷ ଯନ୍ତ୍ରଣାରେ
ପ୍ରାଣତ୍ୟାଗକରି ସବୁ ପଡ଼ିଲେ ମହୀରେ ।
ଗୋପାଳ ବାଳକେ ତାହା ଦେଖି ମହାଭୟେ
ଶ୍ରୀକୃଷ୍ଣଙ୍କ ଆଗେ ଯାଇ କହିଲେ ସଭିଏ ।
ଶୁଣିଣ ଶ୍ରୀକୃଷ୍ଣ ତାଙ୍କୁ ଆଶ୍ୱାସନା କଲେ
ମନ୍ତ୍ରବଳେ ଗୋଗଣଙ୍କୁ ଜୀବଦାନ ଦେଲେ ।
ଯେ ଅନ୍ତେ କାଳୀୟ ଗର୍ବ ଖର୍ବ କରିବାକୁ
ଆରୋହଣ କଲେ ବେଗେ କଦମ୍ବ ବୃକ୍ଷକୁ ।
ହୁଙ୍କାର କରି ତହିଁରୁ ଯମୁନାର ଜଳେ
ପଡ଼ିଲେ ଡେଇଁ ସେ ସର୍ପ ନିକେତନ ସ୍ଥଳେ
ତାଙ୍କ ପଡ଼ିବା ଘାତରେ ପ୍ରବଳ ଲହରି
ଉଠିଲା କୂଳକୁ ଲଙ୍ଘି ଗରଜନ କରି ।
ତାହା ଜାଣି କାଳକଣ୍ଠ ବିଷଦନ୍ତ ସର୍ପ
ଗ୍ରାସ କଲା ଶ୍ରୀକୃଷ୍ଣଙ୍କୁ ପ୍ରକାଶିଣ ଦର୍ପ ।
ଶ୍ରୀକୃଷ୍ଣ ତା ଗର୍ଭେ ରହି ତପ୍ତ ଲୌହ ପରି
ତାତିଲେ ବ୍ରହ୍ମତେଜରେ ଚଣ୍ଡମୂର୍ତ୍ତି ଧରି ।
ସହି ନ ପାରି କାଳୀୟ ସର୍ପ ସେ ତାତିକୁ
ଉଦ୍ଗୀରଣ କଲା ସେହିକ୍ଷଣି ଶ୍ରୀକୃଷ୍ଣଙ୍କୁ ।
ସର୍ପର ପିତ୍ତ କାଳଞ୍ଜ ସହିତେ ଶ୍ରୀହରି
ବାହାର ହୋଇଲେ ଅଗ୍ନି ସ୍ୱରୂପକୁ ଧରି ।

ବଜ୍ରରୁ ଅଧିକ ଆଣ୍ଟ ସେ ତ ହୋଇଥିଲେ
ଭାଜିଲା ସର୍ପର ଦନ୍ତ ଦେଖିବାଭଳି ଦେଳେ ।
ସେ ସକାଶୁ ମନ୍ଦମନ୍ଦ ହୋଇଣ କାଳୀୟ
ଛଟପଟ ହେଲା ସ୍ଥିରେ ନରହିଲେ କାୟ ।
ସେ ସମୟେ କୃଷ୍ଣ ତାର ଫଣା ମଧେ ଯାଇ
ଉଗ୍ର ହୋଇଣ ଦଳିଲେ ମାଥକୁ ନଚାଇ ।
ସେ ଘାତେ ସର୍ପ ବହୁତ ରକ୍ତ ବାନ୍ତି କଲା
ଜୀବନ ଆଉ ରହିବ ନାହିଁ ବିଚାରିଲା ।
ତା ମାଶରେ ଯେଉଁ ନାଗମାନେ ରହିଥିଲେ
ଏମନ୍ତ ଘଟନା ଦେଖି ଛାଡ଼ି ପଳାଇଲେ ।
ଯେଉଁମାନେ ଜଳରେ ପଡ଼ି ଭଙ୍ଗେ ତଥା
ପଡ଼ିଲେ ମଲା ପରାଏ ହୋଇଣ ତାଟକା ।
ସ୍ୱାମୀର ଦୁର୍ଦ୍ଦଶା ଦେଖି ନ ପାରି ସୁବଳା
ସଖୀଙ୍କ ଘେନି ଶ୍ରୀକୃଷ୍ଣ ସମୀପକୁ ଗଲା ।
କୃତାଞ୍ଜଳି ହୋଇ ତାଙ୍କ ପାଦତଳେ ପଡ଼ି
ସ୍ତୁତି ଆରମ୍ଭିଲା ଶିରେ କରପଦ୍ମ ଯୋଡ଼ି ।
ବୋଇଲା ଆହେ ଜଗତ ଈଶ୍ୱର ଶ୍ରୀହରି
ତୁମ୍ଭେ ଅଟ ସନାତନ ପ୍ରଣତରକ୍ଷାକାରୀ ।
ସେହି ଦେବ କରୁଣାମୟ ରାଧା ପ୍ରେମସିନ୍ଧୁ
ରାଧାତାର ସୃଷ୍ଟି କର୍ତ୍ତା ଭକ୍ତଜନ ବନ୍ଧୁ ।
ପ୍ରାଣରୁ ଅଧିକ ମୋର ଅଟନ୍ତି ସେ କାନ୍ତ
ତାହାଙ୍କୁ ପ୍ରଦାନ କର ହେ ପ୍ରଭୁ ଅନନ୍ତ ।
ବ୍ରହ୍ମା ଶିବ ଶେଷଦେବ ଲକ୍ଷ୍ମୀ ସରସ୍ୱତୀ
ତୁମ୍ଭର ମହିମା ଗାନକରି ନ ପାରନ୍ତି ।
ଆଉର ଯେ ଚାରି ବେଦ ନ ଜାଣନ୍ତି କିଛି
ଆଉ ଜାଣିବାକୁ ଅବା କାର ଶକ୍ତି ଅଛି ।
ସକଳ ଦେବତା ତୁମ୍ଭ ପାଦପଦ୍ମ ଧ୍ୟାନ
କରିବାରେ ଦିନରାତି କରନ୍ତି ଯାପନ ।
ଏମନ୍ତ ଯେ ତୁମ୍ଭେ ତୁମ୍ଭ ସ୍ତୁତି ପଢ଼ିବାରେ
ମୁଁ ଛାର ଅବଳା କିବା ଯୋଗ୍ୟ ହୋଇପାରେ
ଲକ୍ଷ୍ମୀ ସରସ୍ୱତୀ ବେଦ ପର୍ବତ ନନ୍ଦିନୀ
ସାବିତ୍ରୀ ଆଦି ଯେତେକ ପ୍ରସିଦ୍ଧ ରମଣୀ ।
ଯେଉଁ ପ୍ରଭୁଙ୍କର ତତ୍ତ୍ୱ ବୁଝି ନ ପାରନ୍ତି
ମୁଁ ମୂଢ଼ା କାମିନୀ ତାଙ୍କୁ କରିବି କି ସ୍ତୁତି ।
ଆହେ ଦେବ ନବଘନ ଶ୍ୟାମଳ ସୁନ୍ଦର
ବକ୍ଷସ୍ଥଳେ ଅଧିଷ୍ଠିତ ରାଧା ଦେବୀଙ୍କର ।

ଚନ୍ଦନ ଚର୍ଚ୍ଚିତ ଅଙ୍ଗ ସସ୍ମିତ ବଦନ
ଶରଦ କମଳ ପତ୍ର ବିଶାଳଲୋଚନ ।
ଯାହାଙ୍କର ବକ୍ଷସ୍ଥଳ ମଲ୍ଲୀ ପାରିଜାତ
କୁସୁମ ମାଳାରେ ଦରଶ ଅତ୍ୟନ୍ତ ଶୋଭିତ ।
ସେ ଦେବଙ୍କୁ ଭକ୍ତିଭାରେ କରୁଛି ମୁଁ ସ୍ତୁତି
ପ୍ରସନ୍ନ ହୋଇ ଘେନନ୍ତୁ ମୋହର ବିନତି
ନିଷ୍କାରଣ ସର୍ବଈଶ ପରମ ଈଶ୍ୱର
ଅଟନ୍ତି ଯେ ପ୍ରଭୁ ତାଙ୍କ ପାଦେ ନମସ୍କାର ।
ହେ କୃଷ୍ଣ ହେ ସୁରେଶ୍ୱର ବ୍ରହ୍ମେଶବନ୍ଦିତ
ଶୁଭାଶୁଭ ଫଳଦାତା ପାଳିତ ଜଗତ ।
ତୁମ୍ଭ ପାଦ କମଳରେ ପଶୁଛି ଶରଣ
ମୋ ପ୍ରାଣପତିଙ୍କୁ ପ୍ରଭୁ ଦିଅ ଜୀବଦାନ ।
ଏହିରୂପେ ସ୍ତୁତିକରି ସେ ନାଗ କାମିନୀ
ବସିଲା ଧରି ଶ୍ରୀକୃଷ୍ଣ ପାଦପଦ୍ମ ବେନି ।
ନାଗପତ୍ନୀ କୃତ ସ୍ତୋତ୍ର ପଢ଼ଇ ଯେ ନିତି
ତାକୁ କେବେ ଆକ୍ରମଣ ନକରେ ବିପତ୍ତି ।
ଇହଲୋକେ ଶ୍ରୀକୃଷ୍ଣଙ୍କ ଭକତ ସେ ହୁଏ
ଦେହଅନ୍ତରେ ବୈକୁଣ୍ଠ ଭୁବନକୁ ଯାଏ
ନାରଦ ବୋଇଲେ ନାଗପତ୍ନୀ ବାକ୍ୟ ଶୁଣି
କି ଉତ୍ତର ଦେଲେ ତାକୁ ପ୍ରଭୁ ବଂଶୀପାଣି ।
କାଳୀୟ ସର୍ପର ପ୍ରାଣ ନେଲେ କି ନ ନେଲେ
ଏ ସମସ୍ତ କଥା କହ ମୋ ଆଗରେ ଭଲେ ।
ନାରାୟଣ ବୋଇଲେ ହେ ସୁବଳା ବଚନ
ଶୁଣିଣ ସନ୍ତୁଷ୍ଟହୋଇ କମଳ ଲୋଚନ ।
ବୋଇଲେ ଗୋ ନାଗେଶ୍ୱରି ଭୟ ତ୍ୟାଗକର
ପ୍ରସନ୍ନ ହୋଇଲି ଏବେ ମାଗି ଘେନ ବର ।
କାନ୍ତକୁ ସଙ୍ଗରେ ଘେନ ନିଜପୁରେ ଯାଇ
ରହ ଆନନ୍ଦ ମନରେ ଶୋକ ଛାଡ଼ି ଦେଇ ।
ମାତ୍ର ଆଜ ଦିନଠାରୁ କାଳିନ୍ଦୀ ହ୍ରଦକୁ
ପରିତ୍ୟାଗ କରି ମାନ ଆମ୍ଭ ବଚନକୁ ।
ଆମ୍ଭର କନ୍ୟା ସ୍ୱରୂପ ହେଲ ଆଜ ତୁମ୍ଭେ
ଜାମାତା ହୋଇଲେ ତୁମ୍ଭ ପତି ବୋଲି ଆମ୍ଭେ
ଆମ୍ଭ ପାଦ ଚିହ୍ନ ଦେଖି ତୁମ୍ଭ ପତିଠାରେ
ଗରୁଡ଼ ସ୍ତୁତି କରିବେ ତାଙ୍କୁ ଭକ୍ତିଭରେ ।
ଆଜଠାରୁ ତୁମ୍ଭେ ଗରୁଡ଼ଙ୍କ ଭୟ ତେଜ
ଏ ସ୍ଥାନରୁ ଯାଇ ଅନ୍ୟ ବାସସ୍ଥାନ ଖୋଜ ।

ଯେଉଁ ବର ଅଭିଳାଷ କରିଅଛ ମନେ
ମାଗ ସେହି ବର ଦେଇ ଯିବଇଁ ବହନେ ।
ଶ୍ରୀକୃଷ୍ଣଙ୍କ ବାକ୍ୟ ଶୁଣି କାଳୀପ୍ର ରମଣୀ
କହିଲା ମସ୍ତକେ ତାର ଯୋଡ଼ି ବେନିପାଣି ।
ବୋଇଲା ହେ ତାତ ବର ଦେବାପାଇଁ ମତ
ହେଉଅଛ ଯେବେ ଦିଅ ତୁମ୍ଭଠାରେ ଭକ୍ତି ।
ମୋର ମନ ତୁମ୍ଭ ପାଦପଙ୍କଜରେ ରତି
ଭକତି ରସ ଆସ୍ୱାଦ କରୁ ତୋଷ ବହି ।
ଅବର ପତି ସୌଭାଗ୍ୟ ଦେଇ ପରମତ
ପ୍ରସନ୍ନ ହୋଇ ଏ ବର ଦିଅ ଜଗନ୍ନାଥ ।
ଏହିରୂପେ ବର ମାଗି ସୁବଳା କାମିନୀ
ରହିଲା ଶ୍ରୀକୃଷ୍ଣ ଆଗେ ଯୋଡ଼ି କର ବେନି ।
ତାହାଙ୍କର କୋଟିକାମ ସୁନ୍ଦର ମୂରତି
ଦେଖିଲା ଶୋଭା ପ୍ରକାଶ କରୁଅଛି ଅତି ।
ନବଜଳଧରପୁଞ୍ଜ ଶ୍ୟାମଳ ବରନ
ବିଶାଳ ଶରତପଦ୍ମ ସଦୃଶ ଲୋଚନ ।
ବାଳକ ସ୍ୱରୂପ ଦିବ୍ୟ କମଳ ଶରୀର
ଦେଖିଣ ଆସକ୍ତ ହେଲା ମନ ସୁବଳାର ।
ସେ ସକାଶୁ ସର୍ବାଙ୍ଗରେ ପୁଲକ ଜନ୍ମାଇ
ବୋଇଲା ଶୁଣିବା ହେଉ ବ୍ରହ୍ମାଣ୍ଡଗୋସାଇଁ ।
ସାଲୋକ୍ୟାଦି ଐଶ୍ୱର୍ଯ୍ୟରେ ମୋର ଇଚ୍ଛା ନାହିଁ
କେବଳ ତୁମ୍ଭର ସେବା କାମନା କରଇ
ଯୋଗୀଜନଙ୍କର ଯାହା ଅଟଇ ଦୁର୍ଲ୍ଲଭ
ଦୟାକରି ସେହି ଦାସୀଭାବ ମୋତେ ଦେବ ।
ପୁଣ୍ୟମୟ ଭାରତରେ ଜନ୍ମଲାଭ କରି
ବଞ୍ଚିତ ହୋଇଛୁ ତୁମ୍ଭ ସେବାରୁ ଶ୍ରୀହରି ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ବୋଇଲେ ଯା ତୁମ୍ଭେ
ଇଚ୍ଛା କରିଅଛ ତାହା ହେଉ ବୋଲି ଆମ୍ଭେ
ଏହି ସମୟେ ଆକାଶୁ ଦିବ୍ୟ ରଥବର
ମିଳିଲା ଆସି ତାହାଙ୍କ ପାଶରେ ସତ୍ୱର ।
ତହିଁରେ ବହୁତ ବସ୍ତ୍ର ଅଳଙ୍କାର ଥାଇ
ଦେଖିବା ମାତ୍ରକେ ମନ ହରଣ କରଇ ।
ବସିଛନ୍ତି ପୂର୍ଣ୍ଣ ହୋଇ ପାରିଷଦଗଣ
ଘେନିଣ ଅଙ୍ଗରେ ନାନାବିଧ ଆଭରଣ ।
ଶତଚନ୍ଦ୍ର ଇଚ୍ଛାଗାମୀ ଅଟଇ ସେ ରଥ
ପବନ ଗମନ କରି ନ ପାରେ ତା ସାଥ ।

ସେ ରଥରୁ ପାରିଷଦେ ଓହ୍ଲାଇ ଆସିଲେ
ଶ୍ରୀକୃଷ୍ଣଙ୍କ ପାଦ ଧରି ନମସ୍କାର କଲେ ।
ସେ ଅନନ୍ତେ ନାଗପତ୍ନୀଙ୍କୁ ଘେନି ସଙ୍ଗତରେ
ଗୋଲୋକକୁ ଗଲେ ବସି ସେ ସ୍ୟନ୍ଦନରେ ।
ଶ୍ରୀକୃଷ୍ଣ ଛାୟାମୂରତି ନିରମାଣ କରି
ରଖାଇଲେ ସୁବଳାର ହୋଇଲା ସେ ସରି ।
ବିଷ୍ଣୁ ମାୟାରେ ମୋହିତ ହେବାରୁ କାଳୀପ୍ର
ନ ଜାଣିଲା ହେଲା ଚର୍ଚ୍ଚି ଯେତେ ଅଭିନୟ ।
ଶ୍ରୀକୃଷ୍ଣ ଓହ୍ଲାଇ ତାର ମସ୍ତକରୁ ତଳେ
ବିସ୍ତାରିଲେ ଦୟାପର ହୋଇ ତା କୋଳରେ
ଯେଉଁକ୍ଷଣି ଚେତାପାଇ ସର୍ପ ଅଧୀଶ୍ୱର
ଦେଖିଲା ଶ୍ରୀକୃଷ୍ଣ ରହିଅଛନ୍ତି ଆଗର ।
ଭକ୍ତିକଲେ ତାହାଙ୍କର ବେନିପାଦ ଧରି
ସ୍ତୁତି କଲା ନୟନରେ ପୂର୍ଣ୍ଣକରି ବାରି ।
ଶ୍ରୀକୃଷ୍ଣ ତାହାର ଭକ୍ତି ଦେଖି ସେ କାଳରେ
ବୋଇଲେ କାଳୀପ୍ର ଭୟ ନ କର ମନରେ ।
ତୁମ୍ଭଠାରେ ଏବେ ମୁହିଁ ହୋଇଲି ସନ୍ତୋଷ
ବର ମାଗ ଯାହା ଇଚ୍ଛା କରଇ ମାନସ ।
ସେ ମୋହର ଅଂଶଜାତ ଭକ୍ତ ହୋଇଥାଏ
ଦୋଷ ଥିଲେ ତାକୁ ଅଳ୍ପ ଦଣ୍ଡ ମୁହିଁ ଦିଏ ।
ପୁଣି ଅନୁଗ୍ରହ କରି ଦେଇଥାଏ ବର
ସନ୍ଦେହ ନାହିଁ ଏଥିରେ ଆହେ ସର୍ପବର ।
ଏବେ ତୁମ୍ଭ ଫଣାପରେ ମୋର ପାଦଚିହ୍ନ
ରହିବ ନିଶ୍ଚୟ ବୋଲି ମାନସରେ ଘେନ ।
ତୁମ୍ଭ ବଂଶରେ ଯେତେକ ସର୍ପ ଜନମିବେ
ସମସ୍ତେ ଏହି ଚିହ୍ନରେ ଭୂଷିତ ହୋଇବେ ।
ଯେଉଁ ଲୋକ ମୂର୍ଖପଣେ ତାହାକୁ ମାରିବ
ବ୍ରହ୍ମହତ୍ୟା ପାତକରେ ଲିପ୍ତ ସେ ହୋଇବ ।
ମୋର ପାଦଚିହ୍ନରେ ଯେ ପ୍ରହାରିବ ଦଣ୍ଡ
ଦ୍ୱିଗୁଣ ପାତକ ଭୋଗ କରିବ ସେ ଭଣ୍ଡ ।
ମହାଲକ୍ଷ୍ମୀ ଯିବେ ତାର ସଦନକୁ ଛାଡ଼ି
ମୃତ୍ୟୁ କରିବ ସେ ଅନ୍ତେ ଯମଦୂତ ବାଡ଼ି ।
ସର୍ପ ଦଂଶନରେ ପ୍ରାଣ ନଷ୍ଟହେବ ତାର
ରକ୍ଷାକରି ନ ପାରିବେ ସୁରାସୁର ନର ।
ଯେଉଁମାନେ ତୁମ୍ଭ ବଂଶଜନ୍ମିତ ସର୍ପଙ୍କୁ
ଦେଖି ପ୍ରଣାମ କରିବେ ପ୍ରକାଶି ଭକ୍ତିକୁ ।

ବିଶେଷରେ ମୋର ପାଦଚିହ୍ନ ନିରେଖିକରି
ସ୍ତୁତି କରିବେ ମୋ ନାମ ମନରେ ସୁମରି ।
ସେମାନେ ସର୍ବପାପରୁ ମୁକତ ପାଇବେ
ସର୍ପ ଭୟ ତାହାଙ୍କର ନ ରହିବ କେବେ ।
ଏମନ୍ତ କହି ସେକାଳେ ପ୍ରଭୁ ନରହରି
ସୁରସାକୁ ଅନାଇଣ କହିଲେ ସେପରି ।
ବୋଇଲେ ଗୋ ବତ୍ସେ ନିଜ କାନ୍ତକୁ ସଙ୍ଗରେ
ଘେନି ଏବେ ସୁଖେ ଯାଅ ରହ ନିଜ ପୁରେ
କାଳୀପୁତ୍ର ବୃନ୍ଦ ପୁଣି ବୋଇଲେ ତୁମ୍ଭର
ଗରୁଡ଼ ସକାଶୁ ଭୟ ହେବ ନିଷ୍ଟେଁ ଦୂର ।
ଆଉ କେଉଁ ବର ଇଚ୍ଛା ଥିଲେ ମାଗି ଘେନ
କରିବା ଅବଶ୍ୟ ତୁମ୍ଭ ମଙ୍ଗଳ ବିଧାନ ।
ତାହା ଶୁଣି ସର୍ପରାଜ ମହାନନ୍ଦ କରି
ଜଣାଇଲା ମସ୍ତକରେ ବେନିକର ଭରି ।
ବୋଇଲା ହେ ଦେବ ଅନ୍ୟବର ଲୋଡ଼ା ନାହିଁ
ତୁମ୍ଭ ଚରଣରେ ସେବା ଦିଅ ଦୟାବହି ।
ବ୍ରାହ୍ମଣ କୁଳରେ ଅବା ତିର୍ଯ୍ୟକ ଯୋନିରେ
ଜାତହେଲେ ମଧ୍ୟ ଭକ୍ତି ଥିବ ତୁମ୍ଭଠାରେ ।
ତେମନ୍ତ ହେଲେ ଜନମ ସଫଳ ହୋଇବ
ନୋହିଲେ ସବୁ ବିଷୟ ବ୍ୟର୍ଥ ହୋଇଯିବ ।
ତୁମ୍ଭ ଚରଣରେ ଯାର ରହିଥାଏ ମତି
ନ ରହେ ତାଠାରେ ଜରା ମୃତ୍ୟୁ ରୋଗ ଭୀତି ।
ତୁମ୍ଭର ସେବକମାନେ ବ୍ରହ୍ମା ଇନ୍ଦ୍ରପଦ
ଇଚ୍ଛା ନ କରନ୍ତି ପୁଣି ଅଶେଷ ସମ୍ପଦ ।
ତୁମ୍ଭଙ୍କୁ ଭାବନା କରି ମୋହର ଶରୀର
କୃଷ୍ଣବର୍ଣ୍ଣ ହୋଇଅଛି ଆହେ ଦାମୋଦର ।
ସବୁବେଳେ ତୁମ୍ଭଠାରେ ଥାଏ ମୋ ମାନସ
ଭକ୍ତି ରଖିଥାଏ ମୁହିଁ ତୁମ୍ଭ ପାଦଦେଶ ।
ତଥାପି ଅପବିତ୍ର ବୋଲିକରି ମୋତେ
ଭାବନା କରନ୍ତି ସଦା ବୈନତେୟ ଚିତ୍ତେ ।
ସେ ସକାଶୁ ସମୀପରୁ ବହୁତ ଦୂରରେ
ଛାଡ଼ି ଦେଇଛନ୍ତି ପଦ୍ମଭବ ଦେଇ ଖରେ ।
ଏବେ ତୁମ୍ଭ ପ୍ରସାଦରେ ସୁଦୃଢ଼ ଭକତି
ପାଇଲି ବର ସ୍ୱରୂପେ ଆହେ ଶ୍ରୀପତି ।
ଏ ସକାଶୁ ବିନତିକରୁଛି ମୋ ବଂଶରେ ଯେତେ
ଜନମିବେ ରହିବେ ସେ ଭୟଶୂନ୍ୟ ଚିତ୍ତେ ।
ତୁମ୍ଭ ପାଦଚିହ୍ନ ଦେଖି ଆମ୍ଭ ମସ୍ତକରେ
ଭୟ ନ କରିବେ ଗରୁଡ଼ କେବଣ କାଳରେ ।
କେବଳ ଯେ ନାଗଗୁରୁ ଅଟନ୍ତି ଅନନ୍ତ
ତାଙ୍କ ବିନା ଆନେ ଆମ୍ଭେ ନ ହୋଇବୁ ଖ୍ୟାତ
ଆପଣ ଅଟନ୍ତି ସର୍ବମୟ ନିରାକାର
ସକଳ ଜଗତ ସାକ୍ଷୀ ତ୍ରୈଲୋକ୍ୟ ଈଶ୍ୱର ।
ସ୍ୱପ୍ନରେ ଅବା ଧ୍ୟାନରେ ସୁରାସୁର ନର
କରି ନ ପାରନ୍ତି ତୁମ୍ଭ ରୂପକୁ ଗୋଚର ।
ମୋର ପୂର୍ବଭାଗ୍ୟବଳେ ବଳାତ୍କାରେ ଆସି
ଦରଶନ ଦେଲେ ମୋତେ ପ୍ରଭୁ ବ୍ରହ୍ମରାଶି ।
ବ୍ରହ୍ମା ବିଷ୍ଣୁ ଶିବ ଆଦି ସକଳ ଅମରେ
ତୁମ୍ଭଙ୍କ ଯେ ସ୍ତୁତିକରି ନ ପାରନ୍ତି ଥରେ ।
ମୁଁ ହୀନ ଅଟଇ ସର୍ପଯୋନିରେ ସମ୍ଭୂତ
କି ଅବା ଜାଣିବି ତୁମ୍ଭ ମହିମା ଅନନ୍ତ ।
ହେ ନାଥ କରୁଣାମୟ କ୍ଷମାକର ଦୋଷ
ଖଳ ବୁଦ୍ଧିରେ ତୁମ୍ଭଙ୍କୁ କରିଥିଲି ଗ୍ରାସ ।
ଏବେ ସେହି ଅପରାଧ ନ ଘେନ ଈଶ୍ୱର
ଦାସରୂପେ ରଖ ମୋତେ ତୁମ୍ଭ ଶ୍ରୀପୟର ।
ଏମନ୍ତ ବୋଲି ନାଗେନ୍ଦ୍ର ଶ୍ରୀକୃଷ୍ଣ ଚରଣେ
ପଡ଼ିବାର ଦେଖି ପ୍ରଭୁ ତୋଷ କରି ମନେ ।
ବୋଇଲେ ଭୟ ନ କର ଆହେ ନାଗପତି
ସନ୍ତୁଷ୍ଟ ହୋଇଲି ଦେଖି ତୁମ୍ଭର ଭକତି ।
ଯେଉଁ ବର ମାଗିଲ ତା ଦେଲି ତୋଷମନେ
ନିଷ୍କଳ ଭକତି ଲଭିକର ମୋ ଚରଣେ ।
ନାଗରାଜ କୃତ ସ୍ତୋତ୍ର ପଢ଼ଇ ଯେ ନର
ସର୍ପଠାରୁ ଭୟଜାତ ନୁହଇ ତାହାର ।
ନାଗଶଯ୍ୟାରେ ଶୟନ କରିବାକୁ ସେହି
ନିର୍ଭୟ ମନରେ ସଦା ସମର୍ଥ ହୁଅଇ ।
ବିଷଧର ନାଗ ତାକୁ କରିଥିଲେ ଦଂଶ
ସ୍ତୋତ୍ର ଶ୍ରବଣ ମାତ୍ରକେ ଛଡ଼ିଯାଏ ବିଷ ।
ଏ ମହାସ୍ତୋତ୍ରକୁ ଭୂର୍ଜପତ୍ରେ ଲେଖିକରି
ବାନ୍ଧିବ ଯେବେ ବାହୁରେ କଣ୍ଠେ ଅବା ଶିରେ ।
ଶ୍ରୀହରିଙ୍କୁ ମନେ ମନେ କରିବ ସ୍ମରଣ
ତେବେ ସର୍ବ ସିଦ୍ଧି ଲଭି ହେବ ନିଷ୍ଟେଁ ଜାଣ ।
ଇହଲୋକରେ ଶ୍ରୀକୃଷ୍ଣ ଭକ୍ତି ଲଭୁଥାଇ
ଅନ୍ତଃକାଳେ ଗୋଲୋକରେ ବାସକରେ ଯାଇ

ଆହେ ନାରଦ ମହର୍ଷି ଏଥିଅନନ୍ତରେ
ଯାହାହେଲା ଶୁଣ କହୁଅଛୁ କରି ଧୀରେ ।
ନାଗେନ୍ଦ୍ରଙ୍କୁ ବର ଦେଇ ଜଗତ ଈଶ୍ୱର
କହିଲେ ବାକ୍ୟ ମଧୁର ଶ୍ରୁତିସୁଖକର ।
ବୋଇଲେ ହେ ବତ୍ସ ରମଣକ ପୁରେ ଯାଅ
ପରିବାର ସେନ ମହା ନିଶ୍ଚିନ୍ତରେ ରହ ।
ତାହା ଶୁଣି ନାଗରାଜା ଦୁଃଖିତ ବୋଇଲା
ତୁମ୍ଭ ଦରଶନ କେବେ ପାଇବି ବୋଇଲା ।
ସେ ଅନ୍ତେ ପ୍ରଣାମ କରି ଶତେଅଷ୍ଟବାର
ଜଳମାର୍ଗେ ଯାଇ ପ୍ରବେଶିଲା ନିଜପୁର ।
ସେ ଦିନଠାରୁ ଯମୁନା ନଦୀର ସେ ଜଳ
ଅମୃତ ସମାନ ହେଲା ଆହେ ତପଶୀଳ ।
ନିର୍ଭୟରେ ଜୀବଜନ୍ତୁଗଣ ପ୍ରତିଦିନ
ସେ ଯାହା ଇଚ୍ଛା ପ୍ରକାରେ କଲେ ଜଳପାନ ।
କାଳୀୟ ପ୍ରବେଶ ହୋଇ ଆପଣା ନଗରେ
ଦେଖିଲା ସେ ପୁର ସ୍ୱର୍ଗପୁରକୁ ଧିକ୍କାରେ ।
ବହୁତ ସମ୍ପଦ ତହିଁ ପୂର୍ଣ୍ଣ ହୋଇଅଛୁ
ଖୋଜିବା ପାଇଁକି ଆଉ ଦ୍ରବ୍ୟ ନାହିଁ କିଛୁ ।
ସେଠାରେ ବନ୍ଧୁଗଣଙ୍କୁ ଘେନି ଆନନ୍ଦରେ
ରହିଲା ମାନସ ଦେଇ ଶ୍ରୀହରି ପଦ୍ମରେ ।
ଏରୂପେ କାଳୀୟ ସର୍ପ ଦଳନ ଚରିତ
ଶୁଣିଲ ତ ବିଧିମତେ ଆହେ ତପୋବନ୍ତ ।
ଆଉ କ ଶୁଣିବା ପାଇଁ ଇଚ୍ଛାଥିଲେ କହ
ଦୂର କରାଇବା ତୁମ୍ଭ ମନର ସନ୍ଦେହ ।
ନାରଦ ବୋଇଲେ ଦେବ କାଳୀୟ କିପାଇଁ
ଯମୁନାରେ ଥିଲା ନିଜପୁର ଛାଡ଼ିଦେଇ ।
ତହିଁର କାରଣ କରି ମୋ ଆଗେ ପ୍ରକାଶ
ଆହେ ଶାସ୍ତ୍ର ବିଶାରଦ ମୁନିଗଣଈଶ ।
ନାରାୟଣ ବୋଇଲେ ହେ ସୁବଚନ ବାଣୀ
କହିବି ଯା ଥିଲି ଧର୍ମ ମୁଖରୁ ମୁଁ ଶୁଣି ।
ଶେଷଦେବଙ୍କ ଆଜ୍ଞାରେ ସର୍ବ ସର୍ପଗଣ
ପ୍ରତିବର୍ଷରେ କରନ୍ତି ଗରୁଡ଼ ପୂଜନ ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ଗନ୍ଧପୁଷ୍ପ ଆଦି
ନାନାବିଧ ଉପଚାର ଦ୍ରବ୍ୟକୁ ସମ୍ପାଦି ।
ପୁଷ୍କର ମହା ତୀର୍ଥରେ ସ୍ନାନ ସନ୍ଧ୍ୟାକରି
ପୂଜନ୍ତି ଗରୁଡ଼ଠାରେ ଭକ୍ତିଭାବ ଧରି ।
ଏହିରୂପେ କେତେଦିନ ଗଲାପରେ ତହିଁ
କାଳୀୟ ସର୍ପ ସେ କଥା ନ ପାରଇ ସହି ।
ବୋଇଲା ଗରୁଡ଼ ପୂଜା କରିବା ଉଚିତ
ନୁହଇ ତହିଁରୁ ସର୍ବେ ହୋଇବା ବିରତ ।
ଏମନ୍ତ କହି ବହୁତ ଅମାନନା କଲା
ପୂଜାଦ୍ରବ୍ୟମାନ ବଳେ ଆଣି ଖାଇଦେଲା ।
ତାହା ଜାଣି ପକ୍ଷୀରାଜ ସବୁ ସର୍ପକୁଳେ
ମହାକ୍ରୋଧ ହୋଇଣ ସେ ଗୋଳ ଆରମ୍ଭିଲେ
ତାଙ୍କ ପ୍ରତାପରେ ସର୍ବେ ଛିନ୍ନଭିନ୍ନ ହୋଇ
ଶରଣ ହେଲେ ବାସୁକୀ ପାଦତଳେ ଯାଇ ।
କେବଳ ନିଃଶଙ୍କ ଭାବେ ସେ କାଳୀୟ ସର୍ପ
ରହିଲା ଯୁଦ୍ଧଭୂମିରେ ପ୍ରକାଶିଣ ଦର୍ପ ।
ମାତ୍ର ଖଗେଶ୍ୱରଙ୍କର ବଳେ ବଳହୋଇ
ବହୁତ ସମସ୍ତ ତହିଁ ନ ପାରନ୍ତେ ସହି ।
ଭୟ ଘେନି ସେ ସ୍ଥାନରୁ ପଳାୟନ କଲା
ଯମୁନା ହ୍ରଦରେ ଯାଇ ଲୁଚିଣ ରହିଲା ।
ସୌଭରି ମୁନିଙ୍କ ଶାପେ ଯମୁନା ନଦୀକୁ
ନ ଗଲେ ଗରୁଡ଼ ଆଉ ତାଙ୍କୁ ମାରିବାକୁ ।
ସେଠାରେ ନିର୍ଭୟପଣରେ ରହିଲା କାଳୀୟ
ତାହା ଜାଣି ଗଲେ ତାର ପରିଜନ ଚୟ ।
ନାରଦ ବୋଇଲେ ସର୍ବଜ୍ଞ ମହାମୁନି
ଗରୁଡ଼ଙ୍କୁ ଶାପ ଦେଲେ କେଉଁଦୋଷ ଘେନି ।
ବିଷ୍ଣୁଙ୍କ ବାହନ ଯେଉଁ ପକ୍ଷୀଅଧିପତି
ସେ କିପାଁ ଯାଇ ନ ପାରେ ଯମୁନାର କତି ।
ଏକଥା ବିସ୍ତାରି କହ ଆହେ ମୁନିବର
ସନ୍ତୁଷ୍ଟ ହୋଇବ ଶୁଣି ମାନସ ମୋହର ।
ନାରାୟଣ ବୋଇଲେ ହେ ସୌଭରି ମହର୍ଷି
ଦିବ୍ୟ ସହସ୍ର ବରଷ ଯମୁନାରେ ବସି ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ସ୍ମରଣା କରି
ତପ କଲେ ହୃଦେ ମହାଭକ୍ତି ଭାବ ଧରି ।
ସେ ସମୟେ ମତ୍ସ୍ୟଟିଏ ତାଙ୍କ ପାଶେ ମିଳି
ଅନ୍ୟ ମତ୍ସ୍ୟଙ୍କୁ ସଙ୍ଗରେ ଘେନି କଲେ କେଳି
ପୁଚ୍ଛ ଦୋହଲାଇ ମୁନିଙ୍କର ସନ୍ନିପାଶେ
ପ୍ରଦକ୍ଷିଣ କଲା ଜଳେ ଚଦନ୍ତି ଉଲ୍ଲାସେ ।
ମୁନିଙ୍କର ଶାନ୍ତଭାବ ଦେଖି ନିର୍ଭୟରେ
ପ୍ରତିଦିନ ଆସି ସେହିପରି କ୍ରୀଡ଼ାକରେ ।

ତତକ୍ଷଣ ନନ୍ଦ ତାକୁ ଖଗ ଅଧିପତି
ଝାମ୍ପଦେଇ ବେଗେ ବ୍ୟୋମ ମାର୍ଗରୁ ଝଟନ୍ତି ।
ଚଞ୍ଚୁପୁଟ ଧରି ଉଡ଼ି ପଳାଇବା ବେଳେ
ଦେଖି ତାହା ମୁନି ମହା କ୍ରୋଧରେ ଗର୍ଜିଲେ
ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି ପଡ଼ିବା କାଳରେ
ଖସି ପଡ଼ିଲା ସେ ମୀନ ସଲିଳ ମଧ୍ୟରେ ।
ପୁଣି ତାକୁ ଧରିବାକୁ ପନ୍ନଗଈଶ୍ୱର
ଧାଇଁବାର ଦେଖି ମୁନି ହେଲେ କୋପଭର ।
ନେତ୍ର ରଙ୍ଗକରି ଗରୁଡ଼ଙ୍କୁ ଅନାଇଲେ
କି କର୍ମ କରୁଛୁ ଆରେ ଦୁର୍ମତି ବୋଇଲେ ।
ପୁଣି ବୋଇଲେ ଏଠାରୁ ଯାଅ ଦୂର ହୋଇ
କୁତ୍ସିତ କର୍ମରେ ମନ ଦେଉଛୁ କିପାଇଁ ।
ଶ୍ରୀକୃଷ୍ଣ ବାହନ ବୋଲି କରୁ ସିନା ଗର୍ବ
ଅଧରମ ଆଚରିଲେ ହେବ ତାହା ଖର୍ବ ।
ତୋହର ପରି ଲକ୍ଷ ଲକ୍ଷ ବାହନ ଶ୍ରୀପତି
ସର୍ଜି ପାରନ୍ତି କ୍ଷଣକେ ଆରେ ଦୁଷ୍ଟମତି ।
କିନ୍ତୁ ଗର୍ବିତ ସ୍ୱଭାବ ନ ସହନ୍ତି ସେହି
ଏ କଥା କି ଆଜ ଯାଏ ତୋତେ ଜଣାନାହିଁ ।
ଶ୍ରୀକୃଷ୍ଣଙ୍କ ଭକ୍ତ ମୁହିଁ ଅଟଇଟି ଜାଣ
ମୁହୂର୍ତ୍ତରେ ତୋତେ କରି ପାରଇ ଦହନ ।
ମାତ୍ର ମୋର ପ୍ରଭୁଙ୍କର ବାହନ ବିଚାରି
ନ ଘେନଇ ଜାଣିଥାଅ ଜୀବନ ତୋହର ।
ଅପରାଧ କରିବାରୁ ଦେଉଅଛୁ ଶାପ
ନ ଆସିବୁ ଆଜଠାରୁ ଏ ନଦୀ ସମୀପ ।
ନ ମାନି ଆସିବୁ ଯେବେ କ୍ଷଣକ ମଧ୍ୟରେ
ଭସ୍ମ ହୋଇ ମିଶିଯିବୁ ମୂଳ ସହିତରେ ।
ତାହା ଶୁଣି ଖଗେଶ୍ୱର ଭୟରେ କମ୍ପିଲା
ମୁନିଙ୍କୁ ପ୍ରଣାମ କରି ପଳାଇଣ ଗଲା ।
ସେହିଦିନ ଠାରୁ ଆଉ ଯମୁନା ପାଶକୁ
ନ ଆସେ ଭାବନା କରି ମୁନିଙ୍କ ବାକ୍ୟକୁ ।
ଧର୍ମଙ୍କ ମୁଖରୁ ଯାହା ଶୁଣିଥିଲି ମୁହିଁ
ପୁଚ୍ଛିବାରୁ ତୁମ୍ଭଆଗେ ତାହା କହିଲଇଁ ।
ପ୍ରକୃତ ବିଷୟ ଏବେ ଶୁଣ ଦେଇ ମନ
ଶ୍ରୀକୃଷ୍ଣ ଯମୁନା ଜଳେ ହୁଅନ୍ତେ ମଗନ ।
ବହୁତ କ୍ଷଣ ପର୍ଯ୍ୟନ୍ତ ଅନାଇ ବସିଲେ
ତଥାପି ସେ ଫେରି ଆସିବାର ନ ଦେଖିଲେ ।

ସେ ସକାଶୁ ଭୟ ଶୋକେ ବ୍ୟାକୁଳିତ ହୋଇ
କ୍ରନ୍ଦନ କଲେ ସମସ୍ତେ ଗଗନ କମ୍ପାଇ ।
କେତେଁମାନେ ବକ୍ଷସ୍ଥଳେ ମୁଷ୍ଟିକ ପ୍ରହାରି
ବୋଇଲେ କୃଷ୍ଣଙ୍କୁ ନ ଦେଖିଲେ ଯିବା ମରି ।
କେତେଁମାନେ ମସ୍ତକକେ ଟେକି ପୁନଃ ପୁନଃ
ଚେତନ ହୋଇ ଶରୀରରୁ ହରାଇଲେ ଜ୍ଞାନ ।
ଜ୍ଞାନବନ୍ତ ଯେତେଜଣ ସେ ମଧ୍ୟରେ ଥିଲେ
ଅନ୍ୟମାନଙ୍କୁ ସେମାନେ ସୁସ୍ଥ କରାଇଲେ ।
ଏହି ସମୟରେ ସ୍ୱର ପାଞ୍ଚଜଣ ହୋଇ
ନନ୍ଦ ରାଜାଙ୍କ ପାଶକୁ ଗଲେ ବେଗେ ଧାଇଁ ।
ବୁଝାଇ କହିଲେ ତାଙ୍କୁ ସକଳ ବୃତ୍ତାନ୍ତ
ତାହା ଶୁଣି ବ୍ରଜରାଜ ହୋଇଣ ଦୁଃଖିତ ।
ପୁରବାସୀ ସମସ୍ତଙ୍କୁ ନେଇ ସଙ୍ଗତରେ
ଉପନୀତ ହୋଇଗଲେ ଯମୁନାର ତୀରେ ।
ଆବାଳ ବୃଦ୍ଧ ବନିତା ରୁଣ୍ଡ ହୋଇ ତହିଁ
ଖୋଜିଲେ ନନ୍ଦସୁତଙ୍କୁ ଏଣେ ତେଣେ ଧାଇଁ ।
ହ୍ରଦରେ ପ୍ରବେଶ କରି କେତେ ଗୋପବୃନ୍ଦ
ବୋଇଲେ ଆହେ ଶ୍ରୀକୃଷ୍ଣ କେଉଁଠାରେ ଅଛ ।
ବେଗେ ଆସିଣ ଆମ୍ଭଙ୍କୁ ଦରଶନ ଦିଅ
ନୋହିଲେ ଏଠାରେ ଆମ୍ଭେ ଛାଡ଼ିବୁଟି ଦେହ ।
କେତେ ଗୋପଗୋପୀ ନିଜ ମୁଣ୍ଡେ କରମାରି
ବୋଇଲେ ସରିଲା ସବୁ ସମ୍ପଦ ଆମ୍ଭରି ।
ଅଧିକ ଦେଖି ତାହାଙ୍କ ସମୀପରେ ଥିଲେ
ଜଳେ ପଶି ଝାସଦେବା ପାଇଁ ବାହାରିଲେ ।
ଗୋପାଳେ ତାହାଙ୍କୁ ପଛୁ ଆଣିଲେ ଓଟାରି
ପଡ଼ିଲେ ଦେଖି ମହୀରେ ଚେତନାକୁ ହାରି ।
ପୁତ୍ର ବିରହରେ ନନ୍ଦ ମନ୍ଦ ପାଞ୍ଚ ମନେ
ତଳ ପଡ଼ିଲେ ବିଚ୍ଛିନ୍ନ ପାଦପ ସମାନେ ।
ଯଶୋଦା ରୋହିଣୀ ଆଦି ବ୍ରଜନାରୀ ଗଣ
କୁରରୀ ପକ୍ଷୀ ପରାଏ କଲେକ କ୍ରନ୍ଦନ ।
ତ ହା ଦେଖି ବଳଦେବ ସାବଧାନ ହୋଇ
ସାନ୍ତ୍ୱନା ବଚନେ ତାଙ୍କୁ କହିଲେ ବୁଝାଇ ।
ବୋଇଲେ ହେ ବ୍ରଜବାସୀ ଶୁଣ ମୋ ବଚନ
ଉଚିତ ନୁହଇ ଶୋକ କରିବ ର ଜାଣ ।
ଆହେ ନନ୍ଦ ତୁମ୍ଭେ ଅଟ ଜ୍ଞାନୀଙ୍କର ଗୁରୁ
ଶୁଣିଅଛ ସବୁକଥା ଗର୍ଗଙ୍କ ମୁଖରୁ ।

ମନେ ମନେ ଏବେ ତାହା କର ସ୍ମରଣ
ଶ୍ରୀକୃଷ୍ଣ ଅଟନ୍ତି ସର୍ବ ଜଗତ କାରଣ ।
ବିଧାତାର ବିଧାତା ସେ ପରମ ପୁରୁଷ
ତାହାଙ୍କର ଲୋମମୂଳେ ଲୀନ ହୁଏ ବିଶ୍ୱ ।
ସୃଷ୍ଟି ସଂହାର କରତା ଅଟନ୍ତି ସେହି
ତାହାଙ୍କଠାରୁ ଅଧିକ ହୋଇ କେହି ନାହିଁ ।
ଅନ୍ୟଠାରୁ ଭୟ ପରାଜୟ ତାହାଙ୍କର
ହେବ ବୋଲି କେବେହେଲେ ନ କର ବିଚାର
ଆଦି ଅନ୍ତ ହୀନ ଅଟନ୍ତି ସେ ଦୟାମୟ
ଭକ୍ତଙ୍କ ଧ୍ୟାନ ସକାଶେ ବହିଛନ୍ତି କାୟ ।
କାଳୀୟ ସର୍ପ ଅଟଇ ଅତି କ୍ଷୁଦ୍ର ଜୀବ
ସେ କାହୁଁ କୃଷ୍ଣଙ୍କୁ ଅବା ବିନାଶି ପାରିବ ।

ଏ ସକାଶୁ କହୁଅଛୁ ନ କର ଶୋଚନା
କର ବସି ଶ୍ରୀକୃଷ୍ଣଙ୍କ ମଙ୍ଗଳ କାମନା ।

ବଳଦେବଙ୍କ ମୁଖରୁ ଏ ବଚନ ଶୁଣି
ଗର୍ଗଙ୍କ ବାକ୍ୟ ସୁମରି ନନ୍ଦ ନୃପମଣି ।

ଶୋକ ତେଜ ଆଶ୍ୱାସିତ ହୋଇଣ ବସିଲେ
ଗୋପ ଗୋପୀଗଣ ତାଙ୍କୁ ବେଢି ସ୍ଥିର ହେଲେ

ଏହି ସମୟେ ଶ୍ରୀକୃଷ୍ଣ ଜଳରୁ ବାହାରି
ଆସିଲେ ଯେ ସ୍ଥାନେ ଥିଲେ ଗୋପଗୋପନାରୀ

ନବ ଜଳଧର ଶ୍ୟାମସୁନ୍ଦର ମୂରତି
ନାନା ଆଭରଣେ ଦିବ୍ୟଶୋଭା ପ୍ରକାଶନ୍ତି ।
ପୁତ୍ରକୁ ଦେଖି ଯଶୋଦା ଆଲିଙ୍ଗନ କରି ।
ମୁଖେ ଚୁମ୍ବ ଦେଲେ ନେତ୍ରୁ ବୁହାଇଣ ବାରି
ରୋହିଣୀ ଆଦି ସକଳ ଗୋପାଳ ଯୁବତୀ
କୃଷ୍ଣଙ୍କୁ ଦେଖି ଆନନ୍ଦ ପ୍ରକାଶିଲେ ଅତି ।

ସ୍ନେହେ ଗଦଗଦ ହୋଇ ନନ୍ଦ ସେ କାଳରେ
ବସାଇଲେ କୁମରକୁ ନେଇଣ କୋଳରେ ।

ଆଉର ଯେତେକ ଗୋପଯେହିଠାରେ ଥିଲେ
ସମସ୍ତେ ହରଷେ ଜୟ ଜୟ ଧ୍ୱନି କଲେ ।

ଏହିକାଳେ ଦାବାନଳ ଜଳି ଅକସ୍ମାତେ
ଘୋଟିଲା ଯେଉଁ ସ୍ଥାନରେ ଥିଲେ ସେ ସମସ୍ତେ

ଦେଖୁ ଦେଖୁ ବ୍ରଜପଟ୍ଟୁ ସାଙ୍ଗିଟି ଆସିଲା
ସବୁରି ମନରେ ଘୋର ଭୟ କରାଇଲା ।

ତା ଦେଖି ସମସ୍ତେ ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ
ସ୍ତୁତି କଲେ ସଙ୍କଟରୁ ନିସ୍ତାରିବା ପାଇଁ ।

ବୋଇଲେ ଆହେ ଶ୍ରୀକୃଷ୍ଣ ଆମ୍ଭର ଜୀବନ
ସନ୍ତାନେ ଏହିକ୍ଷଣି ଚଣ୍ଡ ହୁତାଶନ ।

ଏଥିପାଇଁ ପ୍ରକାର ଯତ୍ନ ନାହିଁ ଆଉ
ଉଦ୍ଧାର କରିବ ଏକା ତୁମ୍ଭେ ମହାବାହୁ ।

ଅନଳ ଅଥବା ଯମ କୁବେର ବରୁଣ
ନୋହିଲେ ତ ନିଶାଚର ଭୂତ ପ୍ରେତଗଣ ।

ଆକ୍ରମଣ କରିବାକୁ ଆସୁଥିଲେ ହେଲେ
ତୁମ୍ଭ ପ୍ରତାପରେ ନାଶ ହୋଇବେ ସେ ଭଲେ

ତୁମ୍ଭ ଇଚ୍ଛାରେ ଜଗତ ହୁଏ ଆତଯାତ
ପ୍ରସନ୍ନ ହୋଇ ଉଦ୍ଧାର କର ଜଗନ୍ନାଥ ।

ଏହିରୂପେ ସ୍ତୁତି ଯହୁଁ କଲେ ଗୋପକୁଳ
ଶ୍ରୀକୃଷ୍ଣ ବୋଇଲେ କେହି ନ ହୁଅ ଆକୁଳ ।

ଅଗ୍ନିରେ ଅନିଷ୍ଟ କିଛି ନୋହିବ ତୁମ୍ଭର
ଶାନ୍ତ ହେବ ଏହିକ୍ଷଣି ଧୈର୍ଯ୍ୟ ମନେ ଧର ।

ଏମନ୍ତ ବୋଲି ଅମୃତ ଦୃଷ୍ଟିରେ ଅଗ୍ନିକୁ
ଚାହିଁବା ମାତ୍ରକେ ତାହା ଦୂରିଲା ଦୂରକୁ ।

ସବୁରି ମନରେ ଶାନ୍ତ ସନ୍ତୋଷ ଜନ୍ମିଲା
ଶ୍ରୀକୃଷ୍ଣଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି ହେଲା ।

ତ୍ରିସନ୍ଧ୍ୟାରେ ଏହି ସ୍ତୋତ୍ର ପଢ଼ଇ ଯେ ଜନ
ଅଗ୍ନି ଭୟ କେବେ ତାର ନ ହୁଅଇ ଜାଣ ।

ଏହିରୂପେ ଦାବାନଳ ଉପଶମ କରି
ଆପଣା ଗୃହରେ ଯାଇ ମିଳିଲେ ଶ୍ରୀହରି ।

ଉତ୍ତମ ଦ୍ୱିଜଗଣଙ୍କୁ ଡକାଇଣ ନନ୍ଦ
ଦେଲେ ଧନ ରତ୍ନ ବସ୍ତ୍ର ହୋଇଣ ଆନନ୍ଦ ।

ଆଉର ଜ୍ଞାତି ଜନଙ୍କୁ ନାନା ମିଷ୍ଟ ଦ୍ରବ୍ୟ
ଭୋଜନ କରିବା ପାଇଁ ଦେଲେ ଆଣି ସର୍ବ ।

ବିବିଧ ମଙ୍ଗଳ ଗୀତ ବାଦ୍ୟ ନୃତ୍ୟ ଆଦି
କରାଇଲେ ପ୍ରିୟବନ୍ଧୁ ଜନଙ୍କୁ ଯଥାବିଧି ।

ଏହିରୂପେ ଶ୍ରୀକୃଷ୍ଣଙ୍କ ମଙ୍ଗଳ ଚରିତ
କହିଲି ଯା ଶୁଣିଥିଲି ଆହେ ତପୋବନ୍ତ ।

ଆଉ କେତେକ ବିଷୟ କହିବି ବିଚାରି
ଆମୂଳ କହିବି ଶୁଣ ସାବଧାନ ହୋଇ ।
କେତେକେ କ୍ଷେତ୍ରବାସୀ ସ୍ୱାମୀ ଆହେ ରାଧାପତି
ପ୍ରସନ୍ନ ହୋଇଣ ବାରେ ଫେଡ଼ ମୋ ଦୁର୍ଗତି

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଦାବାଗ୍ନି ମୋକ୍ଷଣ ବୃତ୍ତାନ୍ତ ବର୍ଣ୍ଣନେ ନାମ ଊନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ

## ଗୋବତ୍ସାମାନଙ୍କର ହରଣ ବୃତ୍ତାନ୍ତ କଥନ

କହନ୍ତି ନାରଦ ଆଗେ ନାରାୟଣ ମୁନି
ଦିନେ ଗୋପାଳ ଶିଶୁଙ୍କ ସଙ୍ଗତରେ ଘେନି ।
କୃଷ୍ଣ ବଳରାମ ଦୁହେଁ ବାହାର ହୋଇଲେ
ବୃନ୍ଦାବନ ମଧ୍ୟେ ଯାଇ ଉପସ୍ଥିତ ହେଲେ ।
ସମସ୍ତେ ଏକସ୍ଥାନରେ ଆରମ୍ଭିଲେ ଖେଳ
କ୍ରମେ କ୍ରମେ ହେଲା ଆସି ଦ୍ୱିପ୍ରହର ବେଳ ।
ରକ୍ଷକ ନ ଥିବା ଯୋଗୁ ଗାଈମାନେ ଚରି
ବହୁତ ଦୂରକୁ ପଳାଇଲେ ସେ ନ ରହି ।
ଶ୍ରୀକୃଷ୍ଣଙ୍କ ପ୍ରଭାବକୁ ଜାଣିବାକୁ ଧାତା
ଗୋଗୋଷ୍ଠ ହରଣ କରି ନେଲେ ଗୂଢ଼ ଚିନ୍ତା ।
ତାହାଙ୍କର ଅଭିପ୍ରାୟ ଜାଣି ନରହରି
ରଖିରେ ଗୋଷ୍ଠ ଗୋଟିଏ ସରଜନା କରି ।
ତାଙ୍କୁ ଘେନିଣ ଗୋପାଳେ ବାଳକଙ୍କ ମେଳେ
ଦିନ ଶେଷେ ନିଜପୁରେ ପ୍ରବେଶ ହୋଇଲେ
ଏହିପରି ବର୍ଷେ ଯାଏ ପ୍ରତ୍ୟେକ ଦିନରେ
ସରଜନା କରୁଥାନ୍ତି ଗୋଗୋଷ୍ଠକୁ ଥରେ ।
ବିଧାତା ସେ କଥା ଜାଣି ଲଜ୍ଜିତ ହୋଇଲେ
ଭଣ୍ଡୀର ବଟ ମୂଳରେ ଆସିଣ ମିଳିଲେ ।
ଦେଖିଲେ ଶ୍ରୀକୃଷ୍ଣ ଗୋପ ଶିଶୁଙ୍କ ସଙ୍ଗରେ
କ୍ରୀଡ଼ା କରୁଛନ୍ତି ବସି ସେ ବୃକ୍ଷମୂଳରେ ।
ଶୋଭା ପାଉଅଛି କଟିତଟେ ପୀତବାସ
ଆବର ଦେହରେ ରତ୍ନ ଭୂଷଣ ବିଶେଷ ।
କୋଟି କନ୍ଦର୍ପ ଲାବଣ୍ୟ ସୁନ୍ଦର ମୁରତି
ବ୍ରହ୍ମ ତେଜରେ ସମ୍ପୂର୍ଣ୍ଣ ହୋଇ ସେ ଅଛନ୍ତି ।
ମାଳତୀ କୁସୁମ ମାଳା ବକ୍ଷସ୍ଥଳେ ରହି
ହରିପୁର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣ କରଇ ।
ନବ ଜଳଧର ଶ୍ୟାମ ଯୌବନ ବୟସ
ଶରତ ଚନ୍ଦ୍ରମା ତୁଲ୍ୟ ଦିଶେ ମୁଖଦେଶ ।
ମୁକ୍ତାହାର ମଧ୍ୟରେ କଉସ୍ତୁଭ ମଣି
ରହିଛି ତେଜରେ ଇନ୍ଦ୍ରମାଳ ପ୍ରଭା ଜିଣି ।
ଏହିରୂପେ ପ୍ରଭୁଙ୍କର ସ୍ୱରୂପକୁ ଦେଖି
ପିଛାଡ଼ି ପାରିଲେ ନାହିଁ ଦଣ୍ଡେ ଯାଏ ଆଖି ।
ବିସ୍ମିତ ହୋଇ ତାହାଙ୍କ ଚରଣେ ନମିଲେ
ବେଦକର ଶିରେ ଯୋଡ଼ି ଆଗେ ଉଭା ହେଲେ
ସେ ବନରେ ବୃକ୍ଷଲତା ଗୁଳ୍ମ ଆଦି ଯେତେ
ଶ୍ରୀକୃଷ୍ଣ ପରି ତାହାଙ୍କୁ ହୋଇଲେ ପରତେ
ଯେପରିକ ଦିଶିଲେ ତେଣେ ଶ୍ୟାମଳ ମୂରତି
ଦେଖିଣ ବିସ୍ମୟ ରସେ ମଗ୍ନ ହେଲେ ଅତି ।
ପୁଣି ଶ୍ରୀକୃଷ୍ଣଙ୍କ ଦିବ୍ୟ ସ୍ୱରୂପକୁ ଧ୍ୟାୟି
ଜାଣିଲେ ତହିଁରେ ଆଦିଅନ୍ତ କିଛି ନାହିଁ ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳେ ସ୍ଥିତ ଯେତେ ଜୀବ
ଶ୍ରୀକୃଷ୍ଣମୟ ତାହାଙ୍କୁ ଦେଖାଗଲେ ସର୍ବ ।
ସେ ସକାଶୁ ଆଉ ସ୍ତୁତି କରି ନ ପାରିଲେ
ଯତନରେ ଯୋଗାସନେ ଉପବିଷ୍ଟ ହେଲେ ।
ନିବନ୍ଧ କରି ଯତ୍ନରେ ଛଅଗୋଟି ନାଡ଼ୀ
ବ୍ରହ୍ମରନ୍ଧ୍ର ସମୀପକୁ ନେଲେ ତହୁଁ ଭିଡ଼ି ।
ପୁଣି ତାହାଙ୍କୁ ହୃଦୟ କମଳକୁ ନେଲେ
କଣ୍ଠିତ କୁଳଇ ମଧ୍ୟ ନାଡ଼ୀରେ ରଖିଲେ ।
ପୂର୍ବେ ତାଙ୍କୁ ଯେଉଁ ମନ୍ତ୍ର ଦେଇଥିଲେ ହରି
ଜପ କଲେ ସେ ମନ୍ତ୍ରକୁ ହୃଦରେ ସୁମରି ।
ମୁହୂର୍ତ୍ତେ ଅନ୍ତରେ ନିଜ ହୃଦୟ ପଙ୍କଜ
ମଧ୍ୟରେ ଦେଖିଲେ ପୁଞ୍ଜିଭୂତ ଦିବ୍ୟତେଜ ।

ସେ ତେଜ ମଧ୍ୟରେ ଶ୍ୟାମସୁନ୍ଦର ମୂରତି
ଇନ୍ଦ୍ରନୀଳମଣିପ୍ରାୟ ବିରାଜଇ କାନ୍ତି ।
ଦ୍ୱିଭୁଜେ ମୁରଲୀ ହସ୍ତ ସସ୍ମିତ ବଦନ
କଟିତଟରେ ଶୋଭିତ ସୁପୀତ ବସନ ।
ନିର୍ଲିପ୍ତ ସକଳଲୋକ ସାକ୍ଷୀ ଜଗଦ୍‌ଗୁରୁ
ଆତ୍ମାରାମ ପୂର୍ଣ୍ଣକାମ କାମସମ ଚାରୁ ।
ସର୍ବାରାଧ୍ୟ ସର୍ବଜନ ମଙ୍ଗଳ କାରଣ
ସର୍ବମନ୍ତ୍ର ରୂପ ସର୍ବ ସମ୍ପଦର ସ୍ଥାନ ।
ଏମନ୍ତ ଯେ ଦିବ୍ୟରୂପ ଦେଖିଲେ ହୃଦରେ
ସେହି ସମାନଙ୍କୁ ଦେଖି ଶ୍ରୀକୃଷ୍ଣଙ୍କଠାରେ ।
ଆଶ୍ଚର୍ଯ୍ୟ ହୋଇ କମ୍ପିତ ମସ୍ତକ ନୁଆଇଁ
ସ୍ତୁତିକଲେ କରଯୋଡ଼ି ଆଗେ ଉଭାହୋଇ ।
ବୋଇଲେ ନମସ୍ତେ ଦେବ ଅନିର୍ବଚନୀୟ
ଶକ୍ତୀଶ୍ୱର ଶକ୍ତି ବୀର୍ଯ୍ୟ ସର୍ବ ତେଜୋମୟ ।
ମହାଘୋର ଅଟଇ ଯେ ସଂସାର ସାଗର
ତହିଁରେ ଆପଣ ଶକ୍ତି ନିଜ କର୍ଣ୍ଣଧାର ।
ସଗୁଣ ନିର୍ଗୁଣ ପରଂବ୍ରହ୍ମମୟ ମୂର୍ତ୍ତି
ଅଟନ୍ତି ଯେ ତାହାଙ୍କୁ ମୁଁ କରୁଅଛି ସ୍ତୁତି ।
ସର୍ବେନ୍ଦ୍ରିୟ ରୂପ ମହାବିରାଟ ପୁରୁଷ
ଅଟନ୍ତି ଯେ ନମଇଁ ମୁଁ ତାଙ୍କ ପାଦଦେଶ ।
ଯଶୋଦା ନନ୍ଦନ ନନ୍ଦ ଆନନ୍ଦ ଦାୟକ
ନମସ୍ତେ ଅଶେଷ ଗୋପ ଯୁବତୀ ନାୟକ ।
ଧ୍ୟାନସାଧ୍ୟ ଶାନ୍ତଶିଷ୍ଟ ଅଦୃଷ୍ଟ ଶରୀର
ରାସପ୍ରିୟ ରାସକ୍ରୀଡ଼ା ମଣ୍ଡନ ଈଶ୍ୱର ।
ଗୋପୀଜନ ସେବ୍ୟମାନ ରାଧା ପ୍ରାଣପତି
ନମୋନମ ଯୋଗୀଜନମାନଙ୍କର ଗତି ।

ମନ୍ତ୍ରବୀଜ ମନ୍ତ୍ରରାଜ ମନ୍ତ୍ର ଫଳଦାତା
ନମସ୍ତେ ପରମ ଈଶ ଭୁବନ ବିଧାତା ।
ପୁଣ୍ୟଦ ସୁଖଦ ଶୁଭବୀଜ ସନାତନ
ନମସ୍ତେ କରୁଣାସିନ୍ଧୁ ପ୍ରଭୁ ଜନାର୍ଦ୍ଦନ ।
ଏହିରୂପେ ସ୍ତୁତିକରି ଲୋକପିତାମହ
ସମର୍ପଣ କଲେ ଗୋଗୋଷ୍ଠକୁ କରି ସ୍ନେହ
ଦଣ୍ଡବତ ହୋଇ ପୁନଃପୁନଃ ନମସ୍କାର
କଲେ ଭକ୍ତି ପ୍ରେମ ରସେ ଡୁବାଇ ଅନ୍ତର ।
ବିଦାୟ ଘେନି ସେ ଅନ୍ତେ ବ୍ରହ୍ମଲୋକେ ଯାଇ
ପ୍ରବେଶ ହୋଇଲେ ଅତି ଆନନ୍ଦିତ ହୋଇ ।
ବ୍ରହ୍ମାଙ୍କର କୃତସ୍ତୋତ୍ର ପଢ଼ଇ ଯେ ନର
ଇହଲୋକେ ସର୍ବସୁଖ ହୁଅଇ ତାହାର ।
ଅନ୍ତଃକାଳେ ବିଷ୍ଣୁଲୋକ ପ୍ରାପତ ହୁଅଇ
ଆବର ଶ୍ରୀକୃଷ୍ଣଙ୍କର ଦାସତ୍ୱ ମିଳଇ ।
ଏଥୁଅନ୍ତରେ ଶ୍ରୀକୃଷ୍ଣ ଗୋପାଳ ଶିଶୁଙ୍କୁ
ସଙ୍ଗରେ ଘେନିଣ ଗଲେ ଆପଣା ପୁରକୁ ।
ବତ୍ସା ସହିତରେ ଗଉ ଗୋଷ୍ଠକୁ ଅଡ଼ାଇ
ପ୍ରବେଶ ହୋଇଲେ ସର୍ବେ ଗୋପପୁରେ ଯାଇ
ବରଷ ଅନ୍ତରେ ଫେରି ଆସିଲେ ସେମାନେ
ଜାଣି ନ ପାରିଲେ ତାହା ପୁରବାସୀ ଜନେ ।
ଶ୍ରୀକୃଷ୍ଣ ମାୟାରେ ସର୍ବେ ହେବାରୁ ମୋହିତ
ଏକଦିନ ପରି ତାହା ହୋଇଲା ପ୍ରତୀତ ।
କହଇ କ୍ଷେତ୍ରମୋହନ ଯୋଡ଼ି ବେନିକର
ଏ ଭବସାଗରୁ ଦୀନେ କରନ୍ତୁ ଉଦ୍ଧାର ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଗୋବତ୍ସାମାନଙ୍କର ହରଣ
ବୃତ୍ତାନ୍ତ କଥନେ ନାମ ବିଂଶୋଽଧ୍ୟାୟଃ ।

—*—

# ଏକବିଂଶ ଅଧ୍ୟାୟ

## ଇନ୍ଦ୍ରଙ୍କର ଯଜ୍ଞଭଗ୍ନ ଓ ନନ୍ଦରାଜାଙ୍କ କୃତ ଇନ୍ଦ୍ରସ୍ତୋତ୍ରର ବିବରଣ

ନାରାୟଣ ବୋଇଲେ ହେ ବ୍ରହ୍ମାଙ୍କର ସୁତ
କହିବା ଶୁଣ ଶ୍ରୀକୃଷ୍ଣ ଚରିତ ଅମୃତ ।
ଏକଦିନେ ନନ୍ଦରାଜା ଇନ୍ଦ୍ରଯାଗ ପାଇଁ
ବ୍ରଜପୁରେ ନାନାବିଧ ଉତ୍ସବ କରାଇ ।
ଦଧିଦୁଗ୍ଧ ନବନୀତ ମଧୁ ଘୃତ ଗୁଡ଼
ନଇବେଦ୍ୟ ଦେବାପାଇଁ କଲେ ଆଣି କୁଢ଼ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦିକରି ।
ଗୋପପୁରେ ଥିଲେ ଯେତେ ବାଳବୃଦ୍ଧ ସ୍ତ୍ରୀ ଗି
ସମସ୍ତେ ଶକ୍ର ପୂଜାରେ ଯୋଗ ଆସି ଦେଲେ
ଗନ୍ଧପୁଷ୍ପ ଧୂପଦୀପ ନଇବେଦ୍ୟ କଲେ ।
ବିସ୍ତୃତ ସ୍ଥାନରେ ସ୍ତମ୍ଭ କୋଟିଏ ପୋତାଇ
ବାନ୍ଧିଲେ ଧ୍ୱଜପତାକା ତାର ଶିଖେ ନେଇ ।
ସବୁଆଡ଼େ ସୁବାସିତ ଚନ୍ଦନର ଜଳ
ସିଞ୍ଚିବାରୁ ରାଜପଥ ହୋଇଲା ପଙ୍କିଳ ।
ପ୍ରାତଃକାଳେ ନନ୍ଦରାଜା ସ୍ନାନ ସନ୍ଧ୍ୟା ସାରି
ବସିଲେ ସୁବର୍ଣ୍ଣ ପୀଠ ପୃଷ୍ଠକୁ ଆରୋହି ।
ପୁରୋହିତ ଦ୍ୱିଜଗଣ ତାଙ୍କ ସନ୍ନିଧାନେ
ଉପବିଷ୍ଟ ହେଲେ ସୁଖେ ଯେ ଯାହା ଆସନେ ।
ଗୋପାଳ ଗୋପିକାମାନେ ବାଳକଙ୍କୁ ଘେନି
ବସିଲେ ସେହି ସ୍ଥାନରେ ହୋଇକରି ତୁନି ।
ଏହିକାଳେ ଆଉ ଯେତେ ନାଗରିକ ଜନ
ଥିଲେ ସେ ଆସିଲେ ଘେନି ଉପହାରମାନ ।
ଆମନ୍ତ୍ରିତ ହୋଇଥିଲେ ମୁନିଋଷି ଯେତେ
ସେ ଯାଗସ୍ଥାନରେ ଆସି ମିଳିଲେ ସମସ୍ତେ ।
ସେମାନଙ୍କ ସଙ୍ଗତରେ ଥିଲେ ଶିଷ୍ୟଗଣ
ସମସ୍ତେ ବେଦବେଦାଙ୍ଗ ଶିକ୍ଷାରେ ନିପୁଣ ।
ଗଉତମ ଯାଜ୍ଞବଳ୍କ୍ୟ ଗର୍ଗ କାତ୍ୟାୟନ
ଗାଲବ ଶାକଲ୍ୟ କଣ୍ୱ ଜରଥ ବାମନ ।
ଶାକଟାୟନ ସୌଭରି ବାତ୍ସ୍ୟ ଗୌର ମୁଖ
ଭରଦ୍ୱାଜ ଋଷ୍ୟଶୃଙ୍ଗ ଶୃଙ୍ଗୀ ଦ୍ୱିଜମୁଖ୍ୟ ।
ପାଣିନୀୟ କୃଷ୍ଣଦ୍ୱୈପାୟନ ପରାଶର
ମୈତ୍ରେୟ ବୈଶମ୍ପାୟନ ଠିକ ଦ୍ୱିଜବର ।

ଏହିରୂପେ କେତେ ମୁଖ୍ୟ ଋଷିଏ ଆସିଲେ
ପୁଣି କେତେ ଦ୍ୱିଜ ଆସି ଉପଗତ ହେଲେ ।
ଭିକ୍ଷୁକ ସୂତପାଠକ ଅନେକ ଦେଶରୁ
ଆସିଲେ ସେ ଯାଗ ହେବା କଥା ଶୁଣିବାରୁ ।
ମୁନୀନ୍ଦ୍ର ବ୍ରାହ୍ମଣ ନୃପଗଣଙ୍କୁ ଅନାଇଁ
ଆନନ୍ଦରେ ନନ୍ଦରାଜା ଆସନକୁ ଦେଇ ।
ସୁବର୍ଣ୍ଣ ପୀଠରୁ ନିଜେ ଉଠିଣ ଆସିଲେ
ହସ୍ତ ଧରିନେଇ ସେମାନଙ୍କୁ ବସାଇଲେ ।
ପୁଣି ତାଙ୍କଠାରୁ ଅନୁମତି ମାଗିକରି
ବସିଲେ ଆପଣା ହୃଦେ ମୁଦକୁ ବିସ୍ତାରି ।
ଉତ୍ତମ ପାଚକ ଦ୍ୱିଜଗଣ ଡକାଇଲେ
ଯଜ୍ଞ ନିକଟେ ରାନ୍ଧିବା ପାଇଁ ଆଜ୍ଞାଦେଲେ ।
ସେଠାରେ ରତ୍ନପ୍ରଦୀପ ଥିବାରୁ ବହୁତ
ଦୂର କରୁଥିଲେ ଅନ୍ଧକାରକୁ ସତତ ।
ଆଉର ଗନ୍ଧଚନ୍ଦନ ଧୂପ ନଇବେଦ୍ୟ
ଯତ୍ନସହକାରେ ଥୁଆ ହୋଇଥିଲେ ସଦ୍ୟ ।
ସ୍ୱସ୍ତିକ ଲଡ଼ୁଡ଼ୁକ ଦୁଗ୍ଧ ଘୃତ ପକ୍ୱଭକ୍ଷ
ରଖାଯାଇଥିଲେ ସେହି ସ୍ଥାନରେ ଅସଂଖ୍ୟ ।
କଦଳୀ ପଣସ ଚୂତ ନାରିକେଳ ଫଳ
ଅନେକ ଆଣି ସେ ଯାଗସ୍ଥାନେ କଲେ ଠୁଳ ।
ଲକ୍ଷେ କ୍ଷୀର ଘୃତଘଟ ମଧୁକୁମ୍ଭ ଶତେ
ସହସ୍ରେକ ନବନୀତ କଳସ ସହିତେ ।
ସେ ମହା ଯାଗରେ ଆଣି ଠାବ କରାଇଲେ
ପୁଣି ଗୁଡ଼ପୂର୍ଣ୍ଣ ଲକ୍ଷେ କଳସ ଆଣିଲେ ।
ଭୋଗଦ୍ରବ୍ୟ ବହିବାକୁ ବୃଷଭ ଅନେକ
ନିଯୁକ୍ତକଲେ ସେ ନନ୍ଦ ଗୋପାଳ ନାୟକ ।
ବାଦ୍ୟ ସ୍ୱର ଯନ୍ତ୍ର ଘେନି ନର୍ତ୍ତକ ବହୁତ
ସେ ଯାଗଶାଳାରେ ଆସି ହେଲେ ସମବେତ
ବିଚିତ୍ର ବସ୍ତ୍ରଭୂଷଣ ବିବିଧ ପ୍ରକାରେ
ଅଣାଇଲେ ବିତରଣ କରିବା ଇଚ୍ଛାରେ ।
ମହିଷ ଛାଗଳ ମେଷ ବଳି ଦେବାପାଇଁ
ରକ୍ଷକଙ୍କ ପାଶେ ସମର୍ପିଲେ ନେଇ ତହିଁ ।

ବାଳକ ବାଳକା ଯୁବା ବୃଦ୍ଧ ଆଦିକରି
ଆସିଲେ ସେଠାକୁ କେତେ ଉପହାର ଧରି ।
ନୃତ୍ୟ କରିବା ନିମନ୍ତେ ଅପସରାଗଣ
ଆସିଲେ ଯେ କହୁଅଛୁ ଶୁଣ ତାଙ୍କ ନାମ ।
ଉର୍ବଶୀ ମେନକା ରମ୍ଭା ତିଲୋତ୍ତମା ଘୃତ
ଘୃତାଚୀ ମୋହିନୀ ପ୍ରମ୍ଳୋଚା ଆନୁମତୀ ।
ବିପ୍ରଚିତ୍ତି ଚନ୍ଦ୍ରପ୍ରଭା ସୁପ୍ରଭା ତରୁଣୀ
ରତ୍ନମାଳା ମଦାଳସା ରେଣୁକା ତରୁଣୀ ।
ଏମାନେ ପଞ୍ଚମସ୍ୱରରେ ଗାନ କରି ଗୀତ ।
ନାନାଭଙ୍ଗୀରେ ଆରମ୍ଭକଲେ ତହିଁ ନୃତ୍ୟ ।
ତାଙ୍କ ରୂପ ମୁଖଶୋଭା ସ୍ତନଶ୍ରେଣୀ ଦେଖି
ଏକଦୃଷ୍ଟିରେ ସମସ୍ତେ ରହିଲେ ନିରେଖି ।
ଏହି ସମୟରେ କୃଷ୍ଣ ବଳରାମ ବେନି
ଗୋପବାଳକଗଣଙ୍କୁ ସଙ୍ଗତରେ ଘେନି ।
ସେ ଯାଗସ୍ଥାନରେ ପ୍ରବେଶ ହେଲେ ଆସି
ଶ୍ରୀକୃଷ୍ଣଙ୍କୁ ଦେଖି ସର୍ବେ ହୋଇ ମହାତୋଷୀ
ନିଜ ନିଜ ଆସନରୁ ଉଠି ଉଭାହେଲେ
ତାଙ୍କ ସୁନ୍ଦର ରୂପକୁ ଅନାଇଁ ରହିଲେ ।
କ୍ରୀଡ଼ାସ୍ଥଳରୁ ଆଗତ ହୋଇଥିଲେ ହରି
ବେନି ହସ୍ତରେ ମନୋହର ମୁରଲିକା ଧରି ।
ଭରିଥିଲେ ଅଙ୍ଗେ ପୀତବାସ ଅଳଙ୍କାର
କନ୍ଦର୍ପ ଗରବ୍ୟ ହରୁଥିଲେ ସେ ସୁନ୍ଦର ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦିକରି
ଯେତେକ ଲୋକ ସେଠାରେ ରହିଥିଲେ ପୂରି
ସମସ୍ତେ ଭକତିଭରେ ଦଣ୍ଡବତ ହେଲେ
ନମସ୍କାର କରି ଆସନରେ ବସାଇଲେ ।
ତାହାଙ୍କ ମଧ୍ୟରେ ସ୍ୱର୍ଣ୍ଣପୀଠେ ନରହରି
ବସିଲେ ଦେବତା ମଧ୍ୟେ ଶଚୀପତି ପରି ।
ସେ ଅନ୍ତରେ ସର୍ବେ ନିଜ ଆସନେ ବସିଲେ
ଶ୍ରୀକୃଷ୍ଣ ଆସିବା ଯୋଗେ ଆନନ୍ଦିତ ହେଲେ ।
ଉତ୍ସବ ଦେଖି ଶ୍ରୀକୃଷ୍ଣ ପିତାଙ୍କୁ ଅନାଇଁ
ବୋଇଲେ ହେ ତାତ କସ ହେଉଛି ଏଠାଇ
ଆରାଧ୍ୟ ଅଟନ୍ତି କେଉଁ ଦେବତା ଏଥିରେ
କେଉଁଫଳ ଅବା ଏଥୁ ଲାଭ ହେବ ପରେ ।
ଫଳର ସାଧନ ଅଟେ କେଉଁଣ ପ୍ରକାର
ନ କଲେ ଏ ଯାଗ ହେବ କିବା ଅପକାର ।
ପ୍ରସନ୍ନ ହୋଇବେ ଯେବେ ଉପାସ୍ୟ ଦେବତା
କି ମଙ୍ଗଳ କରିବେ ସେ କହ ଆହେ ପିତା ।
ସଂସାର ମଧ୍ୟରେ ଯେତେ ଦେବ ପୂଜାବିଧି
ନ ହୁଅଇ ସବୁଠାରେ ଇଷ୍ଟ କାର୍ଯ୍ୟସିଦ୍ଧି ।
କେଉଁଠାରେ ଅକସ୍ମାତେ ସିଦ୍ଧ ହୋଇପାରେ
ନିଷ୍ଫଳ ହୁଅଇ ମଧ୍ୟ କେଉଁଣ ସ୍ଥାନରେ ।
ତୁମ୍ଭ ପୂର୍ବଜଙ୍କଠାରୁ କି ଅଛି ଏ ବିଧାନ
କି ଅବା ତୁମ୍ଭର ଏହା ଅଟଇ ନୂତନ ।
ପୂଜା କଲବେଳେ ସାକ୍ଷାତରେ ଦେବେ ଆସି
ଦେଉଅଛନ୍ତି କି ନଇବେଦ୍ୟ ଦ୍ରବ୍ୟ ଗ୍ରାସି ।
କି ଅବା ସ୍ମରଣ କରି ଛାଡ଼ିଯାଉଛନ୍ତି
ଏକଥା କହୁଥିବେ ହୁଏ ତୁମ୍ଭର ପ୍ରତୀତି ।
ଶାସ୍ତ୍ର ଲେଖିଅଛି ଦ୍ୱିଜେ ମଧ୍ୟରେ ଦେବତା
ପୂଜା କରିବ ତାହାଙ୍କୁ ଛାଡ଼ି ସବୁ ଚିନ୍ତା ।
ସବୁ ପୂଜାରୁ ଅଧିକ ବ୍ରାହ୍ମଣ ଅର୍ଚ୍ଚନ
ସେ ସକାଶୁ ଦ୍ୱିଜରୂପୀ ପ୍ରଭୁ ଜନାର୍ଦ୍ଦନ ।
ବ୍ରାହ୍ମଣ ସନ୍ତୁଷ୍ଟହେଲେ ତୋଷ ହେବେ ଦେବେ
ଏଥିରେ ସନ୍ଦେହ ରହିନାହିଁ ଜାଣ ଲବେ ।
ଦେବତାଙ୍କ ନଇବେଦ୍ୟ ନ ଦେଲେ ଦ୍ୱିଜଙ୍କୁ
ନିଷ୍ଫଳ ବୋଲି ଜାଣିବ ସେ ପୂଜାବିଧିକୁ ।
ଦେବଙ୍କ ନୈବେଦ୍ୟ ଯେବେ ଖାଆନ୍ତି ବ୍ରାହ୍ମଣ
ସନ୍ତୋଷରେ ବର ଦେଇଯାନ୍ତି ଦେବଗଣ ।
ଦ୍ୱିଜଙ୍କୁ ନ ଦେଇ ତାହା ଯେଉଁ ଲୋକ ଖାଏ
ନିଶ୍ଚୟରେ ସେହୁ ଦଣ୍ଡ ଅପରାଧୀ ହୁଏ ।
ଦେବତାଙ୍କୁ ଦେବା ପାଇଁ ଯାହା ରଖିଥିବ
ଉତ୍ତମ ଦ୍ୱିଜହସ୍ତରେ ଯେତେ ତାହା ଦେବ ।
ସନ୍ତୁଷ୍ଟ ହୁଅନ୍ତି ଦେବତାଏ ତାହା ଜାଣି
ଅନ୍ତଃକାଳେ ସ୍ୱର୍ଗପୁରେ ବସଇ ସେ ପ୍ରାଣୀ ।
ବିପ୍ରଙ୍କ ଅଙ୍ଗରେ ସବୁ ଦେବଙ୍କର ବାସ
ସେ କାରଣ ବିପ୍ରଙ୍କୁ ସେବା କରିବ ସନ୍ତୋଷ ।
ଅଜ୍ଞାନୀ ବା ଜ୍ଞାନବନ୍ତ ହେଲେହେଁ ବ୍ରାହ୍ମଣ
କରୁଥାଏ ଯେବେ ସଦା ବିଷ୍ଣୁଙ୍କ ପୂଜନ ।
ସେବେ ସେହ ବିଷ୍ଣୁଙ୍କର ପ୍ରାଣରୁ ଉତ୍କୃଷ୍ଟ
ଅଟଇ ବୋଲିଣ ଜାଣ ଆହେ ଗୋପଶ୍ରେଷ୍ଠ ।
ବିଷ୍ଣୁଭକ୍ତ ଦ୍ୱିଜଙ୍କର ପାଦରଜ ପାଇ
ପବିତ୍ର ହୁଅଇ ନିଶ୍ଚେ ସମୁଦ୍ରାନ୍ତ ମହୀ ।

ଯେଉଁ ପୁଣ୍ୟକ୍ଷେତ୍ର ତୀର୍ଥସ୍ଥାନ ପର୍ଯ୍ୟନ୍ତରେ
ହୁଅଇ ସେ ବିଷ୍ଣୁଭକ୍ତ ଦ୍ୱିଜଙ୍କ ଦର୍ଶନେ ।
ଯେଉଁ ଦ୍ୱିଜ ଶ୍ରୀହରିଙ୍କୁ ନୈବେଦ୍ୟ କରି
ଭୋଜନ କରନ୍ତି ତାଙ୍କ ଚରଣ ସୁମରି ।
ତାହାଙ୍କ ଉଚ୍ଛିଷ୍ଟ ନେଇ ଭୁଞ୍ଜେ ଯେଉଁ ନର
ବୈଷ୍ଣବ ମଧ୍ୟେ ସେ ବଡ଼ ବୋଲି ମନେକର ।
ହରିଙ୍କୁ ପୂଜା ନ କରି ଭୁଞ୍ଜଇ ଯେ ଜନ
ଅଟଇ ବିଷ୍ଠା ସଦୃଶ ତାହାର ଭୋଜନ ।
ଶୂଦ୍ର ଯେବେ ଶ୍ରୀହରିଙ୍କୁ ନୈବେଦ୍ୟ ଇଚ୍ଛିବ
ତେବେ ଅପକ୍ୱ ପଦାର୍ଥ ଆଣି ସମର୍ପିବ ।
ସେ ଅନ୍ନେ ତାହାକୁ ପକ୍ୱ କରି ଭୁଞ୍ଜିଲେ
ଅଶେଷ ଧର୍ମ ତାହାର ହୁଅଇଟି ଭଲେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ତିନିଜାତିଙ୍କର
ଶାଳଗ୍ରାମ ପୂଜିବାରେ ଅଛି ଅଧିକାର ।
ଶାଳଗ୍ରାମ ପୂଜା ଅଟେ ବିଷ୍ଣୁଙ୍କର ପୂଜା
ଶୂଦ୍ର ତାହା ନ କରଇ ଆହେ ଗୋପରାଜା ।
ଏ ସକଳ ଦ୍ରବ୍ୟ ତୁମ୍ଭେ ନ ଦେଲେ ଦ୍ୱିଜଙ୍କୁ
ଭସ୍ମ ହୋଇଯିବ ଏହା ଆସୁଛି ମନକୁ ।
ପୁଣ୍ୟ ହେବାପାଇଁ ଅନ୍ନ ଜୀବଙ୍କୁ ଯେ ଦେବ
ନିଶ୍ଚୟ ତାହାର ମନୋରଥ ସିଦ୍ଧ ହେବ ।
ମନୁଷ୍ୟକୁ ଦେଲେ ତାର ଅଷ୍ଟଗୁଣ ଫଳ
ଶୂଦ୍ରଙ୍କୁ ଦେଲେ ତହିଁରୁ ବିଶେଷ ମଙ୍ଗଳ ।
ବୈଶ୍ୟକୁ ଦେଲେ ତାଠାରୁ ହେବ ଦୁଇଗୁଣ
କ୍ଷତ୍ରିୟକୁ ଦେଲେ ଶତଗୁଣ ହେବ ଜାଣ ।
ବ୍ରାହ୍ମଣକୁ ଦେଲେ କ୍ଷତ୍ରୀ ଦାନଠାରୁ ଶତ
ସହସ୍ର ଗୁଣ ଅଧିକ ହୁଅଇ ନିଶ୍ଚିତ
ଶାସ୍ତ୍ରଜ୍ଞାନୀ ଭକ୍ତ ଅଟେ ଯେଉଁ ବିପ୍ରବର
ତାକୁ ଦେଲେ ଲକ୍ଷେଗୁଣ ହେବାର ନିକର ।
ଏ ସକଳ ଦ୍ରବ୍ୟ ତୁମ୍ଭେ ବ୍ରାହ୍ମଣକୁ ଯେବେ
ଦାନ କରିବ ସନ୍ତୁଷ୍ଟ ହେବେ ସର୍ବ ଦେବେ ।
ଗଉମାନଙ୍କର ବୃଦ୍ଧି ହେବାର କାରଣ
ଅଟଇ ଯେଣୁ ଏ ଯାଗ ନାମ ଗୋବର୍ଦ୍ଧନ ।
ଗୋବର୍ଦ୍ଧନଠାରୁ ବଳି ପୁଣ୍ୟ ଏ ଜଗତେ
ନାହିଁ କିଛି ବୋଲି ଲେଖା ହୋଇଅଛି ଶାସ୍ତ୍ରେ
ତେମନ୍ତ ହେଲେ ଗଉଙ୍କୁ ନବତୃଣ ଦେଇ
ସନ୍ତୁଷ୍ଟ କରିବାର ତ ଉଚିତ ଅଟଇ ।
ବ୍ରାହ୍ମଣ ଗଉଙ୍କୁ ଯେହୁ ଅମାନନା କରେ
ପଡ଼ଇ ସେ ମହାଘୋର ନରକ ମଝିରେ ।
ଏମନ୍ତ କହି ଶ୍ରୀକୃଷ୍ଣ ବିରତ ହୋଇଲେ
ତାହା ଶୁଣି ନନ୍ଦ ତାଙ୍କୁ ହସିଣ କହିଲେ ।
ବୋଇଲେ ହେ ବତ୍ସ ପୂର୍ବକାଳରୁ ଏ କଥା
ଚଳି ଆସୁଅଛି ଇନ୍ଦ୍ରପୂଜାର ବ୍ୟବସ୍ଥା ।
ଏ ପୂଜା କଲେ ରାଜ୍ୟରେ ସୁବୃଷ୍ଟି ହୁଅଇ
ସେ ସକାଶେ ନାନାବିଧ ଶସ୍ୟ ଉପୁଜଇ ।
ବ୍ରଜବାସୀ ଗୋପଗଣ ପୂରୁଷାନୁକ୍ରମେ
କରୁଅଛନ୍ତି ମହେନ୍ଦ୍ର ପୂଜା ଏହି ଧାମେ ।
ବରଷକେ ଥରେ ଏହା ହୁଏ ଅନୁଷ୍ଠିତ
ବିଘ୍ନନାଶ ପୁଣି ଶୁଭ ହେବାକୁ ଉଦିତ ।
ଏମନ୍ତ ବୋଲିଣ ନନ୍ଦ ନିବୃତ୍ତ ହୋଇଲେ
ଶ୍ରୀକୃଷ୍ଣ ତା ଶୁଣି ପୁଣି କହି ଆରମ୍ଭିଲେ ।
ବୋଇଲେ ଯା କହୁଅଛ ଆହେ ତାତ ମୋତେ
ଉପହାସ ଅଟଇ ତା ଲୋକ ବେଦଶାସ୍ତ୍ରେ
ଇନ୍ଦ୍ରଠାରୁ ବୃଷ୍ଟି କେବେ ନ ହୁଅଇ ଜାଣ
ଏ କଥା ଅଟଇ ମାତ୍ର ଶାସ୍ତ୍ରର ପ୍ରମାଣ ।
ବିଜ୍ଞମନ୍ତ୍ରୀକୁ ପଚାରି ବୁଝ ଭଲକରି
ଇନ୍ଦ୍ରଙ୍କ ଯୋଗେ କି ମେଘ ବରଷଇ ବାରି ।
ସୂର୍ଯ୍ୟଙ୍କଠାରୁ କେବଳ ଜାତ ହୁଏ ଜଳ
ଜଳରୁ ଉତ୍ପନ୍ନ ହୁଏ ଶସ୍ୟାଦି ସକଳ ।
ତୋୟଯୁକ୍ତ ଜଳଧର ଗଜ ମହାସିନ୍ଧୁ
ଶସ୍ୟାଧିପ ନୃପମନ୍ତ୍ରୀ ଜଗତର ବନ୍ଧୁ ।
ଏହିରୂପେ ନିରୂପିତ କରିଛନ୍ତି ଧାତା
ଭାବିବାପାଇଁ ଏଥିରେ ନାହିଁ କିଛି କଥା ।
ଜଳ ଆଣି ସମୁଦ୍ରର ମହାବଳ ହାତୀ
ମେଘକୁ ଦିଅଇ ଆର୍ଦ୍ର କରିବାକୁ କ୍ଷିତି ।
ପବନର ସାହାଯ୍ୟରେ ବରଷଇ ଘନ
ସେ ଯୋଗୁ ମହୀରେ ଜାତହୁଏ ଶସ୍ୟଧାନ୍ୟ ।
ଏହିପରି ଈଶ୍ୱରେଚ୍ଛା ଅଟେ ଅନିବାର୍ଯ୍ୟ
ଭୂତ ଭବ୍ୟ ଭବିଷ୍ୟତ କରଇ ସେ ଧାର୍ଯ୍ୟ ।
ମହତ କ୍ଷୁଦ୍ର ମଧ୍ୟମ ନିର୍ମାଣ କରଇ
କର୍ମ ଅନୁରୂପେ ଫଳାଫଳକୁ ଦିଅଇ ।
ପ୍ରଥମରେ ଭକ୍ଷ ତାହାପରେ ଜୀବଗଣ
ବିଜେ ବସି ସୃଷ୍ଟି କର୍ତ୍ତା କରନ୍ତି ନିର୍ମାଣ ।

ଅଭ୍ୟାସରୁ ସ୍ୱଭାବଟି ଉତ୍ପନ୍ନ ହୁଅଇ
ସ୍ୱଭାବ ଯୋଗରେ କର୍ମ ଜାତ ହୋଇଥାଇ ।
ନିଜକର୍ମ ଅନୁସାରେ ସୁଖଦୁଃଖ ଭୋଗ
ଯାତନା ଜନ୍ମମରଣ ହୁଏ ପୁଣି ରୋଗ ।
ସମ୍ପଦ ବିପଦ ବିଦ୍ୟା ଅବିଦ୍ୟା ଶରୀର
ପାପପୁଣ୍ୟ ସ୍ୱର୍ଗବାସ ନରକ ସଞ୍ଚାର ।
ଭକ୍ତି ମୁକ୍ତି ଶ୍ରୀକୃଷ୍ଣଙ୍କଠାରେ ଦାସପଣ
କର୍ମ ଯୋଗରେ ଏ ସବୁ ଘଟିଥାଏ ଜାଣ ।
ସବୁର ଜନମ ଦାତା ଅଟନ୍ତି ଶ୍ରୀହରି
ବିଧାତାର ବିଧାତା ସେ ଶଙ୍ଖ ଚକ୍ରଧାରୀ ।
ବିରାଟ ପୁରୁଷ ପୁଣି ପ୍ରକୃତି ଦେବୀଙ୍କୁ
ସରଜନା କଲେ ସେହି ସୃଷ୍ଟି ହୋଇବାକୁ ।
ଯାହାଙ୍କ ଆଜ୍ଞାରେ ସୂର୍ଯ୍ୟ ଦହଇ କିରଣ
ଅନଳ ଦେବ ଦହନ କରୁଅଛନ୍ତି ପୁଣ ।
ସକଳ ଜନ୍ତୁଙ୍କ ପାଶେ ବୁଲୁଅଛି କାଳ
କାଳଜାଣି ମେଘମାନେ ବରଷନ୍ତି ଜଳ ।
ନିଜ ସ୍ଥାନରେ ଅଛନ୍ତି ସପତ ସାଗର
ଜୀବସ୍ୱରୂପେ ଭ୍ରମଣ କରଇ ସମୀର ।
ସେ ପ୍ରଭୁଙ୍କୁ ଭକ୍ତିଭାବରେ କରି ଉପାସନା
ସଫଳ କରିବେ ସେହି ସକଳ କାମନା ।
ଯାହାଙ୍କର ଏକମାତ୍ର ନିମେଷ ପାଶରେ
ଅଷ୍ଟୋତ୍ତର ଶତବର୍ଷ ଧାତା ଭୋଗକରେ ।
ସେହିପ୍ରଭୁ ଥିବାଠାରେ ଇନ୍ଦ୍ରଙ୍କର ପୂଜା
କରିବା ପାଇଁକି କପାଁ ବଳାଉଛ ମଜ୍ଜା ।
ଏମନ୍ତ କହି ଶ୍ରୀକୃଷ୍ଣ ବିରତ ହୋଇଲେ
ତାହା ଶୁଣି ମୁନିମାନେ ପରଶଂସା କଲେ
ସୁତଠାରୁ ପରିଚୟ ପାଇବାରୁ ନନ୍ଦ
ଅନୁଭବ କଲେ ଚିତ୍ତେ ପରମ ଆନନ୍ଦ ।
ଏଥୁଅନ୍ତେ ଶ୍ରୀକୃଷ୍ଣଙ୍କ ବଚନ ପ୍ରକାରେ
ଇନ୍ଦ୍ର ପୂଜାବିଧି ବନ୍ଦକରି ସେହିଠାରେ ।
ମୁନି ଋଷିଙ୍କୁ ପ୍ରଥମେ ପୂଜା କରାଇଲେ
ସେ ଅନ୍ତେ ଅଗ୍ନି ବ୍ରାହ୍ମଣ ଗାଈକୁ ପୂଜିଲେ ।
ସମାପ୍ତ ହୁଅନ୍ତେ ଯଥାକ୍ରମେ ସେ ବିଧାନ
ବଜାଇଲେ ଶଙ୍ଖ ତାଳ ଆଦି ବାଦ୍ୟମାନ ।
ଦେବାଳୟ ମାନଙ୍କରେ ସୁନ୍ଦର ସ୍ତୋତ୍ର ପାଠ
କଲେ ଯେଉଁ ଦ୍ୱିଜଗଣ ଥିଲେ ସୁକର୍ମଠ ।

କେତେକ ବ୍ରାହ୍ମଣ ଚଣ୍ଡୀ ପାରାୟଣ କଲେ
କେତେମାନେ ବେଦମନ୍ତ୍ର ଗାୟନେ ଲାଗିଲେ
ମାୟାରେ ଶ୍ରୀକୃଷ୍ଣ ଯାଇ ଗୋବର୍ଦ୍ଧନ ଠାକୁ
ଦିବ୍ୟମୂର୍ତ୍ତି ଧରି କହିଲେ ସେ ବଚନକୁ ।
ବୋଇଲେ ଭୋଜନ ପାଇଁ ଇଚ୍ଛା ଅଛି ମୋର
ଦେଲେ ମୁହିଁ ଦେଇଯିବି ଇପ୍ସିତ ଯେ ବର
ଏମନ୍ତ କହି ନନ୍ଦଙ୍କ ପାଶେ ମାୟାବଳେ
ଉପସ୍ଥିତ ହୋଇ ତାଙ୍କୁ ସମସ୍ତ କହିଲେ ।
ବୋଇଲେ ହେ ତାତ ଦେଖ ଏ ଶୈଳରାଜନ
ବରଦେଇ ଯିବେ ଯେବେ ପାଇବେ ଭୋଜନ
ନାନାବିଧ ଦ୍ରବ୍ୟ ଆଣି ସମର୍ପଣ କର
ତୁମ୍ଭ ଇଚ୍ଛା ଅନୁସାରେ ମାଗି ନେଇ ବର ।
ତାହା ଶୁଣି ନନ୍ଦ ଅତି ଆନନ୍ଦ ହୋଇଲେ
ବିବିଧ ପଦାର୍ଥ ସେହି ପର୍ବତେ ଫିଙ୍ଗିଲେ ।
ସେ ଅନ୍ତେ ଶ୍ରୀହରିଙ୍କର ଦାସତ୍ୱକୁ ମୋତେ
ଦିଅ ବୋଲିଣ ପ୍ରାର୍ଥନା କଲେ ତୋଷଚିତ୍ତେ
ଦ୍ରବ୍ୟ ଭୁଞ୍ଜି ବରଦେଇ ସେ ପର୍ବତ ବର
ଅନ୍ତର୍ଦ୍ଧାନ ହେଲେ ତହୁଁ କ୍ଷଣକ ମଧ୍ୟରେ ।
ସନ୍ତୋଷରେ ନନ୍ଦରାଜା ବ୍ରାହ୍ମଣମାନଙ୍କୁ
ଦେଲେ ନାନାବିଧ ଦ୍ରବ୍ୟମାନ ଭୁଞ୍ଜିବାକୁ ।
ଆଉରି ବହୁତ ଧନ ରତ୍ନ ଦାନ ଦେଲେ
ହରଷରେ ଦ୍ୱିଜଗଣ ଯେ ଯା ପୁରେ ଗଲେ
ସେ ଅନ୍ତେ ରାମକୃଷ୍ଣଙ୍କୁ ଘେନି ବ୍ରଜଈଶ
ନିଜ ଭବନରେ ଯାଇ ହେଲେ ପରବେଶ ।
ବନ୍ଦୀମାନଙ୍କୁ ସୁବର୍ଣ୍ଣ ରଜତ ପ୍ରବାଳ
ଦେଲେସେକାଳରେ ଆନନ୍ଦରେସେଗୋପାଳ
ଅପ୍ସରା ଗନ୍ଧର୍ବ ଆଦି ଯେତେ ଆସିଥିଲେ
ସମସ୍ତଙ୍କୁ ଅପ୍ରମିତ ଧନରତ୍ନ ଦେଲେ ।
ସେମାନେ ରାମକୃଷ୍ଣଙ୍କୁ ନମସ୍କାର କରି
ବିଦାୟ ଘେନି ଚଳିଲେ ଯେ ଯାହା ନଗରୀ ।
ଏଥୁଅନନ୍ତରେ ଶୁଣ ଜାଣି ସେ କଥାକୁ
କ୍ରୋଧରେ ଇନ୍ଦ୍ର ବରୁଣ କହିଣ ମେଘକୁ ।
ପବନ ମେଘ ସହିତେ ଚତୁରଙ୍ଗ ଦଳ
ସଜାଇ ପୁରୁ ବାହାର ହେଲେ ତତକାଳ
ନନ୍ଦଙ୍କ ମନ୍ଦିର ପାଶେ ବୃନ୍ଦାବନେ ଆସି
ରହିଲେ ଯୁଦ୍ଧ କରିବା ଇଚ୍ଛାରେ ଆହୋଷି ।

ବାୟୁ ବେଗ ଶବଦରେ ଗୋପପୁର ଜନେ
ଭୟରୁ ହେଲେ ବ୍ୟାକୁଳେ ଲୁପ୍ତ ବନ୍ଧ ମନେ
ଉଷୁନେ ନନ୍ଦରାଜନ ଅନ୍ତଃପୁରେ ଯାଇ
ଭଣ୍ଡାରେ ଯଶୋଦା ରୋହିଣୀଙ୍କୁ ପାଶେ ଯାଇ
ବୋଲଲେ ହେ ପ୍ରାଣପ୍ରିୟେ ଶୁଣ ମୋ ବଚନ
ମହାଭୟ ଉପସ୍ଥିତ ହେଲା ଆସି ଜାଣ ।
ରାମ କୃଷ୍ଣଙ୍କୁ ମାର୍ଗରେ ବୃନ୍ଦେ ଦେଇଯାଅ
ଆବର ସବୁ ବାଳକଙ୍କୁ ଡାକ କରି ନିଅ ।
ନଗରେ ବାହାରେ ଯାଇ ରଖ ତାଙ୍କ ପ୍ରାଣ
ଏମାନଙ୍କ ଅନିଷ୍ଟ ଅନେକ ଘଟିବନି ଜାଣ ।
ବଳବନ୍ତ ଗୋପାଳଙ୍କୁ ବେଗେ ମୂର୍ଚ୍ଛି ଥିବ
ସୁଦଶା ଦେଖି ଏ ପୁର ଗୁଡ଼ ଗଳିଯିବ ।
ଏମନ୍ତ କହି ମନରେ ଶ୍ରୀହରିଙ୍କୁ ଚିନ୍ତ
କରି ଯୋଡ଼ ଆରମ୍ଭିଲେ ଇନ୍ଦ୍ରଙ୍କର ସ୍ତୁତି ।
ବୋଇଲେ ହେ ସୁରେଶ୍ୱର ଇନ୍ଦ୍ର ଶଚୀଶ
ସହସ୍ରାକ୍ଷ ସୁନାସୀର ପାକଜିତ ଦିବେଶ ।
ଅହଲ୍ୟାଜା ଗୌତମ ବ୍ରତ ନାଶନ କାରଣ
ମରୁତ୍ୱାନ ବଜ୍ରହସ୍ତ ଦୈତ୍ୟ ନିସୂଦନ ।
କାମସଖା ବୃତ୍ରଘାତି ଦଧୀଚି ଇଷ୍ଟକ
ବାସବ ବାମନ ଭ୍ରାତା ସ୍ୱର୍ଲୋକ ନାୟକ ।
ପୁରୁହୂତ ପୁରନ୍ଦର ବସ୍ତୁ ହରପ୍ରିତ
ଶତମନ୍ୟୁ ଲେଖର୍ଷଭ ଶଙ୍କ ବଳାରାତି ।
ଜମ୍ଭଭେଦୀ ଆଖଣ୍ଡଳ ହରି ସଂକ୍ରନ୍ଦନ
ତୁରାଷାଡ଼ ମେଘବାହ ନମୁଚୀସୂଦନ ।
ବୃଦ୍ଧଶ୍ରବା ବୃଷଦୈତ୍ୟ ବିନାଶନ କାରୀ
ନମସ୍ତେ ନମସ୍ତେ ଇନ୍ଦ୍ର ଦୁଃଖୀ ଦୁଃଖହାରୀ ।
ଏହିରୂପେ ସ୍ତୁତିକରି ନନ୍ଦ ବାସବଙ୍କ
ରହିଲେ ଭୟରେ ମଗ୍ନ କରିଣ ମନକୁ ।
ଏ ମହା ସ୍ତୋତ୍ର ପଠନ କରଇ ଯେ ନିତି
ନ ହୁଏ ତାହାର ଇତି ଭୟଠାରୁ ଭୀତି ।
ଆବର ଯେ ପୁଣ୍ୟବନ୍ତ ସୁବ୍ରତ ହୁଅଇ
ଦେହ ଅନ୍ତେ ଇନ୍ଦ୍ରପୁରେ ବସେ ସୁଖେ ଯାଇ
ଏହିରୂପେ ନନ୍ଦ ଯତ୍ନ ବାସବଙ୍କ ସ୍ତୁତି
କଲେ ତାହା ଶୁଣି କୃଷ୍ଣ କୋପବନ୍ତ ଅତି ।
ବୋଇଲେ ହେ ତାତ କିମ୍ପା ଭୟ କର ମନେ
ସ୍ତୁତି କରୁଅଛ ଆନ ଲୋକର ସମାନେ ।
ମୂର୍ଚ୍ଛି ଥିବାଠାରେ ଇନ୍ଦ୍ର କି କରି ପାରିବ
ମୁହୂର୍ତ୍ତେ ମଧ୍ୟରେ ପରାଭବ ପାଇଯିବ ।
ବାଳ ବୃଦ୍ଧ ବନିତାଙ୍କୁ ଘେନି କରି ତୁମ୍ଭେ
ଗୋବର୍ଦ୍ଧନ ଗିରିକୋଡ଼େ ରହିଥାଅ ଭ୍ରମେ ।
ଆବର ବସ୍ତୁ ସହିତ ଗୋଗୋଷ୍ଠକୁ ନିଅ
ଯତ୍ନ କରି ସେହିଠାରେ ସ୍ଥାପନ କରାଅ ।
ପୁତ୍ରଠାରୁ ଏହିରୂପେ ଶୁଣି ବ୍ରଜପତି
ଗୋବର୍ଦ୍ଧନ ଗିରି ଗର୍ଭେ ପଶିଲେ ଝଟତି ।
ଶ୍ରୀକୃଷ୍ଣ ସେ ପର୍ବତକୁ ବାମ ହସ୍ତେ ତୋଳି
ଧାରଣ କଲେ ସାମାନ୍ୟ ବାଂଶଦଣ୍ଡ ଭଳି ।
ଏଥୁଅନନ୍ତରେ ବୃନ୍ଦାବନରେ ସେକାଳେ
ଘୋଟିଲା ଅନ୍ଧାର ଘୋର ଅନ୍ତରୀକ୍ଷ ତଳେ ।
ପ୍ରଚଣ୍ଡ ବେଗରେ ବହି ଊନଶତ ବାତ
ଧୂଳି ଉଡ଼ାଇ ଗଗନ କଲେ ଆଚ୍ଛାଦିତ ।
ଘଡ଼ି ଘଡ଼ି ଶବଦରେ କମ୍ପାଇ ମେଦିନୀ
ବରଷିଲେ ମେଘମାନ ଦିବସ ରଜନୀ ।
ବଜ୍ର ସହିତରେ ଶିଳା ପଡ଼ି ଅବିରତ
ସମସ୍ତଙ୍କ ମନେ ଭୟ କରାଇଲା ଜାତ ।
ଶ୍ରୀକୃଷ୍ଣ ତ ପର୍ବତକୁ ଛତ୍ର ଆକାରରେ
ଟେକି ରଖିଥିଲେ ବ୍ରଜ ନଗର ଉପରେ ।
ସେ ସକାଶୁ ଯେତେ ଉତପାତ ତହିଁ ହେଲା
କାହାର ଉପରେ କିଛି ବାଧା ନ ପଡ଼ିଲା ।
ପର୍ବତ ପରଶ ମାତ୍ରେ ସକଳ ଆଘାତ
ବିଫଳ ହେଲା ସେକାଳେ ଆହେ ତପୋବନ୍ତ
ତାହା ଦେଖି ସୁନାଶୀର କ୍ରୋଧରେ ଜଳିଲେ
ଦଧୀଚି ଅସ୍ଥି ନିର୍ମିତ ବଜ୍ରକୁ ନେଇଲେ ।
ପ୍ରହାରିବା ପାଇଁ ତାହା ହୁଅନ୍ତେ ଉଦ୍ୟତ
ହସିଲେ ତା ଦେଖି ପ୍ରଭୁ ରାଧାଦେବୀକାନ୍ତ ।
ସ୍ତମ୍ଭନ ମନ୍ତ୍ର ପ୍ରୟୋଗ କରି ନରହରି
ରଖାଇଲେ ସମସ୍ତଙ୍କୁ ଚିତ୍ରଲେଖା ପରି ।
ଇନ୍ଦ୍ର ସହିତରେ ମହା ମେଘଗଣ ତହିଁ
ରହିଲେ ପାଷାଣ ମୂର୍ତ୍ତି ସାଦୃଶ୍ୟକୁ ପାଇ ।
ଇନ୍ଦ୍ରଙ୍କର ସବୁ ଯତ୍ନ ବିଫଳ ହୋଇଲା
ଚଳିବା ପାଇଁକି ଆଉ ବଳ ନ ପାଇଲା ।
ଯେଣିକି ଚାହିଁଲେ ତେଣେ ଶ୍ରୀକୃଷ୍ଣଙ୍କ ରୂପ
ଦେଖିଲା ସକଳ ବୁଦ୍ଧି ଜ୍ଞାନ କରି ଲୋପ ।

ସହସ୍ର ଦଳ କମଳ ମଧ୍ୟେ ଦିବ୍ୟ ଜ୍ୟୋତି
ପ୍ରକାଶିତ ହେଲା ତାଙ୍କ ଆଗରେ ଝଟତି ।
ସେ ମଧ୍ୟରେ ନୀଳଘନ ଶ୍ୟାମଳ ବିଗ୍ରହ
ପୀତବାସ ନାନା ରତ୍ନ ଅଳଙ୍କାର ସହ ।
ଶ୍ରୀକୃଷ୍ଣଙ୍କ ନିଜରୂପ ପ୍ରତ୍ୟକ୍ଷ ସେ କରି
ମୋହିତ ହୋଇଲେ ଧୈର୍ଯ୍ୟ ନ ପାରିଣ ଧରି
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲେ
କର ଯୋଡ଼ି ବିନୟରେ ସ୍ତୁତି ଆରମ୍ଭିଲେ ।
ବୋଇଲେ ନମସ୍ତେ ଦେବ କରୁଣା ସାଗର
ଅକ୍ଷର ପରମବ୍ରହ୍ମ ନିତ୍ୟ ନିରାକାର ।
ଜ୍ୟୋତିରୂପ ସ୍ୱେଚ୍ଛାମୟ ଭକତ ବତ୍ସଳ
ଅଶେଷ ଭୁବନ କର୍ତ୍ତା ପ୍ରଭୁ ଆଦିମୂଳ ।
ତ୍ରେତା ଯୁଗରେ କୁଙ୍କୁମ ବରନ ପ୍ରକାଶ ।
ଦ୍ୱାପରେ ପୀତ ବରନ ଦେବ ପୀତବାସ ।
କଳିଯୁଗେ କୃଷ୍ଣବର୍ଣ୍ଣ ବଳିତ ମୂରତି
ନବଘନଧର ଶ୍ୟାମ ସୁନ୍ଦର ଶ୍ରୀପତି
ନନ୍ଦ ନନ୍ଦନ ଯଶୋଦା ଆନନ୍ଦଦାୟକ
ଗୋପୀଗଣ ଈଶ ରାଧା ଜୀବନ ନାୟକ ।
ମୁରଲୀ ହସ୍ତ ସୁବର୍ଣ୍ଣ ରତ୍ନ ବିଭୂଷିତ
କୋଟି କନ୍ଦର୍ପ ଲାବଣ୍ୟ ବ୍ରହ୍ମେଶ ବନ୍ଦିତ ।
କେଉଁଠାରେ ରାଧାଙ୍କର ହସ୍ତ ହସ୍ତେ ଧରି
କ୍ରୀଡ଼ା କରୁଅଛ ଦେବ ଈଶ ଦଇତ୍ୟାରି ।
କେଉଁଠାରେ ପ୍ରିୟଙ୍କର ନୀଳକେଶ ଜାଳ
ବିଭୂଷିତ କରୁଅଛ ଗୁଞ୍ଜି ପୁଷ୍ପମାଳ ।
କେତେବେଳେ କୃପାପୂର୍ଣ୍ଣ ଦୃଷ୍ଟିରେ ତାହାଙ୍କୁ
ଅନାଇ କରୁଛ ନାନା ଆଳାପମାନଙ୍କୁ ।
ଏମନ୍ତ ଯେ ତୁମ୍ଭେ ତୁମ୍ଭ ପାଦ ପଙ୍କଜରେ
ପ୍ରଣାମ କରୁଛି ମୁହିଁ ସନ୍ତୁଷ୍ଟ ଚିତ୍ତରେ ।
କେଉଁଠାରେ ବିପ୍ରପତ୍ନୀ ଦତ୍ତ ଅନ୍ନ ଭୁଞ୍ଜି
କ୍ରୀଡ଼ା କରୁଅଛ କଉତୁକ ରସେ ମଜ୍ଜି ।
କେଉଁଠାରେ ତାଳଫଳ କରୁଛ ଭକ୍ଷଣ
କାର୍ଯ୍ୟ କରୁଅଛ ଗୋପୀ ବସନ ହରଣ ।
ସଙ୍ଗୀତ ଗାଉଛ କେଉଁଠାରେ ସୁଖେ ବସି
ଗୋଚାରଣ କରୁଅଛ କେଉଁଠାକୁ ଆସି
ଏମନ୍ତ ରୂପରେ ମୁହିଁ ଦେଖିଣ ତୁମ୍ଭଙ୍କୁ
ଭକ୍ତିରେ କରୁଛି ପୁନଃ ପୁନଃ ପ୍ରଣାମକୁ ।

ପ୍ରସନ୍ନ ହୋଇଣ ସେହିଠାରେ ଦୟାକର
ନମସ୍ତେ ଶ୍ରୀ ରାଧାକାନ୍ତ ନମ ତ୍ରୈଲୋକ୍ୟ ଈଶ୍ୱର
ଇନ୍ଦ୍ରକୃତ ଶ୍ରୀକୃଷ୍ଣଙ୍କ ସ୍ତୋତ୍ର ଯେ ପଢ଼ଇ
ତାହାର ପାତକ ସବୁ ବିନଷ୍ଟ ହୁଅଇ ।
ଅନ୍ତଃକାଳେ ଯମଦୂତେ ନ ଆସନ୍ତି ପାଶ
ଗୋଲୋକ ଭୁବନେ ସେହୁ କରଇ ନିବାସ ।
ଆହେ ନାରଦ ମହର୍ଷି ଏମନ୍ତ ପ୍ରକାରେ
ସ୍ତୁତି କରନ୍ତେ ବାସବ ଭକ୍ତି ସହକାରେ ।
ସନ୍ତୋଷେ ଶ୍ରୀକୃଷ୍ଣ ତାଙ୍କୁ ବରଦାନ ଦେଲେ
ପର୍ବତକୁ ନେଇ ଯଥା ସ୍ଥାନରେ ରଖିଲେ
ଶ୍ରୀହରିଙ୍କ ପାଦତଳେ ନମି ପୁରନ୍ଦର
ସ୍ୱଗଣ ସହିତ ଗଲେ ଆପଣା ମନ୍ଦିର ।
ଗହ୍ୱର ଭିତରେ ଯେଉଁମାନେ ପଶିଥିଲେ
ବାହାର ହୋଇଣ ନିଜ ନିଜ ଘରେ ଗଲେ ।
ସେ ସମସ୍ତେ ନନ୍ଦରାଜା ଆନନ୍ଦିତ ହୋଇ
ଶ୍ରୀକୃଷ୍ଣଙ୍କ ବ୍ରହ୍ମମୟ ସ୍ୱରୂପକୁ ଧ୍ୟାୟି ।
ଭକ୍ତିରେ ବିହ୍ୱଳ ହୋଇ ଆରମ୍ଭିଲେ ସ୍ତୁତି
ବୋଇଲେ ନମସ୍ତେ ରାଧା ପ୍ରାଣପ୍ରିୟ ପତି ।
ନମସ୍ତେ ବ୍ରହ୍ମଣ୍ୟ ଦେବ ଗୋବ୍ରାହ୍ମଣ ହିତ
କୋଟି ବ୍ରହ୍ମାଣ୍ଡ କାରଣ ଅନାଦି ବିଧାତ ।
ସାକରୂପ ସର୍ବସାକ୍ଷୀ ନିର୍ଲିପ୍ତ ନିର୍ଗୁଣ
ମତ୍ସ୍ୟ ଆଦି ରୂପଧାରୀ ନିତ୍ୟ ସନାତନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ବନ୍ଦିତ ଶ୍ରୀପଦ
ନମସ୍ତେ ଅଶେଷ ଭକ୍ତି ମୁକ୍ତି ଫଳପ୍ରଦ ।
ଶୁକ୍ଳ ରକ୍ତ ପୀତ ଶ୍ୟାମରୂପ ଗୁଣଶାଳୀ
ଯୋଗୀଜନ ଯୋଗରୂପୀ ପ୍ରଭୁ ବନମାଳୀ ।
ସର୍ବେଶ୍ୱର ସିଦ୍ଧ ପରାଶର ନାରାୟଣ
ନମସ୍ତେ ନମସ୍ତେ ସର୍ବ ଲୋକର କାରଣ ।
ବ୍ରହ୍ମା ଶିବ ଶେଷଦେବ ଲକ୍ଷ୍ମୀ ସରସ୍ୱତୀ
ଯାହାଙ୍କର ଗୁଣ ଲେଶ ବର୍ଣ୍ଣି ନ ପାରନ୍ତି ।
ଆବର ଧର୍ମ ଦେବତା ଲମ୍ବୋଦର ସ୍କନ୍ଦ
ନ ଜାଣି ପାରନ୍ତି ଯାର କୀରତି ଛନ୍ଦ ।
ସନକ ସନନ୍ଦ ନରନାରାୟଣ ଋଷି
ନ ଶିକ୍ଷି ପାରନ୍ତି ଯାହାଙ୍କର ନାମ ଦେଖି ।
ଏସ ଦେବଙ୍କୁ ସ୍ତୁତି କରିବାକୁ ଅବା ମୁହିଁ
ସମର୍ଥ ପାଇବାପାଇଁ କେ ହେବ କାହିଁ ।

ଆହେ ପ୍ରଭୁ ମୋର ଦୋଷ କ୍ଷମା କରିବାରେ
ଅଶେଷ କୃପା ପ୍ରକାଶ କର ମୋହଠାରେ ।
ପୂର୍ବକାଳେ ପୁଣ୍ୟାର୍ଥେ ତପ କରିଥିଲି
ସେ ସକାଶୁ ପୁତ୍ରରୂପେ କୃଷ୍ଣଙ୍କୁ ପାଇଲି ।
ଆହେ ଦେବ କୃଷ୍ଣ ପାଦ ପଙ୍କଜରେ ଭକ୍ତି
ପ୍ରଦାନ କର ହେତପ୍ତ ଚିତ୍ତରେ ଶ୍ରୀପତି ।
ବ୍ରହ୍ମତ୍ୱ ଇନ୍ଦ୍ରତ୍ୱ ଆଦି ଯେତେ ଉଚ୍ଚସ୍ଥାନ
ନୃହନ୍ତି କୃଷ୍ଣ ଭକ୍ତିର କଳାକୁ ସମାନ ।
କୃଷ୍ଣ ଭକତ ଅଟଇ କୃଷ୍ଣର ସଦୃଶ
ତାହା ବୁଝି ନ ପାରଇ ସହଜେ ମନୁଷ୍ୟ ।
ଭକ୍ତ ସଙ୍ଗତରେ ଭକ୍ତି ଅଙ୍କୁର ଜନ୍ମଇ
ବିଶ୍ୱାସ ଜଳରେ ତାହା ବର୍ଦ୍ଧିତ ହୁଅଇ ।
ଅଭକ୍ତର ଅବିଶ୍ୱାସ କଥା ମାନେ ନାଶ
ହୁଅଇ ସନ୍ଦେହ ଏଥି ନାହିଁ ଜାଣ ଲେଶ ।
ଯତ୍ନରେ ବଢ଼ିଲେ ମହାବୃକ୍ଷ ସେହି ହୁଏ
ହରି ଦାସ୍ୟରୂପ ଫଳ ଯଥାକାଳେ ଦିଏ ।
ସେ ଦାସ୍ୟ ପାଇଲେ ସର୍ବ ଭୟ ହୁଏ ଦୂର
ତହିଁରୁ ଅଧିକ ନାହିଁ ତ୍ରିଲୋକ ମଧ୍ୟର ।
ଏମନ୍ତ ବୋଲିଣ ନନ୍ଦ ହରିଙ୍କ ଆଗରେ
ଲଜ୍ଜିହେଲେ ଭକ୍ତିଭାବ କରି ମାନସରେ ।
ଶ୍ରୀକୃଷ୍ଣ ପୁତ୍ରଙ୍କୁ ତେଜ ପ୍ରଭୁପଣେ ତାଙ୍କୁ
ଦେଲେ ଯଥାଯୁକ୍ତ ମନୋବାଞ୍ଛିତ ବରକୁ ।
ନନ୍ଦ କୃତ ସ୍ତୋତ୍ର ପଢ଼ଇ ଯେ ଭକ୍ତିଭରେ
ଶ୍ରୀହରିଙ୍କ ପାଦେ ଦୃଢ଼ ଭକ୍ତି ଲଭଇ ରେ ।
ଧରା ସନ୍ନିଧରେ ଦ୍ରୋଣ ତପ କରୁଥିଲେ
ବ୍ରହ୍ମା ଏହି ସ୍ତୋତ୍ର ଗୋଟି ତାଙ୍କୁ ଶିଖାଇଲେ ।
ଆଉର ଶ୍ରୀହରିଙ୍କର କବଚ ମନ୍ତ୍ରକୁ
ଦେଲେ ମଧ୍ୟ ସେ କାଳରେ ପ୍ରକାଶି ସ୍ନେହକୁ ।
ସଭାଇର ମୁନିବର ଏକଦିନେ ଆସି
ଦେଖିଲେ ନନ୍ଦ ତପସ୍ୟା କରୁଛନ୍ତି ବସି ।
ପ୍ରସନ୍ନ ହୋଇ ତାହାଙ୍କୁ ସେ କବଚ ସ୍ତୋତ୍ର
ଦେଲେ ତାହା ସହିତରେ ପୂଜା ଧ୍ୟାନ ମନ୍ତ୍ର ।
ଯତନରେ ନନ୍ଦ ତାହା ଅଭ୍ୟାସ କରିଲେ
ଶ୍ରୀହରିଙ୍କ ସମକ୍ଷରେ ପାରାୟଣ କଲେ ।
ଏରୂପେ ଶ୍ରୀହରିଙ୍କର ସ୍ତୋତ୍ରଟି ଅଟଇ
କହିଲି କୃଷ୍ଣ ଆଗରେ ଆହେ ଋଷିସାଇଁ ।
ବୋଲଇ କ୍ଷେତ୍ରମୋହନ ଶ୍ରୀକୃଷ୍ଣଙ୍କ ପାଦେ
ମୋହର ମନ ସର୍ବଦା ରହୁ ଅପ୍ରମାଦେ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଇନ୍ଦ୍ରଙ୍କର ଯଜ୍ଞଭଗ୍ନ ଓ ନନ୍ଦରାଜାଙ୍କ କୃତ ଇନ୍ଦ୍ର ସ୍ତୋତ୍ରର ବିବରଣୀ କଥନେ ନାମ ଏକବିଂଶୋଽଧ୍ୟାୟଃ ।

—*—

## ଦ୍ୱାବିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କଦ୍ୱାରା ଧେନକା ରାକ୍ଷସର ବଧ ବୃତ୍ତାନ୍ତ ବର୍ଣ୍ଣନ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ଶୁଣ ଶ୍ରୀକୃଷ୍ଣ ଚରିତ ସୁସ୍ଥିର ଚିତ୍ତରେ ।
ଦିନେ ବଳରାମ ସଙ୍ଗେ ରାଧିକାରମଣ
ତାଳବନ ଭିତରକୁ କଲେକ ପ୍ରୟାଣ ।
ଗୋପାଳ ବାଳକମାନେ ସଙ୍ଗେ ସଙ୍ଗେ ଥିଲେ
ସମସ୍ତେ କଉତୁକରେ ଖେଳ ଖେଳ ଗଲେ ।
ସେ ତାଳବନରେ ମହା ବଳିଷ୍ଠ ଅସୁର
ଜଗି ରହିଥାଏ ଜାଣ ଆହେ ମୁନିବର ।
ବ୍ରହ୍ମାଙ୍କ ଶାପରେ ଗଧରୂପ ଥିଲା ପାଇ
କୋଟି ସିଂହତୁଲ୍ୟ ବଳ ତାହାର ଅଟଇ ।
ପର୍ବତ ଗହ୍ୱର ପରି ଦିଶୁଥାଏ ତୁଣ୍ଡ
କତିଶଟି ଦନ୍ତ ତହିଁ ହୋଇଥାନ୍ତି ରୁଣ୍ଡ ।
ଶାବଳ ପରାୟେ ଦୀର୍ଘ ସ୍ଥୂଳତର ସେହି
ଦେଖିବା ତକ୍ଷଣେ ମନେ ଭୟ ବ୍ୟାପ୍ତ ହୋଇ ।
ସେ ତାଳ ବନେ ପ୍ରବେଶ ହୁଅନ୍ତେ ବାଳକେ
ନାନାଖେଳ କଉତୁକ ଆରମ୍ଭିଲେ ଥୋକେ

ଶ୍ରୀକୃଷ୍ଣଙ୍କୁ ଅନାଇଣ ବୋଇଲେ ସମସ୍ତେ
ଭାଙ୍ଗିବା ଏ ବନେ ତାଳଗଛ ଅଛି କେତେ ।
ତଳେ ପକାଇଣ ସବୁ ଫଳ ନେବା ତୋଳି
ଖେଳିବା ଅନ୍ୟ ସ୍ଥାନରେ ଯାଇ ସର୍ବେ ମିଳି
ମାତ୍ର ଏହିଠାରେ ଏକ ବଳବନ୍ତ ଦୈତ୍ୟ
ଅଛି ଧେନୁକା ବୋଲିଣ ତାର ନାମ ଖ୍ୟାତ ।
ଖରରୂପ ବହିଅଛି ସେ ମହା ଅସୁର
କଂସର ସଚିବ ସେହି ଅଟେ ଦୁର୍ନିବାର ।
ଯତନରେ ଜଗିଅଛି ଏ ତାଳ ବନକୁ
ସେ ସକାଶୁ ଭୟ ଲାଗେ ଆମ୍ଭର ମନକୁ ।
ବିଚାର କରିଣ ତୁମ୍ଭେ କହ ବନମାଳୀ
ଭାଙ୍ଗିବା କିଅବା ଫେରିଯିବା ଘରେ ଚଳି ।
ଏରୂପେ ବାଳକଙ୍କର ବଚନକୁ ଶୁଣି
କହିଲେ ମଧୁର ବାକ୍ୟେ ତାଙ୍କୁ ବଂଶୀପାଣି ।
ବୋଇଲେ ଆହେ ବାଳକଗଣ କିପାଁ ତୁମ୍ଭେ
ଭୟ କରୁଅଛ ପାଶେ ଥାଉ ଥାଉ ଆମ୍ଭେ ।
ବୃକ୍ଷ ହଲାଇ ସକଳ ତାଳଫଳ ନିଅ
ରାକ୍ଷସଠାରୁ କଦାପି ନ ପାଇବ ଭୟ ।
ଶ୍ରୀକୃଷ୍ଣ ଆଜ୍ଞାରେ ଗୋପ ଶିଶୁଗଣ ମିଳି
ବହି ନେଲେ ତାଳଫଳମାନ ବୃକ୍ଷୁ ତୋଳି ।
କେହିଁମାନେ କେତେ ଗଛ ଭାଙ୍ଗି ପକାଇଲେ
କେହି କେହି ଉଚେ କୋଳାହଳ ଜାତ କଲେ
ଏରୂପେ ସମସ୍ତେ ଫଳ ତୋଳି ନେବା ବେଳେ
ଧେନୁକା ନିଶାଚରକୁ ଦେଖିଲେ ସେ ଡୋଳେ
ମହାବଳ ମହାକାୟ ଗର୍ଦ୍ଦଭ ରୂପରେ
ପ୍ରବେଶ ହେଲା ସେ ଧ୍ୱନି କରି ଉଚସ୍ୱରେ ।
ତାଙ୍କୁ ଦେଖି ଗୋପଶିଶୁଗଣ ଭୟ କରି
କାନ୍ଦିଲେ ବିକଳ ମନେ ଶ୍ରୀକୃଷ୍ଣ ସୁମରି
ବୋଇଲେ ଆହେ ଶ୍ରୀକୃଷ୍ଣ ଆହେ ହଳଧର
ରାକ୍ଷସ ମୁଖରୁ ଆମ୍ଭମାନଙ୍କୁ ଉଦ୍ଧାର ।
ହେ କୃଷ୍ଣ ମାଧବ ଶ୍ୟାମସୁନ୍ଦର ମୁରାରି
ଗୋବିନ୍ଦ ଦୀନବାନ୍ଧବ ପ୍ରଭୁ ଦଇତ୍ୟାରି ।
ଗୋପୀଶ ଅନନ୍ତ ନାରାୟଣ ଦାମୋଦର
ଦୁଃଖୀ ଦୁଃଖ ନିବାରକ କରୁଣା ସାଗର ।
ତୁମ୍ଭ ବିନା ସୁଖ ଦୁଖ ଜୟ ପରାଜୟ
ନୁହଇ ଆମ୍ଭର କେହିଁ କାଳରେ ଉଦୟ ।

ଏ ଦୁଷ୍ଟ ନିଶାଚରକୁ ପ୍ରାଣରେ ସଂହାରି
ଆମ୍ଭର ଜୀବନ ରକ୍ଷାକର ନରହରି ।
ଏରୂପେ ବାଳକଙ୍କର ଆର୍ତ୍ତବାଣୀ ଶୁଣି
ଧାଇଁ ଆସିଲେ ଶ୍ରୀକୃଷ୍ଣ ବଳରାମ ବେନି ।
ଭୟ ନ କର ମନରେ ଆହେ ଶିଶୁଗଣେ
ଦେଖିବୁ ଆମ୍ଭେ ଭୁଜର ଶକ୍ତି ନିବାରଣେ ।
ଶ୍ରୀକୃଷ୍ଣ ରାମଙ୍କଠାରୁ ଏ ବଚନ ଶୁଣି
ଆନନ୍ଦରେ ନୃତ୍ୟଗୀତ କରି ଶିଶୁ ଶ୍ରେଣୀ
ରାକ୍ଷସଠାରୁ ଯେ ଭୟ ଥିଲା ତା ଛାଡ଼ିଲେ
କୋଳାହଳ କରି ଯିବାପାଇଁ ବାହାରିଲେ ।
ଏହିକାଳେ କୃଷ୍ଣ ବଳରାମଙ୍କୁ ଅନାଇଁ
ବୋଇଲେ ଦେଖ ଅସୁର ଆସୁଅଛି ଧାଇଁ ।
ବଳୀର ତୁମର ଏହି ନାମ ସାହସିକ
ଦାନବଗଣ ମଧ୍ୟରେ ଅଟଇ ନାୟକ ।
ଦୁର୍ବାସା ମୁନିଙ୍କ ଶାପେ ହୋଇଅଛି ଗଧ
ନିଶ୍ଚୟେ ମୋହର ହାତେ ହେବ ଆଜି ବଧ ।
ଏ ସକାଶୁ ବୋଲୁଅଛି ଏ ଶିଶୁ ଗଣକୁ
ଘେନି ଏଥୁ ଯାଅ ତୁମ୍ଭେ ସୁଦୂର ସ୍ଥାନକୁ ।
ବଳଦେବ ଶୁଣି ତାହା ସନମତ କଲେ
ଗୋପ ବାଳକଙ୍କୁ ଘେନି ଦୂର ସ୍ଥାନ ଗଲେ ।
ଶ୍ରୀକୃଷ୍ଣଙ୍କୁ ଏକା ଦେଖି କ୍ରୂର ନିଶାଚର
ଗିଳିପକାଇଲା ମୁଖ ବିସ୍ତାରି ତାହାର ।
ତା ଗର୍ଭେ ପଶି ଶ୍ରୀକୃଷ୍ଣ ଅନଳ ପରାୟେ
ଜଳିଲେ ସେ କାଳେ ବ୍ରହ୍ମ ତେଜେ ଅତିଶୟେ
ପୋଡ଼ିଗଲା ପରି ଦୈତ୍ୟ ଉଦର ହୋଇଲା
ତେଣୁ ତାହାର ମନରେ ଭୟ ଜାତ ହେଲା ।
ଛଟପଟ ହୋଇ ବାନ୍ତି କଲା ସେହିକ୍ଷଣି
ବାହାର ହୋଇଲେ ପ୍ରଭୁ ଗୋପଚୂଡ଼ାମଣି ।
ତାହାଙ୍କର ତେଜପୁଞ୍ଜ ଦେଖିବାରୁ ଦୈତ୍ୟ
ସୁମରଣା କରି ପୂର୍ବ ଜନ୍ମର ବୃତ୍ତାନ୍ତ ।
ଜାଣିଲା ଏ ନିଶ୍ଚୟ ଭାବେ ଅଟନ୍ତି ଶ୍ରୀହରି
ମୁକତ ହୋଇବି ଏହାଙ୍କର ହାତେ ମରି
ଏମନ୍ତ ବିଚାରି ସ୍ତୁତି କଲା ସେ ଅନେକ
ବୋଇଲେ ନମସ୍ତେ ଦେବ ବିବେକ ନାୟକ
ବାମନ ସ୍ୱରୂପ ତୁମ୍ଭ ଅଂଶ ଅବତାରେ
ପ୍ରବେଶ ହୋଇଲ ମୋର ପିତାଙ୍କ ଯାଗରେ

ତାହାଙ୍କର ରାଜ୍ୟୈଶ୍ୱ ସମ୍ପଦ ସକଳ
ଦାନ କରି ତାଙ୍କୁ ପଠାଇଲ ରସାତଳ ।
ସେହି ବଳିଙ୍କର ପୁତ୍ର ଅଟଇ ମୁଁ ଜାଣ
ଦୁର୍ବାସା ଶାପରେ ପାଇଅଛି ଗଧଜନ୍ମ ।
ଆପଣଙ୍କ ଶ୍ରୀହସ୍ତରେ ମରଣ ପାଇଲେ
ଏ ଘୋର ଶାପରୁ ମୁକ୍ତ ହୋଇବି ମୁଁ ଭଲେ
ଷୋଡ଼ଶ ଅର ଚକ୍ରରେ ମୋ ମସ୍ତକ ଛେଦ
କରିଲନ୍ତ ମୁଁ ଏହିରୂପେ ମୃତ୍ୟୁ ଭେଦ ।
ମତ୍ସ୍ୟ କଚ୍ଛପ ବରାହ ନୃସିଂହ ବାମନ
ପରଶୁରାମ ଶ୍ରୀରାମ ରୂପେ ତୁମ୍ଭେ ଜନ୍ମ ।
ହୋଇ ଏ ମର୍ତ୍ତ୍ୟ ଭୁବନେ ଭକ୍ତଙ୍କର ତାପ
ହରଣ କରିଅଛ ଦେଇ ଦୁଷ୍ଟଙ୍କୁ ସନ୍ତାପ ।
ଆଉରି ତୁମ୍ଭେ ଯେ ନର ନାରାୟଣ ରୂପେ
ଜାତ ହୋଇଅଛ ନିଜ ଇଚ୍ଛାମତେ ଆପେ ।
ଏବେ ଶ୍ରୀକୃଷ୍ଣ ରୂପରେ ଅବତାର ହୋଇ
ଆସିଅଛ ପବିତ୍ର କରିବାକୁ ମହୀ ।
ଯଶୋଦା ଦେବକୀ ନନ୍ଦ ବସୁଦେବଙ୍କର
ଆନନ୍ଦଦାୟକ ତୁମ୍ଭେ ଅଟ ଚକ୍ରଧର ।
ପୂତନାକୁ ମାତୃଗତି ଦେଲ କୃପାମୟ
ପ୍ରଳମ୍ବ ବକ କେଶୀଙ୍କୁ କରିଅଛ କ୍ଷୟ ।
ତୁମ୍ଭ ସକାଶୁ ମୁକତି ପାଇଲେ ସେମାନେ
ଏବେ ମୋତେ ମୁକ୍ତ କର ଦୟା କରି ମନେ
ଆଗେ ପ୍ରଭୁ ଋଷିଶାପେ ଗର୍ଦ୍ଦଭ ଯୋନିରେ
ଜନ୍ମହୋଇ କଷ୍ଟ ଭୋଗୁଅଛି ଅବନୀରେ ।
ଅଜ୍ଞ ହେଲେହେଁ ମୂର୍ଖ ତୁମ୍ଭ ଭକ୍ତସୁତ
ଅନୁଗ୍ରହ କର ମୋହଠାରେ ରାଧାକାନ୍ତ ।
ସ୍ୱଭାବରେ ମୂର୍ଖ ମୁହିଁ ଅଟଇ ଅଜ୍ଞାନ
ଜାଣିବି କି ଅବା ତୁମ୍ଭ ସ୍ତୋତ୍ର ଉପାଖ୍ୟାନ ।
ଯେତେବେଳେ ସ୍ତୁତି କରୁଛନ୍ତି ତୃଣଧାସ
ଗର୍ଦ୍ଦଭ ହୋଇ ମୁଁ ସ୍ତୁତି କରୁଛି ସେପରି ।
ଏଥିକୁ ଯେ ଉପହାସ ନ କର ଈଶ୍ୱର
ଯୋଗ୍ୟାଯୋଗ୍ୟ ତୁଲ୍ୟଭାବ ଉଚିତ ପ୍ରଭୁର ।
ଏମନ୍ତ ବୋଲି ରାକ୍ଷସ ନିବୃତ୍ତ ହୋଇଲା
ଶୁଣିଣ ଶ୍ରୀକୃଷ୍ଣଙ୍କର ପ୍ରୀତି ଜାତହେଲା ।
ଏହିରୂପେ ଦୈତ୍ୟ କୃତ ସ୍ତୋତ୍ରକୁ ଯେ ନିତ
ପଠନ କରିବ ତାକୁ ନ ଲାଗେ ବିପତ୍ତି ।

ଦୈତ୍ୟଠାରୁ ସ୍ତୁତିବାକ୍ୟ ଶୁଣନ୍ତେ ଶ୍ରୀହରି
ଭାବିଲେ ଏହାକୁ ମୁହିଁ ମାରିବି କିପରି ।
ଭକତକୁ ମାରିବାର ନୁହଇ ଉଚିତ
ନ ମାରିଲେ ପୁଣି ଏ ତ ନୋହିବ ମୁକତ ।
ଏମନ୍ତ ମୁହୂର୍ତ୍ତେ ଯାଏ ବିଚାରି ସେ ପୁଣି
ହରିଲେ ତାହାର ପୂର୍ବ ଜ୍ଞାନ ସେହିକ୍ଷଣି ।
ସେ ସକାଶୁ ନିଶାଚର ମାୟାରେ ମୋହିତ
ହୁଅନ୍ତେ କହିଲା କଟୁବାକ୍ୟ ଅପ୍ରମିତ ।
ବୋଇଲା ରେ ନରାଧମ ଦୁର୍ବୁଦ୍ଧି ପାମର
ପଠାଇବି ଏହିକ୍ଷଣି ତୋତେ ଯମପୁର ।
ମୋର ତାଳବନେ ଆସି ପଶିଅଛୁ ବଳେ
ଜୀବନ ଧରି କି ଆଉ ଯିବୁ ଏତେବେଳେ ।
ନ ଜାଣୁ କି ଜରାସନ୍ଧ କଂସ ଆଦିକରି
ରାକ୍ଷସ ଗଣରେ କେହି ନୁହନ୍ତି ମୋ ସରି ।
ବ୍ରହ୍ମା ଶିବ ଆଦିକରି ଦେବଗଣ ଯେତେ
ମୋ ନାମ ଶୁଣିଲେ ଭୟ କରନ୍ତି ସମସ୍ତେ ।
କାହା ବଳ ପାଇ ତୁମ୍ଭେ ଆସି ଏ ସ୍ଥାନକୁ
ଗର୍ଜି ତଳେ ପକାଇଲୁ ମୋ ତାଳ ଫଳକୁ ।
ମାରିବା ପାଇଁକି ମନ କରିଥିଲେ ହେଲେ
ତୋ ସୁନ୍ଦର ରୂପ ମୁହିଁ ଦେଖିକରି ଭୋଳେ
ସମ୍ଭାଳି ରହିଛି ତୋତେ ନ କରିଣ କିଛି
କିଏ ସେ ତୁ କହ କ୍ଷମା କରିବି ଦେଉଛି ।
ତାହା ଶୁଣିଣ ଶ୍ରୀକୃଷ୍ଣ ଉଚ୍ଚରେ ହସିଲେ
କେତେବଳ ଅଛି ତୋର ଦେଖାଅ ବୋଇଲେ
ଶ୍ରୀକୃଷ୍ଣଙ୍କଠାରୁ ଏହା ଶୁଣି ନିଶାଚର
ଧାଇଁଲା ବିସ୍ତାରି କରି ମୁଖକୁ ତାହାର ।
ଚନ୍ଦ୍ରଙ୍କୁ ରାହୁ ପରାଏ ବେଗେ ଗ୍ରାସକଲା
ବେନି ପାଟିକି ବୁଲାଇ ଆଣ୍ଟେ ଘେରାଇଲା ।
ଶ୍ରୀକୃଷ୍ଣଙ୍କ ପରଶରେ ତା ବେନି ପାଟିରୁ
ଦାନ୍ତଯାକ ଝଡ଼ି ସବୁ ପଡ଼ିଲେ ମୂଳରୁ ।
ଭଗ୍ନଦନ୍ତ ହୁଅନ୍ତେ ସେ ପୁଣି କୋପକଲା
ଗୋପ ଶିଶୁଗଣ ଥିବା ସ୍ଥାନେ ଧାଇଁଗଲା ।
ମୁଣ୍ଡରେ ବଳରାମକୁ ପକାଇଲା ଠେଲି
ନ ସହିଣ ତାହା ବଳରାମ ମହାବଳୀ ।
ବଜ୍ରପରି ବିଧାଟାଏ ମାରନ୍ତେ ତାହାକୁ
ଝଡ଼ିଲା ମସ୍ତିଷ୍କ ଦୈତ୍ୟ ହରାଇ ଜ୍ଞାନକୁ ।

ଚେତାପାଇ ପୁଣି ଖଣ୍ଡେଦୂର ଧାଇଁଗଲା
ମୁଷ୍ଟି ବାଧାରେ ସେ ମଳମୂତ୍ର ତ୍ୟାଗକଲା ।
ଅନେକ ବ୍ୟଥିତ ହୋଇ ପୁଣି ହୋଇ୍ବେ ସୁସ୍ଥ
ଶ୍ରୀକୃଷ୍ଣ ପାଶରେ ଯାଇ ହେଲା ଉପସ୍ଥିତ ।
ମସ୍ତକରେ ଧରି ତାଙ୍କୁ ବୁଲାଇ ବେଗରେ
ଫିଙ୍ଗି ଦେଲା ତାଳବୃକ୍ଷ ବନକୁ ସ୍ୱଗରେ ।
ଶ୍ରୀକୃଷ୍ଣ ତହିଁରେ ବ୍ୟଥା ନ ପାଇଣ ତେଜେ
ଶାଳବୃକ୍ଷ ପରି ତାଳ ବୃକ୍ଷେକ ଧରିଲେ ।
ବୁଲାଇ ରାକ୍ଷସ ଦେହ ପିଟିଲେ ସେ ଅଣ୍ଟେ
ଖଣ୍ଡ ଖଣ୍ଡ ହେଲା ତାହା ବାଜ ତାର ପୃଷ୍ଟେ ।
ଯେଉଁରୂପେ କେଶଧାରେ ମନୁଷ୍ୟର ଅଙ୍ଗ
କଣ୍ଟକ ମାଡରେ ହେଲେ ମୃଗାଳ ତରଙ୍ଗ ।
ସେରୂପେ ଦୈତ୍ୟକୁ ଦେଖି କ୍ରୋଧେ ନରହରି
କବ୍ଜିଲେ ଉପାଡ଼ିଣ ଗୋବର୍ଦ୍ଧନ ଗିରି ।
ସେ ଘାତରେ ନିଶାଚର ଚେତନା ହାରିଲା
ଭୂମିରେ ପଡ଼ି ବହୁତ ରକ୍ତବାନ୍ତି କଲା ।
ପୁଣି କ୍ଷଣକ ଉତରେ ପାଇଣ ଚେତନା
ଦୂରେ ଫିଙ୍ଗିଲା ପର୍ବତ ହୋଇ କୋପମନା ।
ପୁଣି ଆସି ଶ୍ରୀକୃଷ୍ଣଙ୍କୁ ମସ୍ତକରେ ଧରି
ଉଡ଼ିଗଲା ଆକାଶକୁ ପକ୍ଷୀରାଜ ପରି ।
ଲକ୍ଷେ ଯୋଜନରେ ଯାଇ ପ୍ରବେଶ ହୋଇଲା
ସେସ୍ଥଳରେ ଦୁହିଙ୍କର ଘୋର ରଣ ହେଲା ।
ମୁହୂର୍ତ୍ତେ ଅନ୍ତରେ ପୁଣି ଭୂତଳକୁ ଆସି
ପରସ୍ପରେ ହେଲେ ଦୁହେଁ ବଳ କଷାକଷି ।
ରାକ୍ଷସର ବଳ ଦେଖି ତୋଷେ ନରହରି
ପ୍ରଶଂସା ବଚନ ତାକୁ କହିଲେ ଉଚ୍ଚାରି ।
ବୋଇଲେ ରେ ନିଶାଚର ଧନ୍ୟ ଅଟୁ ତୁହି
ତୋ ବଳ ଦେଖି ପ୍ରଶଂସା କରୁଅଛୁ ମୁହିଁ ।
ମୋହର ଦର୍ଶନ ଯେ ତେ ପୁଣ୍ୟଲୋକ ପାଅ
ଭକ୍ତଙ୍କ ମଧ୍ୟରେ ତୁହି ଅଧିକ ହୋଇଅ ।
ଏମନ୍ତ ବୋଲି ଚକ୍ରକୁ ସୁମରଣା କଲେ
ମିଳିଲା ସେ ମୁହୂର୍ତ୍ତକେ ଆସି କରତଳେ ।
ଯୁଗାନ୍ତ ଅନଳ ପରି ତା କିରଣ ଯେତେ
ଦେଖୁଥିଲା ସବୁଙ୍କର ନୟନକୁ ବୃଥା ।
ରାକ୍ଷସର କଣ୍ଠେ ତାକୁ ପ୍ରହାରନ୍ତେ ନେଇ
ଛିଡ଼ିଗଲା ଗଣ୍ଡିମୁଣ୍ଡ ଦୁଇଭାଗ ହୋଇ ।
ସେ ଗଣ୍ଡିମୁଣ୍ଡରୁ ଜାତ ହୋଇ ତେଜରାଶି
କିରଣରେ ଦେଲା ସୂର୍ଯ୍ୟମଣ୍ଡଳକୁ ଗ୍ରାସି ।
ମୁକତ ପାଇ ଦାନବ ଗୋଲୋକକୁ ଗଲା
ଶ୍ରୀକୃଷ୍ଣଙ୍କ ପାରିଷଦ ଗଣରେ ମିଶିଲା ।
ତାହା ଦେଖି ଦେବଗଣ ଦୁନ୍ଦୁଭି ବଜାଇ
ପୁଷ୍ପ ବରଷିଲେ ଶ୍ରୀକୃଷ୍ଣଙ୍କ ଶିରେ ନେଇ ।
ଦୈତ୍ୟର ମରଣ ଦେଖି ଗୋପାଳ ବାଳକେ
କୃଷ୍ଣଙ୍କ ପାଶେ ପ୍ରବେଶ ହେଲେ ଏକେ ଏକେ ।
ବହୁତ ପ୍ରଶଂସା ତାଙ୍କୁ କରି ସେ କାଳରେ
ପକ୍ୱ ତାଳଫଳମାନ ଦେଲେ ତୋଷଭରେ ।
ଧମଣ୍ଡେ ଏକାନ୍ତେ ବସି ଖାଇ ତାଳରସ
ଗୀତଗାଇ ନୃତ୍ୟକଲେ ହୋଇ ହର୍ଷ ହସ ।
ବଳରାମ ସହିତରେ ପ୍ରଭୁ ବଂଶୀଧର
ଗୋପ ଶିଶୁଙ୍କୁ ଘେନିଣ ଗଲେ ନିଜପୁର ।
ଏସ୍ଥଳରେ ଧେନୁକାର ମରଣ ଆଖ୍ୟାନ
ଶେଷକଲେ ଦୀନ କ୍ଷେତ୍ରବାସୀ ଦେଇ ମନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଧେନୁକା
ରାକ୍ଷସର ବଧ ବୃତ୍ତାନ୍ତ ବର୍ଣ୍ଣନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—*—

## ତ୍ର ୟୋ ବିଂ ଶ ଅ ଧ୍ୟା ୟ

## ତିଲୋତ୍ତମା ଓ ବଳିପୁତ୍ରର ଶାପ ବିଷୟ ବର୍ଣ୍ଣନ

ନାରଦ ବୋଇଲେ ଆହେ ନାରାୟଣ ମୁନି
ସଙ୍ଗି ହୋଇଲ ଦୈତ୍ୟ କେଉଁ ଶାପ ଘେନି
ଦୁର୍ବାସା ମୁନିଙ୍କଠାରେ କିବା ଦୋଷ କଲା
କେଉଁ ପୁଣ୍ୟବଳେ ମୁକ୍ତ ହୋଇ ଶେଷେ ଗଲା

ଏ ସକଳ କଥା ମୋତେ କହ ତପୀବର
ଶୁଣିବାପାଇଁକ ମନ ବଳୁଛୁ ମୋହର ।
ତାହା ଶୁଣି ନାରାୟଣ ବୋଇଲେ ପୂର୍ବରୁ
ଶୁଣିଅଛୁ ଯାହା ମୁହିଁ ଧର୍ମଙ୍କ ମୁଖରୁ ।
ଅଛଇ ସେ ପଦ୍ମକଳ୍ପ ବଚନ ବୃତ୍ତାନ୍ତ
କହୁଛୁ ତୁମ୍ଭ ଆଗରେ ଶୁଣ ଦେଇ ଚିତ୍ତ ।
ଯେଉଁ କଳପରେ ଯେଉଁ କଥା ହେଲା ଜାତ
ସେ କଳ୍ପରେ ଉପବରହରଣ ନାମେ ଖ୍ୟାତ ।
ହୋଇଥିଲ ତୁମ୍ଭେ ଆହେ ନାରଦ ମହର୍ଷି
କ୍ରୀଡ଼ା କରୁଥିଲ ସେଣେ ବହୁତ ପ୍ରେୟସୀ ।
କୁସୁମ ଉଦ୍ୟାନେ ଅବା ଜଳାଶୟେ ମିଳି
ସେମାନଙ୍କ ସଙ୍ଗେ ମିଶି କରୁଥିଅ କେଳି ।
ଏଇବେ ବିଧାତାଙ୍କର ଶାପ ପାଇକରି
ଦାସୀପୁତ୍ର ହୋଇ ଜାତ ହେଲ ମର୍ତ୍ତ୍ୟପୁରୀ ।
ସେ ଅନ୍ତରେ କେତେକାଳ ବୈଷ୍ଣବଙ୍କର
ଉଚ୍ଛିଷ୍ଟ ଭୋଜନେ ହେଲ ତପସ୍ୱୀଙ୍କ ବର ।
ଶିବଙ୍କର ପ୍ରିୟ ଶିଷ୍ୟ ହୋଇ ସେ ପ୍ରକାରେ
ସର୍ବଦର୍ଶୀ ହେଲ ପୁଣି ଶାସ୍ତ୍ରୀୟ ଦୃଷ୍ଟିରେ ।
ସେହି କଳପର କଥା କହୁଅଛୁ ଶୁଣ
ଯେରୂପେ ଶାପ ପାଇଲ ବିଧିର ନନ୍ଦନ ।
କାଳେ ସେ ଆପଣା ବଳେ ଉନ୍ମତ୍ତ ହୋଇ
ସୁଖରେ ଭ୍ରମିଲ ସ୍ୱର୍ଗ ରସାତଳ ମହୀ ।
ଦିନେ ଚତୁରଙ୍ଗ ବଳସେନ ସଙ୍ଗତରେ
ରହିଥିଲ ଯାଇ ଗନ୍ଧମାଦନ ଶୈଳରେ ।
ଦିବ୍ୟ ରତ୍ନ ସ୍ୱର୍ଣ୍ଣ ସିଂହାସନ ପରେ ବସି
ଥିଲ ସେହି ସମୟରେ ହୋଇ ଅତି ତୋଷୀ ।
ସେତେବେଳେ ତିଳୋତ୍ତମା ଅପସରା ତହିଁ
ଯାଇଥିଲା ଗୁରୁ ବେଶଭୂଷାକୁ ସଜାଇ ।
ନବ ଯଉବନେ ତାର ଅଙ୍ଗ ଅତି ଶୋଭା
ଦିସୁଥିଲା ମୁନି ଜନମନ କରି ଲୋଭ ।
ଚମ୍ପକ କୁସୁମ ପ୍ରାୟେ ସୁନ୍ଦର ବରନ
ପୂର୍ଣ୍ଣ ହୋଇଥିଲା ଅଙ୍ଗ ନାନା ଆଭରଣ ।
ମନ୍ଦହାସ ପ୍ରକାଶିତ ହେବାରୁ ଅଧରେ
ପଲ୍ଲବେ ହଂସ ଶ୍ରେଣୀ ଶୋଭାକୁ ଧିକ୍କାରେ ।
ଅରୁଣ ବର୍ଣ୍ଣ ବସନ ପରିଧାନ କରି
ବଢ଼ାଇଥିଲା ସେ ନିଜ ଶରୀର ମାଧୁରୀ ।
ଜଗ ମୋହିନୀ ତାହାର କାମଧେନୁ ଜଣି
ତପସ୍ୱୀମାନଙ୍କ ଚିତ୍ତ ନେଉଥିଲା ଟାଣି ।
ସ୍ତନ ଉରୁ ମୁଖ ଶୋଭା ଦେଖିଣ ତାହାର
ମୂର୍ଚ୍ଛିତ ହୋଇଲେ ସାହସୀଙ୍କ ସେ କାଳର ।
ତାକୁ ମଧ୍ୟ ତିଳୋତ୍ତମା ଅପସରା ଦେଖି
ସ୍ଥିର ରହିଲା ପିଛାଡ଼ି ନ ପାରିଣ ଆଖି ।
ଯଉବନ ବୟସରୁ ତାହାଙ୍କର ଅଙ୍ଗ
ସକଳ ଶୋଭାକୁ ଆଣି କରିଥିଲା ସଙ୍ଗ ।
ସେ ସକାଶୁ ତିଳୋତ୍ତମା କାମଶରେ ପୀଡ଼ା
ପାଇଣ ବର୍ଦ୍ଧିଲା ପୁନଃ ପୁନଃ ଛାଡ଼ି କ୍ରୀଡ଼ା ।
ଚନ୍ଦ୍ର ସଙ୍ଗତେ କ୍ରୀଡ଼ା କରିବାକୁ ସେହି
ଯାଉଥିଲା ଚନ୍ଦ୍ରଲୋକେ ସୁବେଶ ସଜାଇ ।
ସାହସିକ ସୌନ୍ଦର୍ଯ୍ୟରେ ହୁଅନ୍ତେ ମୋହିତ
ଅନ୍ୟ କାର୍ଯ୍ୟଛଳେ ସେହିଠାରେ ହେଲା ସ୍ଥିତ
ନେତ୍ର କୋଣରେ ଅନାଇ ତାକୁ ବାରମ୍ବାର
ମୁଖକୁ ଲୁଚାଉଥାଏ ଆଗରେ ତାହାର ।
ଶଶଧରଙ୍କୁ ପାସୋରି ବଳପୁତ୍ରଠାରେ
ସମ୍ପୂର୍ଣ୍ଣ ଆସକ୍ତ ହେଲା ସେ ନିଜ ଇଚ୍ଛାରେ ।
ସ୍ୱଭାବରେ ସାଧାରଣୀ କାମିନୀର ମନ
ଜାଣିବାକୁ କେହି ହେଲେ ନୁହନ୍ତି ଭାଜନ ।
ତାଙ୍କଠାରେ ଯେଉଁ ଲୋକ ବିଶ୍ୱାସ କରଇ
ଜଗତରେ ବିଡମ୍ବିତ ସେହିଟି ଅଟଇ ।
ଧନ ମାନ ଅଇଶ୍ୱର୍ଯ୍ୟ ନ ରହଇ ତାର
ପରିଶେଷେ ହୁଏ ସେହୁ କଳଙ୍କର ଘର ।
ସାଧାରଣୀ ସ୍ତ୍ରୀଙ୍କର ପ୍ରିୟାପ୍ରିୟ କେହି
ନାହାନ୍ତି ଜଗତ ମଧ୍ୟେ କହିଲି ବତାଇ ।
ପିତା ପୁତ୍ର ଭ୍ରାତା ଅବା ପ୍ରିୟ ବନ୍ଧୁଜନ
ସୁନ୍ଦର ଯେ ଅଟେ ତାଙ୍କୁ କରନ୍ତି ସେ ମନ
ରତିଶାସ୍ତ୍ରେ ନିପୁଣ ହୁଅଇ ଯେ ଲୋକ
ବିସ୍ତର କରନ୍ତି ତାକୁ ପ୍ରାଣରୁ ଅଧିକ ।
ଧନ ରତ୍ନ ଅଳଙ୍କାର ଯେତେ ଦେଲେ ହେଲେ
ପ୍ରେମ ନ କରନ୍ତି ରତିଶାସ୍ତ୍ର ନ ଜାଣିଲେ ।
କର୍ମ ଭୋଗ ଅନ୍ତେ ଅଛୁ ସବୁରି ନିଷ୍କୃତି
କିନ୍ତୁ ତହିଁରୁ ବଞ୍ଚିତ ଯେ ପୁଂଶ୍ଚଳୀ ଜାତି ।
ରତିଙ୍କ ନୂତନ ଯୁବା ପୁରୁଷ ପାଇଲେ
ପୁରାତନ ନାଗରକୁ ଛାଡ଼ନ୍ତି ତତ୍କାଳେ ।

ସୁବିଧା ଦେଖିଲେ ମଧ୍ୟ ବିଷ ପ୍ରୟୋଗରେ
ଜୀବନ ହରଣ କରିଥାନ୍ତି ଅର୍ଦ୍ଧ ପୂରେ ।
ପୁଂଶ୍ଚଳୀ ପାକଅନ୍ନ ଯେ ସର୍ବପାପ ଖଣି
ଦେବତା ପିତୃକାର୍ଯ୍ୟରେ ନ ଦେବ ତା ଜାଣି
ଯେଉଁଲୋକ ଦିଅଇ ସେ କାଳସୂତ୍ରେ ଯାଇ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ପଡ଼ି ରହିଥାଇ ।
ଦଇବେ ଯେ ନରାଧମ ପୁଂଶ୍ଚଳୀର ଅନ୍ନ
ଜ୍ଞାନରେ ବା ଅଜ୍ଞାନରେ କରଇ ଭୋଜନ ।
ସପ୍ତଜନ୍ମ ପୁଣ୍ୟ ତାର ବିନଷ୍ଟ ହୁଅଇ
ଇହପର ଲୋକରେ ସେ କଷ୍ଟ ଭୋଗୁଥାଇ ।
ଏରୂପେ କୁଳଟାଙ୍କର ଚରିତ ଆଖ୍ୟାନ
କହିଲି ଏବେ ପ୍ରକୃତ ଚରିତକୁ ଶୁଣ
ଚେତନା ପାଇଣ ପୁଣି ବଳଦୈତ୍ୟ ସୁତ
ତିଳୋତ୍ତମା ରୂପ ଦେଖି ତୋଷକରି ଚିତ୍ତ ।
କାମରେ ଆତୁର ହୋଇ ତା ପାଶକୁ ଗଲା
ମଧୁର ବଚନେ ତାକୁ କହି ଆରମ୍ଭିଲା ।
ବୋଇଲା କିଏ ସେ ତୁମ୍ଭେ ଅଟ ଗୋ କଲ୍ୟାଣୀ
କାହାର ତନୟା ଅବା କାହାର ଘରଣୀ ।
ଏବେ କାହା ନିକଟକୁ ଯାଉଅଛ ଏକା
କହ ମୋ ଆଗରେ ଛାଡ଼ି ମାନସରୁ ବଙ୍କା ।
ଯାହାଠାକୁ ଯାଉଅଛ ଯାଅ ତାହା ପଛ
ମାତ୍ର ଦଣ୍ଡେଯାଏ ମୋତେ ଭୃତ୍ୟକରି ରଖ ।
ରତି ରସ ଲୋଲୁପାତ ହୋଇଅଛୁ ମୁହିଁ
ରତିଦାନେ ମୋର ମନ କର ପ୍ରାଣସହି ।
ତୁମ୍ଭେ ମଧ୍ୟ ହୋଇଅଛ ଶୃଙ୍ଗାର ରସିକା
ସ୍ୱଭାବେ ଏଠାରେ ଉପସ୍ଥିତ ହେଲ ଏକା ।
ଜାଣିଲି ବିଧାତା ମୋତେ ତୁମ୍ଭର ଆଶ୍ଳେଷ
ଦେବାପାଇଁ ଯତ୍ନକରି ଅଛନ୍ତି ବିଶେଷ ।
ସସ୍ମିତ ମୁଖରେ ସୁଧା ସଦୃଶ୍ୟ ବଚନ
କହିକରି ଆନନ୍ଦିତ କର ମୋର ମନ ।
ସ୍ତନଜଘନ ସଂଯୋଗ କର ମୋ ଅଙ୍ଗରେ
କନ୍ଦର୍ପ ସନ୍ତାପ ନିବାରଣ କର ବାରେ ।
ପାଚିଲା ଡାଳିମ୍ବଫଳ ବୀଜର ସଦୃଶ
ଦନ୍ତପନ୍ତି ଦେଖିବାକୁ ବଳୁଛି ମାନସ ।
ଆବର ଗଭୀର ନାଭି ତ୍ରିବଳୀ ସହିତେ
ଦେଖାଇ ମୋତେ ସନ୍ତୁଷ୍ଟ କର ଗଜଗତେ ।
ଶରତ ପାର୍ବଣ ଚନ୍ଦ୍ରମୁଖକୁ ତୁମ୍ଭର
ଦେଖିବା ମାତ୍ରକେ ତାପ ହୋଇଯିବ ଦୂର ।
ଏମନ୍ତ ବଚନ ଶୁଣି ସେ ମେନକା ବାଳା ।
ଭାମ ସାପୁକଂର ଘାତ ହୋଇଣ କହିଲା ।
ବୋଇଲା ଆହେ ଯୁବକ ଶ୍ରେଷ୍ଠ ତୁମ୍ଭପରି
ପୁରୁଷକୁ ନାଡ଼ ଅବା ପାରେ କେଉଁ ସ୍ତ୍ରୀ ।
ଧର୍ମବନ୍ତ ବଳଙ୍କର ଅଟ ତୁମ୍ଭେ ସୁତ
ଶୃଙ୍ଗାର ନିପୁଣ କାମଶାସ୍ତ୍ର ଜ୍ଞାନବନ୍ତ ।
ମନୋଜ୍ଞ କାମିନୀ ଚିତ୍ତ ହରଣ କୁଶଳ
ସୁବେଶ ସୁନ୍ଦର ଶାନ୍ତ ସୁସ୍ଥ ମହାବଳ ।
ସ୍ୱଭାବରେ ସ୍ତ୍ରୀଜାତି ଶୃଙ୍ଗାର ଲମ୍ପଟ
କାମନା କରଇ ସବୁବେଳେ ପତିଶ୍ରେଷ୍ଠ ।
ତୁମ୍ଭ ସଙ୍ଗ ଇଚ୍ଛା ନ କରିବ ଯେଉଁ କାନ୍ତା
ନିଶ୍ଚୟ ସେ ହେବ ରତିରସରୁ ବଞ୍ଚିତା ।
ଏବେ ମୁହିଁ ଯାଉଅଛୁ ଚନ୍ଦ୍ରଙ୍କ ଗୃହକୁ
ସନ୍ତୁଷ୍ଟ କରିବି ଆଜି ନିଶାରେ ତାହାଙ୍କୁ ।
କାଲି ଆସି ତୁମ୍ଭ ପାଶେ ପ୍ରବେଶ ହୋଇବି
ଯାହା ବୋଲିବ ସେ କଥା ନିଶ୍ଚୟ କରିବି ।
ଧର୍ମ ସତ୍ୟ ରକ୍ଷା ନ କରଇ ଯେଉଁ ଲୋକ
ତାହାକୁ ସମସ୍ତେ ବୋଲୁଥାନ୍ତି ଧିକ ଧିକ ।
ଅଶ୍ୱିନୀ କୁମାର କାମ କୁବେର ନନ୍ଦନ
ଆବର ସେ ସ୍ୱର୍ଗ ଅଧୀଶ୍ୱର ମଘବାନ ।
ଏହାଙ୍କର ଆଶ୍ଳେଷକୁ କରଇ ଯେ ତ୍ୟାଗ
ତାହାକୁ ନୁହଇ ରତି ସୁଖ କେବେ ଭୋଗ ।
ସବୁଠାରୁ ବଳି ଚନ୍ଦ୍ର ଆଶ୍ଳେଷଣ ରତି
ସୁଖକର ଅଟେ ଜାଣ ଆହେ ମହାମତି ।
ସେ ସକାଶୁ ତାଙ୍କୁ ଆଜି ମୋହର ମାନସ
ଚିନ୍ତା କରୁଅଛୁ ଛାଡ଼ି ଅନ୍ୟସଙ୍ଗ ରସ ।
ଏହିରୂପେ ତିଳୋତ୍ତମା ବଚନକୁ ଶୁଣି
ବଳଙ୍କ ନନ୍ଦନ ହସି କହିଲେ ଏ ବାଣୀ ।
ବୋଇଲେ ଗୋ ତିଳୋତ୍ତମା ସ୍ୱର୍ଗପୁରେ ତୁମ୍ଭେ
ଉତ୍କୃଷ୍ଟ କାମିନୀ ଅଟ ଜାଣୁ ଏହା ଆମ୍ଭେ ।
ପୂର୍ବକାଳେ ସୁନ୍ଦ ଉପସୁନ୍ଦ ଦୁହିଙ୍କର
ନାଶପାଇଁ ସରଜିଲେ ତୋତେ ବେଦବର ।
ସକଳଗୁଣ ଆଧାର ଅଟ ଶୁଭ୍ରକେଶୀ
ଜାଣିଅଛୁ କାମଶାସ୍ତ୍ର ତନ୍ତ୍ରକୁ ବିଶେଷି ।

ତବପ୍ରିୟ ଅଟଇ କେ କ ତୁମ୍ଭର ଜଗତେ
ଯଥାର୍ଥ ରୂପରେ ତାହା କହ ଏବେ ମୋତେ ।
ଅକଥ୍ୟ ଗୋପନ ଯାହା ଅଛି ତୁମ୍ଭ ହୃଦେ
କହ ମୋ ଆଗରେ ସବୁ ବସି ଅପ୍ରମାଦେ ।
ଗନ୍ଧର୍ବ ସୁର ପନ୍ନଗ କିନ୍ନର ଚାରଣ
ଏହାଙ୍କ ମଧ୍ୟରେ ଅଟଇ କେ ଗୁଣବାନ ।
ତୁମ୍ଭର ବା କାହାଠାରେ ଅଧିକ ଆଦର
ଶୁଣିଲେ ସଂଶୟ ମୋର ହୋଇଯିବ ଦୂର ।
ଏମନ୍ତ ଅସୁରଠାରୁ ତିଳୋତ୍ତମା ଶୁଣି
କହ ଇନ୍ଦ୍ରେ ତାହାଙ୍କୁ ବନ୍ଦି ପୁଣପୁଣି ।
ବୋଇଲା ଆହେ ରାକ୍ଷସ ରାଜନ ତନୟ
ଶୁଣ କହୁଅଛି ଯାହା ମୋର ଅଭିପ୍ରାୟ ।
ପୁଂଶ୍ଚଳୀ କାମିନୀଙ୍କର ମନବାକ୍ୟ କେହି
ଜାଣିବାପାଇଁ ସମର୍ଥ ହୋଇ ନ ପାରଇ ।
ପଣ୍ଡିତ ଲୋକର ଥାଏ ନାନାଶାସ୍ତ୍ର ଜ୍ଞାନ
କିନ୍ତୁ ସେ ଜାଣି ନ ପାରେ କାମିନୀଙ୍କ ମନ ।
ବୃଦ୍ଧ ଅବସ୍ଥା ଯୁକ୍ତ ଯେ ପୁରୁଷ ଅଟଇ
ବହୁତ ଧନ ସମ୍ପଦ ଦେଲେ ହେଲେ ସେହି ।
ବିଷତୁଲ୍ୟ ଜ୍ଞାନ କରେ ତାଠାରେ ଯୁବତୀ
କେବଳ ଯୁବାପୁରୁଷେ ହୋଇଥାଏ ମତି ।
ବିଶେଷେ ପୁଂଶ୍ଚଳୀ ଯୁବା ସୁନ୍ଦର ଦେଖିଲେ
ସବୁଠାରୁ ବଳି ତାକୁ ସ୍ନେହ କରେ ଭଲେ ।
ତାକୁ ଦେଖି କରଇ ସେ ମନକୁ ଚଞ୍ଚଳ
ଦହଇ ଅଙ୍ଗକୁ ଯେଣୁ କାମଶରାନଳ ।
ନାନାଭାବଭଙ୍ଗୀ ପ୍ରକାଶଇ ଯାଇ ପାଶେ
ତଥାପି ଯେବେ ପୁରୁଷ ନ ରହଇ ବଶେ ।
ଆପଣାର ସ୍ତନଶ୍ରେଣୀ ନାଭିକୁ ଦେଖାଇ
ଗୁପତ ମିଷ୍ଟବଚନ ବହୁତ କହଇ ।
ପୁଂଶ୍ଚଳୀର ପ୍ରିୟ ପ୍ରିୟ ନାହିଁ କେ ସଂସାରେ
ରତିକର ପୁରୁଷକୁ କାମନା ସେ କରେ ।
ଦାନପୁଣ୍ୟ ସ୍ତୁତି ସ୍ନେହ ସତ୍ୟ ଲକ୍ଷଣରେ
ସନ୍ତୁଷ୍ଟ ନୁହେ କୁଳଟା ବିନା ସୁରତରେ ।
ଶୟନ ଭୋଜନ ଜ୍ଞାନ ଅଜ୍ଞ ନ ସମୟ
ସୁରତରେ ଆଶ୍ଲେଷକୁ ଭାବେ ସେ ହୃଦୟେ ।
ପୁଂଶ୍ଚଳୀ ଜାତି ଅଟଇ ଅତ୍ୟନ୍ତ ଦାରୁଣ
ନୂତନ କାମୁକ ଇଚ୍ଛା କରଇ ସେ ଜାଣ ।

ମୋହର ହୃଦୟଗତ କଥାକୁ ଫିଟାଇ
କହୁଅଛି ଏବେ ବସି ଶୁଣ ମନଦେଇ ।
ଗନ୍ଧର୍ବ ଉରଗ ଦେବ ଦାନବ ମଧ୍ୟରେ
ପ୍ରିୟାହୋଇ କେହି ମୋର ନାହିଁ କେଉଁଠାରେ
କେବଳ ଚନ୍ଦ୍ରଙ୍କ ସଙ୍ଗେ ସାମାନ୍ୟ ପୀରତି
କରୁଅଛି ସ୍ୱଇଚ୍ଛାରେ ଆହେ ମହାମତି ।
ଅଧିକ ପୀରତି କାମଦେବଠାରେ ମୁହିଁ
କରଇ ସର୍ବଦା ତାଙ୍କ ରୂପେ ବଶ ହୋଇ ।
ଯେତେବେଳେ ସୁମରଣା କରେ ମୁଁ ତାହାଙ୍କୁ
ଜାଣି ନ ପାରଇ ଅନ୍ୟ ବିଷୟମାନଙ୍କୁ ।
ପୁଲକରେ ପୂର୍ଣ୍ଣହୁଏ ସମସ୍ତ ଶରୀର
ବାତୁଳ ସଦୃଶ ମନ ହୁଅଇ ଅସ୍ଥିର ।
ଶୁଣିଲ ତ ମନୋଗତ ସକଳ ବୃତ୍ତାନ୍ତ
ଆଜ୍ଞାଦିଅ ହେବି ଇନ୍ଦ୍ର ସମୀପକୁ ଗତ ।
ଏରୂପେ ତିଳୋତ୍ତମାର ବଚନକୁ ଶୁଣି
ଚାହିଁଲେ ତାହାକୁ ହସି ବଳପୁତ୍ର ପୁଣି ।
ତିଳୋତ୍ତମା ମଧ୍ୟ ତାକୁ ଅନାଇ ହସିଲା
କଟାକ୍ଷ ବାଣରେ ପୁନଃପୁନଃ ପୀଡ଼ା ଦେଲା ।
ଆବର କଠିନ ସ୍ତନ ଉଚ୍ଚ ଶ୍ରେଣୀ ଦୁଇ
ଅନ୍ୟଛଳେ ଦେଖାଇଲା ବସ୍ତ୍ର ଆଡ଼ଆଇ ।
ପୁଲକରେ ପୂର୍ଣ୍ଣକରି ଆପଣା ଶରୀର
ରହିଲା କନ୍ଦର୍ପ ଶରେ ହୋଇଣ ଅଧୀର ।
ତାର ଅଭିପ୍ରାୟ ଜାଣି ବଳରାଜ ସୁତ
ବୋଇଲା ଗୋ ସୁରହାସି କହ ମୋତେ ସତ
କେଉଁ କାର୍ଯ୍ୟ ତୁମ୍ଭର ମୁଁ କରିବ ଏଠାରେ
ନୋହିଲେ ଯେ ବିଳମ୍ବିବ ଆପଣା କାର୍ଯ୍ୟରେ
କାମିନୀଙ୍କୁ ବଳାତ୍କାର କରିବାର କଥା
ଉଚିତ ନୁହଇ ଜାଣିଥାଅ ସରବଥା ।
ବିଶେଷରେ ଜାତ ଅଟେ ଯେ ଆମ୍ଭ ବଂଶରେ
ଏକଥା ସମ୍ଭବ ହୋଇ ନ ପାରେ ତୋଠାରେ
ସ୍ୱଇଚ୍ଛାରେ ବାରସ୍ତ୍ରୀ ନ କଲେ ବରଣ
ତାକୁ ବଶ କରିବାକୁ ଶକ୍ତ କାର ପୁଣ ।
ଏ ସକାଶୁ ବୋଲୁଅଛି ଯେବେ ମୋହଠାରେ
ମନ ଅଛି ରତିଦାନ କର ନିଃଶଙ୍କରେ ।
ନୋହିଲେ ବିଦାୟ ହୋଇ ଯାଅ ଇଚ୍ଛାମତେ
ମୁଁ ମଧ୍ୟ ଯିବି ମୋହର କାର୍ଯ୍ୟରେ ତୁରିତେ

ଏହା ଶୁଣି ତିଳୋତ୍ତମା ଆତୁର ହୋଇଲା
ବିନୟ ପ୍ରକାଶ କରି ବଚନ କହିଲା ।
ବୋଇଲା ହେ ନାଥ ତୁମ୍ଭେ ଅଟ ମୋର ପ୍ରିୟ
କୋପ କଲାପରି କପଁା ବଚନକୁ କହ ।
ତୁମ୍ଭଙ୍କୁ ବିମୁଖ କରି ଚନ୍ଦ୍ରଲୋକେ ମୁହିଁ
ଗଲେ ମୋର ତୁମ୍ଭ ପାଶେ ଶୁଭ ହେବ ନାହିଁ
ଏ ସକାଶୁ ଆଜ ତୁମ୍ଭ ସଙ୍ଗେ କ୍ରୀଡ଼ାକରି
ଢନ ନେବା ପାଇଁ ମନ ହେଉଛି ମୋହର ।
ନିଃଶଙ୍କରେ ଘେନ ମୋତେ ହେ ରସିକବର
ନିଜ ଇଚ୍ଛାମତେ ରତିରସ ଭୋଗକର ।
ଯେଉଁଲୋକ କାମିନୀର ମାନ ରକ୍ଷାକରେ
ସଦୟ ହୁଅନ୍ତି ପ୍ରଭୁ ସେହି ଲୋକଠାରେ ।
ଯେଉଁ ମୂଢ କରେ ସ୍ତ୍ରୀ ମନକୁ ନିରାଶ
ପୀଡ଼ା ଦିଅନ୍ତି ପାର୍ବତୀ ତାହାକୁ ଅବଶ୍ୟ ।
ଏହିରୂପେ ଶୁଣି ତିଳୋତ୍ତମାର ବଚନ
ଆନନ୍ଦିତ ହୋଇ ବଳି ରାଜାଙ୍କ ନନ୍ଦନ ।
ହସ୍ତେ ଧରିଆଣି ତାକୁ କୋଳେ ବସାଇଲେ
ଆଲିଙ୍ଗନ କରି ଗଣ୍ଡସ୍ଥଳକୁ ଚୁମ୍ବିଲେ
ପୁଣି ସେହିଠାରେ କିଛୁକ୍ଷଣ କ୍ରୀଡ଼ା କରି
ଗଲେ ଗନ୍ଧମାଦନର କନ୍ଦରକୁ ଫେରି ।
ସେଠାରେ ନିର୍ଜନ ସ୍ଥାନ ନିରୂପଣ କଲେ
ରତିସୁଖ କରି ପୁଷ୍ପଶଯ୍ୟା ବିରଚିଲେ ।
ରତନ ପ୍ରଦୀପ ଧୂପ ରଖି ତାହା ପାଶେ
ଶୟନ କଲେ ଉଭୟେ ମାତି ରତି ରସେ ।
ନାନାପ୍ରକାର ଶୃଙ୍ଗାର କଲେ ସାହସିକ
ଅଟନ୍ତି ସେ ତ ଜଗତେ ପ୍ରଧାନ ରସିକ ।
ବିପରୀତ ସମ୍ଭୋଗରେ ସ୍ୱର୍ଗ ବାରାଙ୍ଗନା
ହେଲା ସେ କାଳରେ ଅତିଶୟ ତୋଷମନା
ସେ ସକାଶୁ ପ୍ରାଣେଶଙ୍କୁ ବକ୍ଷସ୍ଥଳେ ଧରି
କହିଲା କାମଶାୟକେ ହୋଇବାରୁ ଘାରି ।
ବୋଇଲା ହେ କାନ୍ତ ମୁହିଁ ତୁମ୍ଭର ବଦନ
ପୁଣି ଆଉ ଥରେ କେବେ କରିବି ଦର୍ଶନ
ଆଜପରି ଶୁଭଦିନ ପୁଣି କେଉଁକାଳେ
ଘେନିବ ବୋଲି ବିଧିରୁ ଅଛି ମୋ କପାଳେ
ଆଶ୍ଚର୍ଯ୍ୟ ଅଟଇ ତୁମ୍ଭ ରୂପ ଗୁଣଶିରୀ
ଶୃଙ୍ଗାରକୁଶଳ ନ ଥିବ କେ ତୁମ୍ଭପରି ।
ଅନ୍ୟର ହେଲେହେଁ ମୋତେ ମାନ୍ୟ ଶଙ୍କ ନାହିଁ
ମନେ ପକାଇବ ଥିଲେହେଲେ ପଛ ତହିଁ ।
ସ୍ତ୍ରୀଙ୍କର ଗୁଣବନ୍ତ ପୁରୁଷ ସଙ୍ଗମ
ଜୀବ ଥିବାଯାଏ ମନ ନ ଭୁଲିବ ଜାଣ ।
ତୁମ୍ଭ ମୂର୍ତ୍ତିରେ ମୋର ପ୍ରାଣ ଗୋଡ଼ାଇବ
ଏଥିରେ ସନ୍ଦେହ ଆଉ ନାହିଁ ଜାଣ ଧବ ।
ଏମନ୍ତ କହି ସେ ତିଳୋତ୍ତମା ଅପସରୀ
ଆଲିଙ୍ଗନ କଲା ଗାଢ଼େ କୋଳାଗ୍ରତ ଧରି ।
ପରସ୍ପର ଅଙ୍ଗ ସଙ୍ଗ ସୁଖରେ ସେ ଦୁହେଁ
ଅଚେତନ ହୋଇପରି ରହି କ୍ଷଣେ ଯାଏ ।
ପୁଣି ସୁସ୍ଥହୋଇ କାମରସରେ ମାତିଲେ
ସାହସ ସହିତ ସାହସିକ ରତିକଲେ ।
ଯଥାସ୍ଥାନେ ଦେଲେ ନବ ପ୍ରକାର ଚୁମ୍ବନ
କଲେ ଜଘନ ସ୍ତନରେ ନଖ କ୍ଷତମାନ ।
ସେ ସମୟେ ଅଳଙ୍କାର ବଳା ଆଘାତରେ
କ୍ଷୁଦ୍ର ଘଣ୍ଟି ମାଳା ଶବ୍ଦ ଶୁଭିଲା ଉଚ୍ଚରେ ।
ସେହିଠାରେ ତପୀବର ଦୁର୍ବାସା ମହର୍ଷି
ଧ୍ୟାନ କରୁଥିଲେ ଯୋଗ ଆସନରେ ବସି ।
ବୃକ୍ଷଲତା ଗହଳରେ ଦୁହିଁଙ୍କ ନୟନକୁ
ଦୃଶ୍ୟ ହେଉ ନ ଥିଲେ ସେ ରତି ସମୟକୁ ।
ସ୍ୱଭାବରେ କାମାସକ୍ତ ହୋଇଥାଏ ଯେହି
କର୍ତ୍ତବ୍ୟ ଜ୍ଞାନ ତାହାର କିଛି ନ ରହଇ
ସୁରତ ରସରେ ଦୁହେଁ ହୋଇ ତହିଁ ମଗ୍ନ
କଲେ ମୁନିବରଙ୍କର ଯୋଗଧ୍ୟାନ ଭଗ୍ନ ।
ତାହା ଶୁଣି ମୁନି କ୍ରୋଧ ନେତ୍ରରଙ୍ଗ କରି
ଚାହିଁଲେ କାଳଅନ୍ତକ ମୃତ୍ୟୁଦେବ ପରି
ଯୋଗଭଙ୍ଗ ହୋଇବାରୁ ଅଧିକ ରାଗରେ
ବୋଇଲେ କି ଆଚରଣ କରୁଛ ଏଠାରେ ।
ଭକ୍ତ ଶ୍ରେଷ୍ଠ ବଳିଙ୍କର ଅଂଶେ ଜାତ ହୋଇ
ବିବେକ ବୋଲିବା କଥା ହରାଇଲ କାହିଁ ।
ଗର୍ଦ୍ଦଭ ପ୍ରବସ୍ତେ ଯାହା କରୁଅଛ କ୍ରୀଡ଼ା
ଜାଣିଲି ନିଶ୍ଚୟ ତୁମ୍ଭେ ଗୁଡ଼ଶୂନ୍ୟ ବ୍ରୀଡ଼ା ।
ଦେବତା ମାନବ ଅବା ଗନ୍ଧର୍ବ ରାକ୍ଷସ
ସମସ୍ତେ ଅଟନ୍ତି ଲଜ୍ଜା ଭାବ ପରବଶ ।
କେବଳ ପଶୁ ଜାତିରେ ନ ଥାଏ ସେ କଥା
ଯେଣୁ ସେ ଜ୍ଞାନ ବିହୀନ ଅଟଇ ସର୍ବଥା ।

ତୁମ୍ଭେ ସେ ଉତ୍ତମ ଲୋକ ସାର୍ଥ୍ୟ ହୋଇ ଜାତ
ହେଲ ଏଣୁପରି ନୀଚ କର୍ମରେ ଆସକ୍ତ ।
ସେ ସକାଶୁ ଏବେ ଶାପ ଦେଉଅଛୁ ମୁହିଁ
ଗର୍ଦ୍ଦଭ ଯୋନିରେ ଜନ୍ମ ପାଅ ତୁମ୍ଭେ ଯାଇ
ଏରୂପେ ସାହସିକଙ୍କୁ ଶାପଦେଇ ମୁନି
ତିଳୋତ୍ତମାକୁ ବୋଇଲେ ତୁ ଦୁଷ୍ଟ କାମିନୀ ।
ଦୈତ୍ୟଠାରେ ଅଭିଳାଷ କଲୁ ନ ବିଚାରି
ତେଣୁ ମୋର ଶାପ ଘେନ ହୁଅ ନିଶାଚରୀ ।
ଏମନ୍ତ ବୋଲି ମଉନ ହୋଇଣ ରହିଲେ
ମନେ ମନେ ଶ୍ରୀହରିଙ୍କୁ ସୁମରଣା କଲେ ।
ଶାପ ଶୁଣି ତିଳୋତ୍ତମା ସାହାସିକ ଦୁହେଁ
ସ୍ତୁତିକଲେ ମହର୍ଷିଙ୍କୁ ଦୁଃଖିତ ହୃଦୟେ ।
ପ୍ରଥମରେ କରଯୋଡ଼ି ସାହସିକ ଦୈତ୍ୟ
ବୋଇଲେ ହେ ମୁନି ତୁମ୍ଭେ ଅଟ ଶୁଦ୍ଧବ୍ରତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବଙ୍କ ସମାନ
ତପ ପ୍ରଭାବରେ ହୋଇଅଛ ତପୋଧନ ।
ଦୟାକରି କ୍ଷମାକର ଆମ୍ଭ ଅପରାଧ
ଜାଣିଅଛନ୍ତି ଆପଣ ଆମ୍ଭେ ଯେ ନିର୍ବୋଧ ।
ଦୟାବନ୍ତ ହେତେଧ୍ରୁସ୍ୱ ମୁନିମାନଙ୍କର
ମୂର୍ଖଙ୍କୁ ଦୟାକରିବା ଉଚିତ ବେଭାର ।
ଏମନ୍ତ କହି ଦନୁଜ ପାଦରେ ପଡ଼ିଲେ
ସେ ଅନ୍ତରେ ତିଳୋତ୍ତମା ଉଠି ତତକାଳେ
ବୋଇଲା ହେ ମୁନି ମୁହିଁ ଅଟେ ମୂଢ଼ସ୍ତ୍ରିସ
ଜାଣି ଜାଣି ମୋତେ ଶାପ ଦେଲେ କେଉଁପରି
କାମିନୀ ଜାତିକୁ ସରଜିଲା ବେଳେ ବିଧି
ମୂର୍ଖ ହେବ ବୋଲି ତାଙ୍କ ଭାଲେ ଅଛି ଲିଖି
ସମସ୍ତଙ୍କ ଠାରୁ ବଳି କୁଳଟା ତରୁଣୀ
ସର୍ବଦା କାମରେ ବଶ ହୋଇଥାଏ ପୁଣି ।
କାମୁକ ଲୋକର ଲଜ୍ଜା ଭୟ ଅପମାନ
ହେବବୋଲି କେତେବେଳେ ନ ରହଇ ଜ୍ଞାନ
ଆପଣ ତ ଅଟ ସର୍ବ ଶାସ୍ତ୍ର ପାରଙ୍ଗମ
କ୍ଷମାକର ଆମ୍ଭ ଦୋଷ ହେ ମୁନି ଉତ୍ତମ ।
ଏମନ୍ତ କହି ବେଦନ କଲା ସେ ତରୁଣୀ
ପାଦେ ପଡ଼ି ଅନୁନୟ କଲା ପୁଣ ପୁଣି ।
ସେ ଦୁହିଙ୍କ ପ୍ରାର୍ଥନାରେ ଦୁର୍ବାସା ମହର୍ଷି
ଅଭୟ ଦେଲେ ତାହାଙ୍କୁ ହୋଇ ମହାତୋଷି
ଆବର ବୋଇଲେ ଶୁଣ ହେ ଦାନବ ସୁତ
ପ୍ରସାଦ ବା ଅଭିଶାପ ଅଟେ ଦୈବକୃତ ।
କାରଣ ଅବା ଅକାରିଁ ପୂର୍ବକର୍ମ ବଶେ
ପ୍ରାପତ ହୁଅଇ ସବୁକାଳରେ ଅବଶ୍ୟେ ।
ବିଷ୍ଣୁଭକ୍ତ ବଳିଙ୍କର ପୁତ୍ର ଅଟ ତୁମ୍ଭେ
ସେ ହେତୁ ବୈଷ୍ଣବ ବୋଲି ଜାଣୁଅଛୁ ଆମ୍ଭେ
ଜନକର ସ୍ୱଭାବଟି ଥାଏ ପୁତ୍ରଠାରେ
ଏକଥା ପ୍ରସିଦ୍ଧ ହୋଇଅଛି ଜଗତରେ ।
ଯେଉଁରୂପେ କାଳୀୟର ବଂଶଜନ୍ମା ଯେତେ
ଶ୍ରୀକୃଷ୍ଣଙ୍କ ପାଦଚିହ୍ନ ବହନ୍ତି ସମସ୍ତେ ।
ତେମନ୍ତ ପ୍ରକାର ଅଟେ ପୈତୃକ ଯେ ଚିହ୍ନ
ଏଥିରେ ସଂଶୟ କିଛି ନାହିଁ ମନେ ଘେନ ।
କ୍ରୋଧଭରେ ଯେଉଁ ଶାପ ଦେଇଅଛୁ ମୁହିଁ
ସେ କଥା ଅନ୍ୟଥା କରି ନ ପାରିବ କେହି
ଗର୍ଦ୍ଦଭ ରୂପକୁ ବହି ଏବେ ତୁମ୍ଭେ ଯାଅ
ବୃନ୍ଦାବନେ ତାଳବୃକ୍ଷ କାନନରେ ଥାଅ ।
ଶ୍ରୀକୃଷ୍ଣଙ୍କ ହସ୍ତେ ଯେବେ ମରଣ ପାଇବ
ଦେହ ତ୍ୟାଗକରି ତେବେ ମୁକତ ହୋଇବ
ତିଳୋତ୍ତମାକୁ ଅନାଇ ପୁଣି ମୁନିବର
ବୋଇଲେ ଜନ୍ମିବୁ ତୁହି ବାଣସୁର ପୁର ।
ଶ୍ରୀକୃଷ୍ଣଙ୍କ ପୌତ୍ରଠାରୁ ଆଲିଙ୍ଗନ ପାଇ
ମୁକତ ହୋଇବୁ ମର୍ତ୍ତ୍ୟ ଦେହ ଛାଡ଼ିଦେଇ ।
ଏମନ୍ତ ବୋଲିଣ ମୁନି ମଉନ ହୋଇଲେ
ସେ ଦୁହେଁ ସେକ୍ଷଣି ନିଜ ନିଜ ପୁରେ ଗଲେ
ଏଣୁପରି ତିଳୋତ୍ତମା ବଳିପୁତ୍ରଙ୍କର
ଶାପ ବିଷୟ ବୃତ୍ତାନ୍ତ ଆହେ ମୁନିବର ।
ଆପଣା ଦୋଷରେ ଦୈତ୍ୟ ଖର ଜନ୍ମ ହେଲା
କ୍ଷେତ୍ରମୋହନ ବୋଲେ ତା କରମରେ ଥିଲା

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ତିଳୋତ୍ତମା ଓ ବଳିପୁତ୍ରଙ୍କର ଶାପ ବିଷୟ ବୃତ୍ତାନ୍ତ ବର୍ଣ୍ଣନେ ନାମ ଷଡ଼ବିଂଶୋଽଧ୍ୟାୟଃ ।

---*---

## ଚତୁର୍ବିଂଶ ଅଧ୍ୟାୟ

## ଋଷିଶ୍ରେଷ୍ଠ ଦୁର୍ବାସାଙ୍କର ଦାରପରିଗ୍ରହ ଓ ବଳପୁତ୍ର ଏବଂ ମେନକାର ମୁକ୍ତି କଥନ

ନାରଦଙ୍କୁ ନାରାୟଣ ବୋଇଲେ ହେ ମୁନେ
ଦୁର୍ବାସା ମୁନିଙ୍କ କଥା ଶୁଣ ଏକମନେ ।
ଯେତେବେଳେ ସାହସିକ ମେନକା ବେଶହେଁ
କ୍ରୀଡ଼ା କଲେ ଦୁର୍ବାସାଙ୍କ ପାଶେ ଅତି ସ୍ନେହେ
ତାଙ୍କ ଦୁହିଙ୍କ ଶୃଙ୍ଗାର କ୍ରୀଡ଼ା ଦେଖିବାରେ
ରତି ଇଚ୍ଛା ପ୍ରବେଶିଲା ମୁନିଙ୍କ ଚିତ୍ତରେ ।
ଜିତେନ୍ଦ୍ରିୟ ହେଲେ ମଧ୍ୟ ସେ ମୁନି ଉତ୍ତମ
ସଂସର୍ଗ ଦୋଷରେ ଉପସ୍ଥିତ ହେଲା ଭ୍ରମ ।
କାମ ସାୟକରେ ପୀଡ଼ା ପାଇବାରୁ ସେହି
ତପ ଛାଡ଼ିଦେଲେ ସ୍ତ୍ରୀଙ୍କ ସ୍ୱରୂପକୁ ଧ୍ୟାୟି ।
ଖୁଜୁଥାନ୍ତି କେଉଁଠାରେ ଦେଖିଲେ ଅବଳା
ଗ୍ରହଣ କରିବେ ତାକୁ ଛାଡ଼ିଦେଇ ହେଳା ।
ଏହି ସମୟେ ସେଠାରେ ବିଧି ଯୋଗବଶେ
ପ୍ରବେଶ ହୋଇଲେ ଔର୍ବ ତପସ୍ୱୀ ହରଷେ ।
ସଙ୍ଗରେ ଯୌବନବତୀ କନ୍ୟାଟିଏ ଧରି
ଯାଉଥିଲେ ତାକୁ ବିଭା ଦେବା ଇଚ୍ଛା କରି ।
ସେହି କନ୍ୟା ମନେ ମନେ ଦୁର୍ବାସା ଋଷିଙ୍କୁ
ବରଣ କରି ସେ କଥା ଜଣାନ୍ତେ ପିତାଙ୍କୁ ।
ସେ ଆଶ୍ରମଠାରେ ଆସି ହେଲେ ଉପସ୍ଥିତ
କହିବାକୁ ଦୁର୍ବାସାଙ୍କୁ ସକଳ ବୃତ୍ତାନ୍ତ ।
ବ୍ରହ୍ମାଙ୍କ ଊରୁ ଦେଶରୁ ସେ ମୁନିଙ୍କ ଜନ୍ମ
ହୋଇଥିବାରୁଟି ଔର୍ବ ହେଲା ତାଙ୍କ ନାମ ।
କନ୍ୟାଟି ମଧ୍ୟ ତାହାଙ୍କ ଜାନୁରୁ ଉତ୍ପନ୍ନ
ହେଲା କେତେକାଳ ପରେ ଆହେ ତପୋଧନ
କନ୍ଦଳୀ ବୋଲିଣ ମୁନି ନାମ ତାର ଦେଲେ
ଆଶ୍ରମରେ ରଖି ଅତି ସ୍ନେହରେ ପାଳିଲେ ।
ଦୁର୍ବାସାଙ୍କ ସମୀପକୁ ବିବାହ ସକାଶେ
ଆଣିଲେ ସେହି କନ୍ୟାକୁ ଘେନି ନିଜ ପାଶେ
ଔର୍ବଙ୍କୁ ଦେଖି ଦୁର୍ବାସା ଆସନୁ ଉଠିଲେ
ପ୍ରଣାମ କରି ତାହାଙ୍କ ଆଗେ ଉଭା ହେଲେ ।
ଦୁର୍ବାସାଙ୍କୁ ସେହିପରି ଔର୍ବ ମହାମୁନି
ପୁଚ୍ଛିଲେ କୁଶଳ ବାର୍ତ୍ତା ନ ହୋଇଣ ଊନ ।
ସେ ଅନ୍ତେ ବୋଇଲେ ଆହେ ତପୀଗଣ ବର
ଏହି କନ୍ୟାଟି ଅଟଇ ତନୟା ମୋହର ।
ଅଯୋନି ସମ୍ଭବା ପୁଣି ତ୍ରୈଲୋକ୍ୟ ମୋହିନୀ
ସର୍ବଗୁଣ ସମନ୍ୱିତା ସତୀ ବିବେକିନୀ ।
କେବଳ ଗୋଟିଏ ଦୋଷ ଅଛି ଏହାଠାରେ
ସବୁବେଳେ କଟୁ କଥା କହଇ ମୁଖରେ ।
ଆପଣଙ୍କ କଥା ଶୁଣି ବାଳକ ମୁଖରୁ
ବରିଅଛି ଆପଣଙ୍କୁ ଯୌବନକାଳରୁ ।
ବହୁତ ଗୁଣ ପ୍ରକାଶ ହୁଅଇ ଯହିଁରେ
ତ୍ୟାଜ୍ୟ ନୁହଇ ସେ ଏକ ଦୋଷ ସକାଶରେ
ଏ ସକାଶୁ ମୋର ବୋଲେ ଏହାକୁ ଗ୍ରହଣ
କରନ୍ତୁ ଆପଣ କିଛି ନ ବିଚାରି ମନ ।
ଏରୂପେ ଦୁର୍ବାସା ଶୁଣି ଔର୍ବଙ୍କ ଭାଷିତ
ହରଷ ଶୋକରେ କ୍ଷଣେ ହେଲେ ଅଭିଭୂତ ।
ସେ ଅନ୍ତରେ କନ୍ୟାପରେ ଦୃଷ୍ଟି ପକାଇଲେ
ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ହୋଇଅଛି ସେ ଦେଖିଲେ
ଶରତ ପାର୍ବଣ ଚନ୍ଦ୍ର ସଦୃଶ ବଦନ
ବିକଶିତ ପଦ୍ମପତ୍ର ବିଶାଳ ଲୋଚନ ।
ନବ ଯଉବନେ ଅଙ୍ଗ ଦିଶେ ମନୋହର
ବିସ୍ତୃତ ନିତମ୍ବ ଉଚ୍ଚ ପୀନ ପୟୋଧର ।
ସସ୍ମିତ ଡାଳିମ୍ବ ବୀଜ ତୁଲ୍ୟ ଦନ୍ତ ଯୁକ୍ତ
ମୁଖ ମଣ୍ଡଳର କାନ୍ତି ଅତ୍ୟନ୍ତ ଅଦ୍ଭୁତ ।
ବହ୍ନି ଶୁଦ୍ଧ ଦିବ୍ୟ ବାସ ପରିଧାନ କରି
ଶୋଭିତ ଦିଶଇ ନାନା ଅଳଙ୍କାର ଭରି ।
ତାକୁ ଦେଖି କାମଶରେ ପୀଡ଼ା ତ ପାଇଲେ
ବିରସ ହୋଇଣ ଚହୁଁ ବଚନ କହିଲେ ।
ବୋଇଲେ ଶୁଣିମା ହେଉ ଆହେ ମହାଯତି
ଧର୍ମକର୍ମ ବିରୋଧିନୀ ଅଟେ ହ୍ରେସ ଜାତ ।

ମୂଢଙ୍କ ମନରେ ଯେଷ୍ଟ ବନ୍ଧା ଅନୁଶୟ
ତା ଯୋଗରେ ହୁଏ ମୋହ ମାତ୍ସର୍ଯ୍ୟ ଉଦୟ ।
ଈର୍ଷାର ବନ୍ଧନ ବୃଥା ନିଗଡ଼ ଯେ ଜାଣ
ଛିନ୍ନ କରିବାକୁ ତାକୁ ନୁହେ କେ ସଜନ ।
ଭୋଗ ଶେଷ ହେବା ଯାଏ ଭୋଗ୍ୟବସ୍ତୁ ଥାଏ
ନିଃଶେଷରେ କେଉଁଆଡ଼େ ଲୀନ ହୋଇଯାଏ ।
ଜୀବ ଯିବାଯାଏ ଥାଏ ଇନ୍ଦ୍ରିୟ ବାସନା
ବିଦ୍ୟା ରହିଥାଏ ଅନୁଶୀଳନରେ ସିନା ।
ଅନୁଶୀଳନ ଯୋଗରେ ରହିଥାଏ ମତି
କିନ୍ତୁ ବସ୍ତୁ ଜଳିଯାଏ ରହେ ପ୍ରିୟବସ୍ତି ।
ସସ୍ତ୍ରୀକ ପୁରୁଷ ଯେତେ ଜନ୍ମ ପାଉଥିବ
କାମିନୀ ସମ୍ବନ୍ଧ ତାକୁ କେବେ ନ ଛାଡ଼ିବ ।
ଯେ ଲୋକ ନୋହିବ ଆଉ ଜନମ ଖଣ୍ଡିତ
କରୁଣେ ଚର୍ଚ୍ଚିରେ ଅବା ହୋଇବ ସେ ମୁକ୍ତ ।
ସବୁବେଳେ ଚିନ୍ତଇ ମୁଁ ଶ୍ରୀକୃଷ୍ଣଙ୍କ ପାଦ
ସେ କାର୍ଯ୍ୟରେ ଆସି ଏବେ ପଡ଼ିଲି ପ୍ରମାଦ ।
ନ ଜାଣଇ କେଉଁ ପୂର୍ବ ଦୁଷ୍କୃତ ଫଳରେ
ପୁଂଶ୍ଚଳୀର କାମକ୍ରୀଡ଼ା ଦେଖିଲି ନେତ୍ରରେ ।
ସେହିଦିନଠାରୁ ମନ ଚଞ୍ଚଳ ହୋଇଲା
ଧାତା ଆଣି ତାର ଉପଯୁକ୍ତ ଶାସ୍ତି ଦେଲା ।
କିନ୍ତୁ ଯାହା କହୁଅଛି ଶୁଣ ମନ ଦେଇ
ତୁମ୍ଭ କନ୍ୟାର ଭର୍ତ୍ସନା ସହୁଥିବି ମୁହିଁ ।
ଶତେଥର ଅପରାଧ ସହନ କରିବି
ତହିଁରୁ ଅଧିକ ହେଲେ ଦଣ୍ଡ ନିଶ୍ଚେ ଦେବି ।
ସ୍ତ୍ରୀଙ୍କର କଟୁବାକ୍ୟ ସହନ ଯେ କରେ
ନିନ୍ଦିତ ହୁଅଇ ସେହୁ ଜଗତ ମଧ୍ୟରେ ।
ତୁମ୍ଭ ଆଜ୍ଞାରେ ଏହାକୁ କରିବି ଗ୍ରହଣ
ସେ କଥା ସତ୍ୟ ମୋହର ହେଲା ବୋଲିଜାଣ ।
ଏକାନ୍ତରେ ଉପସ୍ଥିତ ହୋଇଲେ ଯୁବତୀ
ନିରାଶ ନ କରି ତାକୁ କରିବ ତୃପତି ।
ଧର୍ମ ଭୟରେ ଯେ ପରିତ୍ୟାଗ ତାକୁ କରେ
ପଡ଼ଇ ସେ ଅନ୍ତେ କାଳସୂତ୍ର ନରକରେ ।
ଏମନ୍ତ କହି ଦୁର୍ବାସା ବିରତ ହୋଇଲେ
ତାହାଶୁଣି ଔର୍ବ ତାଙ୍କୁ କନ୍ୟା ସମର୍ପିଲେ ।
ବେଦଉକ୍ତ ବିଧାନରେ ସମର୍ପଣ କରି
ଗୋବଦନ କଲେ କଞ୍ଚିତେ ଅଜ୍ଞାମଙ୍କ ପରି ।

ସ୍ୱଭାବେ ବଞ୍ଛିତ ଦୁଃଖ ବନ୍ଧୁଜନଙ୍କର
ଦୁଃସହ ହୁଅଇ ଯେହ୍ନେ କୁଳିଶ ପ୍ରହାର ।
ଅଳପ ମୂର୍ଚ୍ଛିତ ହୋଇ ପୁଣି ଚେତା ପାଇ
କନ୍ୟାକୁ କହିଲେ ନାନା ପ୍ରକାର ବୁଝାଇ ।
ବୋଇଲେ ଗୋ ବତ୍ସେ ନିତ ବଚନକୁ ଶୁଣ
ହିତତଥ୍ୟ ଅଟଇ ଯେ ବେଦୋକ୍ତ ପ୍ରମାଣ ।
କାମିନୀର ଇହ ପରେ ବନ୍ଧୁ ଅଟେ ପତି
ତାହାକୁ ଛାଡ଼ିଲେ ଆଉ ନ ମିଳଇ ଗତି ।
ଦେବ ପୂଜା ବ୍ରତ ଦାନ ଜପ ଉପବାସ
ଏ ସବୁ ନୁହଇ ପତି ସେବାର ସଦୃଶ ।
ପତିଭକ୍ତି ଥିଲେ ଅନ୍ୟ ଧର୍ମରେ ବିଶେଷ
ଫଳ ଅଛି ବୋଲି କେବେ ନ ଘେନ ମାନସ
ସେହିପରି ପତିଭକ୍ତି ନ ଥିବା ସ୍ତ୍ରୀଙ୍କର
ଅନ୍ୟ ଧର୍ମେ ଫଳ ଅଛି ବୋଲି ନ ବିଚାର ।
ଏ ସକାଶୁ କହୁଅଛି ସକଳ ପ୍ରକାରେ
ମନ ଦେଇଥିବୁ ନିତି ପତିଙ୍କ ସେବାରେ ।
ପରିହାସେ କ୍ରୋଧରେ ବା ଭ୍ରମେ ଭରତାଙ୍କୁ
ନ କହିବୁ କେବେହେଲେ ଅପ୍ରିୟ ବାକ୍ୟକୁ ।
ବଚନ ଯୋଗ ଦୁଷ୍ଟା ଯେ କାମିନୀ ଅଟଇ
ପଦ୍ଧନ୍ଦ କରନ୍ତେ ତାର ପ୍ରାୟଶ୍ଚିତ୍ତ ନାହିଁ ।
ଯେତେ ଧର୍ମ କଲେ ମଧ୍ୟ ପତିଙ୍କୁ ସନ୍ତୋଷ
ନ କଲେ ସମସ୍ତ ହୁଏ କ୍ଷଣକେ ବିନାଶ ।
ଏହିରୂପେ ଉପଦେଶ ଦେଇଣ କନ୍ୟାକୁ
ଗଲେ ଔର୍ବ ମହାମୁନି ନିଜ ଆଶ୍ରମକୁ ।
ଦୁର୍ବାସା ଭାରିଯା କୁଳେ ସ୍ୱସ୍ଥାନରେ ରହି
ଦିନ ନେଲେ ତାର ରୂପ ଦେଖି ସୁଖୀ ହୋଇ
ଭୋଗଇଚ୍ଛା କଲାମାତ୍ରେ ତାହାଙ୍କ ପାଖରେ
କାମିନୀ ଗୋଟିଏ ପ୍ରବେଶିଲା ସ୍ୱଇଚ୍ଛାରେ ।
ଦଇବର ଘଟନା ତ ଅଟଇ ଅଦ୍ଭୁତ
ନ ଜାଣି ପାରଇ ଲୋକ ବିଧାତାଙ୍କ କୃତ୍ୟ ।
ସେ ଅନ୍ତରେ ମୁନିବର ରତି ସୁଖ ଆଶେ
ନିର୍ମାଣ କଲେ ଉତ୍ତମ ଶଯ୍ୟାଟିଏ ପାଶେ ।
ସେହିଠାରେ ଶୁଭକ୍ଷଣେ କନ୍ଦଳୀକୁ କୋଳେ
ଘେନିଣ ଶୟନ କଲେ କାମ ରସ ଭୋଳେ ।
ଜନ୍ମକାଳୁ କାମକ୍ରୀଡ଼ା କ୍ରମକୁ ସେ ମୁନି
ଜାଣି ନ ଥିଲେ ତଥାପି ସେ ତ ଶାସ୍ତ୍ରଜ୍ଞାନୀ ।

ତତକ୍ଷଣେ ବନ୍ଧେ ରତ କଲେ ସନ୍ଧ୍ୟରେ
ତୋଷିଲେ ପ୍ରିୟାର ମନ ଉତ୍ତମ ପ୍ରକାରେ
ସେହିରୂପେ ଦୁଃଖୀନେକ ସୁଖ ଭୋଗ କଲେ
ପ୍ରଥମରେ ଜନମନ୍ତ୍ର ଦେଉଥାଏ ବଳେ ।
ସେହିରୂପେ ମୁନି ନିଜ ଜପ ତପ ଛାଡ଼ି
ଦିନନେଲେ କାମିନୀର ପ୍ରେମରସେ ବୁଡ଼ି ।
ଅଳପ କାଳ ଅନ୍ତେ ହୁଅନ୍ତେ କନ୍ଦଳୀ
ପତିଙ୍କୁ ଭର୍ତ୍ସନା କରି ଆରମ୍ଭିଲା କଳି ।
ପ୍ରତିଦିନ ବିନା କାରଣରେ ସେ ଅବଳା
କଟୁ ବଚନ କହିଲା ଫିଟାଇଣ ଗଳା
ଦୁର୍ବାସା ମୁନି ତ ପୂର୍ବୁ ସତ୍ୟ କରିଥିଲେ
ତେଣୁ ସହିଯାଇ ସବୁ ଦୋଷ ସହିନେଲେ ।
କୋପ ଶାନ୍ତ ହେବାପାଇଁ ଅନେକ ପ୍ରକାରେ
ବୋଧ କରୁଥାନ୍ତି ବସି ତାର ସମୀପରେ ।
ତଥାପି ସେ ତିଳେ ହେଲେ ନ କରେ ଖାତିର
ପୁନଃପୁନଃ ଗାଳି ଦେଉଥାଏ ପୂର୍ବପରି ।
ଏହିପରି ଶତାଧିକ ଥିଲା ତାର ଦୋଷ
କ୍ଷମା କଲେ ମୁନି ଦୟା କରିଣ ମାନସ ।
ଅତିଶୟ ହେଲା ଯେତେବେଳେ ତହୁଁ ତଳି
ରଖି ନ ପାରିଲେ ଆଉ କ୍ରୋଧକୁ ସମ୍ଭାଳି ।
ବୋଇଲେ ଯା ଅକାରଣେ ଗାଳିଦେଉମୋତେ
ଭସ୍ମ ହୋଇଯାଅ ଶାପ ଦେଉଛି ମୁଁ ତୋତେ ।
ତାହାଙ୍କ ବଚନମାତ୍ରେ କନ୍ଦଳୀ ତରୁଣୀ
ପୋଡ଼ିକରି ଭସ୍ମରାଶି ହେଲା ସେହିକ୍ଷଣି ।
ଶରୀର ଲୀନ ହୁଅନ୍ତେ ଜୀବ ଛାଡ଼ିଗଲା
ଅନ୍ତରୀକ୍ଷେ ରହି ମୁନିବରଙ୍କୁ କହିଲା ।
ବୋଇଲା ହେ ନାଥ ତୁମ୍ଭେ ଅଟ ସର୍ବଦର୍ଶୀ
ଜାଣିଅଛ ସର୍ବଶାସ୍ତ୍ର ତତ୍ତ୍ୱକୁ ବିଶେଷି ।
ପ୍ରିୟ ବା ଅପ୍ରିୟ ବାକ୍ୟ କ୍ରୋଧ ବା ସନ୍ତୋଷ
କାମମୋହ ଅବା ଲୋଭ କାମକ୍ଷୁଧା ଶେଷ ।
ସ୍ଥୂଳତ୍ୱ କୃଶତ୍ୱ ଜନ୍ମ ମରଣ ସଂଯୋଗ
ବିଯୋଗ ଆଦି ଧର୍ମକୁ ଦେହ କରେ ଭୋଗ
ସତ୍ତ୍ୱ ରଜ ତମ ଏହିପରି ତିନିଗୁଣ
ଶରୀରରେ ପ୍ରକୃତି ସବୁ ରହିଥାନ୍ତି ଜାଣ ।
କେଉଁଠାରେ କେଉଁଗୁଣ ଅଧିକ ବା ଊଣା
ହୁଅଇ ଅଳ୍ପମାତ୍ରରେ ଆହେ ମହାମନା ।

ସତ୍ତ୍ୱଗୁଣ ଆଧିକ୍ୟରେ ଦୟା ମୁକ୍ତି ଇଚ୍ଛା
ରଜଗୁଣରେ ସେପରି କର୍ମଭୋଗ ବାଞ୍ଛା ।
ତମଗୁଣେ ଈର୍ଷା ଦ୍ୱେଷ କ୍ରୋଧ ଅହଙ୍କାର
ଦେହରେ ସର୍ବଦା କରି ରହିଥାନ୍ତି ଘର ।
କ୍ରୋଧରେ ଦୁଷ୍ଟବଚନ କହଇ ମନୁଷ୍ୟ
ତହିଁରୁ ଶତ୍ରୁତା ଜାତ ହୁଅଇ ଅବଶ୍ୟ ।
ଦୁରୁକ୍ତ ଯୋଗେ ମୁଁ ଯେତେ ଦୋଷ କରିଅଛି
ସତ୍ତ୍ୱସ୍ଥ ଗୁଣରେ ତାହା ନ ଧରିବ କିଛି ।
କି କରିବ କେଉଁଠାରେ ଲଭିବ ଜନମ
ତୁମ୍ଭ ବିନା ପତି ମୋର ନୋହିବେ କେ ଆନ
ଈଶ୍ୱରଙ୍କଠାରେ ଏହି ପ୍ରାର୍ଥନା ମୋହର
ଯାଉଛି ବିଦାୟ ଦିଅ ଆହେ ପ୍ରାଣେଶ୍ୱର ।
ଏମନ୍ତ କହିଣ ଜୀବ ମଉନ ହୋଇଲା
ତାହା ଶୁଣି ଦୁର୍ବାସାଙ୍କ ଖେଦ ଜନମିଲା ।
ଶୋକରେ ଅଧୀର ହୋଇ ମୁନିଗଣ ଈଶ
ଜ୍ଞାନ ହରାଇ ପଡ଼ିଲେ ହୁଅନ୍ତେ ହତାଶ ।
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲେ
ପ୍ରାଣତ୍ୟାଗ କରିବାକୁ ମନେ ବିଚାରିଲେ ।
ତପବଳେ ଇନ୍ଦ୍ରିୟଙ୍କୁ ଜିଣିଥିଲେ ସେହି
କାମିନୀ ବିରହ ଦୁଃଖ ନ ପାରିଲେ ସହି ।
ସ୍ତ୍ରୀ ବିଚ୍ଛେଦଠାରୁ ବଳି ଖେଦ ଜଗତରେ
ନ ଥିବ କେଉଁ ସ୍ଥାନରେ କେଉଁ ପ୍ରକାରେ ।
ଯୋଗାସନେ ବସି ମୁନି ଜୀବନକୁ ତ୍ୟଜି
ଛାଡ଼ିବାକୁ ବିଚାରନ୍ତେ ବ୍ରହ୍ମରନ୍ଧ୍ର ଭେଦି ।
ଜଗତ କରତା ହରି ସେ କଥା ଜାଣିଲେ
ବ୍ରାହ୍ମଣ ବାଳକ ରୂପେ ଆସିଣ ମିଳିଲେ ।
ଦଣ୍ଡଛତ୍ର ଅକ୍ଷମାଳା ଯଷ୍ଟି ଭିକ୍ଷାପାତ୍ର
ଧାରଣ କରିଅଛନ୍ତି ସ୍ୱହସ୍ତରେ ମାତ୍ର ।
ତାଙ୍କୁ ଦେଖି ମୁନି ବେଗେ ଯୋଗାସନ ଛାଡ଼ି
ପ୍ରଣାମ କଲେ ସେକାଳେ ବେନିକର ଯୋଡ଼ି ।
ଯଥାବିଧି ପୂଜାକରି ଆସନେ ବସାଇ
ପଚାରିଲେ ନାନାଶୁଭ ସମ୍ବାଦକୁ ତହିଁ ।
ଆଶୀର୍ବାଦ କରି ଦ୍ୱିଜରୂପୀ ନାରାୟଣ
ବୋଇଲେ ହେ ମୁନିବର ଆମ୍ଭଠାରୁ ଶୁଣ ।

ଗୁରୁ ତୁମ୍ଭଙ୍କ ପ୍ରସାଦରେ ସବୁକଥା ତୁମ୍ଭେ
ବୁଝିଅଛ ଏହା ଭଲଭାବ ଜାଣୁ ଆମ୍ଭେ ।
କେଉଁ ତତ୍ତ୍ୱ ପର୍ଯ୍ୟନ୍ତ ଅବା ମୁଁ ତୁମ୍ଭଙ୍କୁ
ଉପଦେଶ ଦେଇ ପାର ତୁମ୍ଭେ ଜଗତକୁ ।
ତଥାପି ଶୋକରେ ଯାହା ହେଉଛ ଅଧୀର
ଏଥିପାଇଁ କହୁଅଛୁ ଶୁଣ ହୋଇ ସ୍ଥିର ।
ତପସ୍ୟା ଅଟଇ ଦ୍ୱିଜ ଜାତିର ଧରମ
ତାହା ଛାଡ଼ି ଏବେ ତୁମ୍ଭେ କରୁଛ କି କର୍ମ ।
କାହାର କେ ପତ୍ନୀ ଅବା କାହାର କେ କାନ୍ତ
ତହିଁରେ କଦାପି ଭ୍ରମ ନୁହେ ଜ୍ଞାନବନ୍ତ ।
ମୂର୍ଖଙ୍କ ବଞ୍ଚନା ପାଇଁ ମାୟାରେ ଶ୍ରୀହରି
ଥୁଆଇ ଅଛନ୍ତି ମୋହଜାଲ ଏହିପରି ।
ଯାହାକୁ ସ୍ମରଣ କରୁଅଛ ମୁନିବର
ଅଳକ ଭାର୍ଯ୍ୟା ସେହି ଅଟଇ ତୁମ୍ଭର ।
ଯେ ସକାଶୁ ଅଳ୍ପକାଳେ ଅଦୃଶ୍ୟ ହୋଇଲା
ଥାଇଁଥିବାବେଳେ କଟୁବାକ୍ୟ କହିଥିଲା ।
ଶ୍ରୀହରିଙ୍କ ସହୋଦର ବସୁଦେବ ସୁତା
ପାର୍ବତୀ ଦେବୀଙ୍କ ଅଂଶେ ହୋଇବେ ସମ୍ଭୂତା ।
ସୁଶୀଳା ନାମରେ ସେହୁ ପଣ୍ଡିତ ହେବେ
ସବୁବେଳେ ତୁମ୍ଭ ପତ୍ନୀ ହୋଇଣ ରହିବେ ।
ବୃଥାରେ କାହିଁକି ନଷ୍ଟ କରୁଛ ସମସ୍ତ
ତପସ୍ୟା କରିବା ପାଇଁ ପୁଣି ମନସ୍ଥ ।
ଅତି ଉଚ୍ଛିତ ଯେ ହେବ ତାହାର ଦମନ
କରିବା ଉଚିତ ଅଟେ ବୋଲିକରି ଜାଣ ।
ଏହିରୂପେ କହି ଦ୍ୱିଜରୂପୀ ନରହରି
ଅନ୍ତର୍ଦ୍ଧାନ ହେଲେ ସ୍ୱହୁଁ ସ୍ୱହୁଁ ତପସ୍ୱୀ ।
ଆହେ ନାରଦ ସେଦିନୁ ପୃଥିବୀ ମଧ୍ୟରେ
କନ୍ଦଳୀ କନ୍ଦଳୀଜାତି ହେଲା ସବୁଠାରେ ।
ତାଳବନେ ସାହସିକ ଗର୍ଦ୍ଦଭ ହୋଇଲା
ତିଳୋତ୍ତମା ମଧ୍ୟ ବାଣାପୁତ୍ରରେ ଜନମିଲା ।
ଶ୍ରୀକୃଷ୍ଣଙ୍କ ପରଶରେ ସାହସିକ ଦୈତ୍ୟ
ଅନିରୁଦ୍ଧ ଯୋଗେ ତିଳୋତ୍ତମା ହେଲା ମୁକ୍ତ ।
ଶୁଣିଲ ତ ଶ୍ରୀକୃଷ୍ଣଙ୍କ ଚରିତ ଅପାର
ଆଉ କି ଶୁଣିବା ଇଚ୍ଛା ଥିଲେ ତା ପଚାର ।
ଏହିଠାରେ ବଳପୁତ୍ର ତିଳୋତ୍ତମାଙ୍କର
ମୁକତି ପ୍ରସଙ୍ଗ ଶେଷ କଲେ ଷେଷଛାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଋଷିଶ୍ରେଷ୍ଠ ଦୁର୍ବାସାଙ୍କର ଦାରପରିଗ୍ରହ ଓ ବଳପୁତ୍ର ଏବଂ ମେନକାର ମୁକ୍ତି କଥନେ ନାମ ଚତୁର୍ବିଂଶୋଽଧ୍ୟାୟ ।

—*—

## ପଞ୍ଚବିଂଶ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା ଋଷିଙ୍କର ମୋକ୍ଷଣ

## ବୃତ୍ତାନ୍ତ ବିବରଣ

ନାରଦ ବୋଇଲେ ନାରାୟଣ ମୁନିଈଶ
ଶ୍ରୀହରିଙ୍କ ଚରିତକୁ ଶୁଣି ହେଲି ତୋଷ ।
ଆଉ କେତେକ ବିଷୟ ପଚାରୁଛି ଏବେ
ଦୟାକରି ଆପଣ ତା କହିବା ହୋଇବେ ।
ଦୁର୍ବାସା ମୁନିଙ୍କ ଶାପେ ଔର୍ବ ଋଷି ସୁତା
ଭସ୍ମ ହେବା ପରେ ଶୁଣିକରି ସେ ବାରତା
ଔର୍ବ ପୁଣି କି ବିଚାର କଲେ ତାହା କହ
ଶୁଣିବାପାଇଁକି ମୋର ହେଉଅଛି ସ୍ପୃହ ।
ତାହା ଶୁଣି ନାରାୟଣ ବୋଇଲେ ସେ ଦିନେ
ସରସ୍ୱତୀ ନଦୀତଟେ ବସିଥିଲେ ଧ୍ୟାନେ ।
ସେ ସମୟେ ପବନରେ ଆକାଶରୁ ଖସି
ବସ୍ତ୍ରଖଣ୍ଡେ ଅକସ୍ମାତେ ପଡ଼ିଗଲା ଆସି ।
ତାହା ଦେଖି ତପ ଛାଡ଼ି ମୁନି ତତକାଳେ
ଯୋଗବଳରେ ସକଳ କଥା ବୁଝିନେଲେ ।
ଜାଣିଲେ କନ୍ୟାକୁ ନଷ୍ଟ ପଡ଼ିଲା ବିପତ୍ତି
ସେ ସକାଶୁ ମାନସରେ ଖେଦ ବହି ଅତି ।

କାନ୍ଦ କାନ୍ଦ ଜାମାତାଙ୍କ ଆଶ୍ରମକୁ ଗଲେ
କନ୍ୟାକୁ ମୃତ ଦେଖି ଧରଣୀ ଗଡ଼ିଲେ ।
ଶ୍ୱଶୁରଙ୍କ ଆର୍ତ୍ତସ୍ୱର ଶୁଣନ୍ତେ ଦୁର୍ବାସା
ମହାଭୟେ ଆସି ତାଙ୍କ ହୃଦେ କଲା ବସା ।
ବାହାରକୁ ସେହିକ୍ଷଣି ଭୟେ ହୋଇ ଗଲେ
ଔର୍ବମୁନିଙ୍କର ପାଦ ଧରି ଶୋକ କଲେ ।
ଆମୂଳ କରି ସେ ଅନ୍ତେ ସକଳ ବୃତ୍ତାନ୍ତ
କହିଲେ ପ୍ରିୟା ସହିତେ ଘଟିଲା ଯେମନ୍ତ ।
ତାହା ଶୁଣି ଋଷି ଅତିଶୟ ଶୋକ କଲେ
ପୁନଃପୁନଃ ମହୀପରେ ସତ୍ତ୍ୱରେ ଲୋଟିଲେ ।
ମୁହୂର୍ତ୍ତେ ମଧ୍ୟରେ ଲୋପ ହୋଇବାରୁ ଜ୍ଞାନ
ନିଶ୍ଚେଷ୍ଟ ହୋଇଣ ଚଳେ ନିଃଶ୍ୱାସ ପବନ ।
ଦୁର୍ବାସା ଜାଣିଲେ ଦେହୁ ପ୍ରାଣ ଛାଡ଼ିଗଲା
ସେ ସକାଶୁ ତାଙ୍କ ମନ ସଙ୍କଟ ମଣିଲା ।
ଶୀତଳଜଳ ମୁଖରେ ସିଞ୍ଚିଲେ ସେ ଆଣି
ଆବର ବଞ୍ଚିଲେ ହସ୍ତେ ତାଳବୃନ୍ତ ଘେନି ।
ଘଡ଼ିଏ ଅନ୍ତରେ ପୁଣି ଚେତନା ପାଇଲେ
ଜାମାତା ଆଗରେ ବସିଅଛନ୍ତି ଦେଖିଲେ ।
ଶୋକରେ ତ ଧୈର୍ଯ୍ୟତ୍ୟାଗ କରିଥିଲେ ସେହି
କହିଲେ ନୟନ ବେନି ରଙ୍ଗ କରିଦେଇ ।
ବୋଇଲେ ତୁମ୍ଭେ ତ ବ୍ରହ୍ମା ଅଂଶେ ଅଟ ଜାତ
ଆବର ପଢ଼ିଛ ବେଦ ଶାସ୍ତ୍ରାଦି ବହୁତ ।
ତଥାପି ଅଜ୍ଞାନ ଲୋକ ଆଚରଣ କଲ
ଜାଣୁଅଛୁ ଏହା ତୁମ୍ଭପକ୍ଷେ ନୁହେ ଭଲ ।
ଜଗତ କର୍ତ୍ତା ଶଙ୍କର ତୁମ୍ଭର ତ ଗୁରୁ
ଅଶେଷ ଜ୍ଞାନ ଲଭିଛ ତାଙ୍କ ସକାଶରୁ ।
ତୁମ୍ଭ ମାତା ଅନସୂୟା କମଳା ଅଂଶରେ
ଜାତ ହୋଇଛନ୍ତି ଏହି ମନୁଷ୍ୟ ଲୋକରେ ।
ତାଙ୍କଠାରୁ ଜନ୍ମି କର୍ପୀ ମତିଟି ତୁମ୍ଭର
ହୋଇଅଛି ଏଡ଼େ ଭଲ ଅଧର୍ମ ନଷ୍ଠୁର ।
ପ୍ରାଣରୁ ଅଧିକ ଅଟେ ମୋହର ଦୁଲଣୀ
ସ୍ନେହଭରେ ସମର୍ପିଲି ତୁମ୍ଭ ହସ୍ତେ ଆଣି ।
ସବୁଗୁଣ ପୂର୍ଣ୍ଣ ହୋଇଥିଲା ତାହାଠାରେ
ମାତ୍ର ସେ ଦୂଷିତା ଅଟେ ଅଳପ ଦୋଷରେ ।
ସେଥିପାଇଁ ତାକୁ ତୁମ୍ଭେ କଲ ଭସ୍ମସାତ
ଦୟାହୋଇ ତୁମ୍ଭ ହୃଦେ ନାହିଁ କି କିଞ୍ଚିତ ।
ବଚନ ଦୃଷ୍ଟାକୁ ଯେବେ ଋଷି ନ ପାଇବ
ତେବେ ତାହାକୁ ପାଶରୁ ଅନ୍ତର ନ କରିବ ।
ତୁମ୍ଭେ ତାହା ନ କରି ଯା ନେଲ ତାର ପ୍ରାଣ
ଏ ଯେନ ପାଇବ ପରାଭବ ନିଶ୍ଚେ ଜାଣ ।
ଏମନ୍ତ ବୋଲିଣ ମୁନିସୁତାକୁ ସୁମରି
ଶୋକରେ ଗଲେ ଆପଣା ଆଶ୍ରମକୁ ଫେରି ।
ଦୁର୍ବାସା ମୁନି ତ ମଧ୍ୟ ଶୋକ କରୁଥିଲେ
ଦ୍ୱିଗୁଣ ହୋଇ ସେ ଶୋକ ବଢ଼ିଲା କ୍ରୋଧେ
ଶୋକଅଗ୍ନି କାଳକ୍ରମେ ଜ୍ଞାନ ଭସ୍ମ ପାଇ
ଆଛ ହତ ହୋଇଥିବା ବେଳେ ଯେବେ ତହିଁ
ବନ୍ଧୁ ଦରଶନ ଶୁଷ୍କ କାଷ୍ଠ ତା ଉପରେ
ପଡ଼ିଲେ ଜଳଇ ତାହା ଅଧିକ ତେଜରେ ।
ସେହିପରି ମୁନିଙ୍କର ଅବସ୍ଥା ହୋଇଲା
ଘଡ଼ିଏ ଯାଏ ସୁସ୍ଥିର କରାଇ ନ ଦେଲା ।
ପ୍ରିୟାକୁ ସ୍ମରଣ କରି ବହୁତ କାନ୍ଦିଲେ
ଧୈର୍ଯ୍ୟ ପାଇଣ ପୁଣି ଜପ ଆରମ୍ଭିଲେ ।
କେତେକାଳ ଅନ୍ତେ ପରାଭବ ତାହାଙ୍କର
ହେଲା କ୍ରୋଧେ ଶାପ ଦେଇଥିଲେଟି ଶ୍ୱଶୁର ।
ନାରଦ ବୋଇଲେ ରୁଦ୍ରଅଂଶେ ଜାତହୋଇ
ଥିଲେ ଦୁର୍ବାସା ମହର୍ଷି ଜାଣିଅଛୁ ମୁହିଁ ।
ରୁଦ୍ରଙ୍କ ସମାନେ ତେଜ ଅଟେ ତାହାଙ୍କର
ତାଙ୍କୁ ପରାଭବ ଅବା ଦେବା କେଉଁ ନର ।
ଏକଥା ଶୁଣିବା ପାଇଁ ବଳୁଛି ମୋ ମନ
ବିଶଦ ଭାବରେ ତାହା କହ ତପୋଧନ ।
ନାରାୟଣ ବୋଇଲେ ହେ ଅମ୍ବରୀଷ ରାଜା
ସୂର୍ଯ୍ୟବଂଶେ ଜାତହୋଇ ପାଳୁଥିଲେ ପ୍ରଜା ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ତାହାଙ୍କର ମନ
ରହିଥାଏ ସବୁ ବେଳେ ହୋଇକରି ମଗ୍ନ ।
ରାଜ୍ୟ ଧନ ସୁଖଭୋଗ ଆଦି ଯେତେ କଥା
ତାହାଙ୍କ ମନକୁ ସ୍ପର୍ଶ ନ କରେ ସର୍ବଥା ।
ଏକାଦଶୀ ବ୍ରତରତ ଅଟନ୍ତି ସେ ରାଜା
କରୁଥାନ୍ତି ବଧିମତେ ଶ୍ରୀକୃଷ୍ଣଙ୍କୁ ପୂଜା ।
ତାଙ୍କ ରକ୍ଷା ସକାଶରେ ପ୍ରଭୁ ଜନାର୍ଦ୍ଦନ
ନିଯୁକ୍ତ କରାଇଥାନ୍ତି ଚକ୍ର ସୁଦର୍ଶନ ।
ଏହିରୂପ କ୍ରମେ ଗତ ହେଲା କେତେଦିନ
ଦିନେ ଏକାଦଶୀ ବ୍ରତ ସାରି ଯେ ରାଜନ ।

ଦ୍ୱାଦଶୀ ଦିନ ପ୍ରଭାତୁ ସ୍ନାନ ସନ୍ଧ୍ୟା ସାରି
ବିଧି ଅନୁସାରେ ନିତ୍ୟକର୍ମ ମାନ କରି ।
ବ୍ରାହ୍ମଣ ଭୋଜନ ଅନ୍ତେ ନିଜେ ନରପତି
ବ୍ରତର ପାରଣା କରିବାକୁ ବସିଛନ୍ତି ।
ଏହି ସମୟରୁ ଦୁର୍ବାସା ତପୀକୁଳଗଣ
ମିଳିଲେ ତାହାଙ୍କ ପାଶେ ଆସି ତତକ୍ଷଣ ।
କ୍ଷୁଧାରେ ଆତୁର ହୋଇଥିବା ପରି ସେହି
ଦିଶୁଥିଲେ ଅତିଶୟ କ୍ଳାନ୍ତଯୁକ୍ତ ହୋଇ ।
ଦଣ୍ଡକର ବେନି କରିଥିଲେ ସେ ବ୍ରାହ୍ମଣ
ଆଉର ତିଳକ ଧୌତ ଶୁକ୍ଳ ବସନ ।
ତାଙ୍କୁ ଦେଖି ନରପତି ଦଣ୍ଡବତ ହୋଇ
ବସିବାକୁ ସ୍ୱର୍ଣ୍ଣ ସିଂହାସନ ଦେଲେ ନେଇ ।
ଆଶୀର୍ବାଦ କରି ମୁନି ଉପବିଷ୍ଟ ହେଲେ
ଅନାମୟ ଆଦି ଶୁଭ ବିଷୟ ପୁଚ୍ଛିଲେ ।
ରାଜନ ବୋଇଲେ ଦେବ ଆଜ୍ଞା ହେବ ଯାହା
ଏହିକ୍ଷଣି ସାବଧାନେ କରିବି ମୁଁ ତାହା ।
ଦୁର୍ବାସା ବୋଇଲେ ମୁହିଁ ହୋଇଛି କ୍ଷୁଧାର୍ତ୍ତ
ଉତ୍ତମ ଭୋଜନ ଦେଇ ତୋଷିକର ଚିତ୍ତ ।
କିନ୍ତୁ ମୁହୂର୍ତ୍ତେ ବିଳମ୍ବ କର ନରରାଣ
ଅଘମର୍ଷଣ ମନ୍ତ୍ର ଜପି ଆସିବି ମୁଁ ପୁଣ ।
ଏମନ୍ତ ବୋଲି ସେଠାରୁ ଅନ୍ତର ହୋଇଲେ
ଅପେକ୍ଷା କରିଣ ରାଜା ସେଠାରେ ବସିଲେ ।
ରହୁଁ ରହୁଁ ଗତପ୍ରାୟ ହେଲା ଆସି ଦିନ
ତଥାପି ବାହୁଡ଼ି ନ ଆସିଲେ ତପୋଧନ ।
ଏହି ସମୟରେ ତହିଁ ବଶିଷ୍ଠ ମହର୍ଷି
ଅକସ୍ମାତେ ଉପଗତ ହୋଇଥିଲେ ଆସି ।
ରାଜାଙ୍କର ଅଟନ୍ତି ସେ ମନ୍ତ୍ରଦାତା ଗୁରୁ
ଦେଖି ତାଙ୍କୁ ନୃପ ବେଗେ ଉଠି ଆସନରୁ
ପ୍ରଣାମ କରିଣ ଆସନରେ ବସାଇଲେ
ଦୁର୍ବାସା ମୁନି କହିବା କଥା ଜଣାଇଲେ ।
ଆଉରି ବୋଇଲେ ଦେବ ଦ୍ୱାଦଶୀ ପାରଣା
ଖଣ୍ଡିତ ହେବ ବୋଲି ମୋ ବୁଦ୍ଧିହୁଏ ଜଣା ।
ଏତେବେଳେ ଯାଏ ନ ଆସିଲେ ମୁନିବର
ଅସ୍ତହେବେ ପର ଏହିକ୍ଷଣି ଦିନକର ।
ଦିବସ ଶେଷ ହୋଇଲେ ଭଗ୍ନହେବ ବ୍ରତ
ବିଚାର କରିଣ କହ ହେବ ଯେ ଉଚିତ ।

ତାଶୁଣି ବଶିଷ୍ଠ ମୁନି ବୋଇଲେ ହେ ନୃପ
ଦ୍ୱାଦଶୀ ଅତୀତ ହେଲେ ଧର୍ମହେବ ଲୋପ ।
ଉପବାସ ଫଳନଷ୍ଟ ହେବାପରେ ପୁଣି
ବିନାଶ ପାଇବ ତୁମ୍ଭେ ଆହେ ନରମଣି ।
ବ୍ରତଅନ୍ତେ ଅତିଥିଙ୍କୁ ନ ଦେଇ ଭୋଜନ
ପାରଣା କଲେ ହୁଅଇ ନରକ ଗମନ ।
ଏ ସକାଶୁ ତୁମ୍ଭେ ଏବେ ଉପାୟେକ କର
ଯେରୂପେ ଅନିଷ୍ଟ କିଛି ନୋହିବ ତୁମ୍ଭର ।
ଶ୍ରୀକୃଷ୍ଣଙ୍କ ପାଦୋଦକ ସେବା କର ଆଣି
ଅକର୍ତ୍ତବ୍ୟ କଥା ନୁହଇ ସେ ଥାଅ ଜାଣି ।
ତହିଁରେ ଯେ ଉପବାସ ଫଳ ରକ୍ଷାହେବ
ଭୋଜନ ମଧ୍ୟରେ ପୁଣିଲେଖା ସେ ନୋହିବ ।
ଏମନ୍ତ କହି ବଶିଷ୍ଠ ନିଜସ୍ଥାନେ ଗଲେ
ନୃପତି ଶ୍ରୀକୃଷ୍ଣ ପାଦୋଦକ ସେବାକଲେ ।
ମୁହୂର୍ତ୍ତେ ଅନ୍ତରେ ତାଙ୍କ ପାଶରେ ଦୁର୍ବାସା
ପ୍ରବେଶ ହୋଇଲେ ଦେଇ ଭୋଜନରେ ଆଶା ।
ଯୋଗବଳେ ରାଜାଙ୍କର କଥା ସବୁ ଜାଣି
ଜଟା ଛିଣ୍ଡାଇଲେ କ୍ରୋଧେ ହୋଇ ଟାଣିଟୁଣି ।
ସେ ଜଟାରୁ ଅଗ୍ନିତୁଲ୍ୟ ପୁରୁଷ ଗୋଟିଏ
ଜାତ ହେଲା ଯେହିକ୍ଷଣି ଦେଖିଲେ ସର୍ବେଏଁ ।
ତା ହସ୍ତରେ ତୀକ୍ଷ୍ଣଧାର ଖଡ୍‌ଗଟାଏ ଥାଇ
ଅନ୍ତକର ଦଣ୍ଡପରି ନେତ୍ରକୁ ଦିଶଇ ।
କ୍ରୋଧଭରେ ସେ ପୁରୁଷ ରାଜାଙ୍କ ମୁଣ୍ଡକୁ
ଛିଣ୍ଡାଇବାପାଇଁ ଧାଇଁ ଆସିଲା ପାଶକୁ ।
ତାହାଦେଖି ସୁଦର୍ଶନ ସହି ନ ପାରିଲା
ସେ ପୁରୁଷ ମୁଣ୍ଡହାଣି ଦୁଇଖଣ୍ଡ କଲା ।
ସେ ଅନ୍ତରେ ଦୁର୍ବାସାଙ୍କୁ ମାରିବାକୁ ପୁଣି
ଆସିବାର ଦେଖି ଋଷି ମହାଭୟ ଘେନି ।
କର୍ତ୍ତବ୍ୟ ବିଷୟ ସ୍ଥିରକରି ନ ପାରିଲେ
ବିଳମ୍ବ ନ କରି ଧାଇଁ ପଳାଇଣ ଗଲେ ।
ତାହାଙ୍କର ପଛେ ପଛେ ସୁଦର୍ଶନ ଚକ୍ର
ଗୋଡ଼ାଇଲା ତିଳେ ହେଲେ ନ ହୋଇଣ ବକ୍ର ।
ପ୍ରଳୟ ଅନଳ ଶିଖା ସଦୃଶ୍ୟ ତାହାର
ଅଙ୍ଗରୁ କିରଣ ମାଳା ହୋଇଲା ବାହାର ।
ଚଉଦ ଭୁବନ ବୁଲି ଦୁର୍ବାସା ମହର୍ଷି
ବ୍ରହ୍ମାଙ୍କର ନିକଟରେ ପ୍ରବେଶିଲେ ଆସି ।

ରକ୍ଷାକର ରକ୍ଷାକର ବୋଲି ଡାକନ୍ତେଇ
ତାଙ୍କ ବେନପାଦ ଧରି ପଡ଼ିଲେକ ଶେଷେ ।
ଉଠାଇ ବିଧାତା ନିଜ କୋଳେ ବସାଇଲେ
ଆଦ୍ୟ ପ୍ରାନ୍ତକର ସବୁ ବିଷୟ ବୁଝିଲେ ।
ଦୁଃଖିତ ହୋଇଣ ତହୁଁ ବୋଇଲେ ହେ ବତ୍ସ
ତୁମ୍ଭେତ ଏବେ ବିଷ୍ଣୁଙ୍କ ଦ୍ରୋହୀ ହୋଇଅଛ
କାହା ବଳେ ବୈଷ୍ଣବଙ୍କୁ ଶାପ ଦେବାପାଇଁ
ସାହାସ କରି କ୍ରୋଧରେ ଯାଇଥିଲ ଧାଇଁ ।
ଯାହାକୁ ମାରିବାପାଇଁ ଇଚ୍ଛିବେ ଶ୍ରୀହରି
କେ ଅବା ହୋଇପାରିବ ତାର ରକ୍ଷାକାରୀ ।
କ୍ଷୁଦ୍ର ବା ମହତ ହେଉ ଶ୍ରୀକୃଷ୍ଣ ଭକତ
ତାକୁ ମାରିବା ସକାଶେ ନୁହେ କେ ସମର୍ଥ ।
ଭକ୍ତ ପାଶେ ସୁଦର୍ଶନ ଚକ୍ରକୁ ଶ୍ରୀହରି
ରଖାଇ ଥାଆନ୍ତି ସବୁବେଳେ ଦୟାକରି ।
ଯେଉଁ ମୂଢ଼ ବୈଷ୍ଣବଙ୍କ ଦ୍ୱେଷ ଆଚରଇ
ତାହାକୁ ଦଣ୍ଡ ଦିଅନ୍ତି ପ୍ରଭୁ ଗଦାସାଇଁ ।
ଏ ସକାଶୁ ଏଥିଠାରୁ ଯାଅ ଏବେ ତୁମ୍ଭେ
ନୋହିଲେ ତୁମ୍ଭ ସହିତେ ନାଶଯିବୁ ଆମ୍ଭେ
ଆବର ବ୍ରହ୍ମଲୋକରେ ରହିଛନ୍ତି ଯେତେ
ସମସ୍ତଙ୍କୁ ସୁଦର୍ଶନ ମାରିବ କହୁଁଛି ।
ଏହିରୂପେ ବ୍ରହ୍ମାଙ୍କର ବଚନକୁ ଶୁଣି
ତ୍ରସ୍ତ ହୋଇଣ ଦୁର୍ବାସା ଋଷିକୁଳମଣି ।
କୋତୁଁ ଉଠି ଜବବେଗେ ପଳାଇଣ ଗଲେ
କୈଳାସ ଭବନେ ଯାଇଁ ପ୍ରବେଶ ହୋଇଲେ
ଶିବଙ୍କ ଚରଣ ଧରି ବୋଇଲେ ହେ ଦେବ
ତୁମ୍ଭେ ନ ରଖିଲେ ମୋର ପ୍ରାଣ ନିଷ୍ଟେ ଯିବ
ଶଙ୍କର ତାହାଙ୍କ ବାକ୍ୟ ଶୁଣି ଯୋଗବଳେ
ସକଳ ବିଷୟ ନିଜେ ଅବଗତ କଲେ ।
ସେ ଅନ୍ତେ ବୋଇଲେ ସ୍ଥିର ହୁଅ ଦ୍ୱିଜବର
ଶୁଣ ଥରେ ମାତ୍ର ମୋର କହିବା ଉତ୍ତର ।
ଧାତାଙ୍କର ପୌତ୍ର ତୁମ୍ଭେ ଅତ୍ରିଙ୍କର ସୁତ
ଜାଣି ଅଛ ସର୍ବବେଦ ଧର୍ମଶାସ୍ତ୍ର ତତ୍ତ୍ୱ ।
ତଥାପି ମୂର୍ଖପରାୟେ ନୀଚକର୍ମ କଲ
ସେ ସେନ ତୁମ୍ଭଙ୍କୁ କେହି ନ ବୋଲିବେ ଭଲ
ବେଦ ପୁରାଣରେ ନିରୂପିତ ଯେ ଈଶ୍ୱର
ଜାଣି ନ ପାରିଲ ପ୍ରଭୁପଣ ତାହାଙ୍କର ।
ବ୍ରହ୍ମା ରୁଦ୍ର ଧର୍ମ ବସୁ ବାସବ ଯେ ମୁହିଁ
ଯାହାଙ୍କ ମାୟାବଳରେ ଅଛୁ ଜାତହୋଇ ।
ପୁଣି ଯଥ ସମୟରେ ହେଉଛୁ ବିଲୀନ
ତାଙ୍କ ଭକ୍ତକୁ ଯେ ତୁମ୍ଭେ ଦେଲ ଅପମାନ ।
ସେ ସକାଶୁ କ୍ରୋଧଭରେ ପ୍ରଭୁ ଗଦାଗ୍ରାହୀ
ଦେଲେ ସୁଦର୍ଶନ ନାମେ ଚକ୍ରକୁ ପଠାଇ ।
ତଥାପି ନ ଯାଇ ତୁମ୍ଭେ ତାହାଙ୍କ ପାଶକୁ
ଧାଇଁଅଛ ଏଣେ ତେଣେ ରକ୍ଷା ପାଇବାକୁ ।
ଭକ୍ତ ଅଟେ ଶ୍ରୀହରିଙ୍କ ଜୀବନ ସଦୃଶ
ସର୍ବଦା ରହନ୍ତି ସେହୁ ଭକ୍ତଜନ ପାଶ ।
ପ୍ରାଣରୁ ଅଧିକ ଲକ୍ଷ୍ମୀ ସରସ୍ୱତୀ ଦୁହେଁ
ସେସେବେଭକ୍ତକୁ ଦ୍ୱେଷ କରନ୍ତେ କେବେହେ
ତାହାଙ୍କୁ ତେଜନ୍ତେ ନିଷ୍ଟେ ପ୍ରଭୁ ଚକ୍ରଧର
ଆହେ ମୁନିବର ଏଥି ସନ୍ଦେହ ନ କର ।
ଈଶ୍ୱରଙ୍କ ପକ୍ଷେ ପ୍ରିୟ ଅପ୍ରିୟ ବା କେହି
ଶିଷ୍ଟ ଯେ ହୁଅଇ ତାକୁ ଭଜଥାନ୍ତି ସେହି ।
ମହାପ୍ରଳୟରେ ବିଶ୍ୱ ସଂସାର ବିନାଶ
ହେଲେ ମଧ୍ୟ ନ ମରେ ଯେ ଶ୍ରୀହରିଙ୍କ ଦାସ ।
ଏ ସକାଶୁ ଆହେ ଦ୍ୱିଜ ମୋ ବୋଲରେ ଯାଅ
ଶ୍ରୀହରି ଚରଣେ ପଡ଼ି ଦୁଃଖକୁ ଜଣାଅ ।
କରୁଣା ସାଗର ପ୍ରଭୁ ତୁମ୍ଭଙ୍କୁ ଅଭୟ
ଦେବେ ତାହାଙ୍କୁ ଶରଣ ଲେଉଟିଲେ ନିଶ୍ଚୟ ।
ଏହିରୂପେ ଦୁର୍ବାସାଙ୍କୁ କହୁଥିଲେ ହର
ମିଳିଲା ସେଠାରେ ସୁଦର୍ଶନ ଚକ୍ରବର ।
କୋଟିସୂର୍ଯ୍ୟ ତୁଲ୍ୟ ତାର ତେଜ ପ୍ରଭାବରେ
ଦଗ୍ଧ ହୋଇ କଇଳାସବାସୀଏ ସେଠାରେ ।
ଶିବଙ୍କୁ ବୋଇଲେ ପ୍ରଭୁ ରଖ ଆମ୍ଭ ପ୍ରାଣ
ନୋହିଲେ ସମସ୍ତେ ନାଶହେଲେ ବେଲି ଜାଣ
ତା ଶୁଣି ଶଙ୍କର ସୁଦର୍ଶନ ତେଜ ଦେଖି
ଦୁର୍ବାସାଙ୍କୁ ଆଶୀର୍ବାଦ କଲେ ହୋଇ ଦୁଃଖୀ
ବୋଇଲେ ତପସଞ୍ଚିତ ତେଜ ଯେବେ ସତ୍ୟ
ଭସ୍ମୀଭୂତ ବ୍ରାହ୍ମଣକୁ ନ କରୁ ନିହତ ।
ପାର୍ବତୀ ବୋଇଲେ ଆମ୍ଭ ପାଶରେ ଶରଣ
ହୋଇଛନ୍ତି ବିପ୍ରବର ରଖିବାକୁ ପ୍ରାଣ ।
ତେଣୁ ମୋର ଆଶୀର୍ବାଦେ ଏହାଙ୍କର ନାଶ
ନ ହେଉ ଦୟା କରନ୍ତୁ ପ୍ରଭୁ ଲକ୍ଷ୍ମୀଶ ।

ଏମନ୍ତ କହି ସେ ଦୁହେଁ ବିରତ ହୋଇଲେ
ଦୁର୍ବାସା ସେ ବିଷ୍ଣୁଙ୍କର ପାଦରେ ନମିଲେ ।
ବିବାସ୍ୱ ସେମନ ତହୁଁ ବଇକୁଣ୍ଠେ ଯାଇ
ପ୍ରବେଶ ହୋଇଲେ ତହଠରୁ ଭୟ ପାଇ ।
ଅନ୍ତଃପୁରେ ପରବେଶ ହୋଇ ତତକ୍ଷଣ
ରତ୍ନସିଂହାସନେ କଲେ ବିଷ୍ଣୁଙ୍କୁ ଦର୍ଶନ ।
ଶଙ୍ଖ ଗଦା ପଦ୍ମ ଚକ୍ର ହସ୍ତରେ ଶୋଭଇ
କେବଳ ଚତୁର୍ହସ୍ତମୂର୍ତ୍ତି ଭୁଚ୍ଛା ଅଛି ହୋଇ ।
ରତ୍ନ ଅଳଙ୍କାରେ ଅଙ୍ଗ ଦିଶଇ ସୁନ୍ଦର
କଟିତଟେ ବିରାଜିତ ସୁପୀତ ଅମ୍ବର ।
ପଦ୍ମା ସରସ୍ୱତୀ ଦୁହେଁ ପାଦତଳେ ବସି
ମର୍ଦ୍ଦନ କରୁଅଛନ୍ତି ଚରଣକୁ ଘଷି ।
ଏରୂପେ ପ୍ରଭୁଙ୍କୁ ଦେଖି କରଯୋଡ଼ି ମୁନି
ସ୍ତୁତି କଲେ ସେ ତ ବେଦଶାସ୍ତ୍ର ତତ୍ତ୍ୱଜ୍ଞାନୀ ।
ବୋଇଲେ ନମସ୍ତେ ଦେବ କମଳାରମଣ
କରୁଣାସାଗର ଘୋର ଦୁଃଖ ନିବାରଣ ।
ବ୍ରହ୍ମାଦି ଦେବତାଙ୍କର କର୍ତ୍ତା ଅଟ ତୁମ୍ଭେ
ତୁମ୍ଭଙ୍କୁ କି ସ୍ତୁତି କରିପାରିବି ମୁଁ ଦମ୍ଭେ ।
ମୃତ୍ୟୁ ଦେବତାର ମୃତ୍ୟୁ ଅଟ ଦେବବର
ସଙ୍କଟ ପଡ଼ିଛି ମୋତେ କର ଏଥୁ ପାର ।
ସଂସାର ବୀଜ ଆପଣ ପ୍ରଭୁ ଦୟାମୟ
ଶରଣ ପଶୁଛି ମୋତେ ହୁଅନ୍ତୁ ସଦୟ ।
ବେଦ ଶାସ୍ତ୍ର ଅଗୋଚର ଅଟେ ତୁମ୍ଭ ସ୍ତୁତି
ଜାଣି ନ ପାରନ୍ତି ପୁଣି ଦେବୀ ସରସ୍ୱତୀ ।
ଆବର ସହସ୍ର ମୁଖେ ସର୍ପ ଅଧୀଶ୍ୱର
ଗାନକରି ନ ପାରନ୍ତି ମହିମା ତୁମ୍ଭର ।
ପଞ୍ଚବକ୍ତ୍ର ପ୍ରଜାପତି ଦୁହେଁ ସେହିପରି
କହି ନ ପାରନ୍ତି କିଛି ଜଡ଼ ଲୋକ ପରି ।
କେତେକ ଶକତି ଅବା ଅଟଇ ମୋହର
ଜାଣିବି ତୁମ୍ଭ ମହିମା ଆହେ ଦାମୋଦର ।
କେବଳ କ୍ଷମା ଗୁଣରେ ରକ୍ଷାକର ମୋତେ
ନମସ୍କାର କରୁଅଛି ତୁମ୍ଭ ପାଦାଗ୍ରତେ ।
ଏହିରୂପେ ସ୍ତୁତିକରି ଦୁର୍ବାସା ସେ କାଳେ
ଶ୍ରୀହରିଙ୍କ ପାଦେ ପଡ଼ି ରୋଦନ ସେ କଲେ ।
ଦୁର୍ବାସା ମୁନିଙ୍କ କୃତ ଏ ମହାସ୍ତୋତ୍ରକୁ
ପଠନ ଯେ କରେ ନିତ ପ୍ରକାଶି ଭକ୍ତିକୁ ।

ସପତ ଜନ୍ମରୁ ଥିବା ପାତକ ସହିତ
ସଙ୍କଟୁଁ ରଖନ୍ତି ତାକୁ ପ୍ରଭୁ ନରହରି ।
ରାଜଦ୍ୱାରେ ଶ୍ମଶାନରେ ଅବା ଥିଲେ ସେହି
କେତେବେଳେ ହେଲେ ଭୟଭାବ ନ ରହଇ
ଆହେ ନାରଦ ମହର୍ଷି ଏଥୁ ଅନନ୍ତରେ
ଯାହାହେଲା କହୁଅଛି ଶୁଣ ବସି ଧୀରେ ।
ଦୁର୍ବାସାଙ୍କ ସ୍ତୁତି ଶୁଣି ପ୍ରଭୁ ଭଗବାନ
ହସିଣ କହିଲେ ତାଙ୍କୁ ମଧୁର ବଚନ ।
ବୋଇଲେ ହେ ମୁନିବର ଉଠ ନିର୍ଭୟରେ
ମଙ୍ଗଳ ଲଭ ତୁମ୍ଭର ହେଉ ଆମ୍ଭ ବରେ ।
କିନ୍ତୁ ଯାହା କହୁଅଛି ମନଦେଇ ଶୁଣ
ସାଧୁଙ୍କ ମୁଖରୁ ଶାସ୍ତ୍ର କରନ୍ତେ ଶ୍ରବଣ ।
ଅଜ୍ଞାନୀ ଲୋକର ହୃଦେ ଜ୍ଞାନ ଜାତ ହୁଏ
ସେ ଯୋଗେ ସକଳ ଶୁଭ ଫଳକୁ ସେ ପାଏ
ବେଦ ବିରୁଦ୍ଧ କରମ ଅତ୍ୟନ୍ତ ଗର୍ହିତ
ତାହା ଯେ କରଇ ସେହି ବୋଲାଏ କୁତ୍ସିତ
ଇତିହାସ ପୁରାଣରେ ବଇଷ୍ଣବଙ୍କର
ମହିମା ବିଖ୍ୟାତ ହୋଇଥାଏ ନିରନ୍ତର ।
ମୋହର ଜୀବନ ତୁଲ୍ୟ ବୈଷ୍ଣବେ ଅଟନ୍ତି
ତାହାଙ୍କୁ ଯେ ମୂର୍ଖପଣେ ଦିଅନ୍ତି ବିପତ୍ତି ।
ବାଧା ଦେଇଥାଏ ସେହି ଜୀବନକୁ ମୋର
ଆହେ ମୁନି ଏ ବିଷୟେ ସନ୍ଦେହ ନ କର ।
ପୁତ୍ର ପୌତ୍ର ରାଜଲକ୍ଷ୍ମୀ କଳତ୍ରଙ୍କୁ ତେଜି
ଯେଉଁମାନେ ବନ ନେଇଥାନ୍ତି ମୋତେ ଭଜି
ତାଙ୍କଠାରୁ ବଳି ମୋର ନୁହଇ କେ ପ୍ରିୟ
ତାଙ୍କୁ ଯେ ମାରଇ ମୁହିଁ କରେ ତାଙ୍କୁ କ୍ଷୟ
ବ୍ରହ୍ମା ଶିବ ଲକ୍ଷ୍ମୀ ସରସ୍ୱତୀ ଆଦି କରି
ନୁହନ୍ତି କେହି ମୋହର ଭକ୍ତଜନ ସରି ।
ସକଳ ଲୋକର ମୁହିଁ ଅଟଇ ଈଶ୍ୱର
ତଥାପି ଅଧୀନ ଅଟେ ଭକତ ଜନର ।
ଗୋଲୋକେ ବୈକୁଣ୍ଠେ ଅବା ଥିଲେ ହେଲେ ମୁହିଁ
ଭକ୍ତଙ୍କ ପାଶରେ ମୋର ମନ ରହିଥାଇ ।
ଅମ୍ବରୀଷ ନରପତି ହିଂସା ରାଗ ଶୂନ୍ୟ
ଆବର ନିଷାଦ ଶାନ୍ତ ଦୟାରେ ନିପୁଣ ।
କେଉଁ ଦୋଷ ଦେଖି ତାଙ୍କୁ ମାରିବାକୁ ତୁମ୍ଭେ
ଧାଇଁଥିଲ କହ ଭଲ ପଚାରୁଛୁ ଆମ୍ଭେ ।

ଯେଉଁଲୋକ ଦୟାକରେ ସକଳ ଜୀବଙ୍କୁ
ଧାର୍ମିକ ଶ୍ରେଷ୍ଠ ବୋଲିଣ ଜାଣିବ ତାହାକୁ ।
ତାହାଠାରେ ଦ୍ରୋହକରେ ଯେ ମୂର୍ଖପଣରେ
ଆପଦ ବଢ଼ଇ ମୁହିଁ ତାକୁ ନିରନ୍ତରେ ।
ଭକ୍ତ ହିଂସ୍ରକ ହେବାରୁ ତୁମ୍ଭଙ୍କୁ ମୋହର
ରଖିବା ଶକତ ନାହିଁ ଆହେ ମୁନିବର ।
ଅମ୍ବରୀଷ ରାଜାଠାକୁ ଫେରିଯିବ ଯେବେ
ମନକଲେ ତୁମ୍ଭଙ୍କୁ ସେ ବଞ୍ଚାଇ ପାରିବେ ।
ନାରାୟଣଙ୍କ ମୁଖରୁ ଏହିରୂପେ ଶୁଣି
ଭୟରେ ଦୁର୍ବାସା ନିଜ କର୍ମ ମନେ ଗୁଣି ।
ଜୀବନରୁ ଆଶା ଛାଡ଼ି ନିଶ୍ଚଳେ ବସିଲେ
ଶ୍ରୀକୃଷ୍ଣଙ୍କୁ ମାନସରେ ସୁମରଣା କଲେ ।
ଏହି ସମୟରେ ବ୍ରହ୍ମା ଶିବ ଦୁହେଁ ତହିଁ
ଗଲେ ପାର୍ବତୀ ଦେବୀଙ୍କୁ ସଙ୍ଗତରେ ନେଇ ।
ଆବର ଧର୍ମ ବାସବ ଆଦି ଦେବଗଣ
ଉପସ୍ଥିତ ହେଲେ ତାଙ୍କ ପାଶେ ଯାଇ ପୁଣ ।
ବିଷ୍ଣୁଙ୍କୁ ଦେଖି ସମସ୍ତେ ଦଣ୍ଡବତ ହେଲେ
କରଯୋଡ଼ି ଯେ ଯା ମତେ ସ୍ତୁତି ଆରମ୍ଭିଲେ ।
ବିଧାତା ବୋଇଲେ ପ୍ରଭୁ ତୁମ୍ଭେ ଦୟାମୟ
ଦୟାକରି ବ୍ରାହ୍ମଣଙ୍କୁ ଦିଅନ୍ତୁ ଅଭୟ ।
ଶଙ୍କର ବୋଇଲେ ଦୀନବନ୍ଧୁ ଜଗନ୍ନାଥ
ରକ୍ଷାକର ବାରେ ଦ୍ୱିଜ ପୁତ୍ରଙ୍କୁ ଜୀବିତ ।
ପାର୍ବତୀ ବୋଇଲେ ଦେବ ଅମ୍ବରୀଷ ରାଜା
ତୁମ୍ଭ ସେବାରେ ସର୍ବଦା ଦେଇଛନ୍ତି ମଜ୍ଜା ।
ସେ ସକାଶୁ ତୁମ୍ଭର ସେ ପରମ ଭକତ
ତାହାଙ୍କ ସମାନ ଆମ୍ଭେ ନୋହୁ କଦାଚିତ ।
ତଥାପି ପ୍ରାର୍ଥନା କରୁଅଛୁ ଭକ୍ତିଭରେ
ବିପ୍ରଙ୍କ ଜୀବନ ରଖ ଦୟା କରି ବାରେ ।
ଧର୍ମ ବୋଇଲେ ସକଳ ରକ୍ଷାକାରୀ ତୁମ୍ଭେ
ବିପ୍ରଙ୍କୁ ଜୀବନ ଦିଅ ମାଗୁଅଛୁ ଆମ୍ଭେ ।
ଇନ୍ଦ୍ର ବୋଇଲେ ହେ ଦେବ ତୁମ୍ଭେ କୃପାମୟ
ବ୍ରାହ୍ମଣଙ୍କୁ ରକ୍ଷାକର ହୋଇଣ ସଦୟ ।
ରୁଦ୍ରଗଣ ଏଥୁ ଅନ୍ତେ ଶିରେ କରଦେଇ
ବୋଇଲେ ଦୁର୍ବାସାଙ୍କର ଦୋଷଅଛି ହୋଇ ।
କିନ୍ତୁ ତାଙ୍କ ପାଇଁ ଆମ୍ଭେ କରୁଛୁ ପ୍ରାର୍ଥନା
ରକ୍ଷାକର ପ୍ରଭୁ ତାଙ୍କୁ ନ କରି ଗଞ୍ଜନା ।

ଦିଗପାଳଗଣ ତହୁଁ ବୋଇଲେ ଏ ଦ୍ୱିଜ
ଅପରାଧ କଲେ ଯେବେ ଆହେ ଦେବରାଜ ।
ତହିଁର ଉଚିତ ଦଣ୍ଡ ଦେଇ ତାଙ୍କ ପ୍ରାଣ
ରଖିବା ହେତୁରୁ ଆମ୍ଭେ କରୁଛୁ ଜଣାଣ ।
ସେ ଅନ୍ତରେ ନବଗ୍ରହଗଣ ଏକସ୍ୱରେ
ବୋଇଲେ ଦୋଷ ସମ୍ଭବ ହେଲା ଦ୍ୱିଜଠାରେ ।
ଏ ସକାଶୁ ତାଙ୍କୁ ଆମ୍ଭେ ପୀଡ଼ା ଦେବୁ ଜାଣ
ଶେଷରେ ରକ୍ଷାକରତା ହୋଇବେ ଆପଣ ।
ଋଷିମାନେ ବୋଇଲେ ଯେ ଆମ୍ଭେମାନେ ଏବେ
ଦୁର୍ବାସାଙ୍କ ଦୋଷେ ଦୋଷୀ ହୋଇଅଛୁ ସର୍ବେ ।
ତାଙ୍କୁ ଯେବେ ଦଣ୍ଡ ଦେବ ଆପଣ କ୍ରୋଧରେ
ପୀଡ଼ା ପାଇବୁ ସମସ୍ତେ ତାଙ୍କ ସହିତରେ ।
ଅଦିତି ବୋଇଲେ ଶ୍ରୀଦେବ କୃଷ୍ଣ କରଯୋଗେ
ପୁତ୍ର ମୋହର ଜନମି ଅଛି ମହାଭାଗେ ।
ତ୍ରିଭୁବନରେ କାହାକୁ ନ ଡରେ ତା ଚିତ୍ତ
ଏବେ ହୋଇଅଛି ମହା ବିପଦରେ ଗ୍ରସ୍ତ ।
ଦୟା କରି ରଖ ପ୍ରଭୁ ତାହାର ଜୀବନ
ଅପରାଧୀ ହେଲେ ମଧ୍ୟ ସେ ତୁମ୍ଭ ଅଧୀନ ।
ମହାଲକ୍ଷ୍ମୀ ବୋଇଲେ ହେ ପ୍ରଭୁ ଦୟାମୟ
ଶରଣ ପଶୁ ଅଛନ୍ତି ଏ ବିପ୍ର ତନୟ ।
ଅବର ଦେବତାମାନେ କରୁଛନ୍ତି ସ୍ତୁତି
ରକ୍ଷାକର ଦୟାବନ୍ତ ଆହେ ବିଶ୍ୱପତି ।
ସରସ୍ୱତୀ ବୋଇଲେ ମୁଁ ତୁମ୍ଭର ଯେ ଗୁଣ
କହିବାକୁ ସମରଥ ହେବି କାହୁଁ ପୁଣ ।
ବେଦଶାସ୍ତ୍ର ଅଗୋଚର ଅଟ ଦେବହରି
ବ୍ରାହ୍ମଣଙ୍କୁ ଜୀବଦାନ ଦିଅ ଦୟା କରି ।
ପାର୍ଷଦଗଣେ ବୋଇଲେ ହେ ମହାପୁରୁଷ
ଆପଣ ଅଟନ୍ତି ସର୍ବଲୋକର ନିବାସ ।
ଶରଣାଗତ ଯେ ଏହି ବ୍ରାହ୍ମଣ ତନୁଜ
ଦୟାକରି ଏହାଙ୍କର ଜୀବନକୁ ରଖ ।
ନର୍ତ୍ତକମାନେ ବୋଇଲେ ଆହେ ନରହରି
ଦିନ ନେଉଅଛୁ ଆମ୍ଭେ ଭିକ୍ଷାବୃତ୍ତି କରି ।
ଭିକ୍ଷା ସ୍ୱରୂପରେ ଏହି ଦ୍ୱିଜଙ୍କର ପ୍ରାଣ
ମାଗୁଛୁ ତାହାଙ୍କ ରକ୍ଷା କର ଭଗବାନ ।
ଏହିରୂପେ ସମସ୍ତଙ୍କ ସ୍ତୁତି ବାକ୍ୟ ଶୁଣି
ତହଁକୁ ସତ୍ୱର ରଖି ପ୍ରଭୁ ଚକ୍ରପାଣି ।

ବୋଇଲେ ସମସ୍ତେ ଶୁଣ ଆମ୍ଭର ବଚନ
ତୁମ୍ଭ କଥାରେ ଦ୍ୱିଜଙ୍କୁ ରଖିଲୁଁ ଜାଣ ।
କିନ୍ତୁ ଏ ଅମ୍ବରୀଷଙ୍କ ନିକଟକୁ ଯିବେ
ଆପଣାର ଦୋଷ ତାଙ୍କ ଆଗେ ଜଣାଇବେ ।
ପାରଣ କରି ସେଠାରେ ନୃପଙ୍କୁ ସନ୍ତୋଷ
କରାଇବେ ଆମ୍ଭ ବଚନରେ ଦ୍ୱିଜଈଶ ।
ଅତିଥି ହୋଇ ତାହାଙ୍କ ଗୃହକୁ ଯେ ଗଲେ
ନିର୍ଦ୍ଦୋଷ ଜୀବନ ନେବାପାଇଁ ବିହାରିଲେ ।
ସେ ସକାଶୁ ସୁଦର୍ଶନ ସହି ନ ପାରିଲା
ନୃପଙ୍କୁ ରଖି ଏହାଙ୍କ ପଛେ ଗୋଡ଼ାଇଲା ।
ବରଷେ ହେଲାଣି ଭ୍ରମୁଅଛନ୍ତି ଏ ମହୀ
ଧର୍ଯ୍ୟା କଲେ ଛନ୍ତି ରାଜା ଉପବାସେ ରହି ।
ଆବର ମୁନିଙ୍କୁ ପୀଡ଼ା ପାଉଛନ୍ତି ତାପ
ତାଙ୍କୁ କଷ୍ଟ ଦେଲେ ନଷ୍ଟ ଧର୍ମ ହେବ ଲୋପ
ମୋର ଆଶୀର୍ବାଦେ ଦ୍ୱିଜ ହୁଅନ୍ତୁ ନିର୍ଜ୍ୱର
ଅନିଷ୍ଟ ନ କରୁ ସୁଦର୍ଶନ ଏହାଙ୍କର ।

ଆହେ ଦେବଦେବୀଗଣ ତୁମ୍ଭେମାନେ ଏବେ
ନିଜ ନିଜ ଭୁବନକୁ ଫେରିଯାଅ ସର୍ବେ ।
ଏମନ୍ତ କହି ଶ୍ରୀହରି ଅନ୍ତଃପୁର ଗଲେ
ଦେବଦେବୀଗଣ ଯଥାସୁଖେ ବାହୁଡ଼ିଲେ ।
ଦୁର୍ବାସା ମୁନି ସେକ୍ଷଣି ଅମ୍ବରୀଷ ପାଶେ
ଆସିଲେ ଲୁନ ହୋଇଣ ବିଷ୍ଣୁଙ୍କ ଆଦେଶେ
ତାଙ୍କୁ ଦେଖି ସେ ନୃପତି ଆସନୁ ଉଠିଲେ
ଯଥା ବିଧି ପୂଜା କରି ନମସ୍କାର କଲେ ।
ସେ ଅନ୍ତେ ଦିବ୍ୟଭୋଜନ ଦେଲେ ବେଗେଆଣି
ଭୁଞ୍ଜିଲେ ମହାସୁଖରେ ଦ୍ୱିଜ କୁଳମଣି ।
ସନ୍ତୁଷ୍ଟ ହୋଇ ରାଜାଙ୍କୁ ନିଜ ଅପରାଧ
ଜଣା କରାଇଲେ ପୀଡ଼ା ଅପରାଧ କ୍ରୋଧ ।
ବିସ୍ମିତ ହୋଇ ସେଠାରୁ ଉଠି ସେ ଅନ୍ତରେ
ପ୍ରବେଶ ହୋଇଲେ ଯାଇ ନିଜ ଆଶ୍ରମରେ ।
ଦୁର୍ବାସା ମୁନିଙ୍କ ପରାଭବ ଉପାଖ୍ୟାନ
ବର୍ଣ୍ଣନା କରିଲେ କ୍ଷେତ୍ରବାସୀ ଦୀନ ହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନାରାୟଣଙ୍କ ଦ୍ୱାରା ଋଷିଙ୍କର ମୋକ୍ଷଣ ବୃତ୍ତାନ୍ତ ବିବରଣ କଥନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।



## ଷଡ଼ବିଂଶ ଅଧ୍ୟାୟ

## ଏକାଦଶୀ ବ୍ରତର ମାହାତ୍ମ୍ୟ ନିରୂପଣ

ନାରଦ ବୋଇଲେ ମୁନିଗଣଙ୍କ ମଣ୍ଡନ
ଯେଉଁ ଦୋଷ ହୁଏ କଲେ ଦ୍ୱାଦଶୀ ଲଙ୍ଘନ ।
ଉତ୍ତମ ରୂପେ ଶ୍ରବଣ କଲି ତୁମ୍ଭଠାରୁ
ଆହେ ସର୍ବବେଦଜ୍ଞ ସ୍ଥ ଜ୍ଞାନୀଙ୍କର ଗୁରୁ ।
ଏବେ ଏକାଦଶୀ ବ୍ରତ ବିଧାନ କିପରି
ହୁଏ ତାହା ମୋ ଆଗରେ କହ ଭଲକରି ।
ବେଦରେ କିଞ୍ଚିତ ମାତ୍ର କରିଛୁ ଶ୍ରବଣ
ତଥାପି ଶୁଣିବି ଭଲକରି ଥରେ ପୁଣ ।
ତାହା ଶୁଣି ନାରାୟଣ ବୋଇଲେ ହରଷେ
ଶୁଣ ଏକାଦଶୀ ବ୍ରତ କଥା ମନତୋଷେ ।
ଶ୍ରୀକୃଷ୍ଣ ପ୍ରୀତି ଅର୍ଥେ ଏହି ମହାବ୍ରତ
ସକଳ ବର୍ଣ୍ଣାଶ୍ରମରେ ହୁଅଇ ପାଳିତ ।

ଦେବଙ୍କ ମଧ୍ୟରେ ଯଥା ଶ୍ରୀକୃଷ୍ଣ ଅଟନ୍ତି
ଦେବୀଙ୍କର ଆଦ୍ୟମାତା ଯେରୂପେ ପ୍ରକୃତି ।
ଆଶ୍ରମରେ ବିପ୍ର ବୈଷ୍ଣବ ଗଣେ ଶିବ
ଗଣେଶ ଯେରୂପେ ସର୍ବ ଅଗ୍ର ପୂଜ୍ୟଦେବ ।
ଶାସ୍ତ୍ରରେ ଯେ ବେଦଶାସ୍ତ୍ର ତୀର୍ଥେ ମନ୍ଦାକିନୀ
ତେଜ ପଦାର୍ଥରେ ଯଥା ସୁବର୍ଣ୍ଣକୁ ମଣି ।
ପ୍ରାଣୀଙ୍କ ମଧ୍ୟେ ବୈଷ୍ଣବ ଉତ୍ତମ ଯେପରି
ଯେମନ୍ତ ଦେବଗଣରେ ଶ୍ରେଷ୍ଠ ନରହରି ।
ବନସ୍ତ ମଧ୍ୟରେ ଦେବ ଯେହ୍ନେ ବନସ୍ପାର
ପର୍ବତର ଶ୍ରେଷ୍ଠ ଯଥା ମେରୁ ମହୀଧର ।
ଭକ୍ଷଦ୍ରବ୍ୟରେ ଅମୃତ ଉତ୍ତମ ଯେସନ
ଦାହକ ଦ୍ରବ୍ୟରେ ଯଥା ଚଣ୍ଡ ହୁତାଶନ ।

କ୍ଷମାବନ୍ତ ମଧ୍ୟେ ସାର ଯେଉଁରୂପେ କ୍ଷିତି
ସ୍ତ୍ରୀମାନଙ୍କ ମଧ୍ୟରେ ଯେମନ୍ତ ପାର୍ବତୀ ।
ବେଦମାନଙ୍କ ମଧ୍ୟରେ ଯେଉଁରୂପେ ସାମ
ରୁଦ୍ରଗଣରେ ଶଙ୍କର ଅଟନ୍ତି ଉତ୍ତମ ।
ଗଜମଧ୍ୟେ ଐରାବତ ପଶୁରେ ଶରଭ
ମଣିଗଣରେ ଅଧିକ ଯେହ୍ନେ କଉସ୍ତୁଭ ।
ସୁନ୍ଦରୀ ମଧ୍ୟରେ ରମ୍ଭା ଯେହ୍ନେ ସୁଶୋଭିତା
ମାୟାବୀ ଗଣରେ ମାୟା ଶ୍ରେଷ୍ଠ ଅଟେ ଯଥା
ସେହିପରି ସବୁବ୍ରତ ମଧ୍ୟେ ଏକାଦଶୀ
ଉତ୍କୃଷ୍ଟ ଅଟଇ ଜାଣ ଆହେ ମହାଋଷି ।
ସ୍ୱବର୍ଣ୍ଣରେ ପାଳଇ ଅଟଇ ଏ ବ୍ରତ
ଯେତେ ବଇଷ୍ଣବେ ଏହା କରନ୍ତୁ ନିଶ୍ଚିତ ।
ଶ୍ରୀକୃଷ୍ଣ ବ୍ରତ ଦିନରେ ଯେତେ ମହାପାପ
ଅନ୍ନରେ ଲୁଚଇ ରହିଥାନ୍ତି ନିଜରୂପ ।
ଭୁଞ୍ଜିବା ଲୋକର ଦେହେ ସଂକ୍ରମିତ ହୋଇ
ନିଅନ୍ତି ଅନ୍ତକାଳରେ ନରକେ ପକାଇ ।
ଏକାଦଶ ଯୁଗ ତହିଁ ପଡ଼ିଣ ମନୁଷ୍ୟ
ନାନା ପ୍ରକାରେ ସହନ କରୁଥାଏ କ୍ଲେଶ ।
ସେ ଅନ୍ତରେ ସାତଜନ୍ମେ ଜରବ୍ୟାଧି ରୋଗ
ପୀଡ଼ିତ ହୋଇ ବିବିଧ ଯନ୍ତ୍ରଣାକୁ ଭୋଗେ ।
ଏରୂପେ ଏକାଦଶୀର ବିଧାନ ଅଟଇ
ଦ୍ୱାଦଶୀର ବିଧାନ ତ ପୂର୍ବେ ଅଛି କହି ।
ଏବେ କହୁଅଛି ଶୁଣ ଦଶମୀ ବିଧାନ
ଲଙ୍ଘିଲେ ତାହାକୁ ହୁଏ ଯେଉଁ ପାପମାନ ।
କଳାମାନେ ଥିଲେ ହେଲେ ଦଶମୀ ତିଥିକୁ
ଲଙ୍ଘନ ଯେ କରେ ତହିଁ ପ୍ରକାଶି ହେଲାକୁ ।
ତା ଗୃହରୁ ମହାଲକ୍ଷ୍ମୀ ଶାପଦେଇ ବେଗେ
ପଳାଇ ଯାଆନ୍ତି ଅନ୍ୟସ୍ଥାନେ ମହାରାଗେ ।
ଇହଲୋକେ ବଂଶହାନି ଅଯଶ ତାହାର
ହୁଅଇ ପୁଣି ଦେହାନ୍ତେ ନରକରେ ଘର ।
ଯେଉଁଦିନ ଦଶମୀରେ ଏକାଦଶୀ ଆଇ
କ୍ଷୟ ଯୋଗରେ ଦ୍ୱାଦଶୀ ତିଥି ମିଶିଯାଇ ।
ସେ ଦିନ ଭୋଜନ କରି ତାପର ଦିବସେ
ପାଳନା କରିବ ବ୍ରତ ରହି ଉପବାସେ ।
ତ୍ରୟୋଦଶୀରେ ପାରଣା ବିଧି ଆଚରିବ
ତେବେ ସେ ସକଳ ବ୍ରତ ଫଳକୁ ପାଇବ ।

ଦ୍ୱାଦଶୀ ଲଙ୍ଘନ ଦୋଷ ନୁହଇ ଏଥିରେ
ଲେଖିଛନ୍ତି ପ୍ରଜାପତି ଏରୂପେ ବେଦରେ ।
ଯେଉଁଦିନ ଏକାଦଶୀ ତିଥି ପ୍ରଭାତରେ
ଦଣ୍ଡେ ବା ମୁହୂର୍ତ୍ତେ ଥିବ ନିଶ୍ଚେ ସେ ଦିନରେ
ଉପବାସ ଆଦି ବ୍ରତ ବିଧି କରିଥିବ.
ସକଳ ପ୍ରକାର ଦାନ ପୁଣ୍ୟ ତହିଁ ହେବ ।
ପୂର୍ବତିଥି ଛଅଦଣ୍ଡ ଥିଲେ ପ୍ରଭାତରେ
ଆବର ଯେ ଦିନରେ ଟି ତିଥି ସଂଯୋଗରେ ।
ପୂର୍ବଦିନ ଗୃହୀମାନେ କରନ୍ତୁ ପାଳନ
ପରଦିନରେ ପାଳନ୍ତୁ ବୈଷ୍ଣବାଦିଜନ ।
ପୂର୍ବଦିନ ଉପବାସେ ଥିବ ଯେଉଁ ଗୃହୀ
ଏକାଦଶୀ ଗତ ହେଲେ ଭୁଞ୍ଜିବ ସେ ଯାଇ
ସେହିପରି ବଇଷ୍ଣବ ବିଧବା କାମିନୀ
ସମସ୍ତେ ପାଳିବେ ଜାଣ ଆହେ ମହାମୁନି ।
ଶୁକ୍ଲପକ୍ଷେ ବୈଷ୍ଣବଙ୍କ ଗୃହସ୍ଥ ସମାନ ।
ପାରଣା ନୁହଇ ବେଦଶାସ୍ତ୍ର ମତଜାଣ ।
କୃଷ୍ଣ ପକ୍ଷରେ ସମସ୍ତେ ସମାନ ଭାବରେ
ପାଳନ୍ତୁ ବ୍ରତ ବିଧାନ ବିଧି ଅନୁସାରେ ।
ଶୟନ ବୋଧନ ମଧ୍ୟେ କୃଷ୍ଣ ଏକାଦଶୀ
ହୁଏ ଯେ ତହିଁରେ ଗୃହୀ ହେବ ଉପବାସୀ ।
ଅନ୍ୟ କୃଷ୍ଣ ଏକାଦଶୀ ତ୍ୟାଗକଲେ ଗୃହୀ
ତହିଁରେ କିଞ୍ଚିତ ମାତ୍ର ଦୋଷ ନ ଲଭଇ ।
ଏରୂପେ ଏକାଦଶୀର ନିର୍ଦ୍ଦିଷ୍ଟ ଜାଣ
ବ୍ରତ ବିଧାନ କର୍ତ୍ତବ୍ୟ ମନ ଦେଇ ଶୁଣ ।
ପୂର୍ବ ଦିବସେ ହବିଷ୍ୟ ଭୋଜନ କରିବ
ଏକାକୀ ହୋଇଣ କୁଶ ଶଯ୍ୟାରେ ଶୋଇବ
ପରଦିନ ପ୍ରାତଃକାଳୁ ଶଯ୍ୟାତ୍ୟାଗ କରି
ସ୍ନାନସନ୍ଧ୍ୟା ଆଦି ନିତ୍ୟ କର୍ତ୍ତବ୍ୟ ଆଚରି ।
ଶାସ୍ତ୍ରବିଧି ଅନୁସାରେ ସଂକଳ୍ପ କରିବ
ଇଷ୍ଟଦେବତାଙ୍କୁ ପୂଜା ବିଧି କରାଇବ ।
ସେ ଅନ୍ତରେ ବ୍ରତଦ୍ରବ୍ୟ କରି ଆହରଣ
ରଖିବ ଉତ୍ତମ ରୂପେ ହୋଇ ସାବଧାନ ।
ଧଉତ ବସନ ପିନ୍ଧି ଆସନରେ ବସି
ଆରମ୍ଭକରିବ ପୂଜା ବିଧାନ ବିଶେଷି ।
ଆଚମନ ସାରି ସ୍ୱସ୍ତିବଚନ କରିବ
ପୂର୍ଣ୍ଣକୁମ୍ଭ ଆଣି ପୂଜା ସ୍ଥାନରେ ସ୍ଥାପିବ ।

ଗଣେଶ୍ୱର ସୂର୍ଯ୍ୟ ଅଗ୍ନି ବିଷ୍ଣୁ ସଦାଶିବ
ଦୁର୍ଗା ଏହି ଷଡ଼ ଦେବଗଣଙ୍କୁ ପୂଜିବ ।
ଗନ୍ଧପୁଷ୍ପ ଧୂପଦୀପ ନଇବେଦ୍ୟ ଦେଇ
ଅର୍ଚ୍ଚନା କରିବ ହୃଦେ ଭକ୍ତିଭାବ ବହି ।
ଷଡ଼ ଦେବତାଙ୍କୁ ଆଗେ ନ ପୂଜିବ ଯେବେ
ନିଷ୍ଫଳ ହୋଇବ ସବୁ ବ୍ରତକର୍ମ ତେବେ ।
ସାମ ବେଦୋକ୍ତ ପ୍ରକାରେ ଶ୍ରୀକୃଷ୍ଣଙ୍କ ଧ୍ୟାନ
ସଂଯତ ଭାବରେ ବସି କରିବ ପଠନ ।
କହୁଅଛୁ ଶୁଣ ସେହି ଧ୍ୟାନର ପ୍ରକାର
ରହସ୍ୟ ଅଟଇ ଯାହା ଶ୍ରୁତି ସୁଖକର ।
ବୋଲିବ ନମସ୍ତେ ନବ ନୀରଦ ଶ୍ୟାମଳ
ଶରତ ଚନ୍ଦ୍ରମା ନିଭ ଶ୍ରୀମୁଖ ମଣ୍ଡଳ ।
ବିକଶିତ ପଦ୍ମନେତ୍ର ରତ୍ନ ବିଭୂଷିତ
କନ୍ଦର୍ପ ସୁନ୍ଦର ଗୋପୀ ଗୋପାଳ ସେବିତ ।
ରାସମଣ୍ଡଳ ବିହାରୀ ରାସକ୍ରୀଡ଼ା ପ୍ରିୟ
ପୀତବାସ କୌସ୍ତୁଭ ଶୋଭିତ ହୃଦୟ ।
ରାଧିକା ହୃଦକୁମୁଦ ପୂର୍ଣ୍ଣ ସୁଧାକର
କଣ୍ଠ ବିଲମ୍ବିତ ପାରିଜାତ ପୁଷ୍ପହାର ।
ରତ୍ନ ବିରଚିତ କର୍ଣ୍ଣ ଭୂଷଣ ରାଜିତ
ଧ୍ୟାତସାଧ୍ୟ ଭକ୍ତପ୍ରିୟ ବେଣୁ ବାଦ୍ୟହସ୍ତ ।
ଅଶେଷ ଭୁବନ କର୍ତ୍ତା ସଂସାର କାରଣ
ନମସ୍ତେ ଗୋଲୋକଈଶ ଦୁଃଖ ବିମୋଚନ ।
ଏ ରୂପେ ଧ୍ୟାନ ପଠନ କରି ଶ୍ରୀହରିଙ୍କୁ
ପୂଜା କରିବ ମନରେ ନିବେଶି ଭକ୍ତିକୁ ।
ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ଆଚମନ
ଦେବ ଯଥାବିଧି ମନ୍ତ୍ର କରି ଉଚ୍ଚାରଣ ।
ସେ ଅନ୍ତରେ ଗନ୍ଧପୁଷ୍ପ ଧୂପଦୀପ ଆଦି
ସମର୍ପିବ ବିଧିମତେ ସକଳ ସମ୍ପାଦି ।
ମୂଳମନ୍ତ୍ର ପଢ଼ି ପୁଣି ପୁଷ୍ପାଞ୍ଜଳି ଦେବ
କରଯୋଡ଼ି ସ୍ତୁତି ସ୍ତୋତ୍ର ପଠନ କରିବ ।
ବୋଲିବ ନମସ୍ତେ ଦେବ ରାଧିକା ଈଶ୍ୱର
ଏ ଘୋର ସଂସାର ମହାସାଗରୁ ଉଦ୍ଧର ।
ଶତଜନମରୁ ଗତାଗତ ହୋଇ ମୁହିଁ
କଷ୍ଟଭୋଗ କରୁଅଛି ଆଶ୍ରୟ ନ ପାଇ ।
ସ୍ୱକର୍ମ ପାପରଜ୍ଜୁରେ ହୋଇଅଛି ବନ୍ଧା
ବିଷୟ ବାସନା ମୋତେ କରିଅଛି ଫନ୍ଦା ।
ତୁମ୍ଭ ଚରଣରେ ଏବେ ପଶିଛି ଶରଣ
ରକ୍ଷାକର ଆହେ ଦୟାମୟ ଭଗବାନ ।
ଅନ୍ତକ ଦଣ୍ଡ ଭୟରୁ ତୁମ୍ଭ ବିନା କେହି
ରକ୍ଷା କରିବାକୁ ତିନି ଭୁବନରେ ନାହିଁ ।
ସ୍ୱଭାବରେ ଅଟଇ ମୁଁ ସେବାଭକ୍ତି ହୀନ
ତଥାପି ଯା କରୁଅଛି ତୁମ୍ଭର ପୂଜନ ।
ତହିଁରେ ଯେ ନ୍ୟୂନ ହୋଇଥିବ ଭ୍ରମବଶେ
ପୂରଣ କରିବ ପ୍ରଭୁ ପୂଜା ଅବଶେଷେ ।
ବେଦବିଧି ଭିନ୍ନ ହୋଇଥାଏ ଯେ ବିଧାନ
ତୁମ୍ଭ ନାମ ସୁମରଣା କଲେ ହୁଏ ପୂର୍ଣ୍ଣ ।
ସେ ସକାଶୁ କରଯୋଡ଼ି ଜଣାଉଛି ମୁହିଁ
ସଫଳ କର ମୋ ଯଜ୍ଞ ଦୟା ମନେ ବହି ।
ଏହିରୂପେ ସ୍ତୁତି ପଢ଼ି ପ୍ରଣାମ କରିବ
ବ୍ରାହ୍ମଣଙ୍କୁ ଡାକି ଧନରତ୍ନ ଦାନ ଦେବ ।
ଆବର ନାନା ପ୍ରକାର ଉତ୍ସବ କରାଇ
ଯାଗର ଦେବ ନିଶାରେ ଉଜାଗର ରହି ।
ଉପବାସ ବ୍ରତ କରି ହୁଏ ଯେ ନିଦ୍ରିତ
ଅର୍ଦ୍ଧେକ ଫଳ ବିନଷ୍ଟ ହୁଅଇ ନିଶ୍ଚିତ ।
ଦ୍ୱାଦଶୀ ଦିନ ପାରଣା କଲାପରେ ପୁଣି
ପାନ ଭୋଜନରେ ମନ ଦିଏ ଯେଉଁ ପ୍ରାଣୀ ।
ତାର ମଧ୍ୟ ବ୍ରତଫଳ ଅର୍ଦ୍ଧେ ନଷ୍ଟହୁଏ
ଦାନପୁଣ୍ୟରେ ଯେ କିଛି ଉପକାର ନୁହେଁ ।
ହବିଷ୍ୟ କରିବା ବେଳେ ପୁଷ୍ପ ଜଳ ଧରି
ବୋଲିବ ହେ ଅନ୍ନ ତୋତେ ପୂର୍ବେ କୃଷ୍ଣଧାରୀ ।
ପ୍ରାଣୀଙ୍କ ଜୀବନ ଅର୍ଥେ କଲେ ବିନିର୍ମିତ
ତୋ ଯୋଗେ ସକଳ ପ୍ରାଣୀ ରହନ୍ତି ଜୀବିତ ।
ମୋତେ ଏବେ ବିଷ୍ଣୁଙ୍କର ସାରୂପ୍ୟକୁ ଦିଅ
ବ୍ରତ ଉପବାସ କର୍ମ ସଫଳ କରାଅ ।
ଏହିରୂପେ ଯେଉଁଲୋକ ଉପବାସ ବ୍ରତ
କରଇ ଧନ୍ୟ ଅଟଇ ତାହାର ଜୀବିତ ।
ଆବର ମୁକ୍ତ ହୁଅନ୍ତି ସପତ ପୁରୁଷ
ଅନ୍ତଃକାଳେ କରଇ ସେ ବୈକୁଣ୍ଠରେ ବାସ ।
ଏମନ୍ତ ଅଟଇ ଉପବାସର ବିଧାନ
ଆହେ ମୁନିବର ଶୁଣ ହୋଇ ସାବଧାନ ।

ଶ୍ରୀକୃଷ୍ଣ ଚରିତ ଅଟେ ଅମୃତ ସଦୃଶ
କହିବା ଅନ୍ୟ କେତେକ ଶୁଣି ହୁଅ ତୋଷ ।
ଏହିଠାରେ ଏକାଦଶୀ ବ୍ରତ ସମାପ୍ତର
ଶେଷ ହେଲା ଗୀତେ କହେ କ୍ଷେତ୍ରବାସୀ ଘୁର

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ଏକାଦଶୀ ବ୍ରତର ମାହାତ୍ମ୍ୟ
ନିରୂପଣେ ନାମ ଷଡ୍‌ବିଂଶୋଽଧ୍ୟାୟଃ ।



## ସପ୍ତବିଂଶ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଗୋପୀମାନଙ୍କର ବସ୍ତ୍ରହରଣ ବୃତ୍ତାନ୍ତ ବର୍ଣ୍ଣନ

ଏଥିଅନ୍ତେ ନାରାୟଣ ପୁଣି ନାରଦଙ୍କୁ
କହିଲେ ବସ୍ତ୍ରହରଣ ରହସ୍ୟ କଥାକୁ ।
ବୋଇଲେ ଶୁଣ ନାରଦ ଅପୂର୍ବ ଚରିତ
ଯାହା ଶ୍ରବଣେ ଖଣ୍ଡନ ହୁଅଇ ଦୁରିତ ।
ଦିନେ ଗୋପୀ ସ୍ତ୍ରୀଗଣ ହେମନ୍ତ ଋତୁରେ
ପୀଡ଼ିତ ହୋଇଣ ସର୍ବେ କନ୍ଦର୍ପ ବାଣରେ ।
ମାସିକ ବ୍ରତ ଆରମ୍ଭ କଲେ ବିଧିମତେ
ପୂର୍ବ ଦିନରେ ହବିଷ୍ୟ କରିଣ ଭକ୍ଷତେ ।
ପରଦିନ ପ୍ରଭାତରେ ଯମୁନାକୁ ଯାଇ
ସ୍ନାନ ସୂର୍ଯ୍ୟ ପୂଜା ଶେଷ କଲେ ଶୁଚି ହୋଇ
ବାଲୁକା ଆଣି ପାର୍ବତୀ ମୂର୍ତ୍ତି ଏକ ସ୍ଥାପି
ଉପାସନା କଲେ ଧ୍ୟାନ ପରେ ମନ୍ତ୍ର ଜପି ।
କୁଙ୍କୁମ କସ୍ତୁରୀ ଗନ୍ଧ ପୁଷ୍ପ ଧୂପ ଦୀପ
ନୈବେଦ୍ୟ ସହିତେ ରଖି ଆପଣା ସମୀପ ।
ବିଧି ଅନୁସାରେ ତାହା ସମର୍ପଣ କଲେ
ଆଦର ନାନାପ୍ରକାର ଆଭରଣ ଦେଲେ ।
ସେ ଅନ୍ତରେ କରଯୋଡ଼ି ବୋଇଲେ ଗୋଦେବୀ
ମୁକତ ହୁଅନ୍ତି ଲୋକେ ତୁମ୍ଭ ପାଦ ସେବି ।
ଆମ୍ଭର ଧନସ୍ତୁ ସେନ ନନ୍ଦନନ୍ଦନଙ୍କୁ
ପତିରୂପେ ଦେଇ ତୋଷ କର ମାନସକୁ ।
ଏହିରୂପେ ପ୍ରତିଦିନ ପୂଜା ଶେଷ କରି
ଯେ ଯାହା ଘରକୁ ସୁଖେ ଯାଆନ୍ତି ବାହୁଡ଼ି ।
ଯେଉଁ ମନ୍ତ୍ର ନିତି ଜପ କରନ୍ତି ସେମାନେ
କହୁଛି ତାର ସ୍ୱରୂପ ଶୁଣ ସାବଧାନେ ।
ପ୍ରଥମରେ ମାୟାବୀଜ ଅକ୍ଷର ବସାଇ
ଚତୁର୍ଥ୍ୟନ୍ତ ଦୁର୍ଗା ଶବ୍ଦ ତାହାପରେ ଦେଇ ।
ଶେଷରେ ବିସର୍ଗ ଯୁକ୍ତ ନାମ ଶବ୍ଦ ଦେବ
ଏହିପରି ମନ୍ତ୍ରଗୋଟି ନିଷ୍ପନ୍ନ ହୋଇବ ।
ଏ ମନ୍ତ୍ରକୁ ଅଷ୍ଟୋତ୍ତର ଶତବାର ଜପି
ପ୍ରଣାମ କରନ୍ତି ସ୍ତବ ପଢ଼ି ସର୍ବ ଗୋପୀ ।
ବୋଲନ୍ତି ସର୍ବ ମଙ୍ଗଳେ ସର୍ବ ଶୁଭକାକ୍ଷୀ
ଆମ୍ଭ ମନୋରଥ ପୂର୍ଣ୍ଣ କର ଜଗଦ୍ଧାକ୍ଷୀ ।
ନୈବେଦ୍ୟ ସମର୍ପଣ କରି ସେ ଅନ୍ତରେ
ପୁଣି ସ୍ତବ ପାରାୟଣ କରନ୍ତି ଭକ୍ତିରେ ।
ପୂର୍ବକାଳେ ମଧୁକୈଟଭ ବେନଦୈତ୍ୟ
ବ୍ରହ୍ମାଙ୍କୁ ନାଶିବାପାଇଁ ହୁଅନ୍ତେ ଉଦ୍ୟତ ।
ବିଷ୍ଣୁଙ୍କ ନାଭି କମଳେ ବସି ପ୍ରଜାପତି
ଏହି ସ୍ତବ ପଢ଼ି କଲେ ପ୍ରକୃତିଙ୍କୁ ସ୍ତୁତି ।
ସ୍ତବର ସ୍ୱରୂପ ମଧ୍ୟ କହୁଅଛୁ ମୁହିଁ
ମନ ଦେଇ ଶୁଣ ଆହେ ଋଷିକୁଳସାଇଁ ।
ଦୁର୍ଗା ଶିବପ୍ରିୟା ମାୟା ନାରାୟଣୀ ଦେବୀ
ନମସ୍ତୁ ସର୍ବମଙ୍ଗଳା ଶଙ୍କର ବାନ୍ଧବ ।
ଦକାର ଦୈତ୍ୟ ନାଶନ ବାଚକ ଅଟଇ
ଉକାର ବିଘ୍ନ ବିଚ୍ଛେଦ ଅର୍ଥକୁ ବୁଝାଇ ।
ରେଫର ଅର୍ଥ ଅଟଇ ରୋଗ ବିନାଶନ
ଗକାର ପାପବିନାଶ ଅର୍ଥ ଏବେ ପୁଣ ।
ଆକାର ଅଟଇ ଭୟ ଶତ୍ରୁ ବିନାଶକ
ଏରୂପେ ଦୁର୍ଗା ଶବଦ ହେ ମୁନିନାୟକ ।
ଦୁର୍ଗା ଅଟନ୍ତି ଶ୍ରୀହରି ଶକତି ରୂପିଣୀ
କହି ଅଛନ୍ତି ଏରୂପେ ପ୍ରଭୁ ଚକ୍ରପାଣି ।
ବିପଦ ବାଚକ ଅଟେ ଦୁର୍ଗ ଏହି ଶବ୍ଦ
ଆକାର ନାଶ ବାଚକ ଶବଦର ଭେଦ ।

ଭକ୍ତଜନଙ୍କ ବିପଦ କରିବାରୁ ନାଶ
ଦୁର୍ଗା ବୋଲି ତାଙ୍କ ନାମ ହୋଇଛି ପ୍ରକାଶ
ଆଉର ଦୁର୍ଗା ଅଟଇ ରାକ୍ଷସ ବାଚକ
ଆକାର ବିନାଶ ହେତୁ ଅର୍ଥର ବୋଧକ ।
ସେ ସକାଶୁ ଦୈତ୍ୟ ବିନାଶନ ହେତୁ ସେହି
ଦେବୀରୁଟି ଦୁର୍ଗା ବୋଲି ନାମ ଛନ୍ତି ବହି ।
ଶିବ ଅଟେ ମୋକ୍ଷରୂପ ଅର୍ଥ ବୋଧକର
ଦାତା ଅର୍ଥ ଗୋଟି ପୁଣି ବୁଝାଏ ଆକାର ।
ତେଣୁ ମୋକ୍ଷଦାୟୀ ଅଟନ୍ତି ସେ ମହାମାୟୀ
ଶିବା ବୋଲି କରି ନାମ ଅଛନ୍ତି ସେ ବହି ।
ଅଭୟ ଦେବାରୁ ସେହି ବୋଲନ୍ତି ଅଭୟା
ରାଜ ସମ୍ପଦ ପ୍ରଦାନ କରିବାରୁ ମାୟା ।
ମା ଅଟଇ ମୋହରୂପ ଅର୍ଥ ପ୍ରକାଶିକା
ମା ଅକ୍ଷର ଗୋଟି ଅଟେ ପ୍ରାପତ ବାଚକା ।
ସେ ସକାଶୁ ମୋହର ସେ ଅଟଇ କାରଣ
ମାୟା ବୋଲି ତାଙ୍କ ନାମ ହୋଇଅଛି ଜାଣ
ନାରାୟଣଙ୍କ ସମାନ ହେବାରୁ ସେ ଭଲେ
ନାରାୟଣୀ ବୋଲିକରି ନାମକୁ ପାଇଲେ ।
ନିର୍ଗୁଣ ଆଉର ସବୁବେଳେ ବିଦ୍ୟମାନ
ଅଟନ୍ତି ଯେ ସନାତନୀ ତାହାଙ୍କର ନାମ ।
ଜୟଦାୟୀ ହେତୁରେ ସେ ଜୟା ବୋଲାଅନ୍ତି
ମଙ୍ଗଳ ଦେବାରୁ ସର୍ବ ମଙ୍ଗଳା ଅଟନ୍ତି ।
ଏହିପରି ଆଠଗୋଟି ନାମ ଦେବୀଙ୍କର
ପୂର୍ବେ ଯା ବ୍ରହ୍ମାଙ୍କୁ ଦେଇଛନ୍ତି ଦାମୋଦର ।
ସେ ନାମ ସ୍ମରଣ କରି ସ୍ତୁତିକଲେ ଧାତା
ପ୍ରସନ୍ନ ହୋଇଣ ତହିଁ ସର୍ବ ଆଦ୍ୟମାତା ।
ବିଷ୍ଣୁଙ୍କ ଦେହରେ ନିଦ୍ରା ରୂପରେ ତ ଥିଲେ
ସେକ୍ଷଣି ଆସି ବ୍ରହ୍ମାଙ୍କ ଆଗେ ଉଭା ହେଲେ
ଶ୍ରୀକୃଷ୍ଣ କବଚ ଦେଇ ହେଲେ ଅନ୍ତର୍ଦ୍ଧାନ
ସେ ଅନ୍ତେ ଦୈତ୍ୟଙ୍କୁ ନାଶ କଲେ ଭଗବାନ
ତ୍ରିପୁର ସଂଗ୍ରାମକାଳେ ଦେବ ଶୂଳପାଣି
ଚେତନା ହରାଇ ରଥେ ପଡ଼ିଲେ ସେକ୍ଷଣି ।
ଗୁପତ ର ତାଙ୍କୁ ଏହା ଦେଲେ ପ୍ରଜାପତି
ନିଦ୍ରାଦେବୀଙ୍କୁ ଶଙ୍କର କଲେ ତହିଁ ସ୍ତୁତି ।
ସ୍ତୋତ୍ର ପ୍ରଭାବରେ ବୃଷ ରୂପେ ଜନାର୍ଦ୍ଦନ
ଆସିଲେ ଯୋଗକାୟାଙ୍କୁ ସଙ୍ଗରେ ଘେନିଣ ।

ରଥ ସହିତେ ଶିବଙ୍କୁ ମୁଣ୍ଡେ ବହିନେଲେ
ଅତି ଊର୍ଦ୍ଧ୍ୱ ଆକାଶରେ ନିର୍ଭୟେ ରଖିଲେ ।
ସେ ଅନ୍ତେ କବଚ ପାଇଁ କୈଳାସ ଈଶ୍ୱର
ସଂଗ୍ରାମରେ କଲେ ହେଲେ ତ୍ରିପୁର ସଂହାର
ସେହି ସ୍ତୋତ୍ରକୁ ପଠନ କରିବା ଫଳରେ
କୃଷ୍ଣଙ୍କୁ ପାଇଲେ ଗୋପୀ ପତି ସ୍ୱରୂପରେ ।
ଗୋପିକା କୃତ ସ୍ତୋତ୍ରକୁ ପଢ଼ିବ ଯେ ନିତ୍ୟ
ସକଳ କଳୁଷ ତାର ହୋଇବ ଖଣ୍ଡିତ ।
ଶୈବ ଅବା ବଇଷ୍ଣବ ଶାକ୍ତ ଅବା ହେଲେ
ସିଦ୍ଧି ପାଇବ ନିଶ୍ଚୟ ଏ ସ୍ତୋତ୍ର ପଢ଼ିଲେ ।
ଇହ ଲୋକରେ ସକଳ ସମ୍ପଦ ମିଳଇ
ଅନ୍ତଃକାଳେ ଶ୍ରୀହରିଙ୍କ ବାସରକୁ ପାଇ ।
ଆହେ ନାରଦ ମହର୍ଷି ଏହି ପରକାରେ
ଗୋପୀଏ ପୂଜା କରନ୍ତି ପ୍ରତ୍ୟେକ ଦିନରେ
ଏକମାସ ସମାପତ ହେଲା ଯେଉଁଦିନ
ଯମୁନାକୁ ଗଲେ ସର୍ବେ କରିବାକୁ ସ୍ନାନ ।
ଅଙ୍ଗର ବସନ ଫେଇ ସେ ନଦୀତଟରେ
ଥୋଇଲେ ଯତନ କରି ଗୋଟିଏ ସ୍ଥାନରେ
ଆଉର ନାନା ପ୍ରକାର ଆଭରଣ ମାନ
ଅଙ୍ଗରୁ କାଢ଼ି ଥୋଇଲେ କରିଣ ଯତନ ।
ସେ ବସ୍ତ୍ର ଭୂଷଣ ଯୋଗେ ଯମୁନାର ତୀର
ବିଚିତ୍ର ବର୍ଣ୍ଣ ତେଜରେ ଦିଶିଲା ସୁନ୍ଦର ।
ଜଳ କ୍ରୀଡ଼ା କରିବାକୁ ସର୍ବଗୋପନାରୀ
ନଦୀ ମଧ୍ୟେ ପ୍ରବେଶିଲେ ବସ୍ତ୍ର ତ୍ୟାଗ କରି ।
ଶ୍ରୀକୃଷ୍ଣଙ୍କଠାରେ ମନ ଦେଇଣ ସମସ୍ତେ
ସ୍ନାନକଲେ କୁତୂହଳ ବଢ଼ି ନିଜ ଚିତ୍ତେ ।
ଏହି ସମୟରେ ନନ୍ଦ ରାଜାଙ୍କର ସୁତ
ଅକସ୍ମାତେ ଆସି ତହିଁ ହେଲେ ଉପସ୍ଥିତ ।
ଦେଖିଲେ ଗୋପିକାଗଣ ବସ୍ତ୍ର ତଟେ ଥୋଇ
କ୍ରୀଡ଼ା କରୁଛନ୍ତି ଜଳ ଭିତରକୁ ଯାଇ ।
ନାନାବିଧ ନଇବେଦ୍ୟ ଦ୍ରବ୍ୟମାନ ଆଣି
ରଖିଅଛନ୍ତି ଯତ୍ନରେ ଯଥାସ୍ଥାନେ ଜାଣି ।
ତାହା ଦେଖି ବାଳକଙ୍କୁ ସଙ୍ଗତରେ ଧରି
ଗୋଟାଇଲେ ବସ୍ତ୍ରସବୁ ବୁଲି ବୁଲି କରି ।
ଏକତ୍ର କରିଣ ବାନ୍ଧି ଦୂରସ୍ଥାନେ ଗଲେ
ନୈବେଦ୍ୟ ପଦାର୍ଥମାନ ବାଣ୍ଟି ଖାଇ ଦେଲେ

ଶ୍ରୀଦାମା ସୁଦାମା ବସୁଦାମା ଗୋପସୁତ
ସୁବଳ ସୁପାର୍ଶ୍ୱ ଶୁକ୍ଳଅଙ୍ଗ ଶୁଭ୍ରବ୍ରତ ।
ଚନ୍ଦ୍ରଭାନୁ ଶାରଭାନୁ ସୂର୍ଯ୍ୟଭାନୁ ଭୁଲେ
ବସୁଭାନୁ ରତ୍ନଭାନୁ ଦୁହେଁ ମିଶି ଭଲେ ।
ଶ୍ରୀକୃଷ୍ଣ ବଳଦେବଙ୍କୁ ଆଗରେ ଚଳାଇ
ବସ୍ତ୍ର ଘେନିଗଲେ ଅତି ଦୂରକୁ ପଳାଇ ।
ତହିଁରୁ କେତେକ ନେଇ ଶ୍ରୀକୃଷ୍ଣ ସତ୍ୱରେ
ଆରୋହଣ କଲେ ଏକ କଦମ୍ବ ବୃକ୍ଷରେ ।
ଯମୁନା ନଦୀ ଜଳରେ ଗୋପୀଙ୍କୁ ଅନାଇ
ବୋଇଲେ କି ବ୍ରତ କରୁଅଛ ମେଳ ହୋଇ
ଏବେ ମୋର ବଚନକୁ ଶୁଣ ଦେଇ ଚିତ୍ତ
ସଂକଳ୍ପ କରିଣ ମାସେ ଆଚରିଲ ବ୍ରତ ।
ଶେଷ ଦିବସରେ କିପାଁ ବସ୍ତ୍ର ମାଲ୍ୟ ତେଜି
ସ୍ନାନ କରୁଅଛ କଳଭୂକ ରସେ ମଜ୍ଜି
ବ୍ରତର ଅଙ୍ଗ ଅଟଇ ବସ୍ତ୍ର ଅଳଙ୍କାର
ଉଚିତ ନୁହଇ ତାହା ତ୍ୟାଗ କରିବାର ।
ତୁମ୍ଭର ଅମାନ୍ତ ଦେଖି ବରୁଣ ଦେବତା
କ୍ରୋଧରେ ତୁମ୍ଭଙ୍କୁ କିଛି ନ କହିଣ କଥା
ବସ୍ତ୍ର ଅଳଙ୍କାରମାନ ହରି ଘେନିଗଲେ
ଭୃତ୍ୟଙ୍କୁ ପଠାଇ ଗୁପ୍ତ ସ୍ଥାନରେ ରଖିଲେ ।
ଯେଉଁ ଦେବତାଙ୍କୁ ତୁମ୍ଭେ ଆରାଧନା କର
ସେ ତ ନ ରଖିଲେ ତୁମ୍ଭ ବାସ ଅଳଙ୍କାର ।
ଏମନ୍ତ ଦେବତା ପୂଜା କଲେ କେଉଁ ଫଳ
ହେବ ବୋଲି ତୁମ୍ଭେ ଏତେ ପରିଶ୍ରମ କଲ ।
ପଦାର୍ଥ ରଖିବା ପାଇଁ ଯାର ବଳ ନାହିଁ
ସେ ଅବା କି ଫଳ ଦେବ ବ୍ରତ ପୂଜା ପାଇ
ଶ୍ରୀକୃଷ୍ଣ ବଚନ ଶୁଣି ଗୋପିକା ସକଳ
କି କରିବା ବୋଲି ମନେ ହୋଇଲେ ଆକୁଳ
କେତେ ଯାଇ ନଦୀତଟ ଦେଶରେ ମିଳିଲେ
ବସ୍ତ୍ର ଅଳଙ୍କାର କିଛି କାହିଁ ନ ଦେଖିଲେ ।
ଜଳ ମଧ୍ୟେ ପଶି ପୁଣି ଡକାଇ ସମସ୍ତ
ବୋଇଲେ କେ ହରିନେଲା ଅଳଙ୍କାର ବସ୍ତ୍ର ।
ସେ ଅନ୍ତରେ ପୁଣି ସର୍ବେ ଏକମନ ହୋଇ
ବରୁଣ ଦେବଙ୍କୁ ସ୍ତୁତି କଲେ ଜଳେ ରହି ।
ବୋଇଲେ ନମସ୍ତେ ଦେବ ଜଳ ଅଧୀଶ୍ୱର
ହରିନେଲ କିପାଁ ଆମ୍ଭ ବାସ ଅଳଙ୍କାର ।
ଆମ୍ଭେ ଅଟୁ ଗୋପନାରୀ ତୁମ୍ଭ ପାଦ ଦାସୀ
କିପାଇଁ ହରିଲ ପ୍ରଭୁ ଆମ୍ଭ ବସ୍ତ୍ର ଆସି ।
ଆଦର ଦେବୀଙ୍କ ପାଇଁ ନଇବେଦ୍ୟ ଦ୍ରବ୍ୟ
ରଖିଥିଲୁ ଯାହା ହରି ନେଇଅଛ ସର୍ବ ।
ସେ ଦ୍ରବ୍ୟ ଦେବସ୍ୱ ବୋଲି ଜାଣିଥିଲୁ ଆମ୍ଭେ
ଆପଣ ତା ଏବେ ଘେନିଗଲ ଆସି ଦମ୍ଭେ ।
ଏହି ସମୟେ ଶ୍ରୀଦାମା ସେଠାକୁ ଆସିଲେ
ବସ୍ତ୍ର କେତେଗୋଟି ଆଣି ତାଙ୍କୁ ଦେଖାଇଲେ
ପୁଣି ସେହିକ୍ଷଣି ତହୁଁ ପଳାଇଲେ ଧାଇଁ
କୁପିତ ହୋଇଲେ ରାଧିକା ତାହାଙ୍କୁ ଅନାଇ ।
ସଖୀଙ୍କୁ ବୋଇଲେ ବେଗ ହୋଇ ତୁମ୍ଭେ ଯାଅ
ଏ ଦୁଷ୍ଟ ଶିଶୁର ହସ୍ତ ପାଦ ବାନ୍ଧିଦଅ ।
ସମସ୍ତେ ମିଳି ଉଠାଇ ଆଣ ମୋ ପାଖକୁ
ଉଚିତ ଦଣ୍ଡ ନିଶ୍ଚୟ ଦେବି ମୁଁ ଏହାକୁ ।
ତା ଶୁଣି ସୁଶୀଳା ଶଶିକଳା ଚନ୍ଦ୍ରମୁଖୀ
ସ୍ୱୟଂପ୍ରଭା ଆଦିକରି ଥିଲେ ଯେତେ ସଖୀ ।
ସମସ୍ତେ ଜଳରୁ ଉଠି ତରତର ହୋଇ
ଗୋଡାଇଲେ କର ଅଙ୍ଗ ହସ୍ତରେ ଘୋଡ଼ାଇ
ତାଙ୍କ ପଛେ ପଛେ ତାଙ୍କ ସହଚରୀଗଣ
ଗଲେ ସେହିପରି କ୍ରୋଧେ ହୋଇ କମ୍ପମାନ ।
ବସ୍ତ୍ର ଘେନି ଶ୍ରୀଦାମା ତ ଆଗେ ଯାଉଥିଲେ
ଅନ୍ୟ ଗୋପ ଶିଶୁଙ୍କର ପାଶରେ ମିଳିଲେ ।
ଅତ୍ୟନ୍ତ ବେଗରେ ଯାଇ ଗୋପିକା ସକଳ
ବେଢ଼ିଲେ ତାହାଙ୍କ ଚଉପାଶେ ବାନ୍ଧି ମେଳ
ବାଳକମାନେ ସେ କଥା ଦେଖି ଭୟକରି
ପଳାଇଲେ ଯେଉଁଠାରେ ଥିଲେ ବଂଶୀଧାରୀ ।
ଗୋପୀମାନେ ମଧ୍ୟ ତାଙ୍କ ସଙ୍ଗତରେ ଗଲେ
କୃଷ୍ଣ ସନ୍ନିଧରେ ସମସ୍ତଙ୍କୁ ଆଗୁଳିଲେ ।
ଶ୍ରୀକୃଷ୍ଣ ତା ଜାଣି ବେଗେ କଦମ୍ବ ବୃକ୍ଷରେ
ଆରୋହଣ କଲେ ବସ୍ତ୍ର ଘେନିଣ କକ୍ଷରେ ।
ଡାଳମାନଙ୍କରେ ସବୁ ଯତନରେ ବାନ୍ଧି
ଥୋଇଲେ କେତେକ ତହିଁ କରି ଛନ୍ଦାଛନ୍ଦି ।
ସେଅନ୍ତରେବୋଇଲେହୋଶୁଣଗୋପୀମାନେ
ଉଲଗ୍ନ ହୋଇଣ ଏବେ ଯିବ କେଉଁସ୍ଥାନେ ।
ବସ୍ତ୍ର ପାଇବାକୁ ଇଚ୍ଛା ହେଉଅଛି ଯେବେ
ବେନିକର ଯୋଡ଼ି ମୋତେ ସ୍ତୁତି କର ତେବେ

ତୁମ୍ଭ ଇଷ୍ଟଶ୍ରୀ ରାଧିକା ଆଗେ ଯାଇ କହ
ସେ ମଧ୍ୟ ତୁଷ୍ଟ କରନ୍ତୁ ଛାଡ଼ି ମନୁ କୋହ ।
ନୋହିଲେ କଦାପି ବସ୍ତ୍ର ନେବ ନାହିଁ ମୁହିଁ
ଗଲେ ପଛେ ଯିବ କନ୍ୟାମାନେ ନଗ୍ନ ହୋଇ
ରାଧିକା କି କରି ଅବା ପାରିବେ ଯେ ମୋତେ
ବୃକ୍ଷରେ ତ ଚଢ଼ି ନ ପାରିବେ କଦାଚିତେ ।
ଆଉର ତୁମ୍ଭର ଯେହୁ ଆରାଧ୍ୟ ଦେବତା
ତାଙ୍କୁ ଲଙ୍ଘିବାରେ ମୋତେ ଲାଗୁନାହିଁ ଚିନ୍ତା ।
ଶ୍ରୀକୃଷ୍ଣଙ୍କ ବାକ୍ୟ ଶୁଣି ସର୍ବ ଗୋପନାରୀ
ରାଧାଙ୍କ ଆଗରେ ସବୁ କହିଲେ ବିସ୍ତାରି ।
ରାଧିକା ସେ କଥା ଶୁଣି ଈଷତରେ ହସିଲେ
ଶ୍ରୀକୃଷ୍ଣଙ୍କ ମନୋଗତ ଭାବକୁ ଜାଣିଲେ ।
ସେ ସକାଶୁ ପୁଲକିତ ହେଲା ତାଙ୍କ ଅଙ୍ଗ
ଭକ୍ତିଭାବ ଆସି କଲା ହୃଦୟକୁ ସଙ୍ଗ ।
ଜଳରେ ଯୋଗ ଆସନ ରଚନା ସେ କରି
ବସିଲେ ଶ୍ରୀକୃଷ୍ଣ ପାଦପଦ୍ମକୁ ସୁମରି ।
ଆଉର ବୋଇଲେ ପ୍ରଭୁ ଗୋପିକାବଲ୍ଲଭ
ପ୍ରକାଶିତ କର ଆତ୍ମପ୍ରତି ଦୟାଭାବ ।
ନନ୍ଦ ଯଶୋଦା ହୃଦୟ ଆନନ୍ଦଦାୟକ
ଶତମନ୍ୟୁ ମନ୍ୟୁ ହନ୍ତା ବ୍ରହ୍ମାଣ୍ଡ ନାୟକ ।
କାଳୀୟ ମର୍ଦ୍ଦନକାରୀ ଶଙ୍ଖ ଚକ୍ରଧର
ତୁମ୍ଭ ପାଦ କମଳରେ କୋଟି ନମସ୍କାର ।
ବ୍ରହ୍ମେଶ ବ୍ରହ୍ମ ସ୍ୱରୂପ ବ୍ରହ୍ମରୂପ ହେତୁ
ଚରାଚର ବୃକ୍ଷବୀଜ ସଂସାରର ସେତୁ ।
ଗୁଣବୀଜ ଗୁଣାତ୍ମକ ସର୍ବ ଗୁଣାଧାର
ତୁମ୍ଭ ଚରଣ ଯୁଗରେ କୋଟି ନମସ୍କାର ।
ଯାହାଙ୍କ ପାଦକୁ ମୁହିଁ ଲକ୍ଷ୍ମୀ ସରସ୍ୱତୀ
ଦୁର୍ଗା ଗଙ୍ଗାଆଦି ନିତ କରୁଅଛୁଁ ସ୍ତୁତି ।
ତାହାଙ୍କୁ ବନ୍ଦନା ଆମ୍ଭେ କରୁ ଭକ୍ତିଭରେ
ପ୍ରସନ୍ନ ହୁଅନ୍ତୁ ମହାପ୍ରଭୁ ଆମ୍ଭଠାରେ ।
ଏମନ୍ତ ବୋଲିଣ ଦେବୀ ଜଳମଧ୍ୟେ ଥାଇ
ଶ୍ରୀକୃଷ୍ଣ ଶରୀରେ ମନ ନିବେଶିଲେ ନେଇ ।
ରାଧିକା ଦେବୀଙ୍କ କୃତ ଏ ମହାସ୍ତୋତ୍ରକୁ
ତ୍ରିସନ୍ଧ୍ୟାରେ ପଢ଼ଇ ଯେ ପ୍ରକାଶି ଭକ୍ତିକୁ ।
ବିପଦ ମୁଖରୁ ସେହୁ ସୁରକ୍ଷିତ ହୁଏ
ଧନଜନ ଗୋପଲକ୍ଷ୍ମୀ ସହଜରେ ପାଏ ।
କନ୍ୟା ଯେବେ ବର୍ଷେ ଯାଏ ପଢ଼ିବ ଏହାକୁ
ଶ୍ରୀକୃଷ୍ଣ ସଦୃଶ ବର ମିଳିବ ତାହାକୁ ।
ଆହେ ନାରଦ ମହର୍ଷି ଏହି ପରକାରେ
ମନ ନିବେଶି ରାଧିକା ଶ୍ରୀକୃଷ୍ଣ ପଦରେ ।
ସ୍ତୁତି କଲାପରେ ନେତ୍ର ଫିଟାଇ ଚାହିଁଲେ
ସବୁ ଆଡ଼େ ଶ୍ରୀକୃଷ୍ଣ ମୂରତି ଦେଖିଲେ ।
ଆଉର ଦେଖିଲେ ନଦୀତଟେ ତାହାଙ୍କର
ଥୁଆ ହୋଇଛି ସବୁ ବସ୍ତ୍ର ଅଳଙ୍କାର ।
ଭାବିଲେ ଅଦ୍ଭୁତ ସ୍ୱପ୍ନ ଦେଖିଲେ ବା ସେହି
ନୋହିଲେ ବା ଥିଲା ତାଙ୍କ ମତିଭ୍ରମ ହୋଇ
ସେ ଅନ୍ତେ ଜଳରୁ ଉଠି ସମସ୍ତ ଆସିଲେ
ନିଜ ନିଜ ବସ୍ତ୍ର ଅଳଙ୍କାର ଚିହ୍ନି ନେଲେ ।
ଯଥା ବିଧି ସମାପନ କରି ଶୁଭବ୍ରତ
ଆନନ୍ଦେ ସେ ଯାହା ଗୃହେ ହେଲେ ଉପଗତ
ନାରଦ ବୋଇଲେ କେଉଁ ବ୍ରତ ସେ ଅଟଇ
କି ପଦାର୍ଥ ଅବା ଆବଶ୍ୟକ ହୁଏ ତହିଁ ।
ଗୋପୀମାନେ ସମାପତ କଲା ପରେ ତାହା
କେଉଁ ରହସ୍ୟ ଘଟିଲା କହ ମୁନିନାହା ।
ନାରାୟଣ ବୋଇଲେକ ସେ ସମସ୍ତ କଥା
କହିବା ମନ ଦେଇଣ ଶୁଣ ସରକଥା ।
ଗୌରୀବ୍ରତ ବୋଲି ନାମ ଅଟଇ ତାହାର
ଆରମ୍ଭ ହୁଅଇ ମାଘ ହେଲେ ମାର୍ଗଶିର ।
ବିଶେଷରେ କନ୍ୟାଙ୍କର କର୍ତ୍ତବ୍ୟ ଏ ବ୍ରତ
କହିବା ତାର ବିଧାନ ଶୁଣ ଦେଇ ଚିତ୍ତ ।
ପ୍ରାତଃକାଳୁ ଉଠି ସ୍ନାନବିଧି ଶେଷକରି
ଧଉତ ବସନ ପିନ୍ଧି ଅଳଙ୍କାର ଭରି ।
ଗଣେଶାଦି ଷଡ଼ଦେବ ଦେବୀଙ୍କୁ ଘଟରେ
ପୂଜା କରିବ ପ୍ରଥମେ ପଞ୍ଚ ଉପଚାରେ ।
ଘଟ ନିକଟରେ ବାଲି ପିଣ୍ଡିକା କରିବ
କର୍ପୂର ଚନ୍ଦନ ତହିଁ ଉପରେ ଲେପିବ ।
ବାଲୁକାରେ ପୁଣି ଦଶଭୁଜା ଦୁର୍ଗାମୂର୍ତ୍ତି
ସ୍ଥାପନା କରିବ ବିଧି ଅନୁସାରେ ବ୍ରତୀ ।
ଆବାହନ କରି ତହିଁ ପ୍ରକୃତି ଦେବୀଙ୍କୁ
କର ଯୋଡ଼ିଣ ପଠନ କରିବ ମନ୍ତ୍ରକୁ ।
କହୁଅଛି ଶୁଣ ମୁହିଁ ତାହାର ସ୍ୱରୂପ
ଯାହାକୁ ଜପିଲେ ଦେହେ ନ ରହଇ ପାପ ।

ନମସ୍ତେ ଶଙ୍କରପ୍ରିୟା ଶିବ ଅର୍ଦ୍ଧାଙ୍ଗିନୀ
ନମୋନମଃ ଶୈଳପୁତ୍ରି ମନ୍ତ୍ରଶ ମର୍ଦ୍ଦିନୀ ।
ପ୍ରଥମେ ଏମନ୍ତ ପଢ଼ି ପୂଜା ଆରମ୍ଭିବ
ଶେଷେ ପୁଣି ଆଜ ଏକ ମନ୍ତ୍ରକୁ ପଢ଼ିବ ।
ବୋଲିବ ଗୋ ଦେବୀ ତୁମ୍ଭେ ଶିବଙ୍କୁ ପ୍ରେମରୂପେ
ପାଇଅଛ ମୋତେ ପତି ଦିଅ ସେହିରୂପେ ।
ସେ ଅନ୍ତରେ ସାମବେଦ ଉକ୍ତ ଯେଉଁ ଧ୍ୟାନ
ପଢ଼ିବ ତା କହୁଅଛୁ ଶୁଣ ଦେଇ ମନ ।
ଶିବା ଶିବପ୍ରିୟା ଶିବ ବକ୍ଷସ୍ଥଳ ସ୍ଥିତା
ପ୍ରସନ୍ନ ବଦନା ହିମାଳୟ ପ୍ରିୟା ସୁତା
ନବ ଯଉବନୀ ରତ୍ନଭୂଷଣ ଭୂଷିତା
ମାଳତୀ ପାରିଜାତକ କୁସୁମ ମଣ୍ଡିତା ।
ସ୍ମିତମୁଖୀ ବହ୍ନିଶୁଦ୍ଧ ବସନ ଧାରିଣୀ
ସୁଶ୍ରୋଣୀ ନିତମ୍ବ ଯୁକ୍ତା ଘଟ ପୀନସ୍ତନୀ ।
ବ୍ରହ୍ମାଦି ଦେବ ବନ୍ଦିତା ସୂର୍ଯ୍ୟ କୋଟିପ୍ରଭା
ପକ୍ୱ ବିମ୍ବାଧରୀ ସ୍ୱର୍ଣ୍ଣ ଚମ୍ପକ ସନ୍ନିଭା ।
ଭକ୍ତ ମନୋରଥ ପୂର୍ଣ୍ଣକାରିଣୀ ସୁନ୍ଦରୀ
ନମସ୍ତେ ନମସ୍ତେ ଦେବୀ ତ୍ରୈଲୋକ୍ୟ ଈଶ୍ୱରୀ
ଏହିରୂପେ ବୋଲି ନିଜ ମସ୍ତକ ଉପରେ
ପ୍ରସାଦ କୁସୁମ ନେଇ ଦେବକ ଯତ୍ନରେ ।
ସେ ଅନ୍ତରେ ଷୋଳ ଉପଚାର କ୍ରମେ ଦେଇ
ସମାପ୍ତ କରିବ ପୂଜାବିଧି କହୁଥାଇ ।
କରଯୋଡ଼ି ପୁଣି ଦେବୀଙ୍କର ସମ୍ମୁଖରେ
ଉଭାହୋଇ ପ୍ରଣମିବ ଭକତି ଭାବରେ ।
ଭୋଜନ ନ କରି ବ୍ରତ କଥାକୁ ଶୁଣିବ
ବ୍ରାହ୍ମଣଙ୍କୁ ବହୁ ଧନରତ୍ନ ଦାନ ଦେବ ।
ନାରଦ ବୋଇଲେ ବ୍ରତ ବିଧାନ ଯେ ଫଳ
ଆପଣଙ୍କଠାରୁ ଏବେ ଶୁଣିଲି ସକଳ ।
କେବଳ ବ୍ରତ କଥାଟି ଶୁଣିବାକୁ ମନ
ହେଉଅଛି ଭଲରୂପେ କହ ତପୋଧନ ।
କେ ଅବା ଏ ବ୍ରତ ଆଗେ କଲା ପ୍ରକାଶିତ
ଆରମ୍ଭ କଲା କେ ତହୁଁ ବିଶେଷିଣ ଚିତ୍ତ ।
ନାରାୟଣ ବୋଇଲେ ହେ କୁଶଧ୍ୱଜ ସୁତା
ବେଦବତୀ ନାମରେ ଯେ ଅଟନ୍ତି ବିଖ୍ୟାତା ।
ପ୍ରଥମେ ପୁଷ୍କର ତୀର୍ଥେ କଲେ ଏହି ବ୍ରତ
ସମାପ୍ତି ଦିନେ ଦର୍ଶନ ଦେଲେ ଆଦିମାତ ।

ଲକ୍ଷେ ଯୋଗିନୀ ସହିତେ ପରମ ଈଶ୍ୱରୀ
ବେଦବତୀଙ୍କ ଆଗରେ ଉଭାହୋଇ କରି ।
ବୋଇଲେ ଗୋ ବେଦବତୀ ଯେ ଇଚ୍ଛା ତୁମ୍ଭର
ମାଗ ଆସିଅଛୁ ମୁହିଁ ଦେବା ପାଇଁ ବର ।
ତାହା ଶୁଣି ବେଦବତୀ ହରଷିତା ହେଲେ
କରଯୋଡ଼ି ଦେବୀଙ୍କର ଆଗେ ଜଣାଇଲେ ।
ବୋଇଲେ ନାରାୟଣଙ୍କୁ ପତିରୂପେ ମୁହିଁ
ପାଇବାକୁ ଇଚ୍ଛା କରିଅଛି ମହାମାୟୀ ।
ଏହି ବର ମୋତେ ଏବା ଦିଅ ଦୟା କରି
ଅନ୍ୟ ବରେ ପ୍ରୟୋଜନ ନାହିଁ ଯେ ମୋହର
ଶୁଣିଣ ପାର୍ବତୀଦେବୀ ବୋଇଲେ ଗୋ ସତୀ
ତୁମ୍ଭେ ଅଟ ମହାଲକ୍ଷ୍ମୀ ବିଷ୍ଣୁ ପ୍ରିୟବତୀ ।
ପାଦରଜରେ ପବିତ୍ର କରିବାକୁ ମହୀ
ବେଦବତୀ ରୂପେ ଏବେ ଅଛ ଜାତ ହୋଇ ।
ଲୋକଶିକ୍ଷା ସକାଶରେ କରିଅଛ ବ୍ରତ
ନାରାୟଣଙ୍କର କାନ୍ତା ଅଟ ଯେ ନିୟତ ।
ତ୍ରେତାଯୁଗେ ଦଶରଥ ନୃପତିଙ୍କ ଘରେ ।
ଜନମିବେ ନାରାୟଣ ଶ୍ରୀରାମ ରୂପରେ ।
ଦୈତ୍ୟଙ୍କୁ ମୋକ୍ଷ ଦେବାକୁ ପ୍ରଭୁ ନରହରି
ଏକମାତ୍ର ସ୍ୱରଗୋଟି ଜଗେ ଅବତରି ।
ଅଯୋଧ୍ୟା ନଗରେ ନିଜେ ପ୍ରକାଶିତ ହେବେ
ମହୀମଣ୍ଡଳାର ଭାର ହେଳେ ନିବାରିବେ ।
ତୁମ୍ଭେ ମଧ ଶିଶୁରୂପେ ମିଥିଳାକୁ ଯିବ
ଜନକ ଋଷିଙ୍କ କନ୍ୟା ହୋଇକରି ଥିବ ।
ଅଯୋନି ସମ୍ଭବା ଦେଖି ତୁମ୍ଭଙ୍କୁ ଜନକ
ପାଳନା କରିବେ ଯତ୍ନ କରିଣ ଅନେକ ।
ମିଥିଳାକୁ ରାମଚନ୍ଦ୍ର ସ୍ୱଇଚ୍ଛାରେ ଯାଇ
ଗ୍ରହଣ କରିବେ ତୁମ୍ଭଙ୍କୁ ସେ କହୁଥାଇଁ ।
ଏମନ୍ତ କହିଣ ଦେବୀ ଅନ୍ତର୍ଦ୍ଧାନ ହେଲେ
ବେଦବତୀ ଶିଶୁରୂପେ ମିଥିଳାକୁ ଗଲେ ।
ମାୟାରେ ଲଙ୍ଗଳ ରେଖା ତଳେ ଥିଲେ ଶୋଇ
ଦେଖିଣ ଜନକ ତାଙ୍କୁ ଆଚମ୍ବିତ ହୋଇ ।
ବକ୍ଷରେ ଘେନିଣ ନିଜପୁରେ ଯାଉଥିଲେ
ଏ ସମୟେ ଆକାଶରୁ ବଚନ ଶୁଣିଲେ ।
ଆହେ ଜନକ ଏ କନ୍ୟା ଅଟନ୍ତି କମଳା
ପାଳନ କର ଏହାଙ୍କୁ ନ କରିଣ ହେଳା ।

ଭୂଧର ଜାମାତା କାଳେ ହେବେ ନାରାୟଣ
ସନ୍ଦେହ ଏଥିରେ କିଛି ନାହିଁ ବୋଲି ଜାଣ
ଏହିରୂପେ ଦୈବ ବାଣୀ ଶୁଣିଣ ଜନକ
ନିଜ ଅନ୍ତଃପୁରେ ଗଲେ ହୋଇ ସମୁତ୍ସୁକ ।
ଭାର୍ଯ୍ୟାଙ୍କ କୋଳେ ନେଇ କନ୍ୟା ସମର୍ପିଲେ
ଦେଖି ତାଙ୍କୁ ସତ୍ତ ଅତି ଯତ୍ନରେ ପାଳିଲେ ।
କେତେକାଳ ପରେ ସୀତା ଯଉବନବତୀ
ହୁଅନ୍ତେ ତାଙ୍କୁ ବିବାହ କଲେ ଦାଶରଥି ।
ବ୍ରତ ପ୍ରଭାବରେ ଏହିପରି ବେଦବତୀ
ନାରାୟଣଙ୍କୁ ପାଇଲେ ଆହେ ମହାପତି ।
ରାଧିକା ଦେବୀ ସେରୂପେ ନନ୍ଦନନ୍ଦନଙ୍କୁ
ପାଇଲେ ପାଳନା କରି ଏ ମହା ବ୍ରତକୁ ।
ଭାରତବର୍ଷରେ ଯେଉଁ କନ୍ୟା ଏହା କରେ
ଶ୍ରୀକୃଷ୍ଣ ସମାନ ପତି ଲଭେ ନିଶ୍ଚୟରେ ।
ଗୋପିକାମାନେ ତ ଏହି ବ୍ରତ କରୁଥିଲେ
ଏ ମହାସ୍ତୋତ୍ର ପ୍ରତ୍ୟହ ପଠନ ସେ କଲେ
ସମାପ୍ତି ଦିନରେ କାଣ୍ଵ ଶାଖାରେ ଯେ ଉକ୍ତ
ପଠନକଲେ ତାହାକୁ ତୋଷବନ୍ତ ଚିତ୍ତ
ସେହି ସ୍ତୋତ୍ର ପଢ଼ି ସୀତା ଶ୍ରୀରାମଚନ୍ଦ୍ରଙ୍କୁ
ପତିରୂପେ ପାଇ ହୃଷ୍ଟକଲେ ହୃଦୟକୁ ।
ସ୍ୱରୂପ ସେହି ସ୍ତୋତ୍ରର କହିବି ବତାଇ
ଶୁଣ ଆହେ ମୁନିବର ସ୍ଥିରମତି ହୋଇ ।
ପଦ୍ମ ଆସନରେ ବସି ଜନକ ନନ୍ଦନା ।
ପ୍ରଥମେ କଲେ ଦେବୀଙ୍କ ଚରଣ ବନ୍ଦନା
ସେ ଅନ୍ତେ ବୋଇଲେ ଦେବୀ ଶକ୍ତିସ୍ୱରୂପିଣୀ
ଶଙ୍କର ପ୍ରିୟା ସକଳ ଲୋକ ବିଧାୟିନୀ ।
ଦୟାକର ମହାମାୟେ ପତି ଦାନକର
ତୁମ୍ଭ ନିକଟରେ ମୋର କୋଟି ନମସ୍କାର ।
ସକଳ ମଙ୍ଗଳମୟୀ ସର୍ବଶୁଭ ଦାତ୍ରୀ
ଶଙ୍କର ଘରଣୀ ପତିବ୍ରତା ଜଗଦ୍ଧାତ୍ରୀ ।
ପରମ ଆତ୍ମାରୂପିଣୀ ନିତ୍ୟ ସନାତନୀ
ସାକାର ଆକାର ଶୂନ୍ୟେ ସର୍ବ ପ୍ରକାଶିନୀ ।
କ୍ଷୁଧା ତୃଷା ନିଦ୍ରା ତନ୍ଦ୍ରା ଶ୍ରଦ୍ଧା ଦୟା ସ୍ମୃତି
ତୁମ୍ଭ କଳାରୁ ଏ ସବୁ ହୋଇଛୁ ଉତ୍ପତ୍ତି ।
ଆଦରେ ଯେ ଲଜ୍ଜା ମେଧା ତୁଷ୍ଟି ପୁଷ୍ଟି ଆଦି
ଅଛନ୍ତି ତୁମ୍ଭ ଅଂଶରେ ଜନ୍ମିଛୁ ସମାଧି ।
ଦୃଷ୍ଟାଦୃଷ୍ଟ ପଦାର୍ଥର ବୀଜଫଳ ଦାତ୍ରୀ
ଅଟ ତୁମ୍ଭେ ଶିବପ୍ରିୟା ତ୍ରିଭୁବନ କର୍ତ୍ତ୍ରୀ ।
ଶଙ୍କର ସୌଭାଗ୍ୟଯୁକ୍ତା ସୌଭାଗ୍ୟ ଦାୟିନୀ
ଶ୍ରୀହରିଙ୍କୁ ପତିରୂପେ ଦିଅ ଗୋ ଭବାନୀ ।
ତୁମ୍ଭ ପାଦପଙ୍କଜରେ ଅଶେଷ ପ୍ରଣତି
କରୁଅଛି ମହେଶ୍ୱରି ଯେନ ମୋ ବିନତି
ଜାନକୀ କୃତ ଏ ସ୍ତୋତ୍ର ପଠନ ଯେ କରେ
ବିଷ୍ଣୁ ତୁଲ୍ୟ ପତି ତାକୁ ମିଳେ ନିଶ୍ଚୟରେ
ଆହେ ନାରଦ ମହର୍ଷି ଶୁଣ ମନଦେଇ
ସମାପ୍ତି ଦିବସେ ସର୍ବ ଗୋପୀ ମେଳ ହୋଇ
ଦେବୀଙ୍କୁ ପ୍ରଣାମକରି ବ୍ରତ ପୂର୍ଣ୍ଣକଲେ
ବ୍ରାହ୍ମଣଙ୍କୁ ଅନ୍ନବସ୍ତ୍ର ସ୍ୱର୍ଣ୍ଣ ରତ୍ନ ଦେଲେ ।
ପୁରୋହିତଙ୍କୁ ଦକ୍ଷିଣା ଦେଇଣ ବହୁତ
ସନ୍ତୋଷିତ କଲେ ପୁଣି ତାହାଙ୍କର ଚିତ୍ତ ।
ଏମନ୍ତ ସମୟେ ଦେବୀ ଶୂନ୍ୟମାର୍ଗେ ରହି
ଦେଖାଗଲେ କୋଟିସୂର୍ଯ୍ୟ ସମାନରେ ତହିଁ
ବଣିଭୂଜା ରତ୍ନସାର ଭୂଷଣ ଭୂଷିତା
କନକ ବରଣୀ ସିଂହପୃଷ୍ଠେ ଅବସ୍ଥିତା ।
କ୍ରମେ କ୍ରମେ ଆକାଶରୁ ଅବତୀର୍ଣ୍ଣ ହୋଇ
ମିଳିଲେ ଗୋପିକାଗଣ ରହିଥିଲେ ଯହିଁ ।
ଦେବୀଙ୍କୁ ଦେଖି ସେମାନେ ମସ୍ତକ ନୁଆଇଁ
ପ୍ରଣାମକଲେ ମସ୍ତକେ ବେନିକର ଦେଇ ।
ରାଧିକାଦେବୀଙ୍କୁ କୋଳେ ଘେନି ମହାମାୟୀ
ଆଶିଷ ପ୍ରଦାନକଲେ ହରଷିତା ହୋଇ ।
ମନୋରଥ ସିଦ୍ଧି ହେଉ ବୋଲି ଗୋପିକାଙ୍କୁ
ବରଦେଇ କହିଲେ ସେ ପୁଣି ରାଧିକାଙ୍କୁ ।
ବୋଇଲେ ରାଧିକେ ତୁମ୍ଭେ ଜଗତ ଜନନୀ
ମାୟାରୂପ ବହିଅଛ ଲୋକଶିକ୍ଷା ଘେନି ।
ଗୋଲୋକ ଗୋଲକନାଥ ବିରଜା ଶ୍ରୀଶୈଳ
ମନୋହର ବୃନ୍ଦାବନ ଶ୍ରୀରାସମଣ୍ଡଳ ।
ସୁମନୁଛଟିକି ପୂର୍ବ ସଂସ୍କାର ଯୋଗରେ
ଶ୍ରୀକୃଷ୍ଣ ତୁଲ୍ୟା ଯେ ତୁମ୍ଭେ ତେଜ ପ୍ରଭାବରେ
ପତିଙ୍କ ଅନୁଜ୍ଞା ଘେନି ମନୁଷ୍ୟ ରୂପରେ
ଜନ୍ମ ହୋଇଅଛ ସିନା ଗୋପାଳ ନଗରେ ।
ମାନୁଷୀ କାହିଁକି ତୁମ୍ଭେ ହେବ ମହାସତି
ଶ୍ରୀକୃଷ୍ଣ ଅର୍ଦ୍ଧଅଙ୍ଗରୁ ତୁମ୍ଭର ଉତ୍ପତ୍ତି ।

ଅଯୋନି ସମ୍ଭବା କୃଷ୍ଣ ପ୍ରାଣଧିକା ତୁମ୍ଭେ
ଶ୍ରୀଦାମା ଶାପରେ ଗୋପୀ ହେଲ ଜାଣୁ ଆମ୍ଭେ
ପୂର୍ବକାଳେ ଗୋଲୋକେ ଷାଠିଏ ସହସ୍ର ।
ବରଷ ଯାଏ ତପସ୍ୟା କରିଣ ଅଜସ୍ର ।
ତୁମ୍ଭ ପାଦ ଦରଶନ କରି ନ ପାରିଲେ
ମାନୁଷୀ ତୁମ୍ଭଙ୍କୁ ବୋଲି ପାରିବ କେ ଭଲେ
ତୁମ୍ଭ ପ୍ରସାଦେ ସୁପକ୍ଷ ଗୋଲୋକ ପାଇଲେ
ଏକାଂଶ କାର ଭୃଗୁ ପୃଥ୍ୱୀ ଜୟକଲେ ।
ଆଦର କାର୍ତ୍ତବୀର୍ଯ୍ୟଙ୍କୁ ମାରି ଘୋରରଣେ
ଗଣେଶ ଦନ୍ତକୁ ଭଗ୍ନ କଲେ ଯେ ଆପଣେ ।
ପ୍ରତ୍ୟେକ ଯୁଗରେ କୃଷ୍ଣ ତୁମ୍ଭ ପ୍ରାଣପତି
ତୁମ୍ଭେ ମଧ୍ୟ ଅଟ ତାହାଙ୍କର ପ୍ରିୟସତୀ ।
ଲୋକଙ୍କର ସକାଶରେ କରୁଅଛ ବ୍ରତ
ତୁମ୍ଭଠାରୁ ଏହା ଶିକ୍ଷା କରିବ ଜଗତ ।
ତିନମାସ ଅନ୍ତେ ଯେବେ ହେବ ମଧୁମାସ
ଶ୍ରୀକୃଷ୍ଣ ଆସି ପ୍ରବେଶ ହେବେ ତୁମ୍ଭ ପାଶ ।
ନିର୍ଜନ ନିର୍ମଳ ରମ୍ୟ ରଜନୀ କାଳରେ
ବୃନ୍ଦାବନେ ଷୋଳସହସ୍ର ଗୋପୀଙ୍କ ମେଳରେ ।
ହରଷେ କ୍ରୀଡ଼ା କରିବେ ନିଜ ଇଚ୍ଛାମତେ
ଜନମି ଅଛନ୍ତି ନନ୍ଦସୁତ ତୁମ୍ଭ ଅର୍ଥେ ।
ଯେଉଁରୂପେ ହରଙ୍କର ଅଟଇ ମୁଁ ଜାୟା
ତୁମ୍ଭେ ସେହିରୂପେ ଅଟ ଶ୍ରୀକୃଷ୍ଣଙ୍କ ପ୍ରିୟା ।
ପରମ ଈଶ୍ୱର ବ୍ରହ୍ମା ଇନ୍ଦ୍ରାଦି ସେବିତ
ଅଟନ୍ତି ଯେଉଁ ଶ୍ରୀକୃଷ୍ଣ ତ୍ରିଜଗତ ନାଥ ।
ସେ ତୁମ୍ଭର ବଶୀଭୂତ ହେବେ ଆମ୍ଭ ବରେ
କିଞ୍ଚିତମାତ୍ର ସଂଶୟ ନ ଘେନ ଏଥିରେ ।
କେତେକାଳ ପରେ ଦୁହେଁ ମର୍ତ୍ତ୍ୟଲୋକ ତେଜି
ଗୋଲୋକକୁ ଯିବ ପୂର୍ବ ବିଷୟକୁ ଭେଜି ।
ଏମନ୍ତ କହି ରାଧାଙ୍କୁ ଦେବୀ ମହାମାୟୀ
ସର୍ବେ ଦେଖୁଥିଲେ ଶୂନ୍ୟେଗଲେ ଲୀନହୋଇ
ଗୋପିଙ୍କ ସଙ୍ଗରେ ଘେନ ରାଧିକା ସୁନ୍ଦରୀ
ଉତ୍ୟତ ହୁଅନ୍ତେ ଯିବାପାଇଁ ନିଜପୁରୀ ।
ଦେଖିଲେ ଆଗରେ କୃଷ୍ଣ ଉଭା ହୋଇଛନ୍ତି
ନବ ଜଳଧର ପରି ବିରାଜଇ କାନ୍ତି ।
କଟିତଟେ ପୀତବାସ ଦିଶଇ ସୁନ୍ଦର
ମଣ୍ଡି ଅଛନ୍ତି ଅଙ୍ଗରେ ନାନା ଅଳଙ୍କାର ।
ଈଷତ ହାସ ରଞ୍ଜିତ ପ୍ରସନ୍ନ ବଦନ
ଶରତ ପଙ୍କଜ ସମ ବିଶାଳ ଲୋଚନ ।
ବିନୋଦ ମୁରଲୀ ବେନି ହସ୍ତରେ ଶୋଭିତ
ରୂପ ଲାବଣ୍ୟରେ କୋଟି କାମ ହେବ ଜିତ ।
ଅବ୍ୟକ୍ତ ଅକ୍ଷୟ ଜ୍ୟୋତିଃସ୍ୱରୂପ ସନାତନ
ମାଙ୍ଗଲ୍ୟ ମଙ୍ଗଳାଧାର ଶୁଭ ନିକେତନ ।
ବିଶ୍ୱ ବିମୋହନ ହରିହାସ ମୁଖ ଦେଖି
ସ୍ଥାବର ଜଙ୍ଗମ ଚରାଚର ହେବେ ସୁଖୀ ।
ଏହିରୂପେ ଶ୍ରୀକୃଷ୍ଣଙ୍କୁ ସମ୍ମୁଖରେ ଦେଖି
ରାଧାଦି ଗୋପିକାଗଣ ବୁଜି ବେନି ଆଖି ।
ଲଜ୍ଜାରେ ତଳକୁ ମୁଖ ପୋତିଣ ରହିଲେ·
ତା ଦେଖି ଶ୍ରୀକୃଷ୍ଣ ତାଙ୍କୁ ହସିଣ କହିଲେ ।
ବୋଇଲେ ହେଗୋ ପ୍ରାଣସଖି ରାଧିକା ସୁନ୍ଦରୀ
ମାଗ ଯେଉଁ ବର ଇଚ୍ଛା ହେଉଛି ତୁମ୍ଭରି ।
ଆବର ସକଳ ଗୋପୀଗଣ ଏବେ ତୁମ୍ଭେ
ମାଗ ଯେଉଁ ବର ଲୋଡ଼ା ଦେଇପାରୁଁ ଆମ୍ଭେ ।
ତାହା ଶୁଣି ରାଧାଦେବୀ କୃତାଞ୍ଜଳି ହୋଇ
ବୋଇଲେ ତୁମ୍ଭ ଚରଣେ ମନ ଥିବ ରହି ।
ଜାଗ୍ରତ ସ୍ୱପ୍ନ ସୁଖ ନିଦ୍ରା ଅବସ୍ଥାରେ
ଭକ୍ତି ରହିଥିବ ମୋର ତୁମ୍ଭ ଶ୍ରୀପଦରେ ।
ଏହା ବିନା ଅନ୍ୟ କିଛି ମୋର ଲୋଡ଼ାନାହିଁ
ଅନୁଗ୍ରହ କରି ଦିଅ ତ୍ରୈଲୋକ୍ୟ ଗୋସାଇଁ ।
ସେଅନ୍ତେ ଗୋପିକାଗଣ ବୋଇଲେ ଶ୍ରୀଦେବ
ପ୍ରଥମେ ରାଧିକା ମାଗି ଘେନିଲେ ଯା ସର୍ବ ।
ପ୍ରସନ୍ନ ହୋଇ ଆମ୍ଭଙ୍କୁ ମଧ୍ୟ ଦେବ ତାହା
ତୁମ୍ଭ ସେବାପାଇଁ ଜାତ ହେଉଛୁ ଉତ୍ସାହା ।
ଶ୍ରୀକୃଷ୍ଣ ତା ଶୁଣି ହେଉ ବୋଲିଣ ବୋଇଲେ
କ୍ରୀଡ଼ା ପଙ୍କଜ ଗୋଟିଏ ରାଧିକାଙ୍କୁ ଦେଲେ ।
ଲଳିତାଙ୍କୁ ଦେଲେ ଏକ ମାଳତୀର ମାଳା
ଭୂଷିତ କଲେ ସେ ନେଇ ଆପଣାର ଗଳା ।
ଅନ୍ୟ ଗୋପୀଙ୍କ ଶ୍ରୀକୃଷ୍ଣ ଭିନ୍ନ ଭିନ୍ନ ଫୁଲେ
ଗୋଟିଏ ଗୋଟିଏ ମାଳା ପୁଣି ତହିଁ ଦେଲେ
ସେ ଅନ୍ତେ ବୋଇଲେ ମୁହିଁ ତୁମ୍ଭର ସଙ୍ଗତେ
କ୍ରୀଡ଼ା କରିବି ଆଜହୁଁ ତିନମାସ ଅନ୍ତେ ।
ବୃନ୍ଦାବନେ ମନୋହର ରାସ ମଣ୍ଡଳରେ
ବିହରିବ ସୁଖେ ତୁମ୍ଭେ ଆମ୍ଭ ସଙ୍ଗତରେ ।

ତୁମ୍ଭର ଜାମାତା କାଳେ ହେବେ ନାରାୟଣ
ସନ୍ଦେହ ଏଥିରେ କିଛି ନାହିଁ ବୋଲି ଜାଣ
ଏହିରୂପେ ଦୈବ ବାଣୀ ଶୁଣିଣ ଜନକ
ନିଜ ଅନ୍ତଃପୁରେ ଗଲେ ହୋଇ ସମୁତ୍ସୁକ ।
ଭାର୍ଯ୍ୟାଙ୍କ କୋଳେ ନେଇ କନ୍ୟା ସମର୍ପିଲେ
ଦେଖି ତାଙ୍କୁ ସର୍ବେ ଅତି ଯତ୍ନରେ ପାଳିଲେ ।
କେତେକାଳ ପରେ ସୀତା ଯଉବନବତୀ
ହୁଅନ୍ତେ ତାଙ୍କୁ ବିବାହ କଲେ ଦାଶରଥି ।
ବ୍ରତ ପ୍ରଭାବରେ ଏହିପରି ବେଦବତୀ
ନାରାୟଣଙ୍କୁ ପାଇଲେ ଆହେ ମହାମତି ।
ରାଧିକା ଦେବୀ ସେରୂପେ ନନ୍ଦନନ୍ଦନଙ୍କୁ
ପାଇଲେ ପାଳନା କରି ଏ ମହା ବ୍ରତକୁ ।
ଭାରତବର୍ଷରେ ଯେଉଁ କନ୍ୟା ଏହା କରେ
ଶ୍ରୀକୃଷ୍ଣ ସମାନ ପତି ଲଭେ ନିଶ୍ଚୟରେ ।
ଗୋପିକାମାନେ ତ ଏହି ବ୍ରତ କରୁଥିଲେ
ଏ ମହାସ୍ତୋତ୍ର ପ୍ରତ୍ୟହ ପଠନ ସେ କଲେ
ସମାପ୍ତି ଦିନରେ କାଣ୍ୱ ଶାଖାରେ ଯେ ଉକ୍ତ
ପଠନକଲେ ତାହାକୁ ତୋଷବନ୍ତ ଚିତ୍ତ
ସେହି ସ୍ତୋତ୍ର ପଢ଼ି ସୀତା ଶ୍ରୀରାମଚନ୍ଦ୍ରଙ୍କୁ
ପତିରୂପେ ପାଇ ହୃଷ୍ଟକଲେ ହୃଦୟକୁ ।
ସ୍ୱରୂପ ସେହି ସ୍ତୋତ୍ରର କହିବି ବତାଇ
ଶୁଣ ଆହେ ମୁନିବର ସ୍ଥିରମତି ହୋଇ ।
ପଦ୍ମ ଆସନରେ ବସି ଜନକ ନନ୍ଦନା ।
ପ୍ରଥମେ କଲେ ଦେବୀଙ୍କ ଚରଣ ବନ୍ଦନା
ସେ ଅନ୍ତେ ବୋଇଲେ ଦେବୀ ଶକ୍ତିସ୍ୱରୂପିଣୀ
ଶଙ୍କର ପ୍ରିୟା ସକଳ ଲୋକ ବିଧାୟିନୀ ।
ବିଶ୍ୱାକର ମହାମାୟେ ପତି ଦାନକର
ତୁମ୍ଭ ନିକଟରେ ମୋର କୋଟି ନମସ୍କାର ।
ସକଳ ମଙ୍ଗଳମୟୀ ସର୍ବଶୁଭ ଦାୟୀ
ଶଙ୍କର ଘରଣୀ ପତିବ୍ରତା ଜଗଦ୍ଧାୟୀ ।
ପରମ ଆତ୍ମାରୂପିଣୀ ନିତ୍ୟ ସନାତନୀ
ସାକାର ଆକାର ଶୂନ୍ୟେ ସର୍ବ ପ୍ରକାଶିନୀ ।
କ୍ଷୁଧା ତୃଷା ନିଦ୍ରା ତନ୍ଦ୍ରା ଶ୍ରଦ୍ଧା ଦୟା ସ୍ମୃତି
ତୁମ୍ଭ କଳାରୁ ଏ ସବୁ ହୋଇଛି ଉତ୍ପତ୍ତି ।
ଆଉରି ଯେ ଲଜ୍ଜା ମେଧା ତୁଷ୍ଟି ପୁଷ୍ଟି ଆଦି
ଅଛନ୍ତି ତୁମ୍ଭ ଅଂଶରେ ଜନ୍ମକୁ ସମ୍ପାଦି ।
ଦୃଷ୍ଟାଦୃଷ୍ଟ ପଦାର୍ଥର ବୀଜଫଳ ଦାୟୀ
ଅଟ ତୁମ୍ଭେ ଶିବପ୍ରିୟା ତ୍ରିଭୁବନ କର୍ତ୍ତ୍ରୀ ।
ଶଙ୍କର ସୌଭାଗ୍ୟଯୁକ୍ତା ସୌଭାଗ୍ୟ ଦାୟିନୀ
ଶ୍ରୀହରିଙ୍କୁ ପତିରୂପେ ଦିଅ ଗୋ ଭବାନୀ ।
ତୁମ୍ଭ ପାଦପଙ୍କଜରେ ଅଶେଷ ପ୍ରଣତି
କରୁଅଛି ମାହେଶ୍ୱରୀ ଘେନ ମୋ ବିନତି
ଜାନକୀ କୃତ ଏ ସ୍ତୋତ୍ର ପଠନ ଯେ କରେ
ବିଷ୍ଣୁ ତୁଲ୍ୟ ପତି ତାକୁ ମିଳେ ନିଶ୍ଚୟରେ
ଆହେ ନାରଦ ମହର୍ଷି ଶୁଣ ମନଦେଇ
ସମାପ୍ତି ଦିବସେ ସର୍ବ ଗୋପୀ ମେଳ ହୋଇ
ଦେବୀଙ୍କୁ ପ୍ରଣାମକରି ବ୍ରତ ପୂର୍ଣ୍ଣକଲେ
ବ୍ରାହ୍ମଣଙ୍କୁ ଅନ୍ନବସ୍ତ୍ର ସ୍ୱର୍ଣ୍ଣ ରତ୍ନ ଦେଲେ ।
ପୁରୋହିତଙ୍କୁ ଦକ୍ଷିଣା ଦେଇଣ ବହୁତ
ସନ୍ତୋଷିତ କଲେ ପୁଣି ତାହାଙ୍କର ଚିତ୍ତ ।
ଏମନ୍ତ ସମୟେ ଦେବୀ ଶୂନ୍ୟମାର୍ଗେ ରହି
ଦେଖାଗଲେ କୋଟିସୂର୍ଯ୍ୟ ସମାନରେ ତହିଁ
ଦଶଭୁଜା ରତ୍ନସାର ଭୂଷଣ ଭୂଷିତା
କନକ ବରଣୀ ସିଂହପୃଷ୍ଠେ ଅବସ୍ଥିତା ।
କ୍ରମେ କ୍ରମେ ଆକାଶରୁ ଅବତୀର୍ଣ୍ଣ ହୋଇ
ମିଳିଲେ ଗୋପିକାଗଣ ରହିଥିଲେ ଯହିଁ ।
ଦେବୀଙ୍କୁ ଦେଖି ସେମାନେ ମସ୍ତକ ନୁଆଇଁ
ପ୍ରଣାମକଲେ ମସ୍ତକେ ବେନିକର ଦେଇ ।
ରାଧିକାଦେବୀଙ୍କୁ କୋଳେ ଘେନି ମହାମାୟୀ
ଆଶିଷ ପ୍ରଦାନକଲେ ହରଷିତା ହୋଇ ।
ମନୋରଥ ସିଦ୍ଧି ହେଉ ବୋଲି ଗୋପିକାଙ୍କୁ
ବରଦେଇ କହିଲେ ସେ ପୁଣି ରାଧିକାଙ୍କୁ ।
ବୋଇଲେ ରାଧିକେ ତୁମ୍ଭେ ଜଗତ ଜନନୀ
ମାୟାରୂପ ବହିଅଛ ଲୋକଶିକ୍ଷା ଘେନି ।
ଗୋଲୋକ ଗୋଲକନାଥ ବିରଜା ଶ୍ରୀଶୈଳ
ମନୋହର ବୃନ୍ଦାବନ ଶ୍ରୀରାସମଣ୍ଡଳ ।
ସୁମରୁଛଟିକ ପୂର୍ବ ସଂସ୍କାର ଯୋଗରେ
ଶ୍ରୀକୃଷ୍ଣ ତୁଲ୍ୟା ଯେ ତୁମ୍ଭେ ତେଜ ପ୍ରଭାବରେ
ପତିଙ୍କ ଅନୁଜ୍ଞା ଘେନି ମନୁଷ୍ୟ ରୂପରେ
ଜନ୍ମ ହୋଇଅଛ ସିନା ଗୋପାଳ ନଗରେ ।
ମାନୁଷୀ କାହିଁକି ତୁମ୍ଭେ ହେବ ମହାସତି
ଶ୍ରୀକୃଷ୍ଣ ଅର୍ଦ୍ଧଅଙ୍ଗରୁ ତୁମ୍ଭର ଉତ୍ପତ୍ତି ।

ଅଯୋନି ସମ୍ଭବା କୃଷ୍ଣ ପ୍ରାଣାଧିକା ତୁମ୍ଭେ
ଶ୍ରୀଦାମା ଶାପରେ ଗୋପୀ ହେଲ ଜାଣୁ ଆମ୍ଭେ
ପୂର୍ବକାଳେ ପ୍ରଜାପତି ଷାଠିଏ ସହସ୍ର ।
ବରଷ ଯାଏ ତପସ୍ୟା କରିଣ ଅଜସ୍ର ।
ତୁମ୍ଭ ପାଦ ଦରଶନ କରି ନ ପାରିଲେ
ମାନୁଷୀ ତୁମ୍ଭଙ୍କୁ ବୋଲି ପାରିବ କେ ଭଲେ
ତୁମ୍ଭ ପ୍ରସାଦେ ସୁଯଜ୍ଞ ଗୋଲୋକ ପାଇଲେ
ଏକବିଂଶ ବାର ଭୃଗୁ ପୃଥ୍ୱୀ ଜୟକଲେ ।
ଆଦର କାର୍ତ୍ତବୀର୍ଯ୍ୟକୁ ମାରି ଘୋରରଣେ
ଗଣେଶ ଦନ୍ତକୁ ଭଗ୍ନ କଲେ ଯେ ଆପଣେ ।
ପ୍ରତ୍ୟେକ ଯୁଗରେ କୃଷ୍ଣ ତୁମ୍ଭ ପ୍ରାଣପତି
ତୁମ୍ଭେ ମଧ୍ୟ ଅଟ ତାହାଙ୍କର ପ୍ରିୟବତୀ ।
ଲୋକହିତ ସକାଶରେ କରୁଅଛ ବ୍ରତ
ତୁମ୍ଭଠାରୁ ଏହା ଶିକ୍ଷା କରିବ ଜଗତ ।
ତିନିମାସ ଅନ୍ତେ ଯେବେ ହେବ ମଧୁମାସ
ଶ୍ରୀକୃଷ୍ଣ ଆସି ପ୍ରବେଶ ହେବେ ତୁମ୍ଭ ପାଶ ।
ନିର୍ଜନ ନିର୍ମଳ ରମ୍ୟ ରଜନୀ କାଳରେ
ବୃନ୍ଦାବନେ ଷୋଳସହସ୍ର ଗୋପୀଙ୍କ ମେଳରେ ।
ହରଷେ କ୍ରୀଡ଼ା କରିବେ ନିଜ ଇଚ୍ଛାମତେ
ଜନମି ଅଛନ୍ତି ନନ୍ଦସୁତ ତୁମ୍ଭ ଅର୍ଥେ ।
ଯେଉଁରୂପେ ହରଙ୍କର ଅଟଇ ମୁଁ ଜାୟା
ତୁମ୍ଭେ ସେହିରୂପେ ଅଟ ଶ୍ରୀକୃଷ୍ଣଙ୍କ ପ୍ରିୟା ।
ପରମ ଈଶ୍ୱର ବ୍ରହ୍ମା ଇନ୍ଦ୍ରାଦି ସେବିତ
ଅଟନ୍ତି ଯେଉଁ ଶ୍ରୀକୃଷ୍ଣ ତ୍ରିଜଗତ ନାଥ ।
ସେ ତୁମ୍ଭର ବଶୀଭୂତ ହେବେ ଆମ୍ଭ ବରେ
କିଞ୍ଚିତମାତ୍ର ସଂଶୟ ନ ଘେନ ଏଥିରେ ।
କେତେକାଳ ପରେ ଦୁହେଁ ମର୍ତ୍ତ୍ୟଲୋକ ତେଜି
ଗୋଲୋକକୁ ଯିବ ପୂର୍ବ ବିଷୟକୁ ଭଜି ।
ଏମନ୍ତ କହି ରାଧାଙ୍କୁ ଦେବୀ ମହାମାୟୀ
ସର୍ବେ ଦେଖୁଥିଲେ ଶୂନ୍ୟେ ଗଲେ ଲୀନହୋଇ
ଗୋପିଙ୍କୁ ସଙ୍ଗରେ ଘେନି ରାଧିକା ସୁନ୍ଦରୀ
ଉଦ୍ୟତ ହୁଅନ୍ତେ ଯିବାପାଇଁ ନିଜପୁରୀ ।
ଦେଖିଲେ ଆଗରେ କୃଷ୍ଣ ଉଭା ହୋଇଛନ୍ତି
ନବ ଜଳଧର ପରି ବିରାଜଇ କାନ୍ତି ।
କଟିତଟେ ପୀତବାସ ଦିଶଇ ସୁନ୍ଦର
ମଣ୍ଡି ଅଛନ୍ତି ଅଙ୍ଗରେ ନାନା ଅଳଙ୍କାର ।
ଈଷତ ହାସ ରଞ୍ଜିତ ପ୍ରସନ୍ନ ବଦନ
ଶରତ ପଙ୍କଜ ସମ ବିଶାଳ ଲୋଚନ ।
ବିନୋଦ ମୁରଲୀ ବେଣୁ ହସ୍ତରେ ଶୋଭିତ
ରୂପ ଲାବଣ୍ୟରେ କୋଟି କାମ ହେବ ଜିତ ।
ଅବ୍ୟକ୍ତ ଅକ୍ଷୟ ନିତ୍ୟ ସ୍ୱରୂପ ସନାତନ
ମାଙ୍ଗଲ୍ୟ ମଙ୍ଗଳାଧାର ଶୁଦ୍ଧ ନିକେତନ ।
ବିଶ୍ୱ ବିମୋହନ ଦରହାସ ମୁଖ ଦେଖି
ସ୍ଥାବର ଜଙ୍ଗମ ଚରାଚର ହେବେ ସୁଖୀ ।
ଏହିରୂପେ ଶ୍ରୀକୃଷ୍ଣଙ୍କୁ ସମ୍ମୁଖରେ ଦେଖି
ରାଧାଦି ଗୋପିକାଗଣ ବୁଜି ଦେଲେ ଆଖି ।
ଲଜ୍ଜାରେ ତଳକୁ ମୁଖ ପୋତିଣ ରହିଲେ
ତା ଦେଖି ଶ୍ରୀକୃଷ୍ଣ ତାଙ୍କୁ ହସିଣ କହିଲେ ।
ବୋଇଲେ ହେ ଗୋ ପ୍ରାଣସଖି ରାଧିକା ସୁନ୍ଦରୀ
ମାଗ ଯେଉଁ ବର ଇଚ୍ଛା ହେଉଛି ତୁମ୍ଭର ।
ଆଉର ସକଳ ଗୋପୀଗଣ ଏବେ ତୁମ୍ଭେ
ମାଗ ଯେଉଁ ବର ଲୋଡ଼ା ଦେଇଯିବୁ ଆମ୍ଭେ ।
ତାହା ଶୁଣି ରାଧାଦେବୀ କୃତାଞ୍ଜଳି ହୋଇ
ବୋଇଲେ ତୁମ୍ଭ ଚରଣେ ମନ ଥିବ ରହି ।
ଜାଗ୍ରତ ସ୍ୱପ୍ନ ସୁଖ ନିଦ୍ରା ଅବସ୍ଥାରେ
ଭକ୍ତି ରହିଥିବ ମୋର ତୁମ୍ଭ ଶ୍ରୀପଦ୍ମରେ ।
ଏହା ବିନା ଅନ୍ୟ କିଛି ମୋର ଲୋଡ଼ା ନାହିଁ
ଅନୁଗ୍ରହ କର ବିଭୁ ତ୍ରୈଲୋକ୍ୟ ଗୋସାଇଁ ।
ସେଅନ୍ତେ ଗୋପିକାଗଣ ବୋଇଲେ କେଶବ
ପ୍ରଥମେ ରାଧିକା ମାଗି ଘେନିଲେ ଯା ସର୍ବ ।
ପ୍ରସନ୍ନ ହୋଇ ଆମ୍ଭଙ୍କୁ ମଧ୍ୟ ଦେବ ତାହା
ତୁମ୍ଭ ସେବାପାଇଁ ଜାତ ହେଉଛି ଉତ୍ସାହ ।
ଶ୍ରୀକୃଷ୍ଣ ତା ଶୁଣି ହେଉ ବୋଲିଣ ବୋଇଲେ
କ୍ରୀଡ଼ା ପଙ୍କଜ ଗୋଟିଏ ରାଧିକାଙ୍କୁ ଦେଲେ ।
ଲଳିତାଙ୍କୁ ଦେଲେ ଏକ ମାଳତୀର ମାଳା
ଭୂଷିତ କଲେ ସେ ନେଇ ଆପଣାର ଗଳା ।
ଅନ୍ୟ ଗୋପୀଙ୍କୁ ଶ୍ରୀକୃଷ୍ଣ ଭିନ୍ନ ଭିନ୍ନ ଫୁଲେ
ଗୋଟିଏ ଗୋଟିଏ ମାଳା ପୁଣି ତହିଁ ଦେଲେ
ସେ ଅନ୍ତେ ବୋଇଲେ ମୁହିଁ ତୁମ୍ଭର ସଙ୍ଗତେ
କ୍ରୀଡ଼ା କରିବି ଆଜହୁଁ ତିନିମାସ ଅନ୍ତେ ।
ବୃନ୍ଦାବନେ ମନୋହର ରାସ ମଣ୍ଡଳରେ
ବିହରିବ ସୁଖେ ତୁମ୍ଭେ ଆମ୍ଭ ସଙ୍ଗତରେ ।

ଆମ୍ଭର ପ୍ରାଣ ସମାନ ଅଟ ତୁମ୍ଭେମାନେ
ନିଶ୍ଚୟ ବୋଲିଣ ଏହା ଭାବଥାଅ ମନେ ।
ଲୋକ ଶିକ୍ଷାପାଇଁ ସିନା ଆଚରିଲି ବ୍ରତ
ଗୋଲୋକରୁ ଅମ୍ଭ ସଙ୍ଗେ ହୋଇଛ ଆଗତ
ପ୍ରତ୍ୟେକ ଜନ୍ମରେ ଆମ୍ଭେ ତୁମ୍ଭ ସହଚର
ଶଙ୍କା ପରିହରି ଏବେ ଯାଅ ଯେଝାପୁର ।

ଏମନ୍ତ କହି ଶ୍ରୀକୃଷ୍ଣ ଅନ୍ତର ହୋଇଲେ
ରାଧାଙ୍କ ସହିତେ ଗୋପୀଗଣ ଚଳିଗଲେ ।
ଶ୍ରୀହରିଙ୍କ ଜୟ ମୁଖେ ଉଚ୍ଚାରଣ କରି
ମିଳିଲେ ମୁହୂର୍ତ୍ତେ ପରେ ନିଜ ନିଜ ପୁରୀ ।
ବସ୍ତ୍ର ହରଣ ବୃତ୍ତାନ୍ତ ଗୋପୀମାନଙ୍କର
ବର୍ଣ୍ଣନା କରିଲି ସଂକ୍ଷେପରେ ଶେଷ ଗ୍ଲୁର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଗୋପୀମାନଙ୍କର
ବସ୍ତ୍ରହରଣ ବୃତ୍ତାନ୍ତବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ ।

## ଅଷ୍ଟାବିଂଶ ଅଧ୍ୟାୟ

### ରାଧିକା ଆଦି ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ରାସକ୍ରୀଡ଼ା ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ମୁନିବର
ବୃନ୍ଦାବନରେ କିରୂପେ ପ୍ରଭୁ ବଂଶୀଧର ।
ଗୋପୀଙ୍କ ସଙ୍ଗରେ କେବେ ରାସକ୍ରୀଡ଼ା କଲେ
ଆମୂଳ କହିଣ ତାହା କହ ମୋତେ ଭଲେ
ତାହା ଶୁଣି ନାରାୟଣ ଋଷି କୁଳଈଶ
ବୋଇଲେ ଶୁଣ ନାରଦ ଦେଇଣ ମାନସ ।
ଏକଦିନେ ପ୍ରଭାତରୁ ଉଠି ନରହରି
ପ୍ରବେଶ ହୋଇଲେ ବୃନ୍ଦାବନେ ଯାଇକରି ।
ସେହି ଦିନ ମଧୁ ମାସ ଶୁକ୍ଳ ତ୍ରୟୋଦଶୀ
ପ୍ରହରେ ଅମୃତ ବେଳା ଘଟିଥିଲି ଆସି ।
ସେ ସମୟେ ବୃନ୍ଦାବନେ ଉପସ୍ଥିତ ହୋଇ
ଦେଖିଲେ ସେ ଅତିଶୟ ଶୋଭା ପ୍ରକାଶଇ
ଯୂଥିକା କୁନ୍ଦ ମାଳତୀ ମାଧବୀ ମଲ୍ଲିକା
ଥିବାରୁ ତହିଁରେ ବାସ ସ୍ଫୁରଇ ଅଧିକା ।
ଗୁଣୁ ଗୁଣୁ ଶବଦରେ ଷଟପଦ ବୃନ୍ଦ
ବୁଲୁଛନ୍ତି ଏଣେତେଣେ ହୋଇଣ ଆନନ୍ଦ ।
ନବ ପଲ୍ଲବେ ମଣ୍ଡିତ ମହୀରୁହ ରାଜ
ହେବାରୁ ନୂତନ ଶୋଭା ଉଠଇ ବିରାଜ ।
ନାନା ଭୋଗ ପଦାର୍ଥରେ ରାସକ୍ରୀଡ଼ା ସ୍ଥଳ
ବିଚିତ୍ର ବର୍ଣ୍ଣ ପ୍ରକାଶି ଦିଶଇ ମଞ୍ଜୁଳ ।
କେଉଁଠାରେ ସୁବାସିତ ଚନ୍ଦନ କର୍ପୂର
ଥୁଆ ହୋଇଅଛି କାହିଁ କୁସୁମର ହାର ।

ରତି ଯୋଗ୍ୟ ବିରଚିତ କୋମଳ ତଳପ
କେଉଁଠାରେ ଅଛି ତାହା ପାଶେ ରତ୍ନଦୀପ ।
ବର୍ତ୍ତୁଳ ଆକାର ସେହି କ୍ରୀଡ଼ା ନିକେତନ
ସିଞ୍ଚା ହୋଇଅଛି ତହିଁ କର୍ପୂର ଚନ୍ଦନ ।
କୁସୁମ ଉଦ୍ୟାନ ତାହା ପାଶେ ଅଛି ରହି
ତା ମଧ୍ୟରେ କ୍ରୀଡ଼ା ସର ସୁନ୍ଦର ଦିଶଇ ।
କେଉଁ ସ୍ଥାନରେ ସୁରମ୍ୟ କଦଳୀ କାନନ
ଅଛି କେଉଁସ୍ଥାନେ ଚୂତ ପନସର ବନ ।
ବେଦିକା ଉପରେ କେତେ ରତ୍ନମୟ ଘଟ
ସିନ୍ଦୂର ବିନ୍ଦୁ ଯୋଗରେ ଦିଶେ ଝଟ ଝଟ ।
ଏରୂପେ ରାସମଣ୍ଡଳ ଦେଖିଣ ଶ୍ରୀହରି
ବାଦନ କଲେ ମୁରଲୀ ବେନି ହସ୍ତେ ଧରି ।
ସେ ଶବଦ ଶୁଣି ରାଧା ମୋହିତ ହୋଇଲେ
ଚିତ୍ର ପିତୁଳା ପରାୟେ ନିଶ୍ଚଳେ ରହିଲେ ।
ସେ ଅନ୍ତେ ସଚେତ ହୋଇ ଗୃହକର୍ମ ତେଜି
ଗଲେ ସେ ମୁରଲୀ ଶବ୍ଦ ସ୍ଥାନ ହେଜି ହେଜି
ଶ୍ରୀକୃଷ୍ଣଙ୍କ ଚରଣରେ ଦେଇଣ ମାନସ
ତେଜରେ ଉଜ୍ଜ୍ୱଳ କରୁଛନ୍ତି ଦଶଦିଶ ।
ତାହାଙ୍କର ପଛେ ପଛେ ଗୋପିକା ସକଳ
ଚଳିଲେ ମୁରଲୀ ଶବ୍ଦେ ହୋଇକରି ଭୋଳ ।
ସୁଶୀଳା ଆଦି ତେତିଶ ସଖୀଏ ସେପରି
ଗଲେ ନିଜ କୁଳଧର୍ମ କଥାକୁ ପାସୋରି ।

ସେମାନଙ୍କ ସଙ୍ଗେ ଯେତେ ଅନୁଚରୀ ଥିଲେ
ତାହାଙ୍କ ସଂଖ୍ୟା କହୁଛି ଶୁଣ ଏବେ ଭଲେ ।
ସୁଶୀଳା ପଛରେ ଗଲେ ଷୋହଳ ସହସ୍ର
ଶଶିକଳା ସଙ୍ଗେ ଦଶସହସ୍ର ଚତୁର୍ଦ୍ଦଶ ।
ଚନ୍ଦ୍ରମୁଖୀ ମାଧବୀଙ୍କ ସଙ୍ଗତେ ସେପରି
ଗଲେ ତ୍ରୟୋଦଶ ଏକାଦଶସହସ୍ର ନାରୀ ।
କଦମ୍ବ ମାଳିକା ଆଦି ଯେତେ ବରାଙ୍ଗନା
ଚାଲିଲେ ତାଙ୍କ ପଛରେ ନାରୀ ଅଗଣନା
ସମସ୍ତେ ଗୋଟିଏ ସ୍ଥାନେ ମିଳିତ ହୋଇଲେ
ବିଶ୍ରାମ କରିଣ କ୍ଷଣେ ପର୍ଯ୍ୟନ୍ତ ରହିଲେ ।
ଦାସୀଙ୍କ ମଧ୍ୟରୁ କେହି ଧରିଅଛି ମାଳା
ଶୁକଳ ଚାମର ଢାଳୁଅଛି କେଉଁ ବାଳା ।
କର୍ପୂର ଚନ୍ଦନ ନେଇ କେତେଣ ଯୁବତୀ
ଯାଉଅଛି ସଙ୍ଗେ ସଙ୍ଗେ ମନ୍ଦ ଗଜଗତି ।
ସୁବର୍ଣ୍ଣ ଖଚିତ ବସ୍ତ୍ର ନେଇ କେହି ନାରୀ
ଗଲେ ଚନ୍ଦ୍ରାବଳୀଙ୍କର ପଥ ଅନୁସରି ।
ମେଳ ହୋଇଣ ସମସ୍ତେ ଅତି ଆନନ୍ଦରେ
ପ୍ରବେଶ ହୋଇଲେ ବୃନ୍ଦାବନ ସମୀପରେ ।
ରାଧା ଦେବୀଙ୍କ ପରାୟେ ବେଶଭୂଷା ଘେନି
ହରି ଶବଦ ଉଚ୍ଚାରି ସକଳ କାମିନୀ ।
ରାସମଣ୍ଡଳ ମଧ୍ୟରେ ଉପସ୍ଥିତ ହେଲେ
ସ୍ୱର୍ଗ ପରାୟେ ସେ ସ୍ଥାନ ହୋଇଛି ଦେଖିଲେ
ନିର୍ଜନ କୁସୁମମୟ ସୁଗନ୍ଧ ଶୀତଳ
ହେବାରୁ ମାନସ କରୁଅଛି ଉତଫୁଲ୍ଲ ।
ବୃକ୍ଷ ଗହଳରେ ବସି କୋକିଳ ଦମ୍ପତି
କଳ ନାଦ କରୁଛନ୍ତି ହରଷରେ ଅତି ।
କୁସୁମ ଉଦ୍ୟାନ ମଧ୍ୟେ ଭ୍ରମର ଭ୍ରମରୀ
ବୁଲୁଛନ୍ତି ଗୁଣୁଗୁଣୁ ଶବଦକୁ କରି ।
ଏହିରୂପେ ସେ ସ୍ଥାନର ସୌନ୍ଦର୍ଯ୍ୟକୁ ଦେଖି
ରାଧିକା ସଙ୍ଗତେ ଆନନ୍ଦରେ ସର୍ବସଖୀ ।
ଶୁଭକ୍ଷଣରେ ପ୍ରବେଶ ହୋଇ ରାସସ୍ଥଳେ
ଏଣେତେଣେ ବିଚରଣ କଲେ କୁତୂହଳେ ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୋଇଲେ
ରାଧିକା ଦେବୀଙ୍କ ପରେ ଦୃଷ୍ଟି ପକାଇଲେ ।
ଦେଖିଲେ ବସ୍ତ୍ରଭୂଷଣେ ତାହାଙ୍କ ଶରୀର
କୁସୁମିତ ଲତାପରି ଦିଶଇ ସୁନ୍ଦର ।
ଶରତ ଚନ୍ଦ୍ରମାମୁଖୀ ଚମ୍ପକ ବରଣୀ
ବିଶାଳ ନିତମ୍ବା ବର୍ତ୍ତୁଳ ପୀନସ୍ତନୀ ।
ଈଷତ ବକ୍ରଲୋଚନା ସ୍ୱଭାବ ମୃଦୁହାସୀ
ସମାନ ନୋହିବେ ତାଙ୍କୁ ସ୍ୱର୍ଗପୁର ସ୍ତ୍ରୀଏ ।
ରାଧା ମଧ୍ୟ ଶ୍ରୀକୃଷ୍ଣଙ୍କୁ ଦେଖି ସେ କାଳରେ
ଅନାଇଲେ ଜରଜର ହୋଇ କାମଶରେ ।
ଯେଉଁରୂପେ ଚନ୍ଦ୍ର ପୂର୍ଣ୍ଣ ଦେଖି ଜଳବୃନ୍ଦ
ପ୍ରବେଶ କରନ୍ତି ତଟି ହୋଇଣ ଆନନ୍ଦ ।
ସେହିପରି ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ରସରେ
ମଗ୍ନ ହେଲା ତାହାଙ୍କର ଦୃଷ୍ଟି ହରଷରେ ।
ପୀତାମ୍ବରେ ନବଘନ ସୁନ୍ଦର ମୂରତି
ନବ ଯଉବନ ଶୋଭା ପ୍ରକାଶଇ ଅତି ।
ସେ ରୂପ ଦେଖି ରାଧିକା ଚେତନା ହରିଲେ
ଯଥା ହେଲେ ଚିତ୍ରଲେଖା ସମାନରେ ତହିଁ ।
ଶ୍ରୀକୃଷ୍ଣ ମଧ୍ୟ ଦେବୀଙ୍କ ସ୍ୱରୂପକୁ ଦେଖି
ରହିଲେ ପିଛାଡ଼ି ଆଉ ନ ପାରିଣ ଆଖି ।
କ୍ରମେ କ୍ରମେ ଅବୟବ ଶିଥିଳ ହୋଇଲେ
ହସ୍ତରୁ ମୁରଲୀ କ୍ରୀଡ଼ା ପଦ୍ମ ଖସିଗଲେ ।
ଶ୍ରୀଅଙ୍ଗରୁ ପୀତବସନ ଶିଖୀ ପୁଚ୍ଛଚୂଳ
ଏହିପରି ଖସି ତଳେ ପଡ଼ିଲେ ସକଳ ।
କ୍ଷଣକ ପରେ ଚେତନା ପାଇଣ ଶ୍ରୀହରି
ରାଧିକା ଦେବୀଙ୍କୁ ବେନିହସ୍ତେ ଉଡ଼ିଧରି ।
କୋଳେ ବସାଇ ମୁଖରେ ଚୁମ୍ବନକୁ ଦେଲେ
ଅଙ୍ଗରେ ଅଙ୍ଗ ମିଶାଇ ଆଲିଙ୍ଗନ କଲେ ।
ଶ୍ରୀକୃଷ୍ଣ ପରଶମାତ୍ରେ ରାଧା ଦେବୀଙ୍କର
ଚେତନା ଆସି ପ୍ରବେଶ କଲା ହୃଦୟର ।
ସେ ଅନ୍ତରେ ଦୁହେଁ ରତିମନ୍ଦିରକୁ ଗଲେ
ରତ୍ନପ୍ରଦୀପ ଯେଠାରେ ଜଳୁଛି ଦେଖିଲେ ।
ଆଦର ଉତ୍ତମଶଯ୍ୟା ଉପାଧାନ ସଙ୍ଗେ
ସୁସଜ୍ଜିତ ହୋଇ ରଖାଯାଇଛି ତା ଆଗେ ।
କର୍ପୂର ତାମ୍ବୁଳ ଆଦି ଭୋଗଦ୍ରବ୍ୟମାନ
ଥୋଇ ଅଛନ୍ତି ଦାସୀଏ କରିଣ ଯତନ ।
ସେହିଠାରେ ଦୁହେଁ ନବ ଉପଭୋଗେ ରସି
କ୍ରୀଡ଼ା ଆରମ୍ଭିଲେ ରତି ଶଯ୍ୟାପରେ ବସି ।
ଚର୍ବିତ ତାମ୍ବୁଳ ଦେଲେ ଶ୍ରୀକୃଷ୍ଣ ରାଧାଙ୍କୁ
ଆନନ୍ଦରେ ଦେବୀ ମୁଖେ ଭୁଞ୍ଜିଲେ ତାହାଙ୍କୁ

ସେ ଅନ୍ତେ ଶ୍ରୀକୃଷ୍ଣ ପୁଣି ତାହାଙ୍କୁ ମାଗିଲେ
ନ ଦେଇ ରାଧିକା ପଡ଼ି ଚରଣେ ପଡ଼ିଲେ ।
ତ ମନେର ଯେ ମଗ୍ନ ହୋଇ ସେ ନବ ଦମ୍ପତି
ଶୟନ କଲେ ତଳପେ ତୋଷବନ୍ତ ଅତି ।
ବନେ ଶ୍ରୀତ ଅବ ଅଷ୍ଟ ପ୍ରକାରେ ଶୃଙ୍ଗାର
କଲେ ସେ କାଳରେ ପ୍ରଭୁ ରସିକ ଈଶ୍ୱର ।
ଦୁହେଁ ତ କାମଶାସ୍ତ୍ରରେ କୁଶଳ ଅଟନ୍ତି
ବେମନ୍ତରେ କ୍ରୀଡ଼ା କଲେ ତେଜି ଭୟଭ୍ରାନ୍ତି ।
ଅନେକ ମୂରତି ହୋଇ ଦେବ ନରହରି
ଏକ ଏକ ଗୋପାଙ୍ଗନା ସଙ୍ଗତରେ ଧରି ।
ଭିନ୍ନ ଭିନ୍ନ ଗୃହେ ତାହାରଙ୍କ କ୍ରୀଡ଼ା କଲେ
ସମସ୍ତଙ୍କ ମନୋରଥ ପୂର୍ଣ୍ଣ କରାଇଲେ ।
ଏହିରୂପ ଅନ୍ତଃକ୍ରୀଡ଼ା ସମାପନ କରି
ବାହ୍ୟବର୍ଗଙ୍କୁ ଆସିଣ ସବୁ ଗୋପନାରୀ ।
ଗୋପାଙ୍ଗନାମାନଙ୍କ ସଙ୍ଗେ ସେ ରାସମଣ୍ଡଳେ
ବିହାର କଲେ ଆନନ୍ଦ ମନେ ସେହିକାଳେ
ସେମାନଙ୍କ ସଂଖ୍ୟା ଅଟେ ନବଲକ୍ଷ ଜାଣ
ଅଷ୍ଟାଦଶ ଲକ୍ଷ ସ୍ତ୍ରୀ ପୁରୁଷ ମିଶିଣ ।
କାମରସେ ମତ୍ତ ହୋଇ ସକଳ କାମିନୀ
ରମିଲେ ନିଜ ନିଜର ଭର୍ତ୍ତାଙ୍କୁ ଘେନି ।
କଙ୍କଣ କିଙ୍କିଣୀ ଆଦି ଆଭରଣମାନ
ହସ୍ତ ପାଦ ପରଶରେ ପାଏ ରଣରଣ ।
ଏହିରୂପେ ସମାପତ ହୋଇ ସ୍ଥଳକ୍ରୀଡ଼ା
ଜଳରେ ପ୍ରବେଶ କଲେ ଗୋପଗୋପୀ ଭିଡ଼ା
ପଡ଼ିଏ ଯାଏ ତହିଁରେ କରି ନାନା କେଳି
ପରିଶ୍ରମ ପାଇ ସର୍ବେ ପଡ଼ିଲେ ଝାଉଁଳି ।
ସେ ସକାଶୁ ଜଳରୁ ଉଠି ଉତ୍ତବେଗେ
ପିନ୍ଧିଲେ ଯେ ଯାହା ବସ୍ତ୍ର ଚଳି ସ୍ଥଳଭାଗେ ।
ଚନ୍ଦନ କସ୍ତୁରୀ ଆଦି ଗନ୍ଧ ଦ୍ରବ୍ୟମାନ
ଅଙ୍ଗରେ ଆଣି ସେକ୍ଷଣି କରି ବିଲେପନ ।
କୁସୁମ ମାଳିକାମାନ ଗଳାରେ ଲମ୍ବାଇ
ନିରୀକ୍ଷଣ କଲେ ଦରପଣେ ମୁଖ ଚାହିଁ ।
ସେ ଅନ୍ତରେ ପୁଣି ଶ୍ରୀକୃଷ୍ଣଙ୍କ ମନ୍ଦିରରେ
ପ୍ରବେଶ ହୋଇଲେ ପୀଡ଼ାପାଇ କାମଶରେ ।
କେଉଁ ଗୋପୀ ନେଲା ବଂଶୀ ହାତରୁ ନଡ଼ାଇ
ପିନ୍ଧିବା ବସନ କେହୁ ଓଟାରିଲା ଯାଇ ।
ଉଲଗ୍ନ କରିଣ କେହୁ ବସ୍ତ୍ର ନେଇକରି
ଦେଲା ପୁଣି ପଦ୍ମହାସ ବଚନ ଉଚ୍ଚାରି ।
କେଉଁ ଗୋପୀ ଆପଣାର କାନ୍ତ କର୍ଣ୍ଣମୂଳେ
ମୁଖଦେଇ ଗୁପ୍ତ କଥା କହିବାର ଛଳେ ।
ବିମ୍ବଓଷ୍ଠ ଲଗାଇଣ ଗଣ୍ଡଦେଶେ ତାର
ଚୁମ୍ବନ ଦେଲା ପୁଲକେ ପୂରାଇ ଶରୀର ।
କେଉଁ ଯୁବତୀ କଠିନ ପୀନସ୍ତନ ଶ୍ରେଣୀ
ଦେଖାଇଲା କାନ୍ତ ପାଶେ ପରିଧାନ ଟାଣି ।
କେଉଁମାନେ ପତିଙ୍କର ମସ୍ତକ ଦେଶରେ
ଖଞ୍ଜିଲେ ନାନାପ୍ରକାର ମାଳା ଘେନି କରେ
କେଉଁମାନେ ସୁବାସିତ କୁଙ୍କୁମ କର୍ପୂର
ଲେପନ କଲେ ଆପଣା ପତିଙ୍କ ଶରୀର ।
କେଉଁ ଗୋପୀ ଅନ୍ୟ ନାରୀହସ୍ତୁ ବଂଶୀ ନେଇ
ନିଜ ସ୍ୱାମୀଙ୍କୁ ସ୍ନେହରେ ଅର୍ପଣ କରଇ ।
କେଉଁ ଗୋପୀ ବଳାତ୍କାରେ ଘେନି କାହା କର
ବସାଇ ଦେଲା ନେଇଣ କୃଷ୍ଣଙ୍କ କୋଳର ।
ଶ୍ରୀକୃଷ୍ଣ ମଧ୍ୟ ସେକାଳେ କୁତୂହଳେ ଯାଇ
କେଉଁ ଗୋପୀକୁ ଉଲଗ୍ନ କଲେ ହସିଦେଇ ।
କାହାର ବସନ ନେଇ ଅନ୍ୟ ଗୋପୀଠାରେ
ରଖାଇ ଦେଲେ ଶପଥ କରାଇଣ ତାରେ ।
ସେ ଅନ୍ତେ ରାଧା ଦେବୀଙ୍କୁ ହିଁକି ଆଣି ବଳେ
ଗାଢ଼େ ଆଲିଙ୍ଗନ କରି ବସାଇଲେ କୋଳେ
ଉତ୍ତମ ପ୍ରକାରେ ସଜକରି କେଶପାଶ
ସିନ୍ଦୂର ବିନ୍ଦୁ ମଣ୍ଡିଲେ ଲଲାଟ ପ୍ରଦେଶ ।
ଦିବ୍ୟବାସ ପରିଧାନ କରାଇଲେ ଆଣି
ଖଞ୍ଜିଲେ ଅଙ୍ଗରେ ନାନା ଅଳଙ୍କାର ଶ୍ରେଣୀ
ନେତ୍ରରେ ଅଞ୍ଜନ କେଶପାଶେ ପୁଷ୍ପମାଳ
ପାଦରେ ଯାବକ ରସ କଣ୍ଠେ ମୁକ୍ତାଜାଳ ।
ଯଥାବିଧି ନିବେଶିତ କରିଣ ଯତନେ
ଚୁମ୍ବ ଦେଲେ ପୁନଃପୁନଃ ମୁଖେ ତୋଷ ମନେ
ନିତମ୍ବ ଜଘନ ସ୍ତନଦେଶେ ନଖକ୍ଷତ
କାମଶରେ ପୀଡ଼ାପାଇ ଦେଲେ ସେ ବହୁତ ।
ସରୋବର ତୀରଦେଶେ କୁସୁମ ଉଦ୍ୟାନେ
ବିହରିଣ ପୁଣି ଗଲେ ରାସକ୍ରୀଡ଼ା ସ୍ଥାନେ ।
ସେଠାରେ ସମ୍ପୂର୍ଣ୍ଣ ରାସ ଉତ୍ସବକୁ ସାରି
ଗଲେ ତାର ପାଶେ ଥିବା ଉଦ୍ୟାନକୁ ହେରି

ନବଚନ୍ଦ୍ର କିରଣରେ ସୁନ୍ଦର ସେ ଦେଶ
ଦେଖିବା ମାତ୍ରକେ ହରି ନିଅଇ ମାନସ ।
ସୁରଭି ଶୀତଳ ବାୟୁ ବହୁ ମନ୍ଦ ମନ୍ଦ
ପ୍ରାଣୀଙ୍କ ମନରେ ଜାତ କରାଏ ଆନନ୍ଦ ।
କୁସୁମ ବନରେ ବୁଲି ଷଟପଦ ଶ୍ରେଣୀ
ଗୁଣୁ ଗୁଣୁ ଶବଦରେ କରନ୍ତି ଭ୍ରମଣି ।
ଏମନ୍ତ ଉଦ୍ୟାନ ଦେଖି ଦେବ ନରହରି
ରାଧା ଆଦି ଗୋପୀଗଣ ସଙ୍ଗତରେ ଧରି ।
ବହୁତ ମୂରତି ଧରି ଶୃଙ୍ଗାର ରସରେ
ମାତିଲେ ପ୍ରବେଶ କରି ସୁରତ ଗୃହରେ ।
ନୂପୁର କଙ୍କଣ ସ୍ଥିତ କିଙ୍କିଣୀର ସ୍ୱର
ହୋଇଥିଲା ସେ ସମୟେ ଶ୍ରୁତି ସୁଖକର ।
ଶ୍ରୀକୃଷ୍ଣଙ୍କ ସଙ୍ଗ ପାଇଁ ସକଳ ଅଙ୍ଗନା
ମୂର୍ଚ୍ଛିତ ହୋଇ ପଡ଼ିଲେ ହରାଇ ଚେତନା ।
ପରସ୍ପରେ ପୁଣି ନଖ ଦନ୍ତ କ୍ଷତମାନ
ଦେଲେ ପରସ୍ପର ଅଙ୍ଗେ ହୋଇଣ ଅଜ୍ଞାନ ।
ଶ୍ରୀକୃଷ୍ଣ ଗୋପୀଙ୍କ ପୀନସ୍ତନ ପରେ ପୁଣି
ନଖ କ୍ଷତକଲେ ତାଙ୍କ ମନଭାବ ଜାଣି ।
ଅଙ୍ଗରେ ଅଙ୍ଗ ମିଶାଇ କ୍ରୀଡ଼ାକଲା ବେଳେ
ଅଳଙ୍କାର ମାନ ଖସି ପଡ଼ୁଥିଲେ ତଳେ ।
ରସିକ ଉତ୍ତମ ଅଟନ୍ତି ତ ନନ୍ଦସୁତ
କାମରସେ ମାତି କ୍ରୀଡ଼ା କଲେ ଅପ୍ରମିତ ।
ନବବିଧ ଆଲିଙ୍ଗନ ଚୁମ୍ବନ ଅଷ୍ଟକ
ଷୋଡ଼ଶବିଧ ଶୃଙ୍ଗାର ଷଡ଼୍‌ବିଧ ସମ୍ପର୍କ ।
ସମାପନ କରି ଅଙ୍ଗେ ଅଙ୍ଗକୁ ମିଶାଇ
ଆଲିଙ୍ଗନ କଲେ ପୁଣି ପ୍ରୀତିମନ୍ତ ହୋଇ ।
ସ୍ତ୍ରୀମାନଙ୍କର କଳା ଅଟଇ ଷୋଡ଼ଶ
ସେହି ପ୍ରମାଣରେ ରତିଶାସ୍ତ୍ରରେ ପ୍ରକାଶ ।
ପ୍ରକୃତ ରତି ଅଟଇ ଦ୍ୱାଦଶ ପ୍ରକାର
ସ୍ୱର ପ୍ରକାର ଯେ ବିପରୀତ ମନୋହର ।
କାମଶାସ୍ତ୍ର ନିରୂପିତ ଅଟଇ ଏ ବିଧି
ଶାସ୍ତ୍ରଜ୍ଞ ପଣ୍ଡିତଙ୍କର ମତରେ ପ୍ରସିଦ୍ଧି ।
ଶ୍ରୀକୃଷ୍ଣ ରତିରୁ କିଛି ଅଧିକ ଭାବରେ
କଲେ ଦେବୀଙ୍କର ମନ ହରଷା ଇଚ୍ଛାରେ ।
ଗୋପୀଙ୍କ କୁଙ୍କୁମରେଖା ଅଳକ୍ତକ ଚିହ୍ନ
କୃଷ୍ଣଙ୍କ ପ୍ରତି ଅଙ୍ଗରେ ହୋଇଥିଲେ ଲଗ୍ନ ।

ସେ ସକାଶୁ ଗଇରିକ ଧାତୁରେ ପର୍ବତ
ପରାୟେ ସେ ଦିଶୁଥିଲେ ଅତ୍ୟନ୍ତ ଶୋଭିତ ।
ଏରୂପେ ରାସମଣ୍ଡଳେ ପ୍ରଭୁ ନରହରି
ସପ୍ତ ତ୍ରିଂଶ ରୂପରେ କାମକ୍ରୀଡ଼ା ଶେଷକରି
ବିରତ ହେବାର ଜାଣି ସ୍ୱର୍ଗୁ ଦେବଗଣ
ଆସିଲେ ସୁବର୍ଣ୍ଣରଥ କରି ଆରୋହଣ ।
ତାଙ୍କ ସହିତରେ ଦେବୀମାନେ ଆସିଥିଲେ
ରାସମଣ୍ଡଳରେ ସର୍ବେ ଉପସ୍ଥିତ ହେଲେ ।
ଆବର ଗନ୍ଧର୍ବ ଋଷି ମୁନି ପିତୃକୁଳ
ସେଠାରେ ସମସ୍ତେ ଆସି ହୋଇଗଲେ ଠୁଳ ।
ସସ୍ତ୍ରୀକ ହୋଇଣ ବିଦ୍ୟାଧର ଯକ୍ଷଗଣେ
ପ୍ରବେଶ ହୋଇଲେ ତହିଁ ଆସି ଜଣେ ଜଣେ ।
ସମସ୍ତେ ଦିବ୍ୟବସନ ଅଳଙ୍କାରମାନ
ଘେନିବାରୁ ଦିଶୁଥିଲେ ଅତି ଶୋଭାବନ ।
ଏହି ସମୟରେ ଶିବ ପାର୍ବତୀ ସହିତେ
ମିଳିଲେ ସେ ରାସସ୍ଥାନେ ଶ୍ରୀକୃଷ୍ଣ ଅଗ୍ରତେ ।
ବାମପାର୍ଶ୍ୱେ ମହାକାଳ ଦକ୍ଷିଣରେ ନନ୍ଦୀ
ରହିଥିଲେ ଦିବ୍ୟବାସ ଅଳଙ୍କାର ପିନ୍ଧି ।
ଅଗ୍ରଦେଶେ କାର୍ତ୍ତିକେୟ ଗଣପତି ଦୁହେଁ
ଥିଲେ ରାସକ୍ରୀଡ଼ା ଦେଖିବାକୁ ଅତି ସ୍ନେହେ ।
ପିଙ୍ଗଳାକ୍ଷ କ୍ଷେତ୍ରପାଳ ଆଦିକରି ଯେତେ
ପାରିଷଦଗଣ ଆସି ଥିଲେ ସେ ସମସ୍ତେ ।
ବକ୍ଷସ୍ଥଳେ ଦୁର୍ଗାଦେବୀ ସସ୍ମିତ ବଦନେ
ବସି ରହିଥିଲେ ତାଙ୍କୁ କଟାକ୍ଷ ଈକ୍ଷଣେ ।
ସେ ଅନ୍ତରେ ପ୍ରଜାପତି ସାବିତ୍ରୀ ସହିତ
ଆସିଲେ ପାରିଷଦରେ ହୋଇ ପରିବୃତ ।
ଶଚୀଙ୍କୁ ସଙ୍ଗରେ ଘେନି ସ୍ୱର୍ଗ ଅଧୀଶ୍ୱର
ଆସିଲେ ସ୍ୱାହା ସହିତେ ଦେବ ବୈଶ୍ୱାନର ।
ସେହିରୂପେ କାମଦେବ ରତିଦେବୀ ତୁଲେ
ସେହି ରାସକ୍ରୀଡ଼ା ସ୍ଥାନେ ଉପସ୍ଥିତ ହେଲେ ।
ଆବର ନକ୍ଷତ୍ର ଗ୍ରହ ଦିଗପାଳଗଣ
ଆଗତ ହେଲେ ଯେ ଯାହା ପତ୍ନୀଙ୍କୁ ଘେନିଣ ।
ଅଳପ ଦୂର ଆକାଶେ ରହିଣ ସମସ୍ତେ
ଶ୍ରୀକୃଷ୍ଣଙ୍କ ରାସକ୍ରୀଡ଼ା ଦେଖିଲେ ଉଲସତେ ।
ଜୟ ଜୟ ଶବଦରେ ଗଗନ କମ୍ପାଇ
ପୁଷ୍ପବୃଷ୍ଟି କଲେ ଅତି ଆନନ୍ଦିତ ହୋଇ ।

ଦେବପତ୍ନୀମାନେ ଦେଖି ରାସକ୍ରୀଡ଼ା ରସ
କାମ ସାପୃକେ ପୀଡ଼ିତ ହୋଇଲେ ସେ ବିଶେଷ ।
ଏଥୁଅନ୍ତେ ଶ୍ରୀକୃଷ୍ଣ ଜଳକ୍ରୀଡ଼ା ପାଇଁ ।
ଯମୁନା ଜଳକୁ ଗଲେ ଗୋପୀଗଣ ଧରି ।
ସେଠାରେ ବହୁତ କ୍ରୀଡ଼ା କରି କୁତୂହଳେ
ରାଧାଦେବୀଙ୍କୁ ନେଇଣ ବସାଇଲେ କୋଳେ ।
ମୁଖରେ ଚୁମ୍ବନ ଦେଇ ମର୍ଦ୍ଦଣ ସ୍ତନ
କହିଲେ ନାନାପ୍ରକାରର ସ୍ନେହକଥାମାନ ।
ପୁଣି ପରସ୍ପରେ ସିଞ୍ଚାସିଞ୍ଚି ହୋଇଲେ ଜଳ
ବସନ କେଶ ସହିତେ ତିନ୍ତିଲେ ସକଳ ।
ଶ୍ରୀକୃଷ୍ଣ ରାଧାଙ୍କ ଅଙ୍ଗୁ ବସ୍ତ୍ର ଝିଙ୍କି ନେଇ
ଉଲଗ୍ନ ହୁଅନ୍ତେ ତାଙ୍କୁ ଲୁଣ୍ଠାଇଲେ ଯାଇ ।
ସେହିକ୍ଷଣି ପୁଣି ଜଳ ମଧ୍ୟରେ ବୁଡ଼ିଲେ
କୁସୁମମାଳା ତିଳକ ଦୂରକରି ଦେଲେ ।
ମୁହୂର୍ତ୍ତେ ପର୍ଯ୍ୟନ୍ତେ କ୍ରୀଡ଼ା କରି ବଳାତ୍କାରେ
ବେଶକନେଇ ଉଭାହେଲେ ଗୋପୀଙ୍କ ଆଗରେ ।
ଲଜ୍ଜାରେ ରାଧିକା ଦେବୀ ମୁଖ ଘୋଡ଼ିଥିଲେ
ତା ଦେଖି ଶ୍ରୀକୃଷ୍ଣ ତାଙ୍କୁ ଦୂରେ ଘୁଞ୍ଚିଗଲେ ।
ପ୍ରଣୟ କୋପରେ ଦେବୀ କେତେଦୂର ଯାଇ
ନେଲେ ଶ୍ରୀକୃଷ୍ଣଙ୍କ ବଂଶୀ ମୁରଲୀ ଛଡ଼ାଇ ।
ପୁଣି ତାଙ୍କ କଟିତଟୁ ଝିଙ୍କି ପୀତବାସ
ଉଲଗ୍ନ କରିଣ ତାଙ୍କୁ କଲେ ଉପହାସ ।
ଲଜ୍ଜାରେ ଶ୍ରୀକୃଷ୍ଣ ସର୍ବ୍ବେ ରକ୍ଷା ନ ପାଇଲେ
ଜଳରେ ବୁଡ଼ାଇ ନିଜ ଅଙ୍ଗ ଗୁପ୍ତ କଲେ ।
ସେ ଅନ୍ତରେ ପ୍ରଭୁ ଗୋପନାରୀଙ୍କ ସହିତେ
ଅନେକ ମୂର୍ତ୍ତି ପ୍ରକାଶି ମାତିଲେ ସୁରତେ ।
ସନ୍ତୁଷ୍ଟ ହୋଇଲେ ସର୍ବ୍ବେ ସବୁଙ୍କର ଚିତ୍ତ
ତୀରକୁ ଆସିଲେ ଜଳୁ ଉଠିଣ ତ୍ୱରିତ ।
ଶ୍ରୀକୃଷ୍ଣଙ୍କୁ ଅନାଇଣ ରାଧିକା ସୁନ୍ଦରୀ
ବୋଇଲେ ବସନ ମୋର ଦିଅ ବଂଶୀଧାରୀ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଦିଅ ଆଗ ବଂଶୀ
ନୋହିଲେ ଉଲଗ୍ନ ହୋଇଥିବ ଚିର୍ହ୍ନ ବସି ।
ତାହା ଶୁଣିଣ ରାଧିକା ଅଳପ ହସିଲେ
ବସ୍ତ୍ର ସହିତରେ ବଂଶୀ ବେଗେ ଆଣି ଦେଲେ ।
ଆଦରେ କୋଳେ ବସାଇ କୁସୁମ ଚନ୍ଦନ
ଭୂଷିତ କଲେ ନେଇଣ ତାର ଅପଘନ ।

ସେ ଅନ୍ତେ ଶ୍ରୀକୃଷ୍ଣ ରାଧାଦେବୀଙ୍କୁ କୋଳରେ
ବସାଇ ବାନ୍ଧିଲେ କେଶ ଅତି ଯତନରେ ।
ମାଳତୀ ମାଧବୀ ମଲ୍ଲୀ କୁସୁମର ହାର
ସଜାଇଲେ ସେ ଜୁଡ଼ାରେ ସୁଖେ ନନ୍ଦବାଳ ।
ବିବିଧ କୁସୁମମାଳା ବିଭୂଷଣ ଆଦି
ଖଞ୍ଜି ଦେଲେ ପୁଣି ଯଥା ସ୍ଥାନରେ ସମାଧି ।
ଦିବ୍ୟ ବାସ ପରିଧାନ କରାଇ ସତ୍ତ୍ୱରେ
କସ୍ତୁରୀ ସିନ୍ଦୁର ବିନ୍ଦୁ ଦେଲେ ଲଲାଟରେ ।
ଅଧର ଲଗାଇ ଗଣ୍ଡେ ଚୁମ୍ବି ପୁନଃପୁନଃ
ତୋଷ କରାଇଲେ ପ୍ରାଣ ପ୍ରିୟାଙ୍କର ମନ ।
ଆଉ ଯେତେ ଗୋପଗୋପୀ ଜନେ ତହିଁ ଥିଲେ
ସମସ୍ତେ ସେପରି ବେଶଭୂଷା ସଜାଇଲେ ।
ପ୍ରବେଶ ହୋଇଣ ସର୍ବେ ପୁଣି ରାସସ୍ଥଳେ
କଉତୁକେ ନାନା ସ୍ଥାନ ବୁଲିଣ ଦେଖିଲେ ।
ମାଳତୀ ମାଧବୀ କୁନ୍ଦ କେତକୀ ଚମ୍ପକ
ଯୂଥି ଜାତି ନାଗେଶ୍ୱର ମଲ୍ଲୀ କୁରୁବକ ।
କନଅର ଆଦି କେତେ ବୃକ୍ଷଲତାମାନ
କୁସୁମିତ ହୋଇ ଦିଶୁଥିଲେ ଶୋଭାବନ ।
ଦେଖିଣ ରାଧିକା ଦେବୀ ପୁଷ୍ପ ତୋଳିବାକୁ
ନିଯୁକ୍ତ କଲେ ସେ କେତେ ଗୋପିକାମାନଙ୍କୁ ।
କର୍ପୂର ଚନ୍ଦନ ସଜ କରିବାକୁ କେହି
ଗଲେ ରାସେଶ୍ୱରୀଙ୍କର ଆଜ୍ଞା ଶିରେ ବହି ।
ତାମ୍ବୁଳ ଯୋଗାଇବାପାଇଁ କେଉଁ ନବବାଳା
ବାହାର ହୋଇଲା ତଳେ ନ କରିଣହେଳା ।
ଏହିରୂପେ ସେ ଯାହାର କାର୍ଯ୍ୟରେ ଲାଗିଲେ
ରାଧାଙ୍କ ହସ୍ତରେ ସବୁବେଳେ ଆଣି ଦେଲେ ।
ତା ଦେଖି ସନ୍ତୁଷ୍ଟ ହୋଇ ରାଧିକା ସୁନ୍ଦରୀ
ସମର୍ପିଲେ ଶ୍ରୀକୃଷ୍ଣଙ୍କୁ ଗୋଟି ଗୋଟି କରି ।
ସେ ଅନ୍ତରେ ଉଠି ସର୍ବେ ଏକତ୍ରିତ ହୋଇ
ନାନାସ୍ଥାନରେ ଭ୍ରମଣ କଲେ ପୁଣି ଯାଇ ।
ସୁଶୋଭିତ ଉପବନେ ରମ୍ୟ ସରୋବରେ
ନିର୍ଜନ ପ୍ରାନ୍ତର ମଧ୍ୟେ ପର୍ବତ କନ୍ଦରେ ।
ବିହାର କରି ସେଠାରେ ପୁଣି ଚାଲିଗଲେ
ଭଣ୍ଡୀର ଶ୍ରୀବନ ନାମ ଅରଣ୍ୟେ ମିଳିଲେ ।
ଆଦରେ ତୁଳସୀ ବନ କଦମ୍ବ କାନନ
ବଦରୀ ଅରଣ୍ୟ ଆଦି ଥିଲା ଯେତେ ସ୍ଥାନ ।

ଭ୍ରମଣ କରନ୍ତି ଚନ୍ଦ୍ରିରେ କଉତୁକ ରସେ
ସେହିଠାରେ ରହି ସର୍ବେ ଶେଷକାଳ ମାସେ ।
ତଥାପି ପ୍ରିୟାଙ୍କ ମନ ସନ୍ତୁଷ୍ଟ ନୋହିଲା
ପୁନଃପୁନଃ କାମଇଚ୍ଛା ବର୍ଦ୍ଧିତ ହୋଇଲା ।
ଯେଉଁରୂପେ ଅନଳରେ ଢାଳିଲେ ଆହୁତି
ବର୍ଦ୍ଧିତ ହୋଇଣ ତାହା ଜଳଇଟେ ଅତି ।
ସେହିରୂପେ ରତିରସେ କାମିନୀଙ୍କ ଚିତ୍ତ
କେତେବେଳେହେଲେ ହୋଇନପାରେ ତୃପତ ।
ଆକାଶରେ ଦେବଦେବୀ ମୁନିଋଷି ଯେତେ
ରହିଥିଲେ ରାସକ୍ରୀଡ଼ା ଦେଖିଣ ସମସ୍ତେ ।
ବିସ୍ମିତ ହୋଇଣ ନିଜ ନିଜପୁରେ ଗଲେ
ଶ୍ରୀକୃଷ୍ଣଙ୍କୁ ମନେ ମନେ ପ୍ରଶଂସା କଲେ ।
କାମଶରେ ପୀଡ଼ାପାଇ ଦେବ ସ୍ତ୍ରୀଗଣ
ମର୍ତ୍ତ୍ୟପୁରେ ହେଲେ ନୃପ ଗୃହେ ଗୃହେ ଜନ୍ମ
ଏହିଠାରେ ଶ୍ରୀକୃଷ୍ଣଙ୍କ ରାସକ୍ରୀଡ଼ା ରସ
ଅଧମ ଶେଷ ମୋହନ ଗୀତେ କଲା ଶେଷ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକା ଆଉ ଗୋପୀମାନଙ୍କ ସହିତ
ଶ୍ରୀକୃଷ୍ଣଙ୍କର ରାସକ୍ରୀଡ଼ା ବର୍ଣ୍ଣନେ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

—*—

## ଊନତ୍ରିଂଶ ଅଧ୍ୟାୟ

### ମୁନିଙ୍କର ମୋକ୍ଷଣ ପ୍ରସ୍ତାବ ବର୍ଣ୍ଣନ

ଏଥୁ ଅନନ୍ତରେ ନାରାୟଣ ମୁନିବର
କୋଇଲେ ନାରଦ ଶୁଣ ମନ କରି ସ୍ଥିର ।
କାମରେ ଉନ୍ମତ୍ତ ହୋଇ ଗୋପବାଳାଗଣ
ଶ୍ରୀକୃଷ୍ଣଙ୍କ ଆଗେ ଉଭା ହୋଇ ପୁଣ ପୁଣ ।
କୋଇଲେ ହେ ଦେବ ଆମ୍ଭ ସଙ୍ଗତରେ ମିଶି
ଆଜ ଥରେ ରାସକ୍ରୀଡ଼ା କର ମନତୋଷି ।
କେ ବୋଇଲା ଦିଅ ମୋତେ ମାଳତୀର ମାଳା
ଭୂଷିତ କରିବ ମୋର ବକ୍ଷସ୍ଥଳ ଭଲା ।
କେ ବୋଇଲା ମୋତେ ନେଇ ଆପଣା କୋଳରେ
ଚୁମ୍ବନ ଦେବ ମୁଁ ତୁମ୍ଭ କପୋଳ ଦେଶରେ ।
କେ ବୋଲେ ନେଇଣ ମୋତେ ବସାଅ ଜାନୁରେ
କେ ବୋଲେ ବସିବି ତୁମ୍ଭ ମସ୍ତକ ଉପରେ ।
କେଉଁଗୋପୀ ବୋଲେ ତୁମ୍ଭ ପୀତବାସ ମୋତେ
ଦିଅ ମୁଁ ପିନ୍ଧିବି ଏବେ ତୁମ୍ଭର ଅଗ୍ରତେ ।
କେଉଁମାନେ ବୋଇଲେ ହେ ଜଗତ ଈଶ୍ୱର
ଶ୍ରୀଖଣ୍ଡ ପଲ୍ଲବ ଆଣି ଦିଅ ମୋର କର ।
ପରକୁ ଦେଖାଇ ଅନ୍ୟ ଗୋପିକା ବୋଲଇ
ତୁମ୍ଭର ସଙ୍ଗମ ଇଚ୍ଛା କରିଅଛୁ ଏହି ।
ଆଉ କେଉଁ ଗୋପୀ ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ
ମୈଥୁନ ସଙ୍କେତ ଦେଲା ନୟନ ବୁଲାଇ ।
କେଉଁ ଗୋପୀ କଳାକାରେ ମୁରଲୀକି ନେଲା
କେ ଅଙ୍ଗରୁ ବସ୍ତ୍ର ଝିଙ୍କି ଦିଗମ୍ବର କଲା ।
କେଉଁ ଗୋପକନ୍ୟାମାନେ ପ୍ରେମେ ଭୋଳ ହୋଇ
ବୋଇଲା ସ୍ତନରେ ମୋର ଲେଖ ଚିତ୍ର ଦୁଇ ।
ଏହିରୂପେ ଗୋପୀଙ୍କର ଦେଖି ମତ୍ତଭାବ
କାଞ୍ଚିତ ଭାବନା କରି ମନରେ ମାଧବ ।
ରାଧିକା ସହିତେ ଅନ୍ତର୍ଦ୍ଧାନ ହୋଇଗଲେ
ଅତ୍ୟନ୍ତ ନିର୍ଜନ ସ୍ଥାନେ ଉପସ୍ଥିତ ହେଲେ ।
ପର୍ବତ କନ୍ଦରେ ନଦୀ ପୁଷ୍କରିଣୀ କୂଳେ
ଗେମୋକ୍ଷ ସୁନ୍ଦର ଉପବନର ମଧ୍ୟରେ ।
ଷୋଡ଼ଶ ପ୍ରକାର ରତି ରସରେ ଭୂଷିତ
କରାଇଲେ ଚର୍ଚ୍ଚି ରାଧା ଦେବୀଙ୍କର ଚିତ୍ତ ।
ସେ ସମସ୍ତେ ମଳୟ ଦ୍ରୋଣୀ କୁସୁମ ବନରେ
ବିହାର କଲେ ସେ ଦୁହେଁ ଆନନ୍ଦ ମନରେ ।
ସମ୍ଭୋଗ ସୁଖରେ ହେଲା ଚେତନା ହରାଇ
ବସିଥିଲେ ପଲଙ୍କ ନିଜ ବକ୍ଷଦେଶେ ଥୋଇ ।
ତାହାଙ୍କର ସ୍ତନ ଉରୁ ଦେଶରୁ ବସନ
ଅପସୃତ ହୋଇବାର ଦେଖି ଭଗବାନ ।
ସଚେତ ଜଗାଇ ବାସ ଭୂଷଣ ଖଞ୍ଜିଲେ
କବରୀ ଉପରେ ପୁଷ୍ପମାଳା ନେଇ ଦେଲେ ।

ଆବର ପ୍ରାନ୍ତେରେ ଚନ୍ଦ ଲେଖାମାନ
ରଚିଲେ ଭ୍ରମରୂପେ ପ୍ରେମେ ଦେଇ ମନ ।
ସେ ଅନ୍ତେ ତାହାଙ୍କୁ ସଙ୍ଗେ ଘେନି ବେଗେ ଗଲେ
ମନୋରମ ସରୋବର ତଟରେ ମିଳିଲେ ।
ନାନାବିଧ ପଦ୍ମ ପୁଷ୍ପ ଥାଇଣ ସେ ସରେ
ଦେଖିବା ମାତ୍ରେକ ମନ ନୟନକୁ ହରେ ।
ହଂସ କାରଣ୍ଡବ ଜଳ କୁକ୍କୁଟାଦି ପକ୍ଷୀ
କ୍ରୀଡ଼ା କରୁଛନ୍ତି ତହିଁ ହୋଇ ଅତି ସୁଖୀ ।
ତା ଦେଖି ଶ୍ରୀକୃଷ୍ଣ ତୋଷେ ରାଧାଙ୍କର ତୁଲେ
ସ୍ନାନ କରି ସେ ଜଳରେ କ୍ରୀଡ଼ା ଆରମ୍ଭିଲେ
ମୁହୂର୍ତ୍ତେ ଅନ୍ତରେ ତହୁଁ ଉଠିକରି ବେଗେ
ଦେଖିଲେ ବିଶାଳ ବଟ ପାଦପକୁ ଆଗେ ।
ଅତ୍ୟନ୍ତ ଉନ୍ନତ ସେହୁ ଯୋଜନ ବିସ୍ତୃତ
ମୂଳଦେଶ ହୋଇଅଛି ଛାୟାରେ ଆବୃତ ।
ତା ପାଶରେ ଅଛି ଏକ କେତକୀ କାନନ
ଦିଶଇ ସେ କୁସୁମରେ ଅତି ଶୋଭାବନ ।
ସେଠାରେ ରାଧାଙ୍କୁ ପାଶେ ବସାଇ ଗୋବିନ୍ଦ
କହିଲେ ବିନୋଦ କଥା ହୋଇଣ ଆନନ୍ଦ ।
ଏହି ସମୟରେ ଅଷ୍ଟାବକ୍ର ମୁନିବର
ମିଳିଲେ ସମୀପେ ଆସି ରାଧା କୃଷ୍ଣଙ୍କର ।
ଯୋଗଧ୍ୟାନେ ବସି ମୁନି ବୁଜି ବେନି ଆଖି
ହୃଦୟ ପଦ୍ମେ ପ୍ରଭୁଙ୍କୁ ନ ପାରନ୍ତି ଦେଖି ।
ବାହ୍ୟେ ପ୍ରକାଶିତ ହୋଇ ଅଛନ୍ତି ଜାଣିଲେ
ଯୋଗ ତେଜି ବୃନ୍ଦାବନେ ପ୍ରବେଶ ହୋଇଲେ
ବ୍ରହ୍ମ ତେଜରେ ତାହାଙ୍କ ସମସ୍ତ ଶରୀର
ଦିଶୁଅଛି ଯେହ୍ନେ ମଧ୍ୟ ଦିବସ ଭାସ୍କର ।
ଦୀର୍ଘ ନଖ ଶ୍ମଶ୍ରୁ ପିଙ୍ଗ ବର୍ଣ୍ଣ ଜଟାଭାର
ବହିଛନ୍ତି ହସ୍ତେ ମୁଖେ ମସ୍ତକେ ଆବର ।
ଉଭୟ କରପରେ ଦୁରୁ ପୁଟାଞ୍ଜଳି ହୋଇ
ଆସୁଛନ୍ତି ଶାନ୍ତଶିଷ୍ଟ ଭାବକୁ ଦେଖାଇ ।
ମୁନିଙ୍କ ସ୍ୱରୂପ ଦେଖି ରାଧିକା ସୁନ୍ଦରୀ
ହସିବାରୁ କୃଷ୍ଣ ତାଙ୍କୁ ନିବାରଣ କରି ।
ବୋଇଲେ ଅଟନ୍ତି ଏହୁ ମହାତ୍ମା ପୁରୁଷ
ଅମାନନା କଲେ ଆମ୍ଭେ ପାଇବା କଳୁଷ ।
ସେ ସମୟେ ମୁନିବର ଶ୍ରୀକୃଷ୍ଣଙ୍କ ପାଦେ
ପ୍ରଣାମ କରିଣ ସ୍ତୁତି କଲେ ସେ ଆନନ୍ଦେ ।
ବୋଇଲେ ନମସ୍ତେ ପ୍ରଭୁ ସର୍ବଗୁଣାଧାର
ନିର୍ଗୁଣ ବୀଜ ସ୍ୱରୂପ କରୁଣା ସାଗର ।
ପରମ ପୁରୁଷ ହରି ଜଗତ କରତା
ତ୍ରିତାପହରଣ ଗୁରୁ ଗତିମୁକ୍ତି ଦାତା
ତୁମ୍ଭେ ଅଟ ସିଦ୍ଧ ହେତୁ ସିଦ୍ଧ ଗଣାଧୀଶ
ମାୟା ମାନୁଷ ରୂପରେ ହୋଇଣ ପ୍ରକାଶ ।
ହେ ଦେବ ଦୈବଜ୍ଞ ଦେବ ବିଜ୍ଞ ବେଦବର
ତୁମ୍ଭ ଚରଣ କମଳେ କୋଟି ନମସ୍କାର ।
ପ୍ରକୃତି ପ୍ରାକୃତ ପ୍ରାଜ୍ଞ ପରାତ୍ପର ସ୍ୱାମୀ
ସୃଷ୍ଟି ସ୍ଥିତି ଲୟ କର୍ତ୍ତା ସର୍ବ ଅନ୍ତର୍ଯାମୀ ।
ମହା ବିରାଟ ପୁରୁଷ ରାଧାଦେବୀ ପତି
ତୁମ୍ଭ ପାଦପଦ୍ମ ତଳେ ଦିଅ ଦୃଢ଼ଭକ୍ତି ।
ଅପାର ସଂସାର ସିନ୍ଧୁ ତରଣି କର୍ଣ୍ଣଧାର
ନମସ୍ତେ ନମସ୍ତେ ନିତ୍ୟ ଶୁଦ୍ଧ ନିରାକାର ।
ଏହିରୂପେ ବୋଲି ମୁନି କୃଷ୍ଣ ପାଦେ ପଡ଼ି
ଯୋଗବଳେ ଆପଣାର ପ୍ରାଣ ଦେଲେ ଛାଡ଼ି ।
କାଷ୍ଠ ପିତୁଳା ପରାୟେ ନିର୍ଜୀବ ଶରୀର
ପଡ଼ି ରହିଲା ଶ୍ରୀକୃଷ୍ଣ ପାଦ ସମୀପର ।
ସେହିକ୍ଷଣି ଦିବ୍ୟ ତେଜ ବାହାରି ସେଠାରେ
ସପତ ତାଳ ପ୍ରମାଣେ ଚଳିଲା ଶୂନ୍ୟରେ ।
ପୁଣି ତଳେ ଧଡ଼ ଭ୍ରମି ଭ୍ରମି ବହୁବାର
ଶ୍ରୀକୃଷ୍ଣ ପାଦ କମଳେ ମିଶିଲା ସତ୍ୱର ।
ଅଷ୍ଟାବକ୍ର କୃତ ସ୍ତୋତ୍ର ପଢ଼ିଲେ ପ୍ରଭାତେ
ଅଶେଷ ମୁକତି ଲାଭ ହୁଅଇ ନିଶ୍ଚିତେ ।
ସନ୍ତୁଷ୍ଟ ହୁଅନ୍ତି ପ୍ରଭୁ ଗୋଲୋକ ଈଶ୍ୱର
ଦେବତା ସମାନ ପୂଜା ଯୋଗ୍ୟ ହୁଏ ନର ।
ଏହିଠାରେ ମୁନିଙ୍କର ମୋକ୍ଷ ଉପାଖ୍ୟାନ
ବର୍ଣ୍ଣନା କରିଲି ଗୀତେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ମୁନିଙ୍କର ମୋକ୍ଷଣ
ପ୍ରସ୍ତାବ ବର୍ଣ୍ଣନେ ନାମ ଊନବିଂଶୋଽଧ୍ୟାୟଃ ।

—*—

# ତ୍ରିଂଶ ଅଧ୍ୟାୟ

## ରାଧିକାଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର ଅଷ୍ଟାବକ୍ର ଚରିତ ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ମହାଜ୍ଞାନୀ
ଦେହତ୍ୟାଗ କଲା ପରେ ଅଷ୍ଟାବକ୍ର ମୁନି ।
ଶ୍ରୀକୃଷ୍ଣ ରାଧିକା ଦୁହେଁ କି ବ୍ୟବହାର କଲେ
ଆମୂଳ କରିଣ ତାହା କହ ମୋତେ ଭଲେ
ନାରାୟଣ ବୋଇଲେ ହେ ମୁନିଙ୍କର ଗତି
ଦେଖିଣ ଶ୍ରୀକୃଷ୍ଣ ମନେ କ୍ଷୋଭ କଲେ ଅତି ।
ଶବ ନେଇ ଆପଣାର ବକ୍ଷସ୍ଥଳେ ଥୋଇ
ଶୋକ କଲେ ସାଧାରଣ ଲୋକ ପ୍ରାୟ ହୋଇ
ତାଙ୍କ ଦେହ ଘରଷଣେ ମୁନିଙ୍କ ଦେହରୁ
ବାହାରିଣ ଭସ୍ମ ଉଡ଼ିଗଲା ପୁରୁପୁରୁ ।
ଷାଠିଏ ସହସ୍ର ବର୍ଷ ତପକରି ଋଷି
କୋଷ୍ଠାଗ୍ନିରେ ରକ୍ତମାଂସ ଦେଇଥିଲେ ଧ୍ୱଂସି
ସେ ସକାଶୁ ତାହାଙ୍କର ଦେହ ଅତି କ୍ଷୀଣ
ହୋଇଥିଲା ପ୍ରତିପଦା ଚନ୍ଦ୍ରର ସମାନ ।
ଶ୍ରୀକୃଷ୍ଣ ଦେଖିଣ ଅଶ୍ରୁ ଭରି ନୟନରେ
ସଜାଇଲେ ଚତାଟିଏ ଚନ୍ଦନ କାଷ୍ଠରେ ।
ଅଗ୍ନି ଲଗାଇ ତହିଁରେ ଦଗ୍ଧ କଲାବେଳେ
ମୂର୍ଚ୍ଛିତ ହୋଇଣ କ୍ଷଣେ ପଡ଼ିଲେ ଭୂତଳେ ।
ସେ ଅନ୍ତେ ଚେତନା ପାଇ ଶୁଣିଲେ ଆକାଶେ
ଦୁନ୍ଦୁଭି ବଜାଉଛନ୍ତି ଦେବତାଏ ତୋଷେ ।
ଆଉରି କୁସୁମ ବୃଷ୍ଟି କରି ତହିଁ ସଙ୍ଗେ
ନୃତ୍ୟ କରୁଛନ୍ତି ଗୀତ ଗାଇ ନାନା ରଙ୍ଗେ ।
କ୍ଷଣକ ଅନ୍ତରେ ପୁଣି ସ୍ୱର୍ଣ୍ଣମୟ ରଥ
ଶୂନ୍ୟଦେଶୁ ଅବତରି ହେଲା ଭୂମିଗତ ।
ବସିଥିଲେ ତା ମଧ୍ୟରେ ପାର୍ଷଦଗଣ
ଅଙ୍ଗରେ ଭରି ଅମୂଲ୍ୟ ବସ୍ତ୍ର ଆଭରଣ ।
ଶ୍ରୀକୃଷ୍ଣଙ୍କ ସମୀପରେ ଓହ୍ଲାଇ ସମସ୍ତେ
ନମସ୍କାର କଲେ ତାଙ୍କ ପାଦ ଧରି ହସ୍ତେ ।
ସୂକ୍ଷ୍ମ ଦେହ ଘେନି ତହିଁ ଥିଲେ ମୁନିବର
ତାହାଙ୍କୁ ମଧ୍ୟ ପ୍ରଣାମ କରିଣ ସତ୍ୱର ।
ଗଉରବ କରି ସେହି ରଥରେ ବସାଇ
ଗୋଲୋକ ଭୁବନେ ଗଲେ ଶ୍ରୀକୃଷ୍ଣଙ୍କୁ କହି ।

ତାହା ଦେଖିଣ ରାଧିକା ବିସ୍ମିତ ହୃଦରେ
ଶ୍ରୀକୃଷ୍ଣଙ୍କୁ ଅନାଇଣ ପଚାରିଲେ ଧୀରେ ।
ବୋଇଲେ ହେ ନାଥ ଯେଉଁ ମୁନି ବସି ରଥେ
ମୁକ୍ତି ପାଇଣ ଗୋଲୋକ ଗଲେ ଶୂନ୍ୟପଥେ
କିଏ ଅଟନ୍ତି ସେ କିବା ଅଟେ ତାଙ୍କ ନାମ
କେମନ୍ତ ପ୍ରକାର ତାହାଙ୍କର ଗୁଣଗ୍ରାମ ।
କାହିଁପାଇଁ ଅବା ତାଙ୍କ ଦେହ ନାନାସ୍ଥାନ
କୁବୁଜ ଥିଲା ପରାୟେ ବକ୍ରଅଛି ଚିହ୍ନ ।
କି କାରଣରୁ ତୁମ୍ଭର ଦେହ ସଙ୍ଗ ପାଇ
ଭସ୍ମ ବାହାରିଲା ଶବ ମଧ୍ୟରୁ ବୁହାଇ ।
କେଉଁ ପୁଣ୍ୟବଳେ ତୁମ୍ଭ ପାଦପଙ୍କଜରେ
ଲୀନ ହେଇଗଲେ ସେହି କ୍ଷଣକ ମଧ୍ୟରେ ।
ଶବ ସଂସ୍କାର ସମୟେ କାହିଁକି ତୁମ୍ଭର
ନୟନରୁ ବାହାରିଲା ଶୋକ ଅଶ୍ରୁଧାର ।
ଏସବୁ ବିଷୟ ମୋତେ କହ ପ୍ରାଣେଶ୍ୱର
ଶୁଣିବାକୁ ଉତ୍କଣ୍ଠିତ ହେଉଛି ଅନ୍ତର ।
ଶ୍ରୀକୃଷ୍ଣ ତା ଶୁଣି ଖର ନିଃଶ୍ୱାସ ପକାଇ
ବୋଇଲେ ସେ କଥା ଅଦ୍ଭୁତ ଅଟଇ ।
ତିନି ଭୁବନେ ବିଖ୍ୟାତ ଅଷ୍ଟାବକ୍ର ମୁନି
ଅଟନ୍ତି ସକଳ ବେଦଶାସ୍ତ୍ର ତତ୍ତ୍ୱଜ୍ଞାନୀ ।
ତାହାଙ୍କ ବିଷୟ ତୁମ୍ଭେ ଅନ୍ୟ ସମୟରେ
ଶୁଣିବ ବିଜ୍ଞ ବ୍ୟକ୍ତିଙ୍କଠାରୁ ବିସ୍ତରେ ।
ତାହା ଶୁଣିଣ ରାଧିକା ବୋଇଲେ ହେ ଦେବ
ସୁଧାପାନ କରି ଯେହ୍ନେ ତୃପତ ନ ହେବ ।
କିରୂପେ ତାହାର ମନ କ୍ଷାରଜଳ ପାନେ
ସନ୍ତୁଷ୍ଟ ହୋଇପାରିବ ବିଚାର ତ ମନେ ।
ତୁମ୍ଭଠାରୁ ବଳି ଆଉ ଅଛି କେ ଜଗତେ
ଉତ୍ତମ ରୂପେ ବୁଝାଇ କହିବାକୁ ମୋତେ ।
ପ୍ରିୟାଙ୍କ ମୁଖରୁ ଏହା ଶୁଣି ନନ୍ଦସୁତ
କହିଲେ ସନ୍ତୁଷ୍ଟ ହୋଇ ପୁରାଣ ଚରିତ ।
ବୋଇଲେ ଗୋ ପ୍ରିୟସଖି ମନଦେଇ ଶୁଣ
ଯେତେବେଳେ ଜଳମୟ ଥିଲା ତ୍ରିଭୁବନ ।

ବିଷ୍ଣୁଙ୍କ ନାଭି ପଦ୍ମରୁ ବ୍ରହ୍ମା ଜାତ ହୋଇ
ସ୍ଥାବର ଜଙ୍ଗମ କୁଳେ ସରଜିଲେ ମସ୍ତି ।
ବ୍ରହ୍ମାଙ୍କ ମନରୁ ଜନମିଲେ ଚାରିସୁତ
ସମସ୍ତେ ଅଟନ୍ତି ନାରାୟଣଙ୍କର ଭକ୍ତ ।
ବୟସରେ ପାଞ୍ଚ ପାଞ୍ଚ ବର୍ଷୀୟ ସେମାନେ
ବ୍ରହ୍ମତତ୍ତ୍ୱକୁ ସର୍ବଦା ଭାବନ୍ତି ସେ ମନେ ।
ସନକ ସନନ୍ଦ ସନାତନ ଯେ ସନତ
କୁମର ବୋଲି ତାହାଙ୍କ ନାମ ଅଟେ ଖ୍ୟାତ ।
ତାଙ୍କୁ ଦେଖି ପ୍ରଜାପତି ବୋଇଲେରେ ତୁମ୍ଭେ
ସୃଷ୍ଟି ସରଜନା କର ବୋଲୁଅଛୁ ଆମ୍ଭେ ।
ଏରୂପେ ପିତାଙ୍କ ବାକ୍ୟ ଶୁଣିଣ ସେମାନେ
ଅବଜ୍ଞା କରି ସେକ୍ଷଣି ଗଲେ ଘୋରବନେ ।
ବ୍ରହ୍ମା ତାହା ଜାଣି ଅତି ଦୁଃଖିତ ହୋଇଲେ
ଜ୍ଞାନ ଯୋଗରେ କେତେକ ପୁତ୍ର ଜାତ କଲେ
ସେମାନେ ସକଳ ଶାସ୍ତ୍ରଜ୍ଞାନରେ ନିପୁଣ
ଆବର ବ୍ରହ୍ମତେଜରେ ଅତି ତେଜପୂର୍ଣ୍ଣ ।
ଅତ୍ରି ପୁଲସ୍ତ୍ୟ ପୁଲହ ମରୀଚି ବଶିଷ୍ଠ
ଅଙ୍ଗିରା କପିଳ ଭୃଗୁ କ୍ରତୁ ମୁନିଶ୍ରେଷ୍ଠ ।
କଚ ଶଙ୍କୁ ପ୍ରଚେତା ଯେ ବୋଢ଼ୁ ପଞ୍ଚଶିଖ
ଶଙ୍ଖ ପର୍ବତରେ ଅଟନ୍ତି ଯେ ତପୀ ମୁଖ୍ୟ ।
ସେମାନେ ସୃଷ୍ଟି କରିବା ଇଚ୍ଛାରେ ସମସ୍ତେ
ଦାର ପରିଗ୍ରହ କଲେ ନିଜ ଇଚ୍ଛା ମତେ ।
ପ୍ରଚେତାଙ୍କଠାରୁ ଯେଉଁ ସୁତ ଜନମିଲେ
ଅସିତ ବୋଲି କରି ସେ ନାମକୁ ବହିଲେ ।
ତାହାଙ୍କର ଯଥାକାଳେ ନ ହେବାରୁ ସୁତ
ଜାୟାପତି ଦୁହେଁ ହେଲେ ତପସ୍ୟାରେ ରତ ।
ଦିବ୍ୟ ସହସ୍ର ବରଷ ଏହିପରି ଗଲା
ତଥାପି ତାଙ୍କ ଔରସେ ପୁତ୍ର ନ ଜନ୍ମିଲା ।
ସେ ସକାଶୁ ଅନଳରେ ଝାସ ଦେବାପାଇଁ
ମନରେ ନିଶ୍ଚୟ କଲେ ପତି ପତ୍ନୀ ଦୁଇ ।
ସେ ସମୟେ ଆକାଶରୁ ଶୁଭିଲା ବଚନ
ବୃଥାରେ କେବେ ବିନାଶ ନ କର ଜୀବନ ।
ଶିବଙ୍କଠାରୁ ଗ୍ରହଣ କରି ଦେବୀ ମନ୍ତ୍ର
ଜପକର ଏକାନ୍ତରେ ହୋଇଣ ସ୍ୱତନ୍ତ୍ର ।
ତେବେ ଦରଶନ ଦେବେ ଦେବୀ ମହାମାୟୀ ।
ତୁମ୍ଭର କାମନା ପୂର୍ଣ୍ଣ କରିବେଟି ସେହି ।

ଏହିରୂପେ ଶୁଣି ଦ୍ୱିଜ ବେଗହୋଇ ଗଲେ
ଶିବଙ୍କ ପୁରେ ଯାଇଣ ପ୍ରବେଶ ହୋଇଲେ ।
ଭାର୍ଯ୍ୟା ସହିତେ ଶିବଙ୍କୁ କଲେ ତହିଁ ସ୍ତୁତି
ବୋଇଲେ ନମଃ ଶଙ୍କର ପାର୍ବତୀଙ୍କ ପତି ।
ଯୋଗୀଜନ ଗୁରୁଙ୍କର ଗୁରୁ ଅଟ ତୁମ୍ଭେ
ତୁମ୍ଭର ମହିମା କିବା ଜାଣିପାରୁ ଆମ୍ଭେ ।
ମୃତ୍ୟୁର ମୃତ୍ୟୁ କରତା ଜଗମୃତ୍ୟୁ ହରି
କାଳରୂପୀ କାଳଈଶ ନମୋ ମହେଶ୍ୱର ।
ଗୁଣାତୀତ ଗୁଣାଧାର ଗୁଣୀଙ୍କର ଗୁରୁ
ବ୍ରହ୍ମା ଆଦି ଦେବଗଣ ଜାତ ତୁମ୍ଭଠାରୁ ।
ଏହିରୂପେ ସ୍ତୁତି କରି ଶିବଙ୍କୁ ସେ ମୁନି
ଜଙ୍କହେଲେ ଆଗେ କରଯୋଡ଼ି ହୋଇ ପୁନି
ଅସିତ କୃତ ସ୍ତୋତ୍ର ଯେ ଭକ୍ତିରେ ପଢ଼ଇ
ତାହାର ଧନ ସମ୍ପଦ ଐଶ୍ୱର୍ଯ୍ୟ ବଢ଼ଇ ।
ଯଥାକାଳେ ଗୁଣବନ୍ତ ପୁତ୍ରଜାତ ହୁଏ
ବିଷ୍ଣୁଙ୍କ ସେବାରେ ସେହୁ ମନଦେଇ ରହେ ।
ଇହଲୋକେ ସର୍ବସୁଖ ଭୁଞ୍ଜଇ ସେ ଜନ
ଅନ୍ତଃକାଳେ ପାଏ ପୁଣି ଶିବଙ୍କ ଭବନ ।
ମନଦେଇ ଶୁଣ ଆଗୋ ରାଧିକା ସୁନ୍ଦରୀ
ମୁନିଙ୍କର ସ୍ତୁତି ଶୁଣି ଦେବ ତ୍ରିପୁରାରି ।
ପ୍ରସନ୍ନ ହୋଇ ତାହାଙ୍କୁ ବୋଇଲେ ହେ ବତ୍ସ
ଜାଣିଲଣି ତୁମ୍ଭେ ଯହିଁପାଇଁ ଆସିଅଛ ।
ପୁତ୍ର ଅଭିଳାଷ କରି ମନ୍ତ୍ର ନେଇବାର
ଅଭିପ୍ରାୟ କରିଅଛ ଆହେ ମୁନିବର ।
ଏବେ ସେ ଦୁର୍ଲ୍ଲଭ ମନ୍ତ୍ର ଅଙ୍ଗ ସହିତରେ
ଦେଉଅଛୁ ନେଇଯାଅ ଆନନ୍ଦ ଚିତ୍ତରେ ।
ଏମନ୍ତ କହିଣ ଶିବ ସେ ମନ୍ତ୍ରକୁ ଦେଲେ
ପୁରଶ୍ଚରଣ ସହିତେ ବତାଇ କହିଲେ ।
ବୋଇଲେ ଏହା ପ୍ରଭାବେ ଦେବୀମହାମାୟା
ପ୍ରତ୍ୟକ୍ଷ ହୋଇବେ କରି ତୁମ୍ଭଠାରେ ଦୟା ।
ଶୁଣିଣ ଆନନ୍ଦ ମନେ ବ୍ରହ୍ମାଙ୍କ କୁମର
ଗଲେ ଶିବଙ୍କ ପାଦରେ କରି ନମସ୍କାର ।
ଶତବର୍ଷର ପର୍ଯ୍ୟନ୍ତ ସେହିଦିନଠାରୁ
ଜପକଲେ ସେ ମନ୍ତ୍ରକୁ ନୋହି କିଛୁ ଖରୁ ।
ତାହାଜାଣି ତୁମ୍ଭେ ତାଙ୍କ ପାଶକୁ ଆସିଲ
ପୁତ୍ରଲାଭ ହେଉ ବୋଲି ବର ଦେଇଗଲ ।

କେତେକାଳ ପରେ ହେଲା ତାହାଙ୍କର ସୁତ
ଦେବଳ ନାମରେ ସେହୁ ଜଗତେ ବିଖ୍ୟାତ ।
ମହାଜ୍ଞାନବନ୍ତ ପୁଣି କନ୍ଦର୍ପ ସୁନ୍ଦର
ନ ଥିଲା ଅନ୍ୟନ୍ତ କାନ୍ତି ତାର ପଟାନ୍ତର ।
ଯୁବା ବୟସ ହେବାରୁ ସେ ବ୍ରାହ୍ମଣ ବଳା
ସୁଯଜ୍ଞ ନୃପକନ୍ୟାକୁ ବିବାହ କରିଲା ।
ରତ୍ନମାଳାବତୀ ଅଟେ ସେ କନ୍ୟାର ନାମ
ପୂର୍ଣ୍ଣକରି ପାରଇ ସେ କାମୀଜନ କାମ ।
ତାହାକୁ ପାଇ ଦେବଳ ମୋହିତ ହୋଇଲେ
ନାନାସ୍ଥାନେ ମିଳି ରତିରସରେ ମାତିଲେ ।
ଏହିରୂପେ କେତେକାଳ ହୁଅନ୍ତେ ଅତୀତ
ସଂସାରୁ ବିରକ୍ତ ହେଲା ଦ୍ୱିଜଙ୍କର ଚିତ୍ତ ।
ଅର୍ଦ୍ଧରାତ୍ର ସମୟରେ ଉଠି ଏକଦିନ
ତପସ୍ୟା ପାଇଁ ପ୍ରବେଶ ହେଲେ ଘୋରବନ ।
ତାହାଙ୍କର ପ୍ରିୟା ଶୋଇଥିଲେ ଏକା ହୋଇ
ପତି ଯିବାର ତାହାଙ୍କୁ ଜଣା ହୋଇ ନାହିଁ ।
ନିଦ୍ରା ତେଜି ପ୍ରାତଃକାଳେ ଉଠିଣ ସେ ନାରୀ
ସ୍ୱାମୀଙ୍କୁ ନ ଦେଖି ହେଲେ ଶୋକାନଳେ ଘାରି
ତପତ ହାଣ୍ଡିରେ ଯେସନେ ମଣ୍ଡିଥିଲେ ଧାନ
ଖଇ ହେଉଥାଏ ତଥା ହେଲା ତାଙ୍କ ମନ ।
ଆହାର ପାନାଦି ସବୁ ପରିତ୍ୟାଗ କରି
ଜୀବନ ତେଜିଲେ ଏକ ଦିନରେ ସୁନ୍ଦରୀ ।
ତାହାଙ୍କର ଶୁଦ୍ଧନିଷ୍ଠା ପୁତ୍ରର ହାତରେ
ଜଳାଇଲେ ଜ୍ଞାତିବନ୍ଧୁ ଜନେ ସେ କାଳରେ ।
ଗନ୍ଧମାଦନ ପର୍ବତେ ଉପସ୍ଥିତ ହୋଇ
ତପସ୍ୟା କଲେ ଦେବଳ ଦ୍ୱିଜକୁଳ ସାଇଁ ।
ମୋଠାରେ ମାନସ ଦେଇ ଅବ୍ୟୟସ୍ୱ ବର୍ଷ
ନଗଦ୍ୱାରେ ତାହାଙ୍କର ହୋଇଗଲା ଶେଷ ।
ଦିନେ ତାଙ୍କୁ ଦଇବଯୋଗେ ରମ୍ଭା ଅପସରୀ
ଦେଖିଣ ହୋଇଲା କାମ ସାୟକରେ ଘାରି ।
ଝଟେ ଝଟେ ସମୀପରେ ଉପସ୍ଥିତ ହୋଇ
ବୋଇଲା ମୋହର ବାକ୍ୟ ଶୁଣ ଋଷିସାଇଁ ।
କୋମଳ ଶରୀରେ କିମ୍ପାଁ ସହୁ ଏତେ କଷ୍ଟ
ତପ କରୁଅଛ ସବୁ ସୁଖ କରି ନଷ୍ଟ ।
ଏବେ ମୁହିଁ ବୋଲୁଅଛୁ ଯୋଗଧ୍ୟାନ ତେଜ
ସୁଖଭୋଗ କର ମୋର ଅଙ୍ଗସଙ୍ଗ ଭଜ ।

ପୁରୁଷ ମଧ୍ୟରେ ତୁମ୍ଭେ ହୋଇଅଛ ସାର
ଉତ୍ତମ ଅଟଇ ମୁହିଁ ସ୍ତ୍ରୀୟଙ୍କ ମଧ୍ୟର ।
ଯୋଗ୍ୟସ୍ତ୍ରୀମାନ ସଙ୍ଗେ ଯୋଗ୍ୟ ପୁରୁଷର ଯେବେ
ସଙ୍ଗମ ହୁଅଇ ତହୁଁ ସୁଖ ନାହିଁ ଭବେ ।
ଭାରତବର୍ଷରେ ରଜା ମହାରଜାମାନେ
ଯଜ୍ଞ କରୁଥାନ୍ତି ସ୍ୱର୍ଗ ଭୋଗ ଭାବି ମନେ ।
ସ୍ୱର୍ଗପୁରେ ସୁଖଭୋଗ ହୁଅଇ ଯେତେକ
ତହିଁରେ ଆମ୍ଭର ଅଙ୍ଗସଙ୍ଗଟି ଅଧିକ ।
ଦେଖ ମୋର ମୁଖପଦ୍ମ ଉରୁ ସ୍ତନଯୁଗ
ନାନା ବିଳାସ ଭଙ୍ଗୀରେ ହୋଇଛୁ ସଂଯୋଗ
ମୁନି ଜନଙ୍କର ମଧ୍ୟେ କାମଭୋଗରସ
ବାଞ୍ଛିତ ଅଟଇ ଜାଣ ଆହେ ମୁନିଈଶ ।
ରସିକା କାମିନୀ ସଙ୍ଗେ ନିର୍ଜନ ସ୍ଥାନରେ
ରତିଭୋଗ କରଇ ଯେ ଇଚ୍ଛା ଅନୁସାରେ ।
ସେହି ଏକା ଜଗତରେ ଅଟେ ମହାସୁଖୀ
ପ୍ରବୀଣ ଜନ ମଧ୍ୟରେ ତାହାକୁ ଯେ ଲେଖି ।
ଦେବତା ମନୁଷ୍ୟ ଅବା ଗନ୍ଧର୍ବ କିନ୍ନର
ମନସ୍ତେ ଇଚ୍ଛା କରନ୍ତି ଅଙ୍ଗସଙ୍ଗ ମୋର ।
ଏକାନ୍ତରେ ଉପସ୍ଥିତ ହୁଏ ଯେ ବନିତା
ତାକୁ ଛାଡ଼ି ଯେଉଁ ଲୋକ କରେ ଧର୍ମଚିନ୍ତା ।
ଗାତ୍ରଲୋମ ପରିମାଣ ବରଷ ପର୍ଯ୍ୟନ୍ତେ
କୁମ୍ଭୀପାକରେ ସେ ଲୋକ ପଡ଼ଇ ନିଶ୍ଚିତେ ।
ଆଉର ସେ କାମିନୀର ଶାପଭୋଗ କରେ
ବିଖ୍ୟାତା ଯେସନେ ଅପୂଜ୍ୟ ମୋହିନୀ ଶାପରେ !
ଏ ସକାଶୁ ବୋଲୁଅଛୁ ଯୋଗ ତ୍ୟାଗକରି
ବିହାର କର ମୋ ସଙ୍ଗେ ଆହେ ତପସ୍ୱୀ ।
ତୁମ୍ଭ ପୂର୍ବ ତପସ୍ୟାର ଫଳ ଅଟେ ଏହି
ସନ୍ଦେହ ନ କର ଏଥି ଋଷିକୁଳ ସାଇଁ ।
ସ୍ୱଇଚ୍ଛାରେ ସମ୍ଭୋଗ ତ ଯାଚୁଛୁ ମୁଁ ବଳେ
ବଞ୍ଚିତ ହୋଇବ ତୁମ୍ଭେ ପରିତ୍ୟାଗ କଲେ ।
ଏରୂପେ ରମ୍ଭାର ବାଣୀ ଶୁଣି ତପଶୀଳ
ହେଲେ ବଚନ ହୋଇ ଭୟରେ ଆକୁଳ ।
ବୋଇଲେ ଗୋ ଅପସରୀ କହିଲୁ ଯା ତୁମ୍ଭେ
ମନ ବଚନେ ଅବଜ୍ଞା କରୁ ନାହୁଁ ଆମ୍ଭେ ।
କିନ୍ତୁ ବିପ୍ରଙ୍କର ଯାହା କୁଳାଚାର ଧର୍ମ
ଉଚିତ ଅଟଇ ତାର ଅନୁରୂପ କର୍ମ ।

ଧର୍ମ ଉପଯୁକ୍ତ କାଳେ କର୍ମଠ ବ୍ରାହ୍ମଣ
କର ଟାରଇ ଆପଣା ସ୍ତ୍ରୀଙ୍କୁ ରମଣ ।
ତେମନ୍ତ ହେଲେ ସେ ପୂଜ୍ୟ ହୁଏ ସବୁଠାରେ
ମୁକତି ଲଭଇ ପୁଣି ଶରୀର ଅନ୍ତରେ ।
ବ୍ରାହ୍ମଣ କ୍ଷତ୍ରିୟ ଅବା ବୈଶ୍ୟକୁଳେ ଜାତ
ଅଥବା ଶୂଦ୍ର ଯୋନିରେ ହେଲେହେଁ ସମ୍ଭୂତ
ପରସ୍ତ୍ରୀଠାରେ ଯେହୁ ଆସକ୍ତ ହୁଅଇ
ଯାଆନ୍ତି ପରମଲକ୍ଷ୍ମୀ ତା ଘରୁ ପଳାଇ ।
ସ୍ୱଇଚ୍ଛାରେ ପରସ୍ତ୍ରୀ ଆସିଲେ ପାଶକୁ
ବ୍ରହ୍ମଘ୍ନର ପାପ ହୁଏ ତେଜିଲେ ତାହାକୁ ।
କିନ୍ତୁ ତପିଜନଙ୍କର ବିପରୀତ ତାହା
ଅଟଇ ନିଶ୍ଚୟ ଜାଣିଥାଅ ଗୋ ସୁଦେହା ।
ଯୋଗୀ ହେଲେ ମଧ୍ୟ ଯେହୁ ସ୍ତ୍ରୀ ରଖିଥାଏ
ଭୋଗ କରିବାରେ ଦୋଷ ତାହାର ନ ହୁଏ ।
ଆମ୍ଭେ ତ କାମିନୀ ତ୍ୟାଗ କରିଅଛୁଁ ଆଗେ
ଭୋଗରେ ଆସକ୍ତ କାହିଁ ହେବୁ ମହାଭାଗେ ।
ସ୍ୱଧର୍ମ୍ମକୁ ଛାଡ଼ି ଯେବା ପରଧର୍ମ୍ମ ଧରେ
ଦେହ ଅନ୍ତେ ଲକ୍ଷେମୂନ ପଡ଼େ ନରକରେ ।
ଆଉର ଯଶ ପୌରୁଷ ସକଳ ତାହାର
ବିନଷ୍ଟ ହୁଅନ୍ତି ଜାଣ ରମଣୀଙ୍କ ବର ।
ଯଶ ନ ଥିଲା ଲୋକର ସବୁ ଅଟେ ବୃଥା
ସାଧିବା ପାଇଁକ ଏଥି ନାହିଁ କିଛି କଥା ।
ମୁହିଁ ତ ବୃଦ୍ଧତପସ୍ୱୀ ମୋର ସଙ୍ଗେ ଇଚ୍ଛା
କରି ବସିଅଛ ତୁମ୍ଭେ ସିନା ଏଥେ ତୁଚ୍ଛା ।
ସୁବେଶ ସୁନ୍ଦର ଯୁବା ପୁରୁଷକୁ ଦେଖି
ସଂସାର ବାସନା ପୂର୍ଣ୍ଣ କର ଚନ୍ଦ୍ରମୁଖୀ ।
ଏମନ୍ତ ମୁନିଙ୍କଠାରୁ ଶୁଣି ଅପସରୀ
କହିଲା ପୁଣି ତାହାଙ୍କୁ ନେତ୍ର ରଙ୍ଗ କରି ।
ବୋଇଲା ତୁମ୍ଭେ ତ ଅଟ କନ୍ଦର୍ପ ସମାନ
ତପ ପ୍ରଭାବରେ ତେଜେ ହୋଇଅଛ ପୂର୍ଣ୍ଣ ।
ତୁମ୍ଭଠାରୁ ବଳି ଅବା ଅଛି କେ ସୁନ୍ଦର
ଛାଡ଼ିବା ପାଇଁକ ମନ ହୋଇବ ମୋହର ।
ତୁମ୍ଭପରି ପୁରୁଷକୁ କେଉଁ ଯୁବତୀ
ତ୍ୟାଗକରି ଯିବାପାଇଁ ବଳାଇବ ମତି ।
କାମଶର ଅନଳରେ ଜଳୁଛି ମୋ ଦେହ
ସମ୍ଭୋଗ ଜଳରେ ଶାନ୍ତ କର ବନ୍ଧୁ ସ୍ନେହ ।

ତୁମ୍ଭ ଶୃଙ୍ଗାର ପୀୟୁଷ ପାନ କରିବାକୁ
ମୋ ମନ ଚକୋର ବହି ରହିଛି ଆଶାକୁ ।
ପ୍ରଣୟ ବଚନ ମୋର ନ ଶୁଣିବ ଯେବେ
ଅମୋଘ ଉତ୍କଟ ଶାପ ଦେବି ଜାଣ ତେବେ ।
ବ୍ରହ୍ମା ବିଷ୍ଣୁ ଶିବ ହେଲେ ମଧ୍ୟ ସେ ଶାପକୁ
ଖଣ୍ଡି ତ କରିବେ ବୋଲି ନ ଆଣ ମନକୁ ।
ଏମନ୍ତ କହିବାବେଳେ ରମ୍ଭା ଅପସରୀ
ଯୋଗରେ ମନ ନିବେଶି ଥିଲେ ତପଋଷି ।
ସେ ସକାଶୁ କିଛି ତାକୁ ନ ଦେଲେ ଉତ୍ତର
ସ୍ୱଭାବେ ତ ସ୍ତ୍ରୀଜାତି ଅଟନ୍ତି ଚପଳ ।
କାମେ ଅନ୍ଧ ହୋଇ ରମ୍ଭା କ୍ରୋଧେ ଜର ଜର
ଋଷିଙ୍କୁ ସେ ଶାପ ଦେଲା ମନେ ବହି ଖଳ ।
ବୋଇଲା ମୋଠାରୁ ତୁମ୍ଭେ ହେଲ ବହିଚିତ୍ତ
ତେଣୁ ବନ୍ଦ ହେଉ ତୁମ୍ଭ ଶରୀର ସମସ୍ତ ।
ଯଉବନ ଶିରୀ ତେଜ କୃଷ୍ଣବର୍ଣ୍ଣ ହୁଅ
ସକଳ ଲୋକଙ୍କଠାରୁ ତିରସ୍କାର ସହ ।
ପୂର୍ବକାଳୁ ଉପାର୍ଜନ କରିଛ ଯେ ତପ
ଆଜଠାରୁ ତାହା ସବୁ ହୋଇଯିବ ଲୋପ ।
ଏମନ୍ତ ଶାପ ଦେଇଣ ସେ ଦୁଷ୍ଟା କାମିନୀ
କାମଲୋକକୁ ପ୍ରୟାଣ କଲା ସେହିକ୍ଷଣି ।
ଯୋଗ ଧ୍ୟାନରେ ତ ମୁନି ବସି ରହିଥିଲେ
ରମ୍ଭା ଶାପେ ଶ୍ରୀହରିଙ୍କୁ ଦେଖି ନ ପାରିଲେ ।
ସେ ସକାଶୁ ଉଦବେଗେ ନୟନ ଫିଟାଇ ।
ଦେଖିଲେ ଅଙ୍ଗରେ ପୁଣି ଶୋଭା ଆଉ ନାହିଁ
ଉଷ୍ଟ୍ର ପୃଷ୍ଠରେ ଯେରୂପ କୁଜ ରହିଥାଏ ।
ସେରୂପେ ଦେହଟି ହୋଇଅଛି ଠାଏ ଠାଏ ।
ତା ଦେଖି ଦୁଃଖିତ ହୋଇ ମନରେ ଅପାର
ଅଗ୍ନିରେ ଝାସ ଦେବାକୁ କଲେ ତହିଁ ସ୍ଥିର ।
ସେ କଥା ଜାଣି ମୁଁ ତାଙ୍କ ସମୀପକୁ ଗଲି
ଆଶ୍ୱାସନା କରି ଇଚ୍ଛାମତେ ବର ଦେଲି ।
ଆଠଗୋଟି ସ୍ଥାନେ ବଙ୍କା ହେବାର ଦେହକୁ
ଦେଖି ଅଷ୍ଟାବକ୍ର ବୋଲି ଦେଲି ମୁଁ ନାମକୁ ।
ମୋ ଆଜ୍ଞା ପ୍ରମାଣେ ଏହି ପର୍ବତକୁ ଆସି
ଷାଠିଏ ସହସ୍ର ବର୍ଷ ତପ କଲେ ଋଷି ।
ଏବେ ହୋଇବାରୁ ଯୋଗ ଅବସାନ କାଳ
ମୋଠାରେ ଅନାଇ ମୁକତ ହେଲେ ତପଶୀଳ ।

ତପବଳେ ପ୍ରଜ୍ୱଳିତ ଜଠର ଅଗ୍ନିରେ
ଭସ୍ମ ହୋଇଥିଲା ରକ୍ତ ମାଂସ ସନ୍ଧିତରେ ।
ଅଷ୍ଟାବକ୍ର ପରି ମୋର ଭକ୍ତ ଆଉ କେହି
ତିନି ଭୁବନରେ ଦେଖା ନାହିଁ କେଉଁଠାଇଁ ।
ଶୁଣିଲ ତ ମୁନିଙ୍କର ସକଳ ବୃତ୍ତାନ୍ତ
ପରର ଆଉକ ଶୁଣିବାକୁ ଥିଲେ ଚିତ୍ତ ।
ବୋଲେ ଦୀନ କ୍ଷେତ୍ରବାସୀ ରାଧାକୃଷ୍ଣ ପାଦେ ।
ମୋହର ମନ ସର୍ବଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକାଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର ଅଷ୍ଟାବକ୍ର ଚରିତ ବର୍ଣ୍ଣନେ ନାମ ତ୍ରିଂଶୋଧ୍ୟାୟଃ ।

—*—

## ଏକତ୍ରିଂଶ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କ ଦ୍ୱାରା ମୋହିନୀ କୃତ ସ୍ତୋତ୍ର ବୃତ୍ତାନ୍ତ ବର୍ଣ୍ଣନ

ନାରାୟଣ ବୋଇଲେ ଶୁଣ ହେ ମୁନିବର
ଶ୍ରବଣ କରି ରାଧିକା ଶ୍ରୀକୃଷ୍ଣଙ୍କ ଗିର
ବୋଇଲେ ହେ ନାଥ ଅତି ଆଶ୍ଚର୍ଯ୍ୟ ଚରିତ
ତୁମ୍ଭ ମୁଖୁଁ ଶୁଣି ମୋର ତୋଷ ହେଲା ଚିତ୍ତ ।
ଏବେ ପ୍ରଜାପତିଙ୍କର ଶାପର କାରଣ
ଶୁଣିବାକୁ ଉତ୍କଣ୍ଠିତ ହେଉଅଛୁ ପୁଣ ।
ଯେଉଁ ବିଧାତା ଅନନ୍ତ ଜଗତର ପତି
କରୁଁପେ କୁଳଟାଠାରୁ ପାଇଲେ ସେ ଶାସ୍ତି ।
ଶ୍ରୀକୃଷ୍ଣ ବୋଇଲେ ପୂର୍ବେ ସୁଚନ୍ଦ୍ର ନୃପତି
ବାସବ ଦେବତା ପ୍ରାୟେ ପାଳୁଥିଲେ କ୍ଷିତି ।
ପରମ ଧାର୍ମିକ ସେହୁ ତପିଗଣ ଶ୍ରେଷ୍ଠ
ସବୁ ବୈଷ୍ଣବ ମଧ୍ୟେ ସେ ଅନନ୍ତ ଉତ୍କୃଷ୍ଟ ।
ସେ ରାଜା ପ୍ରଥମେ ତପ କରିବା ଇଚ୍ଛାରେ
ଉପସ୍ଥିତ ହେଲେ ଏହି ମଳୟ ଦ୍ରୋଣିରେ ।
ସହସ୍ର ବରଷ ଯାଏ ସୁସଂଯତ ହୋଇ
ତପସ୍ୟା କଲେ କେବଳ ପବନକୁ ଖାଇ ।
ଯୋଗ ଆସନରେ ପୁଣି ବହୁତ ବରଷ
ବସିବାରୁ ତାହାଙ୍କର ହୋଇଗଲା ଶେଷ ।
ଶରୀର ତ ଅନାହାରେ ହୋଇଥିଲା ଶୀର୍ଣ୍ଣ
ବଲ୍ମୀକରେ ଆଚ୍ଛାଦିତ ହେଲେ ତପୋଧନ ।
ତାହା ଜାଣି ପ୍ରଜାପତି ସେଠାକୁ ଆସିଲେ
କମଣ୍ଡଳୁ ଜଳ ତାଙ୍କ ଉପରେ ସିଞ୍ଚିଲେ ।
ଯେଉଁ ମନ୍ତ୍ର ପୂର୍ବକାଳେ ଦେଇଥିଲା ମୁହିଁ
ସେ ମନ୍ତ୍ରକୁ ଉଚ୍ଚାରଣ କଲେ ବସ୍ତାବହି ।
ସେହିକ୍ଷଣି ବଲ୍ମୀକ ମଧ୍ୟରୁ ରାଜନ
ବାହାରି ହୋଇଲେ ଯେହ୍ନେ ଆଦିତ୍ୟ ସମାନ ।
ବ୍ରହ୍ମାଙ୍କୁ ଆଗରେ ଦେଖି ତାଙ୍କ ପାଦ ଧରି
ନମସ୍କାର କଲେ ମସ୍ତକରେ ହସ୍ତ ଭରି ।
ବିଧାତା ବୋଇଲେ ନୃପ ମାଗି ନେନ ବର
ସନ୍ତୁଷ୍ଟ ହୋଇଲି ତପ ଦେଖି ମୁଁ ତୁମ୍ଭର ।
ତା ଶୁଣି ସୁଚନ୍ଦ୍ର ରଜା ମୋଠାରେ ଭକତି
ଦାସଭ୍ୱ ସହିତେ ତାଙ୍କୁ ମାଗିଲେ ନିଶ୍ଚିତି ।
ହେଉ ବୋଲି ସନମତି କଲେ ବେଦବର
ଦେଲେ ବ୍ରହ୍ମତତ୍ତ୍ୱ ରୂପ ଜ୍ଞାନକୁ ଆଦର ।
ସେହି ସମୟରେ ରାଜା ଦିବ୍ୟରୂପ ଧରି
ଦିଶିଲେ ସାକ୍ଷାତେ ଜାମଦଗ୍ନ୍ୟଙ୍କର ପରି ।
ନିମେଷ ମାତ୍ରକେ ଏକ ରଥ ଆକାଶରୁ
ଖସି ଆସିଲା ସେ ଦିଶୁଥିଲା ଅତିଦୂରୁ ।
ତେଜରେ ସହସ୍ରକୋଟି ଆଦିତ୍ୟ ସଦୃଶ
ଉଜ୍ଜ୍ୱଳିତ କରି ହେଉଥିଲା ଦଶଦିଶ ।
ଅମୂଲ୍ୟ ସ୍ୱର୍ଣ୍ଣ ରଚିତ ଶତଚନ୍ଦ୍ର ତହିଁ
ଲଗିବାରୁ ଅତି ଶୋଭିବନ୍ତ ସେ ଦିଶଇ ।
ଆବର ବିବିଧ ରତ୍ନମାଳା କୋଟି କୋଟି
ସେ ରଥ ମଧ୍ୟରେ ରହିଥିଲେ ହୋଇ ଗୋଟି
ପାରିଜାତ ମଲ୍ଲୀଆଦି ବିବିଧ କୁସୁମ
ପୂର୍ଣ୍ଣ ହୋଇ ଦିଶୁଥିଲେ ଅତି ମନୋରମ ।
ମଧ୍ୟେ ବସିଥିଲେ ମୋର ପାରିଷଦ ଗଣ
ଅଙ୍ଗରେ ଘେନି ଅମୂଲ୍ୟ ବାସ ଆଭରଣ ।

ସେମାନଙ୍କୁ ଦେଖି ରାଜା କରପଦ୍ମ ଯୋଡ଼ି
ପ୍ରଣାମ କଲେ ସାଷ୍ଟାଙ୍ଗେ ମହୀତଳରେ ପଡ଼ି ।
ସେତେବେଳେ ରାଜାଙ୍କର ମସ୍ତକ ଉପରେ ।
ସନ୍ତୁଷ୍ଟ ହୋଇ କୁସୁମ ବରଷିଲେ ସୁରେ ।
ମୁନିଋଷିମାନେ ଶୁଭ ଆଶୀର୍ବାଦ କରି
ବୋଇଲେ ପ୍ରଶଂସା ଯୋଗ୍ୟ ଅଟ ଦଣ୍ଡଧାରୀ
ଏହିପରି କହୁ କହୁ ସେ ସୁଚନ୍ଦ୍ର ନୃପ
ଗ୍ରହଣ କଲେ ସେକ୍ଷଣି ପାର୍ଷଦ ରୂପ ।
ଶ୍ରୀହରିଙ୍କଗଣ ସଙ୍ଗେ ରଥ ପରେ ବସି
ଗୋଲୋକ ଭୁବନେଗଲେ ହୋଇ ମହାତୋଷି
ପାର୍ଷଦ ହୋଇ ସବୁବେଳେ ମୋ ପାଶରେ
ରହିଅଛନ୍ତି ସେ ରାଜା ଅତି ହରଷରେ ।
ସେ ଅନ୍ତରେ ଯାହା ହେଲା ଶୁଣ ମନ ଦେଇ
ରାଜାଙ୍କୁ ବର ଦେଇଣ ଯାଉଥିଲେ ବ୍ରହ୍ମ ।
ମାର୍ଗରେ ମୋହିନୀ ସ୍ତ୍ରୀ ଦେଖିଣ ତାହାଙ୍କୁ
କାମଶରେ ପୀଡ଼ା ପାଇ ହରାଇ ଧୈର୍ଯ୍ୟକୁ ।
ସସ୍ମିତ ବଦନେ ବକ୍ର ନୟନରେ ଚାହିଁ ।
ପୁନଃପୁନ ସ୍ତନ ଉରୁ ଜଙ୍ଘ ନ ଦେଖାଇ ।
ବିଧାତାଙ୍କ ସଙ୍ଗେ କ୍ରୀଡ଼ା କରିବାକୁ ବାଞ୍ଛା
ମନରେ କରନ୍ତେ ଧୈର୍ଯ୍ୟ ରଖି ନ ପାରିଲା
ସ୍ୱଭାବରେ ଅଟଇ ତ ସେ ମୋହିନୀ ସ୍ତ୍ରୀ
ଅମୂଲ୍ୟ ବାସ ଭୂଷଣ ଥିଲା ଅଙ୍ଗେ ଭରି ।
ନବ ଯୌବନବତୀ ପୀନ ପୟୋଧରୀ
ବୃହତ ନିତମ୍ବ ଶ୍ରୋଣୀ ଅତ୍ୟନ୍ତ ସୁନ୍ଦରୀ ।
ପୁଲକରେ ସର୍ବାଙ୍ଗ କରି ଅଙ୍ଗ ପ୍ରତିଅଙ୍ଗ
ଭାବନା କଲା କେବଳ ବ୍ରହ୍ମାଙ୍କର ସଙ୍ଗ ।
ସେ ସକାଶୁ ଅଚେତନ ହେଲା ପଡ଼ି ତହିଁ
ଉଚ୍ଚ ହେଲା ଅଞ୍ଚଳରେ ବଦନ ଘୋଡ଼ାଇ
ତାହା ଜାଣି ପ୍ରଜାପତି ନ ଜାଣିଲା ପରି
ଗଲେ ଆଡ଼ ହୋଇ ମନେ ଶ୍ରୀହରିଙ୍କୁ ସ୍ମରି ।
ଆତ୍ମାରାମ ଜିତେନ୍ଦ୍ରିୟ ଅଟନ୍ତି ତ ସେହି
ତେଣୁ ତାହାଙ୍କୁ ବିକାର ନ ପାରିଲା ଛୁଇଁ ।
ତାଙ୍କ ଯିବା ପରେ ଜ୍ଞାନ ହରାଇ ମୋହିନୀ
ପଡ଼ିଲା ମହୀରେ କାମଶର ପୀଡ଼ା ଘେନି ।
କେତେକ ସମୟ ପରେ ପୁଣି ଚେତା ପାଇ
ଦୁଃଖରେ ବସିଲା ମୁଣ୍ଡେ ବେଣିକର ଦେଇ ।

ସେହିଦିନ ଆଦିଠାରୁ ନିବର୍ତ୍ତାଇ ମନ
ଦିନ ରାତି ବସି କଲା ବିଧାତାଙ୍କୁ ଧ୍ୟାନ ।
ପ୍ରସବିନୀ ଚାଲିପରି ଶୁଏ ପୁଣି ବସେ
ଉନ୍ମତ୍ତ ହୋଇ କରି ପୁନଃପୁନଃ ହସେ ।
ଏହିପରି କେତେକାଳ ଗତ ହେଲା ପରେ
ଦିନେ ଯାଉଥିଲା ରମ୍ଭା କାମିନୀ ମାର୍ଗରେ ।
ଦଇବେ ସେଠାରେ ଯାଇ ଉପଗତ ହେଲା
ମୋହିନୀର ଦଶା ଦେଖି ବିସ୍ମିତ ହୋଇଲା
ବୋଇଲା ଗୋ ପ୍ରିୟସଖି ତ୍ରୈଲୋକ୍ୟ ମୋହିନୀ
ଏମନ୍ତ ଅବସ୍ଥା ପାଉଅଛୁ କାହା ଘେନି ।
ରମ୍ଭା ପ୍ରତେ ମୂର୍ଚ୍ଛି ମୋର ବଚନକୁ ହେଜ
ବୁଝାଇଣ କହ ସବୁ ଉଠି ମୋହ ତେଜ ।
କାହାକୁ କାମନା କରିଅଛୁ ତୁ ମନରେ
କହ କିପାଁ ବିରକତ ହେଲା ସେ ତୋଠାରେ
ଆନନ୍ଦ ତ ଲୁକଟା ସ୍ତ୍ରୀ ସବୁ ଲୋକଙ୍କର
ସମ୍ଭୋଗ ପଦାର୍ଥ ଅଟେ ବୋଲି ମନେ କର ।
ତିନି ଭୁବନରେ କାମଭୋଗ ଅଟେ ସାର
ଯେଥିପାଇଁ ଲାଳାୟିତ ସୁରାସୁର ନର ।
ପତିଠାରେ ଯୌବନର ସମ୍ବନ୍ଧ ଥିବାରୁ
ପ୍ରିୟତମା ହୁଅଇ କେ ହେଲେ ପତିଠାରୁ ।
ଆଦର ଯେ ଯାହାଠାରେ ପ୍ରବର୍ତ୍ତାଇ ମନ
ତାହାର ଅଧୀନ ହୋଇ ରହଇ ଯୌବନ ।
ଦେଖ ମୂର୍ଚ୍ଛି କାମଠାରେ କରିବାରୁ ପ୍ରୀତି
ଯାଉଅଛୁ ଏକା ହୋଇ ତାଙ୍କ ପୁର ପ୍ରତି ।
ମୋ ପାଶରେ ବସି ଏବେ ବିବେଚନା କରି
ଯାହାକୁ ଇଚ୍ଛା କରିଛ ଯାଅ ତାର ପୁରୀ ।
ଉତ୍ତମ ପ୍ରକାରେ ବେଶ ଭୂଷା ସଜକରି
ଇଙ୍ଗିତ ଭଙ୍ଗୀରେ ତାର ମାନସକୁ ହରି ।
ମାତ୍ର ସୁରତ କାଳରେ ନିଜ ଅଭିପ୍ରାୟ
ନ କହିବୁ କେବେ ତାହା ଆଗେ ଜାଣିଥାଅ ।
ସ୍ତ୍ରୀ ଜାତିର ଯେ ମାନ ଅଭିମାନ ତାହା
ଯତ୍ନରେ ରକ୍ଷା କରିବ ଜାଣ ଗୋ ସୁଦେହା
ନୋହିଲେ ଜଗତ ଜନେ ନିନ୍ଦା ଉପହାସ
ସବୁକାଳେ ସବୁଠାରେ ପାଇବ ଅବଶ୍ୟ ।
ଏରୂପେ ରମ୍ଭା ବଚନ ଶୁଣିଣ ମୋହିନୀ
ବଦନ ପୋତି ରହିଲା ଲଜ୍ଜାଭାବ ଘେନି ।

ସେ ଅନ୍ତେ ବୋଇଲା ସଖି ନିର୍ଜନ ବନରେ
ଯାଉଥିଲେ ବିଜେ ପ୍ରଜାପତି ଏକାନ୍ତରେ ।
ତାହାଙ୍କୁ ଦେଖିବା ମାତ୍ରେ କାମଶରେ ମୂର୍ଚ୍ଛି
ପୀଡ଼ିତ ହେବାରୁ ମହାକଷ୍ଟେ ଅଛି ରହି ।
ପାନ ଭୋଜନରେ ଆଜ ଦଣ୍ଡ ନାହିଁ ରତି
ଭାବନା କରୁଛି ତାଙ୍କ ସଙ୍ଗକୁ ସତତ ।
ଉଦୟ ଅସ୍ତ ହେବାର ଚନ୍ଦ୍ରମା ତପନ
ବୋଧକରି ପାରୁ ନାହିଁ କେତେବେଳେ ମନ
ଯିବା ଆସିବା ସକାଶେ ମାହସ ମୋହର
ପାଉ ନାହିଁ ଜାଣ ଆଗୋ ରମଣୀଙ୍କ ବର ।
ସେ ସକାଶୁ ବୋଲୁଅଛି ପୁଂଶ୍ଚଳୀ ଜାତିକୁ
ଧିକ ହେଉ ପୁଣି ମୋର କୁତ୍ସିତ ପ୍ରାଣକୁ ।
ଲଜ୍ଜା ଜୀବନ ଦୁଇରୁ କାହାକୁ ଛାଡ଼ିବ
ସ୍ଥିରକରି ପାରୁ ନାହିଁ କହୁତ ମୁଁ ଭାବ ।
ଏହିରୂପେ ମୋହିନୀର ବଚନକୁ ଶୁଣି
ବିଚାରି କହିଲା ରମ୍ଭା ମତିଯୁକ୍ତ ବାଣୀ ।
ବୋଇଲା ଏଥିକି କିପାଁ କରୁଅଛୁ ଚିନ୍ତା
ଉପାୟ କହୁଛି ଶୁଣ ନ ହୋଇଣ ଭୀତା ।
ବ୍ରହ୍ମା ତ ଜଗତକର୍ତ୍ତା ତ୍ରିଭୁବନ ପତି
ତାହାଙ୍କୁ ବଶ କରିବୁ କାହିଁ ତୋର ଶକ୍ତି ।
ସେ ସକାଶୁ ଆଗ ଯାଇ କାମ ଦେବ ତାଙ୍କୁ
ଆରାଧନା କରି ସଙ୍ଗେ ଘେନ ଯାଅ ତାଙ୍କୁ ।
ତାଙ୍କ ସାହାଯ୍ୟରେ ନିଜ ମନୋରଥ ସିଦ୍ଧି
ହୋଇବ ନିଶ୍ଚୟ ଜାଣିଥାଅ ଗୋ ସୁବୁଦ୍ଧି ।
କନ୍ଦର୍ପ ସାହାଯ୍ୟ ବିନା ବ୍ରହ୍ମାଙ୍କୁ ଯେ ତୁହି
ବଶ କରିବୁ ଏ କଥା ସମ୍ଭବ ନୁହଇ ।
ଏବେ ମୋର ବୋଲ କରି ପୁଷ୍କର ତୀର୍ଥକୁ
ଯାଇ ଆରାଧନା କର କନ୍ଦର୍ପ ଦେବଙ୍କୁ ।
ଏମନ୍ତ କହିଣ ରମ୍ଭା ଗଲା କାମପୁରେ
ମୋହିନୀ ପ୍ରବେଶ ହେଲା ପୁଷ୍କର ତୀର୍ଥରେ ।
କଠୋର ତପସ୍ୟା ଯୋଗେ କାମକୁ ସନ୍ତୋଷ
କରାଇଲା ଅଳ୍ପଦିନେ ସ୍ତ୍ରିୟାଗଣ ଈଶ ।
ସେ ଅନ୍ତେ ତାହାଙ୍କୁ ସଙ୍ଗେ ଘେନି ଚାଲିଗଲା
ବ୍ରହ୍ମଲୋକରେ ଯାଇଣ ପ୍ରବେଶ ହୋଇଲା ।
ଏକାନ୍ତରେ ବିଧାତାଙ୍କୁ ଦେଖି ଆନନ୍ଦରେ
ନୃତ୍ୟକରି ଗୀତ ଆରମ୍ଭିଲା ସାଧୁ ସ୍ୱରେ ।

ତା ପାଖରେ ପଞ୍ଚଶର ପଞ୍ଚ ଶର ଧରି
ରହିଲା ବ୍ରହ୍ମାଙ୍କୁ ଦୃଶ୍ୟ ନ ହୋଇଲା ପରି ।
ମୋହିନୀର ନୃତ୍ୟଗୀତ ଦେଖି ଶୁଣି ବ୍ରହ୍ମା
ଚଞ୍ଚଳ ହେଲେ ହେଲେହେଁ ସେ ମହତକର୍ମା ।
ତା ଜାଣି ମୋହିନୀ ତାଙ୍କ ଆଗେ ପୁନଃପୁନଃ
ନୃତ୍ୟଚ୍ଛଳେ ଦେଖାଇଲା ମୁଖ ଜାନୁ ସ୍ତନ ।
କାମରେ ମୋହିତ ହୋଇଥାଏ ଯେଉଁ ଲୋକ
କ୍ଷଣକରେ ଲାଜ ତାକୁ ପଳାଏ ତେଜିକ ।
ଜିତେନ୍ଦ୍ରିୟ ପ୍ରବର ତ ଅଟନ୍ତି ବିଧାତା
ଜାଣି ପାରିଲେ ସେ ମୋହିନୀର ମନକଥା ।
ସେ ସକାଶୁ ମୁଖ ପୋତି ନୃତ୍ୟର ବିଦାୟ
ସ୍ୱରୂପରେ ଧନବସ୍ତ୍ର ଦେଇ ଅପ୍ରମେୟ ।
ଶ୍ରୀହରିଙ୍କୁ ସୁମରଣା କରି ବେଗ ହୋଇ
ଗଲେ ନିଜ ଭବନକୁ ସେଠାରେ ନ ରହି ।
ମୋହିନୀ ବ୍ରହ୍ମାଙ୍କ ଭାବ ବୁଝି ତ ପାରିଲା
ନିରାଶ ହୋଇଣ କନ୍ଦର୍ପକୁ ସ୍ତୁତିକଲା ।
ବୋଇଲା ହେ ଦେବ ତୁମ୍ଭେ ଅଟ ବିଷ୍ଣୁ ଅଂଶ
ଆଶ୍ରୟ କରି ରହିଛ ସବୁରି ମାନସ ।
ଆତ୍ମା ଅଟନ୍ତି ଶ୍ରୀହରି ଜ୍ଞାନରୂପୀ ହରି,
ମନରୂପେ ପ୍ରକାଶିତ ଦେବ ଅଧୀଶ୍ୱର ।
ତୁମ୍ଭେ ସେହି ମନଠାରୁ ହୋଇଅଛ ଜାତ
ନୁହଇ ତୁମ୍ଭ ମହିମା କାହାରି ବିଦିତ ।
ଅସାଧ୍ୟ ସାଧନ କର୍ତ୍ତା ରତି ଦେବୀ ବର
ଅଟ ଯେ ତୁମ୍ଭେ ତୁମ୍ଭର ପାଦେ ନମସ୍କାର ।
ନମସ୍ତେ ଯୋଷିତ ବନ୍ଧୁ ସଂସାର ମୋହନ
ନମୋନମଃ ଏକ୍ଷୁ ରଜ ତମୋ ଗୁଣବାନ ।
ବସନ୍ତ ବାନ୍ଧବ ମନମଥନ ଅନଙ୍ଗ
କରି ଅଛ ସର୍ବ ଶାସ୍ତ୍ର ତତ୍ତ୍ୱ ଜ୍ଞାନ ଭଙ୍ଗ ।
ଦେବତା ମାନବ ପଶୁ ପକ୍ଷୀ ଆଦି କରି
ଯେତେ ପ୍ରାଣୀ ସର୍ବେ ବଶ ଅଟନ୍ତି ତୁମ୍ଭରି ।
ତପସ୍ୱୀଙ୍କ ତପୋବିଘ୍ନ କାରଣ ଯେ ତୁମ୍ଭେ
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ ।
ତୁମ୍ଭର ଅଧୀନ ତିନି ଭୁବନର ଲୋକ
ବାଳ୍ମିକ ହୁଅଇ ତୁମ୍ଭ ପ୍ରଭାବରେ ମୂକ ।
ତୁମ୍ଭ ପାଦ କମଳରେ କୋଟି ନମସ୍କାର
କରୁଅଛି ମୋର ଅଭିମାନ ରକ୍ଷାକର ।

ଏମନ୍ତ ବୋଲି ମୋହିନୀ ବିରତ ହୋଇଲା
କାମଦେବଙ୍କ ଚରଣରେ ମନ ନିବେଶିଲା ।
ଏ ସ୍ତୋତ୍ରକୁ ନିତ୍ୟଦିନ ପଢ଼ଇ ଯେ ଜନ
ବହୁତ ଧନ ସମ୍ପଦ ହୁଏ ତାର ଜାଣ ।
ଆବର ଉତ୍ତମ ପତି ଭାର୍ଯ୍ୟା ମିଳଇ
କେବେ ହେଁଲେ କାମଶର ବାଧା ନ ହୁଅଇ ।
ଏଣୁଠାରେ କାମଦେବ ସ୍ତବ ଉପାଖ୍ୟାନ
କ୍ଷେତ୍ର ମୋହନ ଗୀତରେ କରିଲା ବର୍ଣ୍ଣନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦାସ ମୋହିନୀ କୃତ ସ୍ତୋତ୍ର ବୃତ୍ତାନ୍ତ ବର୍ଣ୍ଣନେ ନାମ ଏକତ୍ରିଂଶୋଽଧ୍ୟାୟଃ

—*—

## ଦ୍ୱା ତ୍ରିଂ ଶ ଅ ଧ୍ୟା ୟ

## ବ୍ରହ୍ମାଙ୍କ ଦ୍ୱାରା ଶ୍ରୀକୃଷ୍ଣ ସ୍ତୋତ୍ର ବର୍ଣ୍ଣନ

ରାଧାଙ୍କ ଆଗରେ କହୁଛନ୍ତି ନରହରି
ମନଦେଇ କରି ଶୁଣ ପ୍ରିୟ ସହଚରୀ ।
ମୋହିନୀର ସ୍ତୁତି ଶୁଣି କୋପେ ରତିପତି
ଅଦୃଶ୍ୟ ହୋଇଣ କଲା ଅନ୍ତରୀକ୍ଷେ ସ୍ଥିତି ।
ମୋହନ ଅସ୍ତ୍ର କୁସୁମ ଧନୁରେ ବସାଇ
ନିକ୍ଷେପ କଲା ବ୍ରହ୍ମାଙ୍କ ଉପରକୁ ଚାହିଁ ।
ସେ ଯୋଗେ ଚଞ୍ଚଳ ହେଲା ବ୍ରହ୍ମାଙ୍କର ଚିତ୍ତ
ମୋହିନୀ କାମିନୀଠାରେ ହୋଇଲେ ସେ ଆସକ୍ତ
ଅନେକ ଯାଏ ତା ମୁଖକୁ ନିରୀକ୍ଷଣ କରି
ଇନ୍ଦ୍ରିୟ ନିଗ୍ରହ କଲେ ପୁଣି ଧୈର୍ଯ୍ୟଧରି ।
ଯୋଗବଳେ କନ୍ଦର୍ପର ଚରିତ୍ରକୁ ଜାଣି
ଶାପ ଦେଲେ ହୃଦୟରେ ମହାକ୍ରୋଧ ଘେନି ।
ବୋଇଲେ ରେ ମୂଢ଼ କାମ ଯୌବନ ମଦରେ
କୁକର୍ମ ସାଧନ କରୁଅଛୁ ଅବାଧରେ ।
ଏବେ ଆମ୍ଭ ଶାପେ ତୋର ଦର୍ପଭଗ୍ନ ହେବ
ଏ କଥା ଅନ୍ୟଥା କରି ନ ପାରିଲେ ଦେବ ।
ତା ଶୁଣି କନ୍ଦର୍ପ ମହାଭୟ ଘେନି ଚିତ୍ତେ
ଅନ୍ତର ହୋଇଲା ନେଇ ମଧୁକୁ ସଙ୍ଗତେ ।
ସେ ଅନ୍ତରେ ପ୍ରଜାପତି ମୋହିନୀକୁ ଚାହିଁ
ବୋଇଲେ ଯାଅ ତୋ ଇଚ୍ଛା ହେଉଅଛୁ ଯହିଁ ।
ଜାଣି ପାରିଲିଣି ମୁହିଁ ଅଭିପ୍ରାୟ ତୋର
ତଥାପି ମା କହୁଅଛୁ ଶୁଣ ହୋଇ ସ୍ଥିର ।
ବେଦରେ ନିନ୍ଦିତ ଅଟେ ଯେବଣ କରମ
ତାହା କରିବାକୁ ମୁହିଁ ନୁହଇ ସକ୍ଷମ ।
ଯେଉଁ ସ୍ତ୍ରୀ ସ୍ୱଇଚ୍ଛାରେ ହେବ ଉପସ୍ଥିତ
ତାହାକୁ ତ୍ୟାଗ କରିବା ଅତି ଅନୁଚିତ ।
ଯୋଗୀଜନଙ୍କ କର୍ତ୍ତବ୍ୟ ହେଲେହେଁ ଏ କର୍ମ
ସର୍ବଦା ଯେ ତପୋବନ୍ତ ତା ପକ୍ଷେ ଅଧର୍ମ ।
ବିଶେଷେ କୁଳଟା ସ୍ତ୍ରୀ ନାଶଇ ପୌରୁଷ
ସେ ସକାଶୁ ବିଜ୍ଞଲୋକେ ନ ଯାନ୍ତି ତା ପାଶ ।
ସକଳ ଆପଦ ବୀଜ ଅଟଇଟି ସେହି
ତାଠାରୁ ବଳି ନିଷ୍ଠୁର ଜଗତରେ ନାହିଁ ।
ବିଦ୍ୟୁତ ଝଟକ ଜଳରେଖା ଯେଉଁ ମୈତ୍ରୀ
ଯେଉଁରୂପେ କ୍ଷଣେ ହେଲେ ନ କରଇ ସ୍ଥିତି ।
ସେହିରୂପେ କୁଳଟାର ସଙ୍ଗମ ଅନିତ୍ୟ
ବିପଦର କାରଣ ସେ ଅଟେ ଜାଣ ସତ୍ୟ ।
ବିଶେଷରେ ଅଟୁ ତୁହି ରୂପ ଗୁଣବତୀ
ଉପଯୁକ୍ତ ତୋ ପକ୍ଷରେ ନାଗରିକ ପତି ।
ବୃଦ୍ଧ ତପସ୍ୱୀ ଯେ ଅଟେ ରତିଜ୍ଞାନହୀନ
ସେ କି କରି ପାରିବ ତୋ ମନୋରଥ ପୂର୍ଣ୍ଣ ।
ଯାଅ ଆଗୋ ବତ୍ସେ ମୋର ବୋଲି ଯେଣ ତୁହି
ସୁନ୍ଦର ଯୁବାପୁରୁଷ ଖୋଜ ମନଦେଇ ।
ବୃଦ୍ଧ ତପସ୍ୱୀ ତ ମୁହିଁ ପୁଣି ଜରାତୁର
ଆବର ଯେ ପିତାମହ ତିନି ଭୁବନର ।
ସେ ସକାଶୁ ମୋରଠାରୁ ନିବର୍ତ୍ତାଇ ମତି
ଯୋଗ୍ୟ ପୁରୁଷକୁ ପାଇ ହୁଅ ଭାଗ୍ୟବତୀ ।
କନ୍ଦର୍ପ ବାସବ ଇନ୍ଦ୍ର ଅଶ୍ୱିନୀକୁମାର
ଜୟନ୍ତ ଚନ୍ଦ୍ର ତନୟ ଯେ ନଳକୁବେର ।

ଏମାନଙ୍କୁ ଆଦି ଯେତେକ ଦେବତା ସ୍ୱର୍ଗରେ
ଅଛନ୍ତି ତାହାଙ୍କଠାରୁ ସାଙ୍ଗ ଆନନ୍ଦରେ ।
ତାଙ୍କୁ ଛାଡ଼ି ମୋ ପାଶକୁ ଆସିବ ଯେ ସ୍ତ୍ରୀ
କାମୁକୀ ମଧ୍ୟରେ ସେହୁ ଅଟେ ଅତଭୁଶ୍ରୀ ।
ପୁରୁଷ ବିନା ସ୍ତ୍ରୀଙ୍କୁ କରଇ କାମନା
ସ୍ତ୍ରୀ ଇଚ୍ଛା କଲେ ତାହା ଅଟେ ବିଡ଼ମ୍ବନା ।
ଯେଉଁରୂପେ ଯାଚ ଯାଚ ବିକାଇଲ ରତନ
ଉତ୍କୃଷ୍ଟ ହେଲେହେଁ ତାହା ହୁଏ ମୂଲ୍ୟହୀନ ।
ସେହିପରି ସ୍ୱଇଚ୍ଛାରେ ଆସେ ଯେବେ ସ୍ତ୍ରୀ
ସ୍ନେହ ଶ୍ରଦ୍ଧା ତାହାଠାରେ ନ ରହେ କାହାରି
ନିଜ ସ୍ତ୍ରୀଙ୍କୁ ସମ୍ଭୋଗ କରିବା ଉଚିତ
ପରସ୍ତ୍ରୀୟାଠାରେ ସବୁ ହୁଏ ବିପରୀତ ।
ବେଦ ବହିର୍ଭୂତ କାର୍ଯ୍ୟଟି କରିଥିବ ଯେବେ
ମିତ୍ରମାନେ ମଧ୍ୟ ଶତ୍ରୁ ସ୍ୱଭାବରେ ଉଠିବେ ।
ଆବର ଶ୍ରୀହରି ଅସନ୍ତୋଷ ପରିକାଶି
ଧର୍ମ କର୍ମ ଆଦି ସବୁ ପକାଇବେ ନାଶି ।
କୁଳଟା ହେଉ ବା ପତିବ୍ରତା ହେଉ ସ୍ତ୍ରୀ
ସ୍ୱଇଚ୍ଛାରେ ପୁରୁଷକୁ ବରଣ ଯେ କରି ।
ନିନ୍ଦାର ଭାଜନ ସେହି ହୁଅଇଟି ପୁଣ
ସକଳ ଶାସ୍ତ୍ରେ ଏହା ଅଟଇ ପ୍ରମାଣ ।
ଏହିରୂପେ କହି ବ୍ରହ୍ମା ବିରତ ହୋଇଲେ
ମୋହିନୀକୁ ଆଉ କିଛି ହେଲେ ନ କହିଲେ ।
ତା ଶୁଣି ମୋହିନୀ କ୍ରୋଧ ଜନ୍ମାଇ ଅନ୍ତର
ବ୍ରହ୍ମାଙ୍କ ମୁଖକୁ ଚାହିଁ କହିଲା ଉତ୍ତର ।
ବୋଇଲା ହେ ଧାତା ତୁମ୍ଭେ କହିଲ ଯେ କଥା
ଶୁଣି ମୋ ମନରେ ଜାତ ହେଉଅଛି ବ୍ୟଥା ।
ତୁମ୍ଭ ଦେହରେ ଅଛି ବା କି ମୋହନ ଭୂତ
ଯେଉଁ କ୍ଷଣରେ ମୋ ଆଗେ ହେଲ ଉପଗତ
ସେତେବେଳୁ ଅନ୍ୟ ଜାର ପୁରୁଷଙ୍କଠାରେ
ବିମନା ହୋଇ ମୁଁ ରହିଅଛି ନିଷ୍ଠୁରେ ।
ଛାଡ଼ିବା ପାଇଁ ତୁମ୍ଭଙ୍କୁ ହୋଇଲି ଉଦ୍ୟତ
କାମ ଅନଳରେ ଦଗ୍ଧ ହେଉଛି ଜୀବିତ ।
ଯେତେବେଳେ ଆଗୋ ତୁମ୍ଭେ ହେଲ ପାଶୁଁ ଦୂର
ପ୍ରାଣ ତେଜିବାକୁ ମୁହିଁ କରିଥିଲି ସ୍ଥିର ।
ରମ୍ଭା ତାହା ଦେଖି ମୋତେ ନିବାରଣ କଲା
ତୁମ୍ଭଙ୍କୁ ବଶ କରିବା ମନ୍ତ୍ରଣାକୁ ଦେଲା ।

ଯେ ସକାଶୁ କନ୍ଦର୍ପଙ୍କୁ ସଙ୍ଗତରେ ଘେନି
ଆସିଲି ଏହିସ୍ଥାନକୁ ଆନ୍ଦେ ପଦ୍ମଯୋନି ।
ଏବେ ତୁମ୍ଭ ଶାପ ପାଇ ମଧୁ ମନ୍ମଥନେ
ହତବୀର୍ଯ୍ୟ ହୋଇ କାମ ଫେରିଗଲେ ଘରେ ।
ମୁଁ ମଧ୍ୟ ଭର୍ତ୍ସିତା ହେଲେ ହେଲେ ତୁମ୍ଭ ପାଶ
ତ୍ୟାଗ କରିବାକୁ ବଳୁ ନାହିଁ ମୋ ମାନସ ।
ତୁମ୍ଭର ଆଶ୍ଳେଷ ଥରେ ନ ପାଇଲେ ମୁହିଁ
ଜୀବନ ଧରି କଦାପି ରହି ନ ପାରଇ ।
ଦୟାକରି ମୋର ଜୀବ ରକ୍ଷା କରିବାକୁ
ଯତ୍ନ କର ଅଧିକ କି କହିବି ତୁମ୍ଭଙ୍କୁ ।
କର୍ମଯୋଗରେ ଜଗତ କର୍ତ୍ତା ଅଟ ତୁମ୍ଭେ
କୁଳଟା ବୋଲଉଅଛ କର୍ମଦେଖ ଆଗେ ।
ଏହିପରି ବଡ଼ ସାନ ଲୋକ ଜଗତରେ
ରହିଛନ୍ତି ନିଜ ନିଜ କର୍ମ ଅନୁସାରେ ।
କେଉଁ ସ୍ତ୍ରୀ କର୍ମ ଯୋଗେ ପତିବ୍ରତା ହୋଇ
ଜଗତ ଲୋକ ମୁଖରେ ପ୍ରଶଂସା ଶୁଣଇ ।
କେ ଅବା କୁଳଟା ହୋଇ ନିଜ ଦେହ ବିକି
ଜୀବିକା ନିର୍ବାହ କରେ ନାଗରଙ୍କୁ ଠକି ।
ସ୍ୱର୍ଗପୁର ବେଶ୍ୟା ମୁହିଁ ଅଟଇ ପବିତ୍ର
ଦେବତାଏ ଭୋଗୁଛନ୍ତି ଯେଣୁ ମୋର ଗାତ୍ର ।
ଯାହାଙ୍କ ପରଶମାତ୍ରେ କର୍ମର ଖଣ୍ଡନ
ହୁଅଇ ତାହାଙ୍କଠାରୁ ଅଧିକ କେ ପୁଣ ।
ମନ ସକାଶରୁ ଜାତ ହୁଅଇ ସ୍ୱଭାବ
ସ୍ୱଭାବ ଯୋଗରେ ହୁଏ କର୍ମ ସମ୍ଭବ ।
କର୍ମରୁଟି ଫଳ ଜାତ ହୁଅଇ ଅବଶ୍ୟ
ସେହି ଫଳଦାତା ପ୍ରଭୁ ଗୋଲୋକର ଈଶ ।
କର୍ମ ଅନୁସାରେ ଫଳ ଦେଇଥାନ୍ତି ସେହି
କେଉଁ ବିଷୟ କାହାର ଅପୂର୍ବ ନୁହଇ ।
କାହିଁକି ଯେ ତୁମ୍ଭେ ମୋତେ କରୁଛ ଭର୍ତ୍ସନା
ପାଇବ ଲୋକ ମୁଖରେ ଅପବାଦ ବିନା ।
ଆଉ କଥାଟିଏ ଏବେ କହୁଅଛି ଶୁଣ
ଜଗତକର୍ତ୍ତା ଈଶ୍ୱର ଅଟ ଯେ ଆପଣ ।
ଆପଣଙ୍କ ପାଦପଦ୍ମ ଦରଶନ ପାଇ
ସଂସାର ସାଗରୁ ଲୋକ ନିସ୍ତାର ଲଭଇ ।
ତେଣୁ ମୁହିଁ ପାଇବାକୁ ପତି ସ୍ୱରୂପରେ
ଉପସ୍ଥିତ ହେଲି ଆସି ତୁମ୍ଭ ସମୀପରେ ।

ଏଠାରୁ ବାହୁଡ଼ି ଆଉ କାହାର ପାଶକୁ
ଯିବ ନାହିଁ ବୋଲି କରିଅଛୁ ମୁଁ ମନକୁ ।
ଏମନ୍ତ କହି ମୋହିନୀ ବ୍ରହ୍ମାଙ୍କ ଆଗରେ
ବସିଲା ପୀଡ଼ିତ ହୋଇ ଅନଙ୍ଗର ଶରେ ।
ଆବର ନାନାପ୍ରକାର ଭାବ ଭଙ୍ଗିମାନ
ପ୍ରକାଶ ହେଲା ମୋହିବା ପାଇଁ ତାଙ୍କ ମନ ।
ଏହି ସମୟରେ କାମ ସେ କଥାକୁ ଜାଣି
ମିଳିଲା ସେଠାରେ ଆସି ପୁଷ୍ପଧନୁ ଟାଣି ।
ସମ୍ମୋହନ ସମୁଦ୍‌ବେଗ ଶାଳସ୍ଥିତକର
ଉନ୍ମତ୍ତବୀଜ ଜ୍ୱରଦ ଚିତ୍ତବୃତ୍ତିହର ।
ଏହିରୂପେ ପଞ୍ଚବାଣ ପ୍ରହାରି ବ୍ରହ୍ମାଙ୍କୁ
ପ୍ରେରଣା କଲା ଆପଣା କିଙ୍କରଗଣଙ୍କୁ ।
କୋକିଳ ସୁଗନ୍ଧ ବାତଆଦି ସର୍ବେ ଶୁଣି
ଲଗିଲେ ଯେ ଯାହା କାର୍ଯ୍ୟ କରିବାକୁ ପୁଣି ।
ଜିତେନ୍ଦ୍ରିୟ ହେଲେ ମଧ୍ୟ ଦେବ ପ୍ରଜାପତି
ସେତେବେଳେ ସ୍ଥିର କରି ନ ପାରିଲେ ମତି
କାମାସ୍ତ୍ରେ ମୋହିତ ହୋଇ ମୋହିନୀ ସୁନ୍ଦରୀ
ପ୍ରକାଶିତ କଲା ନାନାଭାବ ପୂର୍ବପରି ।
ବିଧାତା ସେ କଥା ଜାଣି ଯୋଗଧ୍ୟାନ ବଳେ
ଶ୍ରୀହରିଙ୍କୁ ମନେ ମନେ ସ୍ମରଣା କଲେ ।
ଆବର ବୋଇଲେ ରଖ ରଖ ନାରାୟଣ
ଅଧୀର କରୁଛି ମୋତେ ମନମଥ ବାଣ ।
ଦୁଷ୍ପୀତି ସଲିଳମୟ ଅପାର ସଙ୍କଟ
ଉକତ ବିସ୍ତୃତ ନିଜ ବିପଦର ବାଟ ।

କର୍ମନ ଜ୍ଞାନଚକ୍ଷୁର ପ୍ରଚ୍ଛନ୍ନ କାରଣ
ଜନକର୍ମମୟ ଯୋଷିନ୍ନାସ ପରିପୂର୍ଣ୍ଣ ।
ରଞ୍ଜରସ ସ୍ରୋତଯୁକ୍ତ ଗମ୍ଭୀର ଭୀଷଣ
ପ୍ରଥମେ ଅମୃତ ତୁଲ୍ୟ ଶେଷରେ ଦାରୁଣ ।
କାମ କାମନା ମହତ ଦଶଇ ଉପର
ଉତର ଅଟଇ ତାର ମହାକାଳ ଫଳ ।
ଏମନ୍ତ କାମସାଗରେ ପଡ଼ିଅଛି ମୁହିଁ
ଉଦ୍ଧାର କର ଉତ୍ତମ ଜ୍ଞାନନାବ ଦେଇ ।
ସଂସାର କର୍ମରେ ମୋହପର କେତେ ବିଧି
ନିଯୁକ୍ତ କରିଅଛ ତୁମ୍ଭେ କୃପାନିଧି ।
ତଥାପି କାମରେ ସ୍ପୃହା ନୁହଇ କାହାର
ଏବେ ମୁଁ ହେଉଛି ସବୁ ମଧ୍ୟରୁ ବାହାର ।
ହେ ଈଶ୍ୱର ମୋତେ ଏହି ଦୁଃସାଧ କର୍ମରୁ
ଉଦ୍ଧାର କର ମୋହରେ ପଡ଼ିବା ଆଗରୁ ।
ଏମନ୍ତ ହୋଇଣ ବ୍ରହ୍ମା ବିରତ ହୋଇଲେ
ମୋହିନୀକୁ ଆଉ କିଛି ଉତ୍ତର ନ ଦେଲେ ।
ବ୍ରହ୍ମାଙ୍କର କୃତ ଏହି ସ୍ତୋତ୍ରକୁ ଯେ ନର
ପଠନ କରଇ ସଦା ହୋଇ ତତପର ।
ତାହାର ସକଳ କାର୍ଯ୍ୟ ସିଦ୍ଧ ହୁଏ ଭଲେ
ଅପଣରେ ମତ୍ତ ନୁହଇ ସେ କେତେବେଳେ
ଆବର ଶ୍ରୀକୃଷ୍ଣଙ୍କର ଦାସତ୍ୱ ଲଭଇ
ଇହଲୋକରେ ବହୁତ ସମ୍ପଦକୁ ପାଇ ।
ଏହିଠାରେ ଶ୍ରୀକୃଷ୍ଣଙ୍କ ସ୍ତୋତ୍ର ଉପାଖ୍ୟାନ
ସମାପନ କଲେ ଗୀତେ କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମାଙ୍କ ଦ୍ୱାରା ଶ୍ରୀକୃଷ୍ଣ ସ୍ତୋତ୍ର ବର୍ଣ୍ଣନେ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।



## ତ୍ରୟସ୍ତ୍ରିଂଶ ଅଧ୍ୟାୟ

### ବ୍ରହ୍ମାଙ୍କର ଦର୍ପଭଙ୍ଗ କଥନ

କହନ୍ତି ଶ୍ରୀକୃଷ୍ଣ ରାଧା ଦେବୀଙ୍କ ଆଗରେ
ଶୁଣ ଦେବୀ ଯାହା ହେଲା ଏଥୁ ଅନନ୍ତରେ ।
ଶ୍ରୀହରିଙ୍କ ସ୍ତୁତି ପାଠ କଲା ପରେ ବ୍ରହ୍ମା
ସଂଯତ ହୋଇଲେ ସେ ତ ମହତ କରମା ।

କାମରେ ଆସକ୍ତ ହୋଇଥିବାର ମନକୁ
ନିବର୍ତ୍ତାଇ ରଖିଲେ ସେ ପ୍ରକାଶି ଧୈର୍ଯ୍ୟକୁ ।
ସେକାଳେ ମୋହିନୀ ଦେଖି ତାହାଙ୍କର ରୀତ
ବୋଇଲା ମୋଠାରୁ ଶୁଣ ଆହେ ପ୍ରଜାପତ ।

ସ୍ତ୍ରୀଙ୍କ ଇଙ୍ଗିତ ଭଙ୍ଗୀ ଦେଖି ଯେ ପୁରୁଷ
କ୍ଷଣକ ମଧ୍ୟରେ ହୋଇଥାଏ ପ୍ରେମ ବଶ ।
ଆବର ବଳାତ୍କାରରେ ଧରଣି ତାହାକୁ
ସମ୍ଭୋଗ କରଇ ଭୟ ନ କରି କାହାକୁ ।
ଯେ ପୁରୁଷ ଜଗତରେ ଉତ୍ତମ ବୋଲାଏ
ପ୍ରଶଂସା ବଚନ ସବୁଠାରେ ଶୁଣୁଥାଏ ।
ଯେଉଁ ଲୋକ କାମିନୀର ଅଭିପ୍ରାୟ ଜାଣି
ଶୃଙ୍ଗାର କରଇ ପଛେ ତାକୁ ଧରଆଣି ।
ଗଣାଯାଏ ହୁଅଇ ସେ ମଧ୍ୟମ ଶ୍ରେଣୀରେ
ସାମାନ୍ୟ ପ୍ରଶଂସା ତାକୁ ମିଳଇ ଲୋକରେ ।
କାମୁକ କାମିନୀ ଯାକୁ ପୁନଃପୁନ କରି
ପ୍ରେରଣା ଦେଲେହେଁ ରତି ନ କରଇ ଡରି ।
ନପୁଂସକ ବୋଲି ତାକୁ ବୋଲନ୍ତି ସମସ୍ତେ
ଉପହାସର ବିଷୟ ହୁଏ ସେ ଜଗତେ ।
ତପସ୍ୱୀ ଗୃହସ୍ଥାଶ୍ରମୀ ଅଥବା କାମୁକ
ହେଲେହେଁ କାମିନୀ ତ୍ୟାଗକରେ ଯେଉଁଲୋକ
ଇହଲୋକରେ ବହୁତ ନିନ୍ଦା ଗାଳି ଶୁଣି
ପରଲୋକେ ନରକରେ ପଡ଼ଇ ସେ ପୁଣି ।
ଏ ସକାଶୁ ବୋଲୁଅଛି ଆହେ ପିତାମହ
ଲଜ୍ଜା ଛାଡ଼ି ତୁମ୍ଭେ ଏବେ କର ମୋତେ ସ୍ନେହ
କାମଶର ଅନଳରେ ଜଳୁଅଛି ମୁହିଁ
ନିର୍ବାପିତ କର ରତି ଜଳଧାରା ଦେଇ ।
ଏରୂପେ କହି ମୋହିନୀ ବଳାତ୍କାରେ ଗଲା
ବିଧାତାଙ୍କ କର ଧରି ଓଠାଇ ଆଣିଲା ।
ପୁଣି ତାହାଙ୍କର ବସ୍ତ୍ର ଝିଙ୍କି ପୁଣ ପୁଣ
କଲା ନେଇ ଆପଣାର ଅଙ୍ଗ ସମର୍ପଣ ।
ତାଦେଖି ବିଧାତା ମହାଭୟ କରି ମନେ
ଆଶ୍ୱାସନା କଲେ ତାକୁ ବିନୟ ବଚନେ ।
ବୋଇଲେ ମୋହରବାକ୍ୟ ଶୁଣ ଗୋ ମୋହିନୀ
ସ୍ତ୍ରୀଜାତି କଳଙ୍କିତ ହେବେ ତୋହର ଯୋଗେ ।
ଦେଖିଛୁ ତ ଆବାଲ୍ୟରୁ ଅଟେ ମୁଁ ନିଷ୍କାମ
କିରୂପେ ପାଳିବି ଏବେ କାମୁକର ଧର୍ମ ।
ଯେ ସକାଶୁ ବୋଲୁଅଛି ମୋତେ ଛାଡ଼ି ତୁହି
ରସିକ ପୁରୁଷଠାକୁ ଯାଅ ବେଗହୋଇ ।
ବିରକ୍ତ ଯେ ହୋଇଥାଏ ତାକୁ ଯୁବତୀ
କେତେବେଳେ ଲଭିକରି ପାରେ କି ସୁରତି ।

ଲଭିବ ତ ନାହିଁ ମୋର ଠାରୁ ସଙ୍ଗ ସମ୍ଭବ
ତୁଚ୍ଛା କପାଁ କହୁ ଅନ୍ୟ ଦେଖ ଲମ୍ପଟ ଜନ ।
ଏହିରୂପେ କହି ବ୍ରହ୍ମା ସୁମରିଣ ମନେତ
ନୀରବ ହୋଇଲେ ଜାଣ ଆହେ ଗଜଗତେ ।
ମୋହିନୀ ତାହାଙ୍କ କଥା କର୍ଣ୍ଣେ ନ ଶୁଣିଲା
ପୁଣି କାମଶରେ ମତ୍ତ ହୋଇଣ ଝିଙ୍କିଲା ।
ଏହି ସମୟରେ ଅତ୍ରି ପୁଲସ୍ତ୍ୟ ବଶିଷ୍ଠ
ପୁଲହ ଅଙ୍ଗିରା କ୍ରତୁ ଭୃଗୁ ମୁନିଶ୍ରେଷ୍ଠ ।
କପିଳ ଆସୁରି ବୋଢୁ ପ୍ରଚେତା ମରୀଚି
ଶୁକ୍ର ବୃହସ୍ପତି କଣ୍ୱ ପଞ୍ଚଶିଖ ରୁଚି ।
ଉତଥ୍ୟ କରକ ଗଉତମ ସନାତନ
କଶ୍ୟପ ସନକ ଶାତାତପ ତପୋଧନ ।
ସନନ୍ଦ କର୍ଦ୍ଦମ ଶଙ୍ଖ ସନତକୁମାର
ପିପ୍ପଲ ଲୋମଶ ମାର୍କଣ୍ଡେୟ ପରାଶର ।
ଚ୍ୟବନ ଜରତକାରୁ ଦୁର୍ବାସା କୌଶିକ
ଋଷ୍ୟଶୃଙ୍ଗ ଭରଦ୍ୱାଜ ଶଙ୍ଖ ବିଭାଣ୍ଡକ ।
ବାମଦେବ ଆଦି କେତେ ମୁନିଋଷିଗଣ
ଆସିଲେ ମୋହର ଇଚ୍ଛା ଅନୁସାରେ ଜାଣ ।
ତାହାଙ୍କୁ ଦେଖି ମୋହିନୀ ଛାଡ଼ି ବିଧାତାଙ୍କୁ
ଆଡ଼ ହୋଇଗଲା ପୋତି ଲଜ୍ଜାରେ ମୁଖକୁ ।
ମୁନିମାନେ ବ୍ରହ୍ମାଙ୍କର ପାଦେ ନମସ୍କାର
କଲେ ଯେ ଯାହା ମସ୍ତକେ ନିବେଶିଣ କର ।
ଆଶୀର୍ବାଦ କରି ବ୍ରହ୍ମା ସେମାନଙ୍କୁ ପାଶେ
ବସାଇ କୁଶଳ ବାର୍ତ୍ତା ପୁଚ୍ଛିଲେ ହରଷେ ।
ମୁନିଏ ବୋଇଲେ ଦେବ ଏକ ଅଦ୍ଭୁତ
ଆପଣଙ୍କ ପାଶେ କାହିଁ ଅଛି ଏ ଯୋଷିତ ।
ବିଧାତା ବୋଇଲେ ତାହା କହୁଅଛି ଶୁଣ
ସ୍ତ୍ରୀ ଜାତିଠାରେ ରହିଅଛି ଯେ ନିର୍ଗୁଣ ।
ପ୍ରତ୍ୟକ୍ଷଭାବରେ ଦେଖା ପାଇଅଛ ଏଥେ
ଶୁଣିଲେ ବିସ୍ମୟ ଜାତ ହେବ ତୁମ୍ଭ ଚିତ୍ତେ ।
ଏ କାମିନୀ ଆସି ମୋର ଆଗେ ନୃତ୍ୟକଲା
ତାହା ଦେଖିକରି ମୋତେ କୌତୁକ ଲାଗିଲା
ଉପଯୁକ୍ତ ପୁରସ୍କାର ଦେଇ ମୁଁ ଏହାକୁ
ବୋଇଲି ଆନନ୍ଦେ ଯାଅ ନିଜ ଭବନକୁ ।
ସେ କଥା ନ ଶୁଣି ଏବେ ବୋଲୁଅଛି ଯେବେ
ସମ୍ଭୋଗ ନ କରି ଛାଡ଼ି ନ ଦିବି ମୁଁ ତେବେ ।

ଏରୂପେ କହିଣ ବ୍ରହ୍ମା ତଳେ ବସିଲେ
ତା ଦେଖି ମୁନିଏ ମଧ୍ୟ ଉପହାସ କଲେ ।
ଲଜ୍ଜିତ ହୋଇଣ ତହିଁ ମୋହିନୀ ତାଠାରେ
ନେତ୍ର ନସୁନକୁ ରଙ୍ଗ କଲ କୋପଭରେ ।
ବୋଇଲା ହେ ଧାତା ତୁମ୍ଭେ ଅଟ ସୃଷ୍ଟି କର୍ତ୍ତା
ନ ଜାଣି ମୋ କଷ୍ଟ ମୋତେ କଲ ଯା ଅବସ୍ଥା
ମୁନିଋଷିଙ୍କୁ ପାଶରେ ବସାଇ ଆପଣେ
ଉପହାସ କରୁଅଛ କପାଁ ଅକାରଣେ ।
ସ୍ୱଭାବରେ ଅଟଇ ମୁଁ ତୁମ୍ଭ ପାଦ ଦାସୀ
ଦଇବେ ଶରଣାଗତ ହୋଇଅଛି ଆସି ।
ତଥାପି ମୋଠାରେ ଟିକେ ନ କଲ ଦୟା
କଷଣ ଦେଉଅଛ ମୁନି ପରକାଶି ମାୟା ।
ଏ ସକାଶୁ ଶାପ ଦେଉଅଛି ମୁଁ କ୍ରୋଧରେ
ଅପୂଜ୍ୟ ହୋଇବ ତୁମ୍ଭେ ଜଗତ ମଧ୍ୟରେ ।
ଅଳପକାଳ ମଧ୍ୟରେ ତୁମ୍ଭଦର୍ପ କ୍ଷୟ
କରିବେ ଶ୍ରୀହରି ଏହା ଅଟଇ ନିଶ୍ଚୟ ।
ତୁମ୍ଭର କବଚ ସ୍ତୋତ୍ର ପଢ଼ିବ ଯେ ଲୋକ
ତାହାର କାର୍ଯ୍ୟରେ ବାଧା ପଡ଼ିବ ଅନେକ ।
ଅନ୍ୟ ଦେବତାଙ୍କ ପୂଜା ହେବା ସମୟରେ
ତୁମ୍ଭର ନାମ ଗ୍ରହଣ ନ କରିବେ ନରେ ।
ଏରୂପେ ଶାପ ଦେଇଣ ସେ ମୋହିନୀ ବାଳା
ବ୍ରହ୍ମଲୋକ ଛାଡ଼ି କାମ ଭବନକୁ ଗଲା ।
କନ୍ଦର୍ପ ସଙ୍ଗରେ କ୍ରୀଡ଼ା କରି କାମଜ୍ୱର
ଛଡ଼ାଇଲା ସେହିଠାରେ ରମଣୀଙ୍କ ବର ।
ସେ ଅନ୍ତେ ଚେତନା ପାଇ ଶାପକୁ ସୁମରି
ବୋଇଲା କି ଦୁଷ୍ଟ କାର୍ଯ୍ୟ କଲି ମୁଁ ପାମରି
ଜଗତ କରତା ପ୍ରଜାପତିଙ୍କୁ କ୍ରୋଧରେ
ଶାପଦେଲି ଯାହା ମତ୍ତ ହୋଇ କାମଶରେ ।
ଏମନ୍ତ ବିଚାରି ମହା ଦୁଃଖିତା ସେ ହୋଇ
ରହିଲା ନିଜର ଦୋଷ କଥା ମନେ ଧ୍ୟାଇ ।
ଏଥୁଅନ୍ତେ ଋଷିଗଣ ଅବଳାର ଶାପ
ଶୁଣି ହୃଦୟରେ ଜାତକରି ମହାତାପ ।
ବ୍ରହ୍ମାଙ୍କୁ ବୋଇଲେ ଦେବ ଶାପ ପ୍ରତିକାର
ହେବ ଯେଉଁରୂପେ ତାହା କରନ୍ତୁ ବିଚାର ।
ବୈକୁଣ୍ଠ ପୁରକୁ ଯାଇ ବିଷ୍ଣୁଙ୍କର ପାଶେ
ନିବେଦନ କରି ସବୁ କହ ସବିଶେଷେ ।
ଏମନ୍ତ କହି ମୁନିଏ ଯେ ଯା ସ୍ଥାନେ ଗଲେ
ବୈକୁଣ୍ଠ ପୁରେ ବିଧାତା ଯାଇଣ ମିଳିଲେ ।
ମୋହିନୀ ଅନ୍ୟ ମୁରଣ୍ଡ ବିଷ୍ଣୁଙ୍କ ଆଗରେ
କହିଲେ ସବୁ ରହସ୍ୟ କଥା ନିଃଶେଷରେ ।
ଶୁଣି ନାରାୟଣ ମନ୍ଦ ହାସ ପରକାଶି
ବ୍ରହ୍ମାଙ୍କୁ କହିଲେ ପ୍ରିୟ ବଚନ ଆଶ୍ୱାସି ।
ବୋଇଲେ ତୁମ୍ଭେ ତ ଅଟ ଜ୍ଞାନୀଙ୍କର ଗୁରୁ
ବିଶ୍ୱାସ ଘାତକ କାର୍ଯ୍ୟ କଲ କି ହେତୁରୁ ।
କାମିନୀ ଜାତି ଅଟଇ ପ୍ରକୃତିଙ୍କ ଅଂଶ
ତାହାଙ୍କୁ ଅବମାନନା କରିବାର ଦୋଷ ।
ଜାଣିବା ଲୋକ ସ୍ତ୍ରୀଙ୍କୁ ପରାଭବ ଦେଲେ
ପ୍ରକୃତି ଦେବୀ କୁପିତ ହୁଅନ୍ତି ଭଲେ ।
ଭାରତ ବରଷ ସିନା ଅଟେ କର୍ମକ୍ଷେତ୍ର
ତହିଁରେ ରହିବା ଲୋକ କାର୍ଯ୍ୟ କରେ ମାତ୍ର
ବ୍ରହ୍ମଲୋକ ଅଟଇ ତ କ୍ରୀଡ଼ାର ଭୁବନ
ସେଠାରେ କପାଇଁ କର ଇନ୍ଦ୍ରିୟ ଦମନ ।
ଦଇବେ କାମିନୀ ନିଜେ ହେଲେ ଉପସ୍ଥିତ
ନ କରିବ କେବେ ତାକୁ ଭୋଗରୁ ବଞ୍ଚିତ ।
କଲେ ତାହାର ଶାପରେ ବିପଦ ପଡ଼ଇ
ଏଥିରେ କିଞ୍ଚିତ ମାତ୍ର ସଂଶୟ ଯେ ନାହିଁ ।
ଯେଉଁଲୋକ ଲୋଭରେ ବା କାମ ଅଭିଳାଷେ
ନିଜସ୍ତ୍ରୀ ଛାଡ଼ି ପରସ୍ତ୍ରୀଠାକୁ ଆସେ ।
ଶତଜନ୍ମ ଯାଏ ସେହୁ ନରକରେ ପଡ଼ି
କଷ୍ଟ ଭୋଗକରେ ଘୋର ସନ୍ତାପରେ ସଡ଼ି ।
ଯେଉଁସ୍ତ୍ରୀ ନିଜପତି ଛାଡ଼ି ପରସଙ୍ଗେ
କ୍ରୀଡ଼ା କରୁଥାଏ ନିତି ମାତି ନାନାରଙ୍ଗେ ।
ବେଶ୍ୟା ହୋଇଥିଲେ ତାକୁ ଦୋଷ ନ ଲାଗଇ
କୁଳ ସ୍ତ୍ରୀ ହେଲେ ସେହୁ ନରକେ ପଡ଼ଇ ।
ସ୍ୱର୍ଗପୁର ବେଶ୍ୟାମାନେ ଅଟନ୍ତି କାମୁକୀ
ତାଙ୍କୁ ଯେ ନିରାଶ କରେ ହୁଏ ସେ ନାରକୀ ।
ଏବେ କ୍ଷଣମାତ୍ରେ ତୁମ୍ଭେ ଥାଅ ଏଠାରେ
ପ୍ରତିକାର ଉପାୟ ମୁଁ କରୁଛି ସତ୍ୱରେ ।
ବ୍ରହ୍ମାଙ୍କ ଆଗେ ଏରୂପେ କହି ନାରାୟଣ
ନିବୃତ୍ତ ହୋଇଲେ ସେହି ସମୟରେ ଜାଣ ।
ସେତେବେଳେ ଆସି ଏକ ଦ୍ୱାରପାଳ ତହିଁ
ଜଣାଇଲା ଶ୍ରୀହରିଙ୍କୁ ନମସ୍କାର ହୋଇ ।

ବୋଇଲା ହେ ଦେବ ଅନ୍ୟ ବ୍ରହ୍ମାଣ୍ଡର ନାଥ
ଦଶମୁଖ ବ୍ରହ୍ମା ହୋଇଛନ୍ତି ଦ୍ୱାରଗତ ।
ଆପଣଙ୍କୁ ଦେଖିବାକୁ କରିଛନ୍ତି ମନ
ଆଜ୍ଞା ହେଲେ ଆଣି କରାଇବି ଦରଶନ ।
ତାହା ଶୁଣି ନାରାୟଣ ବୋଇଲେ ହେ ହାରୀ
ଅଣାଅ ତାହାଙ୍କୁ ଏବେ ବିଳମ୍ବ ନ କରି ।
ଆଜ୍ଞାପାଇ ଦ୍ୱାରପାଳ ବେଗହୋଇ ଗଲା
ଦଶମୁଖ ବିଧାତାଙ୍କୁ ନେଇ ଭେଟାଇଲା ।
ବିଷ୍ଣୁଙ୍କୁ ଦେଖି ଯେ ଦଶମୁଖ ପ୍ରଜାପତି
କରଯୋଡ଼ି କରେ ଭକ୍ତିଭରେ ବହୁସ୍ତୁତି ।
ଚତୁର୍ମୁଖ ବ୍ରହ୍ମାଙ୍କର ଆଗେ ଧାଇକରି
ବସିଲେ ଅନୁଜ୍ଞା ଯହୁଁ ଦେଲେ ନରହରି ।
ଯେ ଅନ୍ତେ ଦ୍ୱାରପାଳକୁ ନାରାୟଣ ପୁଣି
ବୋଇଲେ ଅଣାଅ ଦ୍ୱାରେ ଅଛି ଯେତେକେହି
ତାହା ଶୁଣି ଦ୍ୱାରପାଳ ସେହିକ୍ଷଣି ଗଲା
ଶତମୁଖ ବିଧାତାଙ୍କୁ ସେଠାକୁ ଆଣିଲା ।
ସେ ବିଧାତା କରଯୋଡ଼ି ନାନା ପ୍ରକାରେ
ସ୍ତୁତିକରି ଶ୍ରୀହରିଙ୍କୁ ପ୍ରଣମି ସତ୍ୱରେ ।
ଦଶମୁଖ ବ୍ରହ୍ମାଙ୍କର ଆଗରେ ବସିଲେ
ପୁଣି ଆଉ ଏକବ୍ରହ୍ମା ଆସିଣ ମିଳିଲେ ।
ତାହାଙ୍କର ହୋଇଅଛି ସହସ୍ରେ ବଦନ
ସମସ୍ତଙ୍କଠାରୁ ରୂପ ଦିଶୁଅଛି ଭିନ୍ନ ।
ବହୁତ ସ୍ତୁତି କରଣ ଯେ ବିଧାତା ଶ୍ରେଷ୍ଠ
ଶତମୁଖଙ୍କ ଆଗରେ ହେଲେ ଉପବିଷ୍ଟ ।
ତାଙ୍କୁ ଦେଖି ଜନାର୍ଦ୍ଦନ ତିନି ଭୁବନର
ବାରତା ପୁଚ୍ଛିଲେ ଜଣ ଜଣଙ୍କୁ ସତ୍ୱର ।
ଆପଣାଠାରୁ ଅଧିକ ଧାତାଙ୍କୁ ଦେଖିଣ
ଚତୁର୍ମୁଖ ବିଧାତାଙ୍କ ଗର୍ବ ହେଲା ଚୂର୍ଣ୍ଣ ।
ନିଜକୁ ବିଷ୍ଣୁ ସମାନ ମଣୁଥିଲେ ସେହି
ବସିଲେ ଏବେ ଲଜ୍ଜାରେ ମସ୍ତକ ନୁଆଇଁ ।
ବିଚାରିଲେ ଅଟଇ ମୁଁ ସବୁଠାରୁ ଊଣା
ବୃଥା ଗର୍ବ କରୁଥିଲି ହୋଇ ବୁଦ୍ଧିବଣା ।
ଅନ୍ୟ ବିଧାତାଏ ନମି ବିଷ୍ଣୁଙ୍କ ଚରଣେ
ବିଦାୟ ହୋଇଣ ଚାଲିଗଲେ ଯେଝା ସ୍ଥାନେ ।
ଏଥୁଅନ୍ତେ ଚତୁର୍ମୁଖ ବ୍ରହ୍ମାଙ୍କୁ ଅନାଇ
ପଚାରିଲେ ନାରାୟଣ ଲକ୍ଷ୍ମୀଦେବୀ ଧାଇଁ ।
ବୋଇଲେ ଦେଖିଲ ଯାଙ୍କୁ ଏହିଠାରେ ତୁମ୍ଭେ
କିଏ ଅଟନ୍ତି ଯେମାନେ କହ ପୁଚ୍ଛୁ ଆମ୍ଭେ ।
ବିଧାତା ବୋଇଲେ ଦେବ ନ ଜାଣଇ ମୁହିଁ
ତୁମ୍ଭ ମାୟାରେ ଜଗତ ଅଛି ପୂର୍ଣ୍ଣ ହୋଇ ।
ଏମନ୍ତ କହି ନୀରବ ହୋଇଣ ବସିଲେ
ଶ୍ରୀହରି ତାହାଙ୍କୁ ମୁକ୍ତି ଉପାୟ ଚିନ୍ତିଲେ ।
ବ୍ରହ୍ମାଙ୍କର ଦର୍ପଭଙ୍ଗ କଥନ ଏଠାରେ
ସମାପତ ହେଲା କେଶବ ଭଣଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମାଙ୍କର ଦର୍ପଭଙ୍ଗ କଥନେ
ନାମ ତ୍ରୟସ୍ତ୍ରିଂଶୋଧ୍ୟାୟଃ



## ଚତୁର୍ତ୍ରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର ରାଧିକା ଆଗରେ ଜାହ୍ନବୀ ଜନ୍ମ ଚରିତ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଇଲେ ଦେବୀ ଶୁଣ ମନ ଦେଇ
ବସିଥିଲେ ବଇକୁଣ୍ଠେ ବ୍ରହ୍ମା ବିଷ୍ଣୁ ଦୁଇ ।
ଏହି ସମୟରେ ଶିବ ତାହାଙ୍କ ପାଶରେ
ଉପସ୍ଥିତ ହେଲେ ଆସି ହରଷିତ ମନରେ ।
ବିଭୂତି ଭୂଷିତ ନାଗ ଯଜ୍ଞ ଉପବୀତ
ତ୍ରିଶୂଳ ପଟ୍ଟିଶ ଆଦି ବହିଛନ୍ତି ହସ୍ତ ।
ବିଷ୍ଣୁଙ୍କୁ ପ୍ରଣାମ କରି ଆସନ ଉପରେ
ବସିଲେ ଯେକାଳେ ଅତି ହରଷ ମନରେ ।
ସେ ଅନ୍ତରେ ଇନ୍ଦ୍ର ଆଦି ସର୍ବ ସୁରଗଣ
ମିଳିଲେ ଆସି ତାହାଙ୍କ ପାଶରେ ବହନ ।
ମୁନି ଋଷିମାନେ ନାନାଦିଗରୁ ଆସିଲେ
ବିଷ୍ଣୁଙ୍କୁ ଦର୍ଶନ କରି ଆସନେ ବସିଲେ ।

ସମସ୍ତ ବିଷ୍ଣୁଙ୍କୁ ଦେଖି ହରଷିତ ହୋଇ
କଥାବାର୍ତ୍ତା ହେଲେ ନାନାବିଷୟ ବୁଝାଇ ।
ଏହି ସମୟରେ ଶିବ ଉଠି ଭକ୍ତିଭରେ
ନୃତ୍ୟ କଲେ ଭକ୍ତ ହୋଇ ବିଷ୍ଣୁଙ୍କ ଆଗରେ
ସୁରପନ୍ଥ ବେଣୁ ତାଳ ଲୟ ଅନୁସାରେ
ଆଉ ବ୍ରହ୍ମଙ୍କର ରାସକ୍ରୀଡ଼ା ଗାନକରି ।
ସବୁରି ମନକୁ ମୁଗ୍ଧ କଲେ ସେ କାଳରେ
ପଞ୍ଚକଣ୍ଠ ସୁମଧୁର ମନୋହର ସ୍ୱରେ ।
ତାହାଙ୍କର ଗାନସମ ଶୁଣି ସମସ୍ତେ
ବୁଝିଲେ ସ୍ପଷ୍ଟରୂପରେ ପଦାର୍ଥ ଯେସନ୍ତ ।
ସେତେବେଳେ ପୁଲକରେ ଶିବଙ୍କ ଶରୀର
ପୂର୍ଣ୍ଣ ହୋଇ ନୟନରୁ ବାହାରିଲା ନୀର ।
ମୁନି ଋଷିମାନେ ମଧ୍ୟ ତାହା ଶୁଣିକରି
ମୂର୍ଚ୍ଛିତ ହୋଇଲେ ଅଙ୍ଗୁ ଚେତନାକୁ ହାରି ।
ବ୍ରହ୍ମା ବିଷ୍ଣୁ ଆଦି କରି ସର୍ବ ସୁରଗଣ
ଶିବଙ୍କ ଗାୟନ ଶୁଣି ହେଲେ ଅଚେତନ ।
ସବୁରି ନେତ୍ରରୁ ପ୍ରେମଅଶ୍ରୁ ଜାତ ହୋଇ
ରହିଲା ବିଷ୍ଣୁପୁରୀକୁ ଜଳ ବେଢ଼ିଆଇ ।
ତା ଜାଣି ମୁଁ ସ୍ୱୟମନେ ଗଙ୍ଗାଙ୍କ ମୂରତି
ନିର୍ମାଣ କଲି ସେ କାଳେ ହରଷରେ ଅତି ।
ଯେଉଁରୂପେ ରୂପଭକ୍ତ ଗଙ୍ଗା ଦେବୀଙ୍କର
ନିରୂପିତ କଲି ତହିଁ ତେମନ୍ତ ପ୍ରକାର ।
ବଇକୁଣ୍ଠ ସ୍ୱର୍ଗପାଶେ ସ୍ଥାନ ତାଙ୍କୁ ଦେଇ
ରଖାଇଲି ସୁରନଦୀ ନାମରେଟି ମୁହିଁ ।
ଦେବଙ୍କ ଅଙ୍ଗରୁ ସେହି ନଦୀ ଅଟେ ଜାତ
ତେଣୁ ସୁରନଦୀ ବୋଲି ନାମ ହେଲା ଖ୍ୟାତ
ତହିଁରେ ସ୍ନାନ କଲେ ସର୍ବପାପ କ୍ଷୟ
ଆବର ହୁଅଇ ପୁଣ୍ୟ ସର୍ବଦା ଉଦୟ ।
କୋଟି ଜନମରୁ ଯେତେ ପାପ ରହିଥାଏ
ସେ ଜଳ ପରଶ ମାତ୍ରେ ଭସ୍ମ ହୋଇଯାଏ ।
ସବୁ ତୀର୍ଥରେ ପୁଷ୍କର ତୀର୍ଥ ଅଟେ ସାର
ତଥାପି ସମାନ ନୁହେ ଜଳକୁ ଏହାର ।
ଭଗୀରଥ ଆଣିବାରୁ ନାମ ଭଗୀରଥୀ
ପୃଥ୍ୱୀ ଖନନ ଯୋଗୁଁ ଗଙ୍ଗା ବୋଲି ଖ୍ୟାତି ।
ପୂର୍ବକାଳେ ଜହ୍ନୁ ତାଙ୍କୁ କ୍ରୋଧେ ପାନକଲେ
ଜାନୁବାଟେ ତ୍ୟାଗ କଲେ ଜାଣ ଗୋ ସୁନ୍ଦରୀ
ସେ କାରଣ ଜାହ୍ନବୀ ନାମ ପାଇଛନ୍ତି ସେହି
ଶୁଣ କହୁଅଛି ଅନ୍ୟ ନାମକୁ ବୁଝାଇ ।
ଶିଷ୍ଣୁଙ୍କୁ ଜାତ କରନ୍ତେ ସ୍ୱପ୍ରସୁ ହୋଇଲେ
ତିନଧାର ଯୋଗୁ ତ୍ରିପଥଗା ବୋଲାଇଲେ ।
ପ୍ରଧାନ ଯେ ଧାର ସେହୁ ବହନ୍ତି ସ୍ୱର୍ଗରେ
ମନ୍ଦାକିନୀ ବୋଲି ତାଙ୍କୁ ବୋଲନ୍ତି ଲୋକରେ
ଯୋଜନ ବିସ୍ତୃତା ସେହୁ କ୍ଷୀରତୁଲ୍ୟ ଜଳା
ଉତ୍ତୁଙ୍ଗ ତରଙ୍ଗବତୀ ବାତ ଅନର୍ଗଳା ।
ପାପୀଜନଙ୍କର ପାପ ଧ୍ୱଂସନ ଅନଳ
ଅଟଇ ଯେ ତାହାଙ୍କର ସ୍ରୋତମୟ ଜଳ ।
ସଗର ବଂଶଜ ନୃପଗଣଙ୍କର ମୋକ୍ଷ
କରିବା ସକାଶେ ହୋଇଥିଲେ ସେ ପ୍ରତ୍ୟକ୍ଷ ।
ମୃତ୍ୟୁ ସମୟରେ ଗଙ୍ଗାଜଳକୁ ଯେ ଆଣି
ଅଙ୍ଗେ ପ୍ରକ୍ଷାଳନ କରି ମୁଖେ ଥିବ ଘେନି ।
ଦେହଅନ୍ତେ ସ୍ୱର୍ଗପୁରେ ବସିବ ସେ ନର
ସନ୍ଦେହ ଏଥିରେ କିଛିନାହିଁ ମନେ କର ।
ଅନ୍ତକେ ମରଣ ଯେବେ ହୁଏ ଗଙ୍ଗାତୀରେ
ଆବାସ ପ୍ରାପତ ହୁଏ ବୈକୁଣ୍ଠ ନଗରେ ।
ମୃତ ଶରୀରକୁ ଯେବେ ସେ ନଦୀରେ ନେଇ
ସକାଇବ ମୁଖେ ଅଗ୍ନି ଘୃତ କାଷ୍ଠ ଦେଇ ।
ତେବେ ସେ ଲୋକର ହୁଏ ଶିବଲୋକେ ବାସ
ବେଦ ଶାସ୍ତ୍ରରେ ଏ କଥା ହୋଇଛି ପ୍ରକାଶ ।
ସେ ଅନ୍ତେ ଭାରତବର୍ଷେ ପୁଣ୍ୟବନ୍ତ ଘରେ
ଜନ୍ମ ପାଇ ଭକ୍ତି ରଖେ ବୈଷ୍ଣବଙ୍କଠାରେ ।
ଦେହଅନ୍ତେ ଗୋଲୋକରେ ପାରିଷଦ ହୋଇ
ସର୍ବଦା ମୋ ସନ୍ନିଧିରେ ଆନନ୍ଦ ରହଇ ।
ବ୍ରାହ୍ମଣର ମୃତଦେହ ଶୂଦ୍ର ସ୍ପର୍ଶ କଲେ
ନରକ ଗତି ତାହାର ହୋଇଥାଏ ଭଲେ ।
ସେତେବେଳେ ଗଙ୍ଗାଜଳ ସିଞ୍ଚିଲେ ଉପରେ
ସେ ପାପ ଖଣ୍ଡନ ହୋଇଯାଏ ନିଶ୍ଚୟରେ ।
ପୁଣ୍ୟ ଦିବସରେ ଯେହୁ ସ୍ନାନ କରେ ତହିଁ
ଦେହଅନ୍ତେ ବଇକୁଣ୍ଠପୁରେ ସେ ବସଇ ।
ଅନ୍ୟ ସଙ୍ଗରେ ଯାଇ ସେ ଗଙ୍ଗାସ୍ନାନ କରେ
ମୁକ୍ତହୁଏ ଯେବେ ଆଉ ପାପ ନ ଆଚରେ ।
କଳିଯୁଗର ପ୍ରଭାବ ନ ବାଧଇ ତାକୁ
ମୃତ୍ୟୁପରେ ଯାଏ ସେହୁ ଆମ୍ଭର ପୁରକୁ ।

ଅତଳକୁ ଛୁଇଁଅଛି ଯାହାଙ୍କର ଧାରା
ଭୋଗବତୀ ବୋଲି ସେ ଆଗୋ ନାଗଶ୍ୱରୀ ।
ସେହି ନଦୀ ବୈକୁଣ୍ଠକୁ ବେଢ଼ିଛି ଘେରାଇ
ଅନେକ ରତନ କୂଳେ ରହିଛନ୍ତି ତହିଁ ।
ତାର ତୀରେ ପ୍ରସନ୍ନବଦନ ନାଗକନ୍ୟାମାନେ
କ୍ରୀଡ଼ା କରୁଥାନ୍ତି ବସି ଆନନ୍ଦିତ ମନେ ।
ପ୍ରଳୟ କାଳରେ ମଧ୍ୟ ତାର ନାଶ ନାହିଁ
ମନ ଦେଇ କରି ଶୁଣ ଆଗୋ ପ୍ରାଣସଖୀ ।
ଏରୂପେ ଗଙ୍ଗାଦେବୀଙ୍କ ଜନ୍ମ ଉପାଖ୍ୟାନ
ବ୍ରହ୍ମାଙ୍କର ଶାପ ପ୍ରତିକାର ଏବେ ଶୁଣ ।
କହଇ କେଶବ ମୋହନ ଅହେ ନରହରି
ତବ ପାଦପଦ୍ମେ ଆଶ୍ରା ଦିଅ ଦୟାକରି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକା ଆଗରେ ଜାହ୍ନବୀ ଜନ୍ମ ଚରିତ ବର୍ଣ୍ଣନେ ନାମ ଚତୁଃତ୍ରିଂଶୋଽଧ୍ୟାୟଃ ।



## ପଞ୍ଚତ୍ରିଂଶ ଅଧ୍ୟାୟ

## ବିଧାତାଙ୍କର ମୋହିନୀ ଶାପମୁକ୍ତି ବର୍ଣ୍ଣନ

ଗଙ୍ଗାଙ୍କୁ ପାଶରେ ଦେଖି ବୈକୁଣ୍ଠ ଈଶ୍ୱର
ବ୍ରହ୍ମାଙ୍କୁ ବୋଇଲେ ଶୁଣ ଆହେ ବେଦବର ।
ଏ ଗଙ୍ଗାଜଳରେ ତୁମ୍ଭେ ସ୍ନାନ କର ଯାଇ
ଶାପରୁ ମୁକତି ନିଶ୍ଚେ ହେବ କହୁଥାଇ ।
ପ୍ରକୃତିରେ ତୁମ୍ଭେ ଅଟ ପରମ ପବିତ୍ର
ତୁମ୍ଭ ସ୍ମରଣରେ ପୂତ ହୁଅଇ ଜଗତ ।
ତଥାପି ପ୍ରକୃତିଠାରେ ଅବହେଳା କରି
ଶାପଯୋଗ୍ୟ ହେଲ ସାଧାରଣ ଲୋକପରି ।
ଅହଂକାର ଅଟେ ସର୍ବପାପର କାରଣ
ତାହାଯୋଗେ ହୁଏ ଲୋକ ବିପଦ ଭାଜନ ।
ଗଙ୍ଗା ସ୍ନାନକରି ତୁମ୍ଭେ ଗୋଲୋକକୁ ଯାଅ
ସେଠାରେ ଈଶ୍ୱରୀଙ୍କର ସଙ୍ଗମକୁ ପାଅ ।
କଳ୍ପାନ୍ତ କାଳ ପର୍ଯ୍ୟନ୍ତ ତପ ଆଚରିଲ
ବେଶ୍ୟାଶାପେ ଯାହା ଏବେ ଅପୂଜ୍ୟ ହୋଇଲ
ଏଥିପାଇଁ ପ୍ରତିକାର ଗଙ୍ଗାଜଳ ସ୍ନାନ
ଯାଅ ଏବେ ବିଳମ୍ବ ନ କରିଣ ମନ ।
ତାହା ଶୁଣି ପ୍ରଜାପତି ଜାହ୍ନବୀ ଜଳରେ
ସ୍ନାନ କରି ଗଲେ ବେଗେ ଗୋଲୋକ ନଗରେ
ଦେବଋଷିମାନେ ନିଜ ନିଜ ଘରେ ଯାଇ
ପ୍ରବେଶ ହେଲେ ବିଷ୍ଣୁଙ୍କ ଅନୁମତି ପାଇ ।
ଗୋଲୋକରେ ଉପସ୍ଥିତ ହୋଇ ପ୍ରଜାପତି
ଦେଖିଲେ ସେଠାରେ ଛନ୍ତି ଦେବୀ ସରସ୍ୱତୀ ।
ତାଙ୍କୁ ଘେନି କାମଶାସ୍ତ୍ର ବିଧି ଅନୁସାରେ
କ୍ରୀଡ଼ା କଲେ ବୁଲି ନାନା ନିର୍ଜନ ସ୍ଥାନରେ ।
ବହୁତ କାଳ ଏରୂପେ ହୁଅନ୍ତେ ଅତୀତ
ସ୍ୱଇଚ୍ଛାରେ ହେଲେ ରତିରସରୁ ବିରତ ।
ସେଅନ୍ତେ ବ୍ରହ୍ମଲୋକରେ ପରବେଶ ହୋଇ
ଦେଖିଲେ ଈଶ୍ୱରୀ ପୁଣି ଆସିଛନ୍ତି ତହିଁ ।
ଅତ୍ୟନ୍ତ ସୁନ୍ଦର ଅଟେ ତାହାଙ୍କ ଶରୀର
ମଣ୍ଡି ଅଛନ୍ତି ତହିଁରେ ନାନା ଅଳଙ୍କାର ।
କାଛିଛନ୍ତି ବହ୍ନି ଶୁଦ୍ଧ ବସ୍ତ୍ର ପରିଧାନ
ଲମ୍ବାଇ ଅଛନ୍ତି ଗଳେ ପୁଷ୍ପମାଳାମାନ ।
ହସ୍ତରେ ବୀଣା ପୁସ୍ତକ ଲେଖନୀ ବିରାଜେ
ମସ୍ତକରେ ଦିବ୍ୟଗୁଚ୍ଛ ପୁଷ୍ପମାଳା ସାଜେ ।
ଏମନ୍ତ ରୂପରେ ଦେବୀ ପ୍ରବେଶ ହୁଅନ୍ତେ
ତାଙ୍କୁ ଦେଖି ଦାସଗଣ ଅର୍ଘ୍ୟ ଘେନି ହସ୍ତେ ।
ବ୍ରହ୍ମାଙ୍କ ସହିତ ବନ୍ଦାପନା କରି ନେଲେ
ଅନ୍ତଃପୁରେ ନେଇ ଦେବୀଙ୍କୁ ବିଜେ କରାଇଲେ ।
ସେ ପତି ପତ୍ନୀ ଆନନ୍ଦେ ରଜନୀ ଦିବସ
ଶେଷ କଲେ କାମଭୋଗେ ବଳାଇ ମାନସ ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
ରାଧିକା ଦେବୀ ତାହାଙ୍କୁ ପଚାରିଲେ ପୁଣି ।
ବୋଇଲେ ହେ ଦେବ ବ୍ରହ୍ମା ଅଟନ୍ତି ତ ଜ୍ଞାନୀ
ମୋହିନୀକୁ ପରିତ୍ୟାଗ କଲେ ସେ କି ଘେନି ।

ଉପସ୍ଥିତ କାମିନୀଙ୍କୁ ନିବାରଣ ଯେ କରେ
ଲିପ୍ତ ହୁଅଇ ସେ ଜୀବହତ୍ୟା ପାତକରେ ।
ଏହି କଥା ଜାଣି ଜାଣି କିପାଇଁ ବିଧାତା
କଲେ ଶାସ୍ତ୍ରରେ ନିଷେଧ ହୋଇଥିବା କଥା ।
ତାହା ଶୁଣିଣ ଶ୍ରୀକୃଷ୍ଣ ବୋଇଲେ ଗୋ ସଖି
କହୁଅଛି ଶୁଣ ଏବେ ଧାତାଙ୍କର ରୀତ ।
ଯେବେ ସୃଷ୍ଟି ସରଜନ କରିବାକୁ ମୁହିଁ
ପଠାଇଲି ତାଙ୍କୁ ମୋର ସମ୍ମତି ଜଣାଇ ।
ତହୁଁ ସେ ବିଧାତୃ ଯେବେ ମୋ ପାଶକୁ ଗଲେ
ମନରୁ ସନକ ଆଦି ପୁତ୍ର ଜାତ କଲେ ।
ସେ ପୁତ୍ରମାନେ ତେଜରେ ଅଟନ୍ତି ଅଧିକ
ସମସ୍ତ ପଞ୍ଚବରଷ ବୟସ ବାଳକ ।
ତାଙ୍କୁ ଦେଖି ପ୍ରଜାପତି ବୋଇଲେ ହେ ତୁମ୍ଭେ
ସୃଷ୍ଟି ସରଜନା କର ବୋଲୁଅଛୁ ଆମ୍ଭେ ।
ସେମାନେ ନ ଶୁଣି ତାହା ତପ କରିବାକୁ
ଗଲେ ଯେ ଯାହା ଇଚ୍ଛାରେ ଗହନ ବନକୁ ।
ତାହାଙ୍କର ଆଚରଣ ଦେଖି ବେଦବର
ଜାତ କଲେ ପୁଣି କ୍ରୋଧେ କେତେକ କୁମର
ସେମାନେ ଅଟନ୍ତି ଏକାଦଶ ରୁଦ୍ରଗଣ
ଭୟଙ୍କର ରୂପ କରିଥିଲେ ସେ ଧାରଣ ।
ତାଙ୍କୁ ସୃଷ୍ଟି କରଣରେ ନିଯୁକତ କରି
ପୁଣି କେତେ ପୁତ୍ର ଜାତ କଲେ କୁଶଧାରୀ ।
ବଶିଷ୍ଠ ପୁଲହ କ୍ରତୁ ଭୃଗୁ ଅଙ୍ଗିରସ
ଅତ୍ରି ପୁଲସ୍ତ୍ୟ କର୍ଦ୍ଦମ ଦକ୍ଷ ମୁନୀଶ ।
ମରୀଚି ଏରୂପେ ଦଶସୁତ ଜାତ କଲେ
ସୃଷ୍ଟି ସରଜିବା ପାଇଁ ପଠିଆଇ ଦେଲେ ।
ସେ ଅନ୍ତେ ଅତି ସୁନ୍ଦର ପୁତ୍ରଟିଏ ଜାତ
କଲେ ଯେ ଅଟଇ କାମଦେବ ନାମେ ଖ୍ୟାତ
ସେ ଅନ୍ତରେ ପୁଣି ଏକ କନ୍ୟା ଜାତ କଲେ
ନୋହିବ କେ ସରି ତିନି ଭୁବନେ ତା ତୁଲେ
ପୁତ୍ରକୁ ଅନାଇ ତହୁଁ ବୋଇଲେ ହେ ସୁତ
ସ୍ତ୍ରୀ ପୁରୁଷ କ୍ରୀଡ଼ାଅର୍ଥେ ହୋଇଛୁ ତୁ ଜାତ ।
ଯୋଗବଳେ ସମସ୍ତଙ୍କ ହୃଦରେ ରହିବୁ
ଯଥାକାଳେ ସମ୍ଭୋଗରେ ସାହାଯ୍ୟ କରିବୁ ।
ସମ୍ମୋହନ ସମୁଦ୍‌ବେଗ ଶୋଷ୍ୟ ସ୍ତମ୍ଭ କରି
ଉନ୍ମତ୍ତ ହେବୁ ଜ୍ୱରଦ ଚେତନା ସଂହାରି ।

ଏହି ଅଧିମାନ ଦେଉଅଛୁ ତୁମ୍ଭେ ନିଅ
ଆମ୍ଭ ବଳେ ଦୁର୍ନିବାର୍ଯ୍ୟ ହୋଇ ରହିଥାଅ ।
ଏମନ୍ତ କହି ପୁତ୍ରକୁ ଦୁହିତାକୁ ସ୍ରଷ୍ଟି
ଉଦ୍ୟତ ହେବା ସମସ୍ତେ ବର ଦେବାପାଇଁ ।
ଦୁଷ୍ଟମତି କାମ ତାହା ଦେଖି ସେହିକ୍ଷଣି
ଅସ୍ତ୍ର ପରୀକ୍ଷା କରିବା ପାଇଁ ମନେ ଗୁଣି ।
ପାଞ୍ଚଟିଯାକ ସାୟକ ଧନୁରେ ବସାଇ
ପିତାଙ୍କର ହୃଦୟକୁ ପ୍ରହାରିଲା ନେଇ ।
ସେ ଘାତରେ ପ୍ରଜାପତି ମୂର୍ଚ୍ଛିତ ହୋଇଲେ
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲେ ।
ଦେଖିଲେ ଆଗରେ ଉଭା ହୋଇଅଛି ସୁତା
ତାଙ୍କୁ ସମ୍ଭୋଗ କରିବା ପାଇଁ କଲେ ଚିନ୍ତା
ତା ଜାଣି ସେ କନ୍ୟା ତହୁଁ ପଳାଇଲା ଧାଇଁ
ହତବୁଦ୍ଧି ହୋଇ ପିତା ଅଛନ୍ତି ଗୋଡ଼ାଇ ।
ଅନ୍ୟ ଉପାୟ ନ ଦେଖି ଯାଇ ତତକ୍ଷଣ
ଭାଇମାନଙ୍କ ପାଶରେ ପଶିଲା ଶରଣ ।
ସେମାନେ ଭଗ୍ନୀକୁ ପାଶେ ରଖି ଯତନରେ
ପିତାଙ୍କୁ କହିଲେ ରାଗ ବହିଣ ମନରେ ।
ବୋଇଲେ ହେ ତାତ ଏ ତ କୁତ୍ସିତ କରମ
ଧାର୍ମିକ ହୋଇଣ ତୁମ୍ଭେ ଛାଡୁଅଛ ଧର୍ମ ।
ସାଧୁଜନେ ମାତାପରି ପର କାମିନୀକୁ
ବିଚାର କରନ୍ତି ମାନି ଶାସ୍ତ୍ର ବିଧାନକୁ ।
ବେଦକର୍ତ୍ତା ହୋଇ ତୁମ୍ଭେ କନ୍ୟାକୁ ସମ୍ଭୋଗ
କରିବାକୁ କି ରୂପରେ ହେଉଛ ଉଦ୍‌ବେଗ ।
ଗୁରୁ ଗୁରୁପତ୍ନୀ ରାଜପତ୍ନୀ ବ୍ରାହ୍ମଣ ସୁବର୍ତ୍ତି
ଆବର ଶ୍ୱଶୁର ଭ୍ରାତୃସୁତ ପ୍ରିୟବର୍ତ୍ତି ।
କନ୍ୟକା ଭଗିନୀ ଧାତା ଧାତ୍ରୀ ପାଳୟିତ୍ରୀ
ଏମାନେ ଅଟନ୍ତି ସମଭାବେ ମାନ୍ୟପାତ୍ରୀ ।
ନିଜନ ଅଧିକ କେହି ନୁହନ୍ତି ଏଥିରେ
ନିରୂପିତ ଅଟେ ଏହା ବେଦ ପୁରାଣରେ ।
ଏମାନଙ୍କଠାରେ ପାପଦୃଷ୍ଟି ଯେ ପକାଏ
ନରକେ ପଡ଼ଇ ସେହି ଲକ୍ଷେଯୁଗ ଯାଏ ।
ଅନ୍ଧକୂପରେ ତାହାକୁ ରଖି ଯମଦୂତେ
ପ୍ରହାର କରନ୍ତି ନାନାପ୍ରକାରେ ନିରତେ ।
ତୁମ୍ଭେ ଯେ ନିଜ କନ୍ୟାକୁ ହରିବାକୁ ବଳେ
ଆସିଅଛ ଏହା ଦେଖା ନାହିଁ ମହୀତଳେ ।

ଆମ୍ଭ ନିକଟରୁ ଏବେ ଯାଅ ଦୂର ହୋଇ
ତୁମ୍ଭଙ୍କୁ ତ ଶାପ ଆମ୍ଭେ ନ ପାରିବୁ ଦେଇ ।
ଶାସ୍ତ୍ର ଲେଖିଅଛି ଯେହୁ ଅଟଇ ଯାଚକ
ତାହାର ପ୍ରାଣ ଯିବବ ତୁଣ୍ଡ ଦେଇ ଡାକ ।
କେବଳ ନିଜ ଗୁରୁଙ୍କଠାରେ ଦୋହ ମତି
ପ୍ରୟୋଗ ନ କରି ଧୀରେ ରହିବ ନିବର୍ତ୍ତି ।
ନିଷ୍ଠୁର ଅଥବା ସାଧୁ ହୋଇଥିଲେ ଗୁରୁ
ବାଧା ନ ଦେବ ତାହାକୁ ଭାବ ପ୍ରଥମରୁ ।
ଯେଉଁମାନେ ଏ କଥାକୁ ବିଚାର ନ କରି
ନିନ୍ଦା କରନ୍ତି ଗୁରୁଙ୍କୁ ବାତୁଳଙ୍କ ପରି ।
ଦେହ ଅନ୍ତରେ ସେମାନେ ପଡ଼ିଣ ନରକେ
କଷ୍ଟ ଭୋଗୁଥାନ୍ତି ଚନ୍ଦ୍ର ସୂର୍ଯ୍ୟ ଥିବାଯାକେ ।
ଏମନ୍ତ କହି ମୁନିଏ ପିତାଙ୍କ ଚରଣେ
ପ୍ରମାଣ କରି ସେକାଳେ ରହିଲେ ମଉନେ ।
ବିଚାରିଲେ ସବୁ ଅଟେ ଦଇବର କୃତ୍ୟ
ହୋଇଲେ କାହିଁକି ଅବା ଘଟନା ଏମନ୍ତ ।
ପୁତ୍ରଙ୍କ ବଚନ ଶୁଣି ବ୍ରହ୍ମା ପ୍ରଜାପତି
ଲଜ୍ଜାରେ ରହିଲେ କ୍ଷଣେମାତ୍ର ମୁଖ ପୋତି ।
ସେ ଅନ୍ତରେ ଯୋଗାସନେ ବସିଣ ମୁହୂର୍ତ୍ତେ
ଶ୍ରୀହରିଙ୍କୁ ସୁମରଣା କରି ନିଜ ଚିତ୍ତେ ।
ବୋଇଲେ ମୋ ହରି ମନ ପରଦ୍ରବ୍ୟେ ଆଉ
ନ ବଳୁ ତୁମ୍ଭ ଦୟାରେ ଆହେ ମହାବାହୁ ।
ଏମନ୍ତ ବିଚାରି ଦେହ ତ୍ୟାଗକରି ଗଲେ
ପରମ ବ୍ରହ୍ମରେ ସେହିକ୍ଷଣି ଲୀନ ହେଲେ ।
ଏହିରୂପେ ପିତାଙ୍କର ମରଣକୁ ଦେଖି
ବିଳାପ କଲା ସେ କନ୍ୟା ହୋଇ ମହାଦୁଃଖୀ
ସେ ଅନ୍ତରେ ଯୋଗବଳେ ମରି ଦେହ ତେଜି
ସେ ମଧ୍ୟ ପରମ ବ୍ରହ୍ମଠାରେ ଗଲା ମଜ୍ଜି ।
ପିତା ଭଗିନୀଙ୍କ ମୃତ୍ୟୁ ଦେଖି ମୁନିଗଣ
କାନ୍ଦି କାନ୍ଦି ଶ୍ରୀହରିଙ୍କୁ କଲେ ସୁମରଣ ।
ତାହି ଜାଣି ନାରାୟଣ ସେଠାକୁ ଆସିଲେ
ଦୟାକରି ସେ ଦୁହିଙ୍କୁ ଜୀବଦାନ ଦେଲେ ।
ଉଠି ପ୍ରଜାପତି ଆଗେ ଦେଖିଣ ବିଷ୍ଣୁଙ୍କୁ
ବର ମାଗିଲେ ସେକାଳେ ନ କରି ହେଳାକୁ
ବୋଇଲେ ମୋହର ମତି ଶ୍ରୀକୃଷ୍ଣ ଚରଣେ
ସମ୍ପୂର୍ଣ୍ଣ ଭାବରେ ରହିଥାଉ ଅନୁକ୍ଷଣେ ।

ବ୍ରହ୍ମାଙ୍କ ବିରସ ମୁଖ ଦେଖି ନାରାୟଣ
ପ୍ରବୋଧନା କରି ତାଙ୍କୁ କହିଲେ ବଚନ ।
ହୋଇଲେ ହେ ପିତାମହ ତେଜ ଲଜ୍ଜା ଭୟ
ଶୁଣ ମୋ ବଚନ ସ୍ଥିର କରିଣ ହୃଦୟ ।
କୀର୍ତ୍ତି ଅବା ଅପକୀର୍ତ୍ତି ସବୁ ଲୋକଙ୍କର
କର୍ମର ଅଧୀନ ଅଟେ ବୋଲି ମନେକର ।
ସବୁଠାରୁ କର୍ମ ଏକା ଅଟେ ବଳବାନ
ତେଣୁ ନିଜ କର୍ମ ସାଧୁଥାନ୍ତି ସାଧୁଜନ ।
କର୍ମ ବିନା ଜାଣ ଧାତା ଚରାଚର ମଧ୍ୟ
ଲବେ ନିମିଷକେ କେବେ ଚଳି ନ ପାରଇ ।
ଯେଉଁମାନେ ମୁକ୍ତ ହେବାପାଇଁ ଯେ କର୍ମକୁ
ଯତ୍ନ କରୁଥାନ୍ତି ନିର୍ମୂଳନ କରିବାକୁ ।
ଉତ୍ତମ କର୍ମଯୋଗରେ ଲଭି ହୁଏ ଯଶ
ଯଶରେ ଜଗତେ ଖ୍ୟାତି ଲଭଇ ପୁରୁଷ ।
କାଳବଶେ ଜରା ଆସି ରୂପ ବଳ ନାଶେ
କେବଳ ନ ଯାଇପାରେ ଯଶଗୁଣ ପାଶେ ।
ପରଦ୍ରବ୍ୟ ପରସ୍ତ୍ରିଷଠାରେ ଦେଲେ ମନ
କୁତ୍ସିତ ବୋଲିଏ ଲୋକ ଜଗତରେ ଜାଣ ।
ସବୁବେଳେ ତୁମ୍ଭେ ମୋତେ କଲେ ସୁମରଣ
ପର ପଦାର୍ଥରେ କେବେ ନ ବଳିବ ମନ ।
କାମିନୀ ଅଟଇ ମନ ମୋହନକାରିଣୀ
କଳ୍ପିତ ମାନବଙ୍କ ଚିତ୍ତ ନିଅଇ ସେ କିଣି ।
ସ୍ତନଦ୍ୱୟ ଅଟେ ମାଂସ ରକତର ପିଣ୍ଡ
ଜଘନ ଇନ୍ଦ୍ରିୟ ସାକ୍ଷାତରେ ନର୍କକୁଣ୍ଡ ।
ଲୋତକ ମଳରେ ପୂର୍ଣ୍ଣ ନୟନ ଯୁଗଳ
ମୁତ୍ରମୟ ଅଟେ ସଦା ଜାନୁଜଙ୍ଘ ସ୍ଥଳ ।
ତଥାପି ସେ କାମଦେବ ନିକେତନ ବୋଲି
କାମଶାସ୍ତ୍ରରେ ମୁନିଏ ଲେଖିଛନ୍ତି ଭାଳି ।
ଯେଉଁମାନେ ଧର୍ମସ୍ଥିରୁ ମୁମୁକ୍ଷୁ ଅଟନ୍ତି
ସେମାନଙ୍କ ଦୃଷ୍ଟି ଯୋଗ୍ୟ ନୁହେଁ ସ୍ତ୍ରୀଜାତି ।
ପରସ୍ତ୍ରୀ ଆସକ୍ତ ହେଲେ ଧର୍ମ ଯଶ ତପ
ସମସ୍ତ ଏକାବେଳକେ ହୋଇଯାଏ ଲୋପ ।
ମୂଢ଼ଜନେ ପରସ୍ତ୍ରୀ ସଙ୍ଗମକୁ ସୁଖ
ବିଚାରି ଶେଷରେ ଭୋଗ କରୁଥାନ୍ତି ଦୁଃଖ ।
ଉତ୍ତମ ଲୋକେ ମୋହର ପାଦ ସୁମରନ୍ତି
ମଧ୍ୟମ ଲୋକେ ସର୍ବଦା ସତ୍କର୍ମ କରନ୍ତି ।

ଯେଉଁମାନେ ସବୁଠାରୁ ଅନନ୍ୟ ଅକାମ
ସେମାନେ କରନ୍ତି ପରକାମିନୀ ସଙ୍ଗମ ।
ପରସ୍ତ୍ରୀ ପରଦ୍ରବ୍ୟ ଭୂମି ଜାତ୍ୟାଦି
ଅପକାର କଲେ ନିଶ୍ଚେ ମଣ୍ଡଳ ବିପଦ ।
ନିଜ ସ୍ତ୍ରୀଠାରେ ମଧ୍ୟ ଅତ୍ୟନ୍ତ ଆସକ୍ତ
ହେଲେ ଜ୍ଞାନହୀନ ରାଜଯକ୍ଷ୍ମା ହୁଏ ଜାତ ।
ପତିବ୍ରତା ସ୍ତ୍ରୀମାନେ ପତିକି ସେବନ୍ତି
ଗୃହସ୍ଥ କାମିନୀ ଗୃହ କର୍ମରେ ଲାଗନ୍ତି ।
ମୋଠାରେ ଭକତି କରିଥାନ୍ତି ଯେଉଁମାନେ
ଧ୍ୟାନ କରୁଥାନ୍ତି ମୋତେ ବସି ନିଶିଦିନେ ।

ଆଜଠାରୁ ଆମ୍ଭ ବରେ ପରଶୀ ଅଧିକ
କେବେ ବଦ୍ଧ ହେଲେ ନ ହୋଇବ ତୁମର ଯେ ଚିତ୍ତ
ସର୍ବଦା ଆମ୍ଭର ପାଦ ଚିନ୍ତା କରୁଥିବ
ଅନୁରକ୍ତ ହେଲେ ମଧ୍ୟ ପାପେ ପୋଷ ନ ଯିବ ।
ତୁମ୍ଭ କନ୍ୟା ହେବ କାମଦେବର କାମିନୀ
ହୋଇବ ତାହାର ପାଶେ ରତି ନାମ ଘେନି ।
ଏମନ୍ତ କହି କମଳାପତି ବିଧାତାଙ୍କୁ
ଆଶ୍ୱାସିତ କରି ଗଲେ ବୈକୁଣ୍ଠ ପୁରକୁ ।
କହଇ ବ୍ୟାସ ମୋହନ ହେ ହରନନ୍ଦନ
ମୋଚନ କର ମୋହର ସଂସାର ବନ୍ଧନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବିଧାତାଙ୍କର ମୋହିନୀ ଶାପମୁକ୍ତି ବର୍ଣ୍ଣନେ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ।



## ଷଟ୍‌ତ୍ରିଂଶ ଅଧ୍ୟାୟ

## ବ୍ରହ୍ମା ଓ ଶଙ୍କରଙ୍କର ଗର୍ବଭଙ୍ଗ ବିଷୟ ବର୍ଣ୍ଣନା

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଶୁଣିଣ ରାଧିକା ଦେବୀ ଶ୍ରୀକୃଷ୍ଣଙ୍କ ଗିର ।
ବୋଇଲେ ହେ ନାଥ ଯେବେ ଏ ନିୟମ ଘେନ
ମୋହିନୀ ସ୍ତ୍ରୀକୁ ତ୍ୟାଗ କଲେ ପଦ୍ମଯୋନି ।
ତେବେ ତାହାଙ୍କର କିପାଁ ଦର୍ପଭଙ୍ଗ ହେଲା
କାହିଁକି ଅବା କୁଳଟା ତାଙ୍କୁ ଶାପ ଦେଲା ।
ଶ୍ରୀକୃଷ୍ଣ ବୋଇଲେ ତାହା କହୁଅଛୁ ଶୁଣ
ପୂର୍ବେ ଆମ୍ଭଠାରୁ ବ୍ରହ୍ମା ବରକୁ ପାଇଣ ।
ନାନାବିଧ ସୃଷ୍ଟି କରି ବୋଲାଇଲେ ଧାତା
ହେଲେ ପୁଣି ସର୍ବକର୍ମ ତପଫଳ ଦାତା ।
ସେ ସକାଶୁ ଆପଣାକୁ ଈଶ୍ୱର ବିଚାରି
ଗର୍ବରେ ମନକୁ ପୂର୍ଣ୍ଣ କଲେ କୁଶଧାରୀ ।
ତାହା ଜାଣି ଆମ୍ଭେ ତାଙ୍କ ଗର୍ବ ଖର୍ବ କଲୁ
ସମାନ ଭାବରେ ରହିବାକୁ ଆଜ୍ଞା ଦେଲୁ ।
ଆଉରି ଶିବ ପାର୍ବତୀ ଚନ୍ଦ୍ର ଦିବାକର
ଦୁର୍ବାସା ମହର୍ଷି ଧନ୍ୱନ୍ତରି ବୈଶ୍ୱାନର ।
କ୍ରମେ କ୍ରମେ ଏହାଙ୍କର ଗର୍ବକୁ ସେପରି
ଖଣ୍ଡନ କରିଛୁ ଜାଣ ଆଗୋ ବିମ୍ବାଧରୀ ।

କ୍ଷୁଦ୍ର ବା ମହନ୍ତ ହେଉ ଗର୍ବ ଯେ କରଇ
ତାହାକୁ ଅବଶ୍ୟ ଶାସ୍ତି ଦେଇଥାଏ ମୁହିଁ ।
ଏମନ୍ତ ଶୁଣି ରାଧିକା ଆଶ୍ଚର୍ଯ୍ୟ ହୋଇଲେ
ପୁଣି ଶ୍ରୀକୃଷ୍ଣଙ୍କ ମୁଖ ଅନାଇ ପୁଚ୍ଛିଲେ ।
ବୋଇଲେ କେ କେଉଁଠାରେ କରିଥିଲେ ଗର୍ବ
କି ରୂପରେ ତୁମ୍ଭେ ତାହା କରିଅଛ ଖର୍ବ ।
ଏ କଥା ଶୁଣିବା ପାଇଁ ହେଉଅଛି ମନ
ଆମୂଳ କହିଣ ମୋତେ କହ ଭଗବାନ ।
ଶ୍ରୀକୃଷ୍ଣ ବୋଇଲେ ଦେବୀ ବ୍ରହ୍ମାଙ୍କର କଥା
କହିଲି ତ ତୁମ୍ଭେ ଶୁଣିଅଛ ସର୍ବଥା ।
ଏବେ ଅନ୍ୟମାନଙ୍କର କଥାକୁ ବିସ୍ତାରି
କହୁଅଛି ଶୁଣ ଧୀରେ ମନ ଦେଇ କରି ।
ମୋହର ଅଂଶରେ ଜାତ ଅଟନ୍ତି ଯେ ଶିବ
ତେଜରେ ଜ୍ଞାନରେ ଊଣା ନୁହନ୍ତି ସେ ଲବ ।
ସର୍ବଶୁଭ ଫଳଦାତା ଯୋଗୀଜନ ଗୁରୁ
ବଇଷ୍ଣବ ନ ଥିବେ କେ ବଳି ତାଙ୍କଠାରୁ ।
ଚଉଷଠି ସହସ୍ର ବର୍ଷ ତପସ୍ୟା ଆଚରି
ଧ୍ୟାନ ହୋଇଲେ ମୋର ପୂର୍ଣ୍ଣକଳା ଧରି ।

କୋଟିଏ ସୂର୍ଯ୍ୟ ସଦୃଶ ଦିବ୍ୟ ତେଜରାଶି
ପ୍ରକାଶିତ ହେଲା ତାଙ୍କ ଶରୀରକୁ ଭେଦି ।
ବହୁତ କାମନା କରି ଯୋଗୀଜନମାନେ
ଯେ ତେଜକୁ ଦରଶନ କରନ୍ତି ନୟନେ ।
ସେ ଅନ୍ତରେ ତପବଳେ ମଧ୍ୟରେ ତାହାର
ସୁନ୍ଦର ମୂରତି ହୋନ୍ତି ନୟନ ଗୋଚର ।
ଈଷତ ହାସ୍ୟ ସହିତ ସୁନ୍ଦର ବଦନ
ଶୁଭ୍ର ତେଜୋମୟ ପଞ୍ଚମୁଖ ତ୍ରିଲୋଚନ ।
ତ୍ରିଶୂଳ ପରଶୁ ହସ୍ତ ବ୍ୟାଘ୍ର ଚର୍ମଧର
ଆତ୍ମାରାମ ଜ୍ଞାନଦାତା ପରମ ଈଶ୍ୱର ।
ଯେଉଁ ଲୋକ ଯେତେବେଳେ ଇଚ୍ଛାକରେ ଯାହା
କର୍ମ ଅନୁସାରେ ତାକୁ ଦିଅନ୍ତି ସେ ତାହା ।
ସେ ସକାଶୁ ଅହଙ୍କାର ତାଙ୍କର ମନରେ
ଜାତହେଲା କେତେକାଳ ଗତହେଲାପରେ ।
ସେହି ସମୟରେ ବୃକ ନାମେ ନିଶାଚର
ବନସ୍ତ ମଧ୍ୟକୁ ଯାଇ ତପକଲା ଘୋର ।
ଦିନରାତି ଶଙ୍କରଙ୍କୁ ଆରାଧନା କରି
ବରଷ ଗୋଟିଏ ଶେଷ କଲା ଏହିପରି ।
ତାର ଭକତିରେ ତୋଷ ହୋଇ ସଦାଶିବ
ଯାଉଥାନ୍ତି ନିତି ତହିଁ ଆରୋହି ବୃଷଭ ।
ବର ମାଗ ବୋଲି ତାକୁ ବୋଲନ୍ତି ବୁହାଇ
ତଥାପି ସେ ନିଶାଚର କିଛି ନ ମାଗଇ ।
ବରଷ ଶେଷରେ ଶିବ ତାହାର ଆଗରେ
ଉଭା ହୋଇଣ ରହିଲେ ବାହନ ସହିତରେ ।
ଭୁକ୍ତି ମୁକ୍ତି ଆଦି ଯେତେ ଶୁଭ କଥାମାନ
ଯାଚିଲେ ହେଲେ ତା ନ ଘେନିଲା ଯାଚ୍ଞାଧନ
କେବଳ ତାହାଙ୍କ ପାଦପଦ୍ମ ଧ୍ୟାନକରି
ରହିବାର ଦେଖି ବ୍ୟସ୍ତ ହୋଇ ଶୂଳଧାରୀ ।
ପ୍ରେମଭରେ ନୟନରୁ ଲୋତକ ବୁହାଇ
ପୁନଃପୁନଃ ପ୍ରବର୍ତ୍ତନା ଦେଲେ ତାକୁ ତହିଁ ।
ସେ ସକାଶୁ ରାକ୍ଷସର ଯୋଗଭଙ୍ଗ ହେଲା
ନୟନ ଫିଟାଇ ଆଗେ ଶିବଙ୍କୁ ଦେଖିଲା ।
ମୋହର ମାୟାରେ ମୁଗଧ ହୋଇବାରୁ ସେହି
ନିଷ୍ଠୁର ବର ମାଗିଲା ତପ ଗ୍ରୁଡ଼ଦେଇ ।
ବୋଇଲା ଆହେ ଈଶ୍ୱର ଯେବେ ମୋ ପାଶକୁ
ହେଲଅଛ ବରଦେଇ ତୋଷ କରିବାକୁ ।
ତେବେ ମୁହିଁ ଆଜ୍ଞାଦିଅ ଯା ମୁଣ୍ଡରେ ହାତ
ଦେବି ସେ ଖଣ୍ଡକମଧ୍ୟେ ହେବ ଭସ୍ମୀଭୂତ ।
ଏହିବର ମାଗୁଛି ମୁଁ ଲୋଡ଼ା ଅଛି ମୋତେ
ଅନ୍ୟବରେ ପ୍ରୟୋଜନ ନାହିଁ ମୋ କହୁଛି ତେ
ତାହା ଶୁଣି ପ୍ରେମେ ଭୋଳ ହୋଇ ସଦାଶିବ
ବୋଇଲେରେ ବତ୍ସ ଯାହା ମାଗିଲୁ ତା ହେବ
ଏହିରୂପେ ବର ଦେଇ ଗିରି ସମୟରେ
ଗୋଡ଼ାଇଲା ସେ ଅସୁର ତାହାଙ୍କ ପଛରେ ।
ବୋଇଲେ ମୁହୂର୍ତ୍ତେ ମାତ୍ର ରହ ଶୂଳପାଣି
ତୁମ୍ଭ ବରର ମହିମା ନାହିଁ କିଛି ଜାଣି ।
ପ୍ରଥମରେ ତୁମ୍ଭମୁଣ୍ଡେ ହାତ ଦେଇକରି
ବୁଝିବି କିରୂପେ ତାହା ହେବ କାର୍ଯ୍ୟକାରୀ ।
ଏମନ୍ତ ରାକ୍ଷସଠାରୁ ଶୁଣି ତ୍ରିଲୋଚନ
ପଳାଇଲେ ଭୟେ ମନ କରି ଛନ୍ନ ଛନ୍ନ ।
ଡମ୍ବରୁ ସ୍ଫଟିକ ମାଳା ବ୍ୟାଘ୍ର ଚର୍ମବାସ
ଖସି ପଡ଼ିଣ ଆଶ୍ରୟ କଲେ ମହାଦେଶ ।
ଦିଗମ୍ବର ହୋଇ ପ୍ରଭୁ ତିନି ଭୁବନରେ
ବୁଲିଲେ ହେଲେ ରାକ୍ଷସ ଧାଇଁଲା ପଛରେ ।
ଭକତବତ୍ସଳ ସେ ତ କରୁଣାସାଗର
ତଥାପି ଘେନିଲେ ନାହିଁ ଜୀବନ ତାହାର ।
ଉପାୟ ନ ଦେଖି ଶେଷେ ମୋତେ ଚିନ୍ତାକଲେ
ରକ୍ଷ ହେ ଗୋବିନ୍ଦ ବୋଲି ଉଚ୍ଚେଡାକଦେଲେ
ତାହା ଜାଣି ମୁହିଁ ବୃଦ୍ଧ ବ୍ରାହ୍ମଣ ବେଶରେ
ଉପସ୍ଥିତ ହେଲି ଯାଇ ଦୁହିଙ୍କ ପାଶରେ ।
ଶିବଙ୍କୁ ପଛରେ ରଖି ରାକ୍ଷସକୁ ମୁହିଁ
ବୋଇଲି ଗୋଡ଼ାଉଅଛୁ ଏହାଙ୍କୁ କିପାଇଁ ।
ରାକ୍ଷସ ବୋଇଲେ ମୁହିଁ ବର୍ଷେ ତପକଲି
ଫଳ ସ୍ୱରୂପରେ ବର ଗୋଟିଏ ପାଇଲି ।
ସେ ବର ଅଟଇ ଯାହା କହୁଅଛି ଶୁଣ
ଯା ମୁଣ୍ଡ ଛୁଇଁବି ସେହୁ ଭସ୍ମହେବ ଜାଣ ।
ନିଜେ ସଦାଶିବ ଏହା ଅଛନ୍ତି ତ ଦେଇ
ପରୀକ୍ଷା କରିବି ତାଙ୍କ ମୁଣ୍ଡ ଆଗ ଛୁଇଁ ।
ରାକ୍ଷସଠାରୁ ଏରୂପେ ଶୁଣିକରି ମୁହିଁ
ହସି ହସି ବୋଇଲି ତୁ ହେଲୁ କେଡ଼େ ବାଇ
ଆଜ ପର୍ଯ୍ୟନ୍ତେ ଜାଣିନାହୁଁ ଯା ଶିବଙ୍କୁ
ଆଉ ପୁଣି ଜଗତରେ ଜାଣିଛୁ କାହାକୁ ।

ଦେଖନ୍ତି ନ ଶ୍ମଶାନରେ କରନ୍ତି ଘର
ବସନ ବର୍ଜିତ ହୋଇଛନ୍ତି ଦିଗମ୍ବର ।
ତଥାପି ଏହାଙ୍କଠାରେ ବିଶ୍ୱାସ ସ୍ଥାପନ
କରିଅଛ ଯାହା ଏ ତ ବଡ଼ ମୂର୍ଖପଣ ।
ଏହାଙ୍କର କଥା କେବେ ସତ ହେବନାହିଁ
ଅନେକଥର ପରୀକ୍ଷା କରିଅଛି ମୁହିଁ ।
ତୁ ଏବେ ନିଜ ମୁଣ୍ଡରେ ହାତଦେବୁ ଯେବେ
ମୁଁ କହିବା କଥାଗୋଟି ବୁଝିପିବୁ ତେବେ ।
ଏମନ୍ତ ଶୁଣି ରାକ୍ଷସ ବିଶ୍ୱାସରେ ପଡ଼ି
ଆପଣା ମୁଣ୍ଡରେ ହାତ ଦ୍ୟନ୍ତେ ଭସ୍ମ ଗୁଡ଼ି ।
ଯେକ୍ଷଣି ତାର ଦେହ ଭସ୍ମ ହୋଇଗଲା
ଅସ୍ଥି ଆଦିକରି ଆଉ କିଛି ନ ରହିଲା ।
ଦେବ ଋଷିଗଣ ତାହା ଦେଖି ଆନନ୍ଦରେ
ସ୍ତୁତି କଲେ କରଯୋଡ଼ି ମୋହର ଆଗରେ ।
ଆପଣାର ଗର୍ବ ଖର୍ବ ହୋଇବାର ଜାଣି
ଲଜ୍ଜିତ ହୋଇଣ ସ୍ତୁତିକଲେ ଶୂଳପାଣି ।
ତା ଦେଖି ତାହାଙ୍କୁ ମୁହିଁ ଆଶ୍ୱାସନା କଲି
କୈଳାସକୁ ଯିବାପାଇଁ ଅନୁମତି ଦେଲି ।
ଆଉ ଦିନକର କଥା କହୁଅଛି ଶୁଣ
ତ୍ରିପୁର ସହିତେ ହର କରିବାକୁ ରଣ ।
ଯିବାବେଳେ ମନେ ମନେ ଅହଙ୍କାର କଲେ
ମୁଁ ଦେବା ଶୂଳ କବଚ ସଙ୍ଗରେ ନ ନେଲେ
ଭାବିଲେ ମୁଁ ଅଟଇ ତ ସୃଷ୍ଟି ସଂହାରକ
ମୋ ଆଗରେ ଛାରଦୈତ୍ୟ ଅଟଇ କେତେକ
ସେ ଅନ୍ତରେ ପ୍ରବର୍ତ୍ତିଲା ଘୋରତର ରଣ
ବରଷେ ପର୍ଯ୍ୟନ୍ତ ତାହା ହୋଇଲାଟି ଜାଣ ।
ବଳରେ କେ ତାହାଠାରୁ ଊଣା ନ ହୋଇଲେ
ଦୁହିଙ୍କ ଉପରେ ଦୁହେଁ ଶସ୍ତ୍ରବୃଷ୍ଟି କଲେ ।
ପୃଥିବୀରେ ପାଦଦେଇ ତ୍ରିପୁର ରାକ୍ଷସ ।
ମସ୍ତକ ଠେକ ରଖିଲା ଅତି ଊର୍ଦ୍ଧ୍ୱ ଦେଶ ।
ଶଙ୍କର ସେରୂପେ ଊର୍ଦ୍ଧ୍ୱ ଦେଶକୁ ଉଠିଲେ
ମାସେ ପରଯନ୍ତେ ସେହିଠାରେ ଯୁଦ୍ଧ କଲେ ।
ଶିବଙ୍କର ଶରରୂପ ରଥ ଆଦିକରି
କାଟିଲା ରାକ୍ଷସ ଦିବ୍ୟ ସାୟକ ପ୍ରହାରି ।
ଶଙ୍କର ତାହାକୁ ଆଣ୍ଟେ ମୁଷ୍ଟି ପ୍ରହାରିଲେ
ମୂର୍ଚ୍ଛିତ ହୋଇ ଅସୁର ପଡ଼ିଲା ଭୂତଳେ ।
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲା
ରଥ ସହିତେ ଶିବଙ୍କୁ ତଳେ ପକାଇଲା ।
ତାହା ଶୁଣି ଦେବଗଣ ମହାଭୟ କଲେ
ଏକାଗ୍ର ମାନସ ହୋଇ ମୋତେ ସ୍ମରିଲେ ।
ଶିବ ମଧ୍ୟ ମୁହିଁ ଦେଇଥିବା ସ୍ତୋତ୍ର ପଢ଼ି
ସ୍ମରିଲେ ମୋତେ ନିଜେ ଶିରେ କରଯୋଡ଼ି
ସେ କଥାକୁ ଜାଣି ମୁହିଁ ବୃଷରୂପେ ଗଲି
କବଚ ତ୍ରିଶୂଳ ଶିବଙ୍କର ହାତେ ଦେଲି ।
ସେ ତ୍ରିଶୂଳ ଅଟେ ଦିବ୍ୟତେଜ ପରିପୂର୍ଣ୍ଣ
ତହିଁରେ କଲେ ସେ ନିଶାଚରକୁ ନିଧନ ।
ସେ କାଳେ ତାଙ୍କର ପୂର୍ବ ଗର୍ବ ଚୂର୍ଣ୍ଣ ହେଲା
ଯେଣୁ ଶତ୍ରୁ ନାଶିବାକୁ ବଳ ନ ପାଇଲା ।
ଦେବତା ଋଷି ସମସ୍ତେ ତ୍ରିପୁର ମରଣ
ଦେଖି ଶଙ୍କରଙ୍କୁ ସ୍ତୁତି କଲେ ପୁଣ ପୁଣ ।
ସେହି ଦିନଠାରୁ ମୁହିଁ ବୃଷରୂପ ଧରି
ବହୁଅଛି ଶଙ୍କରଙ୍କୁ ଜାଣ ଗୋ ସୁନ୍ଦରୀ ।
ଶିବଙ୍କଠାରୁ ଅଧିକ ପ୍ରିୟ ହୋଇ ମୋର
ନାହିଁ ଆଉ କେହି ତିନି ଭୁବନ ମଧ୍ୟର ।
ମନରୂପୀ ପ୍ରଜାପତି ଜ୍ଞାନରୂପୀ ଶିବ
ଅଂଶଜ ଅଟନ୍ତି ଇନ୍ଦ୍ର ଆଦି ଯେତେଦେବ ।
ଦୁର୍ଗାଲକ୍ଷ୍ମୀ ଆଦିକରି ଯେତେ ଦେବୀ ଛନ୍ତି
ସମସ୍ତେ ପ୍ରକୃତି ଅଂଶେ ଜନମି ଅଛନ୍ତି ।
ତୁମ୍ଭେ ଅଟ ମୋର ପ୍ରାଣ ଅଧିଷ୍ଠାତ୍ରୀ ଦେବୀ
ପ୍ରାଣରୁ ଅଧିକ ଏହା ଅଛଇ ମୁଁ ଭାବି ।
ତୁମ୍ଭ କଳାରେ ଜନମିଛନ୍ତି ଗୋପୀଗଣ
ଯେଣୁ ସେ ମୋହର ପ୍ରାଣପ୍ରିୟ ବୋଲି ଜାଣ ।
ସକଳ ଲୋକର ମୁହିଁ ଅଟେ ସୃଷ୍ଟିବୀଜ
ଜୀବଗଣ ମୋର ପ୍ରତିବିମ୍ବ ମନେ ହେଜ ।
ପତିଙ୍କ ବଚନ ଶୁଣି ବୃଷଭାନୁ ସୁତା
ପଚାରିଲେ ପୁଣି ତାଙ୍କ ପୁରାତନ କଥା
ବୋଇଲେ ହେନାଥ ଯାହା ପଚାରୁଛି ମୁହିଁ
ଆମୂଳ କରିଣ କହ ଦୟା ମନେ ବହି ।
ମୃତ୍ୟୁଞ୍ଜୟ ସର୍ବଦର୍ଶୀ ପ୍ରଭୁ ତ୍ରିଲୋଚନ
ନୁହନ୍ତି ଅନ୍ୟଦେବତା ତାହାଙ୍କ ସମାନ ।
ତଥାପି ସେ କାହିଁପାଇଁ ଦିବ୍ୟପୁର ଛାଡ଼ି
ଦିନ କଟାଉ ଅଛନ୍ତି ଶ୍ମଶାନରେ ପଡ଼ି ।

ଆବର ଦିବ୍ୟ ବସନ ଅଳଙ୍କାରମାନ
ତ୍ୟାଗକରି ହୋଇଛନ୍ତି ବିଭୂତି ଭୂଷଣ ।
ସୁବାସିତ ପୁଷ୍ପ ଚୂଡ଼ ବିଲ୍ୱପତ୍ର ନେଇ
ମଣ୍ଡିଅଛନ୍ତି ଆପଣା ଅଙ୍ଗରେ କିପାଇଁ ।
ଏଥିର କାରଣମାନ ଶୁଣିବାକୁ ମୋର
ଇଚ୍ଛା ହେଉଅଛି କହ ଆହେ ପ୍ରାଣେଶ୍ୱର ।
ପ୍ରିୟାଙ୍କଠାରୁ ଏରୂପେ ପ୍ରିୟତମ ଗିର
ଶୁଣି ଆନନ୍ଦରେ ନନ୍ଦରାଜାଙ୍କ କୁମର ।
ବୋଇଲେ ଗୋ ସ୍ୱରୁକେଶୀ ଶୁଣ ମନଦେଇ
କହିବା ପୁରାଣଯୁଗ ଚରିତ ବଖାଇ ।
ଷାଠିଏ ସହସ୍ର ବର୍ଷ ମୋତେ ଚିନ୍ତାକରି
ଏକାନ୍ତ ସ୍ଥାନରେ ତପ କଲେ ତ୍ରିପୁରାରି ।
ସେହି ସମୟରେ ମୂର୍ତ୍ତି ତାଙ୍କ ଆଗେ ଆସି
ପ୍ରବେଶ ହୋଇଲି ନିଜ ରୂପ ପରକାଶି ।
ମୋର ରୂପ ଦେଖି ସେହି ପ୍ରେମେ ଭୋଳହୋଇ
ଭକ୍ତିଭରେ ନୟନରୁ ଲୋତକ ବୁହାଇ ।
ପୁଲକିତ ଅଙ୍ଗେ କଲେ ନାନାରୂପେ ସ୍ତୁତି ।
ବୋଇଲେ ନମସ୍ତେ ଦେବ ଶ୍ରୀରାଧିକା ପତି ।
ତୁମ୍ଭର ମହିମା ପ୍ରଭୁ କି ଜାଣଇ ମୁହିଁ
ପ୍ରସନ୍ନ ହୁଅ ମୋଠାରେ ଜଗତ ଗୋସାଇଁ
ସହସ୍ରମୁଖ ଅଛନ୍ତି ଚତୁର୍ମୁଖ ବ୍ରହ୍ମା
ଏମାନେ ଅଟନ୍ତି ନିଷ୍ଠପ୍ୟରେ ପୁଣ୍ୟକର୍ମା ।
ବହୁତ ନୟନେ ଆପଣଙ୍କ ରୂପ ଦେଖି
ସ୍ତୁତି କରୁଛନ୍ତି ବହୁମୁଖେ ହୋଇ ସୁଖୀ ।
ଏରୂପେ କହିବା କାଳେ ତାହାଙ୍କର ଗିର
ମୁଖ ଜାତ ହେଲା ପୂର୍ବମୁଖ ଛାଡ଼ିକରି ।
ସେ ସହିତେ ପାଞ୍ଚଗୋଟି ହୋଇଲାଟି ଜାଣ
ଗୋଟିଏ ମୁଖରେ ପୁଣି ତିନୋଟି ଲୋଚନ ।
ଏମନ୍ତେ ପନ୍ଦର ଗୋଟି ଚକ୍ଷୁ ସେ ପାଇଲେ
ମୋ ରୂପ ଦେଖିଣ ଅତି ଆନନ୍ଦିତ ହେଲେ ।
ତିନି ନୟନରେ ସତ୍ତ୍ୱ ରଜ ତମୋଗୁଣ
ବାଣ୍ଟି ହୋଇ କ୍ରମେ ସ୍ଥାନ ପାଇଛନ୍ତି ଜାଣ
ସାତ୍ତ୍ୱିକ ଲୋକଙ୍କୁ ସତ୍ତ୍ୱ ଅଂଶରେ ଦେଖନ୍ତି
ରାଜସିକଠାରେ ରଜୋଭାବ ପ୍ରକାଶନ୍ତି ।
ଆବର ତାମସ ଅଟନ୍ତି ଯେ ଜଗତରେ
ଦେଖନ୍ତି ତାହାଙ୍କୁ ଶିବ ତମ ପ୍ରଭାବରେ ।
ଏହାର କାଳେ ତାଙ୍କର ତୃତୀୟ ନେତ୍ରରୁ
ବାହାର ହୁଅଇ ଅଗ୍ନି କାଳ ପ୍ରଭାବରୁ ।
ସେ ଅଗ୍ନି ଅଟଇ ଊର୍ଦ୍ଧ୍ୱଶିଖା ମହାକାୟ
ଦିଶଇ ଯେସନେ କୋଟି ମାର୍ତ୍ତଣ୍ଡ ଉଦୟ ।
ତିନିପୁର ଦଗ୍ଧ କରି ପାରଇ ସେ ହେଳେ
ପ୍ରକାଶ ହୁଏ କେବଳ ଯୁଗ ଅନ୍ତଃକାଳେ ।
ଯେତେବେଳେ ସତୀଦେବୀ ଅଗ୍ନିକୁଣ୍ଡ ପଡ଼ି
ଆପଣାର ଶରୀରକୁ ଦେଇଥିଲେ ପୋଡ଼ି ।
ସେ ସମୟେ ଶିବ ତାଙ୍କ ଭସ୍ମଯାକ ଆଣି
ବୋଳି ଦେଲେ ନିଜ ଅଙ୍ଗ ପ୍ରତ୍ୟେଙ୍ଗ ଯେସଣି
ଆବର ତାହାଙ୍କ ଅସ୍ଥି ଗୋଟାଇ ଆଣିଲେ
ମାଳକରି ଗଳାଦେଶେ ଲମ୍ବାଇ ରଖିଲେ ।
ପୁଣି ଶବଗୋଟି ଧରି ବୁଲାଇ ବହୁତ
ରୋଦନ କରି ପିଙ୍ଗନ୍ତେ ହେଲା ଇତସ୍ତତଃ ।
ଯେଉଁ ଯେଉଁ ସ୍ଥାନେ ତାହା ଯାଇଣ ପଡ଼ିଲା
ସେହି ସେହି ସ୍ଥାନ ଦେବୀପୀଠ ବୋଲାଇଲା ।
ତହିଁର ଯେ ଅବଶିଷ୍ଟ ରହିଥିଲା କରେ
ମୂର୍ଚ୍ଛାଗଲେ ଥୋଇ ତାକୁ ଆପଣ ବକ୍ଷରେ ।
ତାହାଜାଣି ମୁହିଁ ତାଙ୍କ ସମୀପକୁ ଗଲି
ପ୍ରବୋଧନା କରି ଦିବ୍ୟତତ୍ତ୍ୱ ବୁଝାଇଲି ।
ସେ ଧକାଣୁ ତୁଷ୍ଟ ହୋଇ ଆପଣାର ପୁରେ
ପ୍ରବେଶହୋଇଲେ ଶୋକତେଜି ସେ କାଳରେ
କେତେଦିନ ଅନ୍ତେ ସତୀ ମୂର୍ତ୍ତ୍ୟନ୍ତର ଘେନି
ଜାତ ହୋଇବାରୁ ତାଙ୍କୁ ପାଇଲେ ସେ ପୁଣି
ଯୋଗରେ ଆସକ୍ତ ହୋଇଥିବାରୁ ଟି ଜାଣ
ଦିଗମ୍ବର ହୋଇଛନ୍ତି ପ୍ରଭୁ ତ୍ରିଲୋଚନ ।
ତପ କଲାବେଳେ ବହିଥିଲେ ଜଟାଭାର
ଅଦ୍ୟାପି ତାହାକୁ କରି ନାହାନ୍ତି ଅନ୍ତର ।
ଏହାଜେ ତ ଯୋଗୀଙ୍କର ବେଶ ଭୂଷଣରେ
ଇଚ୍ଛା ନ ହୁଅଇ ପୁଣି ଅଙ୍ଗ ବଦଳପରେ ।
ସେ ଧକାଣୁ ମହାଯୋଗୀ ଦେବ ଶୂଳପାଣି
ଶ୍ରଦ୍ଧା ନ କରନ୍ତି ତହିଁ ଜାଣ ଗୋ ତରୁଣୀ ।
ଗରୁଡ଼ ଉପରେ ନାଗେ ପଳାଇଣ ଗଲେ
ଶିବଙ୍କର ଚରଣରେ ଶରଣ ପଶିଲେ ।
ଶରଣ ରକ୍ଷଣକାରୀ ଦେଖି ସେମାନଙ୍କୁ
ମାଶରୁ ତ୍ୟାଗ ନ କଲେ ଦେଇ ଅଭୟକୁ ।

ମାଳତୀଜାତି ଆଦି ନାନା ପୁଷ୍ପଗନ୍ଧ ତୁଳେ
ପରମ ଭକ୍ତିରେ ଆଣି ମୋତେ ସମର୍ପିଲେ ।
ସେହିବାକୁ ତାହାସବୁ ନେବାକୁ ଆଜ୍ଞା
ଇଚ୍ଛା ତ୍ୟାଗ କଲେ ମହେଶ୍ୱର ମହାବାହୁ ।
ଧୂସ୍ତୁରର କୁସୁମ ବିଲ୍ୱପତ୍ର ଆଦି ଯେତେ
ନିର୍ଗନ୍ଧ ପଦାର୍ଥ ସବୁ ନେଲେ ନିଜ ହାତେ ।
ଯୋଗ ସାଧନାରେ ବାଧାବିଘ୍ନ ତହିଁ କିଛି
ନୋହିବାରୁ ତାହା ନେଲେ ଯେ ବାଛି ବାଛି
ସୃଷ୍ଟି ସ୍ଥିତି ପ୍ରଳୟକୁ ସ୍ୱପନ ସଦୃଶ
ବିଚାର କରନ୍ତି ଶିବ ଯୋଗୀଗଣ ଈଶ ।
ତାହାଙ୍କ ଆୟୁଷ କାଳ ଜଣା ନାହିଁ ମୋତେ
କେମନ୍ତେ ବା ପ୍ରକାଶିତ ହେବ ବେଦଶାସ୍ତ୍ରେ ।
ମୋ ବିନା ତାହାଙ୍କଠାରୁ ଅଧିକରେ କେହି
ତିନି ଭୁବନ ମଧ୍ୟରେ ନାହିଁ କେଉଁଠାଇଁ ।

ପ୍ରାଣରୁ ଅଧିକ ସେହି ଅଟନ୍ତି ମୋହର
ରଖିଛି ମୁଁ ତାଙ୍କଠାରେ ପରମ ଆଦର ।
ବୈକୁଣ୍ଠ ଗୋଲୋକରେ ଆବା ତୁମ୍ଭ ପାଶେ
ନ ରହି ମୁଁ ଥାଏ ଶିବଙ୍କର ହୃଦଦେଶେ ।
ଶିବ ସୁଦର୍ଶନ ଚକ୍ର ସହିତରେ ମୁହିଁ
ତେଜ ଓଜ ଐଶ୍ୱର୍ଯ୍ୟରେ ସମାନ ଅଟଇ ।
ଶିବଙ୍କଠାରୁ ଅଧିକ ଜ୍ଞାନୀ ଜଗତରେ
ନ ଥିବେ କେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଭିତରେ
ମହାଯୋଗୀ ତ୍ୟାଗୀ ପୁଣି ଭୋଗୀ ଯେଉଁ ଶିବ
ତାଙ୍କ ଆରାଧନା କଲେ ତୁଟଇ ଅଶିବ ।
ସେ ଶିବ ମାହାତ୍ମ୍ୟ ଅବା କେ ପାରିବ କହି
ପଚାରିବାରୁ ତୁମ୍ଭଙ୍କୁ କହିଲି ବତାଇ ।
କହଇ ଷେଟମାଧବ ଶିବ ବିଷ୍ଣୁ ପାଦେ
ମୋହର ମାନସ ସଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମା ଓ ଶଙ୍କରଙ୍କର ଗର୍ବଭଙ୍ଗ ବିଷୟ ବର୍ଣ୍ଣନେ ନାମ ଷଟ୍‌ତ୍ରିଂଶୋଽଧ୍ୟାୟ ।

—*—

## ସପ୍ତତ୍ରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ ଦ୍ୱାରା ଶିବ ନିର୍ମାଲ୍ୟର ଶାପ ପ୍ରାପ୍ତି ବର୍ଣ୍ଣନ

ପୁଣି ଶ୍ରୀକୃଷ୍ଣଙ୍କୁ ଚାହିଁ ରାଧିକା ସୁନ୍ଦରୀ
ପଚାରିଲେ ପୁରାତନ କଥା ବସିକରି ।
ବୋଇଲେ ହେ ନାଥ ଆଜ କଥାଟିଏ ମୁହିଁ
ପଚାରୁଛି କହ ମୋତେ ଦୟା ମନେ ବହି ।
ଶିବ ତ ଅଟନ୍ତି ସର୍ବ ଦେବତାଙ୍କ ଶ୍ରେଷ୍ଠ
ଅଗ୍ରାହ୍ୟ ହୋଇଲା କିପାଁ ତାହାଙ୍କ ଉଚ୍ଛିଷ୍ଟ ।
ଏଥିର କାରଣ ମୋତେ କହ ବଂଶୀଧାରୀ
ଶୁଣିବା ପାଇଁକି ମନ ବଳୁଛି ମୋହରି ।
ଶ୍ରୀକୃଷ୍ଣ ବୋଇଲେ ଶୁଣ କହୁଅଛି ସତୀ
ଅଗ୍ରାହ୍ୟ ହୋଇଲା ଶିବ ନିର୍ମାଲ୍ୟ ଯେ ମତି ।
ସନତକୁମାର ମୁନି ବୈକୁଣ୍ଠକୁ ଦିନେ
ଗଲେ ବିଷ୍ଣୁଙ୍କ ଦର୍ଶନ ଇଚ୍ଛାକରି ମନେ ।
ପ୍ରବେଶ ହୋଇ ବିଷ୍ଣୁଙ୍କ ଆଗେ ଉଭା ହେଲେ
ଶିରେ ବେନି କରଯୋଡ଼ି ସ୍ତୁତି ଆରମ୍ଭିଲେ ।

ତା ଶୁଣି ସନ୍ତୁଷ୍ଟ ହୋଇ ପ୍ରଭୁ ଚକ୍ରପାଣି
ନିର୍ମାଲ୍ୟ ଦେଲେ ମୁନିଙ୍କ ଭକ୍ତିଭାବ ଜାଣି ।
ସେହିକ୍ଷଣି ମୁନି ତାହା ହସ୍ତରେ ନେଇଲେ
କିଞ୍ଚିତ ମାତ୍ର ତହିଁରୁ ନିଜେ ସେବା କଲେ ।
ଆଉ ଯାହା ଅବଶିଷ୍ଟ ଥିଲା ତା ବନ୍ଧୁଙ୍କୁ
ଦେବାପାଇଁ ରଖିଲେ ସେ କରିଣ ଯତ୍ନକୁ ।
ସେହି ସମୟେ ସିଦ୍ଧାଶ୍ରମେ ପରବେଶ ହେଲେ
ନିଜ ଗୁରୁ ଶଙ୍କରଙ୍କୁ ସେଠାରେ ଦେଖିଲେ ।
ତାଙ୍କୁ ସେହିବେଳେ ବିଷ୍ଣୁ ନଇବେଦ୍ୟ ଦେଇ
ଭକ୍ତିରେ ଶଙ୍କର ସେହିକ୍ଷଣି ଦେଲେ ଖାଇ ।
ଅତ୍ୟନ୍ତ ଦୁର୍ଲ୍ଲଭ ଦ୍ରବ୍ୟ ବୋଲି ମନେକରି
ନୃତ୍ୟ କଲେ କରେ ନିଜ ଡମ୍ବରୁକୁ ଧରି ।
ରାଗ ଭେଦରେ ଗାୟନ କଲେ ପୁନଃପୁନଃ
ସେ ସବୁ ଶୁଣି ଭକ୍ତିଭରେ ମୁଗ୍ଧ ହେଲା ମନ ।

ତମ୍ବୁରୁ ପକାଇ ନିଜ ଚେତନାକୁ ହାରି
ମୂର୍ଚ୍ଛିତ ହୋଇପଡ଼ିଲେ ମୋହନ୍ତ ଶଙ୍କର ।
ଏହି ସମୟରେ ଦୁର୍ଗା ଦୁର୍ଗତି ନାଶିନୀ
ପ୍ରବେଶ ହୋଇଲେ ଆସି ସେହିଠାରେ ପୁଣି ।
ଶିବଙ୍କୁ ମୂର୍ଚ୍ଛିତ ହେବା ଦେଖି ହସି କରି
ବୁଝିଲେ ସମସ୍ତ କଥା ସ୍କନ୍ଦଙ୍କୁ ପଚାରି ।
ଶୁଣିବାରୁ ତାହାଙ୍କର ନିର୍ମାଲ୍ୟ ଭକ୍ଷଣ
କ୍ରୋଧଭରେ କମ୍ପାଇଲେ ସେ କାଳେ ବଦନ
ଶାପ ଦେବାକୁ ଉଦ୍ୟମ କଲା ସମୟରେ
ପ୍ରବୋଧିଲେ ଶିବ ତାଙ୍କୁ ବିନୟ ସ୍ୱରରେ ।
ସେ ସକାଶୁ ଆଜ୍ଞ ଦେବୀ ଶାପ ନ ବହିଲେ
କେବଳ ତାଙ୍କ ଉଚ୍ଛିଷ୍ଟ ଦୂଷିତ ସେ କଲେ ।
ବୋଇଲେ ତୁମ୍ଭେ ଜଗତହର୍ତ୍ତାକର୍ତ୍ତା ହୋଇ
ଦୁର୍ନୀତି କରୁଛ ସାଧୁଭାବ ଛାଡ଼ିଦେଇ ।
ସର୍ବଦା ଅଟଇ ମୁହିଁ ତୁମ୍ଭର ପାଳିତା
ଆବର କିଙ୍କରୀ ଭୋଗ୍ୟ ପରମ ଭକତା ।
ତଥାପି ହରନିର୍ମାଲ୍ୟ ଭକ୍ଷଣରୁ ମୋତେ
ବଞ୍ଚିତ କଲ କପଟ ବିଗ୍ରହଣ ଚିତ୍ତେ ।
ଶୁଦ୍ଧ ବା ଅଶୁଦ୍ଧ ଯେତେ ପଦାର୍ଥ ସଂସାରେ
ପବିତ୍ର ହୁଅଇ ସବୁ ବିଷ୍ଣୁ ନୈବେଦ୍ୟରେ ।
ଯେଉଁଦ୍ରବ୍ୟ ଶ୍ରୀହରିଙ୍କ ନୈବେଦ୍ୟ ନୁହଇ
ଅଭକ୍ଷ ବୋଲି ତାହାକୁ ଛୁଇଁ ନ ଯୋଗାଇ ।
ବିଷ୍ଣୁ ନଇବେଦ୍ୟ ଯେବେ ଦଇବେ ମିଳିବ
ତାହା ସେବାକଲେ କୋଟିଯଜ୍ଞ ଫଳ ହେବ ।
ସେହି ନଇବେଦ୍ୟ ତୁମ୍ଭେନଦେବାରୁ ମୋତେ
ଭୋଗକର ଶାପ ଦେଉଅଛୁ କ୍ରୋଧଚିତ୍ତେ ।
ଆଜଠାରୁ ଯେଉଁଲୋକ ନୈବେଦ୍ୟ ତୁମ୍ଭର
ଭୁଞ୍ଜିବ ସେ ସାତଜନ୍ମ ହୋଇବ କୁକୁର ।
ଏମନ୍ତ ବୋଲି ପାର୍ବତୀ ଶିବଙ୍କ ଉପରେ
ଦୁଃଖିତ ହୋଇଣ ଦୃଷ୍ଟି ପକାଇଲେ ଧୀରେ ।
ଦେଖିଲେ ତାହାଙ୍କ କଣ୍ଠ ନୀଳବର୍ଣ୍ଣ ହୋଇ
ନବ ଜଳଧର କାନ୍ତି ପୁଞ୍ଜକୁ ନିନ୍ଦଇ ।
ସେ ସମୟେ ଶିବ ନିଜେ ପ୍ରିୟାଙ୍କୁ ବକ୍ଷରେ
ବସାଇଣ ବୋଧକଲେ ବିନୟ ବାକ୍ୟରେ ।
ପତିଙ୍କ ବଚନେ ଦେବୀ କୋପ ଶାନ୍ତକରି
ବ୍ୟସ୍ତହେଲେ ନିଜ ଦୃଷ୍ଟି ପଣକୁ ବିଚାରି ।
ସେ ଅନନ୍ତେ ପତିଙ୍କୁ ଶୁଦ୍ଧି ବୋଇଲେ ଭୋଳନାଥ
ବିଷ୍ଣୁ ନଇବେଦ୍ୟ ବିନା ନେଜିବ ବାଞ୍ଛିତ ।
ତୁମ୍ଭ ମାନଙ୍କର ମୁହିଁ ଅଟେ ଭାଗ୍ୟବତୀ
ତୁମ୍ଭଙ୍କୁ ତ ଶାପଦେଲି କ୍ରୋଧ ବଶ ଅତି ।
ଅପୂର୍ବ ପବିତ୍ରକର ଯେ ତୁମ୍ଭ ନୈବେଦ୍ୟ
ତାହାକୁ ତ ପୁଣି କରି ଦେଇଛି ଅମେଧ୍ୟ ।
ସେ ସକାଶୁ ଏହିକ୍ଷଣି ପ୍ରାଣ ତ୍ୟାଗକରି
ପଡ଼ିବ ମନ୍ଦିରେ ଆଜ କିଛି ନ ବିଚାରି ।
ମାତ୍ର କହୁଅଛି ଯାହା ତୁମ୍ଭ ଲିଙ୍ଗପରେ
ପୂଜାକାଳେ ସମର୍ପଣ କରୁଥିବେ ନରେ ।
ପବିତ୍ର ହୋଇବ ତାହା ସବୁଦିନେ ଜାଣ
ବିଷ୍ଣୁପୁରେ ହେଲେ ବିଷ୍ଣୁ କୈବଲ୍ୟ ମିଶ୍ରଣ ।
ଏମନ୍ତ ବୋଲିଣ ଦେବୀ ଦେହ ତେଜିବାକୁ
ଉଦ୍ୟତ ହୁଅନ୍ତେ ଶିବ ଧରିଣ ତାହାଙ୍କୁ ।
ବୋଇଲେ ଗୋ ଦେବୀ ମୋରଅପରାଧ ଯେତେ
କ୍ଷମା କର ତୁମ୍ଭେ ଏବେ ଦୟା ବହି ଚିତ୍ତେ ।
ତପସ୍ୟାରେ ମୁଁ ତୁମ୍ଭର ଅଟେ କ୍ରୀତଦାସ
ସ୍ଥିର ହୁଅ କୃପାମୟୀ ଛାଡ଼ ରାଗ ଦ୍ୱେଷ ।
ତୁମ୍ଭେ ଅଟ ଶ୍ରୀକୃଷ୍ଣଙ୍କ ମାୟା ସ୍ୱରୂପିଣୀ
ରହିଛ ମୋର ବକ୍ଷରେ ତାଙ୍କ କୃପାରେଣ ।
ବିଷ୍ଣୁ ନଇବେଦ୍ୟ ଦେବାପାଇଁ ମୁଁ ସମର୍ଥ
ନୁହଇ ତୁମ୍ଭ ଆଗରେ କହିଲି ଯଥାର୍ଥ ।
ଯେବେ ଇଚ୍ଛା ହୋଇଅଛି ଶ୍ରୀହରିଙ୍କଠାରୁ
ପାଇଣ ଆନନ୍ଦେ ସେବାକର ନୈବେଦ୍ୟକୁ ।
ଏରୂପେ ଶିବଙ୍କ ବାକ୍ୟ ଶୁଣିଣ ପାର୍ବତୀ
ପ୍ରସନ୍ନ ହୋଇ ସ୍ତୁତି କଲେ ନିଜପତି ।
ପୁଣି ଶିବଙ୍କର ପାଦ ଧରିଣ ନମିଲେ
ନିଜକୃତ ଦୋଷପାଇଁ କ୍ଷମାଭିକ୍ଷା କଲେ ।
ସେ ଅନନ୍ତେ ପତିଙ୍କଠାରୁ ଅନୁମତି ପାଇ
ସ୍ନାନାର୍ଥେ ମିଳିଲେ ସୁରଧୁନୀକାରେ ଯାଇ ।
ବିଧିମତେ ସ୍ନାନ ଆଦି କର୍ମ ଶେଷକଲେ
ନାନାବିଧ ମିଷ୍ଟଅନ୍ନ ବ୍ୟଞ୍ଜନ ରାନ୍ଧିଲେ ।
ତାହାଦେଖି ମହାଦେବ ନିତ୍ୟକୃତ ସାରି
ପରମ ବ୍ରହ୍ମଙ୍କୁ ସବୁ ଦ୍ରବ୍ୟ ପୂଜା କରି ।
ଭକ୍ତିଭରେ ସେ ରୂପକୁ ଚିନ୍ତି ହୃଦ ମଧ୍ୟେ
ବେଦୋକ୍ତ ବାକ୍ୟରେ ସ୍ତୁତିକଲେ ଯଥାସାଧ୍ୟେ

ତାହା ଜାଣି ମୂର୍ଚ୍ଛି ତାଙ୍କ ଆଗେ ଉଭାହେଲା
ମନୋରଥ ପୂର୍ଣ୍ଣକରି ପୁଣି ଚାଲିଗଲା ।
ତରୁମୂଳେ ବସି ଦେବୀ ପର୍ବତ ନନ୍ଦିନୀ
ନୈବେଦ୍ୟ ଗ୍ରହଣ କଲେ ଭରତାଙ୍କୁ ଘେନି ।
ଏରୂପେ ବସ୍ତ୍ରହରଣ ମହିମା ଅଟଇ
ପତ୍ନୀଙ୍କର ବୋଲି ଧରୁ କହିଲି ବତାଇ ।
ଶ୍ରୀକୃଷ୍ଣ ରାଧିକା ପାଦ ପଦ୍ମରେ ମୋହର
ସର୍ବଦା ଭକତି ଥାଉ କହେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଶିବ ନିର୍ମାଲ୍ୟର ଶାପ ପ୍ରାପ୍ତି ବର୍ଣ୍ଣନେ ନାମ ସପ୍ତଃବିଂଶୋଽଧ୍ୟାୟଃ ।

---

## ଅଷ୍ଟବିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର କର୍ତ୍ତୃକ ଦୁର୍ଗାଦେବୀଙ୍କର ଦର୍ପଭଙ୍ଗ ବର୍ଣ୍ଣନ

ଏଥୁ ଅନନ୍ତରେ ପୁଣି ନନ୍ଦରାଜ ସୁତ
କହନ୍ତି ରାଧାଙ୍କ ଆଗେ ପୁରାଣ ଚରିତ ।
ଶିବଙ୍କର ଦର୍ପଭଙ୍ଗ ଶୁଣିଲ ତ ଦେବୀ
ଏବେ ଶୁଣ ଦୁର୍ଗାଙ୍କର ଚରିତ କହିବି ।
ସକଳ ଦେବଙ୍କ ତେଜେ ଦେବୀ ମହାମାୟା
ପ୍ରବେଶ ହୋଇଣ ନଜେ ପ୍ରକାଶିଲେ କାୟା ।
ଅତ୍ୟନ୍ତ ସୁନ୍ଦର ସ୍ତ୍ରୀ ସ୍ୱରୂପକୁ ବହି
ରଖିଲେ ଦେବତା କୁଳ ଦାନବଙ୍କୁ ଦହି ।
ସେ ଅନ୍ତରେ ଦକ୍ଷପତ୍ନୀ ଗର୍ଭୁ ଜାତହୋଇ
ବରଣ କଲେ ଶିବଙ୍କୁ ପତିରୂପେ ସେହି ।
ପରମ ଭକ୍ତିରେ ନିତ ସ୍ୱାମୀଙ୍କୁ ସେ ଦେବୀ
ସେବା କରୁଥାନ୍ତି ଅନ୍ୟ କଥାକୁ ନ ଭାବି ।
ଦଇବେ ଶ୍ୱଶୁର ସଙ୍ଗେ ମହାଦେବଙ୍କର
ହେଲା କାରଣରେ ଜାତ ହୋଇଲା ବଇର ।
ସେହି ସମୟରେ ଦକ୍ଷ ପ୍ରଜାପତି ଯାଗ
ଆରମ୍ଭିଲେ ଦେବତାଙ୍କୁ ଦେବାପାଇଁ ଭାଗ ।
ସମସ୍ତ ବହ୍ନୀମାନଙ୍କୁ ନିମନ୍ତ୍ରଣ କଲେ
ପୂର୍ବ ଶତ୍ରୁତା ଯୋଗରେ ଶିବଙ୍କୁ ଛାଡ଼ିଲେ ।
ଦେବତା ଦାନବ ଯକ୍ଷ ରକ୍ଷ ଆଦି କରି
ଆସିଲେ ନିଜ ନିଜର କାମିନୀଙ୍କୁ ଧରି ।
ତାହା ଜାଣି ସଦାଶିବ କୋପଭରି ହୋଇ
ଗଲେ ସେ କାଳରେ ରୁଦ୍ରଗଣ ସଙ୍ଗେ ନେଇ ।
ବହୁତ ପ୍ରକାରେ ମନା କଲେ ହେଲେ ସତୀ
ଶୁଣିଲା ନାହିଁ ସେ କଥା ତାହାଙ୍କର ମତି ।
ଦେଖିଲେ ସେ କଥା ଦେବୀ ପତି ସଙ୍ଗେ ଯାଇ
ପିତାଙ୍କ ଘରେ ପ୍ରବେଶ ହେଲେ ବେଗହୋଇ
ପିତା ତାଙ୍କୁ ଆମନ୍ତ୍ରଣ କରି ତ ନ ଥିଲେ
ତେଣୁ ସେହିଠାରେ ଅପମାନ ସେ ପାଇଲେ
ସୁତା ଜାମାତାଙ୍କୁ ଦେଖି ଦକ୍ଷ ପ୍ରଜାପତି ।
ଭର୍ତ୍ସନା କଲେ ବହୁତ କ୍ରୋଧ ବହି ଅତି ।
ତା ଶୁଣି ନ ସହି ଦେବୀ ଅଗ୍ନିକୁଣ୍ଡେ ପଡ଼ି
ହୋମ କାଷ୍ଠ ପରି ନିଜ ଦେହ ଦେଲେପୋଡ଼ି ।
ଏମନ୍ତେ ତାହାଙ୍କ ଦର୍ପଭଙ୍ଗ ପ୍ରଥମରେ
ହେଲା କହୁଅଛି ଶୁଣ ପୁଣି ଆଉ ଥରେ ।
ଅଗ୍ନିକୁଣ୍ଡେ ପଡ଼ି ପ୍ରାଣ ତ୍ୟାଗ କରି ସତୀ
ହିମାଳୟ ଗୃହେ ପୁଣି ହେଲେ ଉତପତ୍ତି ।
ରୂପ ଗୁଣରେ ତାହାଙ୍କ ପରି ଏକା ସେହି
ହେଲେ ତାଙ୍କ ପରି ଦେଖା ନ ଥିଲା କେ କାହିଁ
ଶୁକ୍ଳ ପକ୍ଷେ ଯେଉଁରୂପେ ବଢ଼େ ଚନ୍ଦ୍ରକଳା
ସେହିପରି ଦିନୁ ଦିନ ବଢ଼ିଲେ ସେ ବାଳା ।
ଯେତେବେଳେ ଯଉବନ ହୋଇଲା ପ୍ରବେଶ
ପତି ଅନ୍ୱେଷଣ କଲେ ପର୍ବତଙ୍କ ଈଶ ।
ଏହିକାଳେ ଆକାଶରୁ ଶୁଭିଲା ବଚନ
ଆଗୋ ପାର୍ବତୀ ତୁମ୍ଭର ପତି ତ୍ରିଲୋଚନ ।
କଠୋର ତପସ୍ୟା କରି ତାଙ୍କୁ ଏକା ବର
ବହୁତ ମଙ୍ଗଳ ହେବ ଅବଶ୍ୟ ତୁମ୍ଭର ।
ଏହା ଶୁଣି ଯଉବନ ଗର୍ବରେ ପାର୍ବତୀ
ଭାବିଲେ ମୋପରି କେହି ନାହିଁ ରୂପବତୀ ।

ମୋତେ ଦେଖି ଶିବ କପାଁ ନ ହୋଇବେ ବଶ
ତପସ୍ୟା କର କାର୍ତ୍ତିକ ସନ୍ନିଧ ପ୍ରସ୍ଥାୟ ।
ମୋ ସକାଶେ ଯେବେ ଦକ୍ଷ ପ୍ରଜାପତିଙ୍କର
ଯାଗକୁ ଭଙ୍ଗିଲେ ପ୍ରଭୁ ହୋଇ କୋପଭର ।
ଏବେ ଅବା କାହିଁପାଇଁ ହେବେ ଅସମ୍ମତ
ଏଥିକୁ ତପ କରିବା ନୁହଇ ଉଚିତ ।
ଏମନ୍ତ ବିଚାରି ମନେ ଶଇଳ ନନ୍ଦିନୀ
ରହିଲେ ସେ ନ ଶୁଣିଲା ପ୍ରାୟ ଶୂନ୍ୟବାଣୀ ।
ଏହି ସମୟରେ ହିମାଳୟଙ୍କ ସଭାରେ
ପ୍ରବେଶ ହୋଇଣ ଦୂତ କରଯୋଡ଼ି ଶିରେ ।
ବୋଇଲା ଆହେ ରାଜନ ଦେବ ଶୂଳପାଣି
ଆସିଛନ୍ତି ସ୍ୱଗଣଙ୍କୁ ସଙ୍ଗତରେ ଘେନି ।
ଅକ୍ଷୟ ବଟ ପାଦପ ମୂଳେ ଅବସ୍ଥାନ
କରିଛନ୍ତି ହୋଇ ପୂଜ ତାଙ୍କୁ ସାବଧାନ ।
ତାହା ଶୁଣି ହିମାଳୟ ବେଗ ହୋଇ ଗଲେ
ଯଥାବିଧି ଶଙ୍କରଙ୍କୁ ଅଭ୍ୟର୍ଥନା କଲେ ।
ପାର୍ବତୀ ସେ କଥା ଶୁଣି ବିଚାରିଲେ ମନେ
ମୋ ପାଇଁ ଆସି ଅଛନ୍ତି ଶିବ ଏହି ସ୍ଥାନେ ।
ନୋହିଲେ କାର୍ତ୍ତିକ ନିଜ ଗଣସଙ୍ଗେ ଧରି
ଆସନ୍ତେ ବନ ମଧ୍ୟକୁ ପ୍ରଭୁ କି ପ୍ରକାରି ।
ଏମନ୍ତ ବିଚାରି ଦିବ୍ୟବସ୍ତ୍ର ଅଳଙ୍କାର
ଭୂଷିତ କଲେ ଅଙ୍ଗରେ ହୋଇ ତତପର ।
ରାଜସିଂହାସନ ପରେ ବସି ପୁନଃପୁନଃ
ଦର୍ପଣ ଧରି ମୁଖକୁ କଲେ ନିରୀକ୍ଷଣ ।
ଯେଉଁରୂପେ ମଧୁମାସ ପ୍ରବେଶ ହୋଇଲେ
ସୁନ୍ଦର ଦିଶଇ ବୃକ୍ଷ ଲତାଗଣ ପୂରେ ।
ସେହିପରି ଅଳଙ୍କାର ତେଜେ ତାହାଙ୍କର
ଅଙ୍ଗ ପ୍ରତିଅଙ୍ଗ ଦିଶୁଥିଲା ମନୋହର ।
ଏକାଗ୍ର ଚିତ୍ତରେ ଯଥା ଶିବଙ୍କର ପୂଜା
କଲେ ଆନନ୍ଦ ରସରେ ମଜ୍ଜାଇଣ ମଜ୍ଜା ।
ପିତାମାତା ବନ୍ଧୁ ମିତ୍ରଆଦି ଜଣ ଯେତେ
କାହାକୁ ସ୍ମରଣା ଆଉ ନ କଲେ କଣ୍ଠତେ ।
ଏଥୁଅନ୍ତେ ଶୈଳରାଜ ଦେଖିଲେ ସେଠାରେ
ରହିଛନ୍ତି ମହାଦେବ ସୁରନଦୀ ତୀରେ ।
ହସ୍ତେ ତ ରୁଦ୍ରାକ୍ଷ ମାଳା ଦକ୍ଷକରେ ଘେନି
ଜପ କରୁଛନ୍ତି ମୋର ନାମାକ୍ଷର ବେନି ।
ପରିଧାନ କରିଛନ୍ତି ବ୍ୟାଘ୍ରଜିନ ବାସ
ବୋଳା ହୋଇଛନ୍ତି ଅଙ୍ଗ ପ୍ରତ୍ୟଙ୍ଗେ ପାଉଁଶ ।
ମସ୍ତକ ଉପରେ ତାମ୍ରବର୍ଣ୍ଣ ଜଟାଭାର
ନଇଅଛି ପୁଣି ହୃଦୟରେ ଫଣିହାର ।
ଅନ୍ୟ ହସ୍ତରେ ତ୍ରିଶୂଳ ପରିଘ ଶକତି
ତେଜରେ ଶୋଭିତ ଦେଖା ଯାଉଅଛି ଅତି ।
ପଞ୍ଚବକ୍ତ୍ର ତ୍ରିଲୋଚନ ଅସ୍ଥି ମାଳାଧର
ବିଜେ କରିଛନ୍ତି ବ୍ୟାଘ୍ରଚର୍ମର ଉପର ।
ତାହାଙ୍କ ପାଶରେ ରୁଦ୍ରଗଣ ବେଢ଼ିକରି
ଉଭା ହୋଇଛନ୍ତି କରେ ନାନାଶସ୍ତ୍ର ଧରି ।
ବାମଭାଗେ ମହାକାଳ ଦକ୍ଷିଣରେ ନନ୍ଦୀ
ବସିଛନ୍ତି ତେଜ ଦିବାକର କର ନିନ୍ଦି ।
ଆବର ପିଶାଚ ଭୂତ ପ୍ରେତ ବ୍ରହ୍ମରକ୍ଷ
ବେତାଳ ଭୈରବ ରହିଛନ୍ତି ଲକ୍ଷ ଲକ୍ଷ ।
ସନକ ସନନ୍ଦ ସନାତନ ଗଉତମ
କପିଳ ଅସୁରି ପଞ୍ଚଶିଖ ଦ୍ୱିଜୋତ୍ତମ ।
ଜାବାଳି କରଥ କଣ୍ୱ ଲୋମଶ ପାଣିନି
କତ୍ୟାୟନ ଶଙ୍ଖ ଶାତାତପ ମହାମୁନି ।
ଦୁର୍ବାସା ପ୍ରଭୃତି ବ୍ରହ୍ମଋଷିଗଣ ଆସି
ମିଳିତ ହୋଇ ସମସ୍ତେ ଆଗେ ଛନ୍ତି ବସି ।
ତାଙ୍କୁ ଦେଖି ହିମାଳୟ ପାଦ ପୂଜାକରି
ପ୍ରଣମିଲେ ତାହାଙ୍କର ଚରଣକୁ ଧରି ।
ସେ ଅନ୍ତେ ଶିବଙ୍କ ପାଦେ ଦଣ୍ଡବତ ହେଲେ
ଧର୍ମ ଦେଇଥିବା ସ୍ତୋତ୍ର ପଢ଼ି ସ୍ତୁତି କଲେ ।
ବୋଇଲେ ହେଦେବ ତୁମ୍ଭେ ବ୍ରହ୍ମାବିଷ୍ଣୁ ରୂପେ
ସୃଷ୍ଟି ପାଳନ କରୁଛ ଯୋଗଦେଇ ଆପେ ।
ପୁଣି ରୁଦ୍ରରୂପେ ତାହା କରୁଛ ସଂହାର
ତୁମ୍ଭେ ଅଟ ସର୍ବ ଜ୍ୟୋତିର୍ମୟ ନିରାଧାର ।
ପ୍ରକାଶିତ ହୁଅ ତୁମ୍ଭେ ନାନାରୂପ ଧରି
ଭକ୍ତଙ୍କର ଡାକ ଶୁଣୁଅଛ କର୍ଣ୍ଣ ଡେରି ।
ଇନ୍ଦ୍ର ଅଗ୍ନି ବାୟୁ ସୂର୍ଯ୍ୟ ଚନ୍ଦ୍ର ସ୍ୱରୂପରେ
ନାନାବିଧ କାର୍ଯ୍ୟ କରୁଅଛ ଜଗତରେ ।
ମୃତ୍ୟୁଞ୍ଜୟ ମୃତ୍ୟୁକାଳ ଯମର ଅନ୍ତକ
ବେଦବିଜ୍ଞ ବେଦକର୍ତ୍ତା ସୃଷ୍ଟି ସଂହାରକ ।
ମନ୍ତ୍ରରୂପ ଜପମୟ କର୍ମ ଫଳପ୍ରଦ
ବଚନ ଦେବତା ହୁଏ କୁମୁଦମା ସ୍କନ୍ଦ ।

ସକଳ ସୃଷ୍ଟି ପଦାର୍ଥ ବୀଜ ଅଟ ତୁମ୍ଭେ
ତୁମ୍ଭର ସ୍ତୁତି କେ ଅବା କରିପାରୁ ଆମ୍ଭେ ।
ଏହିରୂପେ ସ୍ତୁତିକରି ଶଇଳ ରାଜନ
ବସିଲେ ଶିବଙ୍କ ଆଗେ ହୋଇଣ ମଉନ ।
ତାହା ଶୁଣି ଶିବ ତାଙ୍କୁ ଆଶୀର୍ବାଦ କରି
ପ୍ରବୋଧନା କଲେ ନାନାକଥା ଜଳ୍ପିସାରି ।
ହିମାଳୟ କୃତ ସଦାଶିବଙ୍କର ସ୍ତୁତି
ପଠନ ଯେ କରେ ସେହୁ ଲଭଇ ମୁକତି ।
ଅଧନ ଲୋକ ପଢିଲେ ଧନଲାଭ ହୁଏ
ଭାର୍ଯ୍ୟାହୀନ ଲୋକ ଦିବ୍ୟପତ୍ନୀ ପାଇଥାଏ ।
ସଦାଶିବଙ୍କ ପ୍ରସାଦେ ସକଳ ବିପଦ
ଖଣ୍ଡନ ହୁଅଇ ପୁଣି ମିଳଇ ସମ୍ପଦ ।
ଏହିଠାରେ ଶିବଙ୍କର ସ୍ତୋତ୍ର ଉପାଖ୍ୟାନ
ଗୀତଛନ୍ଦେ ଲେଖେ କ୍ଷେତ୍ରବାସୀ ଘନ ହୀନ ।

—❋—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର କର୍ତ୍ତିକ ଦୁର୍ଗାଦେବୀଙ୍କ ଦର୍ପଭଙ୍ଗ ବର୍ଣ୍ଣନେ ନାମ ଅଷ୍ଟତ୍ରିଂଶୋଽଧ୍ୟାୟଃ ।

---

## ଊ ନ ଚ ତ୍ୱା ରିଂ ଶ ଅ ଧ୍ୟା ୟ

## କନ୍ଦର୍ପ ନିଧନ ଓ ପାର୍ବତୀଙ୍କର ଦର୍ପଭଙ୍ଗ ବର୍ଣ୍ଣନ

କହନ୍ତି ଶ୍ରୀକୃଷ୍ଣ ରାଧାଦେବୀଙ୍କ ଆଗରେ
ଶୁଣ ସତି ଯାହା ହେଲା ଏଥୁ ଅନନ୍ତରେ ।
ଶଙ୍କରଙ୍କୁ ସ୍ତୁତିକରି ଗିରି ଅଧିପତି
ଅନୁଜ୍ଞା ପାଇ ବସିଲେ ତାହାଙ୍କର କତି ।
ଅଳପ ସମୟ କଥାବାର୍ତ୍ତା ହେଲା ପରେ
ମଧୁପର୍କ ଆଦି ସମର୍ପିଲେ ଭକ୍ତିଭରେ ।
ଶିବଙ୍କର ପାରିଷଦଗଣ ଯେତେ ଥିଲେ
ପୂଜା କଲେ ତାଙ୍କୁ ମୁନି ଋଷିଙ୍କର ତୁଲେ ।
ସେ ଅନ୍ତେ ମେନକା ହସ୍ତେ ଅର୍ଘଥାଳ ଧରି
ଆସିଲେ ଶିବଙ୍କ ପାଦପୂଜା ଇଚ୍ଛାକରି ।
ତାଙ୍କ ସଙ୍ଗେ ସଙ୍ଗେ ଆସିଥିଲେ ସଖୀଗଣ
ମିଳିଲେ ସମସ୍ତେ ଶିବଙ୍କର ସନ୍ନିଧାନ ।
ଦେଖିଲେ ମୁନିଙ୍କ ମଧ୍ୟେ ଉପବିଷ୍ଟ ହୋଇ
ଅଛନ୍ତି ତାରାଗଣରେ ଯେସନେ ନିଶାସାଇଁ ।
ବାର୍ଦ୍ଧକ୍ୟ ଅବସ୍ଥା ତେଜି ସୁନ୍ଦର ସ୍ୱରୂପ
ଧାରଣ କରିଅଛନ୍ତି ଯେସନେ କନ୍ଦର୍ପ ।
କାମୁକମାନଙ୍କର ସେ ସାକ୍ଷାତରେ ସ୍ମର
ସତୀ ସ୍ତ୍ରୀଙ୍କ ଦୃଷ୍ଟିରେ ଅଟନ୍ତି କୁମର ।
ବୈଷ୍ଣବମାନଙ୍କ ବିଷ୍ଣୁ ଶୈବଙ୍କର ଶିବ
ଶାକ୍ତଙ୍କ ଦୃଷ୍ଟିରେ ଶକ୍ତି ଆବର ଭୈରବ ।
ଯାହାର ଯେବଣ ଭାବ ଥାଏ ହୃଦୟରେ
ତାଙ୍କୁ ଦେଖା ଯାଆନ୍ତି ସେ ସେମନ୍ତ ପ୍ରକାରେ ।
ବ୍ୟାଘ୍ରଚର୍ମ ଅସ୍ଥିମାଳା କଲେହେଁ ଧାରଣ
ତାଙ୍କର ସ୍ୱରୂପ ଦିଶୁଥିଲା ଶୋଭାବନ ।
ସେ ସକାଶୁ ମେନକାର ଥିଲେ ଯେତେ ସଖୀ
ମୋହିତ ହୋଇଲେ ସଦାଶିବଙ୍କୁ ସେ ଦେଖି ।
କେଉଁମାନେ କହୁଥିଲେ ଏହାଙ୍କ ସଙ୍ଗରେ
ରମିଲେ କାମନା ପୂର୍ଣ୍ଣ ହୁଅନ୍ତା ଅଚିରେ ।
କେ ବୋଇଲା କନ୍ଦର୍ପକୁ ଏହାଙ୍କୁ ତୁଳନା
କଲେ ସେ ସୌନ୍ଦର୍ଯ୍ୟଗୁଣେ ଊଣା ହେବ ସିନା
କେଉଁମାନେ କହୁଥିଲେ ଜଣାଇ ଅଗ୍ନିକୁ
ଝାସିବା ଶିବଙ୍କୁ ପତିରୂପେ ପାଇବାକୁ ।
କେଉଁ ସଖୀ ବୋଇଲା ଗୋ ପାର୍ବତୀ ସୁନ୍ଦରୀ
ଲଭିବ ଏହାଙ୍କୁ ପୂର୍ବେ ତପ ଥିଲେ କରି ।
ଏହିରୂପେ ସଖୀମାନେ ଚିନ୍ତା କରୁଥିଲେ
ମେନକା ଶିବଙ୍କ ପାଦ ପୂଜା ବଢ଼ାଇଲେ ।
ସେ ଅନ୍ତେ ବେଶ କରାଇ ପାର୍ବତୀଙ୍କୁ ଆଣି
ସମର୍ପଣ କଲେ ଶିବା ସକାଶେ ସେକ୍ଷଣି ।
ସ୍ୱାମୀଙ୍କୁ ଦେଖି ପାର୍ବତୀ ମୁଖ ନମ୍ରକରି
ପ୍ରଣାମ କଲେ ସପତବାର ସ୍ନେହପରି ।

ସନ୍ତୁଷ୍ଟ ହୋଇ ଶଙ୍କର ବୋଇଲେ ତୁମ୍ଭର
ପତି ଲଭ ହେଉ ଆହେଗୋ ରମଣୀଙ୍କ ବର ।
ଅନ୍ୟସ୍ତ୍ରୀଙ୍କଠାରେ ନୋହିଥିବ ଯେ ଆସକ୍ତ
ତାଦୃଶ ପତି ତୁମ୍ଭର ହୋଇବ ନିଶ୍ଚିତ ।
ତୁମ୍ଭଠାରୁ ଜାତ ହେବ ଯେବଣ ସନ୍ତାନ
ରୂପଗୁଣେ ହୋଇଥିବ ବିଷ୍ଣୁଙ୍କ ସମାନ ।
ତିନିଲୋକେ ପ୍ରଥମରେ ପୂଜିବୁଲେ ତୁମ୍ଭେ
ପୂଜା ପାଇବ ନିଶ୍ଚୟ ବରଦେଲୁ ଆମ୍ଭେ ।
ସାତଥର ଯାହା ମୋତେ ପ୍ରଦକ୍ଷିଣ କଲେ
ସର୍ବଦା ହେବ ତୁମ୍ଭର ସବୁକଥା ଭଲେ ।
ଏରୂପେ କହିଣ ଶିବ ମୋର ବ୍ରହ୍ମଜ୍ୟୋତି
ନିରୀକ୍ଷଣ କଲେ ଯୋଗଧ୍ୟାନେ ହୋଇ ମତି ।
ଆନନ୍ଦେ ପାର୍ବତୀ ଦେବୀ ତାଙ୍କ ପାଦଜଳେ
ଧଉତ କରି ପୋଛିଲେ ବସନ ଅଞ୍ଚଳେ ।
କାଂସ୍ୟପାତ୍ରେ ଦ୍ରବ୍ୟମଧୁ ଘେନି ବେନିହସ୍ତେ
ସମର୍ପିଲେ ଭକତିରେ [illegible] ଅଗ୍ରତେ ।
ସୁଗନ୍ଧ ଚନ୍ଦନ ଗୁରୁ କୁଙ୍କୁମ କସ୍ତୁରୀ
ଆବର ମାଳତୀ ପୁଷ୍ପ ମାଳା ଆଦିକରି ।
ଯଥାକ୍ରମେ ଦେଇ ପୂଜା ସମାପନ କଲେ
ପୁନଃ ପୁନଃ କରଯୋଡ଼ି ପାଦରେ ନମିଲେ ।
ଏହିପରି ପ୍ରତିଦିନ ହିମାଳୟ ସୁତା
ଶିବଙ୍କ ସେବାରେ ମନଦେଲେ ଗୂଢ଼ ଚିତା ।
ସେକାଳେ ତାରକାନାମେ ବଳବାନ ଦୈତ୍ୟ
ଜାତହୋଇ ବିମର୍ଦ୍ଦନ କଲା ସ୍ୱର୍ଗ ମର୍ତ୍ତ୍ୟ ।
ନ ସହି ତାର ପ୍ରତାପ ଇନ୍ଦ୍ର ଆଦି ଦେବେ
ବ୍ରହ୍ମାଙ୍କ ଆଗେ ସେ କଥା ଜଣାଇଲେ ସର୍ବେ ।
ବିଧାତା ବୋଇଲେ ତୁମ୍ଭେ ଶିବଙ୍କ ବୀର୍ଯ୍ୟରେ
ସନ୍ତାନ ଜାତ କରାଅ ପାର୍ବତୀଙ୍କ ଠାରେ ।
ତା ହସ୍ତରେ ନାଶଯିବ ତାରକା ଅସୁର
ନୋହିଲେ ଅନ୍ୟ ଉପାୟ ନାହିଁ ମନେକର ।
ଶୁଣିଣ ବାସବ ତହୁଁ ସ୍ୱର୍ଗକୁ ଆସିଲେ
କାମଦେବଙ୍କୁ ପାଶକୁ ଡକାଇ କହିଲେ ।
ବୋଇଲେ ଆହେ ମନ୍ମଥ ତୁମ ସାମର୍ଥରେ
ଦେବତାମାନେ ଆନନ୍ଦେ ରହିବେ ସ୍ୱର୍ଗରେ ।
ତାରକାକୁ ମାରିବାକୁ ଶିବଙ୍କର ସୁତ
ପାର୍ବତୀ ଦେବୀଙ୍କ ଗର୍ଭୁ ହୋଇବ ସମ୍ଭୂତ ।
ମାତ୍ର ତାହା ତୁମ୍ଭବିନା ଆନ କେହି ଆଉ
ସମ୍ପାଦି ନ ପାରେ ଜାଣ ଆହେ ମହାବାହୁ ।
ପ୍ରକୃତରେ ମହାଯୋଗୀ ଅଟନ୍ତି ଈଶ୍ୱର
ବିଚଳିତ ନୁହେ କେବେ ମନ ତାହାଙ୍କର ।
କେବଳ ତୁମ୍ଭର ପୁଷ୍ପ ଶରଘାତ ପାଇ
ପାର୍ବତୀଠାରେ ଆସକ୍ତ ହେବେ ନିଶ୍ଚେ ସେହି ।
ଏବେ ହିମାଳୟ ସୁତା ପିତାଙ୍କ ଆଦେଶେ
ସେବା କରୁଛନ୍ତି ରହି ଶିବଙ୍କର ପାଶେ ।
ଏହି ସୁଯୋଗରେ ତୁମ୍ଭେ ହେଲେ ସାବଧାନ
ଦେବତାଙ୍କ କାର୍ଯ୍ୟସିଦ୍ଧି ହେବ ବୋଲି ଜାଣ ।
ଇନ୍ଦ୍ରଙ୍କ ବଚନ ଶୁଣି ଶମ୍ବର ଅରି
ବାହାର ହୋଇଲା କରେ ପୁଷ୍ପଧନୁ ଧରି ।
ଯେଉଁଠାରେ ତପ କରୁଥିଲେ ତ୍ରିଲୋଚନ
ମିଳିଲା ସେଠାରେ ଘେନି ଅନୁଚରଗଣ ।
ଛିଦ୍ର ଦେଖି ସମ୍ମୋହନ ସାୟକ ବିନ୍ଧିଲା
ଶିବଙ୍କର ବକ୍ଷସ୍ଥଳେ ଯାଇ ସେ ବାଜିଲା ।
ସାକ୍ଷାତରେ ପରମାତ୍ମା ଅଟନ୍ତି ତ ଶିବ
କାମଶର ବାଜି ତାହାଙ୍କର କି ହେବ ।
ମୋଟ ବୃକ୍ଷେ ଶସ୍ତ୍ର ଶ୍ରେଷ୍ଠ ନ କାଟିଲା ପରି
ବୃଥା ହେଲା ଯେତେ ପ୍ରହାରିଲା ଶମ୍ବରାରି ।
ତା ଦେଖି ଭୟରେ ନିଜ ଶରୀର କମ୍ପାଇ
ଦେବତାଙ୍କୁ ସୁମରଣା କଲା ବସି ତହିଁ ।
ତାହା ଶୁଣି ପୁରନ୍ଦର ଆଦି ସର୍ବସୁରେ
ସ୍ତୁତି କରିବାକୁ ମହାଦେବଙ୍କ ପାଶରେ ।
ଉପସ୍ଥିତ ହେଲେବେଳେ ଦେଖିଲେ ତାଙ୍କର
ଲଲାଟ ନେତ୍ରୁ ବାହାରି ଚଣ୍ଡ ବୈଶ୍ୱାନର ।
ଘୋର ରଡ଼ି ଦେଇ ଆକାଶରେ ଘେରିଗଲା
କନ୍ଦର୍ପ ଦେହରେ ଲାଗି ଭସ୍ମ କରିଦେଲା ।
ପତିର ମରଣ ଦେଖି ବିକଳରେ ରତି
କାନ୍ଦିଲା ବହୁତ ଯେ ତ ଅଟେ ମହାସତୀ ।
ଦେବତାମାନେ ତା ଦେଖି ଦୁଃଖିତ ହୋଇଲେ
ସ୍ତୁତିକରି ଶିବଙ୍କର କ୍ରୋଧ ଶାନ୍ତ କଲେ ।
ରତିକି ବୋଇଲେ ମାତ ନ କର ଶୋଚନା
ବଞ୍ଚିବେ ତୁମ୍ଭର ପତି ଅଳ୍ପଦିନେ ସିନା ।
ଭସ୍ମକୁ କିଞ୍ଚିତ ତୁମ୍ଭେ ରଖ ଯତନରେ
ଉପାୟ କରିବୁ ଆମ୍ଭେ ତାଙ୍କପାଇଁ ଥରେ ।

ଲେଉଟି ପତିଙ୍କ ମୁଖ ଦେଖିବ ସୁନ୍ଦରୀ
ନିଶ୍ଚିନ୍ତରେ ଥାଅ ଏବେ ଶୋକ ତ୍ୟାଗକରି ।
ଏହିରୂପେ ଆଶ୍ୱାସନା କରିଣ ରତିଙ୍କୁ
ଗଲେ ଦେବଗଣ ସୁଖେ ସେ ଯାହା ପୁରକୁ ।
ପାର୍ବତୀ ସେ କଥା ସବୁ ଦେଖିଣ ନୟନେ
ମୂର୍ଚ୍ଛିତ ହୋଇ ପଡ଼ିଲେ ଭୟ ପାଇ ମନେ ।
ଶଙ୍କର ସେ ସମୟରେ ନିଜଗଣ ଭୁଲେ
କ୍ଷଣକ ମଧ୍ୟରେ ଅନ୍ତର୍ଦ୍ଧାନ ହୋଇଗଲେ ।
ଚେତନା ପାଇ ପାର୍ବତୀ ଶିବଙ୍କୁ ନ ଦେଖି
ଗର୍ବ ପରିତ୍ୟାଗ କଲେ ହୋଇ ଅତି ଦୁଃଖୀ ।
ସଖୀଙ୍କ ଆଗରେ ମୁଖ ଦେଖାଇବା ପାଇଁ
ଲଜ୍ଜାରେ ତାହାଙ୍କ ମନ ପ୍ରବର୍ତ୍ତିଲା ନାହିଁ ।
ପାଶରେ ଯେତେକ ସଖୀ ଥିଲେ ତାହାଙ୍କର
ତାଙ୍କୁ ନ ମାନି ଚଳିଲେ ବନସ୍ତ ମଧ୍ୟର ।
ସଖୀମାନେ ତାହାଙ୍କର ପଛେ ପଛେ ଗଲେ
ସର୍ବଦା ପାଶରେ ରହି ସେବା କରୁଥିଲେ ।
ବହୁତ ଦିନ ତପସ୍ୟା କରିବାରୁ ସେହି
ଶିବଙ୍କୁ ବର ସ୍ୱରୂପେ ପାଇଲେ ଗୋ ସହି ।
ଏହିପରି ପାର୍ବତୀଙ୍କ ଗର୍ବ ବିମର୍ଦ୍ଦନ
ଚରିତ କହିଲି ତୁମ୍ଭେ କଲ ତ ଶ୍ରବଣ ।
ଆଉ କି ଶୁଣିବାପାଇଁ ମନ ଅଛି ଯେବେ
ପଚାରି ଆମୂଳ କରି କହିବା ତା ତେବେ ।
ଶିବଙ୍କର ତପୋଭଙ୍ଗ ଚରିତକୁ ଶେଷ
କଲେ କ୍ଷେତ୍ରବାସୀ ଦୀନ ଦେଇଣ ମାନସ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କନ୍ଦର୍ପର ନିଧନେ ଓ ପାର୍ବତୀଙ୍କର ଦର୍ପଭଙ୍ଗ ବର୍ଣ୍ଣନେ ନାମ ତ୍ରିନଚତ୍ୱାରିଂଶୋଽଧ୍ୟାୟଃ ।



## ଚତ୍ୱାରିଂଶ ଅଧ୍ୟାୟ

## ପାର୍ବତୀଙ୍କର ତପ ଓ ଶିବଙ୍କଠାରୁ ବରପ୍ରାପ୍ତି

ଏଥିଅନ୍ତେ ରାଧାଦେବୀ ଶ୍ରୀକୃଷ୍ଣଙ୍କ ଆଗେ
ପଚାରିଲେ ପାର୍ବତୀଙ୍କ ଚରିତ ସରାଗେ ।
ବୋଇଲେ ହେ ନାଥ ତୁମ୍ଭଠାରୁ ଯେ ଚରିତ
ଶୁଣିଲି ତହିଁରେ ତୋଷ ହେଲା ମୋର ଚିତ୍ତ ।
ଏବେ ଆଉ କେତେକଥା ଶୁଣିବାକୁ ପୁଣି
ଇଚ୍ଛା ହେଉଅଛି ତାହା କୁହ ବଂଶୀପାଣି ।
କିରୂପେ ପାର୍ବତୀ ଦେବୀ ଆଚରିଲେ ତପ
ଆମୂଳ କରିଣ କହ ତହିଁର ସ୍ୱରୂପ ।
ଈଶ୍ୱର ଆସି ତାହାଙ୍କୁ ଦେଲେ କିବା ବର
କିରୂପେ ଅବା ଗ୍ରହଣ କଲେ ତାଙ୍କ କର ।
ଦୁହିଙ୍କ ବିବାହ କାର୍ଯ୍ୟ ହେଲା କି ପ୍ରକାରେ
କି ରହସ୍ୟ ଘଟିଥିଲା ସମ୍ଭୋଗ କାଳରେ ।
ବିରହ ବ୍ୟଥାରେ କଷ୍ଟ ପାଇଲେ ଯେ ଦେବୀ
ଦୁଃଖିତ ହୋଇଛି ମନ ସେ କଥାକୁ ଭାବି ।
ତାହାଙ୍କ ବିରହ କଷ୍ଟ କି ରୂପେ ବିନାଶ
ହେଲା ତାହା ମୋ ଆଗରେ କର ପରକାଶ ।
ପତି ବିଚ୍ଛେଦରେ ରତି କି ଉପାୟ କଲେ
କେମନ୍ତେ ପୁଣି ତାହାଙ୍କୁ ଲେଉଟି ପାଇଲେ ।
ଏ ସକଳ କଥା ମୋତେ କହ ଭଗବାନ
ଶୁଣିଲେ ସନ୍ତୁଷ୍ଟ ହେବ ଜାଣ ମୋର ମନ ।
ଏରୂପେ ପ୍ରିୟାଙ୍କ ବାକ୍ୟ ଶୁଣି ନରହରି
ଭାବିଲେ ରାଧିକା ମୋର ଶିର ସହଚରୀ ।
ପାର୍ବତୀ ରତି ଦୁହିଙ୍କ ବିରହ ଶ୍ରବଣେ
ଦୁଃଖିତ ହେଉଅଛନ୍ତି କଳୁଷିତ ମନେ ।
କିରୂପେ ଶତେବରଷ ବିଚ୍ଛେଦକୁ ସହି
ବଞ୍ଚିବେ ମୋଠାରୁ ଭିନ୍ନ ସ୍ଥାନରେ ଏ ରହି ।
ଏମନ୍ତ ବିଚାରି ତାଙ୍କ ମୁଖକୁ ଅନାଇ
ବୋଇଲେ ଯା ପଚାରିଲ ଶୁଣ କହୁଥାଇ ।
ବନ୍ଧମୂଳ ତ୍ୟାଗକରି ଯାଆନ୍ତେ ଈଶ୍ୱର
ତପସ୍ୟା ଅର୍ଥେ ପାର୍ବତୀ ଗଲେ ବନଘୋର ।
ପିତା ମାତା ଦୁହେଁ କେତେ ନିବାରଣ କଲେ
ତଥାପି ସେ ତାଙ୍କକଥା କର୍ଣ୍ଣେ ନ ଶୁଣିଲେ ।

ସ୍ୱର୍ଣ୍ଣପା ତଟରେ ଯାଇ ପରବେଶ ହୋଇ
ମୋର ଦେଇଥିବା ମନ୍ତ୍ର ଜପକଲେ ତହିଁ ।
ଆହାର ତେଜି ବରଷ ପର୍ଯ୍ୟନ୍ତ ରହିଲେ
ସେ ଅନ୍ତେ ପୁଣି କଠୋର ତପ ଆଚରିଲେ ।
ଗ୍ରୀଷ୍ମକାଳେ ଚଉପାଖେ ଅନଳ ଲଗାଇ
ବସନ୍ତ ସେଥି ମଧ୍ୟରେ ଧୀର ସ୍ଥିର ହୋଇ ।
ବରଷାକାଳରେ ଯୋଗ ଆସନରେ ବସି
ଜପ କରୁଥାନ୍ତି ମୋର ମନ୍ତ୍ର ଦିବାନିଶି ।
ଶୀତକାଳେ ଶୀତଜଳ ମଧ୍ୟରେ ରହନ୍ତି
ଆହାର ବିହାର ତେଜି ଜପ କରୁଥାନ୍ତି ।
ଏହିପରି ପୁଣି ବର୍ଷେ ହୋଇଲା ଅତୀତ
ଦେଖା ନ ଦେଲେ ତଥାପି ପ୍ରଭୁ ଶୂଳହସ୍ତ ।
ସେ ସକାଶୁ ଜୀବନରୁ ଆଶା ଛାଡ଼ି ସତୀ
ଚିତାଟିଏ କରି ଅଗ୍ନି ଜାଳିଣ ଝଟତି ।
ଝାସଦେବାପାଇଁ ଯହୁଁ ଉଦ୍ୟତ ହୋଇଲେ
ଦୟାମୟ ସଦାଶିବ ତା ଜାଣି ପାରିଲେ ।
ବ୍ରାହ୍ମଣ ବାଳକ ବେଶ ବହି ପଶୁପତି
ମିଳିଲେ ସତ୍ୱରେ ଆସି ତାହାଙ୍କର କତି ।
ନିର୍ଜନ ବନରେ ସେହି ଦ୍ୱିଜ କୁମରକୁ
ଦେଖିଣ ପାର୍ବତୀ ହାସ୍ୟ କରିଲେ ତାହାଙ୍କୁ ।
ଆବର ବୋଇଲେ ତୁମ୍ଭେ କିଏ ହୋ ବ୍ରାହ୍ମଣ
କାହିଁପାଇଁ ଆସିଅଛ ଏ ଘୋର ଅରଣ୍ୟ ।
ତାହା ଶୁଣି ଦ୍ୱିଜରୂପୀ ପରମ ଈଶ୍ୱର
କହିଲେ ଦେବୀଙ୍କୁ ଚାହିଁ ସୁଧା ମୟ ଗିର ।
ବୋଇଲେ ଗୋ ଦେବୀ ମୁହିଁ ବ୍ରାହ୍ମଣ ବାଳକ
ନିଜ ଇଚ୍ଛାରେ ଭ୍ରମଣ କରେ ତିନିଲୋକ ।
ତପସ୍ୟା କରିବାପାଇଁ ନାନାସ୍ଥାନେ ବୁଲି
ଏବେ ଏହିଠାରେ ଆସି ଉପସ୍ଥିତ ହେଲି ।
ତୁମ୍ଭେ କିଏ ଅଟ ଅବା କାହାର ତନୟା
କହ ମୋ ଆଗରେ ମନୁ ଛାଡ଼ିକରି ମାୟା ।
ତପସ୍ୟାର ଅଧିଷ୍ଠାନୀ ଦେବୀପରି ତୁମ୍ଭେ
ଦିଶୁଅଛ ଏହା ଜାଣି ପାରିଲୁଣି ଆମ୍ଭେ ।
ମୂଳ ପ୍ରକୃତି ଈଶ୍ୱରୀ ଅଟ ମହାମାୟା
ଭକ୍ତଙ୍କ ଧ୍ୟାନ ସକାଶେ ପ୍ରକାଶିତ କାୟା ।
ଅଥବା ତୁମ୍ଭେ ପରମ ଲକ୍ଷ୍ମୀ ନିଜେ ଆସି
ଲୋକ ରକ୍ଷାପାଇଁ ଅଛ ରୂପାନ୍ତରେ ବସି ।
ଅମ୍ବିକା ସାବିତ୍ରୀ ଅବା ଦେବୀ ସରସ୍ୱତୀ
ମାୟାରେ ଜନମି ଅଛ କହ ଛାଡ଼ି ଖ୍ୟାତି ।
ପତିବ୍ରତା ଚିହ୍ନ ଦିଶୁଅଛି ତୁମ୍ଭଠାରେ
ତୁମ୍ଭଙ୍କୁ ଦେଖି ପ୍ରବୋଧ ଜନ୍ମୁଛି ମନରେ ।
ଯାହାଠାରେ ପତିବ୍ରତା ହୁଅନ୍ତି ସନ୍ତୋଷ
ତାଙ୍କୁ ଆଦର କରନ୍ତି ପ୍ରଭୁ ଲକ୍ଷ୍ମୀଈଶ ।
ତୁମ୍ଭେ ଯେବେ ପ୍ରକୃତରେ ଅଟ ମହାସତୀ
ପ୍ରସନ୍ନ ହୁଅ ମୋଠାରେ ଘେନ ମୋ ବିନତି ।
ଏରୂପେ ଶିଶୁର ବାକ୍ୟ ଶୁଣି ମାହେଶ୍ୱରୀ
କହିଲେ ପୀୟୂଷ ତୁଲ୍ୟ ବଚନ ଉଚ୍ଚାରି ।
ବୋଇଲେ ଆହେ ବ୍ରାହ୍ମଣ ମୋର ପରିଚୟ
ଜାଣିବାକୁ ଥିଲେ କହୁଅଛି ମନଦିଅ ।
ଶୈଳରାଜ ହିମାଳୟ ଅଟନ୍ତି ମୋ ତାତ
ତାଙ୍କ ଧର୍ମପତ୍ନୀ ଗର୍ଭୁ ହୋଇଛି ମୁଁ ଜାତ ।
ପୂର୍ବଜନ୍ମେ ଦକ୍ଷକନ୍ୟା ଶିବଙ୍କ ଘରଣୀ
ହୋଇଥିଲି ଦିନେ ତାଙ୍କ ନିନ୍ଦା କର୍ଣ୍ଣେ ଶୁଣି ।
ଦେହତ୍ୟାଗ କରି ପୁଣି ଶୈଳରାଜଘରେ
ଜାତ ହୋଇ ଶଙ୍କରଙ୍କୁ ବରିବା ଇଚ୍ଛାରେ ।
ବହୁତ ତପସ୍ୟା କରି ନ ପାଇଲି ତାଙ୍କୁ
ସେ ସକାଶୁ ବସିଅଛି ଦେହ ତେଜିବାକୁ ।
ଏହିକ୍ଷଣି ଅନଳରେ ଝାସ ଦେଇକରି
ଦେବି ମୋର ପ୍ରିୟତମ ଦେହକୁ ସଂହାରି ।
ତୁମ୍ଭଙ୍କୁ ଦେଖିବା ହେତୁ କ୍ଷଣେ ଅଛି ରହି
ନୋହିଲେ ଅଗ୍ନିରେ ପଡ଼ି ହୁଅନ୍ତିଣି ଦହି ।
ଏବେ ତୁମ୍ଭେ ଯେଣେ ଇଚ୍ଛା ହୋଇଅଛି ଯାଅ
ପ୍ରାର୍ଥନା କରୁଛି ଆଉ ଏଠାରେ ନ ରହ ।
ଅନ୍ୟ ଜନ୍ମରେ ଶିବଙ୍କୁ ପତିରୂପେ ମୁହିଁ
ପାଇବା ସକାଶେ ନାଶିବି ଝାସ ଦେଇ ।
ଏମନ୍ତ କହିଣ ଦେବୀ ଅନଳ ମଧ୍ୟକୁ
ଡେଇଁଲେ ସେକ୍ଷଣି ଆଉ ନ ଚାହିଁ ଦ୍ୱିଜକୁ ।
ଶିବଙ୍କର ମୂର୍ତ୍ତ୍ୟନ୍ତର ଅଟନ୍ତି ତ ବହ୍ନି
ପାର୍ବତୀଙ୍କ ଅଙ୍ଗ ଦଗ୍ଧ ନ କଲେ ସେ ଘେନି ।
କ୍ଷଣେଯାଏ ରହି ଦେବୀ ଅନଳ ମଧ୍ୟରେ
ତପବଳେଭସ୍ମୀଭୂତ ନୋହିଣ ତହିଁରେ ।
ବାହାରକୁ ପୁଣି ଆସିବାରୁ ତାଙ୍କୁ ଦେଖି
ପଚାରିଲେ ଦ୍ୱିଜରୂପୀ ଶିବ ହୋଇ ସୁଖୀ ।

ବୋଇଲେ ଗୋ ଦେବୀ ତୁମ୍ଭେ ମହାତପସ୍ୱିନୀ
ପ୍ରଚଣ୍ଡ ଅଗ୍ନିରେ ଦଗ୍ଧ ନ ହେଲ ସେ ଘେନ
ଏମନ୍ତ ହୋଇବାଠାରେ କାଙ୍କ୍ଷିକ ଶିବଙ୍କୁ
ମନ ବଳାଇଛ ପତିରୂପେ ବରିବାକୁ ।
ଶିବ ତ ଅନନ୍ତ ସୃଷ୍ଟି ସଂହାର କରତା
ତାଙ୍କଠାରେ ଅନୁରକ୍ତ ହୋଇବାରେ ବୃଥା ।
ମୋକ୍ଷ ଅବା ଭୋଗଇଚ୍ଛା କରିଅଛ ଯେବେ
ଶିବଙ୍କୁ ବରିଲେ ନାଶ ହେବ ତାହା ତେବେ ।
ଏ ସକାଶୁ ବୋଲୁଅଛୁ ହରିଙ୍କୁ ସ୍ମରଣ
କର ଅନ୍ୟକଥା ମନୁ ଛାଡ଼ି ଅନୁକ୍ଷଣ ।
ଲେଉଟିଣ ଯାଅ ଏବେ ପିତାଙ୍କ ମନ୍ଦିରେ
ନିଶ୍ଚୟ ଶିବଙ୍କୁ ଦେଖି ପାରିବ ସେଠାରେ ।
ଏରୂପେ କହି ବ୍ରାହ୍ମଣରୂପୀ ତ୍ରିଲୋଚନ
ବୃଦ୍ଧଁ ବୃଦ୍ଧଁ କ୍ଷଣମାତ୍ରେ ହେଲେ ଅନ୍ତର୍ଦ୍ଧାନ ।
ତାଙ୍କ ବୋଲ ଅନୁସାରେ ପର୍ବତ କୁମାରୀ
ପିତାଙ୍କ ଗୃହକୁ ଗଲେ ତପ ଛାଡ଼ିକରି ।
ପାର୍ବତୀ ଆସିବା କଥା ଶୁଣି ହିମାଳୟ
ଗଲେ ଆନନ୍ଦରେ ପୂର୍ଣ୍ଣ କରିଣ ହୃଦୟ ।
ମେନକା ଆଦି ସମସ୍ତ ପୁରସ୍ତ୍ରୀ ଗଣ
ପାଛୋଟି ଗଲେ ସୁତାଙ୍କ ପାଶେ ତତକ୍ଷଣ ।
ମଙ୍ଗଳ ଉତ୍ସବ ସବୁ ସ୍ଥାନରେ କରାଇ
ପୂର୍ଣ୍ଣକୁମ୍ଭମାନ ଦ୍ୱାରେ ରଖାଇଲେ ନେଇ ।
ଖଣ୍ଡିବୁଢ଼ି ତନୟାଙ୍କୁ ଦେଖି ଆନନ୍ଦରେ
ପୁରକୁ ନେଲେ ବସାଇ ଦିବ୍ୟ ବିମାନରେ ।
ସଖୀଙ୍କ ସହିତେ ଦେବୀ ଉପସ୍ଥିତ ହୋଇ
ପିତା ମାତାଙ୍କ ଚରଣେ ପ୍ରଣାମକଲେ ତହିଁ ।
ଆଶୀର୍ବାଦ କରି ତାଙ୍କୁ ଜନନୀ ପିଅର
କୋଳେ ଘେନି ଅଶ୍ରୁଜଳେ ଧୋଇଲେ ଶିର ।
ସେ ଅନ୍ତେ ଦ୍ୱିଜଙ୍କୁ ଡାକି ସୁବର୍ଣ୍ଣ ରତନ
ବସ୍ତ୍ର ସହିତରେ ଦେଲେ କରିଣ ଯତନ ।
ଦେବତା ମନ୍ଦିରେ ଶୁଭକର୍ମ କରାଇଲେ
କର୍ମଠ ଦ୍ୱିଜଙ୍କ ମୁଖେ ବେଦ ପାଠକଲେ ।
ଏହିପରି ଆନନ୍ଦରେ କେତେ କାଳଯାଏ
ରହିଲେ ସୁତାଙ୍କୁ ଘେନି ପତିପତ୍ନୀ ଦୁହେଁ ।
ଥରେ ତପ କରିବାକୁ ପର୍ବତ ଈଶ୍ୱର
ପ୍ରୟାଣ କରିଲେ ମନ୍ଦାକିନୀ ନଗରର ।

ମେନକା ସୁତାଙ୍କ ତୁଲେ ଆପଣା ମନ୍ଦିରେ
ରହି ଦିନ କଟାଇଲେ ହରଷ ମନରେ ।
ଏହି ସମୟରେ ଏକ ଭିକ୍ଷୁ ନୃତ୍ୟକର
ମିଳିଲେ ଆସି ମେନକା ପାଶରେ ସତ୍ୱର ।
ଦକ୍ଷିଣ ହସ୍ତେ ଡମ୍ବରୁ ଶୃଙ୍ଗ ବାମକରେ
ବିଭୂତି ଲେପିତ ସର୍ବ ଅଙ୍ଗ ପ୍ରତ୍ୟଙ୍ଗର ।
ମସ୍ତକରେ ପିଙ୍ଗବର୍ଣ୍ଣ ସ୍ଥୂଳ ଜଟାଭାର
କଟି ତଟରେ ରକତ ବାସ ମନୋହର ।
ଏମନ୍ତ ରୂପରେ ଭିକ୍ଷୁ ଆସି ସେହିଠାରେ
କ୍ଷଣେଯାଏ ଶୃଙ୍ଗଯନ୍ତ୍ର ବଜାଇ ସୁସ୍ୱରେ ।
ପୁଣି ଡମ୍ବରୁ ବଜାଇ ନୃତ୍ୟ ଆରମ୍ଭିଲେ
ପଞ୍ଚମ ସ୍ୱରେ ଉତ୍ତମ ଗୀତ ଗାନକଲେ ।
ତାହା ଶୁଣି ବାଳବୃଦ୍ଧ ଯୁବା ଆଦିକରି
ପ୍ରବେଶ ହୋଇଲେ ଶୈଳରାଜାଙ୍କ ନଗରୀ ।
ସମସ୍ତେ ସେ ଗୀତ ଶୁଣି ମୋହିତ ହୋଇଲେ
ଶିଳ ପିତୁଳା ପରାୟେ ଅନାଇଁ ରହିଲେ ।
ପାର୍ବତୀ ଦେବୀ ସେକାଳେ ଚେତନା ହରାଇ
ରହିଲେ ମୁହୂର୍ତ୍ତେ ଯାଏ ସ୍ତମ୍ଭୀଭୂତ ହୋଇ ।
ସେ ଅନ୍ତେ ନିଜ ହୃଦୟ ମଧ୍ୟରେ ଶିବଙ୍କୁ
ଦେଖିଲେ ସ୍ୱପନ ପ୍ରାୟେ ହରଷି ମନକୁ ।
ତ୍ରିଶୂଳ ପଟ୍ଟିଶ ହସ୍ତ ବ୍ୟାଘ୍ର ଚର୍ମଧର
ବିଭୂତି ଭୂଷିତ ଦେହ ରୂପ ମନୋହର ।
ଈଷତହାସ ମଣ୍ଡିତ ପ୍ରଫୁଲ୍ଲ ବଦନ
ଜଟାଜୂଟ ଧାରୀ ପଞ୍ଚବକ୍ତ୍ର ତ୍ରିଲୋଚନ ।
ଦେଖି ତାଙ୍କୁ ନମସ୍କାର କରି ମନେ ମନେ
ପ୍ରଣାମ କଲେକ ପୁଣି ଚରଣରେ କ୍ଷଣେ ।
ଈଶ୍ୱର ବୋଇଲେ ବର ମାଗ ସୁରୁକେଶୀ
ଦେବା ପାଇଁ ତୁମ୍ଭ ସମୀପକୁ ଅଛୁ ଆସି ।
ପାର୍ବତୀ ବୋଇଲେ ପ୍ରଭୁ ହୁଅ ମୋର ପତି
ଅନ୍ୟ ବର ମାଗିବାକୁ ନ ବଳଇ ମତି ।
ଏମନ୍ତ ବୋଲିଣ ଦେବୀ ଚେତନା ପାଇଲେ
ପୂର୍ବପରି ଭିକ୍ଷୁକଙ୍କୁ ଆଗରେ ଦେଖିଲେ ।
ସେକାଳେ ମେନକା ଦେଖି ଭିକ୍ଷୁକର ନୃତ
ଧନରତ୍ନ ଆଣି ତାଙ୍କୁ ଯାଚିଲେ ବହୁତ ।
ଗ୍ରହଣ ନ କରି ତାହା ନର୍ତ୍ତକ ପ୍ରବର
ବୋଇଲେ ତୁମ୍ଭ କନ୍ୟାକୁ ମୋତେ ଦାନକର

ଏହା କହି ପୁନଃପୁନ ନୃତ୍ୟ ଗୀତମାନ
ଆନନ୍ଦ କୌତୁକ ଭରେ କଲେ ସେହୁ ଜାଣ ।
ମେନକା ସେ କଥା ଶୁଣି ମହାକ୍ରୋଧଭରେ
ଭତ୍ସନା କରି ତାହାଙ୍କୁ ବହୁତ ପ୍ରକାରେ ।
ବୋଇଲେ ରେ ମୂର୍ଖ ତୁହି ହୋଇଛୁ କି ଅନ୍ଧ ।
ଲୋଡ଼ୁଛୁ ପାର୍ବତୀ ସଙ୍ଗେ ବିବାହ ସମ୍ବନ୍ଧ ।
ଶିବଙ୍କର ପତ୍ନୀ ସେ ତ ପତିବ୍ରତା ସତୀ
କହ କିରୂପେ ହୋଇବ ତୋର ପ୍ରିୟବତୀ ।
ଘୃତର ଆହୁତି ବିନା ଅଗ୍ନି ସେବା କରେ
ସମ୍ଭବ ଅଟେ କି ତାହା ଅନ୍ୟ ତେଜଠାରେ ।
ଏମନ୍ତ ବୋଲି ଭୃତ୍ୟଙ୍କୁ ଆଜ୍ଞାଦେଲେ ସହିଁ
ବୋଇଲେ ଏହାକୁ ଘଉଡ଼ି ଆସ ଦୂରେ ନେଇ ।
ସେ କାଳେ ତପରୁ ଉଠି ପର୍ବତ ଈଶ୍ୱର
ଉପସ୍ଥିତ ହେଲେ ଆସି ଆପଣା ମନ୍ଦିର ।
ମେନାଙ୍କ ମୁଖରୁ ଶୁଣି ଭିକ୍ଷୁକ ବୃତ୍ତାନ୍ତ
କଉତୁକ ଅମର୍ଷରେ ପୂର୍ଣ୍ଣକରି ଚିତ୍ତ ।
ନଗର ବାହାରେ ନେଇ ଭିକ୍ଷୁ ବାପୁଡ଼ାକୁ
ଘଉଡ଼ିବା ପାଇଁ ମଧ୍ୟ ଦେଲେ ଅନୁଜ୍ଞାକୁ ।
ଭୃତ୍ୟମାନେ ଆଜ୍ଞାପାଇ ସେହିକ୍ଷଣି ଗଲେ
ଭିକ୍ଷୁକ ପାଶରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଆକାଶପରି ଦୁର୍ଦ୍ଧର୍ଷ ମୂରତି
ଜଳୁଅଛନ୍ତି ସେ ବ୍ରହ୍ମ ତେଜବଳେ ଅତି ।
ଭୟରେ ପରଶ କରି ନ ପାରି ତାହାଙ୍କୁ
ଜଣାଇଲେ ପୁଣି ଆସି ରାଜାଙ୍କ ପାଶକୁ ।
ତାହା ଶୁଣି ହିମାଳୟ ବେଗ ହୋଇ ଯାଇ
ଭିକ୍ଷୁକ ଦେହକୁ ନମସ୍କାର କଲେ ତହିଁ ।
ଦେଖିଲେ ସେ ସାକ୍ଷାତରେ ଦେବ ଜନାର୍ଦ୍ଦନ
ନବ ଜଳଧର ପରି ଶ୍ୟାମଳ ବରନ ।
ଚତୁର୍ଭୁଜେ ଶଙ୍ଖ ଚକ୍ର ଗଦା ପଦ୍ମ ଥାଇ
ଭକତ ଜନଙ୍କ ମନ ସନ୍ତୁଷ୍ଟ କରଇ ।
ପ୍ରତି ଅଙ୍ଗରେ କୁଙ୍କୁମ କସ୍ତୁରୀ ଚନ୍ଦନ
ଲେପିତ ହେବାରୁ ଦିଶୁଥିଲା ଶୋଭାବନ ।
ବିଷ୍ଣୁ ପୂଜା କଲାବେଳେ ଯେଉଁ ଦ୍ରବ୍ୟ ଗିରି
ଦେଇଥିଲେ ବେଦବାକ୍ୟ ବଚନେ ଉଚ୍ଚାରି ।
ସେ ସମସ୍ତ ଭିକ୍ଷୁଙ୍କର ଦେହରେ ଦେଖିଲେ
ଲାଗି ରହିଅଛି ନାନାସ୍ଥାନରେ ନିଷ୍ଠଳେ ।

କ୍ଷଣକ ଅନ୍ତରେ ପୁଣି ଦେଖିଲେ ତାହାଙ୍କୁ
ଧାରଣା କରିଅଛନ୍ତି ଶିବଙ୍କ ରୂପକୁ ।
ତ୍ରିଶୂଳ ଡମ୍ବରୁ ନାଗ ଯଜ୍ଞ ଉପବୀତ
ବିଭୂତି ଆଦିରେ ହୋଇଅଛନ୍ତି ସେ ଯୁକ୍ତ ।
ସ୍ଫଟିକ ମାଳିକା ଧରି ଶ୍ରୀହରିଙ୍କ ନାମ
ଜପୁ ଅଛନ୍ତି ସର୍ବଦା ହୃଦେ ବହି ପ୍ରେମ ।
କ୍ଷଣକ ଅନ୍ତରେ ପୁଣି ସୂର୍ଯ୍ୟରୂପ ହେଲେ
ପ୍ରଚଣ୍ଡ ତେଜରେ ଦଶଦିଗ ପ୍ରକାଶିଲେ ।
ପୁଣି କ୍ଷଣ କ୍ଷଣକରେ ନାନା ସ୍ୱରୂପରେ
ପ୍ରକାଶିତ ହେଲେ ହିମାଳୟଙ୍କ ଆଗରେ ।
ଏହିରୂପେ ତାହାଙ୍କର ସ୍ୱେଚ୍ଛାମୟ ରୂପ
ଦେଖି ହିମାଳୟ ମନୁ ଛାଡ଼ିଦେଇ କୋପ ।
ଚରଣରେ ଦଣ୍ଡବତ ହୋଇଣ ପଡ଼ିଲେ
ଉଠି ପ୍ରଦକ୍ଷିଣ କରି କରକୁ ଯୋଡ଼ିଲେ ।
ସେ ଅନ୍ତେ ଦେଖିଲେ ପୁଣି ପୂର୍ବ ଭିକ୍ଷାବେଶ
ବହି ଅଛନ୍ତି ଗୋଟିଏ ପାତ୍ର ହସ୍ତ ଦେଶ ।
ଅନ୍ୟ ପଦାର୍ଥରେ ତାହାଙ୍କର ଇଚ୍ଛା ନାହିଁ
ପ୍ରାର୍ଥନା କରୁ ଅଛନ୍ତି ପାର୍ବତୀଙ୍କ ପାଇଁ ।
ବିଷ୍ଣୁ ମାୟାରେ ମୋହିତ ହେବାରୁ ଶୈଳେଶ
ପୂରଣ ନ କଲେ କେବେ ଭିକ୍ଷୁଙ୍କର ଆଶ ।
ସେ ସକାଶୁ କ୍ଷଣେ ମାତ୍ର ରହି ତ୍ରିଲୋଚନ
ସେମାନଙ୍କ ସମକ୍ଷରେ ହେଲେ ଅନ୍ତର୍ଦ୍ଧାନ ।
ମେନକା ଶୈଳରାଜା ଦୁହେଁ ଦେଖି ତାହା
କି ହେଲା ବୋଲି ସେକାଳେ କଲେ ଆହା ଆହା
ବୋଇଲେ ଜଗତ ପ୍ରଭୁ ଦେବ ଶୂଳପାଣି
ବଞ୍ଚିତ କରିଣ ଗଲେ ଆମ୍ଭ ଦୋଷ ଜାଣି ।
ଏମନ୍ତ ବୋଲି ବହୁତ ଶୋକ କରି ଦୁହେ
ଶିବଙ୍କଠାରେ ମାନସ ଦେଲେ ଅତିଶୟେ ।
ତାହା ଦେଖି ଇନ୍ଦ୍ର ଆଦି ଦେବେ ବସି କରି
ଭାବିଲେ ଶିବଙ୍କୁ କେଡ଼େ ଭକ୍ତି କଲେ ଗିରି ।
ଯେବେ ଯାଚି କରି ନିଜ କନ୍ୟା ତାଙ୍କୁ ଦେବେ
କ୍ଷଣକ ମଧ୍ୟରେ ତେବେ ମୁକତି ପାଇବେ ।
ଅନନ୍ତ ରତ୍ନ ଆଧାର ଯେଉଁ ହିମବାନ
ସେ ଯେବେ ହୋଇବେ ବ୍ରହ୍ମ ସ୍ୱରୂପରେ ଲୀନ ।
ତେବେ ରତ୍ନ ଶୂନ୍ୟ ହେବ ଆମ୍ଭର ନଗର
ଧନ୍ୟ ବୋଲାଇବେ ଲୋକେ ଶୈଳ ଈଶ୍ୱର ।

କନ୍ୟା ଯେ ଅଟଇ ଦଶବାର୍ଷିର ସମାନ
ଉତ୍ତମ ଦ୍ୱିଜଙ୍କୁ ତାଙ୍କୁ କରଇ ଯେ ଦାନ ।
ଅନ୍ତଃକାଳେ ସ୍ୱର୍ଗପୁରେ ବସଇ ସେ ଜନ
ଆଦର କରନ୍ତି ପାଶେ ବସି ମଘବାନ ।
ସନ୍ଧ୍ୟା ତରପଣ ଆଦି ନିତ୍ୟ କର୍ମ ଯେତେ
ତାହା କରୁଥାଏ ଯେଉଁ ବିପ୍ର ଶୁଦ୍ଧଚିତ୍ତେ ।
ତାଙ୍କୁ କନ୍ୟାଦାନ କଲେ ଅର୍ଦ୍ଧ ଫଳ ହୁଏ
ଶାସ୍ତ୍ରରେ ଏରୂପେ ଲେଖି ଅଛନ୍ତି ମୁନିଏ ।
ଅଜ୍ଞାନୀ ପାଷାଣ୍ଡ ହୋଇଥିଲେହେଁ ବ୍ରାହ୍ମଣ
କନ୍ୟାଦାନ କଲେ ତାର ହୁଏ ଅଳ୍ପ ପୁଣ୍ୟ ।
କେବଳ ପାପିଷ୍ଠ ଶଠ ଜାରଜଙ୍କୁ ଦେଲେ
ନରକ ଗମନ ହୋଇଥାଏ ଜାଣ ଭଲେ ।
ବିଷ୍ଣୁ ଭକ୍ତ ସତ୍ୟବାଦୀ ଜ୍ଞାନୀ ବ୍ରାହ୍ମଣଙ୍କୁ
କନ୍ୟା ଦେବା ଲୋକ ଯାଏ ବୈକୁଣ୍ଠ ପୁରକୁ ।
ବିଷ୍ଣୁ ଉପାସକ ଯେବେ ଶଙ୍କରଙ୍କୁ ସୁତା
ଦାନକରେ ହୁଅଇ ସେ ସାକ୍ଷାତେ ଦେବତା ।
ହରଙ୍କୁ ପ୍ରଦାନ କଲେ ତାହାଙ୍କର ବାସ
ହୁଅଇ ଶଙ୍କର ଅନ୍ତେ ସେ ଲୋକ ଅବଶ୍ୟ ।
ଏହିରୂପେ ଆଲୋଚନା କରିଣ ସମସ୍ତେ
ବୃହସ୍ପତିଙ୍କ ପାଶରେ ମିଳିଲେ ତ୍ୱରିତେ ।
ପ୍ରଣାମ କରି ତାହାଙ୍କୁ ବୋଇଲେ ଆପଣ
ହିମାଳୟ ସମୀପକୁ କରନ୍ତୁ ପ୍ରୟାଣ
ଶିବଙ୍କର ନିନ୍ଦାବାଦ କରି ତାଙ୍କ ଆଗେ
ଯେ ରୂପେ ସେ ନିବର୍ତ୍ତିବେ ମନର ବିରାଗେ ।
ତାହାଙ୍କ ସୁତା ପାର୍ବତୀ ବିନା ଶଙ୍କରଙ୍କୁ
ଇଚ୍ଛା ନ କରନ୍ତି ଆଉ କେଉଁ ଦେବତାଙ୍କୁ ।
ଅଯାଚକ ଭାବରେ ତ ଅଛନ୍ତି ଶଙ୍କର
ଦେଲେ ତାଙ୍କୁ ମୁକ୍ତ ହେବେ ଶଇଳ ଈଶ୍ୱର ।
ସେ ସକାଶୁ ତୁମ୍ଭେ ନିଜ ବୁଦ୍ଧି କଉଶଳେ
ଅନନ୍ତ ଦେହ ଭଣ୍ଡାର ରଖ ମହୀତଳେ ।
ତାହା ଶୁଣି ବୃହସ୍ପତି ଶ୍ରୀହରିଙ୍କୁ ସ୍ମରି
ଦେବଙ୍କୁ କହିଲେ ପୁଣି ଧୀରସ୍ୱର କରି ।
ବୋଇଲେ ମୋହର ବାକ୍ୟ ଶୁଣ ଦେବଗଣ
ଶିବ ବିଷ୍ଣୁଙ୍କର ଭକ୍ତ ଅଟେ ଯେଉଁଜନ ।
ଆଉର ବ୍ରାହ୍ମଣ ଗୁରୁ ପତିବ୍ରତା ସ୍ତ୍ରିୟା
ଏହାଙ୍କୁ ଯେ ମୂର୍ଖ ପଣେ ନିନ୍ଦେ ନ ବିଚାରି ।

ଦେବତା ଭକ୍ତଙ୍କ ବ୍ରହ୍ମଚାରୀ ମୁନିଋଷି
ଏମାନଙ୍କୁ ମଧ୍ୟ ଯେହୁ ନିନ୍ଦେ ଅହର୍ନିଶି ।
ସେହି ଲୋକମାନେ ଦେହ ଅନ୍ତେ କାଳସୂତ୍ରେ
ପଡ଼ିଣ ବିବିଧ କ୍ଲେଶ ସହୁଥାନ୍ତି ଗାତ୍ରେ ।
ପାର୍ବତୀ ତୁଳସୀ ଗଙ୍ଗା ଲକ୍ଷ୍ମୀ ସରସ୍ୱତୀ
ବେଦମାତା ବ୍ରତ ତପ ମନ୍ତ୍ର ଦେବସ୍ତୁତି ।
ଗୀତା ପୂଜା ଯାଗ ହୋମ ବେଦ ଅଧ୍ୟୟନ
ଏହାଙ୍କୁ ନିନ୍ଦା କରନ୍ତି ଯେଉଁ ମୂଢ଼ ଜନ ।
ସେମାନେ ବ୍ରହ୍ମାଙ୍କ ଅର୍ଦ୍ଧ ପରମାୟୁ କାଳ
ଅନ୍ଧକୂପ ନରକରେ ହୁଅନ୍ତି ଆକୁଳ ।
ରାଧିକା ତାହାଙ୍କ ସଖୀ ଗୋପିଙ୍କୁ ଯେ ଲୋକ
ନିନ୍ଦା କରଇ ହରଇ ଆପଣା ବିବେକ ।
ତାହାଙ୍କୁ ଯମ କିଙ୍କରେ ନରକେ ପକାଇ
ଲୌହ ଦଣ୍ଡ ଧରି ଆଣ୍ଠେ ପିଟନ୍ତି ନିଠାଇ ।
ମୁଁ ଯେବେ ଶିବଙ୍କ ନିନ୍ଦା ମୁଖେ ଉଚ୍ଚାରିବି
ନିଶ୍ଚୟ ନରକ ମଧ୍ୟେ ଯାତନା ପଡ଼ିବି ।
ତୁମ୍ଭେମାନେ ମୋର ପ୍ରିୟ ଶିଷ୍ୟ ହୋଇ କଟେ
କରାଇବ ଏଡ଼େ ଅପକାରକୁ କପଟେ ।
ପୂର୍ବକାଳେ ସ୍ୱସୁତାଙ୍କୁ ଦକ୍ଷପ୍ରଜାପତି
ଶିବଙ୍କୁ ପ୍ରଦାନ କଲେ ବହି ମନେ ପ୍ରୀତି ।
ତଥାପି ସେ ମୁକ୍ତିମାର୍ଗ ପାଇ ନ ପାରିଲେ
କେତେକାଳ ପରେ ହର ନିନ୍ଦକ ହୋଇଲେ ।
ତୁମ୍ଭମାନଙ୍କ ମଧ୍ୟରୁ ଜଣେ କେହି ଯାଅ
ହିମାଳୟଙ୍କ ଗୃହରେ ପରବେଶ ହୁଅ ।
ସମ୍ପାଦନ କରି ତହିଁ ନିଜ ଅଭିମତ
ତେମନ୍ତ ହେଲେ ମଙ୍ଗଳ ପାଇବ ବହୁତ ।
ପରମ ଭକ୍ତିରେ ଯେବେ ହିମାଳୟ ରାଜା
ଶିବଙ୍କ ହସ୍ତେ ଅର୍ପଣ କରିବେ ତନୁଜା ।
ତେମନ୍ତ ହେଲେ ସାଯୁଜ୍ୟ ମୁକତି ପାଇବେ
ଯେବେ ଅବା ଅନିଚ୍ଛାରେ ଯାଚି ଦେଇଥିବେ
ତେବେ ପରମ ଐଶ୍ୱର୍ଯ୍ୟ ଭୋଗକରି ଲୋକେ
ରହିବେ ଆଦିତ୍ୟ ଚନ୍ଦ୍ରଥିବା ଦିନଯାକେ ।
ସେ ଅନ୍ତେ ସପତ ଋଷିଗଣ ଯାଇକରି
ନେଇବେ ତାହାଙ୍କୁ ନିଜପତ୍ନୀ ସଙ୍ଗେ ଧରି ।
ଆହେ ଦେବଗଣ ତୁମ୍ଭେ ଯାଅ ନିଜପୁର
ଏକଚିତ୍ତ ହୋଇ କର ଉଚିତ ବିଚାର ।

ଏହିରୂପେ ବୃହସ୍ପତି କହିଣ ଦେବଙ୍କୁ
ଗଲେ ମନ୍ଦାକିନୀ ତୀରେ ତପ କରିବାକୁ ।
କହଇ କ୍ଷେତ୍ରମୋହନ ଯୋଡ଼ି ବେନିକର
ମୋ ଚିତ୍ତ ଉଦ୍ଧାର କରନ୍ତୁ କମଳାର ବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ପାର୍ବତୀଙ୍କର ତପ ଓ
ଶିବଙ୍କଠାରୁ ବରପ୍ରାପ୍ତ କଥନେ ନାମ ଚତ୍ୱାରିଂଶୋଽଧ୍ୟାୟଃ ।

——୪୦ଃ——

## ଏ କ ଚ ତ୍ୱା ରିଂ ଶ ଅ ଧ୍ୟା ୟ

## ହିମାଳୟଙ୍କ ଆଗରେ ଶିବଙ୍କର ଆତ୍ମନିନ୍ଦା ଓ ମୁନିମାନଙ୍କର ହିମାଳୟଙ୍କୁ ସଦୁପଦେଶ ପ୍ରଦାନ

ଶ୍ରୀକୃଷ୍ଣ ବୋଇଲେ ଶୁଣ ବ୍ରଜ ଅଧୀଶ୍ୱରୀ
ବୃହସ୍ପତିଙ୍କ ବଚନ ଦେବେ ଶୁଣିକରି ।
ସଭାରେ ସମସ୍ତେ ବସି ବିଚାରି ଛଡ଼ାଇ
ବ୍ରହ୍ମାଙ୍କ ପାଶରେ ଜଣାଇଲେ ବେଗେ ଯାଇ ।
ବୋଇଲେ ଶୁଣିବା ହେଉ ଆହେ ପିତାମହ
ଅଶେଷ ରତ୍ନ ନିବାସ ଯେଉଁ ହିମାଳୟ ।
ସେ ଏବେ ନିଜସୁତାଙ୍କୁ ଶଙ୍କରଙ୍କୁ ଦେଇ
ବସି ଅଛନ୍ତି ମୁକତି ପାଇବାର ପାଇଁ ।
ତେମନ୍ତ ହେଲେ ପୃଥିବୀ ରତ୍ନଶୂନ୍ୟ ହେବ
ଏଥିରେ ସନ୍ଦେହ ଆଉ ନାହିଁ ଜାଣ ଲବ ।
ଆପଣ ଶୈଳଗୃହକୁ ଯାଇଣ ସତ୍ୱର
ବିଧାନ କରିବା ହେବେ ତାର ପ୍ରତିକାର ।
କେବଳ ତାହାଙ୍କ ଆଗେ ଶିବଙ୍କୁ ନିନ୍ଦିବ
ଯେରୂପେ ସେ ପାର୍ବତୀଙ୍କୁ ବିଭା ନ କରିବେ ।
ଏହା ଶୁଣି ପ୍ରଜାପତି ବୋଇଲେ କପରି
ଶିବଙ୍କର ନିନ୍ଦାବାକ୍ୟ କହିବି ଉଚାରି ।
ସେ ପ୍ରଭୁ ଜଗତକର୍ତ୍ତା ତ୍ରୈଲୋକ୍ୟ ଈଶ୍ୱର
ତାହାଙ୍କୁ ନିନ୍ଦା କରିବ ଅବା କେଉଁ ଗ୍ଦର ।
ତୁମ୍ଭେମାନେ ଏବେ ମୋର ବୋଲ ଘେନିଯାଅ
ଶିବଙ୍କୁ ସମସ୍ତ କଥା ବୁଝାଇଣ କହ ।
ସେ ଯାଇ ହିମାଳୟଙ୍କ ଗୃହରେ ମିଳିବେ
ଆପଣାର ନିନ୍ଦା ନିଜେ କରିଣ ଆସିବେ ।
ତେମନ୍ତ ହେଲେ ତୁମ୍ଭର କାର୍ଯ୍ୟସିଦ୍ଧି ହେବ
କାହାଠାରେ ଆଉ କିଛି ଦୋଷ ନ ଲଗିବ ।
ପରଲୋକର ଦୋଷକୁ କହେବାକୁ ନାଶ
ନିଜକୁ ନିନ୍ଦା କରିବା ଅଟେ ଜାଣ ଯଶ ।
ଏହିରୂପେ ବ୍ରହ୍ମାଙ୍କର ବଚନକୁ ଶୁଣି
କୈଳାସକୁ ଦେବଗଣ ଗଲେ ସେହିକ୍ଷଣି ।
ମହାଦେବଙ୍କ ଆଗରେ ସମସ୍ତ କହିଲେ
ଶୁଣିଣ ଶଙ୍କର ତାହା ଉଚ୍ଚରେ ହସିଲେ ।
ସନମତ କରି ନିଜେ ବିପ୍ରରୂପ ବହି
ଗଲେ ହିମାଳୟ ସଭା କରିଥିଲେ ଯହିଁ ।
ବିଦାୟ ହୋଇ ଦେବତାଗଣ ଆନନ୍ଦରେ
ମିଳିଲେ ସେକାଳେ ଯାଇ ସେ ଯାହାର ପୁରେ ।
ଏଥୁଅନ୍ତେ ହିମାଳୟ ବନ୍ଧୁବର୍ଗ ଭୁଲେ
ସଭାମଧ୍ୟେ ବସି ନାନାକଥା ଭାବୁଥିଲେ ।
ବିପ୍ରରୂପୀ ସଦାଶିବ ସେହିଠାକୁ ଯାଇ
ପ୍ରବେଶ ହୋଇଲେ ଦଣ୍ଡ କମଣ୍ଡଳୁ ବହି ।
ଦେଖି ତାଙ୍କୁ ଶୈଳରାଜ ଆସନରୁ ଉଠି
ପ୍ରଣମିଲେ ଦଣ୍ଡପରି ମହୀଦେଶେ ଲୋଟି ।
ସ୍ୱର୍ଣ୍ଣ ଆସନେ ବସାଇ କୁଶଳ ପୁଚ୍ଛିଲେ
ପୁଣି ନାନାକଥା କହି ମନକୁ ତୋଷିଲେ ।
ଆଦରେ ବୋଇଲେ କିଏ ଅଟନ୍ତି ଆପଣ
କି କାର୍ଯ୍ୟେ କଲ ଏଠାକୁ ଶୁଭ ଆଗମନ ।
ବ୍ରାହ୍ମଣ ବୋଇଲେ ମୁହିଁ ଘଟକ ଘଟକ
ଇଚ୍ଛା ପ୍ରକାରେ ଭ୍ରମଣ କରେ ତିନିଲୋକ ।
ସର୍ବାଙ୍ଗ ବିଦ୍ୟାରେ ମୋହପରି କେହି ନାହିଁ
କରସ୍ଥ ତ ପ୍ରାୟେ ସବୁ ବିଷୟ ଜାଣଇ ।

ଜ୍ଞାନବଳେ ଜାଣିଲି ମୁଁ ତୁମ୍ଭର ସୁତାକୁ
ବିଚାର କରିଛ ଦେବାପାଇଁ ଶଙ୍କରଙ୍କୁ ।
ସେ ସକାଶୁ ନିବାରଣ କରିବାର ପାଇଁ
ଆସିଲି ବହୁତ ଦୂର ତୁମ୍ଭଠାକୁ ଧାଇଁ ।
କୁଳଶୀଳରେ ହୀନ ଅଟନ୍ତି ଶଙ୍କର
କରନ୍ତି ସବୁବେଳେ ଶ୍ମଶାନରେ ଘର ।
ଶବ ସଂସ୍କାର ପାଉଁଶ ଦେହଯାକ ବୋଳି
ଲମ୍ବାଇ ଅଛନ୍ତି ଗଳଦେଶେ ଅସ୍ଥିମାଳି ।
ବସନ ବିହୀନେ ହୋଇଅଛନ୍ତି ଲଙ୍ଗଳା
ଦେହ ମୁଣ୍ଡେ ବିଷଧର ସର୍ପ ଭେଳାଭେଳା
ପରମ ସୁନ୍ଦରୀ ଯେଉଁ କନ୍ୟକା ତୁମ୍ଭର
କିରୂପେ ଦେବ ତାହାଙ୍କୁ କହ ମୋ ଆଗର ।
ଉପଯୁକ୍ତ ପାତ୍ର ସେହି ନୋହିଛନ୍ତି ଜାଣ
ତାହାଙ୍କୁ ଦେବା ଉଚିତ ନୁହେ ଗିରିରାଣ ।
ଜ୍ଞାନୀଙ୍କ ମଧ୍ୟରେ ତୁମ୍ଭେ ଅଟ ତ ଉତ୍ତମ
କି ହେତୁରେ ହେଲା ଅବା ତୁମ୍ଭ ମତିଭ୍ରମ ।
ଏକଥା ଶୁଣିବା ମାତ୍ରେ ମହାଜନମାନେ
ହସିବେ କି ନାହିଁ ଥରେ ବିଚାର ତ ମନେ ।
ପାର୍ବତୀଙ୍କ ବିନା ଅନ୍ୟ ବାନ୍ଧବମାନଙ୍କୁ
ପଚାର ଶୁଣିବ କି ବୋଲିବେ ସେ ତୁମ୍ଭଙ୍କୁ ।
ଏମନ୍ତ କହି ବ୍ରାହ୍ମଣ ସ୍ନାନ ସନ୍ଧ୍ୟା କଲେ
ଭୋଜନ କରିଣ ନିଜ ପୁରେ ଚଳିଗଲେ ।
ମେନକା ଶୁଣି ଦ୍ୱିଜଙ୍କ ବଚନ କର୍ଣ୍ଣରେ
କହିଲେ ରାଜାଙ୍କ ଆଗେ ଦୁଃଖିତ ମନରେ ।
ବୋଇଲେ ଆହେ ରାଜନ କହିଲେ ଯା ଦ୍ୱିଜ
ଉତ୍ତମ ପ୍ରକାରେ ତାହା ମନେ ମନେ ହେଜ ।
ଶିବଙ୍କୁ କନ୍ୟା ଦେବାର ଉଚିତ ନୁହଇ
ଦେଲେ ଗୃହ ତ୍ୟାଗକରି ଯିବି ମୁଁ ପଳାଇ ।
ଏମନ୍ତ ବୋଲି ସୁତାଙ୍କୁ ସଙ୍ଗେ ଘେନିଗଲେ
କୋପ ମନ୍ଦିରେ ଆହାର ତେଜିଣ ପଡ଼ିଲେ ।
ସେହି ସମୟରେ ମୁନି ପ୍ରବର ବଶିଷ୍ଠ
ଆସିଲେ ସେଠାକୁ ଘେନି ନିଜ ଭ୍ରାତୃଗୋଷ୍ଠ ।
ଅରୁନ୍ଧତୀ ମଧ୍ୟ ତାଙ୍କ ସଙ୍ଗେ ଆସିଥିଲେ
ହିମାଳୟଙ୍କ ସଭାରେ ପ୍ରବେଶ ହୋଇଲେ ।
ଶଇଳ ରାଜନ ତାଙ୍କୁ ଦେଖି ତୋଷଚିତ୍ତରେ
ପୂଜାକରି ବସାଇବେ ଦିବ୍ୟ ଆସନରେ ।

ପରସ୍ପର କଥାବାର୍ତ୍ତା ହେଲାବେଳେ ବସି
ହିମାଳୟ ସବୁ କଥା କହିଲେ ବିଶେଷି ।
ତାହା ଶୁଣି ବଶିଷ୍ଠଙ୍କ ପ୍ରିୟା ଅରୁନ୍ଧତୀ
ଗଲେ ଯେଉଁ ଗୃହେ ଥିଲେ ମେନକା ପାର୍ବତୀ ।
ସମ୍ବୋଧନ କରି ତହିଁ ମେନାଙ୍କୁ କହିଲେ
ଅରୁନ୍ଧତୀ ମୁହିଁ ଆସିଅଛି ଗୋ ବୋଇଲେ ।
ମେନକା ଶୁଣିଲେ ଯହୁଁ ଅରୁନ୍ଧତୀ ନାମ
ଉଠିଲେ ସେକ୍ଷଣି ତ୍ୱରା ହୋଇ ସସମ୍ଭ୍ରମ ।
ଆଗରେ ଅରୁନ୍ଧତୀଙ୍କ ଉଭାହେବା ଦେଖି
ପ୍ରଣାମ କଲେ ତାହାଙ୍କୁ ହୋଇ ଅତି ସୁଖୀ ।
ସେ ଅନ୍ତେ ବୋଇଲେ ଆଜ ପୂର୍ବ ପୁଣ୍ୟବଳେ
ଅରୁନ୍ଧତୀ ଆସି ମୋର ପୁରେ ବିଜେ କଲେ ।
ଆଗୋ ପୁଣ୍ୟବତୀ ମୁହିଁ ତୁମ୍ଭର କିଙ୍କରୀ
ପବିତ୍ର ହେଲି ତୁମ୍ଭଙ୍କୁ ଦରଶନ କରି ।
ଏମନ୍ତ ବୋଲି ବିବିଧ ଉପଚାର ଦେଇ
ପୂଜାକଲେ ରତ୍ନମୟ ଆସନେ ବସାଇ ।
ମିଷ୍ଟଦ୍ରବ୍ୟ ଆଣି ପୁଣି ଭୁଞ୍ଜିବାକୁ ଦେଲେ
ନିଜେ ମଧ୍ୟ ପାର୍ବତୀଙ୍କ ସହିତେ ଭୁଞ୍ଜିଲେ ।
ସନ୍ତୁଷ୍ଟ ହୋଇଲେ ଅରୁନ୍ଧତୀ ତପସ୍ୱିନୀ
ମେନାଙ୍କୁ ବୋଧିଲେ ମିଷ୍ଟ ବଚନ ବଖାଣି ।
ବଶିଷ୍ଠ ପ୍ରଭୃତି ଯେତେ ମୁନି ଆସିଥିଲେ
ହିମାଳୟଙ୍କୁ ସମସ୍ତେ ପ୍ରବୋଧି କହିଲେ ।
ବୋଇଲେ ଆମ୍ଭର ବାକ୍ୟ ଶୁଣ ଶୈଳରାଜ
ଅବିଶ୍ୱାସକୁ ତୁମ୍ଭ ମାନସରୁ ତେଜ ।
ଶିବଙ୍କ ହସ୍ତରେ କରି ପାର୍ବତୀଙ୍କୁ ଦାନ
ସାକ୍ଷାତେ ବ୍ରହ୍ମ ସ୍ୱରୂପ ସମ୍ଭୁ ତ୍ରିଲୋଚନ ।
ସ୍ୱଭାବରେ ଅଟନ୍ତି ସେ ଯୋଗୀଗଣ ବର
ମାଗିବେ ନାହିଁ ମାତ୍ରକ କନ୍ୟା ମାତ୍ର ଗୁର ।
ତାରକ ଅସୁର ନାଶ ହେବାପାଇଁ ଦେବେ
ବିଧାତାଙ୍କ ଆଗେ ଜଣାଇଲେ ଯାଇଁ ସର୍ବେ ।
ତାଙ୍କ ଆଦେଶ ପ୍ରକାରେ ଶିବଙ୍କୁ ଜଣାଣ
କରିବାରୁ ସମ୍ମତ ସେ ହୋଇଛନ୍ତି ଜାଣ ।
ପୁଣି ତୁମ୍ଭ ସୁତା ତପ କରିବା କାଳରେ
ବର ଅଛନ୍ତି ତାହାଙ୍କୁ ଇଚ୍ଛା ଅନୁସାରେ ।
ଏ ହେତୁ ଶଙ୍କର ନିଶ୍ଚେ ତୁମ୍ଭର କନ୍ୟାକୁ
ଗ୍ରହଣ କରିବେ ଜାଣ କହିଲି ତୁମ୍ଭଙ୍କୁ ।

ବଶିଷ୍ଠଙ୍କ ମୁଖୁ ଏହା ଶୁଣି ହିମାଳୟ
ବୋଇଲେ ଶୁଣିବା ହେଉ ମୁନି ମହାଶୟ ।
ଶିବଙ୍କଠାରେ ତ ରାଜ୍ୟ ଧନ ନାହିଁ କିଛି
କିରୂପେ ତାହାଙ୍କୁ କନ୍ୟା ଦେବା ମୁଁ ବୋଲୁଛି
ଉପଯୁକ୍ତ ପାତ୍ର ଦେଖି କନ୍ୟା ସମର୍ପିବ
ନୋହିଲେ ଅବଶ୍ୟ ଯାଇ ନରକେ ପଡ଼ିବ ।
ଶିବଙ୍କୁ ଦେବାକୁ ମୋର ଇଚ୍ଛା ହେଉନାହିଁ
ବିଚାର କରି ଯେରୂପେ ହେବ ତୁମ୍ଭେ ଥାଇ ।
ବଶିଷ୍ଠ ବୋଇଲେ ଆହେ ଶୈଳ ଅଧିପତି
କହୁଅଛି ଯାହା ମୁହିଁ ଶୁଣ ଦେଇ ମତି ।
ତିନି ପ୍ରକାରେ ହୁଅଇ ବାକ୍ୟ ବ୍ୟବହାର
ପ୍ରଥମ ଅଟଇ ଆଗେ ଶ୍ରୁତି ସୁଖକର ।
କିନ୍ତୁ ପରିଣାମ କାଳେ ଜନମାଏ ଦୋଷ
ନ ଭୁଲନ୍ତି କେବେ ତହିଁ ଯେ ବିଜ୍ଞ ବିଶେଷ ।
ପ୍ରଥମରେ ବିଷତୁଲ୍ୟ ଅଟେ ଯେ ବଚନ
ଶେଷରେ ହୁଅଇ ପୁଣି ଅମୃତ ସମାନ ।
ତେମନ୍ତ ବଚନ କହେ ହିତବାଦୀ ଲୋକ
ଗ୍ରହଣ କରେ ତା ଥାଏ ଯାହାର ବିବେକ ।
ଆବର ଯେ ଶ୍ରୁତି ସୁଖକର ଶୁଭମୟ
ତେମନ୍ତ ବାକ୍ୟ କେବଳ କହେ ସୁହୃଦୟ ।
ମୁଁ ଯାହା କହୁଛି ତାହା ଦ୍ୱିତୀୟ ପ୍ରକାର
ହୋଇଅଛି ବୋଲି ତୁମ୍ଭେ ମନରେ ବିଚାର ।
ରାଜ୍ୟ ସମ୍ପଦ ବିହୀନ ହେଲେ ମଧ୍ୟ ଶିବ
ତିନି ଲୋକରେ ତାହାଙ୍କ ତୁଲ୍ୟ କେ ନ ଥିବ ।
ଭ୍ରମମୟ ସମ୍ପଦରେ ତାଙ୍କ ସ୍ପୃହା ନାହିଁ
ତତ୍ତ୍ୱଜ୍ଞାନ ସମ୍ପଦରେ ପାରଙ୍ଗମ ସେହି ।
ଯେଉଁ ଲୋକ କଷ୍ଟ ଦେଖେ ଆପଣା କନ୍ୟାର
କନ୍ୟା ଘାତୀ ହୁଅଇ ସେ ବୋଲି ମନେ କର ।
ଶିବଙ୍କୁ ଯେ ଦୁଃଖୀ ବୋଲି ବୋଲୁଅଛ ତୁମ୍ଭେ
ସେଥିପାଇଁ କହ ଯାହା ପଚାରୁଛୁ ଆମ୍ଭେ ।
କୁବେର ଅଟନ୍ତି କୋଟିଗୃହ ଅଧିପତି
ସର୍ବଦା ଶିବଙ୍କର ସେ କିଙ୍କର ଅଟନ୍ତି ।
ତେବେ ନିର୍ଦ୍ଧନ ହୋଇଲେ କିରୂପେ ଶଙ୍କର
ଉତ୍ତମ ପ୍ରକାରେ ଏହା ମନରେ ବିଚାର ।
ନିରାକାର ସ୍ୱେଚ୍ଛାମୟ ପରମ ପୁରୁଷ
ସୃଷ୍ଟି ସ୍ଥିତି ଲୟ କର୍ତ୍ତା ତ୍ରିଭୁବନ ଈଶ ।
ବ୍ରହ୍ମା ବିଷ୍ଣୁ ଶିବ ତିନି ମୂରତି କି ଧରି
ଅଛନ୍ତି ସେ ଏକଆତ୍ମା ସବୁଠାରେ ପୂରି ।
ଶ୍ରୀକୃଷ୍ଣ ଅଟନ୍ତି ମୂଳ କାରଣ ତାଙ୍କର
ଶ୍ରୀକୃଷ୍ଣଙ୍କଠାରୁ ଜାତ ଅଟେ ଚରାଚର ।
ପ୍ରଥମରେ ପ୍ରକୃତିକୁ ନିର୍ମାଣ ସେ କଲେ
ତାଙ୍କଠାରେ ଯଥାକାଳେ ବୀର୍ଯ୍ୟ ନିବେଶିଲେ ।
ତହିଁରୁ ଯେ ଡିମ୍ବ ଜାତ ହେଲା ସେ ସମୟେ
ତା ମଧ୍ୟେ ମହା ବିରାଟ ପୁରୁଷ ଉଦୟେ ।
ସେ ପୁରୁଷ ନାଭି କମଳରୁ ବ୍ରହ୍ମା ଜାତ
ହେଲେ ପୁଣି ଭାଲ ସ୍ଥଳୁ ପ୍ରଭୁ ଭୂତନାଥ ।
ବାମ ପାର୍ଶ୍ୱରେ ବିଷ୍ଣୁ ସମ୍ଭୂତ ହୋଇଲେ
ଏହିପରି ତିନି ଦେବେ ସୃଷ୍ଟି ସରଜିଲେ ।
ଆଜ ଯେତେ ଦେବ ଦେବୀ ଅଂଶକଳା ଯେଣି
ଜନମି ଅଛନ୍ତି ଜାଣ ଆହେ ମହାଜ୍ଞାନି ।
ବକ୍ଷସ୍ଥଳ ବଦନରୁ ଲକ୍ଷ୍ମୀ ସରସ୍ୱତୀ
ଦୁହିଁଙ୍କୁ ଉତ୍ପନ୍ନ କରି ଅଛନ୍ତି ପ୍ରକୃତି ।
ତେଜରୁ ଯେ ମହାମାୟା ଦୁର୍ଗାଙ୍କୁ ଯେପରି
ଜାତ କଲେ ଯଥା ସମୟରେ ଆହେ ଗିରି ।
ସେ ଦେବୀ ଅସୁରକୁଳ ବିନାଶିଲା ପରେ
ଜାତ ହେଲେ କନ୍ୟାରୂପେ ଦକ୍ଷଙ୍କର ଘରେ ।
ଶିବଙ୍କୁ ତାଙ୍କୁ ବିବାହ କରି ପ୍ରଜାପତି
ସମର୍ପିଲେ ମାନସରେ ତୋଷିହେବ ଅତି ।
କେତେକାଳ ପରେ ଭର୍ତ୍ତାଙ୍କର ନିନ୍ଦା ଶୁଣି
ଯଜ୍ଞରେ ବସିଣ ଦେହ ତେଜି ସେ ତରୁଣୀ ।
ତୁମ୍ଭ ପତ୍ନୀ ମେନାଙ୍କର ଗର୍ଭେ ଜନମିଲେ
ଶିବଙ୍କୁ ବରିବାପାଇଁ ମନେ ସ୍ଥିର କଲେ ।
ପ୍ରତ୍ୟେକ ଯୁଗରେ ସେହି ଶିବଙ୍କର ପ୍ରିୟା ।
ଅଟନ୍ତି ଆଦ୍ୟ ଜନନୀ ଦେବୀ ଯୋଗମାୟା ।
ଏହାଙ୍କର ଚିତା ଭସ୍ମ ଅସ୍ଥିମାଳା ଯେଣି
ଭକ୍ତିରେ ବୁଲନ୍ତି ଶିବ ବ୍ରହ୍ମ ତତ୍ତ୍ୱଜ୍ଞାନୀ ।
ସ୍ୱଇଚ୍ଛାରେ ଯେବେ କନ୍ୟା ନ ଦେବ ଶିବଙ୍କୁ
ଦେଖିବ ସେ କନ୍ୟା ନିଜେ ଯିବେ ତାଙ୍କଠାକୁ ।
ପ୍ରଜାପତିର ସମ୍ବନ୍ଧ କେ କରିବ ଆନ
ଯାହାର କନ୍ୟା ସେ ନେବ ଆହେ ହିମବାନ ।
ବିବାହ ହେବାକୁ ଶିବଙ୍କର ଇଚ୍ଛା ନାହିଁ
ତହିଁପାଇଁ ହେବେ ପୁଣ କହୁଅଛି ମୁହିଁ ।

ତାରକ ବଳରେ ପୀଡ଼ା ପାଇ ଦେବଗଣ
ବ୍ରହ୍ମାଙ୍କ ସହିତେ କଲେ ଶିବଙ୍କୁ ଜଣାଣ ।
ସେ ଦେଖାଣୁ କୃପାମୟ ପରମ ଈଶ୍ୱର
ଦେବତା ସଭା ମଧ୍ୟରେ କଲେ ସୀଉକାର ।
ସେ ଅନ୍ତେ ପାର୍ବତୀଙ୍କର ତପସ୍ୟା ସ୍ଥାନକୁ
ଗଲେ କପଟରେ ଧରି ବ୍ରାହ୍ମଣ ବେଶକୁ ।
ଆଶ୍ୱାସନା କରି ତାଙ୍କୁ ଇଚ୍ଛା ବର ଦେଲେ
ଲେଉଟି ନିଜ ମନ୍ଦିରେ ପ୍ରବେଶ ହୋଇଲେ ।
ତାହା ଜାଣି ଦେବ ଋଷିଗଣେ ସଭା କରି
ମୋତେ ପଠାଇଲେ ତୁମ୍ଭ ପାଶକୁ ହକାରି ।
ଅରୁନ୍ଧତୀ ସହ ମୋର ସଙ୍ଗେ ଆସିଛନ୍ତି
ବୁଝାଇ କହିବା ପାଇଁ ମେନାଙ୍କୁ ଯିଦ୍ଧତି ।
ତୁମ୍ଭ ଦୁହିତାଙ୍କୁ ଶିବ ଦେଇଛନ୍ତି ବର
ଗ୍ରହଣ କରିବେ ବୋଲି ତାହାଙ୍କର କର ।
ଈଶ୍ୱର ବଚନ କେବେ ବୃଥା ନ ହୋଇବ
ଅବଶ୍ୟ ସେ ଯାହା କହିଛନ୍ତି ତାହା ହେବ ।
ସପ୍ତଠାରୁ ସ୍ଥୂଳଯାଏ ସମସ୍ତେ ଅସ୍ଥିର
କେବଳ ପ୍ରତିଜ୍ଞା ଦୃଢ଼ ସାଧୁ ମାନଙ୍କର ।
ପ୍ରତିଜ୍ଞା ଯୋଗେ ମହେନ୍ଦ୍ର ବଜ୍ରକୁ ପ୍ରହାରି
ପର୍ବତଙ୍କ ପକ୍ଷ ଛେଦ କଲେ ନ ବିଗ୍ଭରି ।
ପବନ ସୁମେରୁ ଶୃଙ୍ଗ ଉପୁଡ଼ାଇ ନେଲେ
ସମୁଦ୍ର ମଧ୍ୟରେ ଫିଙ୍ଗି ବାହୁଡ଼ି ଆସିଲେ ।
ସକଳ ସମ୍ପଦ ଗଲେ ହେଲେ ସାଧୁଜନ
ଶରଣାଗତକୁ ରକ୍ଷା କରି ଦେଇ ମନ ।
ପୂର୍ବକାଳେ ଅନରଣ୍ୟ ନାମେ ରାଜା ଥିଲେ
ନିଜସୁତାକୁ ନେଇଣ ବିପ୍ରଙ୍କୁ ତୋଷିଲେ ।
ଆବର ବ୍ରହ୍ମା ଶାପରୁ ହୋଇଲେ ମୁକତ
ପ୍ରବୋଧନା କଲେ ତାଙ୍କୁ ବାନ୍ଧବେ ବହୁତ ।
ସେହିପରି ତୁମ୍ଭେ ଏବେ ଶ୍ରୀ ମହାଦେବଙ୍କୁ
ସୁତାଙ୍କୁ ବିବାହ କରି ରଖ ଦେବତାଙ୍କୁ ।
ନୋହିଲେ ଦେବତାଗଣେ ତୁମ୍ଭ ବିରୁଦ୍ଧରେ
ଉଗ୍ର ହୋଇଣ ଯୁଝିଲେ ଶସ୍ତ୍ର ଘେନ କରେ ।
ଶୈଳଙ୍କ ମଧ୍ୟରେ ଯୋଦ୍ଧା ଅଛି କେ ସେପରି
ସମରେ ଦେବଙ୍କ ସଙ୍ଗେ ହୋଇପାରେ ସରି ।
ଏ ସକାଶୁଁ ବୋଲୁଅଛି ଶିବଙ୍କ ସଙ୍ଗରେ
ବିବାହ କରି ସୁତାଙ୍କୁ ଆନନ୍ଦ ମନରେ ।

ଏହିରୂପେ ବଶିଷ୍ଠଙ୍କ ବଚନକୁ ଶୁଣି
ପଗ୍ଭରିଲେ ତାଙ୍କୁ ଶୈଳ ଅଧୀଶ୍ୱର ପୁଣି ।
ବୋଇଲେ ସେ ଅନରଣ୍ୟ କେଉଁବଂଶେ ଜାତ
ହୋଇଥିଲେ ଯଶଗୁଣେ ଅତ୍ୟନ୍ତ କେମନ୍ତ ।
କାରୂପେ ଦ୍ୱିଜଙ୍କୁ ନିଜ ସୁତା ଦାନକରି
ସମ୍ପଦ ରଖିଲେ ତାହା କହ ତପୋଗୁର୍ବି ।
ବଶିଷ୍ଠ ବୋଇଲେ କହୁଅଛି ଏବେ ଶୁଣ
ମନୁବଂଶେ ଜାତ ଅନରଣ୍ୟ ନରବ୍ରାଣ ।
ଚତୁର୍ଦ୍ଦଶୀ ଧର୍ମଶୀଳ ବଇଷ୍ଣବ ସେହି
ଜଗତେ ସ୍ୱ ପଣେ ତାଙ୍କପରି କେହି ନାହିଁ ।
ଏକସପ୍ତତି ଯୁଗ ରହି ରାଜ୍ୟ ସେ ପାଳିଲେ
ଦେହ ଅନ୍ତେ ବଇକୁଣ୍ଠ ଭୁବନକୁ ଗଲେ ।
ଶତରୂପାଙ୍କୁ ସଙ୍ଗରେ ଘେନି ନରପତି
ଦୋଷରୁପାଇ ରହିଲେ ଶ୍ରୀହରିଙ୍କ କତି ।
କହୁଅଛି ଶୁଣ ଏବେ ତାହାଙ୍କର ବଂଶ
ଜାତହେଲେ ମନୁଙ୍କର ଅନ୍ତେ ସ୍ୱାରୋଚିଷ ।
ସେ ଅନ୍ତରେ କ୍ରମେ ଉତ୍ତମ ରଇବତ
ଚକ୍ଷୁଷଙ୍କ ପରେ ଜନମିଲେ ବୈବସ୍ୱତ ।
ତାଙ୍କ ଅନ୍ତେ ସୂର୍ଯ୍ୟସୁତ ଅଷ୍ଟମ ସାବର୍ଣ୍ଣି
ସୁରଥ ହୋଇଲେ ଚୈତ୍ରବଂଶ ନୃପମଣି ।
ସେ ଅନ୍ତେ ନବମ ଦକ୍ଷ ସାବର୍ଣ୍ଣି ହୋଇଲେ
ଏକାଦଶ ଧର୍ମ ସାବର୍ଣ୍ଣି ଯେ ବୋଲାଇଲେ ।
ତାଙ୍କପରେ ହେଲେ ଦେବସାବର୍ଣ୍ଣି ସମ୍ଭୂତ
ଇନ୍ଦ୍ରସାବର୍ଣ୍ଣି ତାହାଙ୍କପରେ ହେଲେ ଜାତ ।
ସେହି ଅତ୍ୟନ୍ତ ସକଳ ଗୁଣରେ ଉତ୍କୃଷ୍ଟ
ବିଷ୍ଣୁ ଭକ୍ତଙ୍କ ମଧ୍ୟରେ ସେହି ଏକା ଶ୍ରେଷ୍ଠ ।
ଧର୍ମରେ ରାଜ୍ୟ ପାଳନ କରି ସେ ନୃପତି
ଶେଷ ସମୟରେ ଧର୍ମେ ନିବେଶିଲେ ମତି ।
ସୁଚନ୍ଦ୍ରଙ୍କୁ ରାଜ୍ୟ ଦେଇ ବନମଧ୍ୟେ ଯାଇ
ଶେଷକାଳ କଟାଇଲେ ସଞ୍ଚମିତ ହୋଇ ।
ପିତାଙ୍କଠାରୁ ଗୁଣରେ ଅଧିକ ସୁଚନ୍ଦ୍ର
ହୋଇଲେ ସେ ପ୍ରଜାହୃଦ କୁମୁଦର ଚନ୍ଦ୍ର ।
ତାଙ୍କଠାରୁ ଶ୍ରୀନଟକେଶ୍ରୁ ଉତ୍ପନ୍ନ ହୋଇଲେ
ପୁତ୍ରପରି ପରଜାଙ୍କୁ ସୁଖରେ ପାଳିଲେ ।
ଏହିରୂପେ ତ୍ରୟୋଦଶ ପୁରୁଷ ଅନ୍ତରେ
ମଙ୍ଗଳ ଅରଣ୍ୟରାଜା ହେଲେ ସେ ବଂଶରେ ।

ତପସ୍ୱୀ କ୍ଷମା ପ୍ରବର ସେ ନର ଅଧୀଶ
ଦେଉଥାନ୍ତି ସବୁବେଳେ ଧର୍ମରେ ମାନସ ।
ଅପୁତ୍ରିକ ହୋଇବାରୁ ତାହାଙ୍କର ମନ
ଅସ୍ଥିର ହୁଅଇ ସବୁ ସମୟରେ ଜାଣ ।
ସେ ସକାଶୁ ଗୃହ ତେଜି ପୁଷ୍କର ତୀର୍ଥକୁ
ଗଲେ ପୁତ୍ର କାମନାରେ ତପ କରିବାକୁ ।
କଠୋର ତପସ୍ୟା କରି ବରପ୍ରାପ୍ତ ହେଲେ
ଆପଣା ପୁରକୁ ବହୁଁ ଲେଉଟି ଆସିଲେ ।
ଅଳପ ସମୟ ପରେ ଉତ୍ତମ କୁମର
ଯଥା କାଳରେ ଉତ୍ପନ୍ନ ହେଲା ତାହାଙ୍କର ।
ଅନରଣ୍ୟ ବୋଲି ଯେହୁ ନାମକୁ ପାଇଲେ
ସମସ୍ତ ଗୁଣରେ ପରିପୂର୍ଣ୍ଣ ହୋଇଥିଲେ ।
ତାହାଙ୍କ ହସ୍ତରେ ରାଜ୍ୟଭାର ଦେଇ ରଜା
ବନକୁ ଯାଇ ତପରେ ମଜ୍ଜାଇଲେ ମଜ୍ଜା ।
ସପ୍ତଦ୍ୱୀପ ପୃଥିବୀ ଅଧିପତି ହୋଇ
ପାଳନା କରିଲେ ଅନରଣ୍ୟ ନରସାଇଁ ।
ଭୃଗୁଙ୍କ ପ୍ରବର୍ତ୍ତନାରେ ଶତଗୋଟି ଯାଗ
ସମାପତ କଲେ ଦେଇ ଦେବତାଙ୍କୁ ଭାଗ
ଇନ୍ଦ୍ରତ୍ୱକୁ ତୁଚ୍ଛକରି ନ କଲେ କାମନା
କେବଳ କଲେ ଶ୍ରୀକୃଷ୍ଣ ଚରଣ ଭାବନା ।
ତାଙ୍କଠାରୁ ଜନ୍ମିଥିଲେ ଏକଶତ ପୁତ୍ର
ସେମାନଙ୍କ ମଧ୍ୟେ ଥିଲା କନ୍ୟାଟିଏ ମାତ୍ର ।
ପଦ୍ମାଳୟା ତୁଲ୍ୟ ଅଟେ ସେ କନ୍ୟାର ରୂପ
ତେଣୁ ପଦ୍ମା ବୋଲି ତାର ନାମ ଦେଲେ ଭୂପ ।
ପୁତ୍ରଙ୍କଠାରୁ ଅଧିକ ସ୍ନେହ ତାହାଠାରେ
କରୁଥିଲେ ନରପତି ମନ ବଚନରେ ।
ଯଉବନ ଉପସ୍ଥିତ ହୁଅନ୍ତେ ତାହାର
ବରପାଇଁ ପଠାଇଲେ ନାନାଦିଗେ ଚର ।
ଏଥୁ ଅନନ୍ତରେ ଦିନେ ପିପ୍‌ପଲାଦ ମୁନି
ତପ କରୁଥିଲେ ବନମଧ୍ୟେ ହୋଇ ତୁନି ।
ଦେଖିଲେ ଅଳପଦୂରେ ଗନ୍ଧର୍ବେକ ଆସି
ପ୍ରିୟାକୁ ସେବନ କାମେ ହୋଇଛି ଲଳସୀ ।
ନାନା ପ୍ରକାରେ ଶୃଙ୍ଗାରେ ବଳାଇଛି ମନ
ଜାଣି ନ ପାରୁଛି କେତେବେଳେ ଗଲା ଦିନ ।
ସେ କଥା ଦେଖି ମୁନିଙ୍କ ମନରେ ବିକାର
ଜାତ ହେବାରୁ ସେ ହୋଇ ନ ପାରିଲେ ସ୍ଥିର

ଦାର ପରିଗ୍ରହ କରିବାକୁ ଚିନ୍ତାକଲେ
କିନ୍ତୁ ଅନୁରୂପ କନ୍ୟା କାହିଁ ନ ପାଇଲେ ।
ଦିନକର ପୁଷ୍ପଭଦ୍ରା ଜଳେ ମୁନିବର
ସ୍ନାନ କରୁଥିଲେ ଯାଇ ପ୍ରଭାତ କାଳର ।
ସେଠାରେ ଅନରଣ୍ୟଙ୍କ ସୁତା ପଦ୍ମବଦନା
ପ୍ରାତଃକାଳୁ ଆସି କରୁଥିଲା ଋତୁସ୍ନାନ ।
ତାକୁ ଦେଖି ମୁନିବର ମନ ଛନ୍ନ କଲା
ବିବାହ ହେବାକୁ ଇଚ୍ଛା ଅଧିକ ବଳିଲା ।
ପାର୍ଶ୍ୱସ୍ଥ ଲୋକଙ୍କଠାରୁ ତାର ପରିଚୟ
ବୁଝିସାରି ମନେ ମନେ କଲେ ସବୁ ଥୟ ।
ଆଶ୍ରମକୁ ଆସି ନିତ୍ୟକର୍ମ ଶେଷକଲେ
ସେ ଅନ୍ତେ ରାଜାଙ୍କପୁରେ ପ୍ରବେଶ ହୋଇ ।
ମୁନିଙ୍କୁ ଦେଖି ନୃପତି ପାଦ୍ୟ ଅର୍ଘ୍ୟ ଦେଇ
ଯଥା ବିଧି ପୂଜାକଲେ ଆସନେ ବସାଇ ।
ଗ୍ରହଣ କରି ସମସ୍ତ ମୁନି ତାଙ୍କ ଆଗେ
କନ୍ୟାଟି ମାଗିଲେ ସେ କାଳରେ କଥାବାଗେ ।
ଶୁଣି ଅନରଣ୍ୟ ଅତି ଦୁଃଖିତ ହୋଇଲେ
ମଉନ ହୋଇ ଋଷିଙ୍କ ଆଗରେ ବସିଲେ !
ତା ଦେଖି କୁପିତ ହୋଇ ମୁନିଗଣ ଈଶ
ବୋଇଲେ ଯଦ୍ୟପି କନ୍ୟା ନ ଦେବ ନରେଶ ।
ଶାପଦେଇ ବନ୍ଧୁବର୍ଗ ସହିତେ ତୁମ୍ଭଙ୍କୁ
କ୍ଷଣକରେ ଭସ୍ମକରି ଯିବି ଆଶ୍ରମକୁ ।
ଋଷିଙ୍କ ବଚନ ଶୁଣି ରଜା ଦୁଃଖୀ ହୋଇ
ଜଣାଇଲେ ସବୁକଥା ଅନ୍ତଃପୁରେ ଯାଇଁ ।
ମହିଷୀମାନେ ନିବେଦନ କରି ଉଚ୍ଚସ୍ୱରେ
ବୋଇଲେ କି କଷ୍ଟ ଲେଖାଥିଲା କପାଳରେ ।
ସହଜେ ତପସ୍ୱୀ ପୁଣି ଜରରେ ଆତୁର
କି ରୂପରେ ଦେବା କନ୍ୟା ହସ୍ତେ ତାହାଙ୍କର ।
ଏମନ୍ତ ବିଚାରି ସର୍ବେ ବ୍ୟାକୁଳ ହୋଇଲେ
କି କରିବେ ଆଉ ସ୍ଥିର କରି ନ ପାରିଲେ ।
ସେ ସମୟେ ମନ୍ତ୍ରବିଜ୍ଞ ପଣ୍ଡିତ ଗୋଟିଏ
ରଜାଙ୍କୁ ବୋଇଲେ ଶୁଣ ଆହେ ନରବର୍ଯ୍ୟେ ।
ଆଜ ଅବା କାଲି ତୁମ୍ଭେ କନ୍ୟାକୁ ନ ଦେଇ
ରଖି ନ ପାରିବ ଏହା ସର୍ବେ ଜାଣୁଥାଇ ।
ଅବଶ୍ୟ କାହାକୁ ହେଲେ ଦେବାର ତ ମୂଳ
ଏଥିପାଇଁ ବୃଥା କିମ୍ପା ହେଉଛ ଆକୁଳ ।

ବ୍ରାହ୍ମଣଠାରୁ ଉତ୍କୃଷ୍ଟ ପାତ୍ର ଏ ଜଗତେ
ମିଳିବ ବୋଲି ମୋହର ହେଉନାହିଁ ଚିତ୍ତେ ।
କନ୍ୟା ସକାଶରେ ଯାହା କୁଳନାଶ ଯିବ
ସେ ଘେନି ମୁଁ ବୋଲୁଅଛି ଦେଲେ ଭଲହେବ ।
ଏମନ୍ତ ପଣ୍ଡିତ ଠାରୁ ଶୁଣି ନରପତି
ଦୁଃଖିତ ହୋଇ ଦ୍ୱିଜଙ୍କୁ ଦେଲେ ସେ ଦୁହିତା ।
ନାନାବିଧ ବସ୍ତ୍ର ଅଳଙ୍କାରେ ତାଙ୍କୁ ମଣ୍ଡି
ଯଉତୁକ ମଧ୍ୟ ଦେଲେ କେତେକ ଦଣ୍ଡି ।
ଭାର୍ଯ୍ୟା ପାଇଣ ମୁନି ଆନନ୍ଦ ମନରେ
ପ୍ରବେଶ ହୋଇଲେ ଯାଇ ନିଜ ଆଶ୍ରମରେ ।
ରାଜ୍ୟ ଧନ ତ୍ୟାଗକରି ରାଜା ଅନରଣ୍ୟ
ତପ କରିବାକୁ ଆଶ୍ରେକଲେ ସେ ଅରଣ୍ୟ ।
ଭର୍ତ୍ତା ଦୁହିତାଙ୍କ ଶୋକେ ନୃପାଙ୍ଗନାମାନେ
ଦେହତ୍ୟାଗ କରି ସବେ ଗଲେ ତତକ୍ଷଣେ ।
କଠୋର ତପସ୍ୟାକରି ସେ ନର ରାଜନ
ଅନ୍ତଃକାଳେ ଗୋଲୋକରେ କଲେଯାଇ ସ୍ଥାନ ।
କୀର୍ତ୍ତି ମାନ ନାମେ ଥିଲେ ତାହାଙ୍କର ସୁତ
ପିତାଙ୍କ ଉତ୍ତାରେ ରାଜ୍ୟେ ହୋଇଲେ ଅଭିଷିକ୍ତ ।
ଏଠାରେ ଚରିତ ଅନରଣ୍ୟ ରାଜାଙ୍କର
ସମାପତ କଲେ ଗୀତେ ଦୀନ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ହିମାଳୟଙ୍କ ଆଗରେ ଶିବଙ୍କର ଆତ୍ମନିନ୍ଦା ଓ ମୁନିମାନଙ୍କର ହିମାଳୟଙ୍କୁ ସଦୁପଦେଶ ପ୍ରଦାନ କଥନେ ନାମ ଏକଚତ୍ୱାରିଂଶୋଽଧ୍ୟାୟଃ ।

—*—

## ଦ୍ୱି ଚତ୍ୱାରିଂଶ ଅଧ୍ୟାୟ

## ସତୀଦେବୀଙ୍କର ଶରୀରତ୍ୟାଗ ବର୍ଣ୍ଣନ

କହନ୍ତି ହିମାଳୟଙ୍କ ଆଗରେ ବଶିଷ୍ଠ
ଏଥିଅନନ୍ତରେ କଥା ଶୁଣ ଗିରିଶ୍ରେଷ୍ଠ ।
ମୁନିଙ୍କ ପାଶରେ ରହି ଅନରଣ୍ୟ କନ୍ୟା
ସେବିଲା ତ ନାନାଗୁଣେ ଅଟଇ ତ ଧନ୍ୟା ।
ବାକ୍ୟ ମନ କର୍ତ୍ତବ୍ୟରେ ସର୍ବଦା ସେ ବାଳା
ଶ୍ରୀହରିଙ୍କୁ ଲକ୍ଷ୍ମୀପରି ଅନୁଗତା ହେଲା ।
ଦିନେ ସ୍ନାନ କରିବାକୁ ଗଙ୍ଗାନଦୀ ତୀରେ
ଏକାକିନୀ ହୋଇ ବାଟେ ଯାଉଥିଲା ଧୀରେ ।
ତାହାର ଚିତ୍ତ ପରୀକ୍ଷା କରିବା ସକାଶେ
ସାକ୍ଷାତରେ ଧର୍ମଦେବ ନରପତି ବେଶେ ।
ସୁବର୍ଣ୍ଣ ରଥରେ ବସି ତା ପାଶକୁ ଯାଇ
ବୋଇଲେ ଗୋ କୁନ୍ଦଦନ୍ତି କିଏ ଅଟୁ ତୁହି
ସ୍ଥିର ନବ ଯଉବନେ ତୋହର ଶରୀର
ପ୍ରଫୁଲ୍ଲ ଚମ୍ପକ ପ୍ରାୟେ ଦିଶଇ ସୁନ୍ଦର ।
ଜରତୁର ଋଷିଙ୍କର ପାଶେ ରହିବାରୁ
ତୋ ଯଉବନ ତୋର ଦିଶୁନାହିଁ ସ୍ୱରୁ ।
ମୋର ବୋଲକରି ଏବେ ଛାଡ଼ ସେ ମୁନିଙ୍କୁ
ଆନନ୍ଦେ ରହିବ ଆ । ଆମ୍ଭର ପୁରକୁ ।
ଦେଖ ମୋର ଅଙ୍ଗେ ରୂପ ଯଉବନ ପୂରି
ରହିଅଛି ଆଉ ଚିନ୍ତା ନ କର ସୁନ୍ଦରୀ ।
ଆହୁରି ସହସ୍ରେ ସ୍ତ୍ରିରୀ ଅଛନ୍ତି ମୋ ପାଶ
ସ୍ୱାମିନୀ ହୋଇବୁ ତାହାଙ୍କର ତୁହି ଆସ ।
ନାନା ସ୍ଥାନରେ ବିହାର କର ମୋର ସଙ୍ଗେ
କ୍ରୀଡ଼ାକର ସ୍ୱଇଚ୍ଛାରେ କାମ ରସରଙ୍ଗେ ।
ସୁନ୍ଦର ସୁରତକ୍ଷମ ପୁରୁଷଙ୍କୁ ପାଇ
କାମିନୀର ମନପ୍ରାଣ ସନ୍ତୁଷ୍ଟ ହୁଅଇ ।
ତୁହିତ ଚତୁରୀଗଣ ମସ୍ତକ ମଣ୍ଡନା
ଅଧିକ କହିଲେ ହେବ ସିନା ବିଡ଼ମ୍ବନା ।
ତୁମ୍ଭ ସଙ୍ଗତରେ କ୍ରୀଡ଼ା କଲେ ମୋର ମନ
ସନ୍ତୁଷ୍ଟ ହୋଇବ ତୁମ୍ଭେ ମଧ୍ୟ ହେବ ଧନ୍ୟ ।
ଏରୂପେ ଧର୍ମଙ୍କ ବାକ୍ୟ ଶୁଣି ପଦ୍ମାବତୀ
କହିଲା ତାହାଙ୍କୁ କ୍ରୋଧ ହୋଇ ନିଜମତି ।

ବୋଇଲା ରେ ମୂଢ଼ ବେଗେ ଦୂର ହୋଇଯାଅ
କ୍ଷଣେ ମାତ୍ର ଆଉ ମୋର ପାଶରେ ନ ରହ ।
କାମଶରେ ମତ୍ତ ହୋଇ ପୁଚ୍ଛିଲୁ ଯା ମୋତେ
କ୍ଷୟ ହୋଇଯାଅ ଶାପ ଦେଉଅଛି ତୋତେ ।
ପବିତ୍ର ଦେହ ଅଟନ୍ତି ପିପ୍ପଲାଦ ମୁନି
କ୍ରୀଡ଼ା କରୁଅଛି ମୁହିଁ ତାଙ୍କୁ ଧର୍ମେ ଘେନି ।
ଏବେ ବୋଲୁଅଛୁ ତୋତେ ଦେହ ସମର୍ପଣ
କରିବ ମୁନିଙ୍କଠାରୁ ସ୍ନେହ ଛାଡ଼ି ପୁଣ ।
ସ୍ତ୍ରୀଜାତ ହେବାରୁ ତୁ ଅଟୁ ପୁଣ୍ୟହୀନ
ତୋତେ ଛୁଇଁଲେ ଦୂଷିତ ହେବ ଅପଘନ ।
ପରର କାମିନୀ ମାତୃ ସଦୃଶ ଅଟଇ
ନ ଜାଣିବା ଲୋକ ସିନା ତାହାକୁ ଇଚ୍ଛଇ ।
ଏରୂପେ ସତୀ ବଚନ ଶୁଣି ଧର୍ମଦେବ
ତ୍ୟାଗକରି ମାୟାନୂପ ବେଶଭୂଷା ସର୍ବ ।
ବୋଇଲେ ଗୋ ସତୀ ନିଜେ ଧର୍ମ ଅଟେ ମୁହିଁ
ଆସିଥିଲି ତୁମ୍ଭ ମନ ବୁଝିବାର ପାଇଁ ।
ସବୁରି ଅନ୍ତରେ ମୁହିଁ କରିଥାଏ ବାସ
କେବଳ ନ ଯାଏ ଦୁରସ୍କରଙ୍କର ପାଶ ।
ତୁମ୍ଭକଥା କଞ୍ଚିତରେ ଜାଣିଥିଲେ ହେଲେ
ଦଇବ ଯୋଗେ ଏଠାକୁ ଆସିଲଟି ଭଲେ ।
ସୃଷ୍ଟି ସ୍ଥିତ ଲୟକର୍ତ୍ତା ଶ୍ରୀକୃଷ୍ଣ ଅଟନ୍ତି
ତାହାଙ୍କ ଆଜ୍ଞାରେ ଚଳାଚଳ ହୁଏ କ୍ଷିତି ।
ସ୍ୱତାସ୍ୱତ ଶତ୍ରୁ ମିତ୍ର ଭାବ ଜଗତରେ
ସମ୍ପାଦିତ ହୋଇଯାଏ ତାହାଙ୍କ ଆଜ୍ଞାରେ ।
ସେ ପ୍ରଭୁଙ୍କ ପାଦପଦ୍ମେ ମୋର ନମସ୍କାର
ଖଣ୍ଡନ କରିବେ ସେହୁ ଦୁରିତ ମୋହର ।
ଯାହାଙ୍କ ଯୋଗରେ କ୍ଷୀର ହୋଇଛି ଧବଳ
ଶଇତ୍ୟ ଗୁଣରେ ପୂର୍ଣ୍ଣ ହୋଇଅଛି ଜଳ ।
ସେ ଦେବଙ୍କ ଚରଣରେ ଶତ ଶତ ବାର
ପ୍ରଣାମ କରୁଛି ମୁହିଁ ଯୋଡ଼ି ବେନିକର ।
ସକଳ ବୀଜ ସ୍ୱରୂପ ସର୍ବ ଅଧିପତି
ଶ୍ରୀ କୃଷ୍ଣଙ୍କ ପାଦେ ମୋର ଅଶେଷ ବିନତି ।
ଏମନ୍ତ ବୋଲି ସେ ଧର୍ମ ଦେବ ଜଗଦ୍‌ଗୁରୁ
ଉଭାହେଲେ ସତୀଙ୍କର ଆଗେ ନୋହି ଦୂରୁ ।
ତାହାଦେଖି ପଦ୍ମାବତୀ ଚକିତ ହୋଇଲା
ବିନୟ ଭାବରେ ଧର୍ମଦେବଙ୍କୁ କହିଲା ।

ବୋଇଲା ହେ ଦେବ ତୁମ୍ଭେ ଅଟ ସର୍ବସାକ୍ଷୀ
କୃତାର୍ଥ ହୋଇଲି ଆଜି ତୁମ୍ଭରୂପ ଦେଖି ।
ତୁମ୍ଭର କିଙ୍କରୀ ମୁହିଁ ଅଟଇ ଅବଳା
ମାୟାରେ ଆପଣ କଲ ମୋର ମନଭୁଲ ।
ଚିହ୍ନି ନ ପାରି ଯେ ଶାପ ଦେଲି ମହାମତେ
ସେ ଦୋଷକଦାପି ନ ଘେନିବାହେବେ ଚିତ୍ତେ ।
ଏବେ ମୁହିଁ ଅନୁତାପ କରୁଅଛି ବସି
ମୂର୍ଖ ପଣରେ ହୋଇଲି ତୁମ୍ଭଠାରେ ଦୋଷୀ ।
ଆକାଶ ଆଦି ଯେ ନିତ୍ୟ ପଦାର୍ଥ ସକଳ
କାଳବଶେ ଅବା ହୋଇ ପାରନ୍ତି ନିର୍ମୂଳ ।
କିନ୍ତୁ ଯେ ସତୀର ବାକ୍ୟ ଅନ୍ୟଥା ନୁହଇ
ନିଶ୍ଚୟ ଅଟେ ଏ କଥା ଜାଣ କହୁଥାଇ ।
ତୁମ୍ଭେ ଯେବେ ନଷ୍ଟ ହେବ ମୋର ଶାପାନଳେ
ନ ରହିବ ଆଉ କେଉଁ ଲୋକ ମହୀତଳେ ।
ତହିଁର ଯେ ପ୍ରତିକାର କହୁଅଛି ଶୁଣ
ସତ୍ୟ ଯୁଗରେ ରହିବ ତୁମ୍ଭେ ହୋଇ ପୂର୍ଣ୍ଣ ।
ତ୍ରେତୟା ଯୁଗରେ ତହୁଁ ଏକପାଦ କ୍ଷୟ
କାଳ କବଳରେ ପଡ଼ି ହୋଇବ ନିଶ୍ଚୟ ।
ଆଉରି ଦ୍ୱାପରେ ଦୁଇପାଦ ନଷ୍ଟ ହେବ
କଳିଯୁଗରେ କେବଳ ଏକପାଦ ଥିବ ।
ପୁଣି ସତ୍ୟଯୁଗ ଯେବେ ହୋଇବ ପ୍ରବେଶ
ପୂର୍ଣ୍ଣରୂପରେ ସେ କାଳେ ହେବେ ପରକାଶ ।
ଏହିପରି ଯୁଗେ ଯୁଗେ କ୍ଷୟ ବୃଦ୍ଧି ପାଇ
ଥିବ ତୁମ୍ଭେ ଲୋକରକ୍ଷା କରିବାର ପାଇଁ ।
ସତ୍ୟ ଯୁଗରେ ସକଳ ସ୍ଥାନରେ ରହିବ
ଅନ୍ୟ ଯୁଗମାନଙ୍କରେ ସେପରି ନୋହିବ ।
କିନ୍ତୁ ବଇଷ୍ଣବ ବିପ୍ର ଯତି ବ୍ରହ୍ମବାସୀ
ପତିବ୍ରତା ଯାଗକର୍ତ୍ତା କର୍ମଠ ଉପାସୀ ।
ଧର୍ମଶୀଳ ନରପତି ଦ୍ୱିଜସେବୀ ଶୂଦ୍ର
ଏମାନଙ୍କଠାରେ ରହି ଆଚରିବ ଭଦ୍ର ।
ଆଉରି ଅଶ୍ୱତ୍ଥ ବଟ ବିଲ୍ୱ ଯେ ଚନ୍ଦନ
ତୁଳସୀ ଆଦି ଯେତେକ ପୂତ ବୃକ୍ଷମାନ ।
ତହିଁରେ ନିବାସ କରିଥିବ ତୁମ୍ଭେ ରହି
ପୁଣି ଦେବାଳୟ ଯାଗ ସ୍ଥାନ ତୀର୍ଥ ଯାଇ ।
ସାଧୁଙ୍କ ମନ୍ଦିରେ ପୁଣି ବେଦପାଠ ସ୍ଥଳେ
ଆଉରି ଶ୍ରୀକୃଷ୍ଣ ନାମ ସଂକୀର୍ତ୍ତନ ମେଳେ ।

ବ୍ରତ ପୂଜା ତପ ନ୍ୟାୟନ୍ୟାୟ ସାଧୁସଙ୍ଗ
ଏହି ସ୍ଥାନମାନଙ୍କରେ ହୋଇଥିବ ଭଙ୍ଗ ।
ଏଥିରୁ ଅନ୍ୟ ସ୍ଥାନରେ କ୍ୱଚିତ୍ ତୁମ୍ଭର
ହୋଇବ ଅବଶ୍ୟ ଆହେ ଧର୍ମ ମନେକର ।
ପୁଂଶ୍ଚଳୀ ବାସ ଭବନ ନରଘାତି ଗୃହ
ଦେବତା ଗୁରୁ ନିନ୍ଦକ ପରଧନାପହ ।
ଅସାଧୁ ଚଳ୍ପଷ ସ୍ୱୈର ଷଣ୍ଢ କଳିପ୍ରିୟ
ବେଦ ଶାସ୍ତ୍ର ବିଦ୍ୱେଷକ ଗର୍ବିତ ହୃଦୟ ।

ଦେବଳକ ବୃଷବାହୀ ଜୀବ ସଂହାରକ
ସ୍ୱର୍ଣ୍ଣକାର କର୍ଣ୍ଣଦ୍ରୋହୀ ପରସ୍ତ୍ରୀ କାମୁକ ।
ସନ୍ଧ୍ୟାହୀନ ନିତ୍ୟକର୍ମ ଆଶ୍ରମ ରହିତ
କନ୍ୟା ବିକ୍ରୟୀ ବ୍ରାହ୍ମଣ ଗୁରୁପତ୍ନୀ ରତ ।
ଏମନ୍ତ ସ୍ଥଳରେ ତୁମ୍ଭେ ରହି ନ ପାରିବ
ମୋହର ବଚନ ସତ୍ୟ ଅବଶ୍ୟ ହୋଇବ ।
ଏରୂପେ ସତୀର ବାକ୍ୟ ଶୁଣି ଧର୍ମରାଜ
ବୋଇଲେ ଗୋ ସତୀ ତୁମ୍ଭେ କହିଲ ଯା ଆଜ
ଶୁଣିଣ ସନ୍ତୋଷ ଲାଭ କରିଅଛି ମୁହିଁ
ଆନନ୍ଦେ ଗ୍ରହଣ କର ଯିବ ବର ଦେଇ ।

ଆଜଠାରୁ ତୁମ୍ଭ ପତି ପାଇବେ ଯୌବନ
ଆବର ହୋଇବେ ରୂପ ଗୁଣରେ ସମ୍ପୂର୍ଣ୍ଣ ।
ମାର୍କଣ୍ଡେୟ ଠାରୁ ବଳି ଆୟୁଷ ପାଇଲେ
କୁବେର ଇନ୍ଦ୍ର ସମାନ ସମ୍ପଦ ଭୁଞ୍ଜିଲେ ।
ଶଙ୍କର କପିଳ ତୁଲ୍ୟ ହେବେ ବିଷ୍ଣୁଭକ୍ତ
ତୁମ୍ଭଠାରେ ମଧ୍ୟ ହୋଇଥିବେ ଅନୁରକ୍ତ ।
ତୁମ୍ଭେ ହେବା ସ୍ୱାମୀଭକ୍ତା ସଉଭାଗ୍ୟବତୀ
ଚିରଜୀବୀ ହେବେ ତୁମ୍ଭ ସନ୍ତାନ ସନ୍ତତି ।
ଏମନ୍ତ ବର ଦେଇଣ ଧର୍ମ ସେ କାଳରେ
ନୀରବ ହୋଇ ରହିଲେ ସତୀର ଆଗରେ ।

ତା ଦେଖିଣ ପଦ୍ମାବତୀ ଧର୍ମ ଦେବତାଙ୍କୁ
ପ୍ରଦକ୍ଷିଣ କରିଗଲା ଆପଣା ପୁରକୁ ।
ଆଶୀର୍ବାଦ କରି ଧର୍ମ ସ୍ୱସ୍ଥାନକୁ ଗଲେ
ସତୀର ସ୍ୱଭାବ ବୁଝି ସନ୍ତୁଷ୍ଟ ହୋଇଲେ ।
ତାଙ୍କ ବରେ ମୁନିଙ୍କର ନବ ଯଉବନ
କ୍ଷଣକ ମଧ୍ୟରେ ଦେହେ କଲା ଆସି ସ୍ଥାନ ।
ଆବର ବହୁତ ଧନ ସମ୍ପଦ ମିଳିଲା
ଧର୍ମ କାର୍ଯ୍ୟରେ ସର୍ବଦା ମନ ପ୍ରବର୍ତ୍ତିଲା ।

ତାଙ୍କୁ ଘେନି ପଦ୍ମାବତୀ ପରମ ସୁଖରେ
ଦିନ ନେଲା ରହି ଦିବ୍ୟ ସ୍ୱର୍ଣ୍ଣମୟ ପୁରେ ।
କେତେକ କାଳ ପରେ ରୂପ ଗୁଣରେ ସମ୍ପନ୍ନ
ଜାତ ହେଲେ ତାଙ୍କଠାରୁ ବହୁତ ନନ୍ଦନ ।
ଆହେ ଶୈଳ ଅଧୀଶ୍ୱର ଅନରଣ୍ୟ ନୃପ
ସୁତାଙ୍କୁ ଦେଇଣ ବନେ କଲେ ଯାଇ ତପ ।
ଆପଣା ବନ୍ଧୁବର୍ଗଙ୍କୁ ଆଦରରୁ ରଖି
ଶେଷରେ ସେ ସମସ୍ତଙ୍କୁ କରାଇଲେ ସୁଖୀ ।
ଯେ ସକାଶୁ ବୋଲୁଅଛି ଶଙ୍କରଙ୍କୁ ସୁତା
ପ୍ରଦାନ କରିଲେ ତୁମ୍ଭେ ହୋଇବ ଅଚନ୍ତା ।

ଆଜଠାରୁ ସାତଦିନ ହୁଅନ୍ତେ ଅତୀତ
ଚନ୍ଦ୍ରଗ୍ରହ ହେବେ ବୁଧଗ୍ରହ ସଙ୍ଗେ ଯୁକ୍ତ ।
ମାର୍ଗଶୀର୍ଷ ଚନ୍ଦ୍ରବାରେ ନକ୍ଷତ୍ର ରୋହିଣୀ
ହେବ ସେ ସମୟେ ଯୋଗ ସର୍ବ ଶୁଭସ୍ଥାନୀ ।
ବୈଧବ୍ୟରହିତ ପତି ସୌଭାଗ୍ୟବର୍ଦ୍ଧନ
ସେ ଯୋଗର ଅନ୍ତର୍ଗତ ହୋଇଅଛି ଜାଣ ।
ସେହିଦିନ ପାର୍ବତୀଙ୍କ ପରିଣୟ କାର୍ଯ୍ୟ
ସମ୍ପାଦନ କର ଆହେ ଗିରି ଅଧିରାଜ ।।
ତୁମ୍ଭର କନ୍ୟକା ମୂଳ ପ୍ରକୃତି ଈଶ୍ୱରୀ
ପୂର୍ବେ ଥିଲେ ଦେବତାଙ୍କ ତେଜୁ ଅବତରି ।
ଅସୁର ବଂଶକୁ ହେଲେ କରିଣ ବିନାଶ
ନିବାରଣ କଲେ ଦେବଙ୍କର ଅନୁତାପ ।
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କ ଆଜ୍ଞା ଘେନି ଶିରେ
ଜନମ ହୋଇଲେ ଦକ୍ଷପତ୍ନୀଙ୍କ ଉଦରେ ।
ଶିବଙ୍କୁ ବିବାହ କରି କୈଳାସ ଭବନେ
କେତେଦିନ କଟାଇଲେ ଆନନ୍ଦିତ ମନେ ।
ଦଇବରେ ଦକ୍ଷ ପ୍ରଜାପତି ଶିବଙ୍କର
କଳହ ହେବାର ଦେଖି ସେ ରମଣୀ ବର ।
ମାତାଙ୍କ ପାଶକୁ ଯାଇ ଭବିଷ୍ୟତ ବାଣୀ
କହିଲେ ଆମୂଳକରି ସମସ୍ତ ବଖାଣି ।
ଯଜ୍ଞଭଙ୍ଗ ପିତାଙ୍କର ଶୀଘ୍ର ପରାଭବ
ଦେବତାଙ୍କ ପଳାୟନ ଶିବଙ୍କ ତାଣ୍ଡବ ।
ସେ ଅନ୍ତେ ପ୍ରିୟା ବିରହେ ପୃଥିବୀ ଭ୍ରମଣ
ବିଷ୍ଣୁଙ୍କ କର୍ତ୍ତୃକ ନାନାରୂପେ ପ୍ରବୋଧନ ।
ଏହିପରି କହି ସତୀ ଜାହ୍ନବୀ ତଟରେ
ଦେହ ତ୍ୟାଗ କଲେ ବସି ଯୋଗ ଆସନରେ

ଗନ୍ଧମାର୍ଦନ ଦ୍ରୋଣୀରେ ଯେଉଁ ଦେହ ଥିଲ
ତହିଁରେ ତାଙ୍କର ଆତ୍ମା ପରବେଶ ହେଲ ।
ଦେବଗଣ ଦେଖି ତାହା କଲ ହାହାକାର
ଦୁଃଖିତ ହେଲେ ଗନ୍ଧର୍ବ ଦାନବ କନ୍ନର ।
ଶଙ୍କର ସେ କଥ ଶୁଣି ସୈନ୍ୟ ସହିତରେ
ଦକ୍ଷଙ୍କ ଯାଗକୁ ଆସି ମହା କ୍ରୋଧଭରେ ।
ସକଳ ମନ୍ତ୍ରୀର ଧ୍ୱଂସଙ୍କର ହେଷ୍ଟଷଣି
ଫେରି ଆସିଲେ ସେଠାରୁ ହୋଇ ଅନ୍ତମାମୀ ।
ଦୁଃଖିତ ମନରେ ପୁଣି ଗଙ୍ଗାଙ୍କ ତଟକୁ
ଗଲେ ଦେବୀଙ୍କର ଶବ ଖୋଜ ଦେଖିବାକୁ ।
ଏଥିଠାରେ ସତୀଙ୍କର ଦେହ ବିସର୍ଜନ
କ୍ଷେତ୍ରମୋହନ ଗୀତରେ କଲେ ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ସତୀଦେବୀଙ୍କର ଶରୀରତ୍ୟାଗ ବର୍ଣ୍ଣନେ ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।



## ତ୍ରି ଚ ତ୍ୱା ରିଂ ଶ ଅ ଧ୍ୟା ୟ

## ଶିବଙ୍କର ବ୍ୟଥା ନିବାରଣ ବୃତ୍ତାନ୍ତ ବର୍ଣ୍ଣନ.

ବଶିଷ୍ଠ କହିଲେ ଶୁଣ ଆହେ ହିମାଳୟ
ସତୀଙ୍କ ଶବ ପାଶକୁ ଯାଇ ମୃତ୍ୟୁଞ୍ଜୟ ।
ଦେଖିଲେ ଜାହ୍ନବୀ ତୀରେ ପଡ଼ିଅଛି ଶବ
ତେଜରେ ବିକଚ ପଦ୍ମ ସମାନ ନୋହିବ ।
କର୍ପୂ ଦେଶେ ଶୁକ୍ଳବାସ ହସ୍ତେ ଅକ୍ଷମାଳା
ସୁବର୍ଣ୍ଣ ରତନ ହାରେ ବିଭୂଷିତ ଗଳା ।
ତା ଦେଖି ବିରହ ଦଗ୍ଧ କରି ଦେହ
ପଡ଼ିଲେ କ୍ଷଣେ ପର୍ଯ୍ୟନ୍ତ ଆଜ୍ଞପକରି ମୋହ ।
ତତ୍ତ୍ୱଜ୍ଞାନର ଆଧାର ହେଲେହେଁ ଈଶ୍ୱର
ମୂର୍ଚ୍ଛିତ ହୋଇଲେ ଦଣ୍ଡେ ନ ହୋଇଣ ସ୍ଥିର ।
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲେ
ପ୍ରିୟାଙ୍କୁ ସୁମରି କେତେ ସେଠାରେ କାନ୍ଦିଲେ ।
ବୋଇଲେ ଗୋ କାବେଶ୍ୱରି ଉଠ ତଳ ତେଜ
ମୁଁ ଅଟେ ଶଙ୍କର ମୋତେ ଗୃହିଁ ତବେ ହେଜ ।
ସକଳ ମଙ୍ଗଳମୟ ସର୍ବ ଶୁଭକର
ଅଟଇ ମୁଁ ସବୁଠାରେ ଜଗତ ମଧ୍ୟର ।
ତୁମ୍ଭ ବିନା ଶିବଶୂନ୍ୟ ହୋଇଅଛି ଏବେ
ଜୀବନ ରଖ ମୋହର ଦୟା ଥିଲେ ଲବେ ।
ବ୍ରହ୍ମା ବିଷ୍ଣୁଙ୍କ ସହିତେ ମୁହିଁ ତୁମ୍ଭ ଯୋଗେ
ପ୍ରଭୁ ବୋଲି ଖ୍ୟାତ ହୋଇଅଛି ମହୀଭାଗେ ।
ଏବେ ମୋତେ ଛାଡ଼ି ତୁମ୍ଭେ ଏକା ହୋଇଗଲେ
କ୍ଷଣେମାତ୍ର ରହି ନ ପାରିବି ଜାଣ ଭଲେ ।
ଏମନ୍ତ ବୋଲିଣ ମୃତଦେହକୁ ସେ ଧରି
ବକ୍ଷସ୍ଥଳେ ରଖି ନେତ୍ରୁ ବୁହାଇଲେ ବାରି ।
ମୂର୍ଚ୍ଛିତ ହୋଇଣ ପୁଣି ଚେତନା ପାଇଲେ
ସେ ମୃତଶରୀର ଗୋଟି କନ୍ଧରେ ବହିଲେ ।
ବାକ୍ସିତ ଲୋକ ପର୍ଯ୍ୟନ୍ତେ ସପ୍ତଦ୍ୱୀପା ମହୀ
ବୁଲିଲେ ବହୁତ ବାର ନ ରହିଣ କାହିଁ ।
ଶତଶୃଙ୍ଗ ପର୍ବତରେ ଭାରତବର୍ଷରେ
ଜମ୍ବୁଦ୍ୱୀପେ ମୁନିଜନେ ଅକ୍ଷବଟ ପାଶେ ।
ଭ୍ରମଣ କରି ସେଠାରେ କିଞ୍ଚିତ ବସିଲେ
ସତୀଙ୍କର ନାମ ଧରି ଉଚ୍ଚରେ କାନ୍ଦିଲେ ।
ତାହାଙ୍କର ତିନେତ୍ରରୁ ବହି ଜଳଧାର
ଜାତ ହେଲ ସେକାଳରେ ମହା ସରୋବର ।
ନେନସର ବୋଲିକରି ହୋଇଲା ତା ନାମ
ପୁଣ୍ୟତୀର୍ଥ ଗୁଣରେ ସେ ଅଟଇ ଉତ୍ତମ ।
ତହିଁରେ ସ୍ନାନ କରନ୍ତି ଯେବଣ ପୁରୁଷ
ଅନ୍ତଃକାଳେ ଶିବଲୋକେ ହୁଏ ତାର ବାସ ।
ସେ ସରୋବରକୁ ତେଜ ପୁଣି ଶୂଳଧାରୀ
ଭ୍ରମଣ କଲେ ବରଦେ ଯାଏ ଯେଥିପରି ।
ସତୀଙ୍କ ଶବରୁ ଅଙ୍ଗ ପ୍ରତ୍ୟଙ୍ଗ ସକଳ
ଖସିକରି ଯହିଁ ଆରେ ଜଳ ମହୀତଳ ।
ସେହି ସ୍ଥାନସବୁ ସିଦ୍ଧପୀଠ ବୋଲାଇଲ
ଦେବୀଙ୍କର ପୂଜାବିଧି ସେଠାରେ ହୋଇଲା ।

ଅବଶିଷ୍ଟ ଅଙ୍ଗ ଯେତେ ଶିବଙ୍କ ହସ୍ତରେ
ଥିଲା ତାହାଙ୍କୁ ସଂସ୍କାର କରିଣ ଅଗ୍ନିରେ ।
ଅସ୍ଥିସବୁ ମାଳାକରି କୋଟରେ ଘେନିଲେ
ଛଟାଭସ୍ମ ଆଣି ଅଙ୍ଗ ପ୍ରତ୍ୟଙ୍ଗ ବୋଳିଲେ ।
ସତୀ ପ୍ରାଣେଶ୍ୱରୀ ବୋଲି ଡାକି ପୁନଃପୁନଃ
ଶୋଇଲେ ଅସ୍ତ ପର୍ବତେ ହୋଇ ଅଚେତନ ।
ତା ଦେଖି ଦେବତାଗଣ ଦୁଃଖିତ ଚିତ୍ତରେ
ପ୍ରବେଶ ହୋଇଲେ ଯାଇ ତାହାଙ୍କ ପାଶରେ ।
ପାର୍ଷଦଗଣ ଘେନି ଦେବ ନାରାୟଣ
କଲେ ମଧ୍ୟ ବେଗେ ସେହି ସ୍ଥାନକୁ ପ୍ରୟାଣ ।
ରତ୍ନ ବିମାନରେ ବସି ଲକ୍ଷ୍ମୀଙ୍କର ତୁଲେ
ଦେବଙ୍କ ମଧ୍ୟରେ ଯାଇ ଉପସ୍ଥିତ ହେଲେ ।
ତାଙ୍କୁ ଦେଖି ଦେବଗଣ ପାଦତଳେ ପଡ଼ି
ପ୍ରଣାମ କଲେ ମସ୍ତକେ ବେନିକର ଯୋଡ଼ି ।
ଆଶୀର୍ବାଦ କଲେ ତହୁଁ ଶ୍ରୀହରି ସତ୍ୱରେ
ଶଙ୍କରଙ୍କୁ ତୋଳି ନେଇ ବସାଇ କୋଳରେ ।
ବୋଇଲେ ମୋହର ବାକ୍ୟ ଶୁଣ ସଦାଶିବ
ତୁମ୍ଭେ ସର୍ବ ତତ୍ତ୍ୱଜ୍ଞାନୀ ଦେବଙ୍କର ଦେବ ।
ତଥାପି ତୁମ୍ଭଙ୍କୁ ବୋଧ କରିବାକୁ ମୁହିଁ
ଆସିଅଛି କ୍ଷଣେମାତ୍ର ନ ପାରିଣ ରହି ।
ପଣ୍ଡିତ ଲୋକର ମୋହ ଛଡ଼ାଇବା ପାଇଁ
ପଣ୍ଡିତ ଲୋକ କେବଳ ସମର୍ଥ ହୁଅଇ ।
ଯେଉଁରୂପେ ମହାପଙ୍କେ ପଡ଼ିଥିଲେ ଦନ୍ତୀ
ଦନ୍ତୀବଳ ଯୋଗେ ତାର ହୁଅଇ ମୁକତି ।
ସେହିପରି ଆପଣଙ୍କ ମୋହ ନାଶିବାକୁ
ମୋ ବିନା ଜଗତେ ଆଉ ନ ଦେଖେ କାହାକୁ ।
ମାୟାମୟ ଦୁଃଖ ହେତୁ ଅଟଇ ସଂସାର
ତହିଁରେ ଜନ୍ମ ମରଣ କଷ୍ଟ ଦୁର୍ନିବାର ।
ସବୁଠାରେ ବଳବନ୍ତୀ ଅଟେ ବିଷ୍ଣୁମାୟା
ସର୍ବତ୍ର ବିସ୍ତାର କରି ରହିଅଛି କାୟା ।
ହର୍ଷ ଅଇଶ୍ୱର୍ଯ୍ୟ ଦର୍ପ ବଢ଼ି ନିତି ନିତି
ଜ୍ଞାନୀଙ୍କ ମନକୁ ଆଲୋଡ଼ିତ କରୁଥାନ୍ତି ।
ଏରୂପେ କହିବାବେଳେ ଦେବ ନାରାୟଣ
ଚେତନା ପାଇଣ ଶିବ ଫିଟାଇ ଲୋଚନ ।
ବୋଇଲେ କିଏସେ ତୁମ୍ଭେ ପ୍ରବୋଧୁଛ ମୋତେ
ତୁମ୍ଭପାଶେ ଅଛନ୍ତି କେ କିଏ ସେ ସମସ୍ତେ ।
କି ଅବା ଅଟଇ ତୁମ୍ଭମାନଙ୍କର ନାମ
ତୁମ୍ଭ କଥା ଶୁଣି ମୋର ଦୂର ହେଲା ଭ୍ରମ ।
କେଉଁଠାକୁ ଯାଉଅଛ କହ ମୋ ଆଗରେ
ଏହିଠାରେ ଆସି ରୁଣ୍ଡ ହେଲ କି ହେତୁରେ ।
ଏମନ୍ତ ବୋଲି ଶଙ୍କର ପୁଣି ଶୋକ କଲେ
ତା ଦେଖି ଶ୍ରୀହରି ନେତ୍ରୁ ଅଶ୍ରୁ ବୁହାଇଲେ ।
ସେ ଦୁହିଁଙ୍କ ନେତ୍ରଜଳେ ଦିବ୍ୟ ସରୋବର
ବହିଗଲା ଅକ୍ଷବଟ ମୂଳରେ ସତ୍ୱର ।
ଅସ୍ତଗିରି ପୃଷ୍ଠଭାଗେ ପାଇଲା ସେ ସ୍ଥାନ
ତୀରଦେଶ ଅଟେ ତାର ଅତ୍ୟନ୍ତ ପାବନ ।
ଏଥିଅନ୍ତେ ନାରାୟଣ ବୋଇଲେ ହେ ହର
ଶୁଣ ମୋହର ବଚନ ମନକରି ସ୍ଥିର ।
ସୁଦିନ ଦୁର୍ଦ୍ଦିନ ଏହି ଜଗତ ମଧ୍ୟରେ
ଭ୍ରମୁଛନ୍ତି ରଥଚକ୍ର ଧାରା ପରକାରେ ।
ପ୍ରାକୃତ ଲୋକର ସୁଖ ଦୁଃଖହେତୁ ସେହି
ତା ଯୋଗରେ ହିତାହିତ ସାଧିତ ହୁଅଇ ।
ତହିଁର ମୂଳ କାରଣ ଅଟଇଟି କର୍ମ
କର୍ମ ଅନୁସାରେ ପୁଣି ପ୍ରାପ୍ତ ହୁଏ ଧର୍ମ ।
ସକଳ ପୁଣ୍ୟକର୍ମର ବୀଜ ଅଟେ ମନ
ଚଞ୍ଚଳ କଲେ ପାପରୁ ହୁଏ ସେ କାରଣ ।
ପ୍ରଜାପତି ତୁମ୍ଭେ ମୁହିଁ ସକଳ ସୃଷ୍ଟିର
ଅଟେ ଆହେ ସଦାଶିବ ମନରେ ବିଚାର ।
ଆମ୍ଭର ମୂଳ କାରଣ ଅଟେ ଏକବ୍ରହ୍ମ
ଗୁଣ ଭେଦରେ ବହିଛେ ଆମ୍ଭେ ଭିନ୍ନ ନାମ ।
ସେ ବ୍ରହ୍ମ ସଗୁଣ ପୁଣି ନିର୍ଗୁଣ ଭେଦରେ
ଦୁଇଭାଗରେ ବିଭକ୍ତ ହୋଇଛି ସଂସାରେ ।
ମାୟାଶ୍ରିତ ହୋଇଥାଏ ସଗୁଣ ସନ୍ତତ
ନିର୍ଗୁଣ ଅଟଇ ମାୟାଶୂନ୍ୟ ମହାମତେ ।
ନିଜ ଇଚ୍ଛାରେ ଯେ କରେ ସୃଷ୍ଟିର ବିହାର
ସ୍ୱେଚ୍ଛାମୟ ବୋଲି ତାକୁ ମନରେ ବିଚାର ।
ଇଚ୍ଛା ଶକ୍ତିଦେବୀ ନିଜେ ଅଟନ୍ତି ପ୍ରକୃତି
ସର୍ବଲୋକ ସାଧବୀ ସେ ଦେବୀ ଭଗବତୀ ।
କାହାରି ମତରେ ବ୍ରହ୍ମଜ୍ୟୋତି ସନାତନ
ବିବିଧ ବ୍ରହ୍ମ ପ୍ରକୃତି ବୋଲି ଏ ସେ ଜାଣ ।
କେତେ ବିଜ୍ଞ ବ୍ୟକ୍ତିଙ୍କର ମତରେ ପୁରୁଷ
ପ୍ରକୃତି ସହିତେ ହୋଇ ଅଛନ୍ତି ପ୍ରକାଶ ।

କେଉଁମାନଙ୍କ ମତରେ ପ୍ରକୃତିଟି ଏକ
ତହିଁରୁ ଜାତ ହୁଅନ୍ତି ଚରାଚର ଲୋକ ।
ସେ ପ୍ରକୃତିଠାରେ ନିରଙ୍କୁଶ ସେ ନିର୍ଗୁଣ
ଆତ୍ମାରୂପେ ହୋଇଛନ୍ତି ସଦା ବିଦ୍ୟମାନ ।
ସର୍ବେଶ୍ୱର ସର୍ବସାକ୍ଷୀ ସର୍ବ ଫଳଦାତା
ସେ ପ୍ରଭୁ ଅଟନ୍ତି ସର୍ବଭୁବନ ବିଧାତା ।
ନିତ୍ୟ ପ୍ରାକୃତ ଭେଦରେ ଦ୍ୱିବିଧ ଶରୀର
ବିନାଶ ରହିତ ନିତ୍ୟ ପ୍ରାକୃତ ନଶ୍ୱର ।
ଆମ୍ଭେ ଦୁହେଁ ନିତ୍ୟଦେହୀ ଅଟୁଁ ଆହେ ଶିବ
ଆମ୍ଭଠାରୁ ଜାତ ସର୍ବ ପ୍ରାକୃତିକ ଜୀବ ।
ଦଶରୁଦ୍ର ଆପଣଙ୍କ ଅଂଶରେ ସମ୍ଭୂତ
ବିଷ୍ଣୁରୂପୀ ଯେତେ ସବୁ ମୋହଠାରୁ ଜାତ ।
ନିଜେ ଦୁଇଭାଗ ହୋଇ ରହିଅଛୁ ମୁହିଁ
ବୈକୁଣ୍ଠରେ ଚତୁର୍ଭୁଜ ବିଷ୍ଣୁରୂପ ବହି ।
ଲକ୍ଷ୍ମୀ ସରସ୍ୱତୀଙ୍କର ବଲ୍ଲଭ ବୋଲାଏ
ସୃଷ୍ଟି ପାଳନ କର୍ମରେ ମତି ଦେଇଥାଏ ।
ଦୁଇଭୁଜ ହୋଇ ପୁଣି ଗୋଲୋକରେ ବାସ
କରିଅଛୁ ରାଧିକାଙ୍କୁ ରଖି ନିଜ ପାଶ ।
ଯେଉଁମାନଙ୍କର ମତ ଅଟେ ଏହିପରି
ସେ ଜାଣନ୍ତି ମୋତେ ଦ୍ୱିଧାରୂପ ବୋଲିକରି
ପୁରୁଷ ଅଟଇ ମୁହିଁ ପ୍ରକୃତି ରାଧିକା
ଜଗତର ପିତାମାତା ଅଟୁ ଆମ୍ଭେ ଏକା ।
ପୁରୁଷ ପ୍ରକୃତିଙ୍କର ସମାନ ପ୍ରାଧାନ୍ୟ
ସନ୍ଦେହ ଏଥିରେ କିଛି ନାହିଁ ମନେ ଘେନ ।
ଯେବେ ତୁମ୍ଭେ ସତୀଙ୍କର ସଙ୍ଗ ଇଚ୍ଛା କର
ତେବେ ପ୍ରକୃତିଙ୍କୁ ସ୍ତୁତି କର ଅହେ ହର ।
ଯେଉଁ ଦିବ୍ୟସ୍ତୋତ୍ର ମୁହିଁ ଦୁର୍ବାସାଙ୍କୁ ପୂର୍ବେ
ଦେଇଅଛୁ ତାହା ତୁମ୍ଭେ ପାଠକର ଏବେ ।
ଅବଶ୍ୟ ଶୋକ ବିନାଶ ହୋଇବ ତୁମ୍ଭର
ମଙ୍ଗଳ ଲଭିବ ଏଥି ସଂଶୟ ନ କର ।
ବିରହ ବେଦନା ମୁକ୍ତ ହୁଅ ମୋର ବରେ
ସମବେତ ହୁଅ ପୁଣି ସତୀଙ୍କ ସଙ୍ଗରେ ।
ଏମନ୍ତ କହି ଶ୍ରୀହରି ବିରତ ହୋଇଲେ
ଶିବଙ୍କର ଶିବ ତନ୍ଦ୍ରା କରୁଣ ବର୍ଷିଲେ ।
ଆହେ ହିମାଳୟ ନାରାୟଣଙ୍କ ବଚନ
ଶୁଣି ସଦାଶିବ ତୁଷ୍ଟକରି ନିଜ ମନ ।

କରଯୋଡ଼ି ପ୍ରକୃତିଙ୍କ ସ୍ତୁତି ଆରମ୍ଭିଲେ
ପୁଲକିତ ହେଲା ତାଙ୍କ ଅଙ୍ଗ ସେତେବେଳେ ।
ବୋଇଲେ ନମସ୍ତେ ଦେବୀ ବ୍ରାହ୍ମୀ ସନାତନୀ
ପ୍ରସନ୍ନ ହୁଅ ମୋହର ବିନୟକୁ ଘେନି ।
ପରମାତ୍ମା ରୂପ ତୁମ୍ଭେ ସର୍ବ ଶୁଭଦାତ୍ରୀ
ଦୁର୍ଗତି ନାଶିନୀ ଦୁର୍ଗେ ନମୋ ଜଗଦ୍ଧାତ୍ରୀ ।
ଭବସାଗର ମଧ୍ୟରେ ବୁଡ଼ିଛି ମୋ ଭେଳା
ଦୟା କର ମହାମାୟେ ନ କରିଣ ହେଳା ।
ହେ ସର୍ବମଙ୍ଗଳେ ସର୍ବବନ୍ଦ୍ୟେ ସର୍ବାତ୍ମିନୀ
ସର୍ବଲୋକ ପାଳୟିତ୍ରୀ ମୁକ୍ତିଦାୟିନୀ ।
ଜମ୍ଭ ଜମ୍ଭ ଚଣ୍ଡମୁଣ୍ଡ ଦୈତ୍ୟ ମୃତ୍ୟୁ ରୂପେ
ନିଦ୍ରା ତନ୍ଦ୍ରା କ୍ଷମା ଶାନ୍ତି ଲଜ୍ଜାଦି ସ୍ୱରୂପେ ।
ଲକ୍ଷ୍ମୀରୂପ ବହିଅଛ ବିଷ୍ଣୁଙ୍କର କୋଳେ
ଭାରତୀ ନାମରେ ଖ୍ୟାତ ଅଟ ମହୀତଳେ ।
ପରିଣାମ ପ୍ରଦାୟିନୀ ଭକତ ବତ୍ସଳା
ଅଟ ତୁମ୍ଭେ ସର୍ବଶକ୍ତି ସେ ସର୍ବମଙ୍ଗଳା ।
କଳାଂଶରେ ତ୍ରିଭୁବନ କାମିନୀ ମୂରତି
ପ୍ରକାଶିତ କରିଅଛ ଦେବୀ ଭଗବତୀ ।
ପରମାନନ୍ଦ ରୂପିଣୀ ସମ୍ପଦ ଦାୟିନୀ
ପ୍ରସନ୍ନ ହୁଅ ମୋଠାରେ ତ୍ରୈଲୋକ୍ୟ ପାବନୀ
ଜ୍ଞାନରେ ବା ଅଜ୍ଞାନରେ ଯେତେବେ କିଛି ମୁହିଁ
ଦୋଷ କରିଅଛି କ୍ଷମା କର ମହାମାୟୀ ।
ମଧୁ କଇଟଭ ଦୁହେଁ ପୂର୍ବେ ବିଧାତାଙ୍କୁ
ବାହାରିଲେ ଯେତେବେଳେ ନାଶ କରିବାକୁ
ଭୟରେ ତୁମ୍ଭର ପ୍ରାର୍ଥୀହେଲେ ପ୍ରଜାପତି
ତାହା ଜାଣି ତୁମ୍ଭେ ନାରାୟଣଙ୍କୁ ଝଟିତି ।
ପ୍ରବୋଧିତ କଲେ ହେନ ଦୈତ୍ୟଙ୍କ ନିଧନେ
ବଧିଲେ ବିଷ୍ଣୁ ତାହାଙ୍କୁ ତୁମ୍ଭର ଯତନେ ।
ତୁମ୍ଭଯୋଗେ ସର୍ବେଶ୍ୱର ହୋଇଥିଲି ମୁହିଁ
ଏବେ ତୁମ୍ଭବିନା ଅଛି ମଲା ପରି ହୋଇ ।
ଏରୂପେ ଦେବୀଙ୍କୁ ସ୍ତୁତି କରିଣ ଶଙ୍କର
ନିବୃତ୍ତ ହୋଇଲେ ଜାଣ ଆହେ ମହୀଧର ।
ସେହିକାଳେ ଆକାଶରେ ପ୍ରକୃତି ସୁନ୍ଦରୀ
ଦୃଶ୍ୟ ହେଲେ ବୈଦ୍ୟୁତିକ ପ୍ରଭାକୁ ଧିକ୍କାରି
ବେନି ପାର୍ଶ୍ୱରେ ଦଶଭୁଜ ତାହାଙ୍କର
ନାନାବିଧ ଆୟୁଧରେ ଦିଶଇ ସୁନ୍ଦର ।

ଦେହରେ ସୁବର୍ଣ୍ଣ ରତ୍ନ ଅଳଙ୍କାରମାନ
ରହିଛନ୍ତି ଯେଉଁସ୍ଥାନେ ହୋଇଣ ଯତନ ।
ତାଙ୍କୁ ଦେଖି ମହାଦେବ ବିରହ ଅଗ୍ନିରେ
ଦଗ୍ଧ ହୋଇ ପୁଣି ସ୍ତୁତି କଲେ ଭକ୍ତିଭରେ ।
ମାନସିକ ବେଦନାକୁ କହିଲେ ଫିଟାଇ
ଭସ୍ମ ବିଲେପନ ଅସ୍ଥିମାଳା ଦେଖାଇ ।
ସେ ସମୟେ ନାରାୟଣ ବ୍ରହ୍ମା ଆଦିକରି
ଥିଲେ ସେ ସ୍ଥାନରେ ଯେତେ ସମସ୍ତ ଉଚ୍ଚାରି
ବୋଇଲେ ଗୋ ମହାମାୟେ ଶଙ୍କରଙ୍କୁ ରଖ
ତୁମ୍ଭ ବିନା କେତେ କଷ୍ଟ ସହନ୍ତି ସେ ଦେଖ ।
ଏମନ୍ତ ବୋଲି ସେମାନେ ପୁଣି ସ୍ତୁତି କଲେ
ଶୁଣି ଯୋଗମାୟା ଅତି ସନ୍ତୁଷ୍ଟ ହୋଇଲେ ।
ବୋଇଲେ ଆହେ ଶଙ୍କର ସ୍ଥିର କରି ଚିତ୍ତ
ତୁମ୍ଭର ଅଧୀନ ହୋଇଅଛୁ ମୋ ଜୀବିତ ।
ପ୍ରତ୍ୟେକ ଜନ୍ମରେ ମୋର ସ୍ୱାମୀ ତ ଆପଣ
ଏଥିପାଇଁ କିପାଁ ବୃଥା କରନ୍ତି କାରୁଣ୍ୟ ।
ଶୈଳରାଜାଙ୍କ ଗୃହରେ ଜନ୍ମପାଇ ମୁହିଁ
ତୁମ୍ଭ ପତ୍ନୀ ହେବି ଶୋକ ତେଜ ପ୍ରାଣସାଇଁ ।
ଏହିରୂପେ ଶଙ୍କରଙ୍କୁ ଆଶ୍ୱାସନା କରି
ଅନ୍ତର୍ଦ୍ଧାନ ହୋଇଗଲେ ଦେବୀ ମାହେଶ୍ୱରୀ ।
ଦେବତାମାନେ ଯେ ଯାହା ଭୁବନକୁ ଗଲେ
ଆନନ୍ଦ ମନରେ ଶିବ କୈଳାସେ ମିଳିଲେ ।
ଶମ୍ଭୁକୃତ ସ୍ତୋତ୍ର ପାଠ କରଇ ଯେ ନିତି
ଖଣ୍ଡନ ହୁଅଇ ତାର ସକଳ ବିପତ୍ତି ।
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ହୁଅଇ
କାମିନୀ ବିଚ୍ଛେଦ ଦୁଃଖ କେବେ ନ ଲାଗଇ ।
କହଇ କ୍ଷେତ୍ର ମୋହନ ଶ୍ରୀକୃଷ୍ଣ ଚରଣେ
ସର୍ବଦା ମୋ ମନ ରହିଥାଉ ଅନୁକ୍ଷଣେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କର ବିରହ ବ୍ୟଥା ନିବାରଣ ବୃତ୍ତାନ୍ତ ବର୍ଣ୍ଣନେ ନାମ ତ୍ରୟଚତ୍ୱାରିଂଶୋଽଧ୍ୟାୟଃ ।



## ଚ ତୁ ଶ୍ଚ ତ୍ୱା ରିଂ ଶ ଅ ଧ୍ୟା ୟ

## ଶିବଙ୍କ ସହିତ ପାର୍ବତୀଙ୍କର ବିବାହ ଓ ହିମାଳୟ କର୍ତ୍ତୃକ ଶିବଙ୍କର ସ୍ତୁତି ପାଠ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ରାଧିକା ସୁନ୍ଦରୀ
ପାର୍ବତୀ ବିବାହ କଥା କହିବା ବିସ୍ତାରି ।
ବଶିଷ୍ଠଙ୍କ ବାକ୍ୟ ଶୁଣି ଶୈଳ ଅଧୀଶ୍ୱର
ଶିବଙ୍କୁ ମନରେ ପୂଜା କରିଣ ଅପାର ।
ବିଚାରିଲେ ପାର୍ବତୀଙ୍କୁ ଶଙ୍କରଙ୍କୁ ଦେବି
ନୋହିଲେ ନିଶ୍ଚୟ ଦ୍ରୋହକର୍ମ ଅରଜିବି ।
ଏହିକାଳେ ଅରୁନ୍ଧତୀ ମେନକା ଦେବୀଙ୍କୁ
ପ୍ରବୋଧନା କଲେ କହି ନାନା ଚରିତକୁ ।
ସେ ସକାଶୁ ଶୋକ ତେଜି ପର୍ବତ କାମିନୀ
ଉଠିଲେ ହରଷ ଭାବ ହୃଦପୂରେ ଘେନି ।
ଅରୁନ୍ଧତୀଙ୍କ ସହିତେ ମିଷ୍ଟାନ୍ନ ଭୋଜନ
କଲେ ଯେ ଯାହାର ଇଚ୍ଛା ଅନୁସାରେ ଜାଣ ।
ସେ ଅନ୍ତେ ମଙ୍ଗଳମୟ କର୍ମ ବିଧିମତେ
ସମ୍ପାଦନ କଲେ ସର୍ବେ ହରଷିତ ଚିତ୍ତେ ।
ବଶିଷ୍ଠଙ୍କ ଆଦେଶରେ ବିବାହ ସମ୍ଭାର
ଅଣାଇଲେ ଭୃତ୍ୟହସ୍ତେ ଶୈଳ ଅଧୀଶ୍ୱର ।
ବନ୍ଧୁଜନଙ୍କ ପାଶକୁ ଆମନ୍ତ୍ରଣ ପତ୍ର
ପ୍ରେରଣ କଲେ ସତ୍ୱରେ କରିଣ ମୁଦ୍ରିତ ।
ବିଶ୍ୱସ୍ତ ଭୃତ୍ୟଗୋଟିକୁ ଡକାଇ ଆଣିଲେ
ତା ହସ୍ତେ ଶିବଙ୍କଠାକୁ ନିମନ୍ତ୍ରଣ ଦେଲେ ।
ବିବିଧ ବାଦ୍ୟ ବାଜଣା ଯନ୍ତ୍ରଆଦି କରି
ଅଣାଇଲେ ପୁଣି ନୃତ୍ୟ ଗୀତକାର ସ୍ତ୍ରିରୀ ।
ଗୋଧୂମ ପୃଥୁକ ମାଷ ଚଣକ ତଣ୍ଡୁଳ
ପର୍ବତ ସମାନ ଚକ୍ଷି କରାଇଲେ ଠୁଳ ।
ତୈଳ ଘୃତ ଗୁଡ଼ କ୍ଷୀର ଦଧି ସହିତରେ
ରଖାଇଲେ ଭିନ୍ନ ଭିନ୍ନ ସ୍ଥାନେ ଯତନରେ ।
ଲଡ଼ୁ ଉଖୁଡ଼ା ପିଷ୍ଟକ ଲଜା ସ୍ୱସ୍ତିକ ଶର୍କରା
ଯବଚୂର୍ଣ୍ଣ ଆଦି ଅଣାଇଲେ ସେ ଅପାର ।

ବହ୍ନି ଶୁଦ୍ଧ ବାସ ଭୂଲେ ସ୍ୱର୍ଣ୍ଣ ରତ୍ନମାନ
ବିଧିପୂର୍ବକ ସମସ୍ତ କଲେ ସେ ଭୂଷଣ ।
ଏଥିଅନ୍ତେ ଶୁଭଦିନେ ଶୁଭ ମୁହୂର୍ତ୍ତରେ
କର୍ମ ଆରମ୍ଭିଲେ ଶାସ୍ତ୍ର ବିଧାନ ପ୍ରକାରେ ।
ଅନ୍ତଃପୁରେ ସ୍ତ୍ରୀମାନେ ପାର୍ବତୀଙ୍କୁ ନେଇ
ସ୍ନାନ ଅନ୍ତେ ଦିବ୍ୟ ବାସ ଭୂଷଣ ପିନ୍ଧାଇ ।
ହସ୍ତରେ ଦର୍ପଣ ପାଦେ ଅଲକ୍ତକ ଦେଲେ
ଗଣ୍ଡସ୍ଥଳେ ପତ୍ରାବଳୀ ରଚନା ସେ କଲେ ।
ନୟନରେ ଦେଲେ ପୁଣି କଜ୍ଜ୍ୱଳର ଧାର
ଖଞ୍ଜିଲେ କବରୀଭାରେ ମଲ୍ଲି ପୁଷ୍ପହାର ।
ଏହିସମୟରେ ବ୍ରହ୍ମା ଇନ୍ଦ୍ର ଆଦି କରି
ବର ବେଶେ ଶଙ୍କରଙ୍କୁ ସଙ୍ଗତରେ ଧରି ।
ରତ୍ନ ବିମାନରେ ବସି ସମସ୍ତେ ଆସିଲେ
ଦେଖି ତାଙ୍କୁ ହିମାଳୟ ଆନନ୍ଦିତ ହେଲେ ।
ସମ୍ଭାଷଣ କରିବାକୁ ଶଇଳମାନଙ୍କୁ
ପଠାଇଲେ ଦେବଦ୍ୱିଜ ମୁନିଙ୍କ ପାଶକୁ ।
ପ୍ରାଙ୍ଗଣ ମଧ୍ୟରେ ନାନା କୁସୁମ ବିଞ୍ଚାଇ
ଅଗୁରୁ ଚନ୍ଦନ ତାହା ସଙ୍ଗତରେ ଦେଇ ।
ଦ୍ୱାରପାଶେ ରମ୍ଭାବୃକ୍ଷ କଲେ ଆରୋପଣ
ବାନ୍ଧିଲେ ତହିଁରେ ଚୂତ ପଲ୍ଲବ ତୋରଣ ।
ତା ପାଶେ ପୂର୍ଣ୍ଣ କଳସ ସ୍ଥାପନ କରାଇ
ବିଚିତ୍ର ଚାନ୍ଦୁଆ ଦେଲେ ଉର୍ଦ୍ଧ୍ୱରେ ଟଣାଇ ।
ଦେବତାଙ୍କୁ ଦେଖି ଆଗେ ନିକଟକୁ ଗଲେ
ପ୍ରଣାମ କରି ତାହାଙ୍କୁ ପାଛୋଟି ଆଣିଲେ ।
ଭୃତ୍ୟଙ୍କ ହସ୍ତରେ ରତ୍ନ ସିଂହାସନମାନ
ଗୋଟି ଗୋଟି କରି ଦେଲେ ସେକାଳରେଜାଣ
ପାର୍ଷଦଗଣ ସହିତେ ଦେବ ନରହରି
ବସିଲେ ସୁବର୍ଣ୍ଣମୟ ରଥୁଁ ଅବତରି ।
ଦ୍ୱାରପାଶେ ସେବି ତାଙ୍କୁ ଯେବଣେ ଯତ୍ନରେ
ତାଳୁଥାନ୍ତି ଶ୍ୱେତକଣ୍ଠି ଚାମର ସତ୍ୱରେ ।
ମୁନି ଋଷିମାନେ କର ଯୋଡ଼ି ଆଗେ ରହି
ସ୍ତୁତି କରୁଥାନ୍ତି ମନେ ଭକ୍ତିଭାବ ବହି ।
ସେ ଅନ୍ତରେ ପ୍ରଜାପତି ଦେବତାଙ୍କ ଭୂଲେ
ସୁବର୍ଣ୍ଣ ଆସନପରେ ଆସି ବିଜେ କଲେ ।
ପରିଶେଷରେ ଶଙ୍କର ରଥରୁ ଓହ୍ଲାଇ
ଗଲେ ହିମାଳୟଙ୍କର ପୁରକୁ ଅନାଇଁ ।

ଦେଖିଲେ ସେ ନାନାବିଧ ରତ୍ନରେ ଧର୍ମ ମୂର୍ତ୍ତି
ହୋଇବାରୁ ହରି ନେଉଅଛି ନେତ୍ର ମନ ।
ମନଦେଇ ଶୁଣ ଆଗୋ ବୃଷଭାନୁ ଜେମା
ଦେଖିବାପାଇଁ ସେକାଳେ ଶିବଙ୍କ ସୁଷମା ।
ହିମାଳୟଙ୍କ ନଗରେ ଯେତେ ସ୍ତ୍ରୀ ଥିଲେ
ବସ୍ତ୍ର ଅଳଙ୍କାରେ ମଣ୍ଡି ହୋଇଣ ଆସିଲେ ।
କେଉଁସ୍ତ୍ରୀ ହସ୍ତେ ଧରି କଜ୍ଜ୍ୱଳର ପାଣି
ଆସିଲା ବିଧନ ହେନ କେଉଁ ଗୃହୁଗାମୀ ।
କେଉଁମାନେ କଙ୍କତିକା ସିନ୍ଦୂର ହସ୍ତରେ
ଯେଘେଣ ଆସିଲେ ଦେଖିବାକୁ ହରଷରେ ।
କେଉଁସ୍ତ୍ରୀମାନେ ଅଳଙ୍କାର ଭରୁଥିଲେ
ସମ୍ପୂର୍ଣ୍ଣ ନ ହୋଇ ବେଗେ ଦଉଡ଼ି ଆସିଲେ ।
ସମସ୍ତେ ସସ୍ମିତମୁଖେ ପର୍ବତ ଆଳୟେ
ଜମା ହୋଇଣ ରହିଲେ ଆସି ସେ ସମୟେ ।
ଋଷିକନ୍ୟା ଦେବକନ୍ୟା ନାଗକନ୍ୟାଗଣ
ଉପସ୍ଥିତ ହେଲେ ଘେନି ବସ୍ତ୍ର ବିଭୂଷଣ ।
ଆବର ଗନ୍ଧର୍ବ ରାଜକନ୍ୟାର ସହିତେ
ଅପସରାଗଣ ଆସି ମିଳିଲେ ତ୍ୱରିତେ ।
ସେମାନଙ୍କ ମଧ୍ୟେ ରମ୍ଭା ମେନକା ଶିବଙ୍କୁ
ଅନାଇଲେ ତାହାଙ୍କର ରୂପ ଦେଖିବାକୁ ।
ସେ ସମୟେ ମହାଦେବ ନିଜ ସ୍ୱରୂପେଣ
ଘେନି ଆସିଥିଲେ ଜାଣ ନାରୀଗଣ ଶୁଣ ।
ପୂର୍ଣ୍ଣିମା ଚନ୍ଦ୍ର ପରାୟେ ଗୋଟିଏ ବଦନ
ଦୁଇବାହୁ ପୁଣି ମୁଖେ ଦୁଇଟି ଲୋଚନ ।
ଅଙ୍ଗ ପ୍ରତ୍ୟଙ୍ଗରେ ସ୍ୱର୍ଣ୍ଣରତ୍ନ ଅଳଙ୍କାର
ମଣିମୁକ୍ତା ସଙ୍ଗେ ଦିଶୁଥିଲା ମନୋହର ।
ଚନ୍ଦନ କୁଙ୍କୁମ ଅଗୁରୁ କସ୍ତୁରୀ ଲେପରେ
ଶରୀରଗ ସୁବାସିତ ହୁଏ ନିରନ୍ତରେ ।
ମସ୍ତକ ଉପରେ ମଣି ରତନ ମୁକୁଟ
ଅତୁଲ୍ୟ କିରଣ ଯୋଗେ ଦିଶେ ଝଟ ଝଟ ।
ମାଳତୀ କୁସୁମମାଳ ଶିରେ ବକ୍ଷସ୍ଥଳେ
ଶୋଭିତ ଦିଶଇ ମୁକ୍ତାହାର ତାର ତଳେ ।
ବହ୍ନି ଶୁଦ୍ଧ ସୂକ୍ଷ୍ମବାସ କଟିଦେଶେ ସାଜେ
ହସ୍ତରେ ମଣି ରତନ ଦର୍ପଣ ବିରାଜେ ।
ଏମନ୍ତ ରୂପରେ ପ୍ରଭୁ ବିଜେକରି ତହିଁ
ମୋହିତ କଲେ ସଭୁର ମନ ନେତ୍ର ଦୁଇ ।

ତାହାଙ୍କୁ ଦେଖି ମେନକା ଶୋକ ତ୍ୟାଗକରି
ପ୍ରଶଂସା କଲେ ତାଙ୍କ ମହିମା ବିସ୍ତରି ।
କେତେ ସ୍ତ୍ରୀମାନେ ତହିଁ ବୋଇଲେ ପାର୍ବତୀ
ତପ କରି ନ ଥିଲେ କି ପାଆନ୍ତେ ଏ ପତି ।
ଏହାଙ୍କ ସମାନ ବର କେଉଁଠାରେ ହେଲେ
ଆଜଯାଏ ଆମ୍ଭେ ଦେଖି ନ ଥାଇ ତ ଡୋଳେ
କେଉଁମାନେ ନିର୍ନିମେଷ ନେତ୍ରରେ ଅନାଇ
ମୂର୍ଚ୍ଛିତ ହୋଇଲେ ଧୀରେ ନ ପାରଣ ରହି
କେହିଁ ସ୍ତ୍ରୀ ଆପଣାର କାନ୍ତକୁ ନିନ୍ଦିଲି
କେ କାମିନୀ ଶିବଙ୍କର ସଙ୍ଗ ଇଚ୍ଛା କଲି ।
କେଉଁମାନେ କାମଶରେ ଉନମତ୍ତ ହୋଇ
ଉଚ୍ଚାରିଲେ ସ୍ତମ୍ଭପ୍ରାଯ୍ୟେ ବଚନ ନ କହି ।
ଶଙ୍କରଙ୍କ ରୂପ ଦେଖି ସକଳ ଦେବତା
ଆନନ୍ଦରେ ହେଲେ ପରସ୍ପରେ କଥାବାର୍ତ୍ତା ।
ସେହି ସମୟରେ ବାଦ୍ୟକାରଗଣ ମିଳି
ବଜାଇଲେ ନାନାରୂପ ବାଦ୍ୟଯନ୍ତ୍ର ତାଳି ।
ଅନ୍ତଃପୁରର ପତିବ୍ରତୀ କାମିନୀଏ ଜାଣି
ପାର୍ବତୀଦେବୀଙ୍କୁ ବେଶ କରାଇଲେ ଆଣି ।
ଅମୂଲ୍ୟ ବାସ ପିନ୍ଧାଇ କରିଧରି ଧୀରେ
ପ୍ରଦକ୍ଷିଣ କରାଇଲେ ଶିବଙ୍କୁ ସତ୍ୱରେ ।
ଈଶ୍ୱରୀଙ୍କୁ ଦେଖି ସେ କାଳରେ ଦେବଗଣ
ହରଷିତ ମନେ ସର୍ବେ କଲେ ନିରୀକ୍ଷଣ ।
ଦେଖିଲେ ତପତ ସ୍ୱର୍ଣ୍ଣ ପରି ତାହାଙ୍କର
ଅଙ୍ଗ ଦିଶୁଅଛି ତେଜେ ଅତି ମନୋହର ।
ସୁନ୍ଦର କବରୀବନ୍ଧ ଭ୍ରୁରୁ ପତ୍ରଲେଖା
କସ୍ତୁରୀ ବିନ୍ଦୁ ମଣ୍ଡିତ ହୋଇଅଛି ଯୋଖା ।
ବକ୍ଷସ୍ଥଳେ ରତ୍ନସାର ହାର ବିଲମ୍ବିତ
ହେବାରୁ ଦିଶୁଅଛି ସେ ଅତ୍ୟନ୍ତ ଶୋଭିତ ।
ସାହାସ୍ୟ ମୁଖରେ ନେତ୍ର ବୁଲାଇ ଶିବଙ୍କୁ
ନିରୀକ୍ଷଣ କରି ପ୍ରକାଶନ୍ତି ସେ ଭାବକୁ ।
ରତ୍ନ କଙ୍କଣ କେୟୂର କୁଣ୍ଡଳରେ ଶୋଭା
ଦିଶୁଥିଲା ଯେହ୍ନେ କାଳ ମାରତଣ୍ଡ ପ୍ରଭା ।
ଈଶ୍ୱର ତାହାଙ୍କୁ ନେତ୍ର କୋଣରେ ଅନାଇଁ
ଦେଖିଲେ ସତୀଦେବୀଙ୍କ ପ୍ରତିରୂପ ସେହି ।

ସେ ସକାଶୁ ଆନନ୍ଦାଶ୍ରୁ ବୁହାଇ ଲୋଚନୁ
ବିରହ ବେଦନା ତ୍ୟାଗ କଲେ ନିଜମନୁ ।
ଏଥୁଅନ୍ତେ ହିମାଳୟ ପୁରୋହିତ ମତେ
ବସ୍ତ୍ର ଅଳଙ୍କାର ଗନ୍ଧ କୁସୁମ ସହିତେ ।
ମନ୍ତ୍ର ପଢ଼ି ଶଙ୍କରଙ୍କୁ ବରଣ ଯେ କଲେ
ପାଦ୍ୟ ଅର୍ଘ୍ୟ ଦେଇ ବିଧି ପ୍ରକାରେ ପୂଜିଲେ
ପୁଣି ବିବାହ ପ୍ରଶସ୍ତ ମନ୍ତ୍ର ପାଠ କରି
ସମର୍ପିଲେ ଦୁହିତାଙ୍କ ହସ୍ତ ହସ୍ତେ ଧରି ।
ଅଗ୍ନି ସାକ୍ଷୀ କରି ବରକନ୍ୟାଙ୍କୁ ଯେକାଳେ
ହୋମ ପ୍ରଦକ୍ଷିଣ ଆଦି କର୍ମ କରାଇଲେ ।
ସେ ଅନ୍ତରେ ନାନାବିଧ ଯଉତୁକ ଦାନ
ଦେଲେ ଆନନ୍ଦ ମନରେ ଗିରି ହିମବାନ ।
ଏକ ଲକ୍ଷ ଅଶ୍ୱ ଦଶଶତ ଦନ୍ତାବଳ
ଦୁଇଲକ୍ଷ କାମଧେନୁ କଲେ ନେଇ ଠୁଳ ।
ରତ୍ନ ବିନିର୍ମିତ ଦଶଶତ ସସ୍ତ୍ର ରଥ
ସାରଥି ରଥ ସହିତେ ଦେଲେ ତାହା ସାଥ ।
ସ୍ୱସ୍ତି ଉଚ୍ଚାରଣ କରି ପ୍ରଭୁ ଶୂଳପାଣି
ପାର୍ବତୀ ସହିତେ ସବୁ ଘେନିଲେ ସେକ୍ଷଣି ।
ସେ ଅନ୍ତେ ପର୍ବତରାଜା ବେଦସ୍ତୋତ୍ର ପଢ଼ି
ସ୍ତୁତିକଲେ ଈଶ୍ୱରଙ୍କୁ ଶିରେ କରଯୋଡ଼ି ।
ବୋଇଲେ ଆହେ ଜଗତ କାରଣ ସୁରେଶ
ତୁମ୍ଭେ ଅଟ ସର୍ବମୟ ତ୍ରିଭୁବନ ଈଶ ।
ଗୁଣାର୍ଣ୍ଣବ ଗୁଣାତୀତ ଗୁଣଯୁକ୍ତ ତୁମ୍ଭେ
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ ।
ଯୋଗାଧାର ଯୋଗରୂପ ଯୋଗ କି କାରଣ
ଦୟା କରି ହୁଅ ଦେବ ମୋଠାରେ ପ୍ରସନ୍ନ ।
ଶିବରୂପ ଶିବପ୍ରାଣ ଶିବ ରାଜାଶ୍ରୟ
ନମସ୍ତେ ନମସ୍ତେ ପ୍ରଭୁ କରୁଣା ନିଳୟ ।
ଏହିରୂପେ ସ୍ତୁତିକରି ହିମାଳୟ ତୁନି
ହୁଅନ୍ତେ ପ୍ରଶଂସା କଲେ ଦେବ ଋଷି ମୁନି ।
ହିମାଳୟ କୃତ ସ୍ତୋତ୍ର ପଢ଼ଇ ଯେ ନିତି
ସକଳ ସମ୍ପଦ ତାକୁ ଦିଅନ୍ତି ପଶୁପତି
ଏହିଠାରେ ପାର୍ବତୀଙ୍କ ବିବାହ ବୃତ୍ତାନ୍ତ
ବର୍ଣ୍ଣନା କରିଲି ଶୀତେ ଧାନ ସ୍ନାନ ଷେତ୍ର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କ ସହିତ ପାର୍ବତୀଙ୍କର ବିବାହ ଓ
ହିମାଳୟ କର୍ତ୍ତୃକ ଶିବଙ୍କର ସ୍ତୁତିପାଠ ବର୍ଣ୍ଣନେ ନାମ ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।

# ପଞ୍ଚତ୍ରିଂଶ ଅଧ୍ୟାୟ

## ଶିବଙ୍କର ବିବାହ ଓ ଶିବଙ୍କ ପ୍ରତି ଦେବୀମାନଙ୍କର ସ୍ତୁତି ଉକ୍ତି ବର୍ଣ୍ଣନ

ଶ୍ରୀକୃଷ୍ଣ କହିଲେ ପ୍ରିୟେ ଶୁଣ ମନଦେଇ
ହୋମ କୁଣ୍ଡରେ ଶଙ୍କର ଅନଳ ଜଳାଇ ।
ପାର୍ବତୀ ଦେବୀଙ୍କୁ ଘେନି ବାମ ପାର୍ଶ୍ୱରେ
ଯଜ୍ଞ କଲେ ଆହୁତିକୁ ଦେଇଣ ଅଗ୍ନିରେ ।
ଶେଷରେ ଦ୍ୱିଜଙ୍କୁ ଡାକି ଶତେକ ସୁବର୍ଣ୍ଣ
ଯଥାବିଧି ମନ୍ତ୍ରପଢ଼ି କଲେ ସେ ପ୍ରଦାନ ।
ସେ ଅନ୍ତେ ସ୍ୱାମୀଯୁକ୍ତ ଅନ୍ତଃପୁର ସ୍ତ୍ରୀଏ
ଆସିଲେ ମଙ୍ଗଳ ଦୀପ ଦୂର୍ବାକ୍ଷତ ଧରି ।
ବେଦୀରେ ବର କନ୍ୟାଙ୍କୁ ବନ୍ଦାପନା କଲେ
ହସ୍ତ ଧରି ଉଠାଇଣ ପୁରେ ଘେନିଗଲେ ।
ଶୁଭ ନିର୍ମଞ୍ଛନ ଜୟଧ୍ୱନି ସହିତରେ
ମିଳିଲେ ଯୁବତୀଗଣ ଶୈଳରାଜ ପୁରେ ।
ତାହାଙ୍କର ବେଶଭୂଷା ଦେଖିଣ ଶଙ୍କର
ଆନନ୍ଦ ପ୍ରକାଶ କଲେ ମନରେ ଅପାର ।
ସେମାନେ ଅଙ୍ଗରେ ଭରି ନାନା ଆଭରଣ
ପରିଧାନ କରିଥିଲେ ଦିବ୍ୟ ବାସମାନ ।
ମସ୍ତକ ଦେଶରେ ସୂକ୍ଷ୍ମ କସ୍ତୁରୀ ସିନ୍ଦୂର
ବିନ୍ଦୁ ଥିବାରୁ ସେ ଦିଶୁଥିଲା ମନୋହର ।
ସମସ୍ତଙ୍କ ବରନ ସ୍ୱଚ୍ଛ ଚମ୍ପକ ସଦୃଶ୍ୟ
ସମସ୍ତଙ୍କୁ ହୋଇଅଛି ବରଷ ଷୋଡ଼ଶ ।
ଦେବକନ୍ୟା ନାଗକନ୍ୟା ମୁନିକନ୍ୟା ଯେତେ
ରୁଣ୍ଡ ହୋଇଥିଲେ ସେହି ସ୍ଥାନରେ ସମସ୍ତେ ।
ସେମାନେ ରତ୍ନଆସନ ଦେବାରୁ ଶଙ୍କର
ବସିଲେ ସେଠାରେ ମୋଦ ବହିଣ ଅପାର ।
ଶିବଙ୍କର ମାନସକୁ ରଞ୍ଜାଇବା ପାଇଁ
ଦେବସ୍ତ୍ରୀମାନେ ତାଙ୍କୁ କହିଲେକ ତହିଁ ।
ପ୍ରଥମରେ ସରସ୍ୱତୀ କହିଲେ ହେ ଈଶ
ସତୀଙ୍କୁ ପାଇଲ ଆଜ ନ ହୁଅ ବିରସ ।
ପ୍ରିୟାଙ୍କର ମୁଖପଦ୍ମ ଦରଶନ କରି
ସୁଖରେ କାଳ ଯାପନ କର ପୂର୍ବପରି ।
ମୋର ଆଶୀର୍ବାଦେ ତୁମ୍ଭ ଦୁହିଙ୍କ ବିଯୋଗ
ନ ହେଉ କଦାପି ଦେବରାଜ ମହାଭାଗ ।
ମହାଲକ୍ଷ୍ମୀ କହିଲେ ହେ ଦେବଙ୍କ ଈଶ୍ୱର
ସତୀଙ୍କୁ ଘେନିଣ ଏବେ ସୁଖରେ ବିହର ।
ଯାହାଙ୍କ ସକାଶେ ପ୍ରାଣ କରୁଥିଲ ତ୍ୟାଜ୍ୟ
ଭୋଗ କରି ତାଙ୍କୁ ଏବେ ଛାଡ଼ଦେଇ ଲାଜ ।
ସାବିତ୍ରୀ କହିଲେ ଶିବ ତେଜି ମନୁ ଦୁଃଖ
ପରିତୃପ୍ତ ହୁଅ ଦେଖି ପ୍ରିୟାଙ୍କର ମୁଖ ।
ଜାହ୍ନବୀ କହିଲେ ସ୍ୱର୍ଣ୍ଣ କଙ୍କତିକା ଧରି
ପ୍ରିୟାଙ୍କର କେଶ ସାଜ ଅତି ଯତ୍ନ କରି ।
ପତି ସଉଭାଗ୍ୟଠାରୁ ବଳି କାମିନୀର
ସୁଖ ହୋଇ ଆଉ କିଛି ନାହିଁ ଏ ସଂସାର ।
ଏଥିଅନ୍ତେ ରତିଦେବୀ ଶୋକମତି ହୋଇ
କହିଲା ଶିବଙ୍କୁ ନେତ୍ର ଲୋତକ ବୁହାଇ ।
କହିଲା ଆହେ ଈଶ୍ୱର ପାର୍ବତୀଙ୍କ ଭୁଲେ
ଆପଣ ତ ସ୍ୱଇଚ୍ଛାରେ ବିବାହ ହୋଇଲେ ।
ବୃଥାରେ କପାଇଁ ମୋର ପତିଙ୍କୁ ବିନାଶ
କରି ବୁଡ଼ାଇଲେ ମୋର ସୁଖଭୋଗ ଆଶ ।
ହେ ପ୍ରଭୁ ଘେନିଣ ଏବେ ମୋହର ବିନତି
ପତିଙ୍କ ଜୀବନ ଦାନ କରି ବହି ପ୍ରୀତି ।
ଦମ୍ପତି ବିରହ କ୍ଳେଶ ଜାଣ ତ ଆପଣ
ଅଧିକ କହିବା ମୋର ଅଟେ ଅକାରଣ ।
ଏହିରୂପେ କହି ରତି ଶିବଙ୍କ ଆଗରେ
କନ୍ଦର୍ପରେ ଅଙ୍ଗଭସ୍ମ ଥୋଇ ଯତନରେ ।
ନାଥ ନାଥ ବୋଲି ଉଚ୍ଚେ କରନ୍ତେ ରୋଦନ
କରୁଣାସାଗର ପ୍ରଭୁ କମଳାରମଣ ।
ବ୍ରହ୍ମା ଇନ୍ଦ୍ର ଧର୍ମ ଆଦି ଦେବତାଙ୍କ ଭୁଲେ
ପୂର୍ଣ୍ଣ କଲେ ନିଜ ନିଜ ନେତ୍ର ଅଶ୍ରୁଜଳେ ।
ସେ ଅନ୍ତରେ ସଦାଶିବ କହିଲେ ହେଦେବେ
ଜୀଆଇଁବା କନ୍ଦର୍ପକୁ ଆଜ୍ଞା କର ଏବେ ।
ତାହା ଶୁଣି ନାରାୟଣ ସ୍ୱୀକାର କଲେ
ମେଲାଣି ହୋଇଣ ନିଜ ଭବନକୁ ଗଲେ ।
ଦେବାଦିଦେବୀଗଣ ମଧ୍ୟ କହିଲେ ଈଶ୍ୱର
ଅବିଳମ୍ବେ କନ୍ଦର୍ପକୁ ଜୀବଦାନ କର ।

ସେମାନଙ୍କଠାରୁ ଏହା ଶୁଣି ହିମ୍ଭୁଧର
କାମ ଶରୀର ଭସ୍ମକୁ ଏକଠାବ କରି ।
ସୁଧାବୃଷ୍ଟିରେ ଅନାଇଁ ଦେବା ଯମସ୍ତରେ
ଉଠିଲ କନ୍ଦର୍ପ ପୁଷ୍ପଧନୁ ଧରି କରେ ।
ପୂର୍ବପର ସୌନ୍ଦର୍ଯ୍ୟରେ ପୂରିଣ୍ଟ ଶରୀର
ମୁଖ ନାସାଆଦି ଅଙ୍ଗ ଦିଶଇ ସୁନ୍ଦର ।
ପତିକୁ ଆଗରେ ଦେଖି ରତିଦେବୀ ତୋଷେ
ପ୍ରଣାମ କଲି ସେକ୍ଷଣି ଶିବ ପାଦଦେଶେ ।
ଆବର ବହୁତ ସ୍ତୁତି କରିଣ ଆନନ୍ଦେ
ନମସ୍କାର କଲି ଯାଇ ପ୍ରାଣକାନ୍ତ ପାଦେ ।
କନ୍ଦର୍ପ ସେକାଳେ ଶିରେ ବେନିକର ଯୋଡ଼ି
ଦଣ୍ଡବତ ହେଲ ଶିବଙ୍କର ପାଦେ ପଡ଼ି ।
ପୁଣି ଦେବତାଙ୍କୁ ଆଗେ ଦେଖି ବେଗେ ଗଲ
ପ୍ରଣାମ କରି ଆସନ ଉପରେ ବସିଲ ।
ଆଶୀର୍ବାଦ କରି ଦେଲେ ଶୁଭ ସମ୍ଭାଷଣ
କଲେ ତାହା ସତଙ୍ଗରେ ସେ ସମସ୍ତେ ଜାଣ ।
ଏଥୁଅନନ୍ତରେ ଶୈଳରାଜ ହିମାଳୟ
ଦେବତା ଋଷିଙ୍କୁ ନେଇ ଆପଣା ନିଳୟ ।
ନାନାବିଧ ମିଷ୍ଟଦ୍ରବ୍ୟ ଭୁଞ୍ଜିବାକୁ ଦେଲେ
ମଧୁର ବଚନ କହି ମାନସ ତୋଷିଲେ ।
ପାର୍ବତୀଙ୍କୁ ବାମଭାଗେ ବସାଇ ଶଙ୍କର
ଭୋଜନ କଲେ ସେ କାଳେ ଖାଦ୍ୟ ସୁମଧୁର ।
ଭୋଜନ ସମୟେ ଦେବୀଗଣ ପାଶେ ବସି
ପରିହାସ କଲେ ଗୂଢ଼ କଥାମାନ ଭାଷି ।
ଅଦିତି ବୋଇଲେ ଶିବ ଭୋଜନ ଶେଷରେ
ଜଳ ଦିଅ ପାର୍ବତୀଙ୍କୁ ଉଚିତ ହେତୁରେ ।
ନବ ଦମ୍ପତିଙ୍କ ପ୍ରେମ ଅଟଇ ଦୁର୍ଲ୍ଲଭ
ଏମନ୍ତ ହେଲେ ପ୍ରିୟାଙ୍କ ମନ ତୋଷହେବ ।
ଶଚୀ ବୋଇଲେ ବିଳାପ ନ କର ହେ ହର
ପାର୍ବତୀଙ୍କୁ ବକ୍ଷସ୍ଥଳେ ବସାଇ ସତ୍ୱର ।
ଲଜ୍ଜା ତେଜି ରତିରସେ ବଳାଅ ମାନସ
ତାଙ୍କ ସଙ୍ଗ ଝୁରି ଝୁରି ହୋଇଛ ତ କୃଶ ।
ଲୋପାମୁଦ୍ରା ବୋଇଲେ ହେ ଶୟନ ଗୃହରେ
ତାମ୍ବୁଳ ଦେବ ପ୍ରଥମେ ପ୍ରିୟାଙ୍କ ମୁହରେ ।
ଅରୁନ୍ଧତୀ ବୋଇଲେ ମୁଁ ସତୀଙ୍କୁ ବୁଝାଇ
ତୁମ୍ଭ ସକାଶରେ କନ୍ୟା ଦେଇଛି କରାଇ ।
ଏବେ ମୋର ବୋଲେ ତୁମ୍ଭେ ରତିରସେ ମାତି
ଏହାଙ୍କର ମାନସକୁ କରାଅ ତୃପତି ।
ଅହଲ୍ୟା ବୋଇଲେ ତୁମ୍ଭ ଚରଣ ରୂପକୁ
ଦେଖିଣ ମେନକା ଦାନ କଲେ ପାର୍ବତୀଙ୍କୁ ।
ତୁଳସୀ ବୋଇଲେ ସମ୍ପାଦେବୀଙ୍କୁ ଛାଡ଼ିଲ
କନ୍ଦର୍ପକୁ ପୁଣି କ୍ରୋଧେ ଭସ୍ମ କରିଦେଲ ।
ଏବେ ଆଜ କାହିଁପାଇଁ ବଶିଷ୍ଠ ମୁନିଙ୍କୁ
ପଠାଇଲ କହି ହିମାଳୟଙ୍କ ପାଶକୁ ।
ସ୍ୱାହାଦେବୀ ବୋଇଲେ ହେ ସୃଷ୍ଟିର ହୁଅ ହର
ବିବାହେ ଅଟେ ଏ ରୀତି ପୁରସ୍ତ୍ରୀଙ୍କର ।
ରୋହିଣୀ ବୋଇଲେ କାମଶାସ୍ତ୍ର ବିଶାରଦ
ଅଟ ତୁମ୍ଭେ ଆହେ ହର ଶୁଭ ଫଳପ୍ରଦ ।
କାମସାଗରେ ନିମଗ୍ନ ଅଟନ୍ତି ପାର୍ବତୀ
ସନ୍ତୁଷ୍ଟ କରାଅ ତାଙ୍କୁ ସଜାଇ ସୁରତି ।
ବସୁନ୍ଧରା ବୋଇଲେ ହେ କାମୁକୀ ସ୍ତ୍ରୀ ଶ୍ରୀର
ହୃଦୟ ବେଦନା ତୁମ୍ଭେ ଜାଣ ତ ଈଶ୍ୱର ।
ନବସଙ୍ଗମ ଲଜ୍ଜିତା ପାର୍ବତୀଙ୍କୁ ଯେବେ
କ୍ରୀଡ଼ା କର ସୁଖେ ଭୟ ଲଜ୍ଜାକୁ ନ ମାନି ।
ଶତରୂପା ସେ କାଳରେ ମନ୍ଦ ମନ୍ଦ ହସି
ବୋଇଲେ ଶୁଣିମା ହେଉ ଆହେ ଦେବକାଶୀ
ଭୋଗଦ୍ରବ୍ୟ ବିନା ଭୋଗୀ ସନ୍ତୁଷ୍ଟ ନୁହଇ
ଏ କଥା ବିଚାରି କାର୍ଯ୍ୟ କର ଭାବଗ୍ରାହୀ ।
ମେନକା ବୋଇଲେ ଗୋ ପୁରସ୍ତ୍ରୀମାନେ ଆସ
ଶିବ ପାର୍ବତୀଙ୍କ ପାଇଁ ସଜାଇବା ବାସ ।
ଗନ୍ଧ ପ୍ରଦୀପ ତାମ୍ବୁଳ ତଳ୍ପଆଦି କରି
ରଖିବା ନିର୍ଜନ ଗୃହେ ରାଣୀଙ୍କୁ ପଚାରି ।
ଏହିରୂପେ ଦେବୀଙ୍କର ଗୂଢ଼ବାକ୍ୟ ଶୁଣି
ଶଙ୍କର ବୋଇଲେ ହସି ତାହାଙ୍କୁ ଏ ବାଣୀ ।
ଜଗତର ମାତାପରି ଅଟ ତୁମ୍ଭେମାନେ
ପୁତ୍ରତୁଲ୍ୟ ନୁହେ କି ମୁଁ ତୁମ୍ଭ ସନ୍ନିଧାନେ ।
ସେ ସକାଶୁ ବୋଲୁଅଛ ମୋ ଆଗେ ଏପରି
କହିବା ଉଚିତ ହେଉ ନାହିଁ ହେ ଭୁମରି ।
ତାହା ଶୁଣି ଦେବୀଗଣ ଲଜ୍ଜିତା ହୋଇଲେ
ଚିତ୍ରାର୍ପିତ ହେଲ ପରି ଯମସ୍ତେ ରହିଲେ ।
ସେ ଅନ୍ତରେ ସଦାଶିବ ବଢ଼ାଇ ଭୋଜନ
ପ୍ରିୟା ସହିତରେ କଲେ ତାମ୍ବୁଳ ସେବନ ।

ମେନକା ଯେ ରତ୍ନସିଂହାସନ ଦେଇଥିଲେ
ତହିଁରେ ବସିଣ ବାସଗୃହକୁ ଚାହିଁଲେ ।
ଦେଖିଲେ ସେ ଗୃହେ ରତ୍ନଦୀପ ଶତ ଶତ
ଜଳୁଅଛି ସବୁସ୍ଥାନ କରି ଆଲୋକିତ ।
ରତ୍ନପାତ୍ର ରତ୍ନମୟ ଦରପଣ କେତେ
ଥୁଆ ହୋଇଛନ୍ତି ରତ୍ନ କଳଶ ସହିତେ ।
ଶୁକ୍ଳଛତ୍ର ଶୁକ୍ଳବର୍ଣ୍ଣ ଚାମର ଯୁଗଳ
ଥିବାରୁ ସୁନ୍ଦର ଦିଶୁଅଛି କେଉଁ ସ୍ଥଳ ।
ଚନ୍ଦନ କସ୍ତୁରୀ ଜଳ କୁସୁମରେ ପୂରି
ରହିଅଛି କେଉଁ ସ୍ଥାନେ ଜାଣ ଗୋ ସୁନ୍ଦରୀ ।
କେଉଁଠାରେ ବଇକୁଣ୍ଠ ଭୁବନ ସଦୃଶ
ଦେଖା ଯାଉଅଛି ଆଗେ ନାନାବିଧ ଦୃଶ୍ୟ ।
ବୃନ୍ଦାବନ ବିରଚିତ ହୋଇଅଛି କାହିଁ
କେଉଁଠାରେ କଇଳାସ ପୁରି ଶୋଭା ପାଇଁ ।
ଏହିରୂପେ ନାନାବିଧ ଦୃଶ୍ୟ ଦେଖି ଦେଖି
ଶୟନ କଲେ ଈଶ୍ୱର ହୋଇ ମହାସୁଖୀ ।
ଏଥୁଅନ୍ତେ ନିଶାଶେଷେ ପ୍ରଭାତ ହୋଇଲା
ନାନାବିଧ ବାଦ୍ୟଯନ୍ତ୍ର ଶବଦ ଶୁଭିଲା ।
ଶଯ୍ୟା ତ୍ୟାଗକରି ସର୍ବେ ଉଠି ତତକ୍ଷଣ
କଲେ ଯେ ଯାହାର ନିତ୍ୟକର୍ମ ଆଚରଣ ।
ନିଜ ନିଜ ବାହନକୁ ଆରୋହଣ ହେବେ
କୈଳାସକୁ ଯିବାପାଇଁ ବାହାରିଲେ ସର୍ବେ ।
ଧର୍ମଦେବ ପାଇ ନାରାୟଣଙ୍କ ଆଦେଶ ।
ଶିବଙ୍କ ବାସ ଗୃହରେ ହେଲେ ପରବେଶ ।
ବୋଇଲେ ଆହେ ଈଶ୍ୱର ପାର୍ବତୀଙ୍କ ଭୁଲେ
ମାହେନ୍ଦ୍ର ସମସ୍ତେ ଯାତ୍ରା କରି ଆସ୍ତୁ ବୋଲେ
ମନେ ମନେ ଶ୍ରୀହରିଙ୍କୁ ସୁମରଣା କରି
ପରିଜନ ସେନ ବଳେ କରି ନିଜପୁରୀ
ତାହା ଶୁଣି ମହାଦେବ ସତ୍ୱରେ ଉଠିଲେ
ପାର୍ବତୀଙ୍କୁ ସଙ୍ଗେ ଧରି ପୁରରେ ଯାତ୍ରା କଲେ
ସେ ସମସ୍ତେ ଉଚ୍ଚସ୍ୱରେ କାନ୍ଦିଣ ମେନକା
କହିଲେ ଶିବଙ୍କ ଆଗେ ହୋଇଣ ଚାଟକା ।
ବୋଇଲେ ଆହେ କରୁଣାମୟ ସଦାଶିବ
ଯତନରେ ମୋର ସୁତାକୁ ପାଳନା କରିବ ।
ସେବାରେ ଦୋଷ କଲେ ସବୁ କରୁଥିବ କ୍ଷମା
ଆପଣଙ୍କ ପାଦଦାସୀ ଅଟେ ମୋର ଜେମା ।

ସ୍ୱପ୍ନ ଜ୍ଞାନ ଜାଗରଣେ ସେ ଭୂଧର ଜନା
ଅନ୍ୟ ସ୍ତ୍ରୀ ପୁରୁଷଙ୍କୁ ଚିନ୍ତେ ନ କରେ ଭାବନା ।
ଭୂଧର ନନ୍ଦା ବଚନ ଶୁଣେ ଅବା ଯେବେ
ହରଷ ନ ଥାଏ ତାର ମାନସରେ ଲବେ ।
ଏମନ୍ତ କହି ସୁତାଙ୍କ ହସ୍ତ ଧରି ନେଲେ
ଜାମାତାଙ୍କୁ ସମର୍ପଣ କରିଣ କାନ୍ଦିଲେ ।
ପାର୍ବତୀ ସେକାଳେ ବସ୍ତ୍ର ମାୟାରେ ମୋହିତ
ହେବାରୁ କାନ୍ଦିଲେ ଧୈର୍ଯ୍ୟ ନ ଧରିଣ ଚିତ୍ତ ।
ତାହାଙ୍କ ପାଶରେ ଦେବୀମାନେ ଯେତେ ଥିଲେ
ସମସ୍ତେ ଶୋକରେ ଅତି ଆକୁଳ ହୋଇଲେ
କ୍ରମେ କ୍ରମେ ସବୁଙ୍କର ଚେତନା ବୁଡ଼ିଲା
ତା ଦେଖି ଶିବଙ୍କ ହୃଦ ବିଘର୍ଣ୍ଣ ହୋଇଲା ।
ଏହି ସମୟରେ ହିମାଳୟ ଆସି ତହିଁ
ଆପଣାର ଦୁହିତାକୁ କୋଳରେ ବସାଇ ।
ଅପତ୍ୟ ସ୍ନେହରେ କେତେ ବାହୁନି କାନ୍ଦିଲେ
ଶିବଙ୍କ ପାଶରେ ନେଇ ସମର୍ପଣ କଲେ ।
ପୁଣି ମୋହବଶେ ଶୋକ କରିବାରୁ ସେହି
ଜାଣିଲେ ସେ କଥା ପ୍ରଭୁ ଲକ୍ଷ୍ମୀଦେବୀ ସାଇଁ ।
ମଧୁର ବଚନ କହି ସମସ୍ତଙ୍କ ମନ
ସନ୍ତୁଷ୍ଟ କଲେ ସେକାଳେ ଦେବ ଭଗବାନ ।
ପାର୍ବତୀ ପିତା ମାତାଙ୍କ ପାଦରେ ଜୁହାରି
ମହାଦେବଙ୍କ ସଙ୍ଗରେ ଯାଆନ୍ତେ ବାହାରି ।
ଦେବତା ଋଷିଏ ତାଙ୍କ ସହିତରେ ଗଲେ
କଇଳାସ ଭୁବନରେ ସମସ୍ତେ ମିଳିଲେ ।
ଶିବ ଆସିବାର ଦେଖି ପୁରସ୍ତ୍ରୀଗଣ
ଦେବତା ଋଷିକନ୍ୟାଙ୍କୁ ସଙ୍ଗରେ ଘେନିଣ ।
ମଙ୍ଗଳ ପ୍ରଦୀପ ଧରି ଦ୍ୱାରକୁ ଆସିଲେ
ସେ ପତି ପତ୍ନୀଙ୍କୁ ବନ୍ଦାପନା କରି ନେଲେ ।
ବାୟୁପତ୍ନୀ ଚନ୍ଦ୍ରପତ୍ନୀ ଆଦି କେତେ ଦେବୀ
ଆସିଲେ ଶିବଙ୍କ ଦରଶନ ମନେ ଭାବି ।
ପାର୍ବତୀ ସହିତେ ଦେବ ତ୍ରିପୁର ଅରି
ବାସଗୃହେ ରତ୍ନ ସିଂହାସନେ ବିଜେକରି ।
ବୋଇଲେ ଗୋ ଦେବୀ ତୁମ୍ଭେ ପୂର୍ବେ ଏହିଠାରେ
ରହିଥିଲ ସତୀ ନାମ ବହି ମୋ ପାଶରେ ।
ପିତାଙ୍କ ଗୃହକୁ ମୋର ଅନୁମତି ପାଇ
ଗଲ ଏହିଠାରୁ ଯାଗ ଦେଖିବାକୁ ଧାଇଁ ।

ଜାତିସ୍ମର ହୋଇ ଜନ୍ମ ପାଇଛ ତ ଏବେ
ସ୍ମରଣା କର ମନେ ଚନ୍ଦ୍ରନାହିଁ ସେବେ ।
ପାର୍ବତୀ ବୋଇଲେ ପ୍ରଭୁ ସବୁ ମୋତେ ଜଣା
ହୋଇ ସାରିଲାଣି ଆଜ୍ଞା ନ କରନ୍ତୁ ବଣା ।
ଏଥିଅନ୍ତେ ମହାଦେବ ଦେବତା ଋଷିଙ୍କୁ
ନାନାବିଧ ମିଷ୍ଟଦ୍ରବ୍ୟ ଦେଲେ ଭୁଞ୍ଜିବାକୁ ।
ଭୋଜନ ଅନ୍ତେ ବହୁତ ଧନରତ୍ନ ଦେଲେ
ବିଦାୟ ହୋଇ ସେମାନେ ସେଚ୍ଛାପୁରେ ଗଲେ
ବ୍ରହ୍ମା ବିଷ୍ଣୁଙ୍କୁ ଉଚିତ ସମ୍ଭାବନା କରି
ଯିବାପାଇଁ ଅନୁମତି ଦେଲେ ତ୍ରିପୁରାରି ।
ଯେ ଅନ୍ତରେ ପାର୍ବତୀଙ୍କୁ ଘେନି ସଙ୍ଗତରେ
ରହିଲେ ନିଶ୍ଚିନ୍ତ ମନେ ଆପଣାର ପୁରେ ।
କେତେକାଳ ଅନ୍ତେ ପୁଣି ଶଇଳ ରାଜନ
ମେନାଙ୍କ ପ୍ରେରଣା ଯୋଗେ ମୁହକୁ ଡାକିଣ
ବୋଇଲେ ହେ ସୁତ ବେଗେ କୈଳାସକୁ ଯାଅ
ପାର୍ବତୀ ଶିବଙ୍କୁ ଆମ୍ଭ ଗୃହକୁ ଅଣାଅ ।
ତାହା ଶୁଣି ମଇନାକ ତ୍ୱର ହୋଇ ଗଲେ
ଶିବ ପାର୍ବତୀ ଦୁହିଙ୍କୁ ସଙ୍ଗରେ ଆଣିଲେ ।
ପୁରେ ଉପସ୍ଥିତ ହେଲେ ନଗରବାସିନୀ
ସ୍ତ୍ରୀଗଣ ଆସି ତାଙ୍କୁ ବେଢ଼ିଲେ ସେକ୍ଷଣି ।
ମହାଆନନ୍ଦରେ ଆସି ମେନକା ସେକାଳେ
ଦୁହିତାଙ୍କୁ କୋଳକରି ପୁରେ ଘେନିଗଲେ ।
ଶଙ୍କରଙ୍କୁ ହିମାଳୟ ପାଦ୍ୟଅର୍ଘ୍ୟ ଦେଇ
ସମ୍ଭାବନା କଲେ ସ୍ୱର୍ଣ୍ଣ ଆସନେ ବସାଇ ।
ତାଙ୍କ ସଙ୍ଗେ ଯେଉଁ ଶିବଗଣେ ଆସିଥିଲେ
ସେମାନଙ୍କୁ ମଧ୍ୟ ଯଥାବିଧି ପୂଜା କଲେ ।
ପ୍ରତିଦିନ ପ୍ରିୟାଭୁଲେ ଦେବ ଶୂଳପାଣି
ଷଡ଼ଦଶ ଉପଚାରେ ପୂଜାବିଧି ଘେନି ।
ମହାଆନନ୍ଦରେ ଦିନ ଅତିକ୍ରମ କଲେ
ସତୀ ବିରହ ବେଦନା ମନରୁ ତେଜିଲେ ।
ଏହିପରି ଶିବଙ୍କର ଦାମ୍ପତ୍ୟ ମିଳନ
ଚରିତ ଅଟଇ ଆଗୋ ଜୀବେଶ୍ୱରୀ ଜାଣ ।
ଆଜ କେଉଁ କଥା ଶୁଣିବାକୁ ତୁମ୍ଭ ଚିତ୍ତ
ଅଛି ଯେବେ ପଚ୍ଛର ତା କରିବା ବିବୃତ ।
ଏମନ୍ତ ବୋଲି ମଉନ ହେଲେ ବଂଶୀଧର
କହଇ ଷେତ୍ରମୋହନ ଧ୍ୟାଇ ସେ ପୟର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କର ବିବାହ ଶେଷ ଓ ଶିବଙ୍କପ୍ରତି ଦେବୀମାନଙ୍କର ସ୍ତୁତି ଭକ୍ତି କଥନେ ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

---

## ଷଟ୍ ଚତ୍ୱାରିଂଶ ଅଧ୍ୟାୟ

## କନ୍ଦର୍ପ ରତି ଓ ହର ପାର୍ବତୀଙ୍କର କ୍ରୀଡ଼ା ବିଷୟ କଥନ

ଏଥୁ ଅନନ୍ତରେ ରାଧା ଶ୍ରୀକୃଷ୍ଣଙ୍କୁ ଚାହିଁ
ବୋଇଲେ ଶୁଣିବା ହେଉ ଆହେ ପ୍ରାଣସାଇଁ ।
ବହୁତ କାଳରୁ କାମ ତେଜିଥିଲେ ଜୀବ
ଜୀଆଇଁଲେ ପୁଣି ତାକୁ ପ୍ରଭୁ ସଦାଶିବ ।
ପତିମୁଖ ଦେଖି ରତି କି ବିଚାର କଲା
ହିମାଳୟ ପୁର ଛାଡ଼ି କେଉଁଠାକୁ ଗଲା ।
ସ୍ତ୍ରୀମାନଙ୍କର ସ୍ୱାମୀ ବିରହ ଦାରୁଣ
ସଙ୍ଗମ କାଳରେ ସ୍ୱର୍ଗସୁଖ ହୁଏ ପୁଣ ।
ଚିର ବିରହରେ ଶିବ ହୋଇଥିଲେ ଦୁଃଖୀ
କି ଅବା କଲେ ସେ ପାର୍ବତୀଙ୍କ ରୂପ ଦେଖି ।
ପୁରୁଷ ରହିତା ରତି ସ୍ତ୍ରୀ ବିରହୀ ଶିବ
ହେବାରୁ ସନ୍ତୁଷ୍ଟ ହେଉଥିଲା ତାଙ୍କ ଜୀବ ।
ଦୁହିଙ୍କର ପତିପତ୍ନୀ ଲାଭ ହେଲାବେଳେ
କି ପ୍ରକାର ସୁଖକୁ ସେ ଉପଭୋଗ କଲେ ।
ତାହା ଶୁଣିବାକୁ ମୋର ବଳୁଅଛି ମନ
ପ୍ରସନ୍ନ ହୋଇଣ କହ କମଳଲୋଚନ ।
ଶ୍ରୀକୃଷ୍ଣ ତା ଶୁଣିକରି ଅଳପ ହସିଲେ
ପ୍ରିୟାଙ୍କ ମୁଖକୁ ଚାହିଁ ବଚନ ଭାଷିଲେ ।
ବୋଇଲେ କହୁଛି ଶୁଣ ରୁରୁ ଚନ୍ଦ୍ରମୁଖି
ହରଷିତ ମନେ ରତି କନ୍ଦର୍ପକୁ ଦେଖି ।

ଶିବଙ୍କ ବିବାହ ସ୍ଥାନ ତ୍ୟାଗକରି ଗଲେ
ପତି ସହିତରେ ନିଜ ମନ୍ଦିରେ ମିଳିଲେ ।
ନାନା ଭୂଷଣ ବସ୍ତ୍ରରେ ତାହାର ଶରୀର
ବିଭୂଷିତ କଲା ସେ ତ ରମଣୀଙ୍କ ବର ।
ପ୍ରିୟାର ହୃଦୟ ଭାବ ଜାଣି ଶମ୍ଭୁବର
ରତନ ସୁବର୍ଣ୍ଣ ଯାନ ଆରୋହଣ କରି ।
କୋଳେ ଘେନି ଭାରଯାଙ୍କୁ ନିର୍ଜ୍ଜନ ବନରେ
ପ୍ରବେଶ ହୋଇଲା କ୍ରୀଡ଼ା କରିବା ଇଚ୍ଛାରେ ।
ସେଠାରେ ପର୍ବତ ଗୁହା ଲତା ଗୃହେ ମିଳି
ବିବିଧପ୍ରକାରେ ଦୁହେଁ କଲେ କାମକେଳି ।
ଆବରି କାଞ୍ଚନୀ ଭୂମି ନିର୍ଝରିଣୀ ତଟେ
କ୍ରୀଡ଼ା କଲେ ପୁଷ୍ପମୟ କାନନ ନିକଟେ ।
ସେହିଠାରେ ବିଲ୍ୱ ଚୂତ ତମାଳ ହିନ୍ତାଳ
ଶାଳଆଦି ବୃକ୍ଷ ରହିଥିଲେ ମାଳ ମାଳ ।
ଭ୍ରମର କୋକିଳଗଣ ସୁମଧୁର ସ୍ୱରେ
ଗାନକରି ଉଡ଼ି ବୁଲୁଥାନ୍ତି ସେ ମଧ୍ୟରେ ।
ସୁଗନ୍ଧ ଶୀତଳ ବାୟୁ ବହେ ପୁନଃପୁନଃ
ହରଷିତ କରୁଥିଲା ସମସ୍ତଙ୍କ ମନ ।
ଏମନ୍ତ ସ୍ଥାନରେ କାମ ରତି ସହିତରେ
ଶୃଙ୍ଗାର ସମ୍ଭୋଗ କଲେ ବିଧି ଅନୁସାରେ ।
ସହସ୍ରେ ବରଷ ସେହିଠାରେ ପୂର୍ଣ୍ଣକଲେ
ଦିବସ ରଜନୀ କେବେ ଗଲା ନ ଜାଣିଲେ ।
ପତି ବିଚ୍ଛେଦ ସନ୍ତାପ ପାସୋରିଣ ରତି
ସୁରତି ରସରେ ତୋଷ କଲା ନିଜ ମନ୍ତି ।
ଯେଉଁରୂପେ ନଷ୍ଟଦ୍ରବ୍ୟ ଲବ୍ଧ ହେବାକାଳେ ।
ଲୋକର ମାନସ ମଗ୍ନ ହୁଏ ହର୍ଷଜଳେ ।
ତେମନ୍ତ ପ୍ରକାରେ କାମ ତରୁଣୀ ସୁନ୍ଦରୀ
ଦିନ ନେଲା ପତି ସଙ୍ଗେ ସୁଖରେ ବିହରି ।
ଏବେ ଶିବଶକ୍ତିଙ୍କର ଅତୁଳ୍ୟ ଶୃଙ୍ଗାର
ଶୁଣ କହୁଅଛି ଆଗୋ ରମଣୀଙ୍କ ବର ।
ଶ୍ୱଶୁର ଗୃହରେ ରହି ପ୍ରଭୁ ଶୂଳପାଣି
ଶ୍ୱଶ୍ରୂ ଶ୍ୱଶୁର ଦୁହିଁଙ୍କ ଆଦେଶକୁ ମାନି ।
ବିହାର କରିବା ପାଇଁ ବନସ୍ତକୁ ଗଲେ
ପାର୍ବତୀ ଦେବୀଙ୍କୁ ଘେନି ଲୀଳା ଆରମ୍ଭିଲେ ।
ପୁଷ୍ପଭଦ୍ରା ପାରିଭଦ୍ରା ଭଦ୍ରକ ତଟରେ
ଆବରି ସୁନ୍ଦର ଗିରି କନ୍ଦର ମଧ୍ୟରେ ।
ବଟମୂଳେ ମନୋରମ ଅସ୍ତଗିରି ପାଶେ
କେଳିକଲେ ନାନାରୂପେ ମନୋରଥ ରସେ ।
ଯେଉଁଠାରେ ସତୀଙ୍କର ଶବ ତେଜିଥିଲେ
ସେଠାରେ ପାର୍ବତୀ ସଙ୍ଗେ ରତିରେ ମାତିଲେ
ସତୀଙ୍କର ଶବଧରି ଯେତେ ଯେତେ ସ୍ଥାନେ
ବୁଲୁଥିଲେ ସେହିଠାକୁ ଯାଇ ତୋଷମନେ ।
ପ୍ରିୟାଙ୍କୁ ଦେଖାଇ ନାମ କହି କୁତୂହଳେ
ହାସ୍ୟରସେ ପରିହାସେ ଦିନ କଟାଇଲେ ।
ସେ ଅନ୍ତରେ ପୁଣି ମହାଶୃଙ୍ଗାର ବିଧାନ
ଆରମ୍ଭିଲେ ମାୟାଶ୍ରିତ ପ୍ରଭୁ ତ୍ରିନୟନ ।
ଶିବଶକ୍ତିଙ୍କ ମିଳନ ହେବାରୁ ସେକାଳେ
ବିରହ ସନ୍ତାପ ଦୁଃଖ ଦୁହେଁ ତ୍ୟାଗକଲେ ।
କାମରସେ ମଗ୍ନହୋଇ ସେ ନୀଳ ଲୋହିତ
କଲେ ପାର୍ବତୀ ଅଙ୍ଗରେ ନଖ ଦନ୍ତ କ୍ଷତ ।
ଶାୟନ କରିଣ ଦୁହେଁ କୁସୁମ ଶଯ୍ୟାରେ
ଭୋଗ କଲେ ପରସ୍ପର ଅଙ୍ଗ ପରସ୍ପରେ ।
ରସନା ନୂପୁର କଲେ କଙ୍କଣର ଧ୍ୱନି
ଶୁଭିଲା ସେ କାଳେ ସ୍ତବ୍ଧ କରି କର୍ଣ୍ଣବେଣି ।
ଦୁହେଁ ତ ଅଟନ୍ତି କାମଶାସ୍ତ୍ରରେ ପଣ୍ଡିତ
ସୁରତ ରସରୁ କେହି ନୋହିଲେ ବିରତ ।
ତାଙ୍କ ତେଜରେ ପୃଥିବୀ ଭାରାକ୍ରାନ୍ତ ହୋଇ
କମ୍ପିଲା ସମ୍ଭାଳି ଆଉ ନ ପାରନ୍ତେ ରହି ।
ସେ ସକାଶୁ ଶେଷଦେବ ହୋଇଲେ ଅଧୀର
ତାହାଙ୍କ ତଳେ କଚ୍ଛପ ଲୁଆଇଲେ ଶିର ।
କଚ୍ଛପ ଭାରେ ସକଳ ପ୍ରାଣର କାରଣ
ସ୍ତମ୍ଭିତ ହେଲେ ନ ସହି ଦେବ ସମୀରଣ ।
ପବନ ସ୍ତମ୍ଭନ ଯୋଗେ ତ୍ରୈଲୋକ୍ୟର ଜୀବ
ଭୟେ ବିହ୍ୱଳିତ ହୋଇ ନ ପାଇଲେ ଠାବ ।
ତାହା ଦେଖି ବ୍ରହ୍ମାଆଦି ସକଳ ଦେବତା
କି ହୋଇବ ବୋଲି ବସି କଲେ ମହାଚିନ୍ତା ।
ସେ ଅନ୍ତରେ ବଇକୁଣ୍ଠେ ଉପସ୍ଥିତ ହୋଇ
କହିଲେ ନାରାୟଣଙ୍କୁ ସକଳ ବତାଇ ।
ଶ୍ରୀହରି ବୋଇଲେ ଶୁଣ ଆହେ ଦେବଗଣ
ଶୃଙ୍ଗାର ଭଙ୍ଗ ସମୟ ହୋଇନାହିଁ ଜାଣ ।
ଯଥାକାଳେ କାର୍ଯ୍ୟ କଲେ ସିଦ୍ଧି ଲବ୍ଧହୁଏ
ନୋହିଲେ ସକଳ ଯତ୍ନ ବୃଥା ହୋଇଥାଏ ।

ସହସ୍ର ବରଷ ଯେବେ ହୋଇବ ସମାପ୍ତ
ସ୍ୱଇଚ୍ଛାରେ ମହାଦେବ ହେଉଥିବେ ସୁରତ ।
ଅକାଳରେ ତାହାଙ୍କର ଇଚ୍ଛା ବିରୁଦ୍ଧରେ
ଭଙ୍ଗ କରିବ କେ ଅବା ଅଛି ଜଗତରେ ।
ଉପାୟ ଯୋଗରେ ସ୍ତ୍ରୀ ପୁରୁଷଙ୍କ ସଙ୍ଗ
ଯେଉଁ ଅଧାର୍ମିକ ଲୋକ କରେ ଯାଇ ଭଙ୍ଗ ।
ପ୍ରତ୍ୟେକ ଜନ୍ମରେ ତାର ସ୍ତ୍ରୀ ବିଚ୍ଛେଦ ହୁଏ
ଅନ୍ତଃକାଳେ କାଳସୂତ୍ରେ ପଡ଼ି କଷ୍ଟପାଏ ।
ଅପର ଜନ୍ମରେ ନଷ୍ଟ ଲକ୍ଷ୍ମୀନଷ୍ଟ ମଣ
ହୁଅଇ ସେ ଲୋକ ଜାଣିଥାଅ ଗୋ ଅବଶ୍ୟ ।
ରମ୍ଭା ବାସବ ଦୁହିଙ୍କ ରତି ଚ୍ଛେଦକରି
ବିରହ ବେଦନା ଭୋଗ କଲେ ତପସ୍ୱୀ ।
ପୁଣି ରମ୍ଭାକୁ ପାଇଣ ସେ ଦୁର୍ବାସା ମୁନି
ମୁକତ ହେଲେ ଶିବଙ୍କ ଅନୁଗ୍ରହ ଘେନି ।
ଘୃତାଚୀ ସଙ୍ଗରେ କ୍ରୀଡ଼ା କଲାବେଳେ ସୁର
ବୃହସ୍ପତି ରତିଭଙ୍ଗ କରନ୍ତେ ତାହାର ।
ଷଡ଼ମାସ ମଧ୍ୟେ ଚନ୍ଦ୍ର ଗୁରୁଙ୍କ ପତ୍ନୀଙ୍କୁ
ହରଣି କଲେ ଗଣନା ନ କରି ତାହାଙ୍କୁ ।
ଉପାୟ ନ ଦେଖି ଗୁରୁ ଶିବଙ୍କୁ ସେବିଲେ
ତାଙ୍କ ପ୍ରସାଦରେ ପୁଣି ପ୍ରିୟାଙ୍କୁ ପାଇଲେ ।
ସୁବର୍ଚ୍ଚା ସଂସକ୍ତ ହୋଇଥିଲେ ଏକ ଋଷି
ବିଚ୍ଛେଦ କରିଲେ ବିପ୍ରଣକ ତାଙ୍କୁ ଆସି ।
ସେ ସକାଶୁ କାଳାନ୍ତରେ ପୁନି ବିଚ୍ଛେଦକୁ
ସହିଲେ ସୁମରି ନିଜ ପୂର୍ବ କରମକୁ ।
ହାଳିକ ବୃଷଳୀ ସଙ୍ଗେ କରୁଥିଲା କ୍ରୀଡ଼ା
ଭାଙ୍ଗିଲେ ତା ହରିଶ୍ଚନ୍ଦ୍ର ଛାଡ଼ିଦେଇ ବ୍ରୀଡ଼ା ।
ସେ ସକାଶୁ ରାଜ୍ୟ ଧନ ସ୍ତ୍ରୀ ପୁତ୍ର ହୀନ
ହେଲେ କେତେ କାଳପାଏ ସେ ନର ରାଜନ
ବିଶ୍ୱାମିତ୍ର ମୁନି ତାଙ୍କୁ କରନ୍ତେ ତାଡ଼ନା
ଉପାସନା କଲେ ଶଙ୍କରଙ୍କୁ ମହାମନା ।
ତାଙ୍କ ପ୍ରସାଦରେ ମୋର ପୁରକୁ ସେ ଗଲେ
ମହାସୁଖରେ ସେଠାରେ ରହି ଦିନନେଲେ ।

ସକଳ ବିଷୟ ଅଟଇ ନିଷେକର ସାଧ୍ୟ
ନିଷେକ ଯୋଗରେ ଲୋକ ହୁଏ କର୍ମବାଧ୍ୟ ।
ଦିବ୍ୟ ସହସ୍ର ବରଷ ନ ହେଲେ ଅତୀତ
ନ ହୋଇବେ ଶିବ ରତିରସରୁ ବିରତ ।
ସହସ୍ର ବରଷ ଅନ୍ତେ ଆହେ ଶଚୀପତି
ଯିବ ଭୂମେ ନିଜେ ମହାଦେବଙ୍କର କାନ୍ତି ।
ଯେରୂପେ ତାହାଙ୍କ ରେତ ପଡ଼ିବ ମହୀରେ
ପତନ କରିବ ଭୂମେ ଯେମନ୍ତ ପ୍ରକାରେ ।
ସେ ସମୟେ ଭୂମେ ହିତ କରିବାକୁ ମୁହିଁ
ପ୍ରବେଶ ହୋଇବ ସେହି ସ୍ଥାନରେଟି ଯାଇ ।
ଏବେ ତୁମ ହୋଇ ସେ ଯା ଭବନକୁ ଯାଅ
ସମ୍ଭୋଗ କରନ୍ତୁ ଶିବ ପାର୍ବତୀଙ୍କ ଦେହ ।
ଏମନ୍ତ କହି ଶ୍ରୀହରି ଅନ୍ତଃପୁରେ ଗଲେ
ଦେବତାମାନେ ଆପଣା ଭୁବନେ ମିଳିଲେ ।
ନାରଦ ଆଗରେ କହୁଛନ୍ତି ନାରାୟଣ
ଆହେ ମୁନିବର ମନ ଦେଇକରି ଶୁଣ ।
ରାଧିକା ଆଗେ ଶ୍ରୀକୃଷ୍ଣ କହି ଏହିରୂପେ
ନନ୍ଦନ ବନରେ ବିଜେ କଲେ ଯାଇ ଆପେ ।
ନିର୍ଜନ ସ୍ଥାନରେ ଘେନି ପ୍ରିୟାଙ୍କୁ କୋଳରେ
କ୍ରୀଡ଼ାକଲେ ମଗ୍ନ ହୋଇ ଆନନ୍ଦ ଜଳରେ ।
ଶ୍ରୀକୃଷ୍ଣ ସମ୍ଭୋଗ ସୁଖ ପାଇଣ ଶ୍ରୀମତୀ
ମୂର୍ଚ୍ଛିତା ହେଲେ ସୁରତ ସୁଖରେ ସେ ଅତି ।
ଶ୍ରୀକୃଷ୍ଣ ମଧ୍ୟ ତାହାଙ୍କ ଅଙ୍ଗ ପରଶରେ
ଅଜ୍ଞାନ ହୋଇ ରହିଲେ ସେହି ସମୟରେ ।
ସେଠାରେ ଶ୍ରୀକୃଷ୍ଣ ରାଧା ଦୁହେଁ ସ୍ମରରସେ
ରହିଲେ ବହୁତ କାଳ ଆହେ ମହାମତେ ।
ରାଧାକୃଷ୍ଣ ରତିରସ ଦେବେ ଅଗୋଚର
ଶୁଣିଲେ ବିନାଶ ହୁଏ ପାତକ ସକଳ ।
ପଚାରିଲ ଯାହା ସବୁ କହିଲି ବତାଇ
ଆଉ କି ଶୁଣିବା ଇଚ୍ଛା ଥିଲେ ଦିଅ କହି ।
ଏମନ୍ତ ବୋଲିଣ ନାରାୟଣ ମୁନିବର
ମଉନ ହେଲେ ଗୀତରେ କହେ କ୍ଷେତ୍ରଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କନ୍ଦର୍ପ ରତି ଓ ହର ପାର୍ବତୀଙ୍କର କ୍ରୀଡ଼ା ବିଷୟ କଥନ ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।



# ସପ୍ତଚତ୍ୱାରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣ ଦ୍ୱାରା ଇନ୍ଦ୍ରଙ୍କ ଦର୍ପଭଙ୍ଗ କଥନ

ନାରଦ ବୋଇଲେ ନାରାୟଣ ମୁନିବର
କ୍ରୀଡ଼ା ସମାପତ ହୁଅନ୍ତେ ରାଧା କୃଷ୍ଣଙ୍କର ।
କେଉଁ କଥା ପଚାରିଲେ ଦେବୀ ଶ୍ରୀକୃଷ୍ଣଙ୍କୁ
କିରୂପରେ ଅବା ପ୍ରଭୁ କହିଲେ ତାହାଙ୍କୁ ।
ଏ ସମସ୍ତ ବିଚାରିଣ କହ ମୋ ଆଗର
ଶୁଣିବା ପାଇଁକି ଇଚ୍ଛା ହେଉଅଛି ମୋର ।
ନାରାୟଣ ମୁନି ତାହା ଶୁଣି ଅଳ୍ପ ହସି
ବୋଇଲେକ ମନଦେଇ ଶୁଣ ଆହେ ଋଷି ।
ସମ୍ଭୋଗ ଶେଷରେ କୃଷ୍ଣ ରାଧିକା ସହିତ
ବଟବୃକ୍ଷ ଛାୟା ତଳେ ହେଲେ ଉପଗତ ।
ରତିଶ୍ରାନ୍ତ ହୋଇ ଦୁହେଁ ସେଠାରେ ବସିଲେ
ସେ ସମୟେ ରାଧା ଦେବୀ ପତିଙ୍କୁ ପୁଛିଲେ ।
ବୋଇଲେ ଶିବ ଦୁର୍ଗାଙ୍କ ଦର୍ପ ବିମୋଚନ
ଚରିତ ଶୁଣି ସନ୍ତୁଷ୍ଟ ହୋଇଲା ମୋ ମନ ।
ଏବେ ଇନ୍ଦ୍ରଙ୍କର ଗର୍ବ ଭଙ୍ଗ ସମାଚାର
ଆମୂଳ କରିଣ କହ ଆହେ ପ୍ରାଣେଶ୍ୱର ।
ଶ୍ରୀକୃଷ୍ଣ ବୋଇଲେ ଦେବୀ ସାବଧାନେ ଶୁଣ
କହିବା ସେ ସୁଧାମୟ ଦିବ୍ୟ ଉପାଖ୍ୟାନ ।
ପୂର୍ବକାଳେ ଦେବରାଜ ଶତଯାଗ କଲେ
ମହା ଆନନ୍ଦରେ ସ୍ୱର୍ଗ ସମ୍ପଦ ଭୁଞ୍ଜିଲେ ।
କ୍ରମେ କ୍ରମେ ତାହାଙ୍କର ଯଶ ପଉରୁଷ
ତପସ୍ୟାବଳେ ବର୍ଦ୍ଧିତ ହୋଇଲା ବିଶେଷ ।
ଦେବତାଙ୍କ ମନ୍ତ୍ରଦାତା ଗୁରୁ ବୃହସ୍ପତି
ଦେଲେ ତାଙ୍କୁ ସିଦ୍ଧ ମହାମନ୍ତ୍ର ବହି ପ୍ରୀତି ।
ପୁଷ୍କର ତୀର୍ଥରେ ଶତେବର୍ଷ ପର୍ଯ୍ୟନ୍ତେ
ସେ ମନ୍ତ୍ରକୁ ଜପକରି ଇନ୍ଦ୍ର ଏକଚିତ୍ତେ ।
ସିଦ୍ଧ କରନ୍ତେ ସମ୍ପୂର୍ଣ୍ଣ ମନୋରଥ ହେଲେ
ତିନ ଭୁବନରେ ଅଧୀଶ୍ୱର ବୋଲାଇଲେ ।
ସେକାଳେ ସମ୍ପଦ ଗର୍ବେ ଉନମତ୍ତ ହୋଇ
ଗଣନା ନ କଲେ ବ୍ରହ୍ମା ପ୍ରକୃତିଙ୍କୁ ସେହି ।
ତାହା ଜାଣି ମହାମାୟା କ୍ରୋଧ ବହି ମନେ
ଦାରୁଣ ଶାପ ବିଧାନ କଲେ ତତକ୍ଷଣେ ।
ବୋଇଲେ ଅବଜ୍ଞା ଯାହା କଲ ମୋତେ ତୁମ୍ଭେ
ଗୁରୁ ଶାପରେ ସନ୍ତପ୍ତ ହୁଅ ବୋଲୁ ଆମ୍ଭେ ।

ଏହିରୂପେ କେତେଦିନ ହୁଅନ୍ତେ ଅନ୍ତର
ପ୍ରକୃତିଙ୍କ ଶାପକାଳ ହେଲା ଉପଗତ ।
ଦିନେ ସଭାକରି ବସିଥିଲେ ସୁନାସୀର
ପ୍ରବେଶ ହୋଇଲେ ଗୁରୁ ତାହାଙ୍କ ପାଶର ।
ପ୍ରକୃତି ତ ଇନ୍ଦ୍ରଙ୍କର ମନ ମୋହିଥିଲେ
ତେଣୁ ସେ ଗୁରୁଙ୍କୁ ଦେଖି ପ୍ରଣାମ ନ କଲେ ।
ତାହା ଦେଖି ବୃହସ୍ପତି ନ ରହି ସେଠାରେ
ଉପସ୍ଥିତ ହେଲେ ତପ କାନନ ମଧ୍ୟରେ ।
ମନେ ମନେ ବାସବଙ୍କଠାରେ କ୍ରୋଧ କରି
ବୋଇଲେ ଅଚିରେ ନଷ୍ଟ ହେଉ ତୁମ୍ଭ ଶିରୀ ।
ତାଙ୍କ ଯିବାପରେ ଇନ୍ଦ୍ର ଚେତନା ପାଇଲେ
ଗୁରୁଦେବ କାହିଁଗଲେ ବୋଲିଣ ଖୋଜିଲେ ।
ତାରକା ପାଶକୁ ଯାଇ କହି ସବୁକଥା
ନିବେଦନ କଲେ ମନରେ ଉପୁଜାଇ ବ୍ୟଥା ।
ପ୍ରିୟର ବେଦନ ଶୁଣି ତାରକା ସୁନ୍ଦରୀ
ବୋଇଲେ ନିଶ୍ଚୟ ନଷ୍ଟ ହେବ ତୁମ୍ଭ ଶିରୀ ।
ପ୍ରଥମେ ଦୁର୍ଦ୍ଦଶା ଭୋଗ କଲା ପରେ ପୁଣି
ଗୁରୁଦେବଙ୍କୁ ଦେଖିବ ବୋଲି ଥାଅ ଜାଣି ।
ଅର୍ଜିବା କର୍ମ ଭୋଗ କର ସୁରପତି
ଅନ୍ୟଥା କରିବ କେବା କାହାର ନିୟତି ।
ଶାପଫଳ ଭୋଗ ପରେ ସମ୍ପଦ ପାଇବ
ସକଳ ସ୍ଥାନରେ ପୂଜାପାଇ ତୋଷ ହେବ ।
ଏମନ୍ତ କହି ତାରକା ମଉନ ହୋଇଲେ
ବିଦାୟ ହୋଇ ବାସବ ତହୁଁ ଚାଲିଗଲେ ।
ସ୍ନାନ କରିବା ସକାଶେ ସୁରନଦୀ ତୀରେ
ପ୍ରବେଶ ହୋଇଲେ ଅତି ଦୁଃଖିତ ମନରେ ।
ଦେଖିଲେ ସେଠାରେ ଗଉତମ ମୁନିପ୍ରିୟା
ସ୍ନାନ କରିବାକୁ ଆସି ହୋଇଛନ୍ତି ଠିଆ ।
ତାହାଙ୍କର ମୁଖ ନାସା ଚକ୍ଷୁ ମନୋହର
ହସ୍ତ ପାଦ ସ୍ତନ ଉରୁ ନିତମ୍ବ ସୁନ୍ଦର ।
ହସିତ ବଦନ ବଙ୍କ କଟାକ୍ଷର ଶୋଭା
ଦେଖିବା ମାତ୍ରକେ ମନ କରୁଥିଲା ଲୋଭା ।
ତାହାଙ୍କୁ ଦେଖି ବାସବ ମୋହିତ ହୋଇଲେ
ସ୍ନାନ ତ୍ୟାଗକରି ଦଣ୍ଡେ ଅନାଇ ରହିଲେ ।

ସେଥିନିମନ୍ତେ ଗଉତମଙ୍କ ସ୍ୱରୂପକୁ ମନ
ଧୀରେ ଧୀରେ ଗଲେ ଯହିଁ ଥିଲେ ସେ ସୁନ୍ଦରୀ
ନିକଟେ ପ୍ରବେଶ ହୋଇ ବସନ ଅଞ୍ଚଳ
ଓଟାରିଣ ନେଲେ ଅନ୍ୟ ସ୍ଥାନକୁ ଚଞ୍ଚଳ ।
ସେସ୍ଥାନରେ ନାନାବିଧ ଶୃଙ୍ଗାର ସମ୍ଭୋଗ
କଲେ ତା ଅଙ୍ଗରେ ମିଳାଇଣ ନିଜ ଅଙ୍ଗ ।
ସୁରତି ସୁଖରେ ଦୁହେଁ ନିଶ୍ଚେଷ୍ଟ ହୋଇଲେ
ନିସ୍ତନ ବୁକଣ ପୁଷ୍ପତଳପେ ଶୋଇଲେ ।
ସେହି ସମୟରେ ଗଉତମ ତପସ୍ୱୀ
ଆଶ୍ରମକୁ ଗଲେ ନିତ୍ୟକର୍ମ ଶେଷକରି ।
ଦେଖିଲେ ନିଜ ପ୍ରିୟାକୁ ସେହି ସୁରପତି
ନିର୍ଭୟ ଚିତ୍ତରେ ବଳେ କରୁଅଛନ୍ତି ରତି ।
ସମ୍ଭୋଗ ସୁଖରେ ଦୁହେଁ ମଗ୍ନ ହୋଇଛନ୍ତି
ଅନ୍ୟାନ୍ୟ ବିଷୟ କିଛୁ ଜାଣି ନ ପାରନ୍ତି ।
ତାହା ଦେଖି ମୁନିବର କୋଧରେ ଜଳିଲେ
ରତି ଭଙ୍ଗ ହେବ ବୋଲି କିଛୁ ନ କହିଲେ
ମୁହୂର୍ତ୍ତେକ ପରେ ଇନ୍ଦ୍ର ଚେତନାକୁ ପାଇ
ଦେଖିଲେ ଆଗରେ ଉଭା ଋଷିକୁଳ ସାଇଁ ।
କାଳାନ୍ତକ ଯମପରି ତାଙ୍କର ମୁରତି
ଦୃଷ୍ଟିବା ମାତ୍ରକେ ଜାତ କରାଉଛି ଭୀତି ।
ସେ ସକାଶୁ ପ୍ରାଣଭୟେ ମୁନିଙ୍କ ଚରଣ
ଦେନି ହସ୍ତେ ଧରି ବେଗେ ପଶିଲେ ଶରଣ ।
ମୁନି ତ ଅଟନ୍ତି ସର୍ବଶାସ୍ତ୍ର ତତ୍ତ୍ୱଜ୍ଞାନୀ
କୋଧ ସମ୍ଭାଳି ତାହାଙ୍କୁ କହିଲେ ଏ ବାଣୀ ।
ବୋଇଲେ ଆହେ ବାସବ ତୁମ୍ଭେ ତ ପଣ୍ଡିତ
କଶ୍ୟପ ମୁନିଙ୍କଠାରୁ ହୋଇଅଛ ଜାତ ।
ନିଜେ ତୁମ୍ଭ ପିତାମହ ଦକ୍ଷ ପ୍ରଜାପତି
ଜନନୀ ଅଦିତି ଦେବୀ ପତିବ୍ରତା ସତୀ ।
ଏମନ୍ତ ହେଲେହେଁ ତୁମ୍ଭେ ଯୋନିଲୁବ୍ଧ ହୋଇ
ପରସ୍ତ୍ରୀ ହରିବାକୁ ଆସିଲ ଯା ଧାଇଁ ।
ଏ ସକାଶୁ ଜାଣୁଅଛି ଜ୍ଞାନ ଥିଲେ ହେଲେ
ସ୍ୱଭାବକୁ ଛାଡ଼ି ଲୋକ ନ ପାରଇ ତଳେ ।
ଦେବତା ହୋଇଣ ତୁମ୍ଭେ ନୀଚକର୍ମ କଲ
ଭଲ ମନ୍ଦ କଥାଗୋଟି ବିଚାର ନ କଲ ।
ଜାଣି ଜାଣି ପତିବ୍ରତା ଧର୍ମ କଲ ନଷ୍ଟ
ତେଣୁ ମୋହର ଶାପରେ ହୁଅ ଶିରିଭ୍ରଷ୍ଟ ।

ଆବର ତୁମ୍ଭ ଦେହରେ ଦଶଶତ ଯୋନି
ଜାତ ହୋଇବ ନିଶ୍ଚୟ ଆମ୍ଭ ବାକ୍ୟ ମାନି ।
ତୁମ୍ଭେ ଯେ ଯୋନି ଲମ୍ପଟ ଅବିବେକ ମୂର୍ଖ
ଯୋନି ଦୁର୍ଗନ୍ଧରେ ନିତି ସହୁଥାଅ ଦୁଃଖ ।
ବରଷେ ପର୍ଯ୍ୟନ୍ତ ଏହିପରି ରହିଥିବ
ସେ ଅନ୍ତେ ସୂର୍ଯ୍ୟଦେବଙ୍କୁ ସନ୍ତୁଷ୍ଟ କରିବ ।
ତେବେ ସେ ସକଳ ଯୋନି ନେତ୍ର ସ୍ୱରୂପରେ
ରହିବ ତୁମ୍ଭର ଦେହେ ସବୁ ସମୟରେ ।
ଏହିକ୍ଷଣି ନେଇଥାନ୍ତି ତୁମ୍ଭର ଜୀବନ
ବୃହସ୍ପତିଙ୍କୁ ସ୍ମରି ନ କଲି ତା ଜାଣ ।
ପରମବନ୍ଧୁ ଅଟନ୍ତି ମୋହର ଯେହି
ତାଙ୍କ ଶିଷ୍ୟ ବୋଲି ତୁମ୍ଭେ ଗଲ ମାଫ ସହି ।
ଏବେ ଉଠି ଆପଣାର ଭବନକୁ ଯାଅ
କର୍ମ ଯେହ୍ନ ଶୁଭାଶୁଭ ହୁଏ ଜାଣିଥାଅ ।
ଏରୂପେ ମୁନିଙ୍କ ବାକ୍ୟ ଶୁଣି ଇନ୍ଦ୍ର ଗଲେ
ପୁଷ୍କର ତୀର୍ଥରେ ସୂର୍ଯ୍ୟଦେବଙ୍କୁ ପୂଜିଲେ ।
ବରଷକ ଅନ୍ତେ ଯାଇ ଶାପରୁ ମୁକତି
ରହିଲେ ପରଦାରରୁ ନିବର୍ତ୍ତାଇ ମତି ।
ପତିଙ୍କ ଚରଣ ଧରି ଅହଲ୍ୟା କାମିନୀ
ବିଳାପ କରିବା ଦେଖିକରି ପୁଣି ମୁନି ।
ବୋଇଲେ ଗୋ ପ୍ରିୟେ ତୁମ୍ଭେ କରିନାହଁ ଇଚ୍ଛା
ତଥାପି ହରିଲା ବଳେ ଅଦିତିଙ୍କ ବଚ୍ଛା ।
ସେ ସକାଶୁ ପରଭୋଗ୍ୟା ହୋଇବାରୁ ମୁହିଁ
ତୁମ୍ଭର ଅଙ୍ଗପରଶ କରି ନ ପାରଇ ।
କାମରେ ବା ଅକାମରେ ପର ରେତ ଯେବେ
ଗର୍ଭରେ ପଡ଼ି ଦୂଷିତା ହୁଏ ସ୍ତ୍ରୀ ତେବେ ।
ଅକାମରେ ଦୁଷ୍ଟା ହେଲେ ପ୍ରାୟଶ୍ଚିତ୍ତ କରି
ଶୁଦ୍ଧିଲାଭ କରିଥାଏ ଜାଣ ଗୋ ସୁନ୍ଦରୀ ।
ସ୍ୱଇଚ୍ଛାରେ ପରଭୋଗ୍ୟା ହୋଇବଟି ଯେବେ
ଦେବ ପିତୃକାର୍ଯ୍ୟ ଯୋଗ୍ୟା ନ ହୁଅଇ ତେବେ
ଦେହଅନ୍ତେ ଷଷ୍ଟି ସହସ୍ର ବର୍ଷକାଳ ସୂନେ
ପଡ଼ି ରହିଥାଏ ରକ୍ତ ପୂଜ ନାଳ ମୂନେ ।
ଏବେ ତୁମ୍ଭେ ମୋର ଶାପେ ଶିଳାରୂପ ହେବ
ବହୁତ କାଳ ଏଠାରେ ପଡ଼ି ରହିଥିବ ।
ତ୍ରେତୟା ଯୁଗରେ ଦଶରଥଙ୍କ ଗୃହରେ
ଜନ୍ମହେବେ ନାରାୟଣ ଶ୍ରୀରାମ ରୂପରେ ।

ତାହାଙ୍କ ଚରଣ ସ୍ପର୍ଶ କଲେ ଏ ପାପତ୍ରୁ
ମୁକତି ପାଇବ ଜାଣ ଆଗୋ ସ୍ୱଚ୍ଛଭୂତ୍ରୁ ।
ଏହିରୂପେ ପତିଙ୍କର ବଚନକୁ ଶୁଣି
ଭୟରେ କାତର ହୋଇ ଅହଲ୍ୟା ତରୁଣୀ ।
ତାଙ୍କ ପାଦତଳେ ପଡ଼ି ବିଦାୟ ଘେନିଲେ
ଶିଳାରୂପ ଘେନ ସେହି ବନରେ ରହିଲେ ।
ଷାଠିଏ ସହସ୍ର ବର୍ଷ ଅନ୍ତେ ରଘୁବୀର
ଆସିଣ ଶାପରୁ ତାଙ୍କୁ କରନ୍ତେ ଉଦ୍ଧାର ।
ତ୍ରୈଲୋକ୍ୟ ମୋହନ ରୂପ ଧାରଣ ଯେ କଲେ
ପତିଙ୍କ ଶାପକୁ ପାଇ ସୁଖରେ ରହିଲେ ।
ଶୁଣ ଆଗୋ ଜାବେଶ୍ୱରୀ ସ୍ଥିରକରି ଚିତ୍ତ
କହିବା ବିଶେଷି ସୁରପତିଙ୍କ ବୃତ୍ତାନ୍ତ ।
ଗୁରୁଶାପେ ପ୍ରକୃତିଙ୍କ ଅବମାନନାରେ
ପୀଡ଼ିତହୋଇଲେ ଇନ୍ଦ୍ର ଦୈତ୍ୟଙ୍କ ଯୋଗରେ
ସେ ସକାଶୁ ବିଧାତାଙ୍କ ନିକଟକୁ ଯାଇ
ଶରଣ ପଶିଲେ ପୂର୍ବ କଥା ସବୁ କହି ।
ତାହା ଶୁଣି ବ୍ରହ୍ମା ବିଶ୍ୱରୂପକୁ ଡକାଇ
ପୁରୋହିତ କାର୍ଯ୍ୟେ ନିଯୁକତ କଲେ ନେଇ ।
ତାଙ୍କ ସଙ୍ଗେ ଇନ୍ଦ୍ରଙ୍କର ପରମ ବିଶ୍ୱାସ
ଜାତ ହୋଇ କ୍ରମେ କ୍ରମେ ବଢ଼ିଲା ବିଶେଷ ।
କେତେକାଳ ପରେ ଦୈତ ଦୌହିତ୍ରଙ୍କ ଭାବ
ଜାଣି କରି ତାଙ୍କ ପ୍ରାଣ ଘେନିଲେ ବାସବ ।
ବିଶ୍ୱକର୍ମା ଅଟନ୍ତି ତ ବିଶ୍ୱରୂପ ପିତା
ଇନ୍ଦ୍ରଙ୍କ କର୍ମ ଦେଖି ସେ କରି ମହାଚିନ୍ତା ।
ଦେବତାମାନଙ୍କ ଶତ୍ରୁ ବଢ଼ାଇବା ପାଇଁ
ଯାଗକଲେ ବିଧିମତେ ସମ୍ଭାର ଭିଆଇ ।
ସେ ଯାଗ କୁଣ୍ଡରୁ ବୃତ୍ରନାମେ ଏକ ଦୈତ୍ୟ
ଜାତହେଲା ଅଟଇ ସେ ଅତି ବଳବନ୍ତ ।
ଦେବତାଙ୍କ ସଙ୍ଗେ ଘୋର ରଣ ଯେତ୍ତେ କଲା
ସୀରପଣରେ କାହାକୁ ଗଣନା ନ କଲା ।
ଦଧୀଚି ମୁନିଙ୍କ ଅସ୍ଥି ଆଣି ଦେବଗଣ
କଲେ ତହିଁରେ ଅମୋଘ କୁଳିଶ ନିର୍ମାଣ ।
ପ୍ରହାର କରିଣ ତାହା ସୁର ଅଧୀଶ୍ୱର
ଜୀବନ ବିନାଶକଲେ ବୃତ୍ର ଅସୁରର ।
ସେହିକାଳେ ବ୍ରହ୍ମହତ୍ୟା ସ୍ତ୍ରୀରୂପ ବହି
ଇନ୍ଦ୍ରଙ୍କର ସମୀପକୁ ଗଲା ବେଗେ ଧାଇଁ ।
ରକତ ବାସ ଦେହରେ ପରିଧାନ କରି
ଦିଶୁଥିଲା କାଳାନ୍ତକ ମୂର୍ତ୍ତିଦେବ ପରି ।
ଲୋଳଜିହ୍ୱା ସଦୃଶ ତାହାର ଦଶନ
ଆଗକୁ ବାହାର ହୋଇ ଦିଶୁଥିଲା ଜାଣ ।
ତୀକ୍ଷ୍ଣ ଖଡ୍ଗ ଗୋଟାଏ ଥିଲା ତା ହସ୍ତରେ
ଆସିଲା ସେ ବାସବଙ୍କୁ ହାଣିବା ଇଚ୍ଛାରେ ।
ତାହାକୁ ଦେଖିଣ ଇନ୍ଦ୍ର ମହାଭୟ କଲେ
ଗୁରୁଙ୍କ ପାଦ ସୁମରି ଧାଇଁ ପଳାଇଲେ ।
ତଥାପି ସେ ବ୍ରହ୍ମହତ୍ୟା ତିଳେହେଁ ନ ଛାଡ଼ି
ଗୋଡ଼ାଇଲା ପଛେ ପଛେ କରି ଘୋର ରଡ଼ି
ମାନସରୋବରରେ ଇନ୍ଦ୍ର ପରବେଶ ହୋଇ
ଗଲେ ମୃଣାଳର ସୂକ୍ଷ୍ମ ତନ୍ତୁ ଜାଳ ଡେଇଁ ।
ବ୍ରହ୍ମାଙ୍କ ଶାପରୁ ବ୍ରହ୍ମହତ୍ୟା ସେ ତନ୍ତରେ
ପଶି ନ ପାରି ନିବର୍ତ୍ତି ରହିଲା ପଛରେ ।
ସରୋବର ତଟେ ବଟ ବୃକ୍ଷଟାଏ ଥିଲା
ତାହାର ଶାଖାକୁ ଆଶ୍ରା କରିଣ ରହିଲା ।
ଏଥୁ ଅନନ୍ତରେ ରାଜା ନହୁଷ ସ୍ୱର୍ଗରେ
ଇନ୍ଦ୍ରପଦ ଲଭ କରି ରହିଲେ ଗର୍ବରେ ।
ଦେବଙ୍କୁ ବୋଇଲେ ଶଚୀ ମୋରପତ୍ନୀ ହେବେ
ନୋହିଲେ ଶାସ୍ତି ପାଇବ ତୁମ୍ଭେ ସର୍ବ ଦେବେ
ତାହା ଶୁଣି ପତିବ୍ରତା ଇନ୍ଦ୍ରଙ୍କ ଘରଣୀ
ତାରକା ପାଶେ ଶରଣ ପଶିଲେ ସେକ୍ଷଣି ।
ବୃହସ୍ପତିଙ୍କ ଭାରିଯା ଶ୍ରୀମତୀ ତାରକା
ଶଚୀଙ୍କ ଅବସ୍ଥା ଦେଖି ହୋଇଣ ଚାଟକା ।
ପତିଙ୍କୁ ଭର୍ତ୍ସନା କରି ଶଚୀଦେବୀଙ୍କର
ରକ୍ଷଣ ବିଷୟରେ ସେ ହେଲେ ତତପର ।
ତାହା ଦେଖି ବୃହସ୍ପତି ସମ୍ଭାଳି ନ ପାରି
ଶଚୀଦେବୀଙ୍କୁ ବହୁତ ଆଶ୍ୱାସନା କରି ।
ବାସବଙ୍କ ନିକଟରେ ପ୍ରବେଶ ହୋଇଲେ
ପ୍ରବୋଧନା କରି ତାଙ୍କୁ ବଚନ କହିଲେ ।
ବୋଇଲେ ହେ ବଜ୍ରି ଏବେ ଭୟ ତେଜି ଉଠ
ମୁଁ ଥାଉ କେ କରିପାରେ ତୁମ୍ଭର ଅନିଷ୍ଟ ।
ବୃହସ୍ପତିଙ୍କର ସ୍ୱର ଶୁଣନ୍ତେ ବାସବ
ଜାଣିଲେ ନିଷ୍ଟୟ ଅଟନ୍ତି ଏ ଗୁରୁଦେବ ।
ସେ ସକାଶୁ ସୂକ୍ଷ୍ମରୂପେ ପରିତ୍ୟାଗ କରି
ଆସିଲେ ଜଳ ମଧ୍ୟରୁ ନିଜରୂପ ଧରି ।

ଗୁରୁଙ୍କର ପାଦେ ପଡ଼ି ବନ୍ଦନ ସେ କଲେ
ଦୋଷ କ୍ଷମାକର ବୋଲି ବିନୟେ କହିଲେ ।
ତାହା ଶୁଣି ବୃହସ୍ପତି କୋଳକରି ତାଙ୍କୁ
ମଧୁର ବଚନ କହି ତୋଷିଲେ ମନକୁ ।
ବାସବ ବୋଇଲେ ଦେବ ଭୃତ୍ୟ ଅପରାଧ
କ୍ଷମା କରଇ ଯେ ସ୍ୱାମୀ ଅଟେ ଜ୍ଞାନବୃଦ୍ଧ ।
ଗର୍ବ୍ୟାସ୍ତ ଶିଷ୍ୟ ଅବା ଭୃତ୍ୟଙ୍କର ଦୋଷ
ଦେଖିଲେ ପ୍ରଭୁ ଯେ ଦଣ୍ଡ ଦିଅଇ ଅବଶ୍ୟ ।
ଦେବଙ୍କ ମଧ୍ୟରେ ମୂର୍ଖ ଅଟେ ଅପଣ୍ଡିତ
ତୁମ୍ଭ କୃପା ଯୋଗେ ହୋଇ ଅଛଇ ବିଖ୍ୟାତ
ବିଧାତାଙ୍କ ପୌତ୍ର ତୁମ୍ଭେ ତତ୍ତ୍ୱ ଜ୍ଞାନବନ୍ତ ।
ସରଜନା କରିପାରେ ଅପାରେ ଜଗତ ।
ଏମନ୍ତ ଇନ୍ଦ୍ରଙ୍କଠାରୁ ଶୁଣି ବୃହସ୍ପତି
ସନ୍ତୁଷ୍ଟ ହୋଇଲେ ସେ ତ ସୁଶୀଳ ଅଟନ୍ତି ।
ଶାନ୍ତିମୟ ବଚନରେ କରି ପ୍ରବୋଧନା
ବୋଇଲେ ଶୁଣ ହେ ପୁରନ୍ଦର ମହାମନା ।
ମୋର ପ୍ରସାଦରେ ପୂର୍ବ ଅଇଶ୍ୱର୍ଯ୍ୟ ପାଅ
ନିର୍ଭୟ ଚିତ୍ତରେ ସ୍ୱର୍ଗ ଭୁବନକୁ ଯାଅ ।
ଶତ୍ରୁଙ୍କ ଦର୍ପ ଦଳନ କରିଣ ସହଜେ
ଶଚୀଙ୍କୁ ଘେନି ହୋଇବ ସିଂହାସନେ ବିଜେ
ଏମନ୍ତ କହି ଇନ୍ଦ୍ରଙ୍କୁ ସଙ୍ଗତରେ ଧରି
ଯିବାକୁ ଆରମ୍ଭ କଲେ ସ୍ୱର୍ଗନାମେ ପୁରୀ ।
ଯେକାଳେ ବ୍ରହ୍ମହତ୍ୟାକୁ ଦେଖିଣ ଆଗରେ
ଶରଣ ପଶିଲେ ଇନ୍ଦ୍ର ଗୁରୁଙ୍କ ପାୟରେ ।
ବୃହସ୍ପତି ମଧ୍ୟ କଷ୍ଟତରେ ଭୟ ପାଇ
ଶ୍ରୀହରିଙ୍କୁ ସୁମରଣା କଲେ ଭୀର ହୋଇ ।
ଅଳପ ସମୟ ପରେ ଆକାଶରୁ ବାଣୀ
ଶୁଭିଲା ଶୁଣିବା ହେଉ ଆହେ ଋଷିମଣି ।
ରାଧାଦେବୀଙ୍କ କବଚ ସଂସାର ବିଜୟ
ତାହାଦେଇ ଶିଷ୍ୟଠାରୁ ଛଡ଼ାଅଲୁ ଭୟ ।
ଏରୂପେ ଶିଷ୍ୟ ବତ୍ସଳ ବୃହସ୍ପତି ଶୁଣି
ଇନ୍ଦ୍ରଙ୍କୁ କବଚ ଦାନ କଲେ ସେହିକ୍ଷଣି ।
ବ୍ରହ୍ମହତ୍ୟାକୁ ଅନାଇଁ କରନ୍ତେ ହୁଁକାର
ଅଙ୍ଗ ପ୍ରତ୍ୟଙ୍ଗ ସକଳ ଭସ୍ମ ହେଲା ତାର ।
ଏଥିଅନ୍ତେ ବାସବଙ୍କୁ ସଙ୍ଗେ ଘେନିଗଲେ
ଅମରାବତୀ ନଗରେ ପ୍ରବେଶ ହୋଇଲେ ।

ବାସବ ଦେଖିଲେ ସ୍ୱର୍ଗ ଛିନ୍ନ ଭିନ୍ନ ହୋଇ
ରହିଅଛି ଶତ୍ରୁବଳେ ପରାଭବ ପାଇ ।
ପତି ଆଗମନ ଶୁଣି ହରଷ ମନରେ
ଉପସ୍ଥିତ ହେଲେ ଶଚୀ ତାହାଙ୍କ ପାଶରେ ।
ଆଉର ଦେବତା ଋଷି ମୁନିଗଣ ଆସି
କଥାବାର୍ତ୍ତା ହେଲେ ସୁରପତିଙ୍କୁ ଆଶ୍ୱାସି ।
ବିଶ୍ୱକର୍ମାଙ୍କୁ ବାସବ ଡକାଇ ଯେ କାଳେ
ନୂତନ ପୁର ନିର୍ମାଣ ପାଇଁ ଆଜ୍ଞା ଦେଲେ ।
ବରଷେ ପର୍ଯ୍ୟନ୍ତ ଶିଳ୍ପୀ ଯୋଗଦେଇ ତହିଁ
ବିଚିତ୍ରପୁର ନିର୍ମାଣ କଲେ ମନଦେଇ ।
ତଥାପି ତହିଁରେ ଇନ୍ଦ୍ର ସନ୍ତୁଷ୍ଟ ନ ହେଲେ
ବିଶ୍ୱକର୍ମାଙ୍କୁ ଆଉ ଯେ ବିଦାୟ ନ ଦେଲେ ।
ଯେ ସକାଶୁ ବିଶ୍ୱକର୍ମା ବ୍ୟଥା ମନେ ଘେନି
ପ୍ରବେଶ ହୋଇଲେ ଯହିଁ ଥିଲେ ପଦ୍ମଯୋନି ।
ଆପଣାର ଅଭିପ୍ରାୟ ଜଣାଇ ତାହାଙ୍କୁ
ଆଗେ ଉଭାହେଲେ ଶିରେ ଯୋଡ଼ିଣ ହସ୍ତକୁ ।
ବିଧାତା ବୋଇଲେ ତୁମ୍ଭ କର୍ମକ୍ଷୟ କାଳ
କାଲି ପରଯନ୍ତେ ଅଛି ବୋଲି ମନେ ଭାଳ ।
ତାହା ଶୁଣି ବିଶ୍ୱକର୍ମା ବାହୁଡ଼ି ଆସିଲେ
ପୂର୍ବପରି ନିଜ କର୍ତ୍ତବ୍ୟରେ ଯୋଗଦେଲେ ।
ଏଣେ ଯାଇ ପ୍ରଜାପତି ବିଷ୍ଣୁଙ୍କ ଛାମୁରେ
ବିଶ୍ୱକର୍ମାଙ୍କ ବିଷୟ ଜଣାଇଲେ ଧୀରେ ।
ଆଶ୍ୱାସନା କରି ତାଙ୍କୁ ଦେବ ନରହରି
ଇନ୍ଦ୍ରଙ୍କ ପାଶକୁ ଗଲେ ଶିଶୁରୂପ ଧରି ।
ହସ୍ତେ ଦଣ୍ଡ କମଣ୍ଡଳୁ ସ୍କନ୍ଧେ ଯଜ୍ଞସୂତ୍ର
ମସ୍ତକରେ ଊର୍ଦ୍ଧ୍ୱ ପୁଣ୍ଡ୍ର ତିଳକ ପବିତ୍ର ।
ବୟସରେ ବାଳକ ସେ ରୂପେ ମନୋହର
ବୁଦ୍ଧି ଗୁଣେ ଅଦ୍ଧିଷ୍ଟୟ ଜ୍ଞାନ ପାରାବାର ।
ଏମନ୍ତ ରୂପରେ ପ୍ରଭୁ ଇନ୍ଦ୍ରପୁରେ ଗଲେ
ଦ୍ୱାରପାଳକୁ ଅନାଇଁ ବଚନ କହିଲେ ।
ବୋଇଲେ ଇନ୍ଦ୍ରଙ୍କ ଆଗେ କହ ଆରେ ଦ୍ୱାସ୍ଥ
ତୁମ୍ଭଙ୍କୁ ଦେଖିବା ପାଇଁ ଦ୍ୱିଜ ଉପସ୍ଥିତ ।
ଦୁଆର ବାହାରେ ଉଭା ହୋଇଛନ୍ତି ଆସି
ଦରଶନ ଦିଅ ବେଗେ ତାଙ୍କ ମନ ତୋଷି ।
ତାହାଶୁଣି ଦ୍ୱାରପାଳ ବେଗହୋଇ ଗଲା
ବିପ୍ରଶିଶୁ ଆସିବାର ଇନ୍ଦ୍ରଙ୍କୁ କହିଲା ।

ହାସର ବଚନ ଶୁଣି ବାସବ ସତ୍ୱରେ
ପାଦ୍ୟଅର୍ଘ୍ୟ ମଧୁପର୍କ ପାନ ସେବନ କଲେ ।
ବ୍ରାହ୍ମଣ ବାଳକ ପାଶେ ପ୍ରେମବଶ ହୋଇଲେ
ଦଣ୍ଡବତ ହୋଇ ଯଥାବିଧି ପୂଜା କଲେ ।
ଆଶୀର୍ବାଦ କରି ପ୍ରଭୁ ତ୍ରୈଲୋକ୍ୟ ଈଶ୍ୱର
ପଚାରିଲେ ନାନାବିଧ ଶୁଭ ସମାଚାର ।
ବାସବ ବୋଇଲେ କେଉଁ କାର୍ଯ୍ୟରେ ଆପଣ
ଆସିବା ହୋଇଲେ ମୋର ପାଶକୁ ବହନ ।
ତା ଶୁଣି ବ୍ରାହ୍ମଣ ପୁତ୍ର ବୋଇଲେ ତୁମ୍ଭଙ୍କୁ
ଦେଖିବା ନିକାଶେ ଆସିଅଛୁ ମୁଁ ଏଠାକୁ ।
ଶୁଣିଲି ବଚନ ପୁରୀ ନିର୍ମିତ କରାଇ
ନାନାବିଧ କାରୁକାର୍ଯ୍ୟ କରାଉଛ ତହିଁ ।
ସେପୁରେ ଦେଖି ଯିବାକୁ ମୋହର ମାନସ
ପ୍ରବଳ ହୋଇଲା ଜାଣ ଆନନ୍ଦ ପୂରିଣ ।
କେତେ ବରଷରେ ତାହା ହୋଇବ ସମ୍ପୂର୍ଣ୍ଣ
କିରୂପରେ ବିଶ୍ୱକର୍ମା କରିବେ ନିର୍ମାଣ ।
ପୂର୍ବକାଳେ ଆଉ ଯେତେ ଇନ୍ଦ୍ର ହୋଇଥିଲେ
ଏପରି ନଗର କେହି କରାଇ ନ ଥିଲେ ।
ଅନ୍ୟ ବିଶ୍ୱକର୍ମା ଏହି ପୁରୀ ନିର୍ମାଣରେ
ସମର୍ଥ ନୋହିବେ ଜାଣିଥାଅ ନିଶ୍ଚୟରେ ।
ଏମନ୍ତ ବଚନ ଶୁଣି ଦେବ ପୁରନ୍ଦର
ହସିଣ ବୋଇଲେ ଆହେ ବ୍ରାହ୍ମଣ କୁମର ।
ତୁମ୍ଭେ କେତେ ଇନ୍ଦ୍ର କେତେ ବିଶ୍ୱକର୍ମାଙ୍କର
ଜନ୍ମ ଦେଖିଅଛ ତାହା କହ ମୋ ଆଗର ।
ବ୍ରାହ୍ମଣ ବୋଇଲେ "ଯେତେ" ଜାଣିଅଛି ମୁହିଁ
ବିଚାରି କହିବି ସବୁ ଶୁଣ ମନଦେଇ ।
ତୁମ୍ଭର ତାତ କଶ୍ୟପ ମୁନିଙ୍କର ତାତ
ଅଟନ୍ତି ଯେ ପ୍ରଜାପତି ମୋହର ବିଦିତ ।
ତାହାଙ୍କ ପିତା ମରୀଚି ତପୀଗଣ ଈଶ
ମୁଁ ଜାଣେ ତାହାଙ୍କୁ ଏଥେ ନାହିଁ ଭ୍ରମଲେଶ ।
ବିଷ୍ଣୁଙ୍କ ନାଭି ପଦ୍ମରୁ ହେଲେ ଯେ ବିଧାତା
ଅଟନ୍ତି ସେ ତିନି ଭୁବନର ସୃଷ୍ଟିକର୍ତ୍ତା ।
କେତେ କେତେ ଉତ୍ପତ୍ତି ସଂସାର ପ୍ରଳୟ
ଆବର କେତେ ବ୍ରହ୍ମାଣ୍ଡ କେତେ ଅଭ୍ୟୁଦୟ ।
ଜଗତ ମଧ୍ୟରେ କେତେ ଇନ୍ଦ୍ର ଜାତ ହୋଇ
ବିଳୟ ହୁଅନ୍ତି ତାହା କେ ପାରିବ କହି ।

ଯେବେ ପୃଥିବୀର ଧୂଳି ସଂଖ୍ୟା ଜଣାଯିବ
ତେବେ ଇନ୍ଦ୍ରଙ୍କର ସଂଖ୍ୟା ପ୍ରମାଣ ମିଳିବ ।
ଏକସ୍ତରି ଯୁଗ ଅଟେ ଇନ୍ଦ୍ରର ଆୟୁଷ
ଏହିପରି ଅଷ୍ଟାବିଂଶ ଶକ୍ର ହେଲେ ନାଶ ।
ବ୍ରହ୍ମାଙ୍କର ଦିନରାତ୍ରି ହୁଅଇଟି ଜାଣ
ଅଷ୍ଟ ପ୍ରହର ଅଟଇ ତହିଁର ପ୍ରମାଣ ।
ସେ ଦିନରାତ୍ରି ପ୍ରକାରେ ଶତ ଅଷ୍ଟୋତ୍ତର
ବରଷ ଭୋଗ କରନ୍ତି ସାବିତ୍ରୀଙ୍କ ବର ।
ତେବେ ତାହାଙ୍କର ଶେଷ ସମୟ ହୁଅଇ
ତଥାପି ବ୍ରହ୍ମାଙ୍କ ସଂଖ୍ୟା କେହି ନ ଜାଣଇ ।
ଇନ୍ଦ୍ରମାନଙ୍କର ସଂଖ୍ୟା ଜାଣିବାକୁ ଅବା
ସମର୍ଥ କେ ହେବ ବୋଲି କିରୂପେ କହିବା ।
ବିଷ୍ଣୁଙ୍କ ଲୋମ କୂପରେ ଅଶେଷ ବ୍ରହ୍ମାଣ୍ଡ
ପିପୀଲିକାପନ୍ତି ପରି ହୋଇଛନ୍ତି ଝୁଣ୍ଡ ।
ଏମନ୍ତ ଇନ୍ଦ୍ରଙ୍କ ଆଗେ କହିବା କାଳରେ
ପିପୀଲିକାଗଣ ଦେଖାଗଲେ ସେହିଠାରେ ।
ଧନୁଆକୃତିରେ ଧାଡ଼ି ହୋଇଣ ସେମାନେ
ଚାଲୁଅଛନ୍ତି ଆପଣା ନିରୂପିତ ସ୍ଥାନେ ।
ଦେଖି ତାଙ୍କୁ ନାରାୟଣ ହସି ପୁନଃ ପୁନଃ
ଇନ୍ଦ୍ରଙ୍କ ଆଗରେ କିଛି ନ କହିଲେ ଜାଣ ।
ବାସବ ତା ଦେଖିକରି ବୋଇଲେ ହେ ଦ୍ୱିଜ
ପିପୀଲିକା ଦେଖି ଅବା ମନରେ କି ହେଜ ।
ତୁମ୍ଭଙ୍କୁ ଦେଖି ମନରେ ବିଚାରୁଛି ମୁହିଁ
ମାୟାରେ ବ୍ରାହ୍ମଣଶିଶୁ ସ୍ୱରୂପକୁ ବହି ।
କିବା ଦେବତା ଦାନବ ଅଛ ତୁମ୍ଭେ ଆସି
କହୁଅଛ ଶାସ୍ତ୍ର ତତ୍ତ୍ୱ କଥା ହସି ହସି ।
ସଂଶୟ ପିଟାଇ ମୋତେ କହ ବିପ୍ରସୁତ
ଶୁଣିଲେ ସ୍ଥିର ହୋଇବ ଜାଣ ମୋର ଚିତ୍ତ ।
ବ୍ରାହ୍ମଣ ବୋଇଲେ ପିପୀଲିକା ଦେଖିକରି
ବୁଝିଲି ମୁଁ ଯାହା ତାହା କହିବି ବିଚାରି ।
ତୁମ୍ଭର ସେ ଶୋକବୀଜ ଅନ୍ୟ ଜ୍ଞାନ ହେତୁ
ସଂସାର ବିଷବୃକ୍ଷର ବିନାଶକ ବସ୍ତୁ ।
ସକଳ ବେଦ ଶାସ୍ତ୍ରରେ ନିଗୂଢ଼ ଅଟଇ
ଯୋଗୀଜନଙ୍କର ପ୍ରାଣତୁଲ୍ୟ ଅଟେ ସେହି ।
ଏମନ୍ତ କହିଣ ବିପ୍ର କୁମର ସେ କାଳେ
ସସ୍ମିତ ବଦନେ ତୁନି ହୋଇଣ ରହିଲେ ।

ଇନ୍ଦ୍ର ବୋଇଲେ ଆପଣ କହ ପ୍ରକୃତାରେ
ଅନନ୍ତ ଜାଣିବା ଇଚ୍ଛା କରଇ ମୁଁ ଅନ୍ତରେ ।
ତାହା ଶୁଣି ବିପ୍ରରୂପୀ ଦେବ ଜନାର୍ଦ୍ଦନ
କହି ଆରମ୍ଭିଲେ ନୀତିସାର ଯେ ବଚନ ।
ବୋଇଲେ ହେ ଦେବରାଜ ପିପୀଲିକାଗଣ
ଏକେକ ଜନମରେ କରୁଅଛନ୍ତି ଗମନ ।
ଆପଣା କର୍ମ ପ୍ରକାରରେ କାର୍ଯ୍ୟସିଦ୍ଧି କରି
ଜୀବିକା ନିର୍ବାହ କରୁଛନ୍ତି ଏ ସେପରି ।
ସେହିପରି ସ୍ୱର୍ଗପୁରେ ଇନ୍ଦ୍ରପଦ ପାଇ
କାଳ ବଶେ ଜୀବମାନେ ରହନ୍ତି ଯାଇ ।
ପୁଣି ତାହାଙ୍କର କର୍ମକାଳ ଶେଷ ହେଲେ
ସାମାନ୍ୟ ଜନମ ଲଭ କରନ୍ତି ଭୂତଳେ ।
କର୍ମବଳେ ବଇକୁଣ୍ଠ ବ୍ରହ୍ମଲୋକ ଆଦି
ଭୋଗକରେ ପ୍ରାଣୀ ନିଜ ଜ୍ଞାନରେ ସମ୍ପାଦି ।
ଆବର ପାତାଳ ଯମ ପୁରକୁ ସେପରି
ଗମନ କରଇ ଲୋକ ସ୍ୱକର୍ମ ଆଦରି ।
କର୍ମରେ ସାମାନ୍ୟ ଉଚ୍ଚବଂଶ ଲଭ ହୁଏ
କର୍ମ ସକାଶରେ ଲୋକ ପଶୁଜନ୍ମ ପାଏ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦି ଜାତି
କର୍ମ ଯୋଗରେ ହୁଅଇ ଆହେ ସୁରପତି ।
ସୁଖ ଦୁଃଖ ଲୋଭ ଶୋକ ମୋହ ଅପମାନ
ସ୍ୱକର୍ମ ହେତୁରେ ଘଟିଥାଏ ବୋଲି ଜାଣ ।
ତହିଁର ମୂଳକାରଣ ଅଟନ୍ତି ବିଧାତା
ସର୍ବଦା ସେ କରିଥାନ୍ତି ସୃଷ୍ଟି ସ୍ଥିତି ଚିନ୍ତା ।
ସ୍ୱଭାବ ସାଧିତ କର୍ମ ଅଟଇ ବିଶେଷ
ସ୍ୱଭାବଟି ରହିଥାଏ ଅଭ୍ୟାସର ବଶେ ।
ଏହିରୂପେ ଅଟେ ଅଧ୍ୟାତ୍ମିକ ନୀତିସାର
ନୀତିଜ୍ଞ ଲୋକ ହୁଅଇ ଆପଦରୁ ପାର ।
ସ୍ୱପ୍ନତୁଲ୍ୟ କ୍ଷଣସ୍ଥାୟୀ ନିଖିଳ ଜଗତ
ତହିଁରେ ଅଟଇ ମୃତ୍ୟୁକାଳ ନିୟୋଜିତ ।
କାଳବଶେ ମୃତ୍ୟୁ ମୁଖେ ପଡ଼ି ଜୀବଗଣ
ସ୍ୱତନ୍ତ୍ର ଭାବକୁ ଛାଡ଼ି ଲଭନ୍ତି ମରଣ ।
ବ୍ରାହ୍ମଣ ଶିଶୁଙ୍କଠାରୁ ଶୁଣି ଏ ଉତ୍ତର
ବିସ୍ମିତ ହୋଇ ରହିଲେ ତ୍ରିଦଶ ଈଶ୍ୱର ।
ଏମନ୍ତ ସମୟେ ବୃଦ୍ଧ ମୁନିଜଣେ ଆସି
ଉପସ୍ଥିତ ହେଲେ ଜାଣ ଆହେ ସ୍ୱରୁକେଶୀ ।
ବୟସ ଜ୍ଞାନରେ ସେହୁ ଅଟନ୍ତି ଅଧିକ
ଯେ ଦିଅନ୍ତି ଲଲାଟରେ ଉଜ୍ଜ୍ୱଳ ତିଳକ ।
ବକ୍ଷସ୍ଥଳେ ଲୋମଚକ୍ର ମସ୍ତକରେ ଜଟ
ଗ୍ରହଣ କରିଅଛନ୍ତି କୃଷ୍ଣାଜିନ ପଟ ।
ଦୁହିଙ୍କ ମଧ୍ୟରେ ସ୍ଥାଣୁ ପରାୟେ ସେ ମୁନି
କିଛି ନ କହିଣ ଉଭା ହେଲେ ହୋଇ ତୁନି ।
ଦେଖି ତାଙ୍କୁ ପୁରନ୍ଦର ଦଣ୍ଡବତ ହେଲେ
ପାଦ୍ୟ ଅର୍ଘ୍ୟ ଦେଇ ଯଥାବିଧି ପୂଜାକଲେ ।
ଆସନେ ବସାଇ ନାନା କୁଶଳ ସମ୍ବାଦ
ପଚାରିଲେ ମାନସରେ ବହିଣ ପ୍ରମୋଦ ।
ବ୍ରାହ୍ମଣ ବାଳକ ମଧ ତାଙ୍କ ସଙ୍ଗେ ମିଶି
ସମ୍ଭାଷଣ କଲେ ମୁନିଙ୍କର ପାଶେ ବସି ।
ଆବର ବୋଇଲେ ଆହେ ଦ୍ୱିଜକୁଳରାଣ
କେଉଁଠାରୁ ସମାଗତ ହୋଇଲେ ଆପଣ ।
କଏ ତୁମ୍ଭ ପିତାମାତା କି ନାମ ତୁମ୍ଭର
କେବଣ କାର୍ଯ୍ୟେ ଆସିଲ କହ ମୁନିବର ।
ମସ୍ତକରେ ଜଟା ଧରି ଅଛ କାହିଁପାଇଁ
ବକ୍ଷସ୍ଥଳେ କପାଁ ଲୋମଚକ୍ର ବିରାଜଇ ।
ଅତ୍ୟନ୍ତ ଉଲ୍ଲଙ୍ଘ ହୋଇଅଛି ମଧ୍ୟଦେଶ
ଅଳ୍ପ ଉତ୍ପାଟିତ ଦିଶୁଅଛି ତାର ଶେଷ ।
ଏ ସମସ୍ତ କଥା ଶୁଣିବାକୁ ମୋର ମନ
ଉତ୍କଣ୍ଠିତ ହେଉଅଛି କହ ତପୋଧନ ।
ଏରୂପେ ଶିଶୁଙ୍କ ବାକ୍ୟ ଶୁଣି ସେ ବ୍ରାହ୍ମଣ
କହିଲେ ଆପଣା କର୍ମବୃତ୍ତାନ୍ତକୁ ପୁଣ ।
ବୋଇଲେ ଆହେ ବାଳକବିପ୍ର ଯାହା ମୋତେ
ପଚାରିଲ କହୁଅଛି ଶୁଣ ଏକଚିତ୍ତେ ।
ବ୍ରାହ୍ମଣ କୁଳରେ ହୋଇ ଅଛଇ ମୁଁ ଜାତ
ଲୋମଶ ନାମ ଅଟଇ ଜଗତରେ ଖ୍ୟାତ ।
ବାଲ୍ୟକାଳୁ ଭିକ୍ଷାମାଗି ରଖିଛି ଜୀବନ
ଦାର ପରିଗ୍ରହ କରିନାହିଁ ବୋଲି ଜାଣ ।
ବରଷା ଖରାରୁ ରକ୍ଷା ପାଇବା ସକାଶେ
ଜଟ ଖଣ୍ଡିତ ବହିଛି ମସ୍ତକ ପ୍ରଦେଶେ ।
ବକ୍ଷସ୍ଥଳେ ଯେଉଁ ଲୋମଚକ୍ର ଅଛି ମୋର
କହୁଅଛି ଏବେ ଶୁଣ କାରଣ ତାହାର ।
ଏ ଲୋମଚକ୍ରରେ ମୋର ଆୟୁଷ ଗଣନା
କରୁଅଛି ଜାଣ ଆହେ ବିପ୍ର ମହାମନା ।

ଗୋଟିଏ ଇନ୍ଦ୍ରର ପାତ ହୋଇଲେ ତହିଁରୁ
ଯେମନ୍ତ ଉତ୍ପାଟିତ ହେଉଛୁ ସେଥିରୁ ।
ତଥାପି ମଧ୍ୟରେ ଯେତେ ଅଛୁ ଅବଶିଷ୍ଟ
କୋଟିଏ ଯୁଗରେ ତାହା ଗଣିବାର କଷ୍ଟ ।
ବ୍ରହ୍ମାଙ୍କର ପରାର୍ଦ୍ଧରେ ମୋହର ମରଣ
ହେବ ନିଶ୍ଚୟ ଏଥିରେ ସନ୍ଦେହ ନ ଘେନ ।
ଏମଧ୍ୟରେ କେତେ ବ୍ରହ୍ମା ନପାତ ହେଲେଣି
ଆବର ହୋଇବେ କେତେ କେପାରିବ ଜାଣି
ବ୍ରହ୍ମାଙ୍କ ପତନ ହେଲେ ଶ୍ରୀହରିଙ୍କ ନେତ୍ର
ଏକ ନିମେଷ ପତନ କରିଥାଏ ମାତ୍ର ।
ଏମନ୍ତ ଅଟଇ ସୃଷ୍ଟି ସଂହାରର କ୍ରମ
ବୃଥା ବହିଥାନ୍ତି ଲୋକେ ପୁରନ୍ଦର ଭ୍ରମ ।
ସର୍ବଦା ଶ୍ରୀକୃଷ୍ଣଙ୍କର ପାଦ ଚିନ୍ତାକରି
ଭ୍ରମଣ କରୁଛୁ ମୁହିଁ ଚର୍ମଧାରୀ ପରି ।
ଐଶ୍ୱର୍ଯ୍ୟ ସମ୍ପଦ ଅଟେ ସ୍ୱପନ ସଦୃଶ
ଦୁର୍ଲ୍ଲଭ ଅଟଇ ମାତ୍ର କୃଷ୍ଣ-ଭକ୍ତି-ରସ
ପୂର୍ବକାଳେ ମହାଦେବ ଦୟାକରି ମୋତେ
ଏ ଦିବ୍ୟଜ୍ଞାନ ପ୍ରଦାନ କରିଛନ୍ତି ମୋତେ ।
ବିନା ଭକ୍ତିରେ ସାଲୋକ୍ୟ ଆଦି ଚତୁଷ୍ଟୟ
ପ୍ରାପତ ନୁହଇ ଜାଣ ମୁନି ମହାଶୟ ।
ଏମନ୍ତ କହି ସେ ମୁନି ଶିବଙ୍କ ପାଶକୁ
ଗଲେ ତ୍ୟାଗକରି ଦ୍ୱିଜପୁତ୍ର ବାସବଙ୍କୁ ।
ସେ ଅନ୍ତରେ ବିପ୍ରରୂପୀ ଦେବ ଜନାର୍ଦ୍ଦନ
ନିମେଷ ମଧ୍ୟରେ ହୋଇ ଗଲେ ଅନ୍ତର୍ଦ୍ଧାନ ।
ସ୍ୱପ୍ନପରି ଦେଖି ସବୁ ସ୍ୱର୍ଗ ଅଧିପତି
ବିସ୍ମୟ ଜଳରେ ମଗ୍ନକରି ନିଜ ମତି ।
ବିଶ୍ୱକର୍ମାଙ୍କୁ ପାଶକୁ ଡକାଇ ଆଣିଲେ
ବିଦାୟ କରିଣ ବହୁଧନ ରତ୍ନ ଦେଲେ ।
ପୁତ୍ରଠାରେ ରାଜ୍ୟଭାର କରି ସମର୍ପଣ
ବାହାର ହୋଇଲେ ଯିବାପାଇଁ ତପୋବନ ।
ଶଚୀଙ୍କ ସହିତେ ରାଜ୍ୟ ସୁଖଭୋଗ ତେଜି
ରହିଲେ ଶ୍ରୀହରିଙ୍କର ପାଦପଦ୍ମ ଭଜି ।
ତାହାଜାଣି ଶଚୀଦେବୀ ଦୁଃଖିତା ହୋଇଲେ
ବୃହସ୍ପତିଙ୍କ ପାଶରେ ଶରଣ ପଶିଲେ ।
ଗୋଟି ଗୋଟିକରି ତାଙ୍କୁ ସବୁକଥା କହି
ପତିଙ୍କୁ ପାଶକୁ ଅଣାଇଲେ ଭକ୍ତି ହୋଇ ।
ଗୁରୁଙ୍କୁ ଦେଖିଣ ଇନ୍ଦ୍ର ବେନିପାଦ ଧରି
ଜଣାଇଲେ ଆପଣାର ସଂକଳ୍ପ ବିସ୍ତାରି ।
ତାହା ଶୁଣି ବୃହସ୍ପତି ନୀତି ନୀତିଶାସ୍ତ୍ର
ସଂକଳନା କଲେ ନିଜେ ସେ ତ ଜ୍ଞାନବନ୍ତ ।
ବତାଇଣ ତାହା ସବୁ ଶିଷ୍ୟଙ୍କୁ କହିଲେ
ଶଚୀଦେବୀ ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଲେ
ଆବର ବହୁତ ଆଶ୍ୱାସନା ବାକ୍ୟ ଭଣି
ବୋଧ କଲେ ଆଗୋ ବୃନ୍ଦାବନ ବନୋଦ୍ଧମି ।
ସେ ସକାଶୁ ତପଇଚ୍ଛା ଛାଡ଼ିଣ ବାସବ
ରାଜ୍ୟ ଶାସନରେ ମନ ଦେଲେ ବହିଭାବ ।
ଇନ୍ଦ୍ରଙ୍କ ଦର୍ପଦଳନ ଚରିତ ବିସ୍ତାରି
କହିଲି ପୁଚ୍ଛିଲ ଯେଣୁ ଆଦ୍ୟ ପ୍ରାନ୍ତକରି ।
ଆଉ କି ଶୁଣିବା ଇଚ୍ଛା ହେଉଅଛି ଯେବେ
ପଚ୍ଛର ଆମୂଳ କରି କହିବି ମୁଁ ତେବେ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ମଉନ ହୋଇଲେ
ପଦ୍ମପାଦ ସୁମରିଣ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଇନ୍ଦ୍ରଙ୍କ ଦର୍ପଭଙ୍ଗ କଥନେ ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।

---

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର ସୂର୍ଯ୍ୟ ଦର୍ପଭଙ୍ଗ କଥନ

ଏଥିଅନନ୍ତରେ ରାଧାଦେବୀ ଶ୍ରୀକୃଷ୍ଣଙ୍କୁ
ପଚାରିଲେ ପୁଣି ବସି ରହସ୍ୟ କଥାକୁ ।
ବୋଇଲେ ହେ ଦେବ ଶୁଣି ଇନ୍ଦ୍ରଙ୍କ ଚରିତ
ସମ୍ପୂର୍ଣ୍ଣରୂପେ ମୋହର ମନ ହେଲା ଆନନ୍ଦିତ ।

ଏବେ ସୂର୍ଯ୍ୟଦେବଙ୍କର ଦର୍ପ ବିମୋଚନ
କଥା ଶୁଣିବାକୁ ହେଉଅଛି ନନ୍ଦନନ୍ଦନ ।
ବତାଇଣ ତାହା ମୋତେ କହ ପ୍ରାଣେଶ୍ୱର
ଯେବେ ମୋହଠାରେ ଅଛି କରୁଣା ତୁମ୍ଭର ।
ତା ଶୁଣି ଶ୍ରୀକୃଷ୍ଣ ହସି ବୋଇଲେ ଗୋ ଦେବୀ
କହୁଅଛି ଶୁଣ ତାହା ପବିତ୍ର ଭାବି ।
ଏକଦିନେ ଦିବାକର ଅସ୍ତ ପର୍ବତରେ
ପ୍ରବେଶ ହୋଇଲେ ଯାଇ ଦିବସ ଶେଷରେ ।
କ୍ରମେ କ୍ରମେ ସନ୍ଧ୍ୟାକାଳ ଉପସ୍ଥିତ ହେଲା
ପୃଥିବୀରେ କୃଷ୍ଣବର୍ଣ୍ଣ ଛାୟା ବିରାଜିଲା ।
ମାଳୀ ସୁମାଳୀ ନାମରେ ଦୁଇଗୋଟି ଦୈତ୍ୟ
ଯେ ସମୟେ ମହାତେଜ ହୋଇଥିଲେ ଜାତ ।
ମହାଦେବଙ୍କ ବରରେ ବଳୀୟାର ସେହି
ଥିଲେ ତାଙ୍କପର ଆଉ ନ ଥିଲା ତ କେହି ।
ସୂର୍ଯ୍ୟଙ୍କଠାରୁ ଅଧିକ ତେଜ ତାହାଙ୍କର
ଦିଶୁଥାଏ ଜାଣ ଆଗୋ ରମଣୀଙ୍କ ବର ।
ସନ୍ଧ୍ୟାକାଳ ଦେଖି ଦୁହେଁ ବପୁର କାନ୍ତିତେ
ଆପଣା ତେଜ ବିସ୍ତାର କଲେ ସେ ଜଗତେ ।
ତାଙ୍କ ତେଜରେ ଅନ୍ଧାର ଦୂର ହୋଇଗଲା
ଦିବସ ରାତ୍ରିର ଭେଦଭାବ ନ ରହିଲା ।
ତା ଦେଖି କ୍ରୋଧରେ ଶୂଳ ନେଇ ଦିବାକର
ପ୍ରହାରିଲେ ନେଇ ବେନି ଦୈତ୍ୟଙ୍କ ଉପର ।
ସେ ଘାତେ ଜ୍ଞାନ ହରାଇ ଦୁଇଗୋଟି ଯାଇ
ପଡ଼ିଲେ ମହୀ ଉପରେ ଶବ ପ୍ରାୟ ହୋଇ ।
ଭକ୍ତଙ୍କର ଦୁଃଖ ଜାଣି ତ୍ରିପୁର ଅରାତି
ଜୀଆଇଲେ ନିଜେ ତାଙ୍କ ପାଶେ ଆସିକରି ।
ଚେତାପାଇ ଦୁହେଁ ଆଗେ ଦେଖି ଶଙ୍କରଙ୍କୁ
ନମସ୍କାର କରି ତହୁଁ ଫେରିଲେ ଗୃହକୁ ।
ସେ ଅନ୍ତରେ ସୂର୍ଯ୍ୟଠାରେ ପରକାଶି ରୋଷ
ଧାଇଁଲେ ମାରିବାପାଇଁ ପ୍ରଭୁ ଗିରୀଶ ।
ସୃଷ୍ଟି ସଂହାର କରତା ଅଟନ୍ତି ତ ଶିବ
ତାଙ୍କ କ୍ରୋଧ ଦେଖି କେବା ଭୟ ନ କରିବ ।
ଜୀବନ ରଖିବା ପାଇଁ ସୂର୍ଯ୍ୟ ସେ କାଳରେ
ଶରଣ ପଶିଲେ ଯାଇ ବ୍ରହ୍ମାଙ୍କ ପୟରେ ।

ତଥାପି ଶଙ୍କର ତହୁଁ ବିରତ ନ ହେଲେ
ପ୍ରଜାପତିଙ୍କ ପୁରକୁ ଆକ୍ରମଣ କଲେ ।
ଅମୋଘ ଶୂଳ ବୁଲାଇ ସୂର୍ଯ୍ୟ ସହିତରେ
ବ୍ରହ୍ମାଙ୍କୁ ନାଶିବା ପାଇଁ ଧାଇଁଲେ ସତ୍ୱରେ ।
ତାହା ଦେଖି ବେଦବର ମହାଭୟ କଲେ
ଚତୁର୍ମୁଖେ ଶିବଙ୍କର ସ୍ତୁତି ଆରମ୍ଭିଲେ ।
ବୋଇଲେ ଆହେ ଶଙ୍କର ହୁଅ ପରସନ୍ନ
ରଖ ଏବେ ସୂର୍ଯ୍ୟ ପଶିଅଛନ୍ତି ଶରଣ ।
ତୁମ୍ଭେ ଅଟ ଦକ୍ଷଯାଗ ବିନାଶ କରତା
ଭକତ ବତ୍ସଳ ସର୍ବଲୋକ ପିତାମାତା ।
ବ୍ରହ୍ମମୟ ସୃଷ୍ଟି ସ୍ଥିତି ସଂହାର କାରଣ
ଅଟ ତୁମ୍ଭେ ଦୀନବନ୍ଧୁ ଆହେ ତ୍ରିଲୋଚନ ।
ତୁମ୍ଭେ ଯେ ସୂର୍ଯ୍ୟଙ୍କୁ ଆଗେ କରିଅଛ ଜାତ
ଏବେ କପାଁ ନାଶିବାକୁ ବଳାଉଛ ଚିତ୍ତ ।
ବ୍ରହ୍ମା ବୋଲୁଅଛି ମୁହିଁ ତୁମ୍ଭ କୃପାବଳେ
ପୃଥିବୀ ଧରିଛି ଶେଷ ଥାଇ ରସାତଳେ ।
ଇନ୍ଦ୍ର ଚନ୍ଦ୍ର ହୁତାଶନ ପବନ ଦେବତା
ଅଛନ୍ତି ଯେତେ ସବୁରି ତୁମ୍ଭେ ସୃଷ୍ଟିକର୍ତ୍ତା ।
ମୁନି ଋଷିମାନେ ତୁମ୍ଭ ପାଦ ସେବାକରି
ବୋଲାଉ ଅଛନ୍ତି ଜଗତରେ ତପସ୍ୱୀ ।
ତପସ୍ୟାର ଫଳଦାତା ଅଟ ତପୋମୟ
ତୁମ୍ଭଙ୍କୁ ସେବିଲେ ଲୋକ ହୁଅଇ ନିର୍ଭୟ ।
ଏହିରୂପେ ସ୍ତୁତିକରି ବ୍ରହ୍ମା ସେ କାଳରେ
ସୂର୍ଯ୍ୟଙ୍କୁ ଦେଲେ ଶିବଙ୍କ ପାଦ-କମଳରେ ।
ତାହା ଦେଖି ସଦାଶିବ ସନ୍ତୁଷ୍ଟ ହୋଇଲେ
ସୂର୍ଯ୍ୟଙ୍କୁ ପ୍ରଶଂସା କରି ଅଭୟ ସେ ଦେଲେ ।
ବ୍ରହ୍ମାଙ୍କୁ ପ୍ରଶଂସା କରି ଆପଣାର ପୁରେ
ପ୍ରବେଶ ହୋଇଲେ ଯାଇ ପ୍ରସନ୍ନ ମୁଖରେ ।
ବ୍ରହ୍ମାଙ୍କର କୃତ ସ୍ତୋତ୍ର ପଢ଼ଇ ଯେ ନର
ସକଳ ଭୟରୁ ସେହୁ ହୁଅଇ ଉଦ୍ଧାର ।
ରାଜଦ୍ୱାରେ ଶ୍ମଶାନରେ ଅବା ଘୋର ବନେ
ନିଃଶଙ୍କ ହୁଅଇ ଲୋକ ଏ ସ୍ତୋତ୍ର ପଠନେ ।
ଏହିଠାରେ ସୂର୍ଯ୍ୟଙ୍କର ଦର୍ପଭଙ୍ଗ ଶେଷ
କଲେ ଧ୍ୟାନ କ୍ଷେତ୍ରବାସୀ ଦେଇଣ ମାନସ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ସୂର୍ଯ୍ୟ ଦର୍ପଭଙ୍ଗ କଥନେ ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

# ଊନପଞ୍ଚାଶତ ଅଧ୍ୟାୟ

## ଅଗ୍ନି ଦେବତାଙ୍କର ଗର୍ବଗଞ୍ଜନ ଚରିତ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ପ୍ରିୟ ଷଡବକ୍ତ୍ର
ପ୍ରଣମିଲେ ସୂର୍ଯ୍ୟ ବ୍ରହ୍ମାଙ୍କର ପାଦ ଧରି ।
ସେହିଦିନଠାରୁ ଗର୍ବ ତେଜି ପ୍ରତିଦିନ
କଲେ ଯଥାକ୍ରମେ ନିଜ କର୍ମ ସମ୍ପାଦନ ।
ଏବେ ଅଗ୍ନିଙ୍କ ଚରିତ କହୁଅଛି ଶୁଣ
ଗୋପନୀୟ ଅଟେ ତାହା ଜଗତରେ ଜାଣ ।
ଦିନେ ହୁତାଶନ ଦହିବାକୁ ତିନିଲୋକ
ପ୍ରଚଣ୍ଡ ଶିଖା ଉଠାଇ ହେଲେ ଭୟାନକ ।
ଭୃଗୁଙ୍କ ଶାପରେ କ୍ଷୁଧା ତୃଷା ତାହାଙ୍କର
ସେ ସମୟେ ବୃଦ୍ଧି ପାଇଥିଲା ନିରନ୍ତର ।
ସେ ସକାଶୁ ସମସ୍ତଙ୍କୁ ଭୁଞ୍ଜିବା ପ୍ରାୟେ ମଣି
ପ୍ରକାଶ କଲେ ଆପଣା ପ୍ରଭାବକୁ ପୁଣି ।
ତାହା ଜାଣି ନାରାୟଣ ସେଠାକୁ ଆସିଲେ
ଅଗ୍ନିଙ୍କ ଦାହିକା ଶକ୍ତି ହରି ନେଇ ଗଲେ ।
ମାୟାରେ ପୁଣି ବାଳକ ସ୍ୱରୂପକୁ ଧରି
କହିଲେ ତାହାଙ୍କ ଆଗେ ଉଭା ହୋଇକରି ।
ବୋଇଲେ ହେ ବୈଶ୍ୱାନର କାହିଁକି ଆପଣ
କ୍ରୋଧ କଲ କହ ମୋତେ ତହିଁର କାରଣ ।
ବୃଥାରେ ତ୍ରିଭୁବନ ଦଗ୍ଧ କରିବାକୁ
କାହିଁପାଇଁ ଅବା କରୁଅଛ ଉଦ୍ୟମକୁ ।
ଭୃଗୁମୁନି ଯେବେ ଶାପ ଦେଲେ ଆପଣଙ୍କୁ
ଉଚିତ ଅଟେ ଦମନ କରିବାର ତାଙ୍କୁ ।
କିନ୍ତୁ ଏ ତ୍ରିଭୁବନ ଭସ୍ମ କରିବାର
ନୁହଇ କଦାପି ଜାଣ ଯଥାର୍ଥ ବିଚାର ।
ଜଣଙ୍କ ଦୋଷରେ ବହୁ ଲୋକଙ୍କର କ୍ଷୟ
କଲେ ହେବ ଅବା କେଉଁ ପୌରୁଷ ଉଦୟ
ସରଜି ଅଛନ୍ତି ଧାତା ନିଖିଳ ଭୁବନ
ପାଳନ କରନ୍ତି ନିଜେ ପ୍ରଭୁ ଜନାର୍ଦ୍ଦନ ।
ଅନ୍ତଃକାଳେ ମହାଦେବ କରନ୍ତି ସଂହାର
ଏମନ୍ତ ଅଟଇ ସିନା ନିୟମ ସଂସାରର ।
ଆପଣ ଯଦ୍ୟପି ତାହା ଅନ୍ୟଥା କରିବ
ବ୍ରହ୍ମା ବିଷ୍ଣୁ ଶିବ ଆଉ କାହିଁକି ରହିବେ ।
ଯେବେ ଆପଣଙ୍କ ଦେହେ ଅଛି ଏତେ ବଳ
ପ୍ରଥମେ ବିଷ୍ଣୁଙ୍କୁ ଜୟ କର ହେ ଅନଳ ।
ସେ ଅନ୍ତେ ତିନିଲୋକକୁ ସଂହାର କରିବ
ତେବେ ଯାଇଁ ଜଗତରେ ବଡ଼ ବୋଲାଇବ ।
ଏମନ୍ତ ବୋଲି ସେ ଦ୍ୱିଜ ବଟୁ ସେହିକ୍ଷଣି
ଶୁଖିଲା ଗଛର କାଷ୍ଠ ପତ୍ର ବେଗେ ଆଣି ।
ଦଗ୍ଧ କରିବା ସକାଶେ ଦେଲେ ଅନଳଙ୍କୁ
ତା ଦେଖି କ୍ରୋଧରେ ଅଗ୍ନି ଲମ୍ବାଇ ଜିହ୍ୱାକୁ
ବ୍ରାହ୍ମଣ ଶିଶୁର ସ୍ତବପାଶରେ ବେଢ଼ିଲେ
କାଷ୍ଠପତ୍ର ସଙ୍ଗେ ତାଙ୍କୁ ନାଶିବେ ଭାବିଲେ ।
ତଥାପି କିଞ୍ଚିତ ମାତ୍ରେ ନ ପୋଡ଼ିଲେ କେହି
ବୃଥା ହେଲା ଅଗ୍ନିଙ୍କର ବଳ ସେହିଠାଇଁ ।
ସେ ସକାଶୁ ଲଜ୍ଜାପାଇ ସେ ହବ୍ୟବାହନ
ନିଷ୍ଫଳ ହୋଇଣ ଆଉ ନ ଜଳିଲେ ଜାଣ ।
ତାହା ଜାଣି ଦ୍ୱିଜରୂପୀ ପ୍ରଭୁ ନରହରି
ଅନ୍ତର୍ଦ୍ଧାନ ହୋଇଗଲେ ଆପଣାର ପୁରୀ ।
ଯାହାଙ୍କର ମାୟା ତିନିପୁରେ ଅଗୋଚର
କିପରି ଜାଣିବେ ତାହା ହୁତାଶନ ଛାର ।
ବିଷ୍ଣୁ ବୋଲି ଶେଷେ ତାଙ୍କୁ ମନରେ ଜାଣିଲେ
ପଳାଇଗଲେ ମୁହୂର୍ତ୍ତେ ନ ରହି ସେଠାରେ ।
ଏରୂପେ ବହ୍ନିଙ୍କ ଦର୍ପ ଭଙ୍ଗ ହେଲା ସଖି
ଆଶ୍ଚର୍ଯ୍ୟ ହୋଇଲେ ଦେବଗଣ ତାହା ଦେଖି
ଏଠାରେ ଅଗ୍ନିଙ୍କ ଗର୍ବଭଙ୍ଗ ସମାଚାର
ସମାପତ କଲେ ଗୀତେ ଭଣେ କ୍ଷେତ୍ରଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅଗ୍ନିଦେବତାଙ୍କର ଗର୍ବ-
ଗଞ୍ଜନ ଚରିତ ବର୍ଣ୍ଣନେ ନାମ ଊନପଞ୍ଚାଶତୋଽଧ୍ୟାୟଃ ।

—※—

# ପଞ୍ଚାଶତ ଅଧ୍ୟାୟ

## ମୁନି ଦୁର୍ବାସାଙ୍କର ଗର୍ବ ଖର୍ବ ବର୍ଣ୍ଣନ

ପତିଙ୍କ ବଚନ ଶୁଣି ଦେବୀ ହରଷିତରେ
ପଚାରିଲେ ପୁଣି ତାଙ୍କୁ କଥା ପ୍ରସଙ୍ଗରେ ।
ବୋଇଲେ ଅଗ୍ନିଦେବଙ୍କ ଚରିତକୁ ମୁହିଁ
ଶୁଣିକରି ଆନନ୍ଦିତ ହେଲି ପ୍ରାଣସାଇଁ ।
ଆଉ ଦେବତାଙ୍କ ଦର୍ପ ଭଙ୍ଗ କଥା ଯେବେ
ଜାଣିଅଛ ବୁଝାଇଣ କହ ମୋତେ ତେବେ ।
ଶ୍ରୀକୃଷ୍ଣ ବୋଇଲେ ମହାଦେବଙ୍କର ଭକ୍ତ
ଅଟନ୍ତି ଦୁର୍ବାସା ନାମେ ଯେଉଁ ତପୋବନ୍ତ ।
ତାହାଙ୍କର ଗର୍ବ ଭଙ୍ଗ ଚରିତକୁ ଶୁଣ
କହିବି ଯଥାର୍ଥରୂପେ ତହିଁର କାରଣ ।
ପୂର୍ବକାଳେ ଅମ୍ବରୀଷ ନାମେ ନରବର
ଥିଲେ ଯେ ଧାର୍ମିକ ସର୍ବଗୁଣେ ଧୂରନ୍ଧର ।
ଦ୍ୱାଦଶୀବ୍ରତ ପାରଣା କରିବା ସକାଶେ
ଡକାଇଲେ ସେ ରାଜନ ଦ୍ୱିଜଙ୍କୁ ହରଷେ ।
ଏହି ସମୟରେ ମୁନି ଦୁର୍ବାସା ସେଠାରେ
ପ୍ରବେଶ ହେଲେ ପୀଡ଼ିତ ହୋଇଣ କ୍ଷୁଧାରେ
ବିଷ୍ଣୁ ବ୍ରତ ଉଦ୍ୟାପନ କରିଥିଲେ ସେହି
ସେ ସକାଶୁ ଥିଲେ ପୂର୍ବୁ ଉପବାସେ ରହି ।
ନୃପଙ୍କୁ ବୋଇଲେ ମୋତେ ଦିଅ ପୂର୍ଣ୍ଣଗ୍ରାସ
ଭୋଜନ କଲେ ସନ୍ତୁଷ୍ଟ ହେବ ମୋ ମାନସ ।
ତାହା ଶୁଣି ନରପତି ସନମତ କଲେ
ଉତ୍ତମ ପାୟସ ସ୍ୱର୍ଣ୍ଣପାତ୍ରେ ଆଣିଦେଲେ ।
ସେ ପାୟସ ମଧ୍ୟେ କାହିଁ କେଶଟିଏ ପଡ଼ି
ଥିବାର ଦେଖିଣ ମୁନି ଓଷ୍ଠ ଦନ୍ତ ଚାଡ଼ି ।
ଶାପ ଦେବାପାଇଁ ଶିର କମ୍ପାଇ ଉଠିଲେ
ଜଟାରୁ ଛିଣ୍ଡାଇ ଖଣ୍ଡେ ତଳେ ପକାଇଲେ ।
ତହିଁରୁ ଜନ୍ମିଲ ଏକ ପ୍ରକାଣ୍ଡ ସ୍ୱରୂପ
ରୂପ ଦିଶୁଥିଲା ତାହା ଅନଳ ସଦୃଶ ।
ସପ୍ତତାଳ ପ୍ରମାଣ ସେ ମହା ଭୟଙ୍କର
ଖଡ଼ଗ ମୁଦ୍ଗର ବହିଥିଲା ବେନିକର ।
ରାଜାଙ୍କର ପ୍ରାଣନାଶ କରିବାକୁ ବେଗେ
ଧାଇଁଲ କାହାକୁ କିଛି ନ କଳିଣ ରାଗେ ।
ଦେଖିଣ ନୃପତି ଭୟେ ଅସ୍ଥିର ହୋଇଲେ
ଅନ୍ୟ ଉପାୟ ନ ଦେଖି ମୋତେ ଚିନ୍ତାକଲେ
ତାହା ଜାଣି ସୁଦର୍ଶନ ଚକ୍ରକୁ ମୁଁ ସାଇ
ଭକ୍ତଙ୍କୁ ରଖିବା ପାଇଁ ଦେଲି ପଠାଇ ।
ନିମେଷ ମାତ୍ରକେ ଚକ୍ର ଶୂନ୍ୟେ ଚଳିଗଲା
ସ୍ୱରୂପର କଣ୍ଠେ ପଡ଼ି ଦୁଇଖଣ୍ଡ କଲା ।
ସେ ଅନ୍ତେ ଦୁର୍ବାସାଙ୍କର ଶିର ଛେଦିବାକୁ
ଧାଇଁଲା ସୂର୍ଯ୍ୟ ସମାନ ପ୍ରକାଶି ତେଜକୁ ।
ଜୀବନ ବିକଳେ ମୁନି ସେଠାରୁ ପଳାଇ
ବୁଲିଲେ ନାନା ସ୍ଥାନରେ ଅସ୍ତବ୍ୟସ୍ତ ହୋଇ
ତାହାଙ୍କର ପଛେ ପଛେ ବୈଷ୍ଣବ ଆୟୁଧ
ଗୋଡ଼ାଇଁ ଧାଇଁଲା ବେଗେ କରିବାକୁ ବଧ ।
କୈଳାସ ସପ୍ତସ୍ୱର୍ଗ ବ୍ରହ୍ମଲୋକ ଆଦି
ଭ୍ରମଣ କଲେ ଦୁର୍ବାସା ନିଜ କର୍ମ ନିନ୍ଦି ।
ତେମନ୍ତ ହେଲେହେଁ ରକ୍ଷା ନ ପାଇଲେ କାହିଁ
ଯେଉଁଠାକୁ ଗଲେ ଚକ୍ର ଗୋଡ଼ାଇଲା ତହିଁ ।
ନିରାଶ ହୋଇଣ ଶେଷେ ବିଷ୍ଣୁଙ୍କ ଚରଣେ
ଶରଣ ପଶିଲେ ମୁନି ଯାଇ ତତକ୍ଷଣେ ।
ତାଙ୍କର ଏ ଦଶା ଦେଖି ଦେବ ନାରାୟଣ
ବୋଇଲେ ନିର୍ଭୟ ଏବେ ହୁଅ ହୋ ବ୍ରାହ୍ମଣ
ଅକାରଣେ ପୀଡ଼ା ଦେଲେ ଆମ୍ଭର ଭକ୍ତକୁ
ସେ ଘେନି ପାଇଲ ସିନା ଉଚିତ ଦଣ୍ଡକୁ ।
ଏବେ ଆମ୍ଭ ବୋଲ ମାନି ନୃପତିଙ୍କ ପୁରେ
ଯାଅ ଆଉ କ୍ଷଣେ ମାତ୍ର ନ ରହି ଏଠାରେ ।
ଭୋଜନ କରି ତାହାଙ୍କ ମନକୁ ତୋଷିବ
ତେମନ୍ତ ନହେଲେ ତୁମ୍ଭର ଜୀବନ ରହିବ ।
ବିଷ୍ଣୁଙ୍କଠାରୁ ଏରୂପେ ଶୁଣି ଦ୍ୱିଜବର
ରାଜାଙ୍କ ପାଖକୁ ଗଲେ ଛାଡ଼ି ଅହଙ୍କାର ।
ଦେଖି ତାଙ୍କୁ ନରପତି ପାଦ୍ୟ ଅର୍ଘ୍ୟଦେଲେ
ପାୟସ ଭୋଜନ କରି ବୋଲିଣ ବୋଇଲେ ।
ଦୁର୍ବାସା ସେ କଥା ଶୁଣି ନ ଦେଇ ଉତ୍ତର
ଭୁଞ୍ଜିଲେ ସେହି ପାୟସ ଅଣାଇ ସତ୍ୱର ।

ସେ ଅନନ୍ତ ନୃପଙ୍କୁ ଶୁଭ ଆଶୀର୍ବାଦ ଦେଲେ
ବାହୁଡ଼ି ନିଜ ଆଶ୍ରମେ ପ୍ରବେଶିଲେ ଯାଇ ।
ସେହି ଦିନଠାରୁ ବିଷ୍ଣୁ, ଭକତଙ୍କୁ ଆଉ
ଦେଖିଲେ ତାହାଙ୍କ ହୃଦ ହୁଏ ଯାଉ ଦାଉ ।
ଭକତ ଜନଙ୍କୁ ରକ୍ଷା କରିବାକୁ ମୋର
ସୁଦର୍ଶନ ସଦା ହୋଇଥାଏ ତତପର ।
ପ୍ରଳୟ କାଳରେ ନାଶଯାଏ ତ୍ରିଭୁବନ
ତଥାପି ନ ଯାଏ ମୋର ଭକ୍ତଙ୍କ ଜୀବନ ।
ବ୍ରହ୍ମା ବିଷ୍ଣୁ ଶିବଆଦି ଦେବତାଙ୍କଠାରୁ
ଅଧିକ ମୋହର ଭକ୍ତ ଆରେଗୋ ସୁରୁଭ୍ରୁ ।
ଭକ୍ତଙ୍କ ଆଉ ମୋ ଭକତ ବଲ୍ଲଭ ସୁବନ୍ଧୁ
ଭକତଙ୍କଠାରୁ କେହି ଅଧିକ ନୁହନ୍ତି ।
ଭକ୍ତଙ୍କୁ ରଖିବା ପାଇଁ ଥାଏ ସୁଦର୍ଶନ
ତଥାପି କେବେ ତୃପତ ନୁହଇ ମୋ ମନ ।
ମୁଁ ସକାଶୁ ନିଜେ ମୁହିଁ ଭକ୍ତଙ୍କର ପାଶେ
ରହିଥାଏ ସବୁବେଳେ ଦେଖିବାର ଆଶେ ।
ଦୁର୍ବାସାଙ୍କ ଦର୍ପଭଙ୍ଗ କଥା ତ ଶୁଣିଲ
ଆଉ କ ଶୁଣିବା ଇଚ୍ଛା ଥିଲେ ଏବେ ଭଣ ।
ଏମନ୍ତ କହି ଶ୍ରୀକୃଷ୍ଣ ନୀରବେ ରହିଲେ
ହରି ନାମ ରତ୍ନାକର ଚିନ୍ତେ ତାଙ୍କ ଶ୍ରୀଚରଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ମୁନି ଦୁର୍ବାସାଙ୍କର ଗର୍ବ ଖର୍ବ ବର୍ଣ୍ଣନେ ନାମ ପଞ୍ଚାଶତୋଽଧ୍ୟାୟଃ ।



## ଏକପଞ୍ଚାଶତ ଅଧ୍ୟାୟ

## ଧନ୍ୱନ୍ତରୀଙ୍କର ଗର୍ବ ଗଞ୍ଜନ ଚରିତ ବର୍ଣ୍ଣନ

ଏଥୁ ଅନନ୍ତରେ ରାଧାଦେବୀ ମହାସତୀ
ପଚାରିଲେ ଶ୍ରୀକୃଷ୍ଣଙ୍କୁ ପୁଣି କରି ପ୍ରୀତି ।
ବୋଇଲେ ଧନ୍ୱନ୍ତରୀଙ୍କ ଚରିତକୁ ମୋତେ
କହ ଶୁଣିବାର ଶ୍ରଦ୍ଧା ହେଉଛି ମୋ ଚିତ୍ତେ ।
ଶ୍ରୀକୃଷ୍ଣ ତା ଶୁଣିକରି ଅଳପ ହସିଲେ
ପୁରାଣ ଚରିତ କହିବାକୁ ଆରମ୍ଭିଲେ ।
ବୋଇଲେ ନାରାୟଣଙ୍କ ଅଂଶେ ଅବତରି
ଥିଲେ ଯେ ପୂର୍ବରେ ଦେବ ବୈଦ୍ୟ ଧନ୍ୱନ୍ତରୀ
ସମୁଦ୍ର ମନ୍ଥନରୁ ହୋଇଥିଲେ ସେ ଉତ୍ପନ୍ନ
ଅଟନ୍ତି ସକଳ ମନ୍ତ୍ର ତନ୍ତ୍ରର ନିପୁଣ ।
ଶିବଙ୍କଠାରୁ ପ୍ରଥମେ ବିଦ୍ୟା ସେ ଶିଖିଲେ
ବୈନତେୟଠାରୁ ମଧ୍ୟ କେତେ ଶିକ୍ଷା କଲେ
ଶିଷ୍ୟଙ୍କ ମେଳରେ ଦିନେ କୈଳାସପୁରକୁ
ଯାଉଥିଲେ ଶିବଙ୍କର ପାଦ ବନ୍ଦିବାକୁ
ଦେଖିଲେ ତକ୍ଷକ ଲକ୍ଷେ ନାଗଙ୍କ ମଧ୍ୟରେ
ପର୍ବତ ପର୍ଯ୍ୟନ୍ତ ରହିଅଛନ୍ତି ମାର୍ଗରେ
ଧନ୍ୱନ୍ତରୀଙ୍କୁ ଆଗରେ ଦେଖିଣ ସେମାନେ
ଖାଇବାପାଇଁକି ଧାଇଁଗଲେ କୋପମନେ ।
ତାହା ଦେଖି ଧନ୍ୱନ୍ତରୀ ଅଟ୍ଟହାସ କରି
ଶିଷ୍ୟଗଣଙ୍କୁ ଅନାଇ ଦେଲେ କେବେ ଠାରି ।
ଦମ୍ଭୀ ନାମ ଶିଷ୍ୟ ତାହା ଜାଣି ବେଗେ ଗଲା
ମନ୍ତ୍ରବଳେ ତକ୍ଷକଙ୍କ ମସ୍ତକ ଧରିଲା ।
ବ୍ୟାଳର ବନ୍ଧିତ ଥିବା ବିଷ ହରିନେଇ
ଫିଙ୍ଗିଦିଆଗଲା ଦୂରରେ ପଡ଼ିଲେ ସେ ଯାଇ
ନିଷ୍ଫଳ ଭାବରେ ସଙ୍କଟର ସେମାନଠାରେ
ରହିଲେ ପଡ଼ିଗଣେ ହେଲେ ନ ଘୁଞ୍ଚି କାତରେ
ନାଗଗଣ ଦେଖି ମହାଭୟରେ ପଳାଇ
କହିଲେ ସର୍ପରାଜାଙ୍କ ଆଗେ ସବୁ ଯାଇ ।
ବାସୁକି ତା ଶୁଣିକରି କ୍ରୋଧ କରି ଅତି
ବିଷଧର ସର୍ପ କେତେ ପେଷିଲେ ଝଟତି ।
ତାଙ୍କ ମଧ୍ୟରେ ମୁଖ୍ୟ ସେନାପତିମାନେ
ଗଲେ ଯୁଦ୍ଧ କରିବାକୁ ଘୋର ବଡ଼ ମନେ ।
ତାହାଙ୍କର ନାମମାନ କହୁଅଛି ଶୁଣ
କାଳୀୟ ଯେ କର୍କୋଟକ ପୁଣ୍ଡରୀକ ଦ୍ରୋଣ ।
ଧନଞ୍ଜୟ ମହାପଦ୍ମ ମାଣ୍ଡିଗୋଟି ନାଗ
ବାହାର ହୋଇଲେ ଜାତକାଳ ମହାରାଗ ।

ଧନ୍ୱନ୍ତରୀଙ୍କ ପାଶରେ ସମସ୍ତେ ମିଳିଲେ
ନିଃଶ୍ୱାସ ବାତରେ ବିଷ ଉଦ୍‌ଗୀରଣ କଲେ ।
ଦେବବୈଦ୍ୟଙ୍କର ଶିଷ୍ୟଗଣ ତା ନ ସହି
ପଡ଼ିଲେ ମହୀ ଉପରେ ଚେତନା ହରାଇ ।
ଧନ୍ୱନ୍ତରୀ ତାହା ଦେଖି ବଳରି ଅମୃତ
ମୁହୂର୍ତ୍ତକେ ସମସ୍ତଙ୍କୁ କରାଇଲେ ସୁସ୍ଥ ।
ସେ ଅନନ୍ତ ସର୍ପଗଣଙ୍କୁ ଜୃମ୍ଭଣ ମନ୍ତ୍ରରେ
ନିଷ୍ଟେଷ୍ଟ କରି ପକାଇ ଦେଲେ ସେ ମହୀରେ ।
ଗୋଟିଏ ହେଲେ ତହିଁରୁ ପଳାଇବା ପାଇଁ
ଧନ୍ୱନ୍ତରୀ ମନ୍ତ୍ରବଳେ ଶକ୍ତ ହେଲେ ନାହିଁ ।
ବାସୁକି ସେ କଥା ଯୋଗବଳରେ ଜାଣିଲେ
ଆପଣାର ଭଗିନୀଙ୍କୁ ଡକାଇ ଆଣିଲେ ।
ଅନାଇ ତାହାଙ୍କୁ ଧୀରେ କହିଲେ ବଚନ
ବୋଇଲେ ଆଗୋ ମନସା ମୋହଠାରୁ ଶୁଣ ।
ନାଗଗଣଙ୍କୁ ସଙ୍କଟ ପଡ଼ିଅଛି ଏବେ
ବିନଷ୍ଟ ହୋଇବେ ତୁମ୍ଭେ ନ ରଖିବ ଯେବେ ।
ତୁମ୍ଭ ବିନା ଆନ କେହି ରକ୍ଷା କରିବାକୁ
ସମର୍ଥ ନୋହିବେ ମୋର ଆସୁଛି ମନକୁ ।
ଏମନ୍ତ ଶୁଣି ମନସା ପରକାଶି ହାସ
ବୋଇଲେ ତୁମ୍ଭର ଆଜ୍ଞା ପାଳିବି ଅବଶ୍ୟ ।
ମାତ୍ର ଫଳାଫଳ ଅଟେ ଦଇବ ଅଧୀନ
କରିବି କେବଳ ମୋର କର୍ତ୍ତବ୍ୟ ସାଧନ ।
ରଣସ୍ଥଳେ ଶତ୍ରୁଙ୍କର ଜୀବନକୁ ମୁହିଁ
ହରଣ କରିବା ପାଇଁ ସମର୍ଥ ଅଟଇ ।
ଯାହାକୁ ନାଶିବା ଇଚ୍ଛା ମୋହର ହୋଇବ
ରଖି ନ ପାରିବେ ତାକୁ ବ୍ରହ୍ମା ବିଷ୍ଣୁ ଶିବ ।
ମହାମନ୍ତ ଶେଷଦେବ ମୋର ଶିକ୍ଷାଗୁରୁ
ଗ୍ରହଣ କରିଛି ସିଦ୍ଧମନ୍ତ୍ର ତାଙ୍କଠାରୁ ।
ଆବର ଜଗତ କର୍ତ୍ତା ନାରାୟଣଙ୍କର
କବଚ ହୋଇଛି ବନ୍ଧା କଣ୍ଠରେ ମୋହର ।
ସେ ସକାଶୁ ତିନିପୁର କ୍ଷଣମାତ୍ରକରେ
ଭସ୍ମସାତ କରି ପୁଣି ସରଜି ମୁଁ ପାରେ ।
ପୂର୍ବକାଳେ ମହାଦେବ ପ୍ରୀତିମନ୍ତ ହୋଇ
ସର୍ବସିଦ୍ଧି ତତ୍ତ୍ୱଜ୍ଞାନ ଛନ୍ତି ମୋତେ ଦେଇ ।
ସେ ଜ୍ଞାନବଳରେ ଗରୁଡ଼ଙ୍କଠାରେ ମୋର
ଭୟ ନ ହୁଅଇ ଧନ୍ୱନ୍ତରୀ କେତେକର ।

ଏମନ୍ତ କହି ମନସା ବେଗ ହୋଇ ଗଲା
ନାଗ ଚତୁରଙ୍ଗବଳ ସଙ୍ଗରେ ନ ନେଲା ।
ନାରାୟଣ ଶିବ ଶେଷଦେବଙ୍କୁ ମନରେ
ସୁମରଣା କରି ତହୁଁ ଗଲେ ତରତରେ ।
ଯେଉଁଠାରେ ଧନ୍ୱନ୍ତରୀ ଶିଷ୍ୟଗଣ ଥିଲେ
ଅଲେ ସେହିଠାରେ ଯାଇ ପ୍ରବେଶ ହୋଇଲେ ।
ଅମୃତ ଦୃଷ୍ଟିରେ ସବୁ ସର୍ପଙ୍କ ଚେତନା
ଫେରାଇ ଆଣିଲେ ଦେଖୁଥିଲା ଶତ୍ରୁସେନା ।
ସେ ଅନ୍ତରେ ବିଷଦୃଷ୍ଟି ନିକ୍ଷେପଣ କରି
ଧନ୍ୱନ୍ତରୀ ଶିଷ୍ୟଙ୍କର ଜ୍ଞାନ ନେଲେ ହରି ।
ଧନ୍ୱନ୍ତରୀ ତ ଅଟନ୍ତି ମନ୍ତ୍ରର କୁଶଳ
ସଞ୍ଜୀବନୀ ମନ୍ତ୍ର ଉଚ୍ଚାରିଲେ ତତକାଳ ।
ଆବର ବହୁତ ଉପଚାର ଆଣିଦେଲେ
ତଥାପି ଶିଷ୍ୟରୁ ଜଣେ ହେଲେ ନ ଉଠିଲେ ।
ତା ଦେଖି ମନସା ଦେବୀ ଅଟ୍ଟହାସ କରି
ବୋଇଲେ ମୋହର ବାକ୍ୟ ଶୁଣ ଧନ୍ୱନ୍ତରୀ ।
କେତେ ମନ୍ତ୍ର ମହୌଷଧି ଜାଣିଅଛ ତୁମ୍ଭେ
ପ୍ରୟୋଗ କର ଏଠାରେ ବୋଲୁଅଛୁ ଆମ୍ଭେ ।
ଗରୁଡ଼ଙ୍କଠାରୁ ଯେତେ ମନ୍ତ୍ର ଶିଖିଥିଲ
ଏତେବେଳେ ତାହା ସବୁ କେଉଁଆଡ଼େ ଗଲ
ଶିବଙ୍କ ପାଶେ ଗରୁଡ଼ ମୋ ସଙ୍ଗରେ ମିଶି
ଯେଉଁ ମନ୍ତ୍ର ଶିଖିଥିଲେ ଚିରକାଳ ଘୋଷି ।
ତାହା ସବୁ ତ ତୁମ୍ଭଙ୍କୁ ବତାଇ ସେ ଥିବେ
କିଛି ପ୍ରତିକାର କରୁ ନାହଁ କିପାଁ ଏବେ ।
ଏରୂପେ କହିଣ ଦେବୀ ପଦ୍ମପୁଷ୍ପ ଧରି
ଫିଙ୍ଗିଲେ ସେକ୍ଷଣି ମନ୍ତ୍ର ସମ୍ବଳିତ କରି ।
ମନ୍ତ୍ରବଳେ ପୁଷ୍ପଗୋଟି ବଜ୍ର ପାଲଟିଲା
ଆକାଶରେ ପଶି ଅଗ୍ନିଜ୍ୱାଳା ବରଷିଲା ।
ତାକୁ ଦେଖି ଧନ୍ୱନ୍ତରୀ ଗୋଟିଏ ହୁଂକାରେ
ଭସ୍ମକରି ପକାଇଲେ ମୁହୂର୍ତ୍ତ ମଧ୍ୟରେ ।
ମନସା ଦେବୀ ସେ କଥା ସହି ନ ପାରିଲେ
ସର୍ଷପ ମୁଠାଏ ଧରି ମନ୍ତ୍ର ଉଚ୍ଚାରିଲେ ।
ଧନ୍ୱନ୍ତରୀ ଉପରକୁ ଫିଙ୍ଗନ୍ତେ ତାହାକୁ
ଜାତ କଲା ସେ ବିବିଧ ଆୟୁଧମାନଙ୍କୁ ।
ନ ଡରି କଷ୍ଟିତ ମାତ୍ର ଦେବ ବୈଦ୍ୟରାଜ
ମଧ୍ୟାହ୍ନ ସୂର୍ଯ୍ୟ ପରାୟେ ପ୍ରକାଶିଲେ ତେଜ ।

ସର୍ଷପ ଅସ୍ତ୍ର ବିନାଶ କରିବାକୁ ବେଗ
ମନ୍ତ୍ରିଣ ଟେକି ମୁଠାଏ ଫିଙ୍ଗି ଦେଲେ ରାଗ ।
ତକ୍ଷଣିରେ ସର୍ଷପ ଅସ୍ତ୍ର ବିଫଳ ହୋଇଲା
ଦେଖି ଦେବୀଙ୍କର ମନେ କ୍ରୋଧ ଜାତ ହେଲା
ତପନ ସଦୃଶ ଶକ୍ତି ଯେବେ ବେଗକରେ
ଫିଙ୍ଗିଲେ ସେ ଶତ୍ରୁ ନାଶ କରିବା ଇଚ୍ଛାରେ ।
ସେ ଶକ୍ତିକୁ ଦେଖି ଧନ୍ୱନ୍ତରୀ ଆଗହୋଇ
ବିଷ୍ଣୁଦତ୍ତ ଶୂଳ ପ୍ରହାରିଲେ ବେଗେ ନେଇ ।
ତକ୍ଷଣିରେ ଦେବୀଙ୍କ ଶକ୍ତି ହେଲା ଖଣ୍ଡ ଖଣ୍ଡ
ସେ ସକାଶୁ କ୍ରୋଧଭରେ ହୋଇସେ ପ୍ରଚଣ୍ଡ
ନାଗପାଶ ଅସ୍ତ୍ର ଯେବେ କରନ୍ତେ ପ୍ରହାର
କୋଟି କୋଟି ସର୍ପ ତହୁଁ ହୋଇଲେ ବାହାର
ଧନ୍ୱନ୍ତରୀ ଦେଖି ତାହା ଗରୁଡ଼କୁ ମନେ
ସୁମରଣା କଲେ ବସି କମଳ ଆସନେ ।
ତାହା ଜାଣି ଖଗେଶ୍ୱର ସେଠାକୁ ଆସିଲେ
ଗୋଟି ଗୋଟି କରି ନାଗଗଣଙ୍କୁ ଗ୍ରାସିଲେ ।
ବିଫଳ ହେବାରୁ ନାଗଅସ୍ତ୍ର ଦେବୀଙ୍କର
ଶିବଦତ୍ତ ଭସ୍ମମୁଷ୍ଟି କଲେ ସେ ପ୍ରହାର ।
ଧନ୍ୱନ୍ତରୀଙ୍କ ଆଗରେ ଗରୁଡ଼ ନ ଥିଲେ
ପକ୍ଷବାତରେ ସେ ଭସ୍ମମୁଷ୍ଟି ବ୍ୟର୍ଥ କଲେ ।
ନିରସ୍ତ୍ର ହୁଅନ୍ତେ ତାହା କ୍ରୋଧଭରେ ଦେବୀ
ଧନ୍ୱନ୍ତରୀଙ୍କ ମରଣ ମାନସରେ ଭାବି ।
ଅବ୍ୟର୍ଥ ଅଟଇ ଯେଉଁ ଶିବଙ୍କର ଶୂଳ
ଦୁଇହାତେ ଧରି ବୁଲାଇଲେ ଅନର୍ଗଳ ।
ପ୍ରଳୟକାଳ ଅନଳ ସମାନ ତା ତେଜ
କଲା ସେ କାଳରେ ହରି ବାହନକୁ ଉଜ ।
ସେ କଥାକୁ ଜାଣି ବ୍ରହ୍ମା ଶିବଙ୍କର ତୁଲେ
ସମର କ୍ଷେତ୍ରରେ ଆସି ଉପସ୍ଥିତ ହେଲେ ।
ଦେଖି ତାଙ୍କୁ ଶୂଳହସ୍ତା ମେନକା ସୁନ୍ଦରୀ
ଦଣ୍ଡବତ ହେଲେ ଦେବ ଚରଣକୁ ଧରି ।
ଧନ୍ୱନ୍ତରୀ ଖଗେଶ୍ୱର ଦୁହେଁ ଭକ୍ତିଭରେ
ସ୍ତୁତି କଲେ କରଦେଇ ମସ୍ତକ ଉପରେ ।
ବ୍ରହ୍ମା ଶିବ ଦୁହେଁ ତାଙ୍କୁ ଆଶୀର୍ବାଦ କରି
ବୋଇଲେ ଆମ୍ଭ ବଚନ ଶୁଣ ଧନ୍ୱନ୍ତରି ।
ମନସା ଦେବୀଙ୍କ ସଙ୍ଗେ ଯୁଦ୍ଧ କରିବାର
କଦାପି ନୁହେଁ ତୁମ୍ଭର ଉଚିତ ବେଭାର ।

ଅମୋଘ ଶୂଳ ପ୍ରହାରବ ତାଙ୍କଠାରେ ଜାଣ
କରି ପାରନ୍ତି ଏଥିରେ ନ ଯେବେ ସଂଶୟ ।
ଏବେ ଆମ୍ଭ ବୋଲେ ନାନା ଉପାୟରେ ତେଇ
ପୂଜା କରି ତାଙ୍କ ପ୍ରତି ଭକ୍ତିଭାବ ବହି ।
ଆସ୍ତିକ କୃତ ସ୍ତୋତ୍ରରେ ସ୍ତୁତିପାଠ କର
ପ୍ରସନ୍ନ ହୋଇ ସେ ଇଷ୍ଟ ଦେଇଥିବେ ବର
ଏହିରୂପେ ବ୍ରହ୍ମା ଶିବ ଦୁହିଙ୍କ ବଚନ
ଶୁଣି ବୈନତେୟ ତାହା କଲେ ସମର୍ଥନ ।
ଧନ୍ୱନ୍ତରୀ ସେ କଥାକୁ ସନମତ କଲେ
ସ୍ନାନ ସନ୍ଧ୍ୟା ଶେଷକରି ଶୁଚିମନ୍ତ ହେଲେ ।
ବିଧାତାଙ୍କୁ ପୁରୋହିତ କାର୍ଯ୍ୟ ନିଯୁକତ
କଲେ ସେ କାଳରେ ମୁଣି ତୋଷବନ୍ତ ଚିତ୍ତ ।
ଦେବୀଙ୍କ ଆଗରେ କରଯୋଡ଼ି ଉଭା ହେଲେ
କୌଥୁମୋକ୍ତ ବିଧାନରେ ସ୍ତୁତି ଆରମ୍ଭିଲେ ।
ବୋଇଲେ ନମସ୍ତେ ଦେବୀ ତ୍ରୈଲୋକ୍ୟପୂଜିତା
କଶ୍ୟପ କନ୍ୟକା ନାଗବଂଶ ବିଭୂଷିତା ।
ବ୍ରହ୍ମେନ୍ଦ୍ରଅଷ୍ଟ ବିଷ୍ଣୁ ରୂପା ମାୟା ସ୍ୱରୂପିଣୀ
ନକଲି ଅସ୍ତ୍ର ପ୍ରୟୋଗ ତୁମ୍ଭଙ୍କୁ ସେ ଯେବେ ।
ଏମନ୍ତ ବୋଲି ଶୁକଳପୁଷ୍ପ ହସ୍ତେ ଧରି
ଧ୍ୟାନ କଲେ ଭକ୍ତିଭରେ ଶିର ନମ କରି ।
ବୋଇଲେ ହେ ଦେବୀ ଶୁକୁଚମ୍ପକ ବରଣ
ଈଷତ ହାସ୍ୟ ଶୋଭିତା ପ୍ରସନ୍ନ ବଦନ ।
ସର୍ବଶକ୍ତି ସ୍ୱରୂପିଣୀ ଭକତବତ୍ସଳା
ନାଗେନ୍ଦ୍ର ବାହନା ଦେବୀ ଶ୍ରୀସର୍ବ ମଙ୍ଗଳା ।
ଏହିରୂପେ ଧ୍ୟାନକରି ଉପଚାରମାନ
ଭିନ୍ନ ଭିନ୍ନ ମନ୍ତ୍ର ପଢ଼ି କଲେ ସମର୍ପଣ ।
ସେ ଅନ୍ତରେ କରଯୋଡ଼ି ମସ୍ତକ ନୁଆଇଁ
ବୋଇଲେ ସମସ୍ତେ ସିଦ୍ଧଦାତ୍ରୀ ମହାମାୟୀ ।
ଶଙ୍କର କନ୍ୟକା ଶୁଭଫଳ ପ୍ରଦାୟିନୀ
ନାଗମାତା ଯୋଗେଶ୍ୱରୀ ଐଶ୍ୱର୍ଯ୍ୟଶାଳିନୀ ।
ନମସ୍ତେ ଜଗଦ୍ଧାତ୍ରୀ ତପଫଳ ଦାତ୍ରୀ
ନମୋ ନମଃ ସିଦ୍ଧିରୂପା ପ୍ରଶାନ୍ତ ମୂରତି ।
ମୋହର ବିନୟ ଯେବେ ହୁଅ ପରସନ୍ନ
ପାଦରେ କରୁଛି ତୁମ୍ଭ ଚରଣ ବନ୍ଦନ ।
ଏମନ୍ତ ବୋଲିଣ ଧନ୍ୱନ୍ତରୀ ସେ କାଳରେ
ପ୍ରଣମିଲେ ଦେବୀଙ୍କର ପାଦ କମଳରେ ।

ସନ୍ତୁଷ୍ଟ ହୋଇ ମନସା ବର ଦେଲେ ତାଙ୍କୁ
ସେହିକ୍ଷଣି ଚାଲିଗଲେ ଆପଣା ପୁରକୁ ।
ବ୍ରହ୍ମା ଶିବ ବୈନତେୟ ଯେଠାରେ ତ ଥିଲେ
ଦେବୀଙ୍କର ବିଦା ଦେଇ ନିଜସ୍ଥାନେ ଗଲେ ।
ଧନ୍ୱନ୍ତରୀ ସେଠୁ ନିଜ ଶିଷ୍ୟଙ୍କ ସଙ୍ଗରେ
ଗୃହମଧ୍ୟ ପ୍ରବେଶିଲେ ହୋଇ ବନ୍ଧୁ ଚିତ୍ତେ ।
ତକ୍ଷକ ସହିତେ ନାଗଗଣ ଯେ ଅନନ୍ତରେ
ଗଲେ ଫଣାଟେକି ବିଷ ଉଦ୍‌ଗାରି ସତ୍ୱରେ ।
ଏହିରୂପେ ଧନ୍ୱନ୍ତରୀ ଚରିତ ବିଷୟ
କହିଲି ତୁମ୍ଭ ଆଗରେ ପିଟାଇ ସଂଶୟ ।
ଧନ୍ୱନ୍ତରୀକୃତ ସ୍ତୋତ୍ର ପଢ଼ିଲେ ଯେ ନର
ନାଗଠାରୁ ଭୟ କେବେ ନୁହଇ ତାହାର ।
ଯେଉଁଠାରେ ପାଠ ହୁଏ ଏହି ଉପାଖ୍ୟାନ
ସର୍ପ ବାସ ନ କରନ୍ତି କଦାପି ସେ ସ୍ଥାନ ।
ଏଠାରେ ଧନ୍ୱନ୍ତରୀଙ୍କ ଚରିତ ଆଖ୍ୟାନ
ଗୀତରେ ସମାପ୍ତ କଲେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଧନ୍ୱନ୍ତରୀଙ୍କର ଗର୍ବ ଗଞ୍ଜନ
ଚରିତ ବର୍ଣ୍ଣନେ ନାମ ଏକପଞ୍ଚାଶତ୍ତମୋଽଧ୍ୟାୟଃ ।

---

## ଦ୍ୱି ପ ଞ୍ଚା ଶ ତ ଅ ଧ୍ୟା ୟ

## ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ ଓ ରାଧାରାଣୀଙ୍କର ଶୋକପରେ ଦୁହିଙ୍କର ପୁନର୍ମିଳନ

ଏଥୁ ଅନ୍ତରେ ଶ୍ରୀକୃଷ୍ଣ ରାଧାଙ୍କୁ ଅନାଇ
ଶୁଣିଲ ତ ସବୁକଥା ମନ କର୍ଣ୍ଣ ଦେଇ ।
ଏବେ ଚାଲ ବୃନ୍ଦାବନ ଗହନକୁ ଯିବା
ଗୋପୀମାନଙ୍କୁ ସେଠାରେ ଦରଶନ ଦେବା ।
ତାହା ଶୁଣି ସେ ମାନିନୀ ରସିକା ଈଶ୍ୱରୀ
କହିଲେ ପତିଙ୍କ ଆଗେ ଗର୍ବଭାବ ଧରି ।
ବୋଇଲେ ଭେଦେବ ମୁହିଁ ନ ପାରିବି ଚାଲି
ନିଅ ମୋତେ ବୃନ୍ଦାବନ ଭିତରକୁ ବୋଲି ।
ତା ଶୁଣି ଶ୍ରୀକୃଷ୍ଣ ହାସ ପରକାଶ କରି
ବୋଇଲେ ମୋ କାନ୍ଧପରେ ବସ ସୁକୁମାରୀ ।
ଏମନ୍ତ ବୋଲି ନିମେଷ ମଧ୍ୟରେ ଚଞ୍ଚଳେ
ବିଜୁଳି ସମାନ ଅନ୍ତର୍ଦ୍ଧାନ ହୋଇଗଲେ ।
ଦେଖିଣ ରାଧିକା ଦେବୀ ବହୁତ କାନ୍ଦିଲେ
ନାଥ ନାଥ ବୋଲି ଉଚ୍ଚେ ପୁଣି ଡାକିଦେଲେ ।
ସେ ଅନ୍ତରେ ବୃନ୍ଦାବନେ ପରବେଶ ହୋଇ
ଦେଖିଲେ ଗୋପିକାଗଣ ରହିଛନ୍ତି ତହିଁ ।
ସମସ୍ତେ ହୋଇଅଛନ୍ତି ବିରହ କାତର
କାହାର ମୁଖୁ ବାହାର ନୁହଇ ଉତ୍ତର ।
ଦେବୀଙ୍କୁ ଦେଖି ସେମାନେ ପାଶେ ଧାଇଁଗଲେ
ଶ୍ରୀକୃଷ୍ଣଙ୍କ କଥାସବୁ ପଚ୍ଚାରି ଶୁଣିଲେ ।
ବିରହ ବ୍ୟଥାରେ ପୁଣି ସକଳ ଅବଳା
ଦୁଃଖିତ ହୋଇଣ ଶୋକ କଲେ ମେଳି ଗଳା
ଶ୍ରୀକୃଷ୍ଣଙ୍କୁ ପୁନଃପୁନ ନିନ୍ଦାକରି ତହିଁ
ନିଶ୍ଚୟ କଲେ ଜୀବନ ଛାଡ଼ିଦେବା ପାଇଁ ।
ତାହା ଜାଣି ଭାବଗ୍ରାହୀ ତତକ୍ଷଣେ ଆସି
ମିଳିଲେ ସେଠାରେ ନିଜରୂପ ପରକାଶି ।
ଦେଖି ତାଙ୍କୁ ସ୍ତ୍ରୀଗଣ ଉଠି ତତକ୍ଷଣେ
ଆଲିଙ୍ଗନ କଲେ ପାଶେ ଆସି ଜଣେ ଜଣେ ।
କେଉଁମାନେ ମିଥ୍ୟା କ୍ରୋଧ ପରକାଶ କରି
ଘେନି ପଳାଇଲେ ହସ୍ତୁ ମୁରଲୀକି ଧରି ।
ଆଉରି ପୀତବସନ ବନ୍ୟପୁଷ୍ପ ମାଳା
କେବଣ ଗୋପିକା ଭିଡ଼ି ଘେନି ପଳାଇଲା ।
ପୁଣି ଯଥାସ୍ଥାନେ ସବୁଦ୍ରବ୍ୟ ନେଇଦେଲେ
ଆନନ୍ଦରେ ତାହାଙ୍କର ଗଣ୍ଡକୁ ଚୁମ୍ବିଲେ ।
ପୁଣି କ୍ଷଣକ ଅନ୍ତରେ ହୋଇ ଉନମତ୍ତ
ତରଜନା କରି ଗାଳି ଦିଅନ୍ତି ବହୁତ ।
ସେ ଅନ୍ତେ ବନସୁରବେ ସ୍ତୁତି ସ୍ତୋତ୍ର ପଢ଼ି
ପ୍ରାର୍ଥନା କରନ୍ତି ଶିରେ ବେନି କରଯୋଡ଼ି ।
ଏଥୁଅନ୍ତେ ପ୍ରେମଭରେ ସକଳ ଅଙ୍ଗନା
ଦୁଃଖ ଜଣାଇଲେ ପାଶେ ହୋଇଣ ବିମନା ।
କ୍ଷଣକରେ ସୁବାସିତ ଚନ୍ଦନ କର୍ପୂର
ବିଲେପନ କଲେ ନେଇ ଦେହରେ ତାଙ୍କର
ପୁଣି କ୍ଷଣକ ଅନ୍ତରେ ପୁଷ୍ପମାଳା ନେଇ
ଯତନରେ ଦେଲେ ବକ୍ଷ ସ୍ଥଳରେ ଲମ୍ବାଇ ।

କେତେଁମାନେ ବୋଇଲେ ହେ ପ୍ରାଣ ନେବାପାଇଁ
ବିସ୍ମର କରିଅଛ କି ଆମ୍ଭର ଗୋସାଇଁ ।
ଏହିପରି ଥରେ ଆଉ କେବେ ନ କରିବ
କଲେ ସ୍ତ୍ରୀ ହତ୍ୟା ପାପ ଅବଶ୍ୟ ପାଇବ ।
ସେତେଁମାନେ ବୋଇଲେ ଗୋ ଶୁଣ ସଖିଗଣ
ପ୍ରେମ ପାଶରେ ଏହାଙ୍କୁ ବାନ୍ଧି ଘେନିଆଣ ।
କେ ବୋଇଲା ଚିତ୍ତଚୋରର ଅଟେନ୍ତି ଏହି
ଏହାଙ୍କଠାରେ ବିଶ୍ୱାସ ନ କର ଗୋ କେହି
ଏରୂପେ ଗୋପିକାଗଣ କଥାବାର୍ତ୍ତା ହୋଇ
କ୍ରୀଡ଼ା କଲେ ଶ୍ରୀକୃଷ୍ଣଙ୍କୁ ସଙ୍ଗତରେ ନେଇ ।
ଫଳପୁଷ୍ପ ବିଭୂଷିତ ବୃକ୍ଷଲତା ତଳେ
ବୁଲିଲେ ଅଳ୍ପ ସମୟ ପୁଣି କୁଞ୍ଜସ୍ଥଳେ ।
ସେ ଅନ୍ତେ ସୁରମ୍ୟ ରାସମଣ୍ଡଳ ମଧ୍ୟରେ
ପ୍ରବେଶ ହେଲେ ସମସ୍ତେ ସନ୍ତୁଷ୍ଟ ମନରେ ।
ସୁବର୍ଣ୍ଣ ପୀଠରେ ବସି ରସିକ ଈଶ୍ୱର
ଦିଶିଲେ ଯେରୂପେ ତାରାଗଣେ ଶଶଧର ।
ନାନାପ୍ରକାର ମୂରତି ଧରି ଜନାର୍ଦ୍ଦନ
ରତିରସେ ତୋଷ କଲେ ଅବଳାଙ୍କ ମନ ।
ସେ ଅନ୍ତେ ରାଧାଦେବୀଙ୍କ କର ଧରି ନେଲେ
ସୁରତ ମନ୍ଦିରେ ମିଳି କେଳି ଆରମ୍ଭିଲେ ।
ଚନ୍ଦନ କୁଙ୍କୁମ ପୁଷ୍ପ ସୁବାସ ଶଯ୍ୟାରେ
ଶୟନ କଲେ ପ୍ରମୋଦ ବହି ମାନସରେ ।
କାମଶାସ୍ତ୍ର ବିଶାରଦ ରାସ ଅଧିପତି
ଚଉଷଠି ବନ୍ଧେ କଲେ ପ୍ରିୟା ସଙ୍ଗେ ରତି ।
ଦିବସ ରଜନୀ କେତେ ଗତହେଲା ତହିଁ
ଜାଣି ନ ପାରିଲେ ଦୁହେଁ କାମେ ହୋଇ ବାଇ
ଆଉ ଯେତେ ଗୋପାଙ୍ଗନା ଥିଲେ ସେହିଠାରେ
ସମସ୍ତେ ମାତିଲେ ନବଶୃଙ୍ଗାର ରସରେ ।
ନାରାୟଣ ଏହିରୂପେ କହିବା କାଳରେ
ପୁଚ୍ଛିଲେ ତାଙ୍କୁ ନାରଦ ପୁଣି ତୋଷଭରେ ।
ବୋଇଲେ ରାଧାଦେବୀଙ୍କ ନାମ ଆଗେ ରହି
ତାପରେ ଶ୍ରୀକୃଷ୍ଣ ନାମ ବସିଛି କପାଇଁ ।
ଜାଣିନାହିଁ ମୁହିଁ କିଛି ଏଥିର କାରଣ
ବତାଇଦିଅ ଦୟା କରି ମୋତେ ତାହା ପ୍ରଭୁ ଶରଣ ।
ନାରାୟଣ ବୋଇଲେ ହେ ଶୁଣ ମୁନିବର
ତିନିପ୍ରକାର ଅଟଇ କାରଣ ତାହାର ।
ରାଧିକା ଦେବୀ ଅଟନ୍ତି ଜଗତର ମାତା
ପରମ ପୁରୁଷ କୃଷ୍ଣ ତ୍ରୈଲୋକ୍ୟ ବିଧାତା ।
ପିତୃଠାରୁ ଅଟନ୍ତି ସେ ମାତୃ ଲୋକଙ୍କର
ପିତା ନାମଠାରୁ ମାତା ନାମ ମୁଖ୍ୟତର ।
ସେ ସକାଶୁ ରାଧାକୃଷ୍ଣ ଗୌରୀଶଙ୍କର ବୋଲି
ଶବଦ ଲେଖି ଅଛନ୍ତି ବିଜ୍ଞଜନେ ଭଲି ।
ପ୍ରସନ୍ନ ହୁଅ ଗୋସ୍ୱାମୀ ଚନ୍ଦ୍ର ଆମ୍ଭଠାରେ
ଅର୍ଘ୍ୟ ଦେଉଅଛୁ ଏବେ ଘେନ ଆନନ୍ଦରେ ।
ଆମ୍ଭେ ଦେବ ଦିନକର ସଂଜ୍ଞାଙ୍କ ସହିତେ
ମୋର ପୂଜା ଉପଚାର ଘେନ ତୋଷଚିତ୍ତେ ।
ଏହିରୂପେ ସାମବେଦ ଶାସ୍ତ୍ରେ ନିରୂପଣ
କରିଅଛନ୍ତି ପୂର୍ବକାଳେ ମୁନି ଋଷିଗଣ ।
ରା ଶବଦ ଉଚ୍ଚାରଣ କରନ୍ତେ ମାଧବ
ଆନନ୍ଦ ହୁଅନ୍ତି ଆହେ ମହର୍ଷି ପୁଙ୍ଗବ ।
ଧା ଶବଦ ଉଚ୍ଚାରିଲେ ସଙ୍ଗରେ ଆସନ୍ତି
ସେ ସକାଶୁ ହେଲା ଆଗେ ରାଧା ନାମ ସ୍ଥିତି
ଆଗରେ ପୁରୁଷ ନାମ ଉଚ୍ଚାରଣ କରି
ପ୍ରକୃତି ନାମକୁ ଉଚ୍ଚାରିଲେ ନ ବିଗରି ।
ବେଦ ଲଙ୍ଘନ ପାପରେ ମାତୃହତ୍ୟା ଦୋଷ
ହୁଅଇ ନିଶ୍ଚୟ ଆହେ ମୁନିଗଣ ଈଶ ।
ତିନିଲୋକରେ ଭାରତବର୍ଷ ଅଟେ ଧନ୍ୟ
ସେ ମଧ୍ୟରେ ପୁଣ୍ୟକ୍ଷେତ୍ର ଅଧିକଟି ଜାଣ ।
ତହିଁରେ ଶ୍ରେଷ୍ଠ ଅଟଇ ବୃନ୍ଦାବନ କ୍ଷେତ୍ର
ଯେଣୁ ସେ ରାଧିକା ପାଦ ରେଣୁରେ ପବିତ୍ର
ରାଧିକା ଦେବୀଙ୍କ ପାଦ ଦରଶନ ପାଇଁ
ଷଷ୍ଠି ସହସ୍ର ବର୍ଷ ତପ କରିଥିଲେ ବିଧି ।
କହଇ କ୍ଷେତ୍ରମୋହନ ଯୋଡ଼ି କରଯୋଡ଼ି କର
ବ୍ରହ୍ମବୈବର୍ତ୍ତ ପୁରାଣ ପଢ଼ ସୁଜ୍ଞନର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ ଓ ରାଧାରାଣୀଙ୍କର ଶୋକପରେ ଦୁହିଙ୍କର ପୁନ ମିଳନ କଥନେ ନାମ ଦ୍ୱିପଞ୍ଚାଶତୋଽଧ୍ୟାୟଃ ।

—※—

# ଦ୍ୱିପଞ୍ଚାଶତ ଅଧ୍ୟାୟ

## ରାଧା ଓ କୃଷ୍ଣଙ୍କର ବନ ବିହାର ଚରିତ ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ଋଷିବର
ରାଧାଦେବୀଙ୍କ ସହିତେ ରାସ ଅଧୀଶ୍ୱର ।
ମାନସ ସରୋବରେ ରାସସ୍ଥଳେ କ୍ରୀଡ଼ା କଲେ
ସେ ଅନ୍ତେ ଆଉ କି କାର୍ଯ୍ୟ କରିବାକୁ ଗଲେ
ସଂକ୍ଷେପରେ ତାହା ମୋତେ କହ ମୁନୀଶ୍ୱର
ଶୁଣିଲେ ତୃପତ ହେବ ମୋହର ମାନସ ।
ତାହା ଶୁଣି ନାରାୟଣ ସନମତ କରି
ବୋଇଲେ କହିବା ଶୁଣ ଆହେ ତପସ୍ୱୀ ।
ରାଧିକା ଦେବୀଙ୍କୁ ଘେନି ରାସ ଅଧୀଶ୍ୱର
କ୍ରୀଡ଼ାକରି ରାସସ୍ଥଳ୍ରୁ ହୋଇଣ ବାହାର ।
ଯମୁନା ନଦୀ ତଟରେ ପ୍ରବେଶ ହୋଇଲେ
ଗୋପସ୍ତ୍ରୀଗଣ ତାଙ୍କ ସଙ୍ଗେ ସଙ୍ଗେ ଥିଲେ
ସେ ନଦୀ ମଧ୍ୟକୁ ଯାଇ ସ୍ନାନକରି ସର୍ବେ
ନିର୍ମଳ ସଲିଳ ପାନ କଲେ ତୋଷ ଭାବେ ।
ସେ ଅନ୍ତରେ କ୍ଷଣେଯାଏ ଜଳକ୍ରୀଡ଼ା କଲେ
ପୁଣି ତୀର କାନନରେ ସମସ୍ତେ ମିଳିଲେ ।
ଶ୍ରୀକୃଷ୍ଣଙ୍କଠାରୁ ପାଇ କାମଭୋଗ ରସ
ହରଷିତ ହେଲ ଗୋପସ୍ତ୍ରୀଙ୍କ ମାନସ ।
ବିଦାୟ ଦେଇ ତାହାଙ୍କୁ ପ୍ରଭୁ ଜନାର୍ଦ୍ଦନ
ପଠାଇ ଦେଲେ ଯାଅ ବୋଲି ନିଜ ସ୍ଥାନ ।
ରାଧିକାଦେବୀଙ୍କୁ ସଙ୍ଗେ ଘେନି ସେ ଅନ୍ତରେ
ଭାଣ୍ଡୀରକୁ ଗଲେ କ୍ରୀଡ଼ା କରିବା ଇଚ୍ଛାରେ ।
ସେଠାରେ ମାଳତୀ ବନେ ପୁଷ୍ପଶଯ୍ୟା କରି
ଶୟନ କଲେ ସେ ଦୁହେଁ ଅଙ୍ଗେ ଅଙ୍ଗଭରି ।
ପୁଣି ସେ ସ୍ଥାନକୁ ଯାଇ ବାସନ୍ତୀ କାନନେ
କ୍ରୀଡ଼ାକରି କିଛିକ୍ଷଣ ଚଳିଲେ ବହନେ ।
ଚନ୍ଦନ ବନରେ ତହୁଁ ହୋଇଲେ ପ୍ରବେଶ
ପ୍ରିୟାଙ୍କର ହସ୍ତ ଧରି ପ୍ରଭୁ ରମାଈଶ ।
ପୂର୍ଣ୍ଣଚନ୍ଦ୍ର କିରଣରେ ରମ୍ୟ ସେହି ସ୍ଥାନ
ଦରଶନ ମାତ୍ରେ ହରି ନେଉଥିଲା ମନ ।
ବିହାର କରି ତହିଁରେ ଚମ୍ପକ ବନକୁ
ଗଲେ ଆନନ୍ଦ ରସରେ ବୁଡ଼ାଇ ମନକୁ ।
ସୁରମ୍ୟ ଚମ୍ପକ ତଳେ ରାସ ଅଧୀଶ୍ୱର
ରତିରସେ ମଣ୍ଡଦେଇ ପହୁଡ଼ ସତ୍ୱର ।
ରାଧିକାଦେବୀଙ୍କୁ କୋଳେ ଘେନି କ୍ରୀଡ଼ା କଲେ
ସେହିଠାରୁ ଉଠି ପୁଣି ପଦ୍ମବନେ ଗଲେ ।
ସୁଶୀତଳ ପଦ୍ମଫୁଲ ଆଣି ସେ ବହୁତ
କଲେ ନିଜେ ମନୋହର ଶଯ୍ୟା ବିରଚିତ ।
ଯେ ଉପରେ ପଦ୍ମମୁଖୀ ପ୍ରିୟାଙ୍କୁ ଘେନିଣ
କଲେ ମନ୍ଦ ସୁଶୀତଳ ମରୁତ ସେବନ ।
ମୁହୂର୍ତ୍ତ ଅନ୍ତରେ ଦୁହେଁ ନିଦ୍ରାରେ ଆସକ୍ତ
ହୁଅନ୍ତେ ଶୟନ କଲେ ଆହେ ତପୋବନ୍ତ ।
ଏଥୁଅନ୍ତେ ଶ୍ରୀକୃଷ୍ଣଙ୍କ ନିଦ୍ରାଭଙ୍ଗ ହେଲା
କ୍ଷଣକ ମଧ୍ୟରେ ପୂର୍ବ ଚେତନା ଆସିଲା ।
ଦେଖିଲେ ସେ ପଦ୍ମପୁଷ୍ପ ତଳପ ଉପରେ
ଶୋଇଛନ୍ତି ପ୍ରାଣପ୍ରିୟା ସମ୍ଭୋଗ ସୁଖରେ ।
ଶରତ ଚନ୍ଦ୍ରମା ପରି ବିରାଜୁଛି ମୁଖ
ଲିଭିଅଛି କପାଳରୁ ସିନ୍ଦୂର ତିଳକ ।
ଆବର ଅଧର ରାଗ ନୟନୁ କଜ୍ଜ୍ୱଳ
ଲୁପ୍ତ ହୋଇଛି ଗଣ୍ଡରୁ ପତ୍ରଲେଖା ଜାଲ ।
କନକ କୁଣ୍ଡଳ ଦ୍ୱୟ କର୍ଣ୍ଣରେ ଶୋଭିତ
ନାସିକାରେ ମୁକ୍ତାଫଳ ଅତି ବିରାଜିତ ।
ତାହା ଦେଖି ପ୍ରଭୁ ଭକ୍ତ ବତ୍ସଳ ମୁରାରି
ପୋଛିଲେ ପ୍ରିୟାଙ୍କ ମୁଖ ସୂକ୍ଷ୍ମବସ୍ତ୍ର ଧରି ।
କେଶ ସମାର୍ଜ୍ଜନ କରି କବରୀ ରଚିଲେ
ମାଳତୀ ମାଧବୀ ପୁଷ୍ପମାଳିକା ଖଞ୍ଜିଲେ ।
ଲଲାଟେ ସିନ୍ଦୂରବିନ୍ଦୁ ଗଣ୍ଡେ ପତ୍ରଶ୍ରେଣୀ
ନେତ୍ରରେ କଜ୍ଜ୍ୱଳରେଖା ଦେଲେ ସେହିକ୍ଷଣି ।
କର୍ଣ୍ଣ ଭୂଷଣ ଦୁହିଙ୍କୁ ସମାର୍ଜ୍ଜନ କରି
ବକ୍ଷସ୍ଥଳେ ରତ୍ନହାର ଦେଲେ ନରହରି ।
ବହ୍ନିଶୁଦ୍ଧ ଦିବ୍ୟବାସ ପିନ୍ଧାଇ ସତ୍ୱରେ
ସୁବର୍ଣ୍ଣ ମଞ୍ଜୀର ନେଇ ଖଞ୍ଜିଲେ ପାଦରେ ।
ଅଙ୍ଗୁଳି ନଖ ଉପରେ ଅଲକ୍ତକ ଧାରି
ଲଗାଇଲେ ପ୍ରେମଭରେ ପ୍ରାଣପ୍ରିୟାଙ୍କର ।

ଶୁକଳ ଚାମର ଧରି ସେବକ ମଦ୍ଗୁଣ
ବିଞ୍ଚିଲେ ସେକାଳେ ଦେବ ତ୍ରିଜଗତ ତ୍ରାଣ ।
ଯତନରେ ପୁଣି ତାଙ୍କୁ ପ୍ରବୋଧନା କରି
ବସାଇଲେ ନେଇ କୋଳେ ବକ୍ଷସ୍ଥଳେ ଧରି
ମୁଖ ଦେଖିବାକୁ ରତ୍ନ ଦରପଣ ଦେଲେ
ନାନାବିଧ ପୁଷ୍ପ ଆଣି ମସ୍ତକେ ଖଞ୍ଜିଲେ ।
ପୂର୍ବେ ଯେଉଁ ପାରିଜାତ ପୁଷ୍ପ ବେଦବର
ଦେଇଥିଲେ ତାହା ମଧ୍ୟ ଦେଲେ ତା ଉପର ।
ଶିବଦତ୍ତ ପଦ୍ମପୁଷ୍ପ ଦକ୍ଷକରେ ଦେଇ
ମଣୀନ୍ଦ୍ର କୌସ୍ତୁଭ ଲମ୍ବାଇଲେ ଗଳେ ନେଇ
ରତନ ପାତ୍ରରେ ଭକ୍ଷଦ୍ରବ୍ୟ ସେହିଠାରେ
ଥିଲା ତାହା ଆଣି ଭୁଞ୍ଜାଇଲେ ନିଜ କରେ ।
ସେ ଅନ୍ତେ ସୁବାସ ଜଳପାନ କରିବାକୁ
ଦେଲେ ତାହାଙ୍କର ହସ୍ତେ ପ୍ରକାଶି ସ୍ନେହକୁ ।
ଦୁର୍ଲ୍ଲଭ ତାମ୍ବୁଳ ସଙ୍ଗେ କର୍ପୂର ମିଶାଇ
ଭକ୍ଷଣ କରିବା ପାଇଁ ଦେଲେ ପୁଣି ନେଇ ।
ତାହା ଦେଖି କୌତୁକରେ ରାଧିକା ସୁନ୍ଦରୀ
ଉଭାହେଲେ ମାରେ ଅଙ୍ଗୁ ବସ୍ତ୍ର ତ୍ୟାଗକରି ।
ଶ୍ରୀକୃଷ୍ଣ ସେକାଳେ ମନ୍ଦେ ପରକାଶି ହାସ
ପିନ୍ଧାଇ ଦେଲେ ବରୁଣ ଦେଇଥିବା ବାସ ।
ଏହିକାଳେ ସୁଶୀଳାଦି ଗୋପାଙ୍ଗନାଗଣ
ଆସିଲେ ସମସ୍ତେ ପିନ୍ଧି ବସ୍ତ୍ର ଆଭରଣ ।
ରାଧା କୃଷ୍ଣଙ୍କର ପାଦଚିହ୍ନ ଅନୁସରି
ଗଲେ ତାଙ୍କ ନିକଟକୁ ସର୍ବ ସହଚରୀ ।
କେଉଁମାନେ ବହିଥିଲେ ଶୁକଳ ଚାମର
କା ହସ୍ତେ ଥିଲା ସୁବାସ ତାମ୍ବୁଳ କର୍ପୂର ।
କେଉଁ ଗୋପାଙ୍ଗନା ଧରିଥିଲା ପୁଷ୍ପମାଳ
ବସ୍ତ୍ର ଅଳଙ୍କାର କେହୁ ହସ୍ତେ ନେଇଥିଲା ।
ମୃଦଙ୍ଗ କରତାଳିକା କେତେ ଗୋପୀମାନେ
ନେଇ ଆସିଥିଲେ ସେ କାଳରେ ସନ୍ତୋଷମନେ

କେଉଁମାନେ ସ୍ୱରଯନ୍ତ୍ର ବଜାଇଲେ ଧୀରେ
ଗୀତଗାଇ ନୃତ୍ୟକଲେ ବିବିଧ ପ୍ରକାରେ ।
ଗୋଲୋକରୁ ରାଧାଙ୍କର ସଙ୍ଗେ ଯେତେ ସ୍ତ୍ରୀରି
ଜନ୍ମିଥିଲେ ବ୍ରଜପୁରେ ଗୋପୀରୂପ ଧରି ।
ସେମାନେ ସମସ୍ତେ ସେହିଠାରୁ ଥିଲେ ଆସି
ରାଧାଦେବୀଙ୍କ ସେବାରେ ହେଲେ ସେ ଲାଳସୀ
କେଉଁମାନେ ବସି ପାଦ ସମ୍ବାହନ କଲେ
ଶୁକଳ ଚାମର କେତେ ଗୋପିକା ଚାଳିଲେ ।
ବାଦ୍ୟଯନ୍ତ୍ର ତାଳ ଲୟେ ବାଏ କେ ସୁନ୍ଦରୀ
ନୃତ୍ୟକରେ କେହୁ ସୁଖେ ହସ୍ତେ ମୁଦ୍ରା ଗୁଳ
ଏହିରୂପେ ଗୋପସ୍ତ୍ରୀଗଣଙ୍କ ମେଳରେ
ଶ୍ରୀକୃଷ୍ଣ ବସାଇ ରାଧାଦେବୀଙ୍କୁ କୋଳରେ ।
ସେ ବୃନ୍ଦାବନ ମଧ୍ୟରେ ରାସକ୍ରୀଡ଼ା କଲେ
କେତେବେଳେ ନାନାସ୍ଥାନେ ଭ୍ରମିବାକୁ ଗଲେ
ତାମ୍ବୁଳ ସେବନ କରୁଥାନ୍ତି କେତେବେଳେ
ସୁସ୍ୱାଦୁ ଫଳ ଭୁଞ୍ଜନ୍ତି କେବେ କୁତୂହଳେ ।
କେତେବେଳେ ରାଧାଙ୍କର ସଙ୍ଗତରେ କ୍ରୀଡ଼ା
କରନ୍ତି ଛଡ଼ାଇ ତାଙ୍କ ମାନସରୁ ବ୍ରୀଡ଼ା ।
ଆହେ ନାରଦ ମହର୍ଷି ଏହି ପରକାରେ
ଶ୍ରୀକୃଷ୍ଣ ରଚିଲେ ରାସକ୍ରୀଡ଼ା ଏକାନ୍ତରେ ।
ଶ୍ରୀକୃଷ୍ଣ ରାଧିକା ରାସକ୍ରୀଡ଼ା ଯେ ଗହନ
ତତ୍ତ୍ୱ ବୁଝି ନ ପାରନ୍ତି ସିଦ୍ଧ ମୁନିଗଣ ।
ଜାଗତିକ କ୍ରୀଡ଼ା ବୋଲି ଯେହୁ ବିଚାରନ୍ତି
ଜୀବନ ଥାଉଁ ସେ ମୂଢ଼ ଅଜ୍ଞାନ ହୁଅନ୍ତି ।
ପୁଛିବାରୁ ସବୁ ତୁମ୍ଭ ଆଗରେ ଫିଟାଇ
କହିଲି ଯା ଶୁଣିଥିଲି ପୂର୍ବକାଳେ ମୁହିଁ ।
ଆଉ କେଉଁ କଥା ଅବା ଶୁଣିବାକୁ ମନ
ହେଉଅଛି ତାହା ମୋତେ ପଚ୍ଛର ବଚନ ।
ଏମନ୍ତ ବୋଲି ମଉନ ହେଲେ ଋଷିବର
ଶ୍ରୀକୃଷ୍ଣ ସୁମରି ଗୀତେ ଭଣେ ସେବଗ୍ଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧା ଓ କୃଷ୍ଣଙ୍କର ବନବିହାର
ଚରିତ ବର୍ଣ୍ଣନେ ନାମ ନିପଞ୍ଚାଶତୋଽଧ୍ୟାୟଃ ।

—*—

# ଚତୁଃ ପଞ୍ଚାଶତ ଅଧ୍ୟାୟ

## କୃଷ୍ଣଚନ୍ଦ୍ରଙ୍କର କାର୍ଯ୍ୟକ୍ରମ ବିବରଣ

ନାରଦ ବୋଇଲେ ଆହେ ମୁନିଗଣ ଈଶ
ଏଥିଅନ୍ତରେ ଶ୍ରୀକୃଷ୍ଣ କଲେକି ରହସ୍ୟ ।
କିରୂପେ ନନ୍ଦପୁରରୁ ଗଲେ ମଥୁରାକୁ
ତାଙ୍କୁ ଛାଡ଼ି କିପରି ରଖିଲେ କି ଜୀବନକୁ ।
ଯଶୋଦା ସହିତେ ଯେତେଥିଲେ ଗୋପସ୍ତ୍ରୀ
ମଣୁଥିଲେ ଶ୍ରୀକୃଷ୍ଣଙ୍କୁ ନିଜ ପ୍ରାଣ ପରି ।
କିରୂପେ ତାଙ୍କ ବିରହ ସହିଲେ ସେମାନେ
ବଞ୍ଚିଲେ କିରୂପେ ରାଧା ପତିଙ୍କ ବିହୀନେ ।
ଆଉ ଯେତେ ଗୋପବାଳ ଶ୍ରୀକୃଷ୍ଣଙ୍କ ସଙ୍ଗେ
ଖେଳା କରୁଥିଲେ ବୁଲି ବୁଲି ନାନାରଙ୍ଗେ ।
ସେମାନେ କିରୂପେ ତେଜି ପ୍ରିୟ ବାନ୍ଧବଙ୍କୁ
ପାସୋରି ଦେଲେ ମନରେ ନିବିଡ଼ ବ୍ୟଥାକୁ
ମଥୁରାପୁରେ ଶ୍ରୀକୃଷ୍ଣ ବିଜେକଲା ପରେ
କେଉଁ କେଉଁ କାର୍ଯ୍ୟ ପୁଣି କଲେ ସେହିଠାରେ
ଏ ସକଳ କଥା ମୋତେ କହ ମୁନିବର
ସନ୍ତୁଷ୍ଟ ହୋଇବ ଶୁଣି ମାନସ ମୋହର ।
ନାରାୟଣ ବୋଇଲେ ହେ ପଚାରିଲ ଯାହା
କହିବା ମନ ଦେଇଣ ଶୁଣ ଏବେ ତାହା ।
କଂସର ଯାଗ ଆରମ୍ଭ କରି କଂସଦୈତ୍ୟ
ଶ୍ରୀକୃଷ୍ଣଙ୍କୁ ସେହିଠାକୁ କଲା ଆମନ୍ତ୍ରିତ ।
ଦୂତରୂପେ ଅକ୍ରୂରଙ୍କୁ ନନ୍ଦରାଜା ପୁରେ
ପଠିଆଇ ନେଲା ତାଙ୍କୁ ବସାଇ ରଥରେ ।
କପଟ ମନ୍ତ୍ରଣାବଳେ ଦେବାପାଇଁ ମାରି
ସେ ଦୁଷ୍ଟ ନୃପତି ଥିଲା ମନରେ ବିଚାରି ।
ଶ୍ରୀକୃଷ୍ଣ ସେ କଥା ଜାଣି ଆପଣା ବଳରେ
ଜୀବନ ନେଲେ ତାହାର ସହଜ ପ୍ରକାରେ ।
ପୁଣି ରଜକ ଚାଣୁର ମୁଷ୍ଟିକ ଗଜକୁ
ନିପାତ କଲେ ସେକାଳେ ପ୍ରକାଶି ମାୟାକୁ ।
ପିତାମାତାଙ୍କୁ ବାନ୍ଧବେ ବନ୍ଦ କରିବାର
ଦେଖିଣ କଲେ ତାହାଙ୍କୁ ତହିଁରୁ ଉଦ୍ଧାର ।
ସେ ଅନ୍ତେ କୁବ୍‌ଜକା ତୁଲେ ଶୃଙ୍ଗାର ଆଚରି
ଗୋଲୋକରେ ସ୍ଥାନଦେଲେ ତାକୁ ମୁକ୍ତକରି ।
ମାଳାକାରଙ୍କୁ ମୁକତି ଦେଇ ଜନାର୍ଦ୍ଦନ
ଉଦ୍ଧବଙ୍କୁ ପଠାଇଣ ନନ୍ଦଙ୍କ ଭବନ ।
ଗୋପ ଗୋପୀଙ୍କୁ ବହୁତ ପ୍ରବୋଧନା କଲେ
ଉପନୀତ ହୋଇ ତହୁଁ ବିଦ୍ୟା ଆରମ୍ଭିଲେ ।
ସେ ଅନ୍ତରେ ଜରାସନ୍ଧ ଅସୁରଙ୍କୁ ମାରି
ଉଗ୍ରସେନଙ୍କୁ ତା ରାଜ୍ୟ କଲେ ଦଣ୍ଡଧାରୀ ।
ସମୁଦ୍ର ପାଶରେ ଦ୍ୱାରିକାବତୀ ନାମେ ପୁର
ନିର୍ମାଣ କଲେ ସେ ଅନ୍ତେ ଦେବ ଚକ୍ରଧର ।
ନୃପତିଗଣଙ୍କୁ ଜିଣି ରୁକ୍ମିଣୀଙ୍କୁ ଆଣି
ରଖାଇଲେ ନିଜପୁରେ କରି ପାଟରାଣୀ ।
କାଳିନ୍ଦୀ ଲକ୍ଷଣା ଶୈବ୍ୟା ସତ୍ୟା ଜାମ୍ବବତୀ
ମିତ୍ରବିନ୍ଦା ନାଗ୍ନଜିତୀ ଏସପତ ସତୀ ।
ଏମାନଙ୍କୁ ମଧ ବଳେ ହରଣ ଆଣିଲେ
ବେଦୋକ୍ତ ବିଧାନମତେ ବିଭା ତାଙ୍କୁ ହେଲେ
ସେ ଅନ୍ତରେ ନାଶ କରି ନାରକାସୁରଙ୍କୁ
ପଠିଆଇ ଦେଲେ ଯମରାଜାଙ୍କ ପୁରକୁ ।
ଷୋଡ଼ଶ ସହସ୍ର ରାଜକନ୍ୟା ତାର ଘରେ
ବନ୍ଦୀହୋଇଥିଲେ ତାଙ୍କୁ ଅଣାଇ ସତ୍ୱରେ ।
ବିବାହ ହୋଇ ଆପଣା ନଗରେ ରଖିଲେ
ସେମାନଙ୍କ ସଙ୍ଗେ ନିତି ନିତି କ୍ରୀଡ଼ା କଲେ ।
କେତେକାଳ ପରେ ଇନ୍ଦ୍ର ତୁଲେ ଯୁଦ୍ଧକରି
ଆଣିଲେ ସ୍ୱର୍ଗରୁ ପାରିଜାତ ପୁଷ୍ପ ହରି ।
ମହାଦେବଙ୍କୁ ପରାସ୍ତ କରି ଘୋରରଣେ
ବାଣାସୁର ବାହୁ ଛେଦ କଲେ ତୀକ୍ଷ୍ଣବାଣେ
ପ୍ରତ୍ୟେକ ଗୃହରେ ମାୟାବଳେ ସ୍ୱରୂପଙ୍କୁ
ଦେଖାଇଲେ ତ୍ରିଭୁବନ ମଧ୍ୟରେ ଲୋକଙ୍କୁ ।
ବସୁଦେବଙ୍କ ଯାଗରେ ତୀର୍ଥଯାତ୍ରା ଛଳେ
ପ୍ରାଣପ୍ରିୟା ରାଧିକାଙ୍କୁ ଦରଶନ ଦେଲେ ।
ଶ୍ରୀଦାମାଙ୍କ ଶାପ ଶତେ ବରଷେ ସମ୍ପୂର୍ଣ୍ଣ
ହୁଅନ୍ତେ ରାଧାଙ୍କୁ ସଙ୍ଗେ ଘେନି ତତକ୍ଷଣ ।
ବୃନ୍ଦାବନେ ଚତୁର୍ଦ୍ଦଶ ବର୍ଷ ଶେଷକରି
ବିହରିଲେ ଗୋପ ଗୋପୀଗଣ ସଙ୍ଗେଧରି ।

ପୁଣି ଚତୁର୍ଦ୍ଦଶ ବର୍ଷ ରାସ ମଣ୍ଡଳରେ
କ୍ରୀଡ଼ା କଲେ ରାଧାଆଦି ଗୋପୀଙ୍କ ମେଳରେ
ନନ୍ଦ ଭବନରେ ଏକାଦଶ ବର୍ଷ ରହି
ସେ ଅନ୍ତେ ମଥୁରାପୁରେ ପ୍ରବେଶିଲେ ଯାଇ ।
ସେଠାରୁ ଯାଇ ଦ୍ୱାରକା ନାମେ ପୁର କଲେ
ସୁରସ୍ଥାନେ ଏକଶତ ବର୍ଷ କାଟାଇଲେ ।
ସେ ସମୟେ ନିବାରିଲେ ପୃଥିବୀର ଭାର
ଜଗତ କରତା ପ୍ରଭୁ ଶଙ୍ଖଚକ୍ର ଧର ।
ଏହିରୂପେ ଶତେ ପଞ୍ଚବିଂଶତି ବରଷ
ମର୍ତ୍ତ୍ୟ ଭୁବନରେ ସମ୍ପୂର୍ଣ୍ଣ ହୋଇଗଲା ଶେଷ ।
ମାନବ ଶରୀର ତେଜି ଗୋଲୋକରେ ଯାଇ
ଉପସ୍ଥିତ ହେଲେ ଭକ୍ତଗଣ ସଙ୍ଗେ ନେଇ ।
ନନ୍ଦ ଯଶୋଦା ଯେ ବୃଷଭାନୁ କଳାବତୀ
ଏମାନଙ୍କୁ ନିଜ ପାଶେ କରାଇଲେ ସ୍ଥିତ ।
ଗୋପୀମାନଙ୍କୁ ଘେନିଣ ରାଧିକା ସୁନ୍ଦରୀ
ଗଲେ ଶାପ ଅବସାନେ ତେଜି ମର୍ତ୍ତ୍ୟପୁରୀ ।

ପ୍ରତ୍ୟେକ ଯୁଗରେ କୃଷ୍ଣପ୍ରିୟା ମହାମାୟା
ଗ୍ରହଣ କରନ୍ତି ନିଜ ଭିନ୍ନ ଭିନ୍ନ କାୟା ।
ତାହାଙ୍କ ଚରିତ ସବୁ ସଙ୍କ୍ଷିପ୍ତ ବାକ୍ୟେ ତୁମ୍ଭେ
ଆମୂଳ କାରଣ କହିଗଲୁ ଜାଣ ଆମ୍ଭେ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ଚରିତ ଭିତ୍ତିରେ
ମିଶ୍ରିତ ହୋଇଛି ପୁଣି ସକଳ ସ୍ଥାନରେ ।
ସେ ସକାଶୁ ପୁଣ୍ୟମୟ ଅଟେ ଏ ପୁରାଣ
ଦୁରିତ ଖଣ୍ଡନ ହୁଏ କରନ୍ତେ ଶ୍ରବଣ ।
ଆହେ ମୁନିବର ତୁମ୍ଭେ ଏକାଗ୍ର ଚିତ୍ତରେ
ଭଜ ସେହି ପରଂବ୍ରହ୍ମ ରୂପ ନିରନ୍ତରେ ।
ଯେ ପ୍ରଭୁ ଅବ୍ୟକ୍ତ ସତ୍ୟ ନିତ୍ୟ ସନାତନ
ନିରୀହ ନିର୍ଗୁଣ ନିରାକାର ନିରଞ୍ଜନ ।
ତାହାଙ୍କର ପାଦପଦ୍ମ ସ୍ମରଣ କଲେ
ଅଶେଷ ଦୁରିତ ନାଶ ହୁଏ ଜାଣ ଭଲେ
କ୍ଷେତ୍ରମୋହନ କହଇ ଆହେ ସାଧୁସନ୍ଥ
ପଠନ କର ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କୃଷ୍ଣ ଚନ୍ଦ୍ରଙ୍କର କାର୍ଯ୍ୟକ୍ରମ ବିବରଣ କଥନେ ନାମଦ୍ୱି ଚତୁଃପଞ୍ଚାଶତୋଽଧ୍ୟାୟଃ ।



## ପଞ୍ଚପଞ୍ଚାଶତ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର ପ୍ରଭାବ ବର୍ଣ୍ଣନ

ନାରାୟଣ ବୋଇଲେ ହେ ବ୍ରହ୍ମାଙ୍କ କୁମର
କହୁଅଛି ଶୁଣ ଏବେ ମନ କରି ସ୍ଥିର ।
ଶ୍ରୀକୃଷ୍ଣ ଅଟନ୍ତି ସର୍ବରୂପ ସର୍ବମୟ
ପରମ ପୁରୁଷ ନିତ୍ୟସ୍ଥୂଳ ସୂକ୍ଷ୍ମକାୟ ।
ଦୁରାରାଧ୍ୟ ଭକ୍ତବନ୍ଧୁ ସର୍ବ ସୁଖପ୍ରଦ
ସୁଖଦୃଶ୍ୟ ବଶୀକୃତ ଅଶେଷ ସମ୍ପଦ ।
ତାହାଙ୍କ ଚରିତ କାର୍ଯ୍ୟକର୍ମ ଆଦି ଯେତେ
ସ୍ୱମାୟାରେ ବଦ୍ଧହୋଇ ଅଛନ୍ତି ସନ୍ତତେ ।
ଯେ ପ୍ରଭୁଙ୍କଠାରୁ ଆଜ୍ଞା ପାଇ ପ୍ରଭଞ୍ଜନ
ଭ୍ରମଣ କରଇ ନିତି ନିତି ତ୍ରିଭୁବନ ।

ମସ୍ତ ଦେଶରେ କଚ୍ଛପ ଧରିଅଛି ମହୀ
ଆଉରି ସେ ଶେଷ ସବୁବେଳେ ଛନ୍ତି ବହି ।
ସପତ ସାଗର ସପ୍ତଦ୍ୱୀପା ବସୁନ୍ଧରା
ସପତ ପାତାଳ ସପ୍ତସ୍ୱର୍ଗ ସେହିପରି ।
ଆଉରି ଯେ ବ୍ରହ୍ମଲୋକ ଆଦି ତ୍ରିଭୁବନ
ଯାହାଙ୍କ ଆଜ୍ଞାରେ ବ୍ରହ୍ମା କରନ୍ତି ସର୍ଜ୍ଜନ ।
ଯାହା ଅଂଶେ ଜାତ ମହାବିରାଟ ପୁରୁଷ
ଲୋମକୂପରେ ବହନ୍ତି କୋଟି କୋଟି ବିଶ୍ୱ ।
ଯାହାଙ୍କ ଭୟରେ ବିଷ୍ଣୁ ପାଳନ୍ତି ସଂସାର
ଅନ୍ତଃକାଳେ ମହାରୁଦ୍ର କରନ୍ତି ସଂହାର ।

ମୃତ୍ୟୁଞ୍ଜୟ ମହାଦେବ ଭୟ ଯେଣୁ ମନେ
ଯାହାଙ୍କୁ ସ୍ମରୁ ଥାନ୍ତି ବସି ପ୍ରତିଦିନେ ।
ଦହନ କରନ୍ତି ଅଗ୍ନି ଯାହାଙ୍କ ଭୟରେ
ଗତାୟାତ ହେଉଛନ୍ତି ସୂର୍ଯ୍ୟ ନିରନ୍ତରେ ।
ଯାହାଠାରୁ ଭୟ ପାଇ ବର୍ଷଇ ବାସବ
ଯାହା ଅନୁଜ୍ଞାରେ ଲୋକେ ବୁଲେ ମୃତ୍ୟୁଦେବ
ପାତକୀ ଲୋକଙ୍କୁ ଦଣ୍ଡ ଦେବାପାଇଁ ନିତି
ଧର୍ମଦେବ ଯାହା ବୋଲେ ସବୁଠାରେ ଛନ୍ତି ।
ଆଉର ଯମଦେବତା କାଳଦଣ୍ଡ ଧରି
ଯାହା ଆଜ୍ଞାରେ ଯାଅଇ ଜନ୍ତୁଙ୍କୁ ସଂହାରି ।
ଚରାଚର ଲୋକ ବହି ଦେବୀ ବସୁମତୀ
ଯାହା ଭୟେ କରିଛନ୍ତି ନିଶ୍ଚଳରେ ସ୍ଥିତି ।
ସୃଷ୍ଟି ଆରମ୍ଭରେ ଯାହା ଆଜ୍ଞା ଶିରେ ଧରି
ସର୍ଜନା କରଇ ବିଶ୍ୱ ପ୍ରକୃତି ସୁନ୍ଦରୀ ।
ଯାହା ଆଜ୍ଞା ଶିରେ ଧରି ଅନନ୍ତ ସାଗର
ନିତି ମଥା କୋଡ଼ି ହୁଏ ଲଙ୍ଘେ ନାହିଁ କୂଳ ।
ଯାହା କଥା ମାନି ଶିର ଟେକିଛି ଭୂଧର
ଭାଙ୍ଗି ନ ପଡଇ କେବେ ହେଉ ଯେତେ ଝଡ଼
ଯାହାର ଆଦେଶେ ଗ୍ରୀଷ୍ମ ବରଷା ଶରତ
ହେମନ୍ତ ବସନ୍ତ ଶୀତ ହୁଅନ୍ତି ଆତଯାତ ।
ଏମନ୍ତ ଯେ ପ୍ରଭୁ ତାଙ୍କ ଗୂଢ଼ ଅଭିପ୍ରାୟ
ଜାଣିବାକୁ ସମରଥ ହେବ କା ହୃଦୟ ।
ତାଙ୍କ ପ୍ରଭାବକୁ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଜାଣି ନ ପାରନ୍ତି ମୁହିଁ କେତେକ ମାତର ।
କାହିଁପାଇଁ ବୃନ୍ଦାବନ ଛାଡ଼ି ନରହରି
ମଥୁରା ପୁରକୁ ନିଜେ ଗଲେ କି ବିଚାରି ।
ରାଧାଙ୍କ ସହିତେ ଗୋପୀଗୋପଙ୍କୁ କିପାଇଁ
ପରିତ୍ୟାଗ କଲେ କିବା ଜାଣିବଇଁ ମୁହିଁ ।
ସୁଦାମା ଶାପ ପାଳନ କରିବା ସକାଶେ
ରାଧାଙ୍କର ଦର୍ପ ଭଙ୍ଗ କଲେ ଅବଶେଷେ ।
ପୂର୍ବକାଳେ ସେହିପରି ମହାବିଷ୍ଣୁଙ୍କର
ଗର୍ବ ନାଶ କରିଥିଲେ ଆହେ ମୁନିବର ।

ବ୍ରହ୍ମା ବିଷ୍ଣୁ ମହେଶ୍ୱର ଚନ୍ଦ୍ର ସୂର୍ଯ୍ୟ ଶେଷ
ଯମ ଧର୍ମ ବୈନତେୟ ଦୁର୍ବାସା ହୁତାଶ ।
ଦୌବାରିକ ଭକ୍ତ ଜୟ ବିଜୟ ଅର୍ଜୁନ
ବାଣ ଭୃଗୁ ସୁରପତି କନ୍ଦର୍ପ ଲକ୍ଷ୍ମଣ ।
ସୁମେରୁ ପର୍ବତ ସିନ୍ଧୁ ବାୟୁ ଯେ ବରୁଣ
ସରସ୍ୱତୀ ଗଙ୍ଗା ପଦ୍ମା ବସୁମତୀ ପୁଣ ।
ସାବିତ୍ରୀ ମନସା ଦେବୀ ଏହାଙ୍କର ତୁଲେ
ପ୍ରାଣପ୍ରିୟା ରାଧାଙ୍କର ଦର୍ପଭଙ୍ଗ କଲେ ।
ସେ ପ୍ରଭୁ ଅଟନ୍ତି ତିନି ଭୁବନର କର୍ତ୍ତା
ଆଉର ପାଳକ ଅନ୍ତଃକାଳରେ ସଂହର୍ତ୍ତା ।
ମାୟା ବିମୋହିତ ଯେହୁଁ ଅଜ୍ଞାନେ କରନ୍ତି
ଜ୍ଞାନୀମାନଙ୍କୁ ଦେଖାନ୍ତି ସକଳ ବିଭୂତି ।
ଧାର୍ମିକଙ୍କୁ ଧର୍ମରୂପେ କରନ୍ତି ପାଳନ
ପାପୀଙ୍କୁ ଶମନପୁରେ ଦିଅନ୍ତି କଷଣ ।
ସମସ୍ତଙ୍କ ଦର୍ପ ହରି ପରେ ଦୟା ବହି
ମନକୁ ତୋଷନ୍ତି ଉପଯୁକ୍ତ ବର ଦେଇ ।
ଯାହାଙ୍କର ସ୍ତୁତି ଗାନ କରିବାକୁ ବସି
ସମର୍ଥ ନୋହିବେ ସୁରାସୁର ମୁନିଋଷି ।
ଆଉର ଯେ ବ୍ରହ୍ମା ବିଷ୍ଣୁ ଶିବଆଦି ବରି
ରହିଛନ୍ତି ଯାହାଙ୍କର ପ୍ରଭାବକୁ ଡରି ।
ସ୍ତୁତି କରିବାକୁ ଯାହାଙ୍କର ଗୁଣ ନିତି
ଜଡ଼ଭୂତା ହୋଇଥାନ୍ତି ଦେବୀ ସରସ୍ୱତୀ ।
ତାଙ୍କ ପ୍ରଭାବ ଜାଣିବ ଆଉ କାହା ଛାର
ସର୍ବବ୍ୟାପୀ ସର୍ବରୂପୀ ପ୍ରଭୁ ଦାମୋଦର ।
ଏହିରୂପେ ପରମାତ୍ମା ପ୍ରଭୁଙ୍କ ପ୍ରଭାବ
କହିଲି ତୁମ୍ଭ ଆଗରେ ହେ ମୁନିପୁଙ୍ଗବ ।
ଆଉ କେଉଁ କଥା ଯେବେ ଶୁଣିବାକୁ ମନ
ହେଉଅଛି ତେବେ ତାହା ପଚାର ବହନ ।
ଏହିଠାରେ ଶ୍ରୀକୃଷ୍ଣଙ୍କ ପ୍ରଭାବ ଚରିତ
କ୍ଷେତ୍ରମୋହନ ଗୀତରେ କଲି ସମାପତ ।



ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ପ୍ରଭାବ ବର୍ଣ୍ଣନେ
ନାମ ପଞ୍ଚପଞ୍ଚାଶତୋଽଧ୍ୟାୟଃ ।



# ଷ ଟ୍ ପ ଞ୍ଚା ଶ ତ ଅ ଧ୍ୟା ୟ

## ମହାବିଷ୍ଣୁ ଆଦି ଦେବଗଣମାନଙ୍କର ସଂକ୍ଷିପ୍ତ ଗର୍ବଭଙ୍ଗ ବିବରଣ

ଏଥିଅନ୍ତରେ ନାରଦ ମହା ଆନନ୍ଦରେ
ପଚାରିଲେ ନାରାୟଣ ମୁନିଙ୍କୁ ସାଦରେ ।
ବୋଇଲେ ହେ ମୁନିଗଣ ମସ୍ତକ ମଣ୍ଡନ
ଆଶ୍ଚର୍ଯ୍ୟ ଲାଗିଲା ଶୁଣି ତୁମ୍ଭର ବଚନ ।
ଅନନ୍ତ ରହସ୍ୟମୟ ଶ୍ରୀକୃଷ୍ଣ ଚରିତ
ଶ୍ରବଣ ହେଉଛି ପଦ ପଦକେ ଅମୃତ ।
ଏବେ ମହାବିଷ୍ଣୁଙ୍କର ଦର୍ପ ବିମୋଚନ
କଲେକି ଋରୂପେ ପ୍ରଭୁ କମଳଲୋଚନ ।
ଆମୂଳ କାରଣ ମୋତେ କହ ସେ ସମସ୍ତ
ଶୁଣିବା ପାଇଁକି ମୋର ବଳୁଅଛି ଚିତ୍ତ ।
ତାହା ଶୁଣି ନାରାୟଣ ସନ୍ତୁଷ୍ଟ ହୋଇଲେ
ନାରଦଙ୍କ ମୁଖ ଚାହିଁ କହି ଆରମ୍ଭିଲେ ।
ବୋଇଲେ ମହାବିଷ୍ଣୁଙ୍କ ଦର୍ପ ବିମର୍ଦ୍ଦନ
ହେଲା ଯେଉଁରୂପେ ତାହା କହୁଅଛି ଶୁଣ ।
ସେ ମହାପ୍ରତାପୀ ମହାବିରାଟ ସ୍ୱରୂପ
ତାଙ୍କର ଲୋମକୂପରେ କୋଟି କୋଟି ବିଶ୍ୱ ।
ପ୍ରଳୟ କାଳରେ ଲୀନ ହୁଏ ଭିତରର
ପୁଣି ସୃଷ୍ଟି ଆରମ୍ଭରେ ହୁଅଇ ବାହାର ।
ସେ ସକାଶୁ ଅହଙ୍କାର ବହି ନିଜ ମନେ
ଭାବିଲେ ଯେ ମୋ ସମାନ ନାହିଁ କେହି ଜଣେ ।
ଅନନ୍ତ ସୃଷ୍ଟି ମୁଁ ରଖିପାରେ ଲୋମମୂଳେ
ବାହାର କରଇ ପୁଣି ନିଜ ଇଚ୍ଛାବଳେ ।
ଏରୂପେ ତାହାଙ୍କ ମନକଥା ଜାଣି ହରି
ସଂସାର ଭୈରବ ରୂପ ପରକାଶ କରି ।
କିଞ୍ଚିତ ମାତ୍ରରେ ମହାବିଷ୍ଣୁଙ୍କୁ ଗ୍ରାସିଲେ
ମସ୍ତକ ଗୋଟିଏ ମାତ୍ର ତ୍ୟାଗ କରିଥିଲେ ।
ସେ ସମୟେ ମହାବିଷ୍ଣୁ ଭୟରେ ଆତୁର
ହେବାରୁ ପ୍ରସନ୍ନ ହୋଇ ଦେବ ଦାମୋଦର ।
ବିପଦରୁ ଉଦ୍ଧାରଣ ତାଙ୍କୁ ଯେତେବେଳେ
କର୍ତ୍ତବ୍ୟ କର୍ମରେ ପୁଣି ନିଯୁକ୍ତ କଲେ ।
ଦିନେ ପ୍ରଜାପତିଙ୍କର ଗର୍ବ ହୁଅନ୍ତେ ଜାତ
ଭାବିଲେ ସେ ମୁହିଁ ସୃଷ୍ଟି କରୁଛି ଜଗତ ।
ମୋହଠାରୁ ବଳି ପୂଜ୍ୟ ନାହିଁ ଆଉ କେହି
ଜଗତେ ସୃଷ୍ଟିରେ ମୁଁ ଅଧିକ ଅଟଇ ।
ତାହା ଜାଣି ପ୍ରଭୁ ତାହାଠାରେ ମାୟା କଲେ
ପଞ୍ଚମୁଖ ଷଡ଼ମୁଖ ଦଶମୁଖ ଭୁଲେ ।
ଶତମୁଖ ପ୍ରଜାପତି ଦେଖାଇ ଆଗରେ
ଦର୍ପଭଙ୍ଗ କଲେ ଏକ ମୁହୂର୍ତ୍ତ ମଧ୍ୟରେ ।
ସେ ସକାଶୁ ଲଜ୍ଜାପାଇ ଦେହ ତେଜିବାକୁ
ଆରମ୍ଭ କରିବା ଦେଖି ପ୍ରବୋଧି ତାହାଙ୍କୁ ।
ସୃଷ୍ଟି ପାଳନା କାର୍ଯ୍ୟରେ ପୁଣି ରଖାଇଲେ
ତିନିଲୋକ ଅଧିକାର ତାଙ୍କ ହସ୍ତେ ଦେଲେ ।
ଆବର ଉତ୍ତମ ଶାସ୍ତ୍ର ବେଦଙ୍କୁ ସହିତରେ
ସମର୍ପଣ କଲେ ନେଇ ତାହାଙ୍କ ପାଶରେ ।
ଜଗତ ପାଳନ କର୍ତ୍ତା ବୋଲିକରି ମୁହିଁ
ଗର୍ବ କରିବାରୁ ବିଷ୍ଣୁ ଲକ୍ଷ୍ମୀଦେବୀ ପାଇଁ ।
ଶ୍ରୀରାମ ଜନ୍ମରେ ତାଙ୍କୁ ଆମ୍ଭା ବିସ୍ମରଣ
କରାଇଲେ ଗର୍ବଭଙ୍ଗ ହେବାପାଇଁ ଜାଣ ।
ମୃତ୍ୟୁଥିବା ରହିଛି ବୋଲି ଗର୍ବକରି ଶେଷ
ବିଚାରିଲେ ସବୁଠାରୁ ଅଟେ ମୁଁ ବିଶେଷ ।
ଏକଦିନେ ଶ୍ରୀକୃଷ୍ଣଙ୍କ ବାହନ ଖଗକୁ
ପୂଜା ନ କଲେ ମନରେ ପ୍ରକାଶି ହେଳାକୁ ।
ତାହା ଜାଣି ପ୍ରଭୁ ସେହି ଗରୁଡ଼ ହସ୍ତରେ
ପରାଜିତ କରି ତାଙ୍କୁ ବନ୍ଧାଇ ସତ୍ତ୍ୱରେ ।
ବନ୍ଦୀରୂପେ କେତେଦିନ ରଖାଇଲେ ନେଇ
ପୁଣି ଦୟାକରି ନିଜ ଦେଲେ ସେ ଫିଟାଇ ।
ବିବାହ ନ କରି ବ୍ରହ୍ମଚର୍ଯ୍ୟ ରଖିବାକୁ
ମନେ ମନେ ମହାଦେବ କରନ୍ତେ ଗର୍ବକୁ ।
ବୈଷ୍ଣବୀ ମାୟାବଳରେ ତାଙ୍କ ମନ ମୋହି
ଦାର ପରିଗ୍ରହ କରାଇଲେ ଭବଗ୍ରାହୀ ।
ପୁଣି ଶିବଙ୍କର ପତ୍ନୀ ଦକ୍ଷ ତନୟାଙ୍କୁ
ନିଯୁକ୍ତ କରାଇ ଦେଲେ ପ୍ରକାଶି ମାୟାଙ୍କୁ ।
ବରଂସେ ଯାଏ ଶଙ୍କର ପ୍ରିୟାଙ୍କର ଶିବ
କୋଳରେ ଘେନି ଭ୍ରମଣ କଲେ ନାନାଠାବ ।

ଜନ୍ମାନ୍ତରେ ପୁଣି ତାଙ୍କୁ କଷ୍ଟରେ ଥାଇଲେ
ଦକ୍ଷ ଶାପେ ଆପଣାର ଜ୍ଞାନ ସମ୍ପୂର୍ଣ୍ଣହେଲେ ।
ସେ ସମୟେ ବୃହସ୍ପତି ଆସି ପୁଣି ତାଙ୍କି
ଦେଲେ ପୂର୍ବ ଜ୍ଞାନମାର୍ଗ ସ୍ମରଣା କରାଇ ।
ଦିନେ ରଥପରେ ବସି ଦେବ ତ୍ରିଲୋଚନ
ତ୍ରିପୁର ଦୈତ୍ୟଙ୍କୁ କଲେ ବାଣରେ ନିଧନ ।
ସେ ଦିନୁ ତାଙ୍କର ନାମ ହେଲା ତ୍ରିପୁରାରି
ବରଦାତା ହୋଇଲେ ସେ ମହିମା ବିସ୍ତାରି ।
ଭାବିଲେ ମୋତେ ଯେ ଯେଉଁ ବରକୁ ମାଗିବ
ନିଶ୍ଚୟ ମୁଁ ଦେବି କେହି ରଖି ନ ପାରିବ ।
ଯେ କଥା ଜାଣି ଶ୍ରୀକୃଷ୍ଣ ମାୟା ରଚିଲେ
ଶିବଙ୍କର ଗର୍ବ ଖର୍ବ କରିବାକୁ ଭଲେ ।
ସେହି ସମୟରେ ବୃକାସୁର ନାମେ ଦୈତ୍ୟ
ତପ କଲା ଶଙ୍କରଙ୍କ ପାଦେ ଦେଇ ଚିତ୍ତ ।
ପ୍ରସନ୍ନ ହୋଇ ଈଶ୍ୱର ତାହା ସମୀପକୁ
ଯାଇଣ ବୋଇଲେ ମାଗି ନେନ ହେ ବରକୁ
ବୈଷ୍ଣବୀ ମାୟାରେ ମୁଗ୍ଧ ହେବାରୁ ରାକ୍ଷସ
ବୋଇଲା ଯଦ୍ୟପି ବର ଦେବ ଦେବଈଶ ।
ତେବେ ମୁଁ ବୋଲୁଛି ଯାହା ମୁଣ୍ଡେଦେବି ହାତ
କ୍ଷଣକ ମଧ୍ୟରେ ସେହୁ ହେବ ଭସ୍ମସାତ ।
ଅସ୍ତୁ ବୋଲି କହି ଶିବ ଯିବା ସମୟରେ
ବାହୁଡ଼ି ସେ ନିଶାଚର ଗୋଡ଼ାଇ ପଛରେ ।
ବୋଇଲା ଆରେ ସନ୍ନ୍ୟାସୀ ତୋ ବରକୁ ମୁହିଁ
ପ୍ରତ୍ୟକ୍ଷରେ ନ ଦେଖିଲେ ପ୍ରତେ ଯିବ ନାହିଁ
ଆଗ ତୋର ମସ୍ତକରେ ହସ୍ତ ପକାଇବି
ଭସ୍ମ ହେବୁ ଯେବେ ସତ ବୋଲିଣ ବୁଝିବି ।
ତାହାଶୁଣି ସଦାଶିବ ମହାଭୟ କଲେ
ଶ୍ରୀକୃଷ୍ଣଙ୍କୁ ମନେ ମନେ ସ୍ମରି ଧାଇଁଲେ ।
ଗର୍ଜ୍ଜନ କରି ରାକ୍ଷସ ପଛେ ପଛେ ଗଲା
କ୍ଷଣକ ମଧ୍ୟରେ ତ୍ରିଭୁବନ ବୁଲାଇଲା ।
ତାହା ଜାଣି ଦୟାମୟ ପ୍ରଭୁ ନରହରି
ପ୍ରବେଶ ହୋଇଲେ ବୃଦ୍ଧ ବିପ୍ରରୂପ ଧରି ।
ଦୁହିଙ୍କ ମଧ୍ୟରେ ଉଭା ହୋଇ ରାକ୍ଷସକୁ
ବୋଇଲେ ତୁ କାହିଁପାଇଁ ଗୋଡ଼ାଉ ଶିବଙ୍କୁ
ଅସୁର ବୋଇଲା ମୋତେ ଦେଇଛି ଏ ବର
ଭସ୍ମ ହେବ ଯା ମୁଣ୍ଡରେ ବାଜିବ ମୋ କର ।
ସେ ସକାଶୁ ଆଗ ଏହା ମୁଣ୍ଡେ ହାତ ଦେଇ
ପରୀକ୍ଷା କରିବ ବୋଲି ଯାଉଛି ଗୋଡ଼ାଇଁ ।
ଶ୍ରୀକୃଷ୍ଣ ବୋଇଲେ ବାଇ ହେଲୁ କିରେ ସୁତ
ସନ୍ନ୍ୟାସୀର କଥାଟାକୁ ମଣୁଅଛୁ ସତ ।
ତାହାର ବଚନ କେବେ ଯଥାର୍ଥ ନୁହଇ
ବୁଝ ଆଗେ ଥରେ ନିଜ ମୁଣ୍ଡେ ହାତ ଦେଇ ।
ଅସୁର ସେ କଥା ଶୁଣି ଆପଣା ମୁଣ୍ଡରେ
ହାତ ଦେଇ ଭସ୍ମ ହେଲା କ୍ଷଣକ ମଧ୍ୟରେ ।
ଶ୍ରୀକୃଷ୍ଣ ମହାଦେବଙ୍କୁ ପ୍ରବୋଧନା କରି
ପ୍ରବେଶ ହୋଇଲେ ଯାଇ ଆପଣାର ପୁରୀ ।
ଏକଦିନେ ଶ୍ରୀକୃଷ୍ଣଙ୍କ ଅଙ୍ଗେ ବାଣାସୁର
ଯୁଦ୍ଧ କଲାବେଳେ ତାର ପକ୍ଷ ହୋଇ ହର ।
ତ୍ରିଶୂଳ ଧରି ସମରେ ଆସି ଉଭା ହେଲେ
ମୋହନ ଅସ୍ତ୍ରେ ଶ୍ରୀକୃଷ୍ଣ ତାଙ୍କୁ ବଶ୍ୟ କଲେ ।
ଦକ୍ଷଯଜ୍ଞ ସମୟରେ ଶିବଙ୍କ ଦୂତକୁ
ନିବାରଣ କଲେ ହରି ପ୍ରକାଶି ମାୟାକୁ ।
କେଦାର କନ୍ୟାକାଠାରୁ ଧର୍ମ ଶାପପାଇ
କ୍ଷୀଣରୂପ ହୋଇ କେତେକାଳ ଥିଲେ ରହି ।
ସେ ଅନ୍ତେ ଶ୍ରୀକୃଷ୍ଣ ତାଙ୍କଠାରେ ଦୟା କଲେ
ସତ୍ୟଯୁଗରେ ତାହାଙ୍କୁ ପୂର୍ଣ୍ଣ କରାଇଲେ ।
ତ୍ରେତୟା ଦ୍ୱାପର କଳିଯୁଗମାନଙ୍କରେ
ପାଦେ ପାଦେ କ୍ଷୀଣ ହେଲେ ସତୀ ବଚନରେ
ମାଣ୍ଡବ୍ୟ ଶାପରେ ଯମ ଶତେ ସମ୍ବତ୍ସର
ଶୂଦ୍ର ହୋଇ ଦିନ ନେଲେ ଆହେ ମୁନିବର ।
ଶ୍ରୀହରିଙ୍କ ଦୟାରୁ ସେ ପୁଣି ଶୁଦ୍ଧ ହେଲେ
ସକଳ ଲୋକରେ ପୂଜା ପ୍ରାର୍ଥନା ପାଇଲେ ।
ଗଳତ୍‌କୁଷ୍ଠୀ ହୋଇ ଶାମ୍ବ ମାତାଙ୍କର ଶାପେ
ଶୁଦ୍ଧି ଲଭ କଲେ ସୂର୍ଯ୍ୟବ୍ରତ କରି ଆପେ ।
ଗର୍ବ ସକାଶରୁ ଚନ୍ଦ୍ର ଗୁରୁପତ୍ନୀ ହରି
ଗଞ୍ଜିତ ହୋଇଲେ ଯକ୍ଷ୍ମାରୋଗ ପାଇକରି ।
ମାଳୀ ସୁମାଳୀ ବେନିହେଁ ସୂର୍ଯ୍ୟଅସ୍ତ କାଳେ
ଆପଣାତେଜରେ ମହୀ ଆଲୋକିତ କଲେ ।
ଗର୍ବିତପଣରେ ସୂର୍ଯ୍ୟ ନ ସହି ସେ କଥା
ଶୂଳଘାତେ ସେ ଦୁହିଙ୍କୁ ଦେଲେ ଘୋରବ୍ୟଥା
ଭକ୍ତଙ୍କର କଷ୍ଟ ଦେଖି ପ୍ରଭୁ ଶୂଳପାଣି
ସୂର୍ଯ୍ୟଙ୍କ ଉପରେ ଶୂଳ ପ୍ରହାରନ୍ତେ ଆଣି ।

ମୂର୍ଚ୍ଛିତ ହୋଇଣ ରଥ ପଡ଼ିଲେ ଧରାରେ
ସେ ସକାଶୁ ଅନ୍ଧକାର ଘୋଟିଲା ସଂସାରେ ।
ତାହାଙ୍କର ଗର୍ବଭଙ୍ଗ ହୋଇବାର ଦେଖି
ସଚେତ କରାଇ ବେଗେ ପ୍ରଭୁ ପଦ୍ମଆଖି ।
ନିଜ କାର୍ଯ୍ୟରେ ନିଯୁକ୍ତ କରାଇଣ ଗଲେ
ସକଳ ସ୍ଥାନରେ ପୂଜା ପାଅ ହେ ବୋଇଲେ ।
ଗର୍ବକରି ହୁତାଶନ ସର୍ବଭକ୍ଷ ହେଲେ
ବୃହସ୍ପତି ଆପଣାର ଭାର୍ଯ୍ୟା ହରାଇଲେ ।
ଅମ୍ବରୀଷ ରାଜାଠାରେ ଅପରାଧ କରି
ଦୁର୍ବାସାଙ୍କ ଦର୍ପ ଚୂର୍ଣ୍ଣ ହେଲା ସେହିପରି ।
ଜୟ ବିଜୟ ଯେବେ ସେ ବଇକୁଣ୍ଠ ପୁରେ
ଦ୍ୱାରପାଳ ହୋଇ ରହିଥିଲେ ନିରନ୍ତରେ ।
ଗର୍ବ ଯେବେ ବିଧାତାଙ୍କ ଶାପକୁ ପାଇଲେ
ରାକ୍ଷସ ଯୋନିରେ ମର୍ତ୍ତ୍ୟପୁରେ ଜାତ ହେଲେ ।
ହିରଣ୍ୟ କଶିପୁ ହିରଣାକ୍ଷ ହୋଇ ଆଗେ
ନାଶଗଲେ ନରସିଂହ ଶେଷଙ୍କର ଯୋଗେ ।
ସେ ଅନ୍ତେ ରାବଣ କୁମ୍ଭକର୍ଣ୍ଣ ରୂପ ହେଲେ
ଶ୍ରୀରାମ ସାୟକ ପାଇ ଦେହ ତ୍ୟାଗ କଲେ ।
ଶିଶୁପାଳ ଦନ୍ତବକ୍ର ନାମ ହୋଇ ଜାତ
ଶ୍ରୀକୃଷ୍ଣ ଚକ୍ରାଘାତରେ ଦେଖିଲେ କୃତାନ୍ତ ।
ଦେବାସୁରଙ୍କ ମଧ୍ୟରେ କଳହ ଲଗାଇ
ପରସ୍ପର ଦର୍ପଭଙ୍ଗ କରାଇଲେ ତହିଁ ।
ଆପଣ ଥିଲେ ପୂର୍ବରେ ବ୍ରହ୍ମାଙ୍କର ସୁତ
ପିତୃ ଶାପରେ ଗନ୍ଧର୍ବକୁଳେ ହେଲେ ଜାତ ।
ସେ ଅନ୍ତରେ ଅଧମ ଶୂଦ୍ର ଯୋନିରେ ଜନ୍ମିଲେ
ଶ୍ରୀକୃଷ୍ଣ ପ୍ରସାଦେ ଏବେ ମହର୍ଷି ହୋଇଲେ ।
ତବ ବିଶ୍ୱଣ କନ୍ଦର୍ପ ଭାବିଲା ମନରେ
ମୁଁ ଜିଣି ପାରଇ ତ୍ରିପୁର ପୁଷ୍ପଶରେ ।
ସେ କଥାକୁ ଜାଣି ପ୍ରଭୁ ମାୟା ବିସ୍ତାରିଲେ
ଶିବଙ୍କ କ୍ରୋଧ ଅଗ୍ନିରେ ଭସ୍ମ କରାଇଲେ ।
କେତେକାଳ ଅନ୍ତେ ପୁଣି ଜୀବଦାନ ଦେଇ
ନିଜ କର୍ମରେ ନିଯୁକ୍ତ କଲେ ତାକୁ ନେଇ ।
ରାବଣ ପ୍ରେରିତ ଶକ୍ତିଳ ଲକ୍ଷ୍ମଣଙ୍କ ଗର୍ବ
ଲଙ୍କାପୁର ରଣସ୍ଥଳେ କରାଇଲେ ଖର୍ବ ।
ପରଶୁରାମ ଶାସ୍ତ୍ରରେ କାର୍ତ୍ତବୀର୍ଯ୍ୟଙ୍କର
ଭୟଙ୍କର ଯୁଦ୍ଧବେଳେ ଗର୍ବକଲେ ଚୂର ।
ଏକ ବୀର ବୋଲି ପାର୍ଥ ଗର୍ବ କରୁଥିଲେ
ଭଗ୍ନହେଲା ତାହା ବିପ୍ର ଶିଶୁ ମୃତ୍ୟୁକାଳେ ।
ଆବର ଶ୍ରୀକୃଷ୍ଣଙ୍କର ପ୍ରିୟଙ୍କୁ ସେ ଯେବେ
ଯିବାବେଳେ ଝଣ୍ଟେ ହରିନେଲେ ସେ ନ ମାନ ।
ସେ ସମୟେ ଗର୍ବ ଚୂର୍ଣ୍ଣହେଲା ତାହାଙ୍କର
ପୁଣି ଯୁଦ୍ଧ ସମୟରେ କର୍ଣ୍ଣ ମହାବୀର ।
ବିରଥ ନୋହିବା ଯାଏ ନାନାଅସ୍ତ୍ର ବନ୍ଧ
ଜୀବନକୁ ତାହାଙ୍କର ଦେଇଥିଲେ ରୁନ୍ଧ ।
ଉଷା ହରଣ ରଣରେ ବାଣାସୁର ଭୁଜ
ଛିଣ୍ଡାଇଣ ଦର୍ପ ନାଶ କଲେ ଦେବରାଜ ।
ଦକ୍ଷ ଯାଗ ସମୟରେ ଭୃଗୁ ମୁନିଙ୍କର
ଦର୍ପ ଭଗ୍ନକଲେ ପ୍ରଭୁ ତ୍ରୈଲୋକ୍ୟ ଈଶ୍ୱର ।
ଶ୍ରୀରାମ ବିବାହ କାଳେ ତାହାଙ୍କ ହସ୍ତରେ
ପରଶୁରାମଙ୍କର ଦର୍ପଭାଙ୍ଗିଲେ ସତ୍ୱରେ ।
ପବନ ବଳରେ ମେରୁ ପର୍ବତର ଶୃଙ୍ଗ
ଉପାଡ଼ି କଲେ ତାହାଙ୍କ ଅହଙ୍କାର ଭଙ୍ଗ ।
ସପତ ସମୁଦ୍ରଙ୍କର ଦର୍ପ ନାଶ ପାଇଁ
ନିଯୁକ୍ତ କଲେ ଅଗସ୍ତ୍ୟ ମହର୍ଷିଙ୍କୁ ନେଇ ।
ସୃଷ୍ଟି ନାଶ କରିବାକୁ ଭାବନ୍ତେ ପବନ
ଅକାଳରେ ମଲା ତାର ପୁତ୍ର ହନୁମାନ ।
ସେ ସକାଶୁ ହତଗର୍ବ ହୋଇ ସେ କୃଷ୍ଣଙ୍କୁ
ସୁମନ୍ତ୍ରଣା କରି ପୁଣି ପାଇଲା ପୁତ୍ରକୁ ।
ବାଣାସୁର ଯୁଦ୍ଧବେଳେ ବରୁଣଙ୍କୁ ଶାପ
ଦେଇ ତାର ଅହଙ୍କାର କରି ହେଲେ ଲୋପ ।
ଲକ୍ଷ୍ମୀ ସଙ୍ଗତରେ ସରସ୍ୱତୀ କଲେ କଳି
ତେଜିଲେ ତାହାଙ୍କୁ ସେ ସକାଶୁ ବନମାଳୀ ।
ଯେତେବେଳେ ତାଙ୍କ ଗର୍ବ ହୋଇଲା ଚୂର୍ଣ୍ଣିତ
ମନଦେଇ ଶୁଣ ଆହେ ବ୍ରହ୍ମାଙ୍କର ସୁତ ।
ଗଙ୍ଗାଙ୍କୁ ମଧ୍ୟ ଶଙ୍କର ପରିତ୍ୟାଗ କରି
ତପସ୍ୟା କରିବାପାଇଁ ଯାଆନ୍ତେ ବାହାରି ।
ଲଜ୍ଜିତା ହୋଇଣ ଗଙ୍ଗା ବହୁତପ କଲେ
ଶ୍ରୀକୃଷ୍ଣଙ୍କ ବରେ ପୁଣି ଶିବଙ୍କୁ ପାଇଲେ ।
ଦିନେ ବଇକୁଣ୍ଠପୁର ଦ୍ୱାରେ ଲକ୍ଷ୍ମୀଦେବୀ
ମିଳିଲେ ପଡ଼ଙ୍କ ଦରଶନେ ମନେ ଭାବି ।
ଜଗତ ଜୀବଙ୍କୁ ଉଷାଦେଇ ମହାମାୟୀ
ବାହୁଡ଼ି ଆସିବା ଜାଣି ଦ୍ୱାରପାଳ ଦୁଇ ।

ନିବାରଣ କରି ତାଙ୍କୁ ଅପମାନ ଦେଲେ
ସେ ସକାଶୁ କମଳାକ୍ଷୀ ମହାକୋପ କଲେ ।
ଦୁଆରୀଙ୍କୁ ଶାପଦେଇ ଯୁଟରେ ପରବେଶ
ହୋଇ ଦେହ ତେଜିବାକୁ ଜାଳଲେ ହୁତାଶ ।
ତାହା ଜାଣି ବ୍ରହ୍ମା ବିଷ୍ଣୁ ରୁଦ୍ରଆଦି ଦେବେ
ଉପସ୍ଥିତ ହୋଇଲେ ତାଙ୍କ ପାଶେ ଆସି ସବେ ।
ଦେବୀଙ୍କର ପାଦେ ପଡ଼ି ଶିରେ ଯୋଡ଼ି କର
ଭକ୍ତିଭରେ ସ୍ତୁତି କଲେ ବିବିଧ ପ୍ରକାର ।
ବୋଇଲେ ଗୋ ଭଗବତୀ ଶୁଦ୍ଧସତ୍ତ୍ୱରୂପେ
ସକଳଦେବୀ ପୂଜିତା ବିବର୍ଜିତ କୋପେ ।
ତୁମ୍ଭ ବିନା ଏ ଜଗତ ରହି ନ ପାରିବ
ପଡ଼ିବେ ମୃତ୍ୟୁ ମୁଖରେ ସୁରାସୁର ସବ ।
କୈଳାସେ ପାର୍ବତୀ ତୁମ୍ଭେ ଅଟ ସିନ୍ଧୁସୁତେ
ସ୍ୱର୍ଗପୁରେ ସ୍ୱର୍ଗଲକ୍ଷ୍ମୀ ବୋଲଅ ନିରତେ ।
ବୈକୁଣ୍ଠ ଭୁବନେ ଲକ୍ଷ୍ମୀ ସରସ୍ୱତୀ ରୂପେ
ବିରାଜିତ ହୋଇଅଛ ମହାମାୟୀ ଆପେ ।
ଗଙ୍ଗା ତୁଳସୀ ସାବିତ୍ରୀ ସ୍ୱରୂପକୁ ବହି
ଭିନ୍ନ ଭିନ୍ନ ସ୍ଥାନେ ଦେବୀ ଅଛ ତୁମ୍ଭେ ରହି ।
ଗୋଲୋକରେ କୃଷ୍ଣପ୍ରିୟା ଅଟ ରାସେଶ୍ୱରୀ
ଚମ୍ପକ ବନେ ବୋଲଅ ବିରଜା ସୁନ୍ଦରୀ ।
ପଦ୍ମବନେ ପଦ୍ମାବତୀ କେତକୀ ବନରେ
କେତକୀ ବରନା ନାମେ ଥାଅ ନିରନ୍ତରେ ।
ରାଜପୁରେ ରାଜଲକ୍ଷ୍ମୀ ବୋଲାଉଅଛ ତୁମ୍ଭେ
ତୁମ୍ଭର ମହିମା ବର୍ଣ୍ଣି କି ପାରିବୁ ଆମ୍ଭେ ।
ଏମନ୍ତ ବୋଲିଣ ଦେବଗଣ ସେସ୍ଥାନରେ
ରୋଦନ କରି ରହିଲେ ବିଷର୍ଣ୍ଣ ଭାବରେ ।
ଏ ମହା ସ୍ତୋତ୍ରକୁ ନିତ୍ୟ ପଢ଼ଇ ଯେ ନର
ଧନ ଧାନ୍ୟ ଅଇଶ୍ୱର୍ଯ୍ୟ ବଢ଼ଇ ତାହାର ।
ଭାର୍ଯ୍ୟାହୀନ ଲୋକ ଯେବେ ଭକ୍ତିମନ୍ତ ହୋଇ
ପଢ଼ିବ ଲକ୍ଷ୍ମୀ ଦେବୀଙ୍କ ସ୍ତୋତ୍ର ମନଦେଇ ।
ସୁନ୍ଦରୀ ସୁଗୁଣବତୀ କୁଳଜା କାମିନୀ
ପ୍ରାପତ ହେବ ତାହାକୁ ନିଶ୍ଚେ ଥାଅ ଜାଣି ।
ବିଦ୍ୟାର୍ଥୀ ପାଇବ ବିଦ୍ୟା ଧନାର୍ଥୀ ଯେ ଧନ
ରୋଗୀ ସ୍ତୁତି କଲେ ଦୂର ହେବ ରୋଗମାନ ।
ଆବର ପୁତ୍ର ପୌତ୍ରାଦି ସକଳ ସମ୍ପତ୍ତି
ମିଳିବ ସହଜେ ଜାଣ ଆହେ ମହାମତି ।
ସକଳ ମଙ୍ଗଳକାର ଅଟଇ ଏ ସ୍ତୋତ୍ର
ପଠନ କଲେ ଶରୀର ହୁଅଇ ପବିତ୍ର ।
ଏଠାରେ ଦେବତାମାନେ ସ୍ତୁତି କରିବାର
ସମାପନ କଲେ ଗୀତେ କହେ ହେମସୁନ୍ଦର ।

ଇତି ଶ୍ରୀବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ମହାବିଷ୍ଣୁ ଆଦି ଦେବଗଣଙ୍କର
ସଂକ୍ଷିପ୍ତ ଦେବୀ ଉପାସନା ବିବରଣେ ନାମ ଷଟ୍‌ପଞ୍ଚାଶତୋଽଧ୍ୟାୟଃ ।



## ସପ୍ତ ପଞ୍ଚାଶତ ଅଧ୍ୟାୟ

## ମହାଲକ୍ଷ୍ମୀଙ୍କର ବୈରାଗ୍ୟ ମୋଚନ ବର୍ଣ୍ଣନ

ନାରାୟଣ ବୋଇଲେ ହେ ଦେବଙ୍କର ସ୍ତୁତି
ଶୁଣି ମହାଲକ୍ଷ୍ମୀ ଦେବୀ ହୋଇ ଶାନ୍ତମତି ।
ବୋଇଲେ ହେ ଦେବଗଣ କ୍ରୋଧଭରେ ମୁହିଁ
ଦେହ ତ୍ୟାଗ କରିବାକୁ ବିଚାର ତ ନାହିଁ ।
କେବଳ ଯେ ଦ୍ୱାରପାଳ ମୋତେ ଅପମାନ
ଦେଲେ ତାହା ସହିବାକୁ ନାହିଁ ମୋର ମନ ।
ଯେଉଁ ଦେବ ପରମାତ୍ମା ପରମ ପୁରୁଷ
ସେ ମୋହର ପତି ହୋଇ ଅଛନ୍ତି ଅବଶ୍ୟ ।
ଭୃତ୍ୟଠାରୁ ନିନ୍ଦନ ଭାବ ମୋଠାରେ ପ୍ରକାଶ
କରିବାରୁ ଦଗ୍ଧ ହେଉଅଛି ମୋ ମାନସ ।
ସେ ସକାଶୁ ଦେହତ୍ୟାଗ ଅଟେ ଶ୍ରେୟସ୍କର
ସ୍ୱାମୀ ସୌଭାଗ୍ୟ ବିନା ବିଫଳ ଶରୀର ।
ଯେଉଁ ସ୍ତ୍ରୀ ପତିଠାରେ ନ ହୁଏ ବଲ୍ଲଭା
ଶଯ୍ୟନେ ଭୋଜନେ ତାର କେଉଁ ସୁଖ ଅବା ।
ଆବର ସେ ପୁତ୍ର ଧନ ରୂପ ଯଉବନ
ବିଫଳ ଅଟଇ ସବୁକଥା ତାର ଜାଣ ।

ଯେଉଁ କାମିନୀର ପତିଠାରେ ଭକ୍ତି ନାହିଁ
ଅଶୁଚି ଧର୍ମବର୍ଜିତା ଦୁଷ୍ଟା ସେ ବୋଲାଇ ।
ସାଇ ବନ୍ଧୁଠାରୁ ବଳି ଶ୍ରେଷ୍ଠ ଅଟେ ପତି
ପତି ପ୍ରକାଶରୁ ସର୍ବସୁଖ ହୁଏ ପ୍ରାପ୍ତି ।
ଉତ୍ତମ ବଂଶରେ ଜାତ ଅଟେ ଯେ ରମଣୀ
ପତିର ଭାବକୁ ପାରେ ସହଜରେ ଜାଣି ।
ଅସତ୍ୟବାଦିନୀ ଦୁଷ୍ଟଚରିତା ଯେ ସ୍ତ୍ରୀ
କହୁଥାଏ ସର୍ବଦା ସେ ପତି ନିନ୍ଦା କରି ।
ତେମନ୍ତ ସ୍ତ୍ରୀର ବାସ ହୁଏ ନରକରେ
ବ୍ରତଧର୍ମ ଫଳ କିଛି ଭୁଞ୍ଜି ସେ ନ ପାରେ ।
ସେ ପ୍ରକାଶୁ ପତିଙ୍କୁ ମୁଁ ନିନ୍ଦାକରି କିଛି
କହିବାକୁ ଉପଯୁକ୍ତ ନୁହଇ ବୋଲୁଛି ।
ପତିବ୍ରତା ସ୍ତ୍ରୀ ଯେବେ ପତିର ଦୂଷଣ
ଦେଖିବ କିଛି ତାହାକୁ ନ ବୋଲିବ ଜାଣ ।
ସହ୍ୟକରି ନ ପାରିଲେ ତେଜିବ ଜୀବନ
ଏମନ୍ତ ଅଟଇ ନୀତିଶାସ୍ତ୍ରର ବିଧାନ ।
କାମିନୀର ପତିସେବା ଅଟଇଟି ମୂଳ
ବ୍ରତଧର୍ମ ଆଦି କିଛି ନୁହଇ ତା ତୁଲ୍ୟ ।
ଯେଉଁ ସତୀ ପତିଙ୍କର ଉଚ୍ଛିଷ୍ଟ ଭୁଞ୍ଜଇ
ପ୍ରଶଂସା କାରୀ ତାକୁ ଦେବେ ସ୍ୱର୍ଗେ ଥାଇ ।
ପତିଙ୍କ ଚରଣ ରେଣୁ ସର୍ବତୀର୍ଥ ସାର
ପତିଙ୍କ ଆଦେଶ ବେଦ ବାକ୍ୟରୁ ଅଟଳ ।
ଏମନ୍ତ କହି କମଳା ମଉନ ହୋଇଲେ
ଶୁଣି ତାଙ୍କୁ ପ୍ରଜାପତି ବିନୟେ କହିଲେ ।
ବୋଇଲେ ଗୋ ଆଦିମାତଃ ତୁମ୍ଭ ପ୍ରକୋପରେ
ଜୟ ବିଜୟଙ୍କ ଶୁଭ ନୋହିବ ଲୋକରେ ।
ମୂର୍ଖପଣେ ଦୁଇଭାଇ କଲେ ଅପରାଧ
ତଥାପି ତୁମ୍ଭ ମନରେ ନ ହେଲା ସା କ୍ରୋଧ ।
ତାହାଙ୍କର ସର୍ବନାଶ ହୋଇବ ନିଶ୍ଚୟ
ଧର୍ମରେ ଦଣ୍ଡିତ ଯେହୁ ହେବେ ଜାଣିଥାଅ ।
ଆମ୍ଭର ପ୍ରାର୍ଥନା ଯେନ ସହି ସବୁକଥା
ପତିଙ୍କର ସମୀପକୁ ଯାଅ ସତବ୍ରତା ।

ଏମନ୍ତ କହିଣ ବ୍ରହ୍ମା ଦେବାଙ୍କ ସହିତେ
ଲକ୍ଷ୍ମୀଦେବୀଙ୍କୁ ଆଗରେ ଚଳାଇ ସମସ୍ତେ ।
ବଇକୁଣ୍ଠ ପୁରେ ଯାଇ ପ୍ରବେଶ ହୋଇଲେ
ବିଷ୍ଣୁଙ୍କ ଆଗରେ ଉଭା ହୋଇ ସ୍ତୁତି କଲେ ।
ଚତୁର୍ମୁଖେ ପ୍ରଜାପତି ନାନାସ୍ତୁତି ଧରି
ଜଣାଇଲେ ପ୍ରଭୁଙ୍କର ଆଗେ କରଯୋଡ଼ି ।
ଜଗତକର୍ତ୍ତା ବିଷ୍ଣୁ ସେ ସ୍ତୁତିକୁ ଶୁଣି
ଦେଖିଲେ ଆଗେ ଅଛନ୍ତି ଦେବୀ କମଳିନୀ ।
ସେ ପ୍ରକାଶୁ ହରଷରେ ବୋଇଲେ ହେ ଦେବେ
ମନଦେଇ ଶୁଣ ଯାହା କହୁଅଛି ଏବେ ।
ଜାଣି ପାରୁଅଛି ମୁହିଁ ସକଳ କାରଣ
ତଥାପି ମରିବ ହୋଇ ରହିଅଛି ଜାଣ ।
କଳତ୍ର ବନ୍ଧୁଙ୍କଠାରୁ ଭୃତ୍ୟ ଅଟେ ବଡ଼
ଭୃତ୍ୟ ବିଷୟରେ ମୋର ସବୁକଥା ଗୂଢ଼ ।
ଜୟ ବିଜୟଙ୍କ ଭକ୍ତି ଯୋଗରେ ମୁଁ ଯାହା
ଦୋଷ କରିଅଛି ଏବେ କ୍ଷମା କର ତାହା ।
ଏମନ୍ତ କହି ଲକ୍ଷ୍ମୀଙ୍କୁ ବକ୍ଷସ୍ଥଳେ ଘେନି
ଡକାଇ ଆଣିଲେ ପ୍ରାଣେ ଦ୍ୱାରପାଳ ବେନି ।
ତାହାଙ୍କୁ ବୋଇଲେ ଆରେ ଦ୍ୱାରପାଳ ତୁମ୍ଭେ
ନିର୍ଭୟ ହୋଇଣ ରହ ବୋଲୁଅଛୁଁ ଆମ୍ଭେ ।
ମୁଁ ଥିବାଠାରେ ମୋହର ଭକ୍ତଙ୍କର ଭୟ
କେଉଁଠାରୁ ହେଲେ ନୋହି ପାରଇ ଉଦୟ ।
ଏମନ୍ତ କହିଣ ପ୍ରଭୁ ବିରତ ହୋଇଲେ
ମେଲାଣି ହୋଇଣ ଦେବେ ଯେଝା ପୁରେ ଗଲେ ।
କରଯୋଡ଼ି ଦ୍ୱାରପାଳ ଜୟ ସେ କାଳରେ
କହିଲା ପୁଣି ପ୍ରଭୁଙ୍କ ଆଗେ ଗୋପଭରେ ।
ବୋଇଲା ହେ ମହାପ୍ରଭୁ ତୁମ୍ଭ ଚରଣରେ
ମନଦେଇ ରହିଅଛି ମୁହିଁ ନିରନ୍ତରେ ।
ସେ ପ୍ରକାଶୁ କାହାଠାରୁ ନାହିଁ ମୋର ଭୟ
କେବଳ କରୁଛି ତୁମ୍ଭ ଦୟାକୁ ଆଶ୍ରୟ ।
କହଇ କ୍ଷେତ୍ରମୋହନ ଆହେ ସାଧୁଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ପଢ଼ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ମହାଲକ୍ଷ୍ମୀଙ୍କର ବୈରାଗ୍ୟ
ମୋଚନ ବର୍ଣ୍ଣନେ ନାମ ସପ୍ତପଞ୍ଚାଶତୋଽଧ୍ୟାୟଃ ।



## ଅଷ୍ଟପଞ୍ଚାଶତ ଅଧ୍ୟାୟ
## ପୃଥିବୀ ଆଦି ଦେବୀଗଣମାନଙ୍କର ଗର୍ବଗଞ୍ଜନ ବୃତ୍ତାନ୍ତ ବର୍ଣ୍ଣନ

ନାରାୟଣ ବୋଇଲେ ହେ ମହା ଦେବୀଙ୍କର
ଗର୍ବଚ୍ୟୁତ କଥା ଏବେ ଶୁଣ ମୁନିବର ।
ଦିନେ ବସୁମତୀ ମନେ ମନେ ବିଚାରିଲେ
ଜଗତ ଲୋକଙ୍କୁ ମୁହିଁ ଧରିଅଛି ଭଲେ ।
ତାହା ଜାଣି ପ୍ରଭୁ ତାଙ୍କଠାରେ ଦୟାକରି
ପୃଥିଙ୍କ ଯୋଗରେ ଗର୍ବ ଦେଲେକ ସଂହାରି ।
ଆଶ୍ଚର୍ଯ୍ୟ ଭାବିଲେ ମୁହିଁ ଦେବତାଙ୍କୁ ଜାତ
କରି ନ ଥିଲେ କି ଆଉ ହୁଅନ୍ତା ଜଗତ ।
ଯେ କଥା ଜାଣି ଶ୍ରୀକୃଷ୍ଣ ତାଙ୍କ ପାଶ୍ୱ ନେଇ
ସକଳ ସୁତଙ୍କୁ ଦେଲେ ସୁଦୂରେ ଲୁଚାଇ ।
ଯେତେବେଳେ ତାହାଙ୍କର ଦେବଭଙ୍ଗ ହେଲା
କହିବା ପାଇଁକି ମୁଖୁଁ କଥା ନ ସ୍ଫୁରିଲା ।
ଜହ୍ନୁଦ୍ୱାରା ଗଙ୍ଗାଙ୍କର ଦର୍ପ ଭଙ୍ଗକରି
ଦୁର୍ଗାଙ୍କ ଦ୍ୱାରା ମନସା ଗର୍ବକୁ ସଂହାରି ।
ରାସମଣ୍ଡଳେ ଭର୍ତ୍ସନା କଲେ ବିରଜାଙ୍କୁ
ତେଣୁ ସେ ନିଗର୍ବ ହେଲେ ପାଇଣ ଲଜ୍ଜାକୁ ।
ଶ୍ରୀଦାମା ଶାପରେ ରାଧା ଦେବୀଙ୍କର ଗର୍ବ
ଭକତ ବତ୍ସଳ ପ୍ରଭୁ କରାଇଲେ ଖର୍ବ ।
ଦୈବବରେ ବୃଷଭାନୁ କଳାବତୀଙ୍କର
ସମ୍ଭନ୍ଧରେ ଜନମ ଯେ ହେଲେ ବ୍ରଜପୁର ।
କଂସଛଳେ ଦେବୀଙ୍କର ଅନୁରୋଧ ରଖି
ନନ୍ଦଘରେ ଜନମିଲେ ପ୍ରଭୁ ପଦ୍ମଆଖି ।
ଶ୍ରୀଦାମା ଶାପ ବିଚ୍ଛେଦ ପାଳନ ସକାଶେ
ମଥୁରା ପୁରକୁ ପୁଣି ଗମନ କଲେ ସେ ।
ଏହିରୂପେ ପ୍ରଜାପତି ଶାସ୍ତ୍ରେ ଛନ୍ଦି କହି
ଅନ୍ୟ ଅଭିପ୍ରାୟ ଜାଣି ପାରିବେ ବା କେହି ।
ମଥୁରାରେ ପ୍ରଥମରେ ଜାତ ହୋଇକରି
କାହିଁକି ଆସିଲେ ଏବା ଗୋପଙ୍କ ନଗରୀ ।
ତହିଁର କାରଣ ଅଟେ ଶ୍ରୁତି ଅଗୋଚର
ଯଥାର୍ଥ କହିବା ପାଇଁ ଶକତି କାହାର ।
ମାତ୍ର ସେଉଁରୂପ ପ୍ରଭୁ ମଥୁରାକୁ ଗଲେ
ତାଙ୍କୁ ଗୃହେ ପିତାମାତା ବିଷାଦ ପାଇଲେ ।
ବୃନ୍ଦାବନେ ଗୋପ ଗୋପୀଗଣ ସେଉଁପରି
ଅଧୀର ହୋଇଲେ ତାଙ୍କ ଚରଣ ସୁମରି ।
ଗୋପପୁର ନଦୀ ବନ ପାହାଡ଼ କାନ୍ତାର
କୃଷ୍ଣଙ୍କ ବିରହେ ଝୁରି ହେଲେ ନିରନ୍ତର ।
ସେଉଁରୂପେ ରାଧାଦେବୀ ବିରହ ବାଧାରେ
ଦଗ୍ଧହେଲେ ପୁନଃପୁନଃ ପଞ୍ଚଶର ଶରେ ।
କ୍ଷଣେ କ୍ଷଣେ ଜୀବନକୁ ତ୍ୟାଗ କରିବାକୁ
ଯେଉଁରୂପେ ବିଚାର କରୁଥିଲେ ସେ ମନକୁ ।
ସେ ସମସ୍ତ କଥା ମୁହିଁ ସଂକ୍ଷେପ ପ୍ରକାରେ
କହିଅଛି ଆହେ ମୁନି ତୁମ୍ଭର ଆଗରେ ।
ଏହିଠାରେ ଦର୍ପଭଙ୍ଗ ଦେବୀମାନଙ୍କର
ସମାପତ କଲେ ଗୀତେ କହେ ଯେବଗ୍ଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ପୃଥିବୀ ଆଦି ଦେବୀଗଣମାନଙ୍କର ଦେବଗଞ୍ଜନ ବୃତ୍ତାନ୍ତ ବର୍ଣ୍ଣନେ ନାମ ଅଷ୍ଟପଞ୍ଚାଶତୋଽଧ୍ୟାୟଃ ।

—·—*—

## ଊନଷଷ୍ଟିତମ ଅଧ୍ୟାୟ
## ଇନ୍ଦ୍ରଙ୍କର ଗର୍ବ ଖର୍ବ ଓ ଶଚୀଙ୍କ କର୍ତ୍ତୃକ ଗୁରୁସ୍ତବ କଥନ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦେ
ଶୁଣ ଇନ୍ଦ୍ରଙ୍କର ଦର୍ପ ହରଣ ସମ୍ବାଦ ।
ସୁଧର୍ମା ସଭାରେ ଦିନେ ରତ୍ନ ଆସନରେ
ବସିଥିଲେ ସୁରପତି ଦେବଙ୍କ ମଧ୍ୟରେ ।

ଯେ ସମୟେ ଗୁରୁଦେବ ଯେହ୍ନଠାରେ ଆସି
ପ୍ରବେଶ ହୋଇଲେ ଜାଣ ଆହେ ମହାଋଷି ।
ଦେଖିଲେ ହେଲେ ଆଗରେ ତାଙ୍କୁ ପୁରନ୍ଦର
ନ ଉଠିଲେ ଆସନରୁ ଗୁଢ଼ ଅହଙ୍କାର ।
ତାହା ଦେଖି ବୃହସ୍ପତି ମହାକ୍ରୋଧ କଲେ
ସ୍ନେହ ହେତୁରେ ଶିଷ୍ୟଙ୍କୁ ଶାପ ନ ଦେଲେ ।
କିନ୍ତୁ କାଳକ୍ରମେ ଇନ୍ଦ୍ରଙ୍କର ଗର୍ବନାଶ
ଅଧର୍ମ ଯୋଗରେ ହୋଇଗଲାଟି ଅବଶ୍ୟ ।
ଧାର୍ମିକ ଲୋକ ଯଦ୍ୟପି ସ୍ନେହବଶ ହୋଇ
ଦୋଷ କରିବା ବ୍ୟକ୍ତିଙ୍କୁ ଦଣ୍ଡ ନ ଦିଅଇ ।
ଦଇବ ଯୋଗରେ ଦଣ୍ଡ ମିଳଇ ତାହାକୁ
ଧର୍ମ କେବେ ନ ସହଇ ଅଧର୍ମୀ ଲୋକଙ୍କୁ ।
ନିଃସ୍ୱ ମନୁଷ୍ୟଙ୍କୁ ଶାପ ଦିଅଇ ଧାର୍ମିକ
ଯେ ହେନ ନାଶ ହୁଅଇ ଅଧାର୍ମିକ ଲୋକ ।
ଧାର୍ମିକ ଲୋକର ଧର୍ମ ବିନଷ୍ଟ ହୁଅଇ
ଏରୂପେ ଦୁଇପକ୍ଷର ଅନିଷ୍ଟ ଘଟଇ ।
ଗୁରୁଙ୍କଠାରେ ବିଦ୍ରୋହ କଲେ ବଜ୍ରପାଣି
ସେ ସକାଶୁ ବ୍ରହ୍ମହତ୍ୟା ଆସି ସେହିକ୍ଷଣି ।
ଗ୍ରାସ କରିବାକୁ ତାଙ୍କ ସଙ୍ଗେ ଗୋଡ଼ାଇଲା
ତାହା ଦେଖି ଇନ୍ଦ୍ରଙ୍କର ଭୟ ଉପୁଜିଲା ।
ରାଜ୍ୟ ଧନ ତ୍ୟାଗ କରି ସରୋବରେ ଯାଇ
ଲୁଚିଲେ ସେ ପଦ୍ମମୂଳ ଅଙ୍ଗରେ ଘୋଡ଼ାଇ ।
ପୁଣ୍ୟମୟ ଅଟେ ସେହି ବିଷ୍ଣୁ ସରୋବର
ଯାଇ ନ ପାରେ ସେଠାକୁ ପାପିଷ୍ଠ ଯେ ନର ।
ସେ ସକାଶୁ ବ୍ରହ୍ମହତ୍ୟା ପଶି ନ ପାରିଲା
ଖଣ୍ଡେ ଦୂରେ ରହି ବୃକ୍ଷଡାଳରେ ବସିଲା ।
ଏଥୁଅନ୍ତେ ଯାହା ହେଲା ଶୁଣ ଆହେ ମୁନି
ଆପଣାର ଅର୍ଜିବା କର୍ମଦୋଷ ହେନ ।
ରାଜ୍ୟଭ୍ରଷ୍ଟ ହେଲେ ଯହୁଁ ସୁର ଅଧିପତି
ତାହା ଜାଣି ବିଷ୍ଣୁଭକ୍ତ ନହୁଷ ନୃପତି ।
ବଳାତ୍କାରେ ସ୍ୱର୍ଗପୁର ଅଧିକାର କଲେ
ଦେବଙ୍କ ମଧ୍ୟରେ ଅଧୀଶ୍ୱର ବୋଲାଇଲେ ।
ଏହିରୂପେ ଅତିକ୍ରାନ୍ତ ହେଲା କେତେ ଦିନ
ଦିନକରେ ରାଜମାର୍ଗେ ନହୁଷ ରାଜନ ।
ଦେଖିଲେ ସ୍ନାନ ସକାଶେ ଯାଉଛନ୍ତି ଶଚୀ
ତାହାଙ୍କ ସଙ୍ଗରେ ଅଛି ଅପସର ଘୃତାଚୀ ।
ଆଉରି ବହୁତ ଦାସୀ ଉପସ୍ତ୍ରୀରମାନ
ନିଜ ନିଜ ହସ୍ତେ ଯେନ କରନ୍ତି ଗମନ ।
ପତି ବିରହରେ ଦେବୀ ନୟନରୁ ଜଳ
ବୁହାଇ ତିନ୍ତାଇଛନ୍ତି ଯେନ ଗଣ୍ଡସ୍ଥଳ ।
ସ୍ୱଭାବରେ ସୁନ୍ଦରୀ ସେ ରମଣୀଙ୍କ ବର
ସ୍ଥିର ଯଉବନେ ଶୋଭା ଦିଶଇ ଶରୀର ।
ଦିବ୍ୟବାସ ଅଳଙ୍କାରେ ହେବାରୁ ମଣ୍ଡିତ
ଦେଖିବା ମାତ୍ରେ ହରଣ କରୁଅଛି ଚିତ୍ତ ।
ସେ ସୌନ୍ଦର୍ଯ୍ୟ ଦେଖି ରାଜା ମୋହିତ ହୋଇଲେ
ପାଶକୁ ଯାଇ ବିନୟେ ବଚନ କହିଲେ ।
ବୋଇଲେ ଆଗୋ ସୁଦନ୍ତି ଧନ୍ୟ ଅଟ ତୁମ୍ଭେ
ତୁମ୍ଭର ସ୍ୱରୂପ ଦେଖି ମୁଗ୍ଧ ହେଲୁ ଆମ୍ଭେ ।
ବିଚିତ୍ର ଅଟଇ ସୃଷ୍ଟି ବିଧାତାର ଗତି
ତାହା ଜାଣିବାକୁ ଅଛି କାହାର ଶକତି ।
ତୁମ୍ଭ ପରି କାମିନୀଙ୍କୁ ଛାଡ଼ି ପୁରନ୍ଦର
ପରସ୍ତ୍ରୀରେ ଆସକ୍ତ ହେଲା କି ପ୍ରକାର ।
ଜାଣିଲି ନିଶ୍ଚୟେ ସେହୁ ଅଟେ ବୁଦ୍ଧିହୀନ
ଅହଲ୍ୟା ଠାରେ ବଳାଇ ଥିଲା ଯାହା ମନ ।
ତୁମ୍ଭ ଆଗରେ ମେନକା ରମ୍ଭା ତିଲୋତ୍ତମା
ଉର୍ବଶୀ ଆଦି ଯେତେକ ସୁରପୁର ବାମା ।
ଦାସୀଠାରୁ ହୀନହୋଇ ଦିଶିବେ ସମସ୍ତେ
ଚେଟୀତୁଲ୍ୟ ହେବେ ମର୍ତ୍ତ୍ୟପୁର ସ୍ତ୍ରୀ ଯେତେ ।
ତୁମ୍ଭର ଅଙ୍ଗ ସଙ୍ଗମ ସୁଖ ଯେ ଲଭିବ
ତାହାର ସମାନ ପୁଣ୍ୟବନ୍ତ କେ ନ ଥିବ ।
ଦେଖୁଛ ତ ସ୍ୱର୍ଗପୁରେ ରାଜା ହେଲି ମୁହିଁ
ରହିଛନ୍ତି ଦେବେ ମୋର ଆଜ୍ଞା ଶିରେ ବହି ।
ଆଉରି ସକଳ ସୁଖ ଅଇଶ୍ୱର୍ଯ୍ୟ ଧନ
ଭୁଞ୍ଜୁଅଛି ମୁହିଁ ଆଗୋ ରମଣୀରତନ ।
ପୂର୍ବରୁ ନିୟମ ହୋଇଅଛି ସ୍ୱର୍ଗପୁରେ
ଯେ ବସି ପାରିବ ରାଜ୍ୟସିଂହାସନ ପରେ ।
ତାହାର ଭାରିଯା ତୁମ୍ଭେ ହୋଇବ ନିଶ୍ଚୟ
କିଞ୍ଚିତ ମାତ୍ର ଏଥିରେ ନାହିଁ ତ ସଂଶୟ ।
ସେ ସକାଶୁ ବୋଲୁଅଛି ବାସବଙ୍କଠାରୁ
ସ୍ନେହ ଛାଡ଼ି ମୋର ପତ୍ନୀ ହୁଅ ଶୀଘ୍ରରୁ ।
ଯେଉଁରୂପେ ବିଷ୍ଣୁ କୋଳେ ଲକ୍ଷ୍ମୀ ସରସ୍ୱତୀ
ଶଙ୍କର ଅଙ୍କରେ ଦେବୀ ପର୍ବତ ଦୁହିତା ।

ଧର୍ମଦେବଙ୍କ ବକ୍ଷରେ ମୂର୍ତ୍ତି ଯେଉଁପରି
ଅନନ୍ତ ଦେବଙ୍କ ପାଶେ ବାସନ୍ତୀ ସୁନ୍ଦରୀ ।
ମହାସେନାଙ୍କର କୋଳେ ଦେବୀଦେବସେନା
କାମଦେବ କୋଳେ ରତି ପୂର୍ଣ୍ଣଚନ୍ଦ୍ରାନନା ।
ଚନ୍ଦ୍ରମା ପାଶେ ରୋହିଣୀ ଯେରୂପେ ଶୋଭିତା
କଶ୍ୟପ କୋଳରେ ତୁମ୍ଭ ଶ୍ୱଶ୍ରୂ ଦେବମାତା ।
ହିମାଳୟ କୋଳେ ମେନା ବୃହସ୍ପତି ପାଶେ ତାରା
ଯେରୂପେ ଦିଶନ୍ତି ଆଗେ ସୌନ୍ଦର୍ଯ୍ୟ ପସରା ।
ଆଉରେ ବଶିଷ୍ଠ ମୁନି ପାଶେ ଅରୁନ୍ଧତୀ
ମହାବୀର ନଳରାଜା କୋଳେ ଦମୟନ୍ତୀ ।
ଯେଉଁରୂପେ ଲୀଳା କରୁଛନ୍ତି ସୁକେଶିନୀ
ସେ ରୂପେ ମୋହର କୋଳେ ତୁମ୍ଭେ ବାସ କରି
ତିନିଲୋକ ସମ୍ପଦକୁ ସୁଖେ ଭୋଗକର
ସର୍ବଦା ମୁଁ ଦାସ ହୋଇ ରହିବି ତୁମ୍ଭର ।
ମନକଲେ ନିମିଷକେ ସହସ୍ର ଇନ୍ଦ୍ରଙ୍କୁ
ସଂହାର ପାରିବି ମୁହିଁ ପ୍ରକାଶି ବଳକୁ ।
ସ୍ତ୍ରୀମାନେ ପତିଠାରୁ ବଳବନ୍ତ ଜନ
ଦେଖିଲେ ମାତ୍ରେ ହୁଅନ୍ତି ତାହାର ଅଧୀନ ।
ତୁମ୍ଭେ ତ ଅଟ ଚତୁରୀ ବୁଦ୍ଧିମତୀ ବାଳା
ତୁମ୍ଭଙ୍କୁ କି ଉପଦେଶ ଦେବି କହ ଭଲା ।
ଆଗୋ ଶରତଚନ୍ଦ୍ର ମୁଖି ମୋ ସଙ୍ଗରେ ମିଳି
ନନ୍ଦନ କାନନ ମଧ୍ୟେ କର ସୁଖେ କେଳି ।
ଅଥବା ମଳୟଗିରି ଚନ୍ଦନ ବନରେ
ବିହାର କର ସୁମୁଖି ଆନନ୍ଦ ମନରେ ।
ଶତଶୃଙ୍ଗେ ପୁଷ୍ପଭଦ୍ରା ନଦୀତଟେ ଅବା
ଆସ ଆଗୋ ମୃଦୁହାସୀ ଶୃଙ୍ଗାର ରଚିବା ।
ନୋହିଲେ ବା ଗୋଦାବରୀ ତଟିନୀ ତଟରେ
ଭ୍ରମଣ କରିବା ଆସ ସୁଗନ୍ଧ ସମୀରେ ।
ଚତୁର ପୁରୁଷ ସଙ୍ଗେ ଚତୁରୀ ସ୍ତ୍ରୀଙ୍କର
ମିଳନ ଅଟଇ ସିନା ଅତି ମନୋହର ।
ବିଧାତାଙ୍କ ବରେ ମୁହିଁ ଜରାମୃତ୍ୟୁ ହୀନ
ନାହାନ୍ତି କେ ତିନିପୁରେ ମୋହର ସମାନ ।
ସୁବେଶ ସୁନ୍ଦର ଶାନ୍ତ ରତି ବିଶାରଦ
ଅଟଇ ମୁଁ ମୋତେ ଭଜ ଲଭିବ ପ୍ରମୋଦ ।
ଆପଣା ଇଚ୍ଛାରେ ଆସି ଉର୍ବଶୀ ସୁନ୍ଦରୀ
ମିଳିଲା ମୋହର ପାଶେ ରତି ଇଚ୍ଛାକରି ।
କିନ୍ତୁ ତାହାପ୍ରତି ମୋର ନ ବଳିଲା ଚିତ୍ତ
ତୁମ୍ଭଙ୍କୁ ଦେଖିବାକ୍ଷଣି ହେଉଛି ଆସକ୍ତ ।
ଆଉରି ମୋହର ଯେତେ ବିବାହିତା ସ୍ତ୍ରୀରୀ
ରତିଦେବୀ ପରି ସର୍ବେ ଅଟନ୍ତି ସୁନ୍ଦରୀ ।
ତଥାପି ତୁମ୍ଭର ରୂପ ଦେଖି ତାହାଙ୍କର
ସଙ୍ଗ ତେଜିବାକୁ ମନ ହେଉଅଛି ମୋର ।
ବୋଲିବେ ଯେବେ ସେମାନେ ଏଥିଠାକୁ ଆସି
ତୁମ୍ଭ ସମୀପରେ ରହି ହେବେ ପାଦଦାସୀ ।
ବରୁଣଙ୍କଠାରୁ ହେମମାଳାକୁ ମୁଁ ଆଣି
ତୁମ୍ଭ ଗଳାରେ ଲମ୍ବାଇ ଦେବି ଥାଅ ଜାଣି ।
ଅଦିତିଙ୍କଠାରୁ ଆଣି ରତନ କୁଣ୍ଡଳ
ଭୂଷିତ କରାଇ ଦେବି ତୁମ୍ଭ ଗଣ୍ଡସ୍ଥଳ ।
ଚନ୍ଦ୍ରଙ୍କୁ ଜିଣି ରୋହିଣୀ କର ଭୂଷଣକୁ
ଆଣିକରି ନିଶ୍ଚୟ ମୁଁ ଦେବି ଗୋ ତୁମ୍ଭଙ୍କୁ ।
ଶିବଙ୍କୁ ପ୍ରାର୍ଥନା କରି ପାର୍ବତୀଙ୍କଠାରୁ
ମଞ୍ଜୀର ଅଣାଇ ଦେବି ଆଗୋ ସୁଭ୍ରୂ ଭୀରୁ ।
ଆଉରି ଯେ ଦେବଙ୍କର ଯେଉଁ ଅଳଙ୍କାର
ଅଧିକ ଅଟଇ ତାହା ଆଣିବି ନିକର ।
ଅନୁଗ୍ରହ କରି ମୋତେ ଭଜ ଚାରୁହାସୀ
ଶରଣ ପଶୁଛି ତୁମ୍ଭ ପାଦତଳେ ଆସି ।
ଏମନ୍ତ କହି ନହୁଷ ଶଚୀଙ୍କ ପାଦରେ
ପଡ଼ିଲେ ସେ କାଳେ ପୀଡ଼ା ପାଇ କାମଶରେ ।
ତାହା ଦେଖି ପତିବ୍ରତା ପୁଲୋମ ତନୟା
ଉଠାଇ କହିଲେ ତାଙ୍କୁ ପ୍ରକାଶିଣ ଦୟା ।
ବୋଇଲେ ଆହେ ରାଜନ ଶୁଣ ମନଦେଇ
ବିଚାର କରିବେ ଯାହା କହୁଅଛି ମୁହିଁ ।
ନିଜ କର୍ମଯୋଗେ ଇନ୍ଦ୍ର ହେଲେ ହତଶିରୀ
ସେ ସକାଶୁ ହେଲ ତୁମ୍ଭେ ସ୍ୱର୍ଗ ଦଣ୍ଡଧାରୀ ।
ଯେଉଁଲୋକ ଯେଉଁଠାରେ ରାଜା ହୋଇଥାଇ
ସେସ୍ଥ ରାଜ୍ୟ ପ୍ରଜାଙ୍କର ପିତା ସେ ଅଟଇ ।
ଗୁରୁପତ୍ନୀ ରାଜପତ୍ନୀ ଦେବପତ୍ନୀ ସୁତା
ପିତୃସ୍ୱସା ମାତୃସ୍ୱସା ମାତୁଳ ଦୁହିତା ।
ଶିଷ୍ୟପତ୍ନୀ ଭୃତ୍ୟ ପ୍ରିୟା ପିତୃ ଭ୍ରାତୃ ଜାୟା
ଗର୍ଭଧାରୀ ଭଗିନୀ ଯେ ପିତୃବ୍ୟ ତନୟା ।
ଏମାନଙ୍କୁ ଆଦି କରି ଉଭୟ ବଂଶଜ
ସ୍ତ୍ରୀମାନେ ମାତୃତୁଲ୍ୟ ବୋଲି ମନେ ହେଜ ।

ତୁମ୍ଭେ ମର୍ତ୍ତ୍ୟପୁର ଲୋକ ମୁଁ ଦେବ ରମଣୀ
ସେ ଯେଣୁ ତୁମ୍ଭର ମାତା ଅଟେ ଥାଅ ଜାଣି ।
ଯେବେ ମାତୃ ହରଣରେ ନାହିଁ କିଛି ଡର
ତେବେ ଅଦିତିଙ୍କଠାକୁ ଯାଅ ନରବର ।
ସକଳ ପାପରୁ ଲୋକ ଲଭଇ ନିଷ୍କୃତି
କିନ୍ତୁ ମାତୃ ହରଣରେ ନ ମିଳଇ ଗତି ।
ମାତୃ ହରଣ କରିବା ଲୋକ ଅନ୍ତଃକାଳେ
କୁମ୍ଭୀପାକ ନରକରେ ପଡ଼ି ପାପବଳେ ।
ବ୍ରହ୍ମାଙ୍କ ବୟସ କାଳ କଷ୍ଟଭୋଗ କରେ
କୃମି ସଞ୍ଚାର କରନ୍ତି ତା ଦେହଯାକରେ ।
ସେ ଅନ୍ତେ ବେଶ୍ୟା ଯୋନିରେ ଜନ୍ମଲଭି କରି
ହୁଅଇ ସେ ଜଗତରେ ମହାପାପାଗ୍ରହୀ ।
ସହସ୍ରେ ବରଷ ଅନ୍ତେ ପୁଣି କୀଟ ହୋଇ
ସପତ କଳପ ଯାଏ ନରକେ ପଡ଼ଇ ।
ସେ ଅନ୍ତରେ ପୁଣି ମଳ ବ୍ରଣରେ ଷୋଡ଼ଶ
ସହସ୍ର ବରଷ କରେ କୃମିରୂପେ ବାସ ।
ମନୁଷ୍ୟ ଜନମ ତହିଁ ଲଭଇଟି ଯେବେ
କୁଷ୍ଠରୋଗରେ ପୀଡ଼ିତ ହୁଏ ଜାଣ ତେବେ ।
ଆବର ସପତ ଜନ୍ମ ଶ୍ୱାନରୂପ ହୋଇ
ଶ୍ମଶାନରେ ବୁଲି ଶବ ଭକ୍ଷଣ କରଇ ।
ଶୂକର ହୁଅଇ ସପ୍ତଜନ୍ମ ଯେ ଅନ୍ତରେ
ମୁକତି ନ ମିଳେ ତାକୁ କେବଣ ପ୍ରକାରେ ।
କ୍ଷତ୍ରିୟ ଅଥବା ବୈଶ୍ୟ ଶୂଦ୍ରଲୋକ ଯେବେ
ବ୍ରାହ୍ମଣୀ ସମ୍ଭୋଗ କରେ ଯଉବନ ଗର୍ବେ ।
ତେବେ ସେ ନିଷ୍କୃତି ଲାଭ କରି ନ ପାରଇ
ବେଦଶାସ୍ତ୍ରେ ନିରୂପିତ ଅଛି ଏହା ହୋଇ ।
ଗୃହସ୍ଥ ଲୋକର ସ୍ୱର୍ଗଭୋଗ ଅଟେ ସୁଖ
ମୁମୁକ୍ଷୁ ସର୍ବଦା ଇଚ୍ଛା କରୁଥାଏ ମୋକ୍ଷ ।
ତପସ୍ୱୀ ଜନର ତପ ଅଟଇ ପ୍ରଧାନ
ବ୍ରାହ୍ମଣର ମୁଖ୍ୟ ଅଟେ ବ୍ରହ୍ମ ତତ୍ତ୍ୱଜ୍ଞାନ ।
ମୁନିମାନଙ୍କର ଇଷ୍ଟ ଅଟେ ମୌନବ୍ରତ
ବୈଷ୍ଣବେ ହୁଅନ୍ତି ବିଷ୍ଣୁଭକ୍ତିରେ ନିରତ ।
ବିଷ୍ଣୁଭକ୍ତି ବିନା ମୁକ୍ତି ନ ମିଳଇ ବୋଲି
ସିଦ୍ଧ କରିଛନ୍ତି ସାଧୁଜନେ ଭାଳି ଭାଳି ।
କଂସ ମୁନି ମଳମୟ ସ୍ତ୍ରୀଙ୍କ ଦେହରେ
କେଉଁ ସୁଖ ଅଛି ଏବା ବିଚାର ମନରେ ।

ପୁଣ୍ୟଭୂମି ଭାରତରେ ତୁମ୍ଭର ଜନମ
ବହୁତ ପୁଣ୍ୟ ବଳରେ ହୋଇଅଛି ଜାଣ ।
ରାଜନ୍ୟ ମଧ୍ୟେ ରହି ବନମଧ୍ୟେ ତୁମ୍ଭେ
ମହର୍ଷି ସ୍ୱରୂପରେ ଜନ୍ମଅଛ ଜାଣୁ ଆମ୍ଭେ ।
ସ୍ୱଧର୍ମ ଅଟଇ ସବୁ ଲୋକଙ୍କ ଆଶ୍ରୟ
ନରକେ କରନ୍ତି ବାସ ଅଧାର୍ମିକଚୟ ।
ତ୍ରିସନ୍ଧ୍ୟା କାଳରେ ବିଷ୍ଣୁ ପୂଜା କରିବାର
ସ୍ୱଧର୍ମ ଅଟଇ ମୁନି ଋଷି ଦ୍ୱିଜଙ୍କର ।
ବିଷ୍ଣୁଙ୍କର ନଇବେଦ୍ୟ ନୋହିବଟି ଯେବେ
ବିଷ୍ଠାମୂତ୍ରତୁଲ୍ୟ ଅନ୍ନଜଳ ହେବ ତେବେ ।
ତାହାକୁ ଭୋଜନ ପାନ କରେ ଯେ ବ୍ରାହ୍ମଣ
ଶୂକର ଯୋନିରେ ସେହୁ ଜନ୍ମପାଏ ଜାଣ ।
ଶିବ ରାତ୍ରିରେ କି ଏବା କୃଷ୍ଣଜନ୍ମ ଦିନେ
ଭୋଜନ କରଇ ଯେଉଁ ବିପ୍ର ଜ୍ଞାନହୀନେ ।
ତାର ବ୍ରତ ଉପବାସ ଫଳ ନଷ୍ଟହୁଏ
ଅନ୍ତଃକାଳେ ନର୍କେ ପଡ଼ି କଷ୍ଟ ସେହୁ ପାଏ ।
ପତିବ୍ରତା କାମିନୀର ପତି ସେବାଠାରୁ
ଅଧିକ ସୁକୃତ ନାହିଁ ଆହେ ଜ୍ଞାନଗୁରୁ ।
ପର ପୁରୁଷକୁ ନିଜ ପୁତ୍ରର ସମାନ
ବିଚାର କରଇ ପତିବ୍ରତା ସ୍ତ୍ରୀ ଜାଣ ।
ଔରସ ପୁତ୍ର ସମାନ ପ୍ରଜାଙ୍କୁ ଯେ ରାଜା
ପାଳନା କରଇ ଲୋକେ ଲଭଇ ସେ ପୂଜା ।
ପ୍ରଜାମାନଙ୍କର ସ୍ତ୍ରୀ ଜନଙ୍କୁ ରାଜନ
ଦେଖିଲେ ମଣିବ ନିଜ ଜନନୀ ସମାନ ।
ଏହିରୂପେ କ୍ଷତ୍ରିୟର ସ୍ୱଧର୍ମ ଅଟଇ
ବାଣିଜ୍ୟକୁ ବୈଶ୍ୟଙ୍କର ନିଜଧର୍ମ କହି ।
ଶୂଦ୍ରମାନଙ୍କର ବିପ୍ର ସେବାରୁ ଅଧିକ
ଧର୍ମ ନାହିଁ ଜାଣ ଆହେ ନରଙ୍କ ନାୟକ ।
ସନ୍ନ୍ୟାସୀ ଯେ ହୁଏ ସେହୁ ଶ୍ରୀହରିଙ୍କଠାରେ
ସକଳ ବିଷୟ ନ୍ୟାସ କରି ଆନନ୍ଦରେ ।
ରକ୍ତ ବସନ ଦଣ୍ଡ କମଣ୍ଡଳୁ ଧରି
ଭ୍ରମଣ କରଇ ନାନା ସ୍ଥାନେ ବୁଲି କରି ।
ବିଦ୍ୟାଦାନ ନ ଦିଅଇ କାହାକୁଟି ସେହି
ଆବର ସ୍ଥିର ହୋଇଣ ନ ରହଇ କାହିଁ ।
ଆନତୁଲ୍ୟ ସଙ୍ଗୀ ନୋହି ଭିକ୍ଷା ମାଗୁଥାଏ
ଲୁବଧ ପଦାର୍ଥ ହରଷ ମନେ ବସି ଖାଏ ।

ଏହିରୂପେ ଭିନ୍ନ ଭିନ୍ନ ଧର୍ମର ପ୍ରକାର
କରାଇ ଅଛନ୍ତି ଧାତା ଆହେ ନୃପବର ।
ଜଗତ ଜନଙ୍କ ମଧ୍ୟରେ ଶ୍ରେଷ୍ଠ ତ ଆପଣ
ନିଜପୁରେ ଯାଅ ମାନି ମୋହର ବଚନ ।
ଏରୂପେ ଶଚୀଙ୍କଠାରୁ ଶୁଣି ନୃପବର
କହିଲେ ତାହାଙ୍କୁ ପୁଣି ନମ୍ରକରି ଶିର ।
ବୋଇଲେ ଗୋ ଦେବୀ ତୁମ୍ଭେ କହିଲଯେ ତତ୍ତ୍ୱ
ସମ୍ପୂର୍ଣ୍ଣ ରୂପରେ ତାହା ଅଟେ ସିଦ୍ଧାନ୍ତ ।
ବେଦର ଯଥାର୍ଥ ସାର କହୁଅଛୁ ଶୁଣ
ସକଳ ବିଷୟେ କର୍ମ ଅଟଇ କାରଣ ।
ପୁଣ୍ୟକ୍ଷେତ୍ରେ ଭାରତରେ ହେବା ମାତ୍ରେ ଜାତ
ବିଷ୍ଣୁଙ୍କ ମାୟାରେ ଜୀବ ହୋଇଣ ମୋହିତ ।
ବିଷୟ ଭୋଗରେ ମନଦେଇ ନିରନ୍ତରେ
ଶ୍ରୀହରିଙ୍କ ଉପାସନା କରି ନ ପାରେ ।
ନିଜ କର୍ମ ପ୍ରଭାବରେ ବହୁ ତପ କରି
ସ୍ୱର୍ଗକୁ ଆସିଣ ଭୋଗ କରେ ସ୍ୱର୍ଗ ପୁରୀ ।
ମନୁଷ୍ୟ ଶରୀର ଗୁଡ଼ି ଦିବ୍ୟ ଶରୀରରେ
ନାନାବିଧ ସୁଖ ଭୁଞ୍ଜି ରହେ ଆନନ୍ଦରେ ।
ଅନେକ କାଳରୁ ତପ କରିବାରୁ ମୁହିଁ
ଆସିଲି ସ୍ୱର୍ଗ ପୁରକୁ ନିଜ ଦେହ ବହି ।
ଏବେ କେଉଁ ପୁଣ୍ୟବଳେ ତୁମ୍ଭର ଦର୍ଶନ
ଲଭିଲି ବୋଲି କରି ଭାବୁଅଛୁ ମନ ।
ସକଳ ଭୋଗରେ ସ୍ତ୍ରୀ ଭୋଗ ଅଟେ ସାର
ସ୍ତ୍ରୀଙ୍କ ଯୋଗରେ ବନ୍ଧି ରହିଛି ସଂସାର ।
ଏ ଅଟଇ ସ୍ୱର୍ଗପୁର ସୁଖଭୋଗ ସ୍ଥାନ
ଭୋଗ ବିନା ତୃପ୍ତିକର ନ ହୁଅଇ ଆନ ।
ରସିକା କାମିନୀ ତୁମ୍ଭେ ଭାବବିଶାରଦା
ତ୍ରୈଲୋକ୍ୟେ ନ ଥିବ ତୁମ୍ଭ ସମାନ ପ୍ରମଦା ।
ସ୍ୱାମୀ ବିହୀନ ଅଟଇ ଯେ ଭୋଗ୍ୟ ପଦାର୍ଥ
ତାକୁ ତ୍ୟାଗ କରିବାର ଅଟେ ଅଯଥାର୍ଥ ।
ଅବିରୋଧ ସୁଖତ୍ୟାଗୀ ହୁଏ ଯେଉଁ ନର
ପଶୁତୁଲ୍ୟ ବୋଲି ତାକୁ ମନରେ ବିଚାର ।
ଆଗୋ ଶରଚ୍ଚନ୍ଦ୍ରାନନା ଅବିଳମ୍ବେ ଯାଇ
ରତିସୁଖ କର ଶଯ୍ୟା ଯତନେ ସଜାଇ ।
ଦୈଧଭାବ ତ୍ୟାଗକରି ମନରୁ ତୁମ୍ଭର
ମୋ ସଙ୍ଗରେ କ୍ରୀଡ଼ା କରି ସୁଖେ କାଳ ହର ।

ଜଗତରେ ଯେତେ ଦ୍ରବ୍ୟ ଅଟଇ ଦୁର୍ଲ୍ଲଭ
ତୁମ୍ଭ ଆଜ୍ଞା ପରମାଣେ ଅଣାଇବି ସବ ।
ପତିରୂପେ ଯେବେ ମୋତେ କରିବ ବରଣ
ତୁମ୍ଭର କାମନା ପୂର୍ଣ୍ଣ କରିବି ମୁଁ ଜାଣ ।
ଏମନ୍ତ ବୋଲି ନହୁଷ ଶଚୀଦେବୀଙ୍କର
ପାଦରେ ପଡ଼ି ପ୍ରଣାମ କଲେ ବାରମ୍ବାର ।
ତାହା ଶୁଣି ଶଚୀଦେବୀ ବିରସ ହୋଇଲେ
ଶ୍ରୀହରିଙ୍କୁ ମନେ ମନେ ସୁମରଣା କଲେ ।
ସେ ଅନ୍ତେ ରାଜାଙ୍କୁ ସେହିଁ ବୋଇଲେ ହେ ନୃପ
ତୁମ୍ଭ କଥା ଶୁଣି ମୋର ବଢ଼ୁଅଛି ତାପ ।
ଅଚେତନ ମୂର୍ତ୍ତି ଅଟେ ଯେବଣ ମନୁଷ୍ୟ
ତା କଥାରେ କେବେହେଲେ ନ ରହେ ବିଶ୍ୱାସ
ମଦ୍ୟପ କାମୁକ ଲୋକ ମୃତ୍ୟୁମୁଖେ ପଡ଼ି
ଧିରେ ହେଲେ ବିଳାସରେ ରହିଥାଏ ଚିତ୍ତ ।
ଯଥାର୍ଥରେ ତୁମ୍ଭର ମୁଁ ଜନନୀ ସଦୃଶ
ମୋଠାରେ ଆସକ୍ତ କିମ୍ପା କରୁଛ ମନ ।
ପ୍ରଥମ ଋତୁ ଦିବସ ହୋଇଅଛି ମୋର
ମହାପାପ ଅଟେ ମୋତେ ସ୍ପର୍ଶ କରିବାର ।
ପ୍ରଥମ ଋତୁରେ ସ୍ତ୍ରୀ ଅଟଇ ଚଣ୍ଡାଳୀ
ଦ୍ୱିତୀୟ ଦିବସେ ମ୍ଲେଚ୍ଛକନ୍ୟାଠାରୁ ବଳି ।
ଅସ୍ପୃଶ୍ୟ ଅଟଇ ପୁଣି ତୃତୀୟ ଦିନରେ
ରଜକୀ ସଦୃଶ ଅଟେ ଶାସ୍ତ୍ର ଅନୁସାରେ ।
ଚତୁର୍ଥ ଦିନରେ ଅଳ୍ପଶୁଦ୍ଧ ହୋଇଥାଏ
କେବଳ ନିଜ ପତିର ସଙ୍ଗମକୁ ପାଏ ;
ପରପୁରୁଷ ପକ୍ଷରେ ଶୂଦ୍ରସ୍ତ୍ରୀ ସମାନ
ହୁଅଇ ସେ ସ୍ତ୍ରୀ ଆହେ ନହୁଷ ରାଜନ ।
ରଜସ୍ୱଳା କାମିନୀଙ୍କୁ ପ୍ରଥମ ଦିନରେ
ଗ୍ରହଣ କରଇ ଯେଉଁ ଲୋକ ଅବିଚାରେ ।
ବ୍ରହ୍ମହତ୍ୟା ପାତକରେ ଲିପ୍ତ ହୋଇ ସେହି
ଦେବତା ପିତୃକାର୍ଯ୍ୟକୁ ଯୋଗ୍ୟ ନ ହୁଅଇ ।
ଦ୍ୱିତୀୟ ଦିନରେ ସ୍ପର୍ଶ କରନ୍ତେ ଗୋବଧ
ପାପ ଭୋଗ କରିବାକୁ ହୋଇଥାଏ ବାଧ୍ୟ ।
ଅମନୁଷ୍ୟ ସଣ୍ଢ଼ହୀନ ପୁରୁଷଟି ସେହି
ଏମନ୍ତ ଅଙ୍ଗିରା ମୁନି ଶାସ୍ତ୍ରେ ଛନ୍ତି କହି ।
ତୃତୀୟ ଦିନରେ ରଜସ୍ୱଳା ଭାର୍ଯ୍ୟାକୁ
ଛୁଇଁଲେ ଲଭଇ ଲୋକ ବାଳକ ହତ୍ୟାକୁ ।

ଚତୁର୍ଥ ଦିନରେ ପତିବ୍ରତା ଆନ କେହି
ସଙ୍ଗମ କଲେ ନରକେ ପଡ଼ଇ ସେ ଯାଇ ।
ତୁମ୍ଭର ମନ୍ତ୍ର ସମାନ ହୋଇଲେହେଁ ମୁହିଁ
ଯେବେ ମୋର ସଙ୍ଗ ଇଚ୍ଛା କର ନରସାଇଁ ।
ତେବେ ଋତୁ ଶେଷଦିନେ କରିବ ଗମନ
ଛାଡ଼ ତ ନାହିଁ ତୁମ୍ଭର ମୂର୍ଖ ଅଭିମାନ ।
ଏରୂପେ ଶଚୀଦେବୀଙ୍କ ବଚନକୁ ଶୁଣି
ହସିକରି ରାଜା ତାଙ୍କୁ କହିଲେ ଏ ବାଣୀ ।
ବୋଇଲେଗୋ ଦେବୀ ତୁମ୍ଭେ ସ୍ୱର୍ଗସ୍ତ୍ରୀ ହୋଇ
ଅଶୁଦ୍ଧ ହେଲ କିରୂପେ କହ ତା ବତାଇ ।
ମନୁଷ୍ୟ ପକ୍ଷରେ ସ୍ୱର୍ଗପୁର ସ୍ତ୍ରୀମାନେ
ଶୁଦ୍ଧ ଅଟନ୍ତି ସର୍ବଦା ଶୟନେ ଭୋଜନେ ।
କର୍ମକ୍ଷେତ୍ର ଅଟେ ବୋଲି ଭାରତବର୍ଷ
ତହିଁରେ ରଜସ୍ୱଳାକୁ ଛୁଇଁବାର ଦୋଷ ।
ତଥାପି ବୈଷ୍ଣବଙ୍କର ସେ ଦୋଷ ନୁହଇ
ବ୍ରହ୍ମତେଜ ବଳେ ସବୁ ଭସ୍ମହୋଇ ଯାଇ ।
ଯେଉଁରୂପେ ଅନଳରେ ଶୁଷ୍କକାଷ୍ଠ ତୃଣ
ପଡ଼ିବା ମାତ୍ରେକ ଭସ୍ମହୁଏ ତତକ୍ଷଣ ।
ସେହିପରି ବୈଷ୍ଣବଙ୍କ ତେଜ ପ୍ରଭାବରେ
ପାପରାଶି ଦଗ୍ଧହୁଏ କ୍ଷଣିକ କ୍ଷଣରେ ।
ଅଗ୍ନି ସୂର୍ଯ୍ୟ ତେଜୋମୟ ଦ୍ୱିଜରୁ ଅଧିକ
ଅଟଇ ସବୁସ୍ଥାନରେ ବିଷ୍ଣୁଭକ୍ତ ଲୋକ ।
ବୈଷ୍ଣବଙ୍କୁ ରଖିବାକୁ ଚକ୍ର ସୁଦର୍ଶନ
କରୁଥାଏ ଆକାଶରେ ସର୍ବଦା ଭ୍ରମଣ ।
ବୈଷ୍ଣବଙ୍କ ସମ୍ବନ୍ଧରେ କର୍ମର ବନ୍ଧନ
କେଉଁଠାରେ ନାହିଁ ଆଗୋ ରାଣୀଙ୍କ ବର ।
ସ୍ୱଇଚ୍ଛାରେ ବଇଷ୍ଣବ ଭୋଗ କରିପାରେ
କର୍ମର ସମ୍ବନ୍ଧ ଯୋଗ ନୁହଇ ତହିଁରେ ।
କୌଥୁମ ସାମବେଦରେ ଅଛି ଏହିପରି
ବୃଦ୍ଧ ତୁମ୍ଭ ଇଚ୍ଛାହେଲେ ଗୁରୁଙ୍କୁ ପଚାର ।
ପରମ ବୈଷ୍ଣବ ଆମ୍ଭେ ଚନ୍ଦ୍ରବଂଶେ ଜାତ
ହୋଇଅଛୁ ଏହିକଥା ଜଗତରେ ଖ୍ୟାତ ।
ଶ୍ରୀହରିଙ୍କ ବିନା ଅନ୍ୟ ଦେବତାଙ୍କଠାରେ
ଭକ୍ତି ନ କରନ୍ତି ଚନ୍ଦ୍ରବଂଶ ଜାତ ନରେ ।
ବ୍ରହ୍ମା ବିଷ୍ଣୁ ଶଙ୍କରଙ୍କୁ ଛାଡ଼ିକରି ମୁହିଁ
ଅନ୍ୟ ଦେବତାଙ୍କ ବଳେ କଣିପାରେ ସେହି ।

ଏବେ ତୁମ୍ଭେ ବେଗହୋଇ ନିଜପୁରେ ଯାଅ
ଋତୁଶେଷ୍ୟା କରି ସଜହୋଇ ରହିଥାଅ ।
ଅଳପ ସମୟ ପରେ ତୁମ୍ଭ ଭବନକୁ
ଯିବି ନିଶ୍ଚୟ ବତାଇ କହିଲି ତୁମ୍ଭଙ୍କୁ ।
ଋତୁ ପାପଠାରୁ ଭୟ କରୁଅଛ ଯାହା
ସେ ପାପ ହୋଇବ ମୋର ଜାଣଗୋ ସୁଦେହା ।
ତୁମ୍ଭେ ତ ତହିଁରୁ ଭୋଗ ନ କରିବ କିଛି
ସ୍ୱୟେ ଛାଡ଼ି ଘରକୁ ଯାଅ ମୁଁ ବୋଲୁଛି ।
ଏପରି କହି ନହୁଷ ରାଜନ ସେକାଳେ
ରତ୍ନ ବିମାନରେ ବସି ନନ୍ଦନକୁ ଗଲେ ।
ଶଚୀଦେବୀ ସେହିଠାରୁ ବୃହସ୍ପତିଙ୍କର
ସମୀପକୁ ଗଲେ ଭୟେ ହୋଇଣ ଅସ୍ଥିର ।
ଦେଖିଲେ କୁଶ ଆସନେ ବସି ଦୂରଗୁରୁ
ବ୍ରାହ୍ମଣ ତେଜରେ ଦିଶୁଛନ୍ତି ଅତି ଗୁରୁ ।
ହସ୍ତେ ଜପାମାଳା ଘେନି ଶ୍ରୀକୃଷ୍ଣଙ୍କୁ ଶରେ
ଧ୍ୟାନ କରୁଛନ୍ତି ନେତ୍ର ବୁଜିଣ କଷ୍ଟେତେ ।
ଦେଖି ତାଙ୍କୁ ମହାସତୀ ଭକ୍ତିଭରେ ଯାଇ
ପ୍ରଣାମ କଲେ ପାଦରେ ମସ୍ତକ ଲଗାଇ ।
ସେ ଅନ୍ତରେ କରଯୋଡ଼ି ଦୁଃଖିତ ମନରେ
ସ୍ତୁତି ଆରମ୍ଭିଲେ ନୀର ରଖି ନୟନରେ ।
ବୋଇଲେ ହେ ମହାଭାଗ ଭକତ ବତ୍ସଳ
ଶରଣ ପଶୁଛି ଏବେ ମୋତେ ପ୍ରତିପାଳ ।
ଦୁର୍ବଳ ହେଉ ଅଥବା ହେଉ ବଳବନ୍ତ
ଶିଷ୍ୟଙ୍କୁ ରକ୍ଷା କରିବା ଅଟଇ ଉଚିତ ।
ବିପଦେରେ ଶିଷ୍ୟପୁତ୍ର ଭାର୍ଯ୍ୟାଙ୍କଠାରେ
ସ୍ତୁତି ନ କରନ୍ତି କେବେ ଜ୍ଞାନବନ୍ତ ନରେ ।
ଆହେ ଗୁରୁଦେବ ତୁମ୍ଭେ ଆପଣା ଶିଷ୍ୟଙ୍କୁ
ରାଜ୍ୟଭ୍ରଷ୍ଟ କରିଇଲ ଦେଖିଣ ଦୋଷକୁ ।
ପାଇଲେ ତ ଉପଯୁକ୍ତ ଦଣ୍ଡ ଏବେ ସେହି
କ୍ରୋଧ ଶାନ୍ତକର ଏବେ ବିମୁଖ ନ ହୋଇ ।
ସକଳ ସମ୍ପଦ ଶୂନ୍ୟ ହେଲ ସ୍ୱର୍ଗପୁର
ଦସ୍ୟୁଗଣ ଆସି ବଳେ କଲେ ସବୁ ଚୁର ।
ଅନାଥା ହୋଇଣ ମୁହିଁ ମହା ସଙ୍କଟରେ
ପଡ଼ିଅଛି ଉଦ୍ଧାରଣ ରଖ ମୋତେ ବାରେ ।
ଶିଷ୍ୟଙ୍କୁ ଅଣାଇ ପାଦ ସେବାରେ ନିଯୁକ୍ତ
କରିଅ ପ୍ରସନ୍ନ ହୋଇ ଆହେ ତପୋବନ୍ତ ।

ପିତା ମାତା ଅନ୍ନଦାତା ଆଦି ଯେତେ ଲୋକ
ସମସ୍ତଙ୍କଠାରୁ ଗୁରୁ ଅଟନ୍ତି ଅଧିକ ।
କରନ୍ତି ଯେ ଅକାତରେ ମନ୍ତ୍ର ଉଦଗୀରଣ
ଗୁରୁ ବୋଲି ତାଙ୍କୁ କହିଥାନ୍ତି ସଜ୍ଜନ ।
ଅଜ୍ଞାନ-ତମିରେ ଅନ୍ଧ ହେବାର ଲୋକକୁ
ଯେ ଚକ୍ଷୁ ଫିଟାନ୍ତି ଦେଇ ଜ୍ଞାନ-ଅଞ୍ଜନକୁ ।
ସେ ଗୁରୁଙ୍କ ଶ୍ରୀଚରଣେ କୋଟି ନମସ୍କାର
ଅପାର ଅଟଇ ଦିବ୍ୟ ମହିମା ତାଙ୍କର ।
ଅପଣ୍ଡିତ ମୂର୍ଖ ହୋଇ ରହେ ଯେଉଁ ନର
ନୁହଇ କେବଣମତେ ନିସ୍ତାର ତାହାର ।
ବିଦ୍ୟା ମନ୍ତ୍ର ଜ୍ଞାନଦାତା ସାଧୁ ଯେଉଁ ଗୁରୁ
ଶିଷ୍ୟକୁ ରକ୍ଷା କରଇ ସଙ୍କଟ ମୁଖରୁ ।
ଅଭୀଷ୍ଟ ଦେବତା ରୁଷ୍ଟ ହେବା ସମୟରେ
ଉତ୍ତମ ଗୁରୁ ନିଶ୍ଚୟ ରକ୍ଷ କରିପାରେ ।
ଗୁରୁ କ୍ରୋଧକଲେ ତାଙ୍କୁ ସାନ୍ତ୍ୱନା ଦେବାକୁ
ଇଷ୍ଟଦେବ ମଧ୍ୟ ରଖି ନ ପାରେ ଧୈର୍ଯ୍ୟକୁ ।
ଯାହାଠାରେ ଦେବ ଦ୍ୱିଜ ଗ୍ରହ ଯକ୍ଷ ରକ୍ଷ
ନିଶାଚର ଆଦି ସର୍ବେ ହୁଅନ୍ତି ବିମୁଖ ।
ଯେଉଁଲୋକ ଗୁରୁଠାରେ ଦ୍ରୋହକର୍ମ କରେ
ଘାତୁକ କୃତଘ୍ନ ଶଠ ବୋଲାଏ ଲୋକରେ ।
ଯଶ ସୁଖ ଐଶ୍ୱର୍ଯ୍ୟ ପୁତ୍ର ଦାର ଧନ
ନୁହନ୍ତି କେ ଜ୍ଞାନଦାତା ଗୁରୁଙ୍କ ସମାନ ।
ତ୍ରୈଲୋକ ଲୋକର ଗୁରୁ ଶାସନ କରତା
ଅଟନ୍ତି ଏଥିରେ ଜାଣ ନାହିଁ କିଛି ଚିନ୍ତା ।
ପୂର୍ବଜନ୍ମ ସମ୍ବନ୍ଧରୁ ବିଦ୍ୟାଗୁରୁ ପତି
ପତ୍ନୀ ବନ୍ଧୁ ଆସି ନିଜେ ପ୍ରକାଶ ହୁଅନ୍ତି ।

ବ୍ରାହ୍ମଣ ମଧ୍ୟରେ ଶ୍ରେଷ୍ଠ ଅଟ ଆହେ ଦେବ
ତୁଷ୍ଟହୋଇ ଆମ୍ଭଠାରେ ରଖ ସ୍ନେହଭାବ ।
ତୁମ୍ଭର ସନ୍ତୋଷ ହେଲେ ଚନ୍ଦ୍ର ଦେବଗଣ
ପ୍ରସନ୍ନ ହୋଇବେ ଆହେ ଗୁରୁଦେବ ଜାଣ ।
ଏମନ୍ତ ବୋଲିଲେ ଶଚୀ ବୃହସ୍ପତିଙ୍କର
ଆଗେ ଉଭାହେଲେ ନେତ୍ରୁ ବୁହାଇଣ ନୀର ।
ତାହା ଦେଖି ତାରାଦେବୀ ଅଧୀର ହୋଇଲେ
ଦୋଷ କ୍ଷମାକର ବୋଲି ପତିଙ୍କୁ କହିଲେ ।
ବୃହସ୍ପତି ବୋଇଲେ ଗୋ ତାରାଦେବୀ ତୁମ୍ଭେ
ସ୍ଥିର ହୁଅ ସବୁକଥା ବୁଝିଲୁଣି ଆମ୍ଭେ ।
ଶଚୀ ଦେବୀଙ୍କର ଶୁଭ ହୋଇବ ସକଳ
ବିଜେହେଲେ ସ୍ୱର୍ଗରାଜ୍ୟ ଦେବ ଆଖଣ୍ଡଳ
ଏମନ୍ତ କହିଣ ଗୁରୁ ସନ୍ତୁଷ୍ଟ ହୋଇଲେ
ତାରକା ଶଚୀ ଦୁହିଙ୍କୁ ପ୍ରବୋଧନା କଲେ ।
ଶଚୀକୃତ ସ୍ତୋତ୍ର ପୂଜାକଲେ ଯେ ପଢ଼ଇ
ଅଭୀଷ୍ଟ ଦେବତାଙ୍କର ପ୍ରିୟ ସେ ହୁଅଇ ।
ଆବର ଖେଚର ଗ୍ରହ ଯକ୍ଷ ରକ୍ଷ ଆଦି
ପ୍ରସନ୍ନ ହୁଅନ୍ତି ତାର ମଙ୍ଗଳ ସମ୍ପାଦି ।
ପୁତ୍ର ଧନ ଯଶ ଇଚ୍ଛା କରିଥାଏ ଯେହି
ଯଥା ସମୟରେ ତାକୁ ନିଶ୍ଚୟ ମିଳଇ ।
ଇହ ଲୋକରେ ସକଳ ସୁଖ ଭୋଗ କରି
ଅନ୍ତଃକାଳେ ବସେ ଯାଇ ଶ୍ରୀହରିଙ୍କ ପୁରୀ ।
ଶଚୀକୃତ ସ୍ତବ ଅଟେ ଦେବେ ଅଗୋଚର
ପଢ଼ିଲେ ଶୁଣିଲେ ତୁଟେ ପାତକ ସକଳ ।
ଏଥିଠାରେ ଦର୍ପଭଙ୍ଗ ସୁରପତିଙ୍କର
ସମାପତ ହେଲା ଗୀତେ କହେ କ୍ଷେତ୍ର ସ୍ମର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଇନ୍ଦ୍ରଙ୍କର ଗର୍ବଖର୍ବ ଓ ଶଚୀଙ୍କ
କର୍ତ୍ତୃକ ଗୁରୁସ୍ତୁତି କଥନେ ନାମ ଊନଷଷ୍ଟିତମୋଽଧ୍ୟାୟଃ ।

—*—*—

## ଷଷ୍ଟିତମ ଅଧ୍ୟାୟ

## ନହୁଷଙ୍କ ପ୍ରତି ଋଷିମାନଙ୍କର ଶାପ ଓ ଇନ୍ଦ୍ରଙ୍କର ମୁକ୍ତି କଥନ

ନାରାୟଣ ବୋଇଲେ ହେ ଶୁଣ ମହାଯତି
ଶଚୀଦେବୀଙ୍କର ସ୍ତୋତ୍ର ଶୁଣି ବୃହସ୍ପତି ।
ବୋଇଲେଗୋ ବତ୍ସେ ତୁମ୍ଭେ ତ୍ୟାଗକର ଭୟ
ଅବଶ୍ୟ ହେବ ତୁମ୍ଭର ମଙ୍ଗଳ ଉଦୟ ।

ବାନ୍ଧବ ଅଟନ୍ତି ମୋର ପୁତ୍ରର ସମାନ
ପୁତ୍ରବନ୍ଧୁ ଅଟ ତୁମ୍ଭେ ବୋଲି ମନେ ଘେନ ।
ପୁତ୍ର ଶିଷ୍ୟ ଦୁହିଁଙ୍କର ଭେଦ କିଛି ନାହିଁ
ବେଦଶାସ୍ତ୍ରେ ଏହା ନିରୂପିତ ଅଛି ହୋଇ ।
ପିତା ମାତା ପତ୍ନୀ ଗୁରୁ ଅନାଥ ବାନ୍ଧବ
ଆବର ପୁତ୍ର ଯେ ଭକ୍ତ ଶିଷ୍ୟଜନ ସବ ।
ଏମାନଙ୍କୁ ପୋଷିବାର ଅଟଇ ଉଚିତ
ନୋହିଲେ ଜଗତେ ନିନ୍ଦା ମିଳଇ ବହୁତ ।
ନ ପୋଷିବା ଲୋକ ଅଟେ ଧର୍ମ ବିଦ୍ୱେଷକ
ଦେବତା ପିତୃକାର୍ଯ୍ୟରେ ନୁହଇ ନାୟକ ।
ଅଯଶ ହୁଅନ୍ତି ନାନା ବିଘ୍ନ ଜାତ ହୋଇ
କଷ୍ଟ ଦେଉଥାନ୍ତି ତାଙ୍କୁ ଶତ୍ରୁ ପ୍ରାୟ ହୋଇ ।
ସମ୍ପଦରେ ମତ୍ତ ହୋଇ ନିଜ ଗୁରୁଙ୍କର
ଅପମାନନା କରଇ ଯେ ନ କରି ବିଚାର ।
ତାର ସକଳ ସମ୍ପଦ ବିନାଶ ହୁଅଇ
ସନ୍ଦେହ ଏଥିରେ ନାହିଁ ଜାଣ କହୁଥାଇ ।
ସଭାରେ ମୋତେ ଦେଖିଲେ ହେଲେ ସୁରପତି
ଆସନରୁ ନ ଉଠିଲେ ଦେଖାଇ ସମ୍ପତ୍ତି ।
ସେ ଯେଉଁ ତହିଁର ଫଳ ଭୋଗ କଲେ ଜାଣ
ଏବେ ତୁମ୍ଭ ବାକ୍ୟେ ତାଙ୍କୁ କରିବ ମୋଚନ ।
ତୁମ୍ଭେ ଅଟ ସତୀ ସ୍ତ୍ରୀଏ ମନ୍ତ୍ରକମନ୍ତ୍ରଣା
ଶୁଦ୍ଧ ହୋଇବ ତୁମ୍ଭର ନ କର ଭାବନା ।
ଯାହାର ମନରେ ଶୁଦ୍ଧଭାବ ରହିଥାଏ
ଯଥାର୍ଥ କେବେ ତାହାର ବିନାଶ ନ ହୁଏ ।
ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ ସମାନ କୃଷ୍ଣେ ବି
ତୁମ୍ଭର ଅଛଇ ବୋଲି ମାନସରେ ଭାବ ।
ସେ ସକାଶୁ ତୁମ୍ଭଠାରେ ଦ୍ରୋହ କର୍ମ କରି
ଅଳ୍ପକାଳେ ନାଶଯିବ ନର ଦଣ୍ଡଧାରୀ ।
ଏହିରୂପେ ବୃହସ୍ପତି କହୁଥିଲେ ବସି
ନହୁଷ ରଜାଙ୍କ ଦୂତ ମିଳିଗଲା ଆସି ।
ଗୁରୁଙ୍କ ପାଶରେ ଶଚୀଦେବୀଙ୍କୁ ଅନାଇଁ
ଜଣା କରାଇଲା ଭୟେ ହୃଦୟ କମ୍ପାଇ ।
ବୋଇଲା ଗୋ ଦେବୀ ତୁମ୍ଭେ ବେଗ ହୋଇଯାଅ
ନହୁଷ ରଜାଙ୍କ ପାଶେ ଉପସ୍ଥିତ ହୁଅ ।
ତୁମ୍ଭ ସଙ୍ଗେ କ୍ରୀଡ଼ା କରିବାକୁ ନରପତି
ନନ୍ଦନ କାନନେ ବସି ଅନାଇଁ ଅଛନ୍ତି ।

ତାହା ଶୁଣି ବୃହସ୍ପତି କ୍ରୋଧଭର ହୋଇ
ବୋଇଲେ ରେ ଦୂତ ଏବେ ନହୁଷକୁ ଯାଇ ।
ବୋଲିବୁ ଶଚୀଙ୍କୁ ଯେବେ ଭୋଗ କରିବାକୁ
ଇଚ୍ଛା ଅଛି ତେବେ ଚଢ଼ି ଋଷିଶିବିକାକୁ ।
ସପ୍ତଋଷିଙ୍କ କାନ୍ଧେ ବୁହାଇଣ ତାହା
ରତି ମନ୍ଦିରେ ପ୍ରବେଶ ହୁଅ ନରନାହା ।
ଏହିରୂପ ଶୁଣି ଦୂତ ବେଗ ହୋଇଗଲା
ନହୁଷ ରଜାଙ୍କୁ ସବୁ ବୁଝାଇ କହିଲା ।
ଶୁଣିଣ ନୃପତି ବେଗେ କିଙ୍କରଙ୍କୁ ରଇ
ବୋଇଲେ ସପ୍ତଋଷିଙ୍କୁ ଡାକିଆଣ ଯାଇ ।
ଆଜ୍ଞା ପ୍ରମାଣେ କିଙ୍କର ତହୁଁ ଚାଲିଗଲା
ରଜାଙ୍କ ଆଦେଶ ମୁନିମାନଙ୍କୁ କହିଲା ।
ତାହା ଶୁଣି ଆନନ୍ଦିତ ହୋଇ ମୁନିଗଣ
ରଜାଙ୍କ ପାଶେ ପ୍ରବେଶ ହେଲେ ତତକ୍ଷଣ ।
ସେମାନଙ୍କୁ ଦେଖି ରଜା ପାଦତଳେ ପଡ଼ି
ଜଣାଇଲେ ତାହାଙ୍କର ଆଗେ କରଯୋଡ଼ି ।
ଆବର ବୋଇଲେ ଆହେ ବ୍ରହ୍ମଋଷି ଗଣ
ଆପଣମାନେ ଅଟନ୍ତି ବ୍ରହ୍ମାଙ୍କ ନନ୍ଦନ ।
ନାରାୟଣ ପରାୟଣ ଅଟନ୍ତି ସମସ୍ତେ
ଆପଣଙ୍କପରି କେହି ନ ଥିବେ ଜଗତେ ।
ଏମନ୍ତ ବୋଲି ନେଉରୁ ବୁହାଇଣ ମାର
ରହିଲେ ମୌନବ୍ରତ ହୋଇ ସେ ନରଈଶ୍ୱର ।
ତାହା ଦେଖି ମୁନିମାନେ ଦୟାପର ହୋଇ
ବୋଇଲେ ରାଜନ ଭୟ କରୁଛ କିମ୍ପାଇ ।
ଇନ୍ଦ୍ରତ୍ୱ ବା ମନୁଷ୍ୟତ୍ୱ ଦେବତ୍ୱ ତୁମ୍ଭର
ଇଚ୍ଛା ଥିଲେ ମାଗ ଆମ୍ଭେ ଦେଇଯିବୁଁ ବର ।
ନୋହିଲେ ବା ଶ୍ରୀକୃଷ୍ଣଙ୍କ ଭକ୍ତି ପାଇବାକୁ
ଇଚ୍ଛା କି କହ ଏବେ ନ କର ହେଳାକୁ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଧର୍ମ ଆଦି ଯେତେ
ଶ୍ରୀକୃଷ୍ଣ ଚରଣ ସେବା କରନ୍ତି ସମସ୍ତେ ।
ଶ୍ରୀକୃଷ୍ଣ ସେବାରୁ ବଳି କଥା ଆଉ ନାହିଁ;
ଇଚ୍ଛା ଥିଲେ ମାଗ ଦେବୁଁ ଆହେ ନରସାଇଁ ।
ଏରୂପେ ମୁନିଙ୍କଠାରୁ ଶୁଣି ନରବର
ଲଜ୍ଜାରେ ମସ୍ତକ ପୋତି କହିଲେ ଉତ୍ତର ।
ବୋଇଲେ ହେ ମୁନିଗଣ ତୁମ୍ଭର କୃପାରେ
ସକଳ ସମ୍ପଦ ପୂର୍ଣ ଅଛି ମୋହଠାରେ ।

ଏବେ ଦୟାକରି ମୋତେ ଶଚୀଙ୍କର ସଙ୍ଗ
ଦିଅ କାମଶରେ ଦଗ୍ଧ ହେଉଛି ମୋ ଅଙ୍ଗ ।
ସପ୍ତ ଋଷିଙ୍କ କନ୍ଧେ ଶିବିକା ଚଳାଇ
ନେବାପାଇଁ ଆଜ୍ଞା ଦେଇଅଛନ୍ତି ମୋତେ ସେହି ।
ସେ ସକାଶୁ ଆପଣଙ୍କୁ କରୁଛି ବିନତି
ମୋହର କାମନା ପୂର୍ଣ୍ଣକର ଦେଇ ମତି ।
ତାହା ଶୁଣି ମୁନିବର ଅତି ଉଚ୍ଚେ ହସି
ଭାବିଲେ ରାଜାଙ୍କୁ ହେଲା ବିଷ୍ଣୁମାୟା ଗ୍ରାସି ।
ଏମନ୍ତ ବିଚାରି ସର୍ବେ ଏକମତ ହୋଇ
ବହିଲେ ଶିବିକା ନିଜ ନିଜ କନ୍ଧେ ନେଇ ।
ମଣ୍ଡିହୋଇ ନାନାବିଧ ଅସ୍ତ୍ର ଅଳଙ୍କାରେ
ଗଲେ ନରପତି ବିଜେ ହୋଇଣ ହର୍ଷରେ
ପୂର୍ବରୁ ତ କାମଶରେ ପୀଡ଼ା ପାଇଥିଲେ
ବିଳମ୍ବ ଦେଖି ମୁନିଙ୍କୁ ଭର୍ତ୍ସନା ସେ କଲେ ।
ସହି ନ ପାରିଣ ତାହା ଦୁର୍ବାସା ମହର୍ଷି
ଶାପଦେଲେ ନହୁଷଙ୍କୁ ହୋଇ ମହାରୋଷୀ ।
ବୋଇଲେ ହେ ନରପତି ମୂର୍ଖ ସ୍ୱଭାବରେ
ଆମ୍ଭଙ୍କୁ ଯେ ଗାଳି ଦେଉଅଛ ନିର୍ଦ୍ଦୟରେ ।
ସେ ଦୋଷରୁ ଅଜଗର ସର୍ପ ରୂପ ବହି
ପଡ଼ି ରହିଥାଅ ଜନ ଶୂନ୍ୟ ବନେ ଯାଇ ।
ଧର୍ମପୁତ୍ର ଯୁଧିଷ୍ଠିର ରାଜାଙ୍କ ସହିତ
ସମ୍ଭାଷଣ କରି ଶାପୁଁ ହୋଇବ ମୁକତ ।
ବୈକୁଣ୍ଠପୁରକୁ ଯାଇ ନାରାୟଣଙ୍କର
ସେବା କରିଣ ରହିବ ଆହେ ନୃପବର ।
ଅନେକ ସୁକୃତ ପୂର୍ବେ କରଅଛ ତୁମ୍ଭେ
ନିଷ୍ଫଳ ନୋହିବ ତାହା ଜାଣୁଅଛୁ ଆମ୍ଭେ ।
ଏମନ୍ତ କହି ଦୁର୍ବାସା ବିରତ ହୋଇଲେ
ମୁନିଗଣ ହସି ହସି ଯେଝାସ୍ଥାନେ ଗଲେ
ନହୁଷ ରାଜା ସେକାଳେ ଅଜଗର ହୋଇ
ପଡ଼ିଲେ ମହୀ ଉପରେ ଘୋରବନେ ଯାଇ ।
ଆନନ୍ଦରେ ଶଚୀଦେବୀ ବୃହସ୍ପତିଙ୍କର
ପାଦ ଧରି ଭକ୍ତିଭରେ କଲେ ନମସ୍କାର ।
ସେ ଅନ୍ତରେ ନିଜପୁରେ ପ୍ରବେଶ ହୋଇଲେ
ମନେ ମନେ ଶ୍ରୀହରିଙ୍କୁ ସୁମରଣା କଲେ ।
ତାହା ଦେଖି ବୃହସ୍ପତି ଉଠି ସେହିକ୍ଷଣି
ଗଲେ ଯେଉଁ ସରୋବରେ ଥିଲେ ବଜ୍ରପାଣି ।
ମିଳି ଦେଖିଣ ଉଚ୍ଚନାଦରେ ବୋଇଲେ ହେ ବଜ୍ର
ନିର୍ଭୟ ଭାବରେ କହ କେଉଁଠାରେ ଅଛ ।
ମୁଁ ଅଟଇ ବୃହସ୍ପତି ତୁମ୍ଭ କୁଳଗୁରୁ
ମୋ ବଚନ ଶୁଣି ଉଠିଆସ ସରୋବରୁ ।
ବୃହସ୍ପତିଙ୍କର ବାକ୍ୟ ଶୁଣି ସୁରେଶ୍ୱର
ସୂକ୍ଷ୍ମ ରୂପ ତେଜି ଜଳୁ ହୋଇଲେ ବାହାର ।
ଗୁରୁଙ୍କ ଚରଣତଳେ ଦଣ୍ଡବତ ହୋଇ
ଶୋକ ଧିକାରରୁ କଥା ନ ପାରିଲେ କହି ।
ତାହା ଦେଖି ବୃହସ୍ପତି ବେନିହସ୍ତ ଧରି
ତଳୁ ଉଠାଇଲେ ଅତି ଗଉରବ କରି ।
ଯେ ଅନ୍ତେ ସ୍ୱର୍ଗକୁ ନେଇ ବିଧି ଅନୁସାରେ
ହୋମ ଯାଗ କରାଇଣ ତାହାଙ୍କ ହସ୍ତରେ ।
ରତ୍ନ ସିଂହାସନ କରେ ବସାଇଲେ ନେଇ
ସକଳ ଐଶ୍ୱର୍ଯ୍ୟ ଦାନ କଲେ ତୋଷବହି ।
ବାସବ ପାଇଲେ ପୁଣି ପୂର୍ବର ବିଭୂତି
ତୋଷ ହେଲେ ତାହା ଦେଖି ଦେବବୃହସ୍ପତି ।
ଦେବତାମାନେ ସେ କଥା ଜାଣି ତତକ୍ଷଣେ
ସେବାକଲେ ଆସି ସୁନାସୀରଙ୍କ ଚରଣେ ।
ପତିଙ୍କୁ ପାଇଣ ଶଚୀ ହରଷିତା ହେଲେ
ଏକାନ୍ତରେ ମିଳି ନାନାରଙ୍ଗେ କ୍ରୀଡ଼ାକଲେ ।
ଏହିରୂପେ ଇନ୍ଦ୍ରଙ୍କର ଗର୍ବ ବିମୋଚନ
କହିଲି ଆମୂଳ କରି ଆହେ ତପୋଧନ ।
ଆଉ କି ଶୁଣିବା ଇଚ୍ଛାଥିଲେ ଆହେ ମୁନି
ପଚାର କହିବା ବସି ନ ହୋଇଣ ତୁନି ।
ନାରଦ ବୋଇଲେ ସୋମଯାଗ ବିଧି ଯାହା
ବତାଇଣ ମୋତେ ସବୁ କହ ମୁନିନାହା ।
ନାରାୟଣ ବୋଇଲେ ସେ ଯାଗ ଯେ କରିବ
ବର୍ଷେ ପର୍ଯ୍ୟନ୍ତେ ସୋମରସକୁ ପିଇବ ।
ଆଉରି ବରଷେ ଫଳ ପୁଣି ବର୍ଷେ ଜଳ
ଏହିରୂପେ କଟାଇବ ତିନିବର୍ଷ କାଳ ।
ଯେଉଁଲୋକ ତିନିବାର୍ଷିକ ପୁରାତନ ଧାନ
ରଖିଥିବ ଦେବାପାଇଁ ଭୃତ୍ୟଙ୍କ ବେତନ ।
ସେହିଲୋକ ସୋମଯାଗ ଯୋଗ୍ୟବୋଲି ଜାଣ
ଅଧିକ ଧନଲୋକ ତ ଅଟେ ତହୁଁ ଟାଣ ।
ଦେବତା ଅଥବା ଚକ୍ରବର୍ତ୍ତୀ ରାଜା ଯେହୁ
ଏ ମହାଯାଗକୁ କରିପାରେ ଏକା ସେହୁ ।

ବହୁତ ସମ୍ମାର ବହୁ ସନ୍ଧଣା ହେଉଛିରେ
ଏହା କରି ନ ପାରନ୍ତି ସାଧାରଣ ନରେ ।
ଏହିଠାରେ ଇନ୍ଦ୍ରଙ୍କର ଗରବ ଗଞ୍ଜନ
ଚରିତ କହିଲେ ଗୀତ ଜୈସ୍ବବାସୀ ଧନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନହୁଷଙ୍କ ପ୍ରତି ଋଷିମାନଙ୍କର ଶାପ ଓ ଇନ୍ଦ୍ରଙ୍କର ମୁକ୍ତି କଥନ ନାମ ଷଷ୍ଟି ତମୋଽଧ୍ୟାୟଃ ।



## ଏକଷଷ୍ଟିତମ ଅଧ୍ୟାୟ
## ଇନ୍ଦ୍ରଙ୍କଦ୍ୱାରା ଅହଲ୍ୟାର ସତୀତ୍ୱ ଅପହରଣ

ଏଥୁଅନ୍ତେ ପୁଣି ନାରାୟଣ ମୁନିବର
ନାରଦଙ୍କୁ ଅନାଇଣ କହିଲେ ଏ ଗିର ।
ବୋଇଲେ ବାସବଙ୍କର ଦର୍ପଭଙ୍ଗ ମୁହିଁ
ସାମାନ୍ୟରେ ତୁମ୍ଭ ଆଗ କହିଲି ବତାଇ ।
ଏବେ ଆଉଥରେ ଅନ୍ୟ ପ୍ରକାରରେ ତାହା
କହିବି ସାବଧାନରେ ଶୁଣ ମୁନିନାହା ।
ସମୁଦ୍ର ମନ୍ଥନ କରି ପିଇ ସୁଧାରସ
ବଜ୍ରଘାତେ ବୃତ୍ରସଙ୍କୁ କରିଣ ବିନାଶ ।
ଗର୍ବିତ ହୋଇ ବାସବ କାହାକୁ ନ ଜର
ନ କଲେ ତା ଜାଣି ବଳି ହସ୍ତେ ଦାମୋଦର ।
ଇନ୍ଦ୍ରଙ୍କୁ ପରାସ୍ତ ପୁଣି ରାଜ୍ୟଭ୍ରଷ୍ଟ କଲେ
ସେ ସକାଶୁ ଦେବଗଣ ଅସ୍ତବ୍ୟସ୍ତ ହେଲେ ।
ସେ ଅନ୍ତେ ବୃହସ୍ପତିଙ୍କ ସ୍ତୋତ୍ର ପାଠକରି
ଆବର ଅଦିତିଙ୍କର ବ୍ରତକୁ ଆଚରି ।
ତପୋବଳେ ଶ୍ରୀକୃଷ୍ଣଙ୍କୁ ସନ୍ତୁଷ୍ଟ କରାଇ
ନିଜ ନିଜ ଦୁଃଖ ଜଣାଇଲେ ତାଙ୍କୁ ଯାଇ ।
ତାହା ଶୁଣି ପ୍ରଭୁ ତାଙ୍କଠାରେ ଦୟା କଲେ
ସେ ସକାଶୁ ଦେବଗଣ ଅସ୍ତବ୍ୟସ୍ତ ହେଲେ ।
ବଳକୁ ଦମନ କରି ସ୍ୱର୍ଗ ମର୍ତ୍ତ୍ୟଶିରୀ
ଇନ୍ଦ୍ରଙ୍କୁ ପ୍ରଦାନ କଲେ ପ୍ରଭୁ ନରହରି ।
ସେ ସକାଶୁ ଇନ୍ଦ୍ର ସବୁକଥା ବିସ୍ମରଣ
କରିଣ ଗର୍ବିତ ଭାବ ପ୍ରକାଶିଲେ ପୁଣ ।
ସବୁଠାରୁ ଆପଣାକୁ ଅଧିକ ମଣିଲେ
କାହାକୁ ହେଲେ କିଞ୍ଚିତ ଖାତର ନ କଲେ ।
ଦଇବ ଯୋଗରେ ଦିନେ ଗଉତମଙ୍କର
ଘରଣୀକୁ ଦେଖି ଆଗେ ହରିଲେ ସତ୍ତ୍ୱର ।
ସେ କଥା ଦେଖି ଅତ୍ୟନ୍ତ କ୍ଷୋଭରେ ମୁନି
ଶାପ ଦେଇ କଲେ ଇନ୍ଦ୍ରଦେହ ସଚ୍ଛିଦ୍ର ଯୋନି ।
ମୁନି ଋଷିମାନେ ତାହା ଦେଖିଣ ହସିଲେ
ଦେବତାମାନେ ଲଜ୍ଜାରେ ମସ୍ତକ ପୋତିଲେ ।
ସହସ୍ର ବରଷ ଅନ୍ତେ ସୂର୍ଯ୍ୟ ସେବାକରି
ଉଦ୍ଧାର ହେଲେ ତହିଁରୁ ବୃତ୍ରାସୁର ଅରି ।
କଳଙ୍କ ସ୍ୱରୂପ ତାଙ୍କ ଦେହେ ସହସ୍ର ଚିହ୍ନ
ରହିଲେ ସେ ସହସ୍ରାକ୍ଷ ବୋଲାଇଲେ ଜାଣ ।
ନାରଦ ବୋଇଲେ ଅହଲ୍ୟାଙ୍କୁ ସୁରରାଣି
କିରୂପେ ହରିଲେ ତାହା କହ ତପୋଧନ ।
ନାରାୟଣ ବୋଇଲେ ହେ ପୁଷ୍କର ତୀର୍ଥରେ
ଇନ୍ଦ୍ର ପ୍ରବେଶିଲେ ରହିପର ଦିବସରେ ।
ସେଠାରେ ଅହଲ୍ୟାଙ୍କର ସୌନ୍ଦର୍ଯ୍ୟକୁ ଦେଖି
ମୋହିତ ହେଲେ ସ୍ଥିରତା ନ ପାରିଣ ଆଖି ।
ପରଦିନ ପ୍ରଭାତରେ ପୁଣି ଗଙ୍ଗାଘାଟରେ
ଦେଖିଲେ ସେ ଅହଲ୍ୟାଙ୍କୁ ନିର୍ଜ୍ଜନ ସ୍ଥାନରେ ।
ସ୍ନାନ କରିବା ସକାଶେ ଆସିଥିଲେ ସତୀ
ନ ଥିଲେ ସେ ସମୟରେ କେହି ତାଙ୍କ କତି ।
ସ୍ୱଭାବେ ସୁନ୍ଦରୀ ସ୍ତ୍ରୀ ଅଟନ୍ତି ତ ସେହି
ଶୋଭା ପାଉଥିଲେ ନବ ଯଉବନ ବହି ।
ଅତ୍ୟନ୍ତ ବିପୁଳ ଶ୍ରୋଣୀ ସ୍ତନ ମନୋହର
ଶରତ ଚନ୍ଦ୍ରମା ତୁଲ୍ୟ ଶ୍ରୀମୁଖ ସୁନ୍ଦର ।
ଉଲଗ୍ନ ହୋଇଣ ବାଳା କଲାବେଳେ ସ୍ନାନ
ପଡ଼ିଲା ତାଙ୍କ ଉପରେ ଇନ୍ଦ୍ରଙ୍କ ନୟନ ।
ପଞ୍ଚଶର ଶାୟକରେ ଦେବ ବଜ୍ରପାଣି
ମୂର୍ଚ୍ଛିତ ହୋଇଣ କ୍ଷଣେ ଲୋଟିଲେ ଧରଣୀ ।

ସେ ଅନ୍ତେ ଚେତନା ପାଇ ଅହଲ୍ୟାଙ୍କଠାକୁ
ଧୀରେ ଧୀରେ ଯାଇ ପୁଣି କହିଲେ ତାହାଙ୍କୁ ।
ବୋଇଲେ ତୁମ୍ଭର ରୂପ ଯୌବନ ବୟସ
ଆବର କଟାକ୍ଷ ଦୃଷ୍ଟି ଶୁଭ୍ର ମନ୍ଦହାସ ।
ଶରତ ପଙ୍କଜ ପ୍ରାୟ ବିଶାଳ ଲୋଚନ
ଗଜରାଜ ଖଞ୍ଜରୀଟ ଗଞ୍ଜନ ଗମନ ।
ପୀୟୂଷ ମଧୁର ବାକ୍ୟ ସୁକଠିନ ସ୍ତନ
କ୍ଷଣକେ ମୋହିତ କରିପାରେ ମୁନି ମନ ।
ଏମନ୍ତ ସୁନ୍ଦରୀ ତୁମ୍ଭେ ଅଟ କୁନ୍ଦଦନ୍ତି
ପାଇଲେ ତୁମ୍ଭଙ୍କୁ ଯାହା ଗଉତମ ପତି ।
ଜାଣିଲି ତାହାଙ୍କ ପୂର୍ବ ସୁକୃତ ବହୁତ
ଥିବାରୁ ହୋଇଛ ତୁମ୍ଭେ ତାଙ୍କୁ ପରାପତ ।
ନୋହିଲେ ବା ମହାଲକ୍ଷ୍ମୀ ଦୁର୍ଗା ଧରସ୍ତ୍ରୀ
ଏହାଙ୍କ ସେବାରେ ମୁନି ହେଇ ନିଜମତି ।
ତୁମ୍ଭପରି ରମଣୀର ସଙ୍ଗଲାଭ କଲେ
ସାମାନ୍ୟ ଲୋକକୁ ଏହା ମିଳଇ କି ଭଲେ ।
କିନ୍ତୁ ଆଜ କଥାଟି ଏ କହୁଅଛୁ ଶୁଣ
ନ ଥିବାରୁ ପତିଙ୍କର କାମଶାସ୍ତ୍ର ଜ୍ଞାନ ।
ବିଧିମତେ କାମିନୀକୁ ପାଳନା ନ କରି
ରଖିଥାନ୍ତି ମାତ୍ର ପୋଷା ଜୀବଜନ୍ତୁ ପରି ।
ଗଉତମ ଅଟନ୍ତି ଯେ ଋଷିଗଣବର
କିରୂପେ ଜାଣିବେ କାମଶାସ୍ତ୍ରର ବିସ୍ତର ।
ସ୍ୱର୍ଗପୁରେ ରହି ମୁହିଁ ସୁଧାପାନ କରି
ଅମର ହୋଇଛୁ ଜାଣ ଆଗୋ ସୁକୁମାରି ।
ଉର୍ବଶୀ ମେନକା ଆଦି ଅପସରା ଗଣ
ପ୍ରଶଂସା କରନ୍ତି ଦେଖି ମୋର ଯଉବନ ।
ତୁମ୍ଭେ ଏବେ ଗୌତମଙ୍କୁ ଛାଡ଼ି ଗୋ ସୁନ୍ଦରି
ଆସ ମୋର ପତ୍ନୀ ହୋଇ ଯିବ ସ୍ୱର୍ଗପୁରୀ ।
ତୁମ୍ଭ ଦାସୀ ହୋଇ ଶଚୀ ରହିବେ ସତତ
ଭୋଗ କରିବ ସୁଖରେ ତ୍ରିଭୁବନ ବିତ୍ତ ।
ଜାଣିଲି ଏ ଅଟେ ସିନା ବିଧାତାର ଦୋଷ
ଏମନ୍ତ ସ୍ତ୍ରୀରତ୍ନକୁ ଯୋଡ଼ିଅଛି ସେ ପୁରୁଷ ।
ଏ ରୂପେ କହି ବାସବ ବିରତ ହୋଇଲେ
ତା ଶୁଣି ଅହଲ୍ୟା ତାଙ୍କୁ ବଚନ କହିଲେ ।
ବୋଇଲେ ଆହେ ବାସବ ଅଭାଗ୍ୟରୁ ତୁମ୍ଭେ
ବ୍ରହ୍ମାଙ୍କ ଅଂଶରେ ଜାତ ହେଲି ବୋଲି ଆମ୍ଭେ

ସ୍ତ୍ରୀସଙ୍ଗବଶ ହେବାରୁ ଟି ମାତଠାରୁ ମାନ
ଅଟଇ ତୁମ୍ଭର ବୁଦ୍ଧି ବୃତ୍ତି ମନେ ଘେନ ।
ଯେଉଁ ଲୋକ କାମିନୀଙ୍କୁ ଦେଖି ମୋହ ହୁଏ
ଧର୍ମକର୍ମ ସବୁ ତାର ବୃଥା ହୋଇଯାଏ ।
କାମୁକ ଲୋକଙ୍କ ମନ ମୁଗ୍ଧ କରିବାକୁ
ବିଧାତା ନିର୍ମିତ କରିଅଛନ୍ତି ସ୍ତ୍ରୀଗଣଙ୍କୁ ।
ନୋହିଲେ ସଂସାର ହୋଇ ନ ପାରନ୍ତା ଜାଣି
ସ୍ତ୍ରୀ ପୁରୁଷ ଯୋଗରେ ସୃଷ୍ଟିର ନିର୍ମାଣ ।
ତଥାପି କାମିନୀ ଅଟେ ମାୟା କରଣ୍ଡିକ
ତହିଁରେ ଭୁଲି ନ ଯାଏ ଜ୍ଞାନବନ୍ତ ଲୋକ ।
ମୂର୍ଖମୁଖ ବିଷକୁମ୍ଭ ସହୃଶ କାମିନୀ
ପରିଣାମେ ଦୁଃଖୀ ଜାତ ହୁଏ ତାହା ଘେନି ।
ବିଶେଷରେ ପରସ୍ତ୍ରୀଠାରେ ଯାର ମନ
ଆସକ୍ତ ହୁଅଇ ସେହୁ ଅଟେ ଅତିହୀନ ।
ଇହଲୋକେ ଅପକୀର୍ତ୍ତି ଉପଭୋଗ କରି
ଅନ୍ତଃକାଳେ ନରକରେ ପଡ଼େ ସେହିପରି ।
ଏରୂପେ ଇନ୍ଦ୍ରଙ୍କୁ କହି ସେ ରମଣୀବର
ପତିଙ୍କ ପାଶକୁ ଗଲେ ହୋଇ ତରତର ।
ସକଳ ବୃତ୍ତାନ୍ତ ତାଙ୍କ ଆଗରେ କହିଲେ
ତା ଶୁଣି ଗୌତମ ମୁନି ଉଚ୍ଚେ ହସିଲେ ।
ବାସବର ଦୁର୍ବଳତା ମୁନି ମନେ ଗୁଣି
ଜାଣିଲେ ନୀଚ ପ୍ରକୃତି ଅଟେ ବଜ୍ରପାଣି ।
ଦିନେ ଗଉତମ ମୁନି ଶିବଙ୍କ ପାଶକୁ
ଯାଇଥିଲେ ଦରଶନ କରି ଆସିବାକୁ ।
ତାହା ଜାଣି ଶଚୀପତି ମୁନିଙ୍କର ରୂପେ
ପ୍ରବେଶ ହୋଇଲେ ଆଶ୍ରମରେ ଆସି ଆପେ ।
ଅହଲ୍ୟାଙ୍କୁ ଭୁଲାଇଣ ଏକାନ୍ତକୁ ନେଲେ
ଚଉଷଠି ବନ୍ଧେ ରତିରସ ଆରମ୍ଭିଲେ ।
ଯୋଗବଳେ ଗଉତମ ଜାଣି ସେ କଥାକୁ
ସେହିକ୍ଷଣି ଗଲେ ଦୁହେଁ ଥିବାର ସ୍ଥାନକୁ ।
ଦେଖିଲେ ବାସବ ରତି ମନ୍ଦିରକୁ ଛାଡ଼ି
ଆସୁଛନ୍ତି ଫେରିଯିବା ମାର୍ଗ ହେଜ ହେଜ ।
ଉଲଗ୍ନ ହୋଇ ଅହଲ୍ୟା ଅଛନ୍ତି ଭିତରେ
ଦେଖି ମୁନି କମ୍ପମାନ ହୋଇଣ କୋପରେ ।
ବାସବଙ୍କୁ ଶାପଦେଇ ଅଙ୍ଗରେ ତାହାର
ସହସ୍ରେ ଯୋନି ଜନ୍ମାଇ ଦେଲେ ସେ ସତ୍ୱର ।

ଅହଲ୍ୟାଙ୍କୁ ଶାପ ଦେଇ ଶିଳାରୂପ କଲେ
ଅରଣ୍ୟ ମଧ୍ୟରେ ପଡ଼ିଥାଅ ତୁ ବୋଇଲେ ।
ଲଜ୍ଜିତ ହୋଇଣ ଇନ୍ଦ୍ର ମସ୍ତକ ନୁଆଇଁ
ପ୍ରବେଶ ହେଲେ ଆପଣା ଭବନରେ ଯାଇ ।
ଅହଲ୍ୟା ସେକାଳେ ମହାଭୟ ପାଇ ମନେ
ଜଣାଇଲେ ପଡ଼ି ନିଜ ପତିଙ୍କ ଚରଣେ ।
ବୋଇଲେ ମୋହର ଦୋଷ ନାହିଁ ତ କିଞ୍ଚିତ
ମୋତେ କାହିଁ ଦଣ୍ଡ ଦେଲ ଆହେ ତପୋବନ୍ତ ।
ଗୌତମ ବୋଇଲେ ମୁହିଁ ତୁମ୍ଭର ଚରିତ
ଜାଣିଅଛୁ ଅଟେ ସବୁଠାରୁ ଯେ ପବିତ୍ର ।
କିନ୍ତୁ ମୋର ରୂପ ବହି ଆସିବାରୁ ନନ୍ଦ
ରମିଲ ତା ସଙ୍ଗରେ ବୁଦ୍ଧି କରି ବନ୍ଦ ।
କିଞ୍ଚିତ ଭାବନା ନ କରିଲ ସେତେବେଳ
ଜାଣିଲ ସିନା ଆମ୍ଭଙ୍କୁ ଚେଷ୍ଟିବାର କାଳେ ।
ପରପୁରୁଷ ସ୍ପର୍ଶରେ ତୁମ୍ଭର ଶରୀର
ଦୂଷିତ ହୋଇଛି ଆଗୋ ରମଣୀଙ୍କ ବର ।
ଏଥି ସକାଶୁ ଶିଳାରୂପେ କେତେକାଳ ରହି
ମୁକତ ହେବ ଶ୍ରୀରାମ ପାଦରଜ ପାଇ ।
ସେ ସମୟେ ଆଶ୍ରମରେ ମୋ ପାଶକୁ ଆସି
ରହିବ ଉତ୍ତମ ରୂପେ ଆଗୋ ସୁକେଶି ।
ଏମନ୍ତ କହିଣ ମୁନି ତପ କରିବାକୁ
ଗମେ ସେ ଆଶ୍ରମ ତେଜି ଅପର ସ୍ଥାନକୁ ।
ଏହିଠାରେ ଇନ୍ଦ୍ରଙ୍କର ଶାପ ସମାଚାର
ଚରିତ ବର୍ଣ୍ଣନା କଲି ଘେନ ହେ ସୁଧୀର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଇନ୍ଦ୍ରଙ୍କ ଦ୍ୱାରା ଅହଲ୍ୟାର ସତୀତ୍ୱ ଅପହରଣ କଥନୋ ନାମ ଏକଷଷ୍ଟିତମୋଽଧ୍ୟାୟଃ



## ଦ୍ୱିଷଷ୍ଟିତମ ଅଧ୍ୟାୟ

### ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ଅହଲ୍ୟା ଉଦ୍ଧାରଣ ଚରିତ ବର୍ଣ୍ଣନା

ନାରଦ ବୋଇଲେ ଆହେ ମୁନିଗଣ ଇନ୍ଦ୍ର
କି ରୂପରେ ଦଶରଥ ସୁତ ରାମଚନ୍ଦ୍ର ।
ଅହଲ୍ୟାଙ୍କୁ କେଉଁଯୁଗେ କଲେ ଶାପମୁକ୍ତ
ଆମୂଳ କରିଣ ମୋତେ କହ ସେ ଚରିତ ।
ତାହା ଶୁଣି ନାରାୟଣ ହରଷିତ ହୋଇ
ବୋଇଲେ କହିବା ଶୁଣ ସେ କଥା ବତାଇ ।
ବ୍ରହ୍ମାଙ୍କ ପ୍ରାର୍ଥନା ଘେନି ଦେବ ନରହରି
ରାମରୂପେ ଦଶରଥ ପୁରେ ଅବତରି ।
ତ୍ରେତାଯୁଗେ ପରକାଶ ହେଲେ ମର୍ତ୍ତ୍ୟପୁରେ
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ସହିତରେ ।
ବିଶ୍ୱାମିତ୍ରଙ୍କର ଯାଗ ରକ୍ଷା କରିବାକୁ
ଗଲେ ରାମ ସଙ୍ଗତରେ ଘେନି ଲକ୍ଷ୍ମଣଙ୍କୁ ।
ରାକ୍ଷସଙ୍କୁ ବଧକରି ଯଜ୍ଞ ରକ୍ଷା କଲେ
ବିଶ୍ୱାମିତ୍ରଙ୍କ ସଙ୍ଗରେ ମିଥିଳାକୁ ଗଲେ ।
ଯିବାବେଳେ ଗଉତମ ମୁନିଙ୍କ ଆଶ୍ରମ
ଦେଖିଲେ ଯେ ହୋଇଥିଲା ଅତି ମନୋରମ ।
ସେଠାରେ ପାଷାଣରୂପେ ଅହଲ୍ୟା କାମିନୀ
ପଡ଼ିରହିଥିଲେ ନିଜ କର୍ମଦୋଷ ଘେନି ।
ତାଙ୍କୁ ଦେଖି ରାମଚନ୍ଦ୍ର ମୁନିଙ୍କୁ ଅନାଇଁ
ପଚାରିଲେ କଉତୁକ ଭାବେ ମନଦେଇ ।
ବୋଇଲେ ଏ ଆଶ୍ରମଟି ଅଟଇ କାହାର
ସୁନ୍ଦର ଶିଳା ଗୋଟିଏ ଅଛି ତା ଆଗର ।
ତାହା ଶୁଣି ବିଶ୍ୱାମିତ୍ର ସକଳ ବୃତ୍ତାନ୍ତ
କହିଲେ ସେଠାରେ ହୋଇଥିଲା ଯା ଯେମନ୍ତ ।
ମୁନିଙ୍କ ମୁଖରୁ ରାମ ଶୁଣି ସେ କଥାକୁ
ପାଦ ଅଙ୍ଗୁଳିରେ ସ୍ପର୍ଶ କଲେ ସେ ଶିଳାକୁ ।
ସେହିକ୍ଷଣି ନିଜରୂପ ଘେନିଣ ଅହଲ୍ୟା
ଶ୍ରୀରାମଙ୍କୁ ଆଶୀର୍ବାଦ କଲେ ଛିଡ଼ା ହେଲା ।
ଶାପରୁ ମୁକତି ପାଇ ଗଉତମଙ୍କର
ନିକଟକୁ ଗଲେ ଆନନ୍ଦରେ ବାମାବର ।
ଏଥୁଅନ୍ତେ ରାମଚନ୍ଦ୍ର ମିଥିଳାକୁ ଯାଇ
ଶିବଧନୁ ଭଙ୍ଗିକଲେ ସାମର୍ଥ ଦେଖାଇ ।

ସୀତାଙ୍କୁ ବିବାହ କରି ଲେଉଟି ଆସିଲେ
ବାଟରେ ପରଶୁରାମଙ୍କ ଗର୍ବ ଚୂର୍ଣ୍ଣ କଲେ ।
ଅଯୋଧ୍ୟା ନଗରେ ପୁଣି ହୋଇଲେ ପ୍ରବେଶ
ଆନନ୍ଦରେ ଚଳି କଟାଇଲେ କେତେ ବର୍ଷ ।
ବୃଦ୍ଧ ହେବାରୁ ଅଯୋଧ୍ୟା ନୃପ ଦଶରଥ
ସୁତେ ରାଜ୍ୟ ଦେବାପାଇଁ କଲେ ମନୋରଥ ।
ସକଳ ସମ୍ଭାର ଆଣି ଠୁଳ କରାଇଲେ
ଅଭିଷେକ କରିବାକୁ ଦିନ ସ୍ଥିର କଲେ ।
ତା ଜାଣି ଭରତ ମାତା କୈକେୟୀ ଯେବାକେ
ଶ୍ରୀରାମଙ୍କ ବନବାସ ବରକୁ ମାଗିଲେ ।
ଆଉ ବର ଭରତଙ୍କର ରାଜତ୍ୱ ପ୍ରାପତ
ମାଗିଲେ ମଧ୍ୟ ରାଜାଙ୍କୁ ନ କରଣ ଖ୍ୟାତ ।
ପୂର୍ବରୁ ତ ଦଶରଥ ସତ୍ୟ କରିଥିଲେ
ସେ ଯେଣୁ ରାଣୀଙ୍କ କଥା ଲଙ୍ଘି ନ ପାରିଲେ ।
ଘୋଟିଲା ଆସି ତାହାଙ୍କୁ ବିଷମ ସଙ୍କଟ
କି କରିବେ ଆଉ କିଛି ନ ଦିଶିଲା ବାଟ ।
ପିତାଙ୍କର ଦଶା ଦେଖି ରାମ ମହାମତି
ପ୍ରବୋଧନା କଲେ ଯାଇ ପ୍ରକାଶି ବିନତି ।
ବୋଇଲେ ଆହେ ଜନକ ସତ୍ୟ ରକ୍ଷାକର
ସତ୍ୟସେତୁ ଚଳ ଚଳ ହୋଇଛି ସଂସାର ।
ତଡ଼ାଗ ଶତେକ ଦେଲେ ଯେଉଁ ଫଳ ହୁଏ
ଏକ ବାପୀ ଦାନେ ତାହା ମିଳଇ ନିଶ୍ଚୟେ ।
ଦଶ ବାପୀ ଦାନକଲେ ହୁଏ ଯେଉଁ ଫଳ
ପ୍ରାପତ ହୁଅଇ କନ୍ୟା ଦାନେ ସେ କେବଳ ।
ଦଶକନ୍ୟା ଦାନ ଫଳ ଗୋଟିଏ ଯାଗରେ
ହୁଅଇ ଏକଥା କୁହାଯାଇଛି ବେଦରେ ।
ପୁତ୍ରମୁଖ ଦରଶନେ ଶତେକ ଯାଗର
ଫଳଲାଭ ହୁଏ ନିଶ୍ଚୟରେ ମନେକର ।
ସତ୍ୟରକ୍ଷା କଲେ ଶତପୁତ୍ର ଦରଶନ
ଫଳଲାଭ କରଇଟି ସତ୍ୟବ୍ରତୀ ଜନ ।
ସତ୍ୟଠାରୁ ବଳି ଧର୍ମ ଜଗତରେ ନାହିଁ
ମିଥ୍ୟା କହିବାର ମହା ପାତକ ଅଟଇ ।
ନିଜ ଧର୍ମ ରକ୍ଷା କଲେ ଅଶେଷ ମଙ୍ଗଳ
ହୁଏ ସବୁ ବିଷୟରେ ଆହେ ମହୀପାଳ ।
ତୁମ୍ଭ ସତ୍ୟ ଧର୍ମ ରକ୍ଷା କରିବାକୁ ମୁହିଁ
ଯାଉଛି ଚଉଦବର୍ଷ ବନବାସେ ରହି ।
ଇଚ୍ଛାରେ ବା ଅନିଚ୍ଛାରେ ଶପଥକୁ କରି
ହେଳାକରି ଯେବେ ତାହାକୁ ପାଳନା ନ କରି
ଇହଲୋକରେ ବଞ୍ଚିତ ଅପମାନ ହୁଅଇ
ଦେହାନ୍ତେ କୁମ୍ଭୀପାକ ନରକକୁ ଯାଇ ।
ଏମନ୍ତ କହି ଶ୍ରୀରାମ ପିତାଙ୍କ ଆଗରେ
ଜଟାବାନ୍ଧି ବଳ୍କଳବାସ ପିନ୍ଧିଣ ହରଷରେ ।
ଭ୍ରାତ ଭାର୍ଯ୍ୟା ଦୁହିଙ୍କୁ ସଙ୍ଗତେ ଘେନି
ବନବାସେ ଗଲେ ରାଜ୍ୟଘର ଛାଡ଼ିଦେଇ ।
ପୁତ୍ରଶୋକେ ଦଶରଥ ଦେହତ୍ୟାଗ କଲେ
ସ୍ୱର୍ଗଭୁବନରେ ମହା ସୁଖରେ ରହିଲେ ।
ଏଥିଅନ୍ତେ ପଞ୍ଚବଟୀ ବନେ ଦାଶରଥି
ରହିଲେ ଜାନକୀ ଲକ୍ଷ୍ମଣଙ୍କୁ ଘେନି ସାଥି ।
ଶୂର୍ପଣଖା ନିଶାଚରୀ ରାବଣ ଅନୁଜା
ଶ୍ରୀରାମଙ୍କ ରୂପ ଦେଖି ଛାଡ଼ିଦେଇ ଲଜ୍ଜା ।
ବୋଇଲା ହେ ରାମ ମୋତେ କର ପରିଗ୍ରହ
ତୁମ୍ଭଙ୍କୁ ଦେଖିଣ ବଢୁଅଛି ମୋର ମୋହ ।
ତା ଶୁଣି ଶ୍ରୀରାମ ମନେ ମନେ ହସିକରି
ବୋଇଲେ ମୋହର ବାକ୍ୟ ଶୁଣ ଗୋ ସୁନ୍ଦରୀ ।
ଦେଖୁଛୁ ତ ଅଛି ମୋର ଭାର୍ଯ୍ୟା ପାଶରେ
କେଉଁପେ ଆସକ୍ତ ମୁହିଁ ହେବ ତୋଠାରେ ।
ଅଭାର୍ଯ୍ୟା ହୋଇଛି ମୋର ଅନୁଜ ଲକ୍ଷ୍ମଣ
ତା ପାଶକୁ ଗଲେ ତୋତେ ରଖିବ ସେ ଜାଣ ।
ତାହା ଶୁଣି ଶୂର୍ପଣଖା ଲକ୍ଷ୍ମଣଙ୍କଠାକୁ
ଯାଇଣ ବୋଇଲା ଧର ମୋହର କରକୁ ।
ଲକ୍ଷ୍ମଣ ବୋଇଲେ ମୁଁ ତ ଶ୍ରୀରାମଙ୍କ ଦାସ
କି ସୁଖ ପାଇବୁ ତୁହି ରହି ମୋର ପାଶ ।
ରାମଙ୍କର ପତ୍ନୀ ହୋଇ ପାରିବୁଟି ଯେବେ
ତୋତେ ସେବାକରି ରହିଥିବି ମୁହିଁ ତେବେ ।
ଲକ୍ଷ୍ମଣଙ୍କଠାରୁ ଏହା ଶୁଣି ଶୂର୍ପଣଖା
କହିଲା ବଚନ ତାଙ୍କୁ ହୋଇଣ ବିମୁଖା ।
ବୋଇଲା ମୁଁ ସ୍ୱଇଚ୍ଛାରେ ଆସିଥିଲି ଧାଇଁ
ମୂଢ଼ପଣେ ମୋତେ ତ୍ୟାଗ କଲ ବେନଭାଇ ।
ଏଥିରୁ ମଙ୍ଗଳ କିଛି ନୋହିବ ତୁମ୍ଭର
କରୁନାହିଁ ଯେଣୁ ତୁମ୍ଭେ ଧର୍ମର ବିଚାର ।
ଯେଉଁରୂପେ ମୋହିନୀଙ୍କୁ ଛାଡ଼ି ପ୍ରଜାପତି
ଅପୂଜ୍ୟ ହୋଇ ଜଗତେ ପାଇଥିଲେ ଶାସ୍ତି ।

ରମ୍ଭାଶାପରୁ ଦକ୍ଷଙ୍କର ଛାଗମୁଣ୍ଡ ହେଲା
ମେନା ଶାପେ ଧନେଶ୍ୱର କୁରୂପ ହୋଇଲା ।
ଘୃତାଚୀ ଶାପରେ ଭସ୍ମ ହେଲା ରତିପତି
ମଦାଳସା ଶାପେ ବଳି ହାରିଲା ଧରିତ୍ରୀ ।
ମିଶ୍ରକେଶୀ ଶାପ ଯୋଗେ ବୃହସ୍ପତିଙ୍କର
ଭାରିଯାକୁ ବଳେ ହରି ନେଲା ଶଶଧର ।
ସେହିପରି ମୋର ଶାପେ ହତଭାର୍ଯ୍ୟା ହୋଇ
ଅରଣ୍ୟ ମଧ୍ୟରେ ରାମ ବୁଲିବ ଭୁହାଇ ।
କାମାତୁର କାମିନୀକୁ ଛାଡ଼େ ଯେଉଁ ମୂର୍ଖ
ଇହ ପର ଲୋକେ ତାକୁ ନ ମିଳଇ ସୁଖ ।
ଏହିରୂପେ ସୂର୍ପଣଖା ମୁଖରୁ ଲକ୍ଷ୍ମଣ
ଶୁଣିବାରୁ କ୍ରୋଧଭରେ ଯେସନ ଝୁରବାଣ ।
କର୍ଣ୍ଣ ନାସିକା ତାହାର ଛିନ୍ନ କରିଦେଲେ
ସେ ସକାଶୁ ନିଶାଚରୀ କାନ୍ଦିଣ ଚଳିଲେ ।
ଖର ଦୂଷଣଙ୍କ ଆଗେ ସମସ୍ତ କହିଲା
ଶ୍ରୀରାମଙ୍କ ସଙ୍ଗତରେ ଯୁଦ୍ଧ କରାଇଲା ।
ଚଉଦ ସହସ୍ର ଦୈତ୍ୟ ନିମିଷରେ ତାଙ୍କୁ
ପଠାଇଲେ ରାମଚନ୍ଦ୍ର ଯମ ଭବନକୁ ।
ତାହା ଦେଖିଣ ରାକ୍ଷସୀ ବେଗ ହୋଇଗଲା
ରାବଣ ଆଗରେ ସବୁକଥା ଜଣାଇଲା ।
ସେ ଅନ୍ତେ ପୁଷ୍କର ତୀର୍ଥେ ପରବେଶ ହୋଇ
ଦୁଷ୍କର ତପ ଆରମ୍ଭ କଲା ମନଦେଇ ।
କେତେକାଳ ପରେ ବ୍ରହ୍ମା ସେଠାକୁ ଆସିଲେ
ସୂର୍ପଣଖା ଆଗେ ମୃଦୁ ବଚନ ଭାଷିଲେ ।
ବୋଇଲେ ଗୋ ତପସ୍ୱିନୀ ଶ୍ରୀରାମଙ୍କୁ ତୁମ୍ଭେ
ନ ପାଇ ତପସ୍ୟା କରୁଅଛ ଜାଣୁ ଆମ୍ଭେ ।
ତଥାପି ଏ ଜନ୍ମେ ଆଉ ନ ପାଇବ ଜାଣ
ଜନ୍ମାନ୍ତରେ ତୁମ୍ଭ ପତି ହେବେ ନାରାୟଣ ।
ଏମନ୍ତ କହି ସେଠାରେ ହେଲେ ଅନ୍ତର୍ଦ୍ଧାନ
ଝାସଦେଲା ସୂର୍ପଣଖା ଜାଳି ହୁତାଶନେ ।
ଦ୍ୱାପର ଯୁଗରେ କୁବ୍‌ଜା ହୋଇଥିଲା ସେହି
ମୁକତ ହେଲା ଶ୍ରୀକୃଷ୍ଣ ଅଙ୍ଗସଙ୍ଗ ପାଇ ।
ଏଥୁ ଅନନ୍ତରେ ଶୁଣ ଆହେ ମୁନିବର
ସୂର୍ପଣଖା ବାକ୍ୟ ଶୁଣି ରାଜା ଦଶଶିର ।
ମାୟାରେ ସୀତାଦେବୀଙ୍କୁ ହରି ନେଇଗଲା
ଅଶୋକ ବନ ମଧ୍ୟରେ ଯତନେ ରଖିଲା ।

ମୃଗୟାରୁ ଫେରି ରାମ ପ୍ରିୟାଙ୍କୁ ନ ଦେଖି
ଖୋଜିଲେ ପାନ ଭୋଜନ ଶୟନ ଉପେକ୍ଷି ।
ଋଷ୍ୟମୂକ ପର୍ବତରେ ଥିଲେ କପିରାଜ
ତାଙ୍କ ସଙ୍ଗେ ମିତ୍ରହୋଇ କୌଶଲ୍ୟା ଆତ୍ମଜ ।
ବାଳିକି ନିଧନ କରି ମିତ୍ରେ ରାଜ୍ୟ ଦେଲେ
ସେହି ପର୍ବତରେ ବର୍ଷାକାଳ କଟାଇଲେ ।
ଶରଦ ହୁଅନ୍ତେ ସୁଗ୍ରୀବରଙ୍କୁ ଡକାଇ
ଚଉଆଡ଼େ ଦେଲେ କପିବୀରଙ୍କୁ ପଠାଇ ।
ଦକ୍ଷିଣ ଦିଗକୁ ଯାଉଥିଲେ ଯେଉଁମାନେ
ସୀତାଙ୍କୁ ଦେଖିବେ ସେହି ବୋଲି ସ୍ୱମନେ ।
ହନୁକୁ ଡକାଇ ପାଶେ ରାମ ରଘୁବୀର
ମୁଦ୍ରିକା ଗୋଟିଏ ଦେଇ ହସ୍ତରେ ତାହାର ।
ସୀତାଙ୍କ ରହସ୍ୟ କଥା କହିଣ ତାହାକୁ
ପଠାଇଲେ ଯାଅ ବୋଲି ଦକ୍ଷିଣ ଦିଗକୁ ।
ଶତ ଯୋଜନ ସମୁଦ୍ର ପାରହୋଇ ହନୁ
ପଶିଲା ଲଙ୍କା ନଗରେ ଧରି ସୂକ୍ଷ୍ମତନୁ ।
ଅଶୋକ ବନରେ ସୀତାଦେବୀଙ୍କୁ ଦେଖିଲା
ଧୀରେ ଧୀରେ ଯାଇଁ ତାଙ୍କ ନିକଟେ ବସିଲା ।
ଶ୍ରୀରାମଙ୍କୁ ଅନୁକ୍ଷଣେ ସୁମରଣା କରି
ଅତିଶୟ କ୍ଷୀଣ ହୋଇଛନ୍ତି ସୁକୁମାରୀ ।
ଲକ୍ଷ୍ମୀଙ୍କ ଅଂଶରେ ଜାତ ଅଟନ୍ତି ତ ସେହି
ଜଳୁଛନ୍ତି ଅଗ୍ନିମନ୍ତ ତେଜପୁଞ୍ଜ ବହି ।
ତାଙ୍କୁ ଦେଖି ହନୁମାନ ଦଣ୍ଡବତ ହେଲା
ମୁଦ୍ରିକାଟି ଦେଇ ସବୁ ସନ୍ଦେଶ କହିଲା ।
ବୋଇଲା ଗୋ ଦେବୀ ମୁହିଁ ଶ୍ରୀରାମଙ୍କ ଦୂତ
ହନୁମାନ ବୋଲି ମୋର ନାମ ଅଟେ ଖ୍ୟାତ ।
ତୁମ୍ଭଙ୍କୁ ଖୋଜିବାପାଇଁ ଆସିଛି ଏଠାକୁ
ତୁମ୍ଭର ବାରତା ନେଇ ଦେବି ଶ୍ରୀରାମଙ୍କୁ ।
ଲବଣସିନ୍ଧୁ ଉତ୍ତର ପାରୁଶେ ଶ୍ରୀରାମ
ରହିଛନ୍ତି ମାନସରେ ବହି ଘୋରତମ ।
ତୁମ୍ଭଙ୍କୁ ନ ଦେଖି ବନେ ବହୁତ ଖୋଜିଲେ
ସୁଗ୍ରୀବଙ୍କୁ ଋଷ୍ୟମୂକ ପର୍ବତେ ଭେଟିଲେ ।
ତାଙ୍କ ତୁଲେ ମିତ୍ରହୋଇ ବାଳିକୁ ସଂହାରି
କିଷ୍କିନ୍ଧ୍ୟା ନଗରେ ନେଇ କଲେ ଦଣ୍ଡଧାରୀ ।
ତୁମ୍ଭ ଅନ୍ୱେଷଣ ପାଇଁ ଚଉଆଡ଼େ ଦୂତ
ପଠାଇଲେ ସୁଗ୍ରୀବର ରାଜନ ଭରତ ।

ମୋତେ ମିଶି ଆଠଜଣ ଦର୍ଶନଙ୍କୁ ଆସି;
ସବୁସ୍ଥାନ ଅନ୍ୱେଷଣ କଲୁ ମିଳମିଶି ।
ଏବେ ସିନ୍ଧୁ ଡେଇଁ ମୁହିଁ ଏଠାକୁ ଆସିଲି
ନିର୍ଭୟରେ ଲଙ୍କାପୁର ମଧ୍ୟରେ ପଶିଲି ।
ବୁଲିବୁଲି ଏ ସ୍ଥାନରେ ଦେଖିଲି ତୁମ୍ଭଙ୍କୁ
ନେଇଯିବି ପୁଣି ଶ୍ରୀରାମ ସ୍ୱାମୀଙ୍କୁ ।
ଅଳପ ଦିନେ ଶ୍ରୀରାମ ସମୁଦ୍ରକୁ ଡେଇଁ
ଆସିବେ ସଙ୍ଗେ ଲକ୍ଷ୍ମଣ ସୁଗ୍ରୀବଙ୍କୁ ନେଇ ।
କପିବଳ ଯେବେ ଦଶଶିରକୁ ବିନାଶି
ମୁକତ କରି ତୁମ୍ଭଙ୍କୁ ନେବେ ଥାଅ ବସି ।
ଆଗୋ ଦେବୀ ତୁମ୍ଭ ପ୍ରସାଦରେ ଏବେ ମୁହିଁ
ଲଙ୍କାପୁର ଭାଙ୍ଗିଦେବି ଅନଳ ଲଗାଇ ।
ପର୍ବତ ବୃକ୍ଷ ପ୍ରହାରି ସୈନ୍ୟ ସହିତରେ
ରାବଣଙ୍କୁ ମାରି ପଠାଇବି ଯମପୁରେ ।
କଲୁ ଯେ ପ୍ରତିଜ୍ଞା କରିଛନ୍ତି ଦାଶରଥି
ଭଗ୍ନହେବ ବୋଲି ତାହା ହେଉଅଛି ବ୍ୟଥି ।
ସୁସ୍ଥହୋଇ ତୁମ୍ଭେ ଏବେ ଥାଅ କେତେ ଦିନ
ଅବଶ୍ୟ ହେବ ତୁମ୍ଭର କଲ୍ୟାଣ ସାଧନ ।
ହନୁମାନଠାରୁ ଏହା ଶୁଣି ସୀତା ଦେବୀ
କହିଲେ ତାହାକୁ ମନେ ମନେ ଅଳ୍ପ ଭାବି ।
ବୋଇଲେ ହେ କପିବୀର ଶ୍ରୀରାମ କୁଶଳେ
ଅଛନ୍ତିକି ଲକ୍ଷ୍ମଣ ସୁଗ୍ରୀବଙ୍କ ତୁଲେ ।
ଭୋଜନ ପାନ ଗ୍ରହଣ ନ କରି ଦୁଃଖେ
କୃଶହୋଇ ନାହାନ୍ତି ତ କହ ମୋତେ ସଖେ ।
ସବୁବେଳେ ମୋତେ କରୁଛନ୍ତି କି ସ୍ମରଣା
ଶୋକ କରୁଛନ୍ତି କିବା ହୋଇ ବୁଦ୍ଧିହୀନା ।
ପୂର୍ବକାଳେ କ୍ଷଣେ ସ୍ଥିର ନ ଥିଲେ ସେ ମୋତେ
ଅଛନ୍ତି ଏବେ ସମୁଦ୍ର ବେଷ୍ଟିତ ପ୍ରାନ୍ତେ ।
କି ରୂପରେ ଆହା ସାରୁଥିବେ ଏବା ଦିନ
ନ ଦେଖିଲି ଶ୍ରୀମୁଖ ମୋ କର୍ମ ଅଟେ ହୀନ ।
କେତେବେଳେ ପତିଙ୍କର ପାଦସେବା କରି
ଅଶେଷ ପାପରୁ ମୁହିଁ ହେବି ପୁଣି ପାରି ।
ପତିସେବା ହୀନ ଅଟେ ଯାହାର ଜୀବନ
ଅପୂଜ୍ୟ ହୁଅଇ ସେହୁ ଜଗତରେ ଜାଣ ।
ପତିବ୍ରତା ଭକ୍ତିଭାବ ସୁମିତାଙ୍କ ବଳା
କୃଷ୍ଣଙ୍କ ଅଛନ୍ତିକି କହ ସ୍ୱର୍ଣ୍ଣ ହେଲା ।
ଏମନ୍ତ ବଚନ ଶୁଣି ପବନ କୁମର
କହିଲେ ସୀତାଦେବୀଙ୍କୁ ଯଥାର୍ଥ ଉତ୍ତର ।
ଅନଳ ଲଗାଇ ଲଙ୍କାପୁର ଭସ୍ମ କଲେ
ମଧୁବନ ଭାଙ୍ଗି କେତେ ଦୈତ୍ୟଙ୍କୁ ମାରିଲେ ।
ସେ ଅନ୍ତେ ପୁଣି ସୀତାଙ୍କ ସମୀପକୁ ଯାଇ
ଆଶ୍ୱାସନା କରିଗଲେ ସମୁଦ୍ରକୁ ଡେଇଁ ।
ଶ୍ରୀରାମଙ୍କ ପାଶେ ଉପସ୍ଥିତ ହୋଇ ବେଗେ
କହିଲେ ସକଳ କଥା କରଯୋଡ଼ି ଆଗେ ।
ଶୁଣି ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀବ ସହିତେ
କାନ୍ଦିଲେ ସେଠାରେ କପିସେନା ଥିଲେ ଯେତେ
ପ୍ରତିଜ୍ଞା କରିଣ ତହିଁ ବାନ୍ଧି ପାରାବାର
ସହଜରେ ହେଲେ ଶତ ଯୋଜନକୁ ପାର ।
ଲଙ୍କାପୁରେ ପଶି ସବୁ ଅସୁରଙ୍କ ପ୍ରାଣ
ନେଲେ ଦାନବ ସାରେ କରି ଘୋରରଣ ।
ପରିଶେଷେ ଶ୍ରୀରାମଙ୍କ ବାଣେ ଦଶଶିର
ଭାଇ ପୁତ୍ର ସହିତରେ ଗଲା ଯମପୁର ।
ସେ ଅନ୍ତେ ସୀତାଙ୍କୁ ରାମ ମୁକତ କରାଇ
ବାହୁଡ଼ିଲେ ଅଯୋଧ୍ୟାକୁ ପୁଷ୍ପକ ଆରୋହି ।
ରାଜା ହୋଇ ପୁଣି ନିଜ ରାଜ୍ୟଭାର ଘେନି
ପାଳନା କଲେ ପ୍ରଜାଙ୍କୁ ଆହେ ମହାମୁନି ।
ସୀତାଙ୍କ ସଙ୍ଗରେ ମିଳି ବିବିଧ ପ୍ରକାରେ
କ୍ରୀଡ଼ାକଲେ ବନେ ଉପବନେ ନିରନ୍ତରେ ।
କେତେଦିନ ଅନ୍ତେ ଲବ କୁଶ ବେନିସୁତ
ସୀତାଦେବୀଙ୍କ ଗର୍ଭରୁ ହୋଇଲେ ସମ୍ଭୂତ ।
ସେ ଦୁହିଙ୍କ ପୁତ୍ର ପୌତ୍ର କ୍ରମେ ରଘୁବଂଶ
ବିସ୍ତୃତ ହୋଇ ମହୀରେ ଅରଜିଲା ଯଶ ।
ଏରୂପେ ଶ୍ରୀରାମଙ୍କର ଚରିତ ସକଳ
ଶୁଣିଲ ତ ଭଲରୂପେ ଆହେ ତପଶୀଳ ।
ଅନ୍ୟ ଚରିତ ଶୁଣିବାପାଇଁ ଇଚ୍ଛା ଯେବେ
ହେଉଅଛି ଶୁଣ ବସି କହିବି ମୁଁ ତେବେ ।
ଏହିଠାରେ ଅହଲ୍ୟାଙ୍କ ମୋକ୍ଷ କଥାସାର
ଭଣିଲେ ଉତ୍କଳ ପଦେ ଗାନ କ୍ଷେତ୍ର ସ୍ଥିର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀରାମଙ୍କ ଦ୍ୱାରା ଅହଲ୍ୟା ଉଦ୍ଧାରଣ ଚରିତ ବର୍ଣ୍ଣନେ ନାମ ଦ୍ୱିଷଷ୍ଟିତମୋଽଧ୍ୟାୟଃ ।

# ଦ୍ୱିଷଷ୍ଟିତମ ଅଧ୍ୟାୟ

## କଂସାସୁରର ଦୁଃସ୍ୱପ୍ନ ଦର୍ଶନ

ଏଥୁଅନ୍ତେ ନାରାୟଣ ନାରଦଙ୍କୁ ଚାହିଁ
ବୋଇଲେ ହେ ମୁନିବର ଶୁଣ ମନଦେଇ ।
ଦ୍ୱାପର ଯୁଗରେ କଂସନାମେ ନରପତି
ପରାକ୍ରମ ଗୁଣରେ ସେ ପାଇଥିଲା ଖ୍ୟାତି ।
ଦିନେ ନିଶା ଶେଷଭାଗେ ଦୁଷ୍ଟସ୍ୱପ୍ନ ଦେଖି
ଶଯ୍ୟା ତ୍ୟାଗକରି ମନେ ହୋଇ ମହାଦୁଃଖୀ ।
ପାତ୍ର ମିତ୍ର ବାନ୍ଧବଙ୍କୁ ଡକାଇ ଆଣିଲା
ସଭାକରି ତାଙ୍କ ଆଗେ କହି ଆରମ୍ଭିଲା ।
ବୋଇଲା ମୁଁ ଗତରାତ୍ରି ଶେଷ ସମୟରେ
ଦୁଃସ୍ୱପ୍ନ ଦେଖିଲି ଯାହା ଶୁଣ ଏବେ ବାରେ ।
ନଗର ମଧ୍ୟରେ ବୃଦ୍ଧା ସ୍ତ୍ରୀ ଗୋଟାଏ ଆସି
ନୃତ୍ୟକଲା ନଗରକୁ ଚାହିଁ ହସି ହସି ।
ବିକୃତ ବଦନ ତାର ଜିହ୍ୱା ଭୟଙ୍କର
କ୍ଷୀଣତମ କୃଷ୍ଣବର୍ଣ୍ଣ ସମସ୍ତ ଶରୀର ।
ଆଉରି ବିଧବା ଶୂଦ୍ରକାମିନୀ ଗୋଟିଏ
ଆଲିଙ୍ଗନ କରି ମୋତେ ବୋଇଲା ତୁ କିଏ ।
ମଳିନ ବସନ ପିନ୍ଧି ଆଉ ଏକ ନାରୀ
ସିନ୍ଦୂର ବୋଳିଲା ମୋର ମୁଣ୍ଡେ ଆଣିକରି ।
କୃଷ୍ଣବର୍ଣ୍ଣ ପକ୍ୱ ତାଳ ଫଳ କୋଟି କୋଟି
ପଡ଼ିଥିଲା ମହୀପରେ ହୋଇ ଗୋଟି ଗୋଟି ।
କୁଟିଳେ ବିକୃତ କେଶ ମ୍ଳେଚ୍ଛ ଏକନର
ଛିନ୍ନ କପାଳ ଗୋଟିଏ ଦେଲା ମୋର କର ।
ପତିବ୍ରତା ସତୀସ୍ତ୍ରୀରୀ ପୂର୍ଣ୍ଣକୁମ୍ଭ କାଖେ
ଧରି ଆସି ଉପଗତ ହୋଇ ମୋର ପାଖେ ।
ଶାପଦେଇ ମୋତେ ସେହି କୁମ୍ଭକୁ ଭୂମିରେ
ଫିଙ୍ଗିଦେଇ ଗଲା କ୍ରୋଧ ବହି ନିଜ ଘରେ ।
କର୍ମଠ ବ୍ରାହ୍ମଣ ଜଣେ ରକ୍ତ ପୁଷ୍ପମାଳା
ଲମ୍ବାଇ ଦେଇଣ ଚିପି ଧରିଲା ମୋ ଗଳା ।
ଅଙ୍ଗାର ପାଉଁଶ ବୃଷ୍ଟି ହେଲା କ୍ଷଣକରେ,
ରକତ ବରଷା ପୁଣି ହେଲା ସେ ଅନ୍ତରେ ।
ବାନର ବାୟସ ଶ୍ୱାନ ଭଲ୍ଲୁକ ଶୂକର
ମୋହର ଆଗେ ଧାଇଁଲେ ଶବ୍ଦକରି ଘୋର ।
ଅରୁଣ ଉଦୟକାଳେ ଶୁଷ୍କ କାଠରାଶି
କାର୍ପାସ ଛିନ୍ନ ନଗର ଦେଖିଲି ମୁଁ ଆସି ।
ଦିବ୍ୟସ୍ତ୍ରୀରୀ ଜଣେ ପୀତବାସ ପିନ୍ଧିକରି
ଶୁକ୍ଳ ଚନ୍ଦନ ସ୍ୱର୍ଣ୍ଣ ଅଳଙ୍କାର ଭରି ।
ହସ୍ତେ କ୍ରୀଡ଼ାପଦ୍ମ ଧରି ଶାପ ଦେଇ ମୋତେ
ପଳାଇଲା ମୋର ଘର ଛାଡ଼ିଣ ତ୍ୱରିତେ ।
ବିକଟ ଚିତ୍କାର ଶୁଣି ଶ୍ରବଣ ବଧିର
ସ୍ୱପ୍ନରେ ଦେଖିଲି ପୁଣି ଶୂନ୍ୟରେ ନିକର ।
ପାଶହସ୍ତ ବିକଟାଳ ରୂପ ଭୟଙ୍କର
ପୁରୁଷଗଣେ ବେଢ଼ାଇ ଥିଲେ ମୋ ନଗର ।
ଆକାଶରେ ଚନ୍ଦ୍ର ସୂର୍ଯ୍ୟ ମଣ୍ଡଳକୁ ରାହୁ
ଧାଇଁଲା ଗ୍ରାସିବା ପାଇଁ ସମୟ ନ ହେଉ ।
ଉଲ୍କାପାତ ଭୂମିକମ୍ପ ଝଞ୍ଜା ସମୀରଣ
ଧୂମକେତୁ ଆଦି ସବୁ ଜାତ ହେଲେ ଜାଣ ।
ପର୍ବତରୁ ଶୃଙ୍ଗ ଝଡ଼ି ମହୀରେ ପଡ଼ିଲା
ଅକସ୍ମାତେ ବଜ୍ର ଘଡ଼ଘଡ଼ି ଶବ୍ଦ ହେଲା ।
ଛିନ୍ନମୁଣ୍ଡ ପୁରୁଷେକ ମୋ ଆଗକୁ ଆସି
ନୃତ୍ୟ କଲା ଡେଇଁ ଡେଇଁ ହସ୍ତେ ହସ୍ତ ଘଷି ।
ପ୍ରତ୍ୟେକ ଗୃହରେ ମାଳ ମାଳ ହୋଇ ମୁଣ୍ଡ
କ୍ଷଣକ ମଧ୍ୟରେ କାହୁଁ ଆସି ହେଲେ ରୁଣ୍ଡ ।
ଏମନ୍ତ କହିଣ ରାଜା ହୋଇଲା ମଉନ
ଶୁଣି ହାହାକାର କଲେ ସଭାସଦ ଜନ ।
ଧନ୍ୟାକ ନାମକ ପୁରୋହିତ ତହିଁ ଥିଲେ
ଦୁଃସ୍ୱପ୍ନ କଥା ଶୁଣିଣ ଦୁଃଖିତ ହୋଇଲେ ।
ବିଚାରିଲେ ଅଟଇ ଏ ବିନାଶର ହେତୁ
ବିପଦ ପାଇବ କଂସ ଶାରଙ୍କର କେତୁ ।
ଏଠାରେ କଂସ ରାଜାର ଦୁସ୍ୱପ୍ନ ଦର୍ଶନ
ସମାପନ କଲେ ଗୀତେ କ୍ଷେତ୍ରବାସୀ ଘନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କଂସାସୁରର ଦୁଃସ୍ୱପ୍ନ ଦର୍ଶନେ
ନାମ ଦ୍ୱିଷଷ୍ଟିତମୋଽଧ୍ୟାୟଃ

## ଚତୁଃ ଷଷ୍ଟିତମ ଅଧ୍ୟାୟ

### କଂସ ରାଜାର ଯଜ୍ଞ ବିଷୟ କଥନ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ସ୍ୱପ୍ନକଥା ଶୁଣି ପୁରୋହିତ ଯେ ସତ୍ୱରେ ।
କଂସଙ୍କୁ ବୋଇଲେ ନୃପ ଭୟ କିମ୍ପା କର
ମୁହିଁ ଥାଉଁ କରିବ କି ଅନିଷ୍ଟ ତୁମ୍ଭର ।
ଧନୁର୍ମୁଖ ନାମେ ଅଛି ମହେଶଙ୍କ ଯାଗ
ସକଳ ଦେବଙ୍କୁ ତହିଁ ଦିଆଯାଏ ଭାଗ ।
ଦୁଷ୍ଟସ୍ୱପ୍ନ ବିନାଶକେ ଅଟଇ ଯେ ଜାଣ
ବହୁତ ଧନ ତହିଁରେ ହେବ ବିତରଣ ।
କର୍ମ ସମାପତ ହେଲେ ନିଜେ ମହେଶ୍ୱର
ଇଚ୍ଛା ଅନୁସାରେ ଆସି ଦେଇଯିବେ ବର ।
ପୂର୍ବକାଳେ ବାଣାସୁର ନନ୍ଦୀ ପର୍ଶୁରାମ
ଏହି ଯାଗ କରି ପୂର୍ଣ୍ଣକଲେ ନିଜ କାମ ।
ପ୍ରସନ୍ନ ହୋଇ ଶଙ୍କର ଦିବ୍ୟ ଧନୁ ଆଣି
ସମର୍ପଣ କଲେ ନନ୍ଦୀ ସମୀପରେ ପୁଣି ।
କେତେକାଳ ପରେ ନନ୍ଦୀ ବାଣାସୁର ଯାଗେ
ସନ୍ତୁଷ୍ଟ ହୋଇ ତାହାକୁ ଦେଲେ ଅନୁରାଗେ ।
ପୁଷ୍କରତୀର୍ଥରେ ବାଣ ପରଶୁରାମଙ୍କୁ
ଦେଇଥିଲେ ସେହି ଧନୁ ପ୍ରକାଶି ସ୍ନେହକୁ ।
ପରଶୁରାମ ସେ ଧନୁ ରଖି କେତେଦିନ
ତୁମ୍ଭଙ୍କୁ ଆଦରେ ଆଣି କଲେ ସମର୍ପଣ ।
ସହସ୍ର ହସ୍ତ ପ୍ରମାଣ ଦୀର୍ଘ ସେ ଅଟଇ
ଦଶହସ୍ତ ପ୍ରସ୍ଥ ଅତି ଆଶ୍ଚ ଅଛି ହୋଇ ।
ଏ ଧନୁରେ ପଶୁପତି ପାଶୁପତ ଶର
ସନ୍ଧାନ କରି ବିନାଶ କଲେଟି ତ୍ରିପୁର ।
ନାରାୟଣ ବିନା ଏହି ଧନୁ ଭାଙ୍ଗିବାକୁ
ସମର୍ଥ ନୋହିବେ ବୋଲି ଆସୁଛି ମନକୁ ।
ଯାଗକାଳେ ଶଙ୍କରଙ୍କ ସହିତେ ଯେ ଧନୁ
ପୂଜାକରି ଅଛେ ନୃପ ଭୟ ତେଜି ମନୁ ।
ଏ ଯାଗରେ ଯେବେ ଧନୁ ଭାଙ୍ଗେ ଅକସ୍ମାତେ
ଯଜମାନଙ୍କୁ ବିନାଶ କରଇ କହନ୍ତିତେ ।
ଧନୁର ମୂଳରେ ବ୍ରହ୍ମା ମଧ୍ୟେ ନାରାୟଣ
ଅଗ୍ରଭାଗେ ମହାଦେବ କରନ୍ତି ଅଧିଷ୍ଠାନ ।

ମହାବଳ ଶେଷଦେବ ନମ୍ର କରିବାକୁ
ସମର୍ଥ ନୋହିଲେ କେବେ ଏ ମହାଧନୁକୁ ।
ତୁମ୍ଭେ ଏବେ ଏହି ଯାଗ କର ମହାରାଜ
ସିଦ୍ଧହୋଇବ ଅଚିରେ ତୁମ୍ଭର ଯେ କାର୍ଯ୍ୟ ।
ଏରୂପେ ପଣ୍ଡାର ବାକ୍ୟ ଶୁଣି କଂସରାଜା
କହିଲା ତାହାଙ୍କୁ ଭୟେ ମଜ୍ଜାଇଣ ମଜ୍ଜା ।
ବୋଇଲା ହେ ପୁରୋହିତ ପ୍ରବର ମୋଠାରୁ
ଶୁଣ ଯହିଁପାଇଁ ମୁହିଁ ହେଉଅଛି ଭୀରୁ ।
ବସୁଦେବ ଘରେ ମୋର ଭଗିନୀ ଉଦରେ
ଜାତହୋଇଲା ପୁତ୍ରଟିଏ କେତେକାଳ ପରେ ।
ନନ୍ଦଘରେ ରହି ସେହି ହୋଇଛି ପାଳିତ
ମୋର ବନ୍ଧୁ ବାନ୍ଧବଙ୍କୁ କରିଅଛି ହତ ।
ମୋତେ ମାରିବାକୁ ପୁଣି ଭାବିଅଛି ମନେ
ନାହିଁ କେହି ତା ସମାନ ବଳବନ୍ତ ଜଣେ ।
ଗୋବର୍ଦ୍ଧନ ପର୍ବତକୁ ହସ୍ତରେ ଟେକିଲା
ଇନ୍ଦ୍ରଦେବତାଙ୍କ ବଳ ଦଳି ଗ୍ରକାଇଲା ।
ବ୍ରାହ୍ମଣଙ୍କୁ ବ୍ରହ୍ମରୂପ ଦେଖାଇଲା ଆଗେ
ଏବେ ମୋତେ ମାରିବାକୁ ରହିଅଛି ରାଗେ ।
ତାକୁ ଯେବେ କଉଣଲେ କରିବ ନିଧନ
ତ୍ରିପୁରେ ମୋର ଶତ୍ରୁ ନ ରହିବେ ଜାଣ ।
ବଡ଼ ବଡ଼ ରାଜାମାନେ ମୋହର ବାନ୍ଧବ
ମୋଠାରେ ସେମାନଙ୍କର ନାହିଁ ଦ୍ୱେଷଭାବ ।
ବ୍ରହ୍ମା ବିଷ୍ଣୁ ଶିବ ମୋର ଉପାସ୍ୟ ଦେବତା
ତାଙ୍କ ବରପୁରେ କଷ୍ଟ ହେଲେ ନାହିଁ ଚିନ୍ତା ।
କେବଳ ନନ୍ଦସୁତକୁ ନ ମାରିଲେ ମୁହିଁ
ସ୍ଥିରହୋଇ କେତେବେଳେ ରହି ନ ପାରଇ ।
ଏମନ୍ତ ଶୁଣି ସତ୍ୟକ ମୁହୂର୍ତ୍ତେ ବିଚାରି
କହିଲେ ପୁଣି ରାଜାଙ୍କ ଆଗେ ଉଠିକରି ।
ବୋଇଲେ ତୁମ୍ଭର ବନ୍ଧୁ ଉଦ୍ଧବ ଅକ୍ରୂର
ଆବର ଭଣୋଇ ବସୁଦେବ ନୃପବର ।
ଏ ତିନିଜଣ ମଧ୍ୟରୁ ପଠାଇ ଜଣକୁ
ଅଣାଅ କୃଷ୍ଣଙ୍କୁ ଏହି ଯାଗ ସମୀପକୁ ।

ଶୁଣି କଂସ ନରପତି ସନମତ କଲ
ବସୁଦେବଙ୍କୁ ଅନାଇଁ ବଚନ କହିଲ ।
ବୋଇଲା ହେ ନୃପ ତୁମ୍ଭ ମତ ପରିପୂର୍ଣ
ସକଳ ବିଷୟ ସମ୍ପାଦନରେ ନିପୁଣ ।
ସେ ସକାଶୁ ବୋଲୁଅଛି ଗୋକୁଳକୁ ଯାଅ
ନନ୍ଦ ବୃଷଭାନୁ ଆଗେ ମୋର ଆଜ୍ଞା କହ ।
କୃଷ୍ଣ ବଳରାମ ସଙ୍ଗେ ସେ ଦୁହିଁଙ୍କୁ ଆଣି
ଉପସ୍ଥିତ କରାଅ ମୋ ପାଶେ ଏହିହାଣି ।
ପତ୍ରିକା ଘେନଣ ଦୂତେ ଅନ୍ୟଦିଗେ ଯିବେ
ମୁନି ଋଷି ନୃପତିଙ୍କୁ ଆମନ୍ତ୍ରି ଆଣିବେ ।
ଏହିରୂପେ କଂସଠାରୁ ଶୁଣି ବସୁଦେବ
ବୋଇଲେ ଆହେ ରାଜନ ଶୁଣ ମୋର ଭାବ ।
ନନ୍ଦ ବ୍ରଜପୁରେ ମୁହିଁ ଯିବାର ଉଚିତ
ନୁହଇ କଦାପି ବୋଲି ବିଚାରୁଛି ଚିତ୍ତ ।
ଯେବେ ନନ୍ଦସୁତ ତୁମ୍ଭ ଯାଗକୁ ଆସିବେ
ଅନର୍ଥ ହୋଇବ ଏଥି ଶଙ୍କା ନାହିଁ ଲବେ ।
କୃଷ୍ଣଙ୍କୁ ଅଣାଇ ମୁହିଁ ତୁମ୍ଭ ସଙ୍ଗତରେ
କଳହ ଲଗାଇ ଦେବି ଏ ଯାଗ ସ୍ଥାନରେ ।
ତେବେ ମୋତେ ନିନ୍ଦା କରି ଜଗତର ଲୋକ
ବୋଲିବେ ଅଟଇ ବସୁଦେବ ଅବିବେକ ।
ପୁତ୍ରକୁ ଆଣି ମାତୁଳ ହସ୍ତେ ମରାଇଲ
ଏଥିରୁ କି ଉପକାର ଅବା ତାର ହେଲ ।
ନୋହିଲେ ବୋଲିବେ ପୁତ୍ର ହସ୍ତେ ତା ମାମୁଁଙ୍କୁ
ମରାଇ ପଠାଇ ଦେଲା ଯମଙ୍କ ଧାମକୁ ।
ଆବର ବନ୍ଧୁତ ଯୋଦ୍ଧା ମହାମରି ହୋଇ
ଜୀବନ ତେଜିବେ ଏଥି ସନ୍ଦେହ ଯେ ନାହିଁ ।
ଏଣୁ ବୋଲୁଅଛି ମୁହିଁ କଳହ କାରଣ
ହେବ ବୃଥା କାହିଁପାଇଁ ଆହେ ନୃପରାଣ ।
ଏହିରୂପେ ବସୁଦେବ ବଚନକୁ ଶୁଣି
ଖଣ୍ଡା ଧରି କ୍ରୋଧଭରେ କଂସ ନୃପମଣି ।

ହାଣିବା ପାଇଁ ତାହାଙ୍କୁ ବେଗେ ଧାଇଁଲେ
ଦେଖି ଉଗ୍ରସେନଙ୍କର ଦୁଃଖ ଜାତ ହେଲ ।
ଅସାଧୁ ଲୋକଙ୍କୁ ରୁଚେ ନାହିଁ ସାଧୁବାଣୀ
ଚକ୍ଷୁର ମର୍ଯ୍ୟାଦା କାହିଁ ଜାଣିବ ବା କାଣୀ ।
ଉଗ୍ରସେନ ସେହିପରି କଂସ ମୁଖ ଦେଖି
ମନେ ମନେ ହେଲେ ରାଜା ଗୁରୁତର ଦୁଃଖୀ ।
ବଳାତ୍କାରେ କୁମରଙ୍କୁ ନିବର୍ତ୍ତାଇ ବେଗେ
ଆସନେ ବସାଇ ବୋଧ କଲେ ଅନୁରାଗେ ।
କ୍ରୋଧଭରେ ବସୁଦେବ ସେଠାରୁ ଉଠିଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ସେ ଅନ୍ତରେ କଂସନୃପ ଅକ୍ରୁରକୁ ଡାକି
ପଠାଇଲ ଶ୍ରୀକୃଷ୍ଣଙ୍କୁ ଆଣିବାର ପାଇଁ ।
ମୁନିଋଷି ନୃପତିଙ୍କ ସମୀପକୁ ପୁଣି
ଦୂତ ପଠାଇଲେ ପତ୍ରଦେଇ ସେହିକ୍ଷଣି ।
ନିମନ୍ତ୍ରଣ ପାଇ ପାତ୍ର ମିତ୍ର ସହିତରେ
ନୃପତିଗଣ ପ୍ରବେଶ ହୋଇଲେ ଯାଗରେ ।
ଦିଗପାଳଙ୍କୁ ସଙ୍ଗରେ ଘେନି ସୁରଗଣ
କଂସରାଜା ସମୀପକୁ କଲେ ଆଗମନ ।
ପୁଲସ୍ତ୍ୟ ପୁଲହ ଭୃଗୁଆଦି ମୁନିମାନେ
ମିଳିଲେ ସତ୍ୱରେ ଆସି ସେହି ଯାଗସ୍ଥାନେ ।
ଜରାସନ୍ଧ ଶିଶୁପାଳ ମୁଦ୍ଗଲ ଦାମ୍ଭିକ
ଭଗଦତ୍ତ ଦନ୍ତବକ୍ର ସମ୍ବର ଖଣ୍ଡୁକ ।
ଧୃତରାଷ୍ଟ୍ର ଧୂମକେଶ ଶଲ୍ୟ ଶତ୍ରାଜିତ
ଭୀଷ୍ମ ଦ୍ରୋଣ କୃପାଚାର୍ଯ୍ୟ କର୍ଣ୍ଣ ଦ୍ରୋଣସୁତ ।
ଭୂରିଶ୍ରବା ଆଦିକରି ବନ୍ଧୁମିତ୍ର ଯେତେ
ଉପଗତ ହେଲେ ଯାନ ବାହନ ସହିତେ ।
ସେମାନଙ୍କୁ ଦେଖି କଂସ ମହାଆନନ୍ଦରେ
ସମ୍ଭାଷଣ କରି ପୂଜା କଲେ ସେ କାଳରେ ।
ଏତଠାରେ ଯାଗକର୍ମ ସମ୍ଭାର ବର୍ଣ୍ଣନ
କ୍ଷେତ୍ରମୋହନ ଗୀତରେ କଲ ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କଂସ ରାଜାର ଯଜ୍ଞ ବିଷୟ କଥନୋ
ନାମ ଚତୁଃଷଷ୍ଟି ତମୋଽଧ୍ୟାୟଃ ।

—*—

## ପ ଞ୍ଚ ଷ ଷ୍ଟି ତ ମ ଅ ଧ୍ୟା ୟ

## ଶ୍ରୀକୃଷ୍ଣ ଦର୍ଶନ ସକାଶେ ଅକ୍ରୂରର ଆନନ୍ଦ

ନାରାୟଣ ବୋଇଲେ ହେ ଶୁଣ ମୁନିବର
କଂସ ନୃପଙ୍କର ଆଜ୍ଞା ପାଇଣ ଅକ୍ରୂର ।
ବ୍ରଜପୁରେ ଯିବା ପାଇଁ ମନମତ କଲେ
ଉଦ୍ଧବଙ୍କ ପାଶେ ଯାଇ ଏକାନ୍ତେ କହିଲେ ।
ବୋଇଲେ ଆହେ ଉଦ୍ଧବ ଏତେକାଳେ ମୁହିଁ
ଧନ୍ୟ ହୋଇଅଛି ବୋଲି ବିଚାର କରଇ ।
ଆଜପରି ସୁପ୍ରଭାତ ଶୁଭଦିନ ମୋର
କେବେ ହୋଇନାହିଁ ବୋଲି ମନରେ ବିଚାର ।
କୋଟିଏ ଜନ୍ମରେ ଯେତେ ପୁଣ୍ୟ କରିଥିଲି
ଆଜ ସେହିସବୁ ପୁଣ୍ୟଫଳ ମୁଁ ପାଇଲି ।
ସଂସାର ରଜ୍ଜୁ ମୋହର ପାଦେ ରହିଥିଲା
ଏତେକାଳେ ଆସି ତାହା ଛିନ୍ନ ହୋଇଗଲା ।
ମୋହଠାରେ କୋପ କରି କଂସ ନରପତି
ଦେଇଅଛି ଆଜ ମୋତେ ଅତୁଳ୍ୟ ସମ୍ପତ୍ତି ।
ଦୁଷ୍ଟର କାର୍ଯ୍ୟରେ ଯାହା ନିଯୁକତ କଲା
ଜାଣିଲି ନିଶ୍ଚୟ ମୋର ଭାଗ୍ୟରେ ସେ ଥିଲା ।
ବ୍ରଜରାଜ ଶ୍ରୀକୃଷ୍ଣଙ୍କୁ ରଥରେ ବସାଇ
ଆଣିବାପାଇଁକି ଆଜ ଯାଉଅଛି ଧାଇଁ ।
ଭକ୍ତି ମୁକ୍ତିପ୍ରଦ ସେହି ପରମ ପୁରୁଷ
ତାଙ୍କ ଦରଶନେ ନାଶଯିବ ମୋ କଳୁଷ ।
ନବଜଳଧର ରମ୍ୟ ଶ୍ୟାମଳ ବରନ
ପ୍ରଫୁଲ୍ଲ ମଳୟ ମୁଦ ବିଶାଳ ଲୋଚନ ।
ପୀତବସ୍ତ୍ର ସୁଶୋଭିତ ରମ୍ୟ କଟିଦେଶ
ଚନ୍ଦନ ଭୂଷିତ ଅଙ୍ଗ ଶୋଭା ସୁପ୍ରକାଶ ।
କି ଅବା ଧୂଳି ଧୂସର ନବଘାତମୟ
ଦେଖିକରି ଆହ୍ଲାଦିତ ହେବ ମୋ ହୃଦୟ ।
ମୁରଲୀ ବଜାଇ ଅବା କରୁଥିବେ ଖେଳା
କରୁଥିବେ ଅବା ବନେ ଗୋଚାରଣ ଲୀଳା ।
ନୋହିଲେ ବା ଘରେ ବସିଥିବେ କଉତୁକେ
କି ଅବା ଶୟନ କରିଥିବେ ମହାସୁଖେ ।
ଏମନ୍ତ ରୂପରେ ଦରଶନ କରି ତାଙ୍କୁ
ଛଡ଼ାଇବି ପୂର୍ବଜନ୍ମ ପାପ ସମୂହକୁ ।

ଯାହାଙ୍କର ପାଦପଦ୍ମ ବ୍ରହ୍ମା ବିଷ୍ଣୁ ଶିବ
ଧ୍ୟାନ କରୁଥାନ୍ତି ପୁଣି ଇନ୍ଦ୍ର ଆଦି ଦେବ ।
ଯାହାଙ୍କ ପ୍ରଭାବ କହି ନ ପାରନ୍ତି ସୁରେ
ନାଶଯାନ୍ତି ହେତୁକରି ଯାହାଙ୍କୁ ଅସୁରେ ।
ଯେଉଁ ଦେବଙ୍କର ସ୍ତୁତି ପଢ଼ିବାକୁ ଯାଇ
ଜଡ଼ ହୋଇ ସରସ୍ୱତୀ ନ ପାରନ୍ତି ଗାଇ ।
ଯାହାଙ୍କ ପାଦପଦ୍ମରୁ ମନ୍ଦାକିନୀ ଧାର
ବହୁଅଛି ଜନ୍ମମୃତ୍ୟୁ ଜରାବ୍ୟାଧି ହରା ।
ଯାହାଙ୍କ ରୂପକୁ ମୂଳ ପ୍ରକୃତି ଈଶ୍ୱରୀ
ଧ୍ୟାନ କରୁଛନ୍ତି ସର୍ବବେଳେ ବସିକରି ।
ଯେଉଁ ମହାବିଷ୍ଣୁଙ୍କର ଲୋମକୂପମାନ
ଦେଉଛନ୍ତି ଲକ୍ଷ ଲକ୍ଷ ଜଗତକୁ ସ୍ଥାନ ।
ମାୟା ମନୁଷ୍ୟ ରୂପରେ ସେ ମହାପୁରୁଷ
ହୋଇଛନ୍ତି ଏବେ ବ୍ରଜନଗରେ ପ୍ରକାଶ ।
ତାଙ୍କୁ ଦେଖିବାକୁ ଯାଉଅଛି ଆହେ ବନ୍ଧୁ
ଦୟା କରିବେ ମୋଠାରେ ସେ କରୁଣାସିନ୍ଧୁ ।
ବ୍ରହ୍ମଜ୍ୟୋତି ସ୍ୱରୂପ ସେ ନିରୀହ ନିର୍ଗୁଣ
ସ୍ୱେଚ୍ଛାମୟ ସର୍ବରାଜ ଦେବ ସନାତନ ।
ପୂର୍ବକାଳେ ପାଦ୍ମନାମେ ତପସ୍ୱୀ ଗୋଟିଏ
ତପକରି ସହସ୍ରେକ ମନ୍ୱନ୍ତର ଯାଏ ।
ବ୍ରହ୍ମଜ୍ୟୋତି ଦେଖିବାକୁ କରିଥିଲା ମନ
ତଥାପି ପ୍ରାପତ ତାଙ୍କୁ ନୋହିଲା ଦର୍ଶନ ।
ସେ ସମୟେ ଆକାଶରୁ ଶୁଭିଲା ଶବଦ
ଆଉ ଥରେ ତପକର ନ କରି ପ୍ରମାଦ ।
ତେବେ ମୋର ରୂପ ତୁମ୍ଭେ କରିବ ସାକ୍ଷାତ
ତାହା ଶୁଣି ପୁଣି ତପ କଲେ ତପୋବନ୍ତ ।
ସେ ଅନ୍ତେ ବ୍ରହ୍ମସ୍ୱରୂପ ଦରଶନ କଲେ
ଇଚ୍ଛା ଅନୁରୂପେ ପୁଣି ବରକୁ ପାଇଲେ ।
ସେ ମହାପ୍ରଭୁଙ୍କୁ ଆଜ ପ୍ରତ୍ୟକ୍ଷରେ ଦେଖି
ସଫଳ ହୋଇବ ମୋର ପାପମୟ ଆଖି ।
ବିଶ୍ୱରୂପୀ ସଦାଶିବ ବହୁତପ କଲେ
ଗୋଲୋକରେ ପ୍ରଭୁଙ୍କର ସ୍ୱରୂପ ଦେଖିଲେ ।

ସେହି ବନଠାରୁ ତାଙ୍କ ପାଦପଦ୍ମେ ଭକ୍ତି
ଲଭିଲେ ନିଶ୍ଚଳ ଶିବେ ଦେବ ପଶୁପତି ।
ଏମନ୍ତ ପ୍ରଭୁଙ୍କୁ ଦେଖି ନୟନରେ ମୁହିଁ
ଜୀବନ ମୁକତ ହେବି ସନ୍ଦେହ ଯେ ନାହିଁ ।
ସହସ୍ରେ ଶିର ପତନ ହେବା ଯାଏ ଶେଷ
ନିରାହାର ହୋଇ ତପ କରିଣ ବିଶେଷ ।
ଦିବ୍ୟଜ୍ଞାନ ଲଭ କଲେ ଯାହାଙ୍କ କୃପାରେ
ସେ ପ୍ରଭୁଙ୍କୁ ଆଜ ମୁହିଁ ଦେଖିବି ନେତ୍ରରେ ।
ସେହିରୂପେ ଧର୍ମଦେବ ବହୁ ତପ କରି
ତିନିଲୋକ ସାକ୍ଷୀ ହେଲେ ପ୍ରଭବ ବିସ୍ତାରି ।
ଅଷ୍ଟାଦଶ ଇନ୍ଦ୍ରପାତ ହେଲେ ଯାହାଙ୍କର
ଦିବସ ରାତ୍ରି ହୁଅଇ ମାତ୍ର ଏକବାର ।
ସେହି ପରମ ଆତ୍ମାଙ୍କୁ ଦେଖିକରି ମୁହିଁ
ମୁକତ ହେବି ଏଥିରେ ସନ୍ଦେହ ଯେ ନାହିଁ ।
ପୃଥିବୀର ଧୂଳିପରି ସଂଖ୍ୟା ଜଗତରେ
କରିବାକୁ ସାମରଥ ନାହିଁଟି କାହାର ।
ତହିଁର ତଳେ ମହାବିରାଟ ପୁରୁଷ
ତାଙ୍କଠାରେ ଲୀନ ହୁଏ କୋଟି କୋଟି ବିଶ୍ୱ ।
ସେହି ମହାପୁରୁଷଙ୍କ ଅଟନ୍ତି କାରଣ
ତାହାଙ୍କୁ ଦେଖିବି ଆଜ ମୁହିଁ ବଡ଼ ଧନ୍ୟ ।
ବ୍ରହ୍ମା ଶିବ ଲକ୍ଷ୍ମୀ ସରସ୍ୱତୀ ଯା ଚରଣ
ନ ପାଇଲେ ତାହାଙ୍କୁ ମୁଁ କରିବି ଦର୍ଶନ ।
ଏମନ୍ତ କହି ଅକ୍ରୂର ନୟନରୁ ନୀର
ବୁହାଇଣ ପୁଲକିତ କଲା ସ୍ୱଶରୀର ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ଦେଇକରି ମନ
ସନ୍ତତରେ କଲା ତାଙ୍କ ସ୍ୱରୂପକୁ ଧ୍ୟାନ ।
ଉଦ୍ଧବ ତା ଦେଖିକରି ବହୁତ ପ୍ରଶଂସି
ଆଲିଙ୍ଗନ କଲେ ଆସନରୁ ଉଠିଆସି ।
ସେ ଅନ୍ତରେ ଯାଅ ବୋଲି ଅନୁମତି ଦେଲେ
ଶୁଣିଣ ଅକ୍ରୂର ଚଳିଗଲା ତହୁଁ ଭଲେ ।
ଏଥିଠାରେ ଅକ୍ରୂରର ଆନନ୍ଦ ବୃତ୍ତାନ୍ତ
କ୍ଷେତ୍ରମୋହନଙ୍କ ଦ୍ୱାରା ହେଲା ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣ ଦର୍ଶନ ସକାଶେ ଅକ୍ରୂରର ଆନନ୍ଦ ବୃତ୍ତାନ୍ତ କଥନେ ନାମ ପଞ୍ଚଷଷ୍ଟିତମୋଽଧ୍ୟାୟଃ ।



## ଷଷ୍ଟଷଷ୍ଟିତମ ଅଧ୍ୟାୟ

## ରାଧିକାଙ୍କ ସ୍ୱପ୍ନ ଦର୍ଶନ ଓ ଶ୍ରୀକୃଷ୍ଣଠାରୁ ଆଶ୍ୱାସନା ପାଇବା

ନାରାୟଣ ବୋଇଲେ ହେ ଋଷିକୁଳ ସାଇଁ
ଏଥୁଅନ୍ତେ ଯାହା ହେଲା ଶୁଣ ମନଦେଇ ।
ରାସ ମଣ୍ଡଳରେ ପ୍ରଭୁ ରାସ ଅଧୀଶ୍ୱର
କ୍ରୀଡ଼ା କରୁଥିଲେ ରାଧା ଦେବୀଙ୍କ ସଙ୍ଗରୁ ।
ସୁରତ ସୁଖରେ ଦେବୀ ହୁଅନ୍ତେ ନିଦ୍ରିତା
ସ୍ୱପନରେ ଦରଶନ କଲେ ନାନାକଥା ।
କ୍ଷଣକ ଅନ୍ତରେ ପୁଣି ଚେତନାକୁ ପାଇ
ପତିଙ୍କୁ ବୋଇଲେ ଶୁଣ ଆହେ ପ୍ରାଣସାଇଁ ।
ବହୁତ ଦୁଃସ୍ୱପ୍ନ ଏବେ ଦେଖିଲି ମୁଁ ଜାଣ
ସେ ହେତୁ ଆକୁଳ ମୋର ହେଉଅଛି ପ୍ରାଣ ।
ନ ଜାଣଇ ଭବିଷ୍ୟତେ ମୋତେ ପ୍ରଜାପତି
ଦେବେ କେତେବେଳେ ଅବା କେବଣ ବିପତ୍ତି
ସେହି ସ୍ୱପ୍ନର ସ୍ୱରୂପ କହୁଅଛି ଶୁଣ
ରତ୍ନ ସିଂହାସନେ ମୁହିଁ କଲି ଆରୋହଣ ।
ସେ ସମୟେ ବିପ୍ର ଜଣେ ସେହିଠାକୁ ଆସି
ନେଲେ ମୋହଠାରୁ ସ୍ୱର୍ଣ୍ଣିତନକୁ ଆକର୍ଷି ।
ସେ ଅନ୍ତରେ ବଳେ ମୋତେ ଟିକି ଘେନିଗଲେ
କଜ୍ଜଳାକାର ସମୁଦ୍ର ଜଳେ ଫିଙ୍ଗି ଦେଲେ ।
ସେ ଜଳରେ ସର୍ପମତ୍ସ୍ୟ କୁମ୍ଭୀର ଅପାର
ଦିଶୁଥାନ୍ତି ସ୍ଥାନେ ସ୍ଥାନେ ମହାଭୟଙ୍କର ।
ତା ଦେଖି ମୁଁ ନାଥ ନାଥ ବୋଲିଣ ତୁମ୍ଭଙ୍କୁ
ଡାକ ଅନାଇଲି ପୁଣି ଦିଗମଣ୍ଡଳକୁ ।
ତଥାପି ତୁମ୍ଭଙ୍କୁ ନ ଦେଖିଲି କେଉଁଠାରେ
ବ୍ୟାକୁଳ ହୋଇଣ ତହୁଁ କାନ୍ଦିଲି ଉଚ୍ଚରେ ।

ଆକାଶ ଦେଶରୁ ଛାଡ଼ି ଚନ୍ଦ୍ରମା ମଣ୍ଡଳ
ସେ ଜଳ ମଧ୍ୟରେ ବୁଡ଼ିଗଲା ତତକାଳ ।
କ୍ଷଣକ ଅନ୍ତରେ ପୁଣି ଦେଖି ମୁଁ ଚହିଁ
ଆକାଶରୁ ଖସି ସୂର୍ଯ୍ୟ ଆଗ୍ନେୟ ଶସ୍ତ୍ର ।
ଖଣ୍ଡଖଣ୍ଡ ହୋଇ ଧରା ଉପରେ ପଡ଼ିଲେ
ଲେଷ୍ଟ୍ରଖଣ୍ଡ ପରି ତେଜେ ବ୍ୟର୍ଥ ହୋଇଗଲେ ।
ଏକ ସମୟରେ ଚନ୍ଦ୍ର ସୂର୍ଯ୍ୟ ଦେବତାଙ୍କୁ
ଗ୍ରାସ କଲା ବ୍ରହ୍ମଗ୍ରହ ବସ୍ତ୍ରାର ମୁଖକୁ ।
ପୁଣି କ୍ଷଣକ ଅନ୍ତରେ ଦେଖିଲି ମୁଁ ଚହିଁ
ପାପମନ୍ତ୍ର ବିପ୍ର ଜଣେ ଆସି ବେଗେ ଧାଇଁ ।
ମୋ ଅଙ୍କରେ ଥିବା ସୁଧାକୁମ୍ଭ ନେଇଯାଇ
ଖଣ୍ଡ ଖଣ୍ଡ କରିଦେଲେ ତଳେ ଫୋପାଡ଼ିଇ ।
ଆଉ ମୁହୂର୍ତ୍ତ ଅନ୍ତରେ ଦେଖିଲି ମୁଁ ପୁଣ
କ୍ରୋଧ ହୋଇଣ ଆସିଲା ବିପ୍ର ଏକଜଣ ।
ମୋ ଚକ୍ଷୁରୁ କଜ୍ଜଳକା ଖୋଲି ନେଇଗଲା
ଲୀଳାପଦ୍ମ ଗୋଟି ହସ୍ତୁ ନେଇ ଚୂର୍ଣ୍ଣାଇଲା ।
ସେହିକ୍ଷଣି ହେମ୍ଗାର ଦର୍ପଣ ମୋହର
ତଳେ ପଡ଼ି ମିଶିଗଲା ଧୂଳି ସହିତରେ ।
ବକ୍ଷସ୍ଥଳୁ ରତ୍ନହାର ଛାଡ଼ି ସେହିକ୍ଷଣି
ଗୋଟି ଗୋଟି ହେଲା ମୁହିଁ ନ ପାରିଲି ଜାଣି ।
ରାଜଗୃହ ରତ୍ନ ପାଶେ ପୁତ୍ତଳିକା ଯେତେ
ଥିଲେ ହସି ହସି ନୃତ୍ୟ କଲେ ସେ ସମସ୍ତେ ।
ଆବର ବାସ୍ତୁଙ୍କେ ନିସ୍ତେ ଝଣ୍ଟି ପୁନଃ ପୁନଃ
ଗୀତ ଗାଇ ବଜାଇଲେ କରତାଳମାନ ।
କୃଷ୍ଣବର୍ଣ୍ଣ ବଡ଼ ବଡ଼ ଚନ୍ଦ୍ର ଆକାଶରେ
ବୁଲାବାର ଦେଖିଲି ମୁଁ ଅନେକ ସ୍ଥାନରେ ।
ପ୍ରାଣ ଅଧିଷ୍ଠାତ୍ରୀ ଦେବ ବାହାର ହୃଦରୁ
ବୋଇଲା ରାଧିକେ ମୁହିଁ ଯିବି ତୁମ୍ଭଠାରୁ ।
ବିଦାୟ ଦିଅ ଗୋ ମୋତେ ନ କର ଉତ୍ତର
ସମ୍ବନ୍ଧ ନାହିଁ କ୍ଷଣିକ ତୁମ୍ଭର ଅମ୍ଭର ।
କୃଷ୍ଣବର୍ଣ୍ଣ ମୂର୍ତ୍ତି ପାଏ ଆସି ମୋର ପାଶେ
ଆଲିଙ୍ଗନ କରି ଚୁମ୍ବଦେଲା ଗଣ୍ଡଦେଶେ ।
ଅଙ୍ଗଦେଶେ କୃଷ୍ଣବର୍ଣ୍ଣ ବସନ ତାହାର
ବାତାଘାତେ ଉଡ଼ି ହେଉଥିଲା ଫରଫର ।
ଏହିରୂପେ କୁପସିତ ସ୍ୱପ୍ନ ଦେଖିକରି
ଦୁଃଖ ସଲିଳରୁ ପ୍ରାଣ ହେଉଅଛି ପାରି ।
ଦକ୍ଷିଣ ଅଙ୍ଗ ମୋହର ନୃତ୍ୟ କରୁଅଛି
ଶୋକ ଦେଉ ମୁହିଁ ଜାଣି ନ ପାରେ କିଛି ।
କାହିଁପାଇଁ ଏହାସବୁ ଦେଖିଲି ଏଠାରେ
କହ ଅହେ ପ୍ରାଣେଶ୍ୱର ଦୟାକରି ମୋରେ ।
ଏମନ୍ତ ବୋଲି ରାଧିକା ଶ୍ରୀକୃଷ୍ଣଙ୍କ ପାଦେ
ପଡ଼ିଲେ ବଡ଼ଇ ଆଉ ଏ କହିବା ପଦେ ।
ଏରୂପେ ପ୍ରିୟାଙ୍କ ମୁଖୁଁ ଶୁଣି ଦେବହରି
ଆଶ୍ୱାସନା କଲେ ତାଙ୍କୁ ବକ୍ଷସ୍ଥଳେ ଧରି ।
ଆଧ୍ୟାତ୍ମିକ ଯୋଗ କହି ମନରୁ ତାଙ୍କର
ସକଳ ସନ୍ଦେହ ଭ୍ରମ କରିଲେ ଦୂର ।
ଦିବ୍ୟଜ୍ଞାନ ପାଇ ତେବେ ଆଶ୍ୱାସିତା ହେଲେ
ଅଧମ ହେମମୋହନ ଗୀତ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକାଙ୍କ ସ୍ୱପ୍ନ ଦର୍ଶନ ଓ ଶ୍ରୀକୃଷ୍ଣଠାରୁ ଆଶ୍ୱାସନା ପାଇବା କଥନେ ନାମ ଷଷ୍ଟଷଷ୍ଟିତମୋଽଧ୍ୟାୟଃ ।

## ସପ୍ତଷଷ୍ଟିତମ ଅଧ୍ୟାୟ

## ରାଧିକାଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର ଆଧ୍ୟାତ୍ମିକ ଯୋଗ ବର୍ଣ୍ଣନ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦ
ଶୁଣ ଶ୍ରୀକୃଷ୍ଣ ରାଧିକା ଦେବୀଙ୍କ ସମ୍ବାଦ ।
ବିରହ ବ୍ୟାକୁଳ ଦେଖି ପ୍ରିୟାଙ୍କୁ ଶ୍ରୀହରି
ଗଲେ କ୍ରୀଡ଼ା ସରୋବରେ ସଙ୍ଗତରେ ଧରି ।
ଯେଉଁଠାରେ ନାନାପ୍ରକାର ଜଳକ୍ରୀଡ଼ା କଲେ
ହରଷରେ ଦୁହେଁ ବସି କଥାବାର୍ତ୍ତା ହେଲେ ।
ମଣି ସୁବର୍ଣ୍ଣ ଦର୍ପଣେ ଦୁହିଁଙ୍କର ଯୋଗ
ହେଲା ସେ କାଳରେ ଜାଣ ଅହେ ମହାଭାଗ ।

ଅଷ୍ଟରତ୍ନ ଅଳଙ୍କାର ମଣ୍ଡି ନିଜ ଅଙ୍ଗେ
କ୍ରୀଡ଼ା କଲେ ରାସେଶ୍ୱର ରାସେଶ୍ୱରୀ ସଙ୍ଗେ ।
ସେ ସମୟେ ରାଧାଦେବୀ ଶ୍ରୀକୃଷ୍ଣଙ୍କୁ ଚାହିଁ
ବୋଇଲେ ମୋହର ବାକ୍ୟ ଶୁଣ ପ୍ରାଣସାଇଁ ।
ତୁମ୍ଭଙ୍କୁ ଦେଖି ଆନନ୍ଦ ହେଉଛି ମୋ ମନ
ବିରହ କାଳରେ ଶୁଖିଯାଉଛି ବଦନ ।
ଦିବସରେ ମହୌଷଧି ରତ୍ନେ ଦୀପଶିଖା
ହରଷ ହେଉଛି ମୁହିଁ ଦେଲେ ତୁମ୍ଭେ ଦେଖା ।
ମୁଁ ଅଟଇ ଅଗ୍ନିଶିଖା ତୁମ୍ଭେ ସେ ଆହୁତି
ତୁମ୍ଭଯୋଗେ ପ୍ରକାଶିତ ହୁଏ ମୋର ଜ୍ୟୋତି ।
ତୁମ୍ଭଙ୍କୁ ଛାଡ଼ିଲେ ଶୀତେ ପଦ୍ମଲତା ପରି
ନିଶ୍ଚୟ ଅକାଳେ ଯିବି ମୁହିଁ ମରି ।
ରୂପ ଯଉବନ ନାନା ଅଳଙ୍କାର ଶୋଭା
ଭ୍ରଷ୍ଟ ହେବ ତୁମ୍ଭ ବିନା ଶରୀରର ପ୍ରଭା ।
ସକଳ ଲୋକର ତୁମ୍ଭେ ଆତ୍ମା ଅଟ ଦେବ
ବିଶେଷରେ ମୋର ହୋଇଅଛ ଜୀବଧବ ।
ପଞ୍ଚପ୍ରାଣ ତୁମ୍ଭେ ମୋର ହୋଇଅଛ ଯେଣୁ
ତୁମ୍ଭଙ୍କୁ ଛାଡ଼ିଲେ ନିଶ୍ଚେ ମୃତ୍ୟୁ ହେବ ତେଣୁ ।
ତୁମ୍ଭ ବିନା ତୃଣମୟ ନିହାପର ମୁହିଁ
ଅସ୍ପଷ୍ଟତା ହେବ ଏଥି ସନ୍ଦେହ ସେ ନାହିଁ ।
ତୁମ୍ଭର ସଙ୍ଗମ ପାଇ ଗୋପବାଳାଗଣ
ଶୋଭା ପାଉଛନ୍ତି ଅତିଶୟରେଟି ଜାଣ ।
ଯେଉଁରୂପେ ଚନ୍ଦ୍ରପାଶେ ନଭେ ତାରାବୃନ୍ଦ
ପୂର୍ଣ୍ଣିମାସୀ ରଜନୀରେ ସୁନ୍ଦର ଦିଶନ୍ତି ।
ସେହିପରି ତୁମ୍ଭଯୋଗେ ରାଜନ୍ୟ ମଣ୍ଡଳୀ
ବିରାଜିତ ହେଉଅଛି ଆହେ ବନମାଳୀ ।
ଶାଖା ଫଳ କୁସୁମରେ ତରୁବର ପରି
ତୁମ୍ଭଙ୍କୁ ପାଇଣ ନନ୍ଦ ଯଶୋବନ୍ତୀ ନାରୀ ।
ଅତ୍ୟନ୍ତ ସୁନ୍ଦର ଦିଶୁଛନ୍ତି ଆହେ ହରି
କଟାଇଣ ଆନନ୍ଦରେ ଦିବସ ଶର୍ବରୀ ।
ତୁମ୍ଭ ଯୋଗ ରାସସ୍ଥଳ ସ୍ୱର୍ଗ ଭୁବନକୁ
ନିନ୍ଦା କରୁଅଛି ପାଇ ଅତ୍ୟନ୍ତ ଶୋଭାକୁ ।
ବଳବନ୍ତ ଲୋକଙ୍କର ମଧ୍ୟରେ ଆପଣ
ବହିଅଛ ସିଂହତୁଲ୍ୟ ପରାକ୍ରମ ପୁଣ ।
ଏମନ୍ତ କହି ରାଧିକା ଶ୍ରୀକୃଷ୍ଣଙ୍କ ପାଦେ
ପଡ଼ିଲେ ଶୋକରେ କଥା ନ କହିଣ ପାଦେ ।

ନାରଦ ବୋଇଲେ ଅହେ ମୁନିଙ୍କ ମଣ୍ଡନ
କହ ମୋତେ ଆଧ୍ୟାତ୍ମିକ ଯୋଗତତ୍ତ୍ୱମାନ ।
ଯେଉଁ ତତ୍ତ୍ୱ ଶ୍ରବଣରେ ଶୋକ ମୋହ ନାଶ
ହୁଏ ତାହା ଶୁଣିବାକୁ ବଳୁଛି ମାନସ ।
ଏହା ଶୁଣି ନାରାୟଣ ହରଷିତ ହେଲେ
ନାରଦଙ୍କ ମୁଖ ଚାହିଁ କହି ଆରମ୍ଭିଲେ ।
ବୋଇଲେ ହେ ମୁନିବର ଆଧ୍ୟାତ୍ମିକ ଯୋଗ
ବହୁତ ପ୍ରକାରେ ହୋଇଅଛି ସେ ବିଭାଗ ।
ପୂର୍ବକାଳେ ପରମାତ୍ମା ପ୍ରଭୁ ନଗଧର ।
କଠୋର ତପସ୍ୟା ହେତୁଁ କଲେ ତ୍ରିପୁରାର ।
ସନ୍ତୁଷ୍ଟ ହୋଇଣ ତାଙ୍କୁ ସମସ୍ତ କହିଲେ
ତାହାଙ୍କ ମନରୁ ଭ୍ରମ ଦୋଷ ନିବାରିଲେ ।
ସେ ଅନ୍ତରେ ମୋର ପିତା ଧର୍ମ ସିଂହକ୍ଷେତ୍ରେ
ତପ କଲେ ଦଶସହସ୍ର ବର୍ଷ ପରିଯନ୍ତେ ।
ତାହା ଜାଣି ପ୍ରଭୁ ତାଙ୍କଠାରେ ଦୟାକରି
କହିଲ ମାତ୍ର ତହିଁରୁ ଦେଲେ ସେହିପରି ।
ଆବର ମୁନି କପିଳ ସନତ କୁମାର
ସୁବର୍ଣ୍ଣ ଶୈଳରେ ତପ କଲେ ଯାଇ ଘୋର ।
ସେଠାରେ ପ୍ରଭୁ ତାହାଙ୍କୁ ଦେଇଣ କହିଲ
ନିଷ୍କଳଙ୍କ କରାଇଲେ ତାହାଙ୍କର ଚିତ୍ତ ।
ପୁଷ୍କର ତୀର୍ଥରେ ସୂର୍ଯ୍ୟ ଦୁଷ୍କର ସାଧନ
କରିବାରୁ ତୁଷ୍ଟ ହୋଇ ପ୍ରଭୁ ଭଗବାନ ।
ତାହାଙ୍କୁ ମଧ୍ୟ କହିଛ ପ୍ରଦାନ ସେ କଲେ
ଦୁର୍ବାସା ଭୃଗୁଙ୍କୁ ପୁଣି କହି କହି ଦେଲେ ।
ଏହିରୂପେ ଦୟାମୟ ଭକ୍ତପ୍ରିୟ ହରି
ଭକ୍ତଙ୍କ ମଧ୍ୟରେ ଯୋଗତତ୍ତ୍ୱକୁ ବିତରି ।
ରମ୍ୟ କ୍ରୀଡ଼ା ସରୋବରରେ ପ୍ରିୟାଙ୍କ ଆଗରେ
କହିଲେ ଯେଉଁରୂପ ତାହା ଶୁଣ ଏକେ ବାରେ ।
ବୋଇଲେ ଗୋ ପ୍ରିୟବତି ଶାନ୍ତସ୍ୱଭା ହୋଇ
ଜନ୍ମିଛ ତ ପୂର୍ବ କଥା ନ ଜାଣ କିପାଇଁ ।
ଗୋଲୋକରେ ଶ୍ରୀଦାମାଙ୍କ ଶାପଯୋଗେ ତୁମ୍ଭେ
ବିରହିଣୀ ହେବ ତାହା ଜାଣିଅଛୁ ଆମ୍ଭେ ।
କେତେଦିନ ପରେ ପୁଣି ମୋ ସଙ୍ଗେ ମିଳନ
ହୋଇବ ନିଶ୍ଚୟ ବୋଲି ମାନସରେ ଘେନ ।
ସେ ଅନ୍ତରେ ଗୋପ ଗୋପୀ ସହିତେ ତୁମ୍ଭଙ୍କୁ
ସଙ୍ଗତରେ ନେଇ ମୁହିଁ ଯିବି ଗୋଲୋକକୁ ।

ଏବେ ଆଧ୍ୟାତ୍ମିକ ଜ୍ଞାନ ବିଷୟରେ କହୁ
ମନ କର୍ଣ୍ଣ ସ୍ଥିରକରି ଶୁଣ କହୁଅଛୁ ।
ସକଳ ଆତ୍ମାରେ ସ୍ଥିର ରହିଅଛୁ ମୁହିଁ
କାହାର ଚକ୍ଷୁକୁ କେବେ ଦୃଶ୍ୟ ହୁଏ ନାହିଁ ।
ଯେଉଁରୂପେ ପ୍ରଭଞ୍ଜନ ସବୁଦେହେ ଥାଇ
କେଉଁଠାରେ ହେଲେ ଲିପ୍ତଭାବେ ନ ରହଇ ।
ତେମନ୍ତ ପ୍ରକାରେ ଲିପ୍ତ ନୋହି ମୁଁ କାହିଁରେ
ବିଦ୍ୟମାନ ହୋଇଥାଏ ସାକ୍ଷୀ ସ୍ୱରୂପରେ ।
ମୋର ପ୍ରତିବିମ୍ବ ରୂପେ ରହିକରି ଜୀବ
ଭୋଗ କରୁଅଛୁ ଶୁଭାଶୁଭ ଫଳ ସର୍ବ ।
ଜଳଘଟେ ଚନ୍ଦ୍ର ସୂର୍ଯ୍ୟ ବିମ୍ବ ଦିଶୁଥାଏ
ଭାଙ୍ଗିଗଲେ ସେ ରୂପରେ ଲୀନ ହୋଇଯାଏ ।
ସେହିପରି ସର୍ବଘଟେ ରହି ନିରନ୍ତର
ଅନ୍ତଃକାଳେ ଗୋପନରେ ହୁଅଇ ଅନ୍ତର ।
ଜୀବରୂପେ ସମସ୍ତଙ୍କୁ ଦେଖା ଦେଇଥାଏ
ଆତ୍ମା ରୂପରେ ଅଦୃଶ୍ୟ ହୋଇକରି ରହେ ।
ସଗୁଣ ନିର୍ଗୁଣ ମୂର୍ତ୍ତି ସର୍ବ ଦ୍ରବ୍ୟ ସ୍ଥିତ
ନିଜନ ଅଧିକ ରୂପେ ହୁଅଇ ବ୍ୟକତ ।
ମୋହର ଅଂଶ କଳାରେ ସର୍ବ ଦେବଗଣ,
ଜାତ ହୋଇଅଛନ୍ତି ଗୋ ରାସେଶ୍ୱରୀ ଜାଣ ।
ସେହିପରି ପାଞ୍ଚଭାଗ ହୋଇଣ ପ୍ରକୃତି
ଭିନ୍ନ ଭିନ୍ନ ସ୍ୱରୂପରେ ଜାତ ହୋଇଛନ୍ତି ।
ପ୍ରାକୃତ ଦେହୀ ଅଟନ୍ତି ଦେବତା ସକଳ
ଆତ୍ମାରୂପେ ବିରାଜିତ ମୂର୍ତ୍ତିଟି କେବଳ ।
ପ୍ରଳୟ କାଳରେ ନଷ୍ଟ ହୁଏ ପ୍ରାକୃତିକ
ସର୍ବଦା ରହଇ ମୂର୍ତ୍ତି ହୋଇ ନିରାତଙ୍କ ।
ବିରାଟ ପୁରୁଷ ରୂପେ ହୁଏ ମୁଁ ପ୍ରକାଶ
ଲୋମ ମୂଳରେ ରଖାଇ କୋଟି କୋଟି ବିଶ୍ୱ ।
ମୋ ଅଂଶରେ ଜାତହୋଇ ତୁମ୍ଭେ ସେକାଳରେ
ପ୍ରକାଶିତ ହୋଇଥାଅ ପ୍ରକୃତି ରୂପରେ ।
ମହାବିଷ୍ଣୁ ବୋଲି ମୋତେ ଜାଣ ଗୋ ସୁନ୍ଦରି
ବ୍ରହ୍ମା ବିଷ୍ଣୁ ଶିବ ସର୍ବେ ଅଂଶଜ ମୋହରି ।
ଆବର ଯେତେକ ଦେବ ଅଛନ୍ତି ଜଗତେ
ଅଂଶ କଳାରେ ଉତ୍ପନ୍ନ ସେହିଟି ସମସ୍ତେ ।
ବୈକୁଣ୍ଠରେ ଚତୁର୍ଭୁଜ ବିଷ୍ଣୁ ଅଟେ ମୁହିଁ
ମହାଲକ୍ଷ୍ମୀ ସ୍ୱରୂପରେ ତୁମ୍ଭେ ଅଛ ରହି ।
ଆବର ସାବିତ୍ରୀ ଦୁର୍ଗାଦେବୀ ସରସ୍ୱତୀ
ବୋଲାଉଛ ତୁମ୍ଭେ ଭିନ୍ନ ରୂପରେ ପ୍ରକୃତି ।
ନିଜ ଅଂଶ ଘେନି ହେଲେ ଶଇଳ ନନ୍ଦିନୀ
ରହିଲେ କୈଳାସ ପୁରେ ବୋଲାଇ ଭବାନୀ ।
ବଇକୁଣ୍ଠେ ମହାଲକ୍ଷ୍ମୀ କ୍ଷୀରୋଦ ତନୟା
ଗୋଲୋକ ଭୁବନେ ରାଧାଦେବୀ ମହାମାୟା ।
ଶ୍ରୀଦାମା ଶାପରେ ଏବେ ଭାରତବର୍ଷକୁ
ଆସିଅଛ ପବିତ୍ରିତ କରିଣ ଯିବାକୁ ।
ସଂସାରେ ହୋଇଅଛନ୍ତି ଯେତେ ସ୍ତ୍ରୀଜାତି
ସମସ୍ତେ ଅଟନ୍ତି ତୁମ୍ଭ କଳାରେ ଉଦ୍ଭୂତ ।
ସୂର୍ଯ୍ୟ ଅଗ୍ନି ଆଦି ନାନାରୂପ ଧରି ମୁହିଁ
ତୁମ୍ଭଯୋଗେ ସର୍ବକାର୍ଯ୍ୟ ସାଧନା କରଇ ।
ତୁମ୍ଭ ସାହାଯ୍ୟ ନ ଥିଲେ କଦାପି ମୋହର
ଲକ୍ଷ୍ୟ ସିଦ୍ଧି ହୋଇ ନ ପାରଇ ମନେକର ।
ମୁଁ ଅଟେ ପୁରୁଷ ତୁମ୍ଭେ ଅଟ ସେ ପ୍ରକୃତି
ଆମ୍ଭ ଦୁହିଁଙ୍କ ଯୋଗରେ ସୃଷ୍ଟି ଉତପତ୍ତି ।
ଭକ୍ତିମୁକ୍ତି ରୂପ ତୁମ୍ଭେ ଅଟ ଦେହୀଙ୍କର
ତୁମ୍ଭ କୃପାବଳେ ସର୍ବସିଦ୍ଧି ଲଭେ ନର ।
ଏରୂପେ କହି ଶ୍ରୀକୃଷ୍ଣ ରାଧାଙ୍କୁ ବକ୍ଷରେ
ବସାଇ ସାନ୍ତ୍ୱନା କଲେ ବିବିଧ ପ୍ରକାରେ ।
ଆବର ବହୁତ କ୍ରୀଡ଼ାକରି ତାଙ୍କ ସଙ୍ଗେ
କୁସୁମତଳ୍ପେ ଶୟନ କଲେ ରତିରଙ୍ଗେ ।
ଏହିଠାରେ ଆଧ୍ୟାତ୍ମିକ ଯୋଗର ବିସ୍ତର
ସମାପତ କଲେ ଗୀତେ କ୍ଷେତ୍ରବାସୀ ସ୍ଥିର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକାଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର
ଆଧ୍ୟାତ୍ମିକ ଯୋଗ ବର୍ଣ୍ଣନେ ନାମ ସପ୍ତଷଷ୍ଟିତମୋଽଧ୍ୟାୟଃ ।

—*—

# ଅଷ୍ଟଷଷ୍ଟିତମ ଅଧ୍ୟାୟ

## ଶ୍ରୀ ରାଧାଙ୍କର ଶୋକ ବିମୋଚନ

ନାରଦଙ୍କ ଆଗେ ନାରାୟଣ ମୁନିବର
କହନ୍ତି ଶ୍ରୀକୃଷ୍ଣ କଥା ସୁଧାରସସାର ।
ଶୁଣ ହେ ନାରଦ ମୋର କହିବାର ଶେଷ
ମନଦେଇ ଏବେ ଆହେ ମୁନିଗଣେଶ ।
କ୍ରୀଡ଼ା ସମାପତ କରି ଯଶୋଦା ନନ୍ଦନ
ପୁଷ୍ପଶଯ୍ୟାରୁ ଉଠିଣ ବସିଲେ ବହନ ।
ବସ୍ତ୍ର ଅଞ୍ଚଳରେ ରାଧାଦେବୀଙ୍କ ମୁଖକୁ
ମାର୍ଜନା କରି ସେକାଳେ କହିଲେ ତାହାଙ୍କୁ ।
ବୋଇଲେ ଗୋ ପ୍ରିୟସଖି କ୍ଷଣେ ରହସ୍ଥାନେ
ରହ ସେ ଅନ୍ତରେ ମିଶି ଯିବା ବୃନ୍ଦାବନେ ।
ଗ୍ରାମେ ଗ୍ରାମେ ଗ୍ରାମଦେବୀ ପରାୟେ ତୁମ୍ଭର
ସଖୀଗଣ ବୃନ୍ଦାବନେ କରନ୍ତି ବିହାର ।
ତୁମ୍ଭେ ଏବେ କ୍ଷଣେ ପାଇଁ ଚମ୍ପକ ବନରେ
ଅଥବା ଚନ୍ଦନ ବନେ ଗୋପୀଙ୍କ ସଙ୍ଗରେ ।
ମୁହୂର୍ତ୍ତେ ମାତ୍ର ବିଶ୍ରାମ କରୁଥାଅ ବସି
ଗୃହକୁ ଯାଉଛି ମୁହିଁ ଆଗୋ ସୁରୁକେଶୀ ।
ବିଦାୟ ଦେଇଣ ମୋତେ ସ୍ଥିରଭାବେ ରହ
କ୍ଷଣକ ବିରହ ଲାଗି ଆତୁର ନ ହୁଅ ।
ପ୍ରାଣରୁ ଧମାନ ମୋର ଶଙ୍କର ଅଟନ୍ତି
ତାହାଙ୍କଠାରୁ ଅଧିକ ଅଟ ତୁମ୍ଭେ ସତି ।
ଏମନ୍ତ କହି ଶ୍ରୀକୃଷ୍ଣ ଯିବାକୁ ବାହାର
ହେଲେ ଜାଣି ଆସୁଅଛି ବୋଲିଣ ଅକ୍ରୂର ।
ତାହା ଦେଖି ରାଧାଦେବୀ ଦୁଃଖକରି ମନେ
କହିଲେ ପ୍ରଣାମ କରି ପତିଙ୍କ ଚରଣେ ।
ବୋଇଲେ ଆହେ ରମଣଶ୍ରେଷ୍ଠ ପ୍ରାଣେଶ୍ୱର
ଜୀବନ ସ୍ୱରୂପ ତୁମ୍ଭେ ଅଟ ହେ ମୋହର ।
ତୁମ୍ଭେ ଛାଡ଼ିଗଲେ ମୋର ସଉଭାଗ୍ୟ ସ୍ନେହ
ବିନଷ୍ଟ ହୋଇବ ଏଥି ନାହିଁଟି ସଂଶୟ ।
ଗଭୀର ଶୋକସାଗରେ ଫିଙ୍ଗିଦେଇ ମୋତେ
କେଉଁଠାକୁ ଯାଉଅଛ ଆହେ ମହାମତେ ।
ତୁମ୍ଭେ ଗଲାପରେ ମୁହିଁ ଘରକୁ ନ ଯାଇ
ପଶିବି ନିବିଡ଼ ବନ ଅନ୍ତରାଳେ ଯାଇ ।
ଅଥବା କାମସାଗରେ ବୁଡ଼ି ପ୍ରାଣ ତେଜି
ଯିବି ଯମରାଜାଙ୍କର ପୁରମାର୍ଗ ହେଜି ।
ଆହେ ଧନନାଥ ମୁହିଁ ତୁମ୍ଭର କିଙ୍କରୀ
ଯାଉଅଛ କିମ୍ପା ଏବେ ମୋତେ ଏକାକରି ।
ତୁମ୍ଭ ପାଦ-କମଳରେ ବ୍ରହ୍ମା ବିଷ୍ଣୁ ହର
ମନ ନିବେଶିଣ ରହିଛନ୍ତି ନିରନ୍ତର ।
ମାୟାରେ ଯେ ଗୋପବେଶ କରିଅଛ ହରି
ମୁଁ ଛାର ତୁମ୍ଭଙ୍କୁ ଚିହ୍ନି ପାରିବି କପରି ।
ପରୀକ୍ଷିବ ଯେତେ ଯେତେ ଅପରାଧ ମୋର
ହୋଇଅଛି ତାହା ସବୁ ବାରେ କ୍ଷମାକର ।
ଜାଣିଲି ମୋହର ଗର୍ବ ହେଲା ଏକ ଚୂର୍ଣ୍ଣ
ବିଫଳ ହେଲା ଆବର ମନୋରଥମାନ ।
ଗର୍ଗଙ୍କ ମୁଖରୁ ସବୁ ଶୁଣିଥିଲି ମୁହିଁ
ତଥାପି ତୁମ୍ଭ ମାୟାରେ ଗଲି ମୁଗ୍ଧ ହୋଇ ।
ତୁମ୍ଭଙ୍କୁ ଛାଡ଼ିଲେ କ୍ଷଣେ ଯୁଗ ଶତ ପରି
ଲାଗୁଅଛି ଶତେବର୍ଷ ସହିବି କପରି ।
ଯେବେ ମୋତେ ଏକାକରି ଛାଡ଼ି ପଳାଇବ
ପୁତ୍ର ପୌତ୍ର ନଷ୍ଟକରି ବଂଶହୀନ ହେବ ।
ଆବର ଲୋକରେ ବୋଲାଇବ କଳଙ୍କ ତ ।
ସେଣୁ ବିରହରେ ମୋର ପ୍ରାଣ ଯିବା ସତ ।
ଏମନ୍ତ ବୋଲିଣ ସତୀ ପଡ଼ି ଧରଣୀରେ
ମୂର୍ଚ୍ଛିତା ହୋଇଲେ ଜ୍ଞାନହାରି ସେ କାଳରେ ।
ଶ୍ରୀକୃଷ୍ଣ ଦେଖି ତାହାଙ୍କୁ କୋଳେ ବସାଇଲେ
ସଚେତ କରାଇ ନାନାରୂପେ ବୋଧକଲେ ।
ଯୋଗତତ୍ତ୍ୱ ବିଷୟରେ ବହୁତ ପ୍ରକାର
ବତାଇ କହିଲେ ଶୋକ ହେବାପାଇଁ ଦୂର ।
ତଥାପି ରାଧିକା ଦେବୀ ନ ହେଲେ ସନ୍ତୁଷ୍ଟ
ବିରହ ବେଦନା ତାଙ୍କୁ ଦେଲା ଅତି କଷ୍ଟ ।
ସାମାନ୍ୟ ପଦାର୍ଥ ସଙ୍ଗେ ଘଟିଲେ ବିଚ୍ଛେଦ
ଜାତ ହୁଅଇ ମନରେ ଅସାମାନ୍ୟ ଖେଦ ।
ଦେହ ଆତ୍ମା ଦୁହିଁଙ୍କର ବିଚ୍ଛେଦ କାଳରେ
କେତେ ଦୁଃଖ ନ ଲାଗିବ ବିଶ୍ୱର ତ ଥରେ ।

ତାହା ଦେଖି ଦୟାମୟ ପ୍ରଭୁ ନରହରି
ସେହି ଲୀଳା ସରୋବରରେ ଶ୍ରୀରାଧାଙ୍କୁ ଧରି ।
ନାନାବିଧ ଲୀଳାକରି ହରନ୍ତି ସେଠାରେ
ରହିଲେ ଦେବୀଙ୍କୁ ତୋଷ କରିବା ଇଚ୍ଛାରେ ।
ବିରହ ବେଦନା ତ୍ୟାଗ କରଣ ଶ୍ରୀମତୀ
ସ୍ୱାମୀଙ୍କ ସହିତେ ତହିଁ କଲେ ଅବସ୍ଥିତି ।
ଏହିପରିରେ ରାଧାଙ୍କର ଶୋକ ବିମୋଚନ
ଗୀତରେ ଭଣିଲେ କ୍ଷେତ୍ରବାସୀ ଦୀନ ହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀରାଧାଙ୍କର ଶୋକ
ବିମୋଚନେ ନାମ ଅଷ୍ଟଷଷ୍ଟିତମୋଽଧ୍ୟାୟଃ ।



## ଊନସପ୍ତତିତମ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନେ ରାଧାଙ୍କର ଶୋକ ଓ ଶ୍ରୀକୃଷ୍ଣଙ୍କର ପୁନର୍ଦର୍ଶନ ଦାନ

ଏଥିଅନ୍ତରେ ନାରଦ ଆନନ୍ଦିତ ହୋଇ
ପଚାରିଲେ ପୁଣି ନାରାୟଣଙ୍କୁ ଅନାଇଁ ।
ବୋଇଲେ ହେ ମୁନିବର ରାଧାକୃଷ୍ଣଙ୍କର
ସେ ସ୍ଥାନରେ ହେଲା ଲୀଳା କେମନ୍ତ ପ୍ରକାର ।
ଆମୂଳ କରିଣ ମୋତେ କହ ସବୁ ତାହା
ଶୁଣିବା ସକାଶେ ମୋର ବଳୁଅଛି ସ୍ପୃହା ।
ତାହା ଶୁଣି ନାରାୟଣ ବୋଇଲେ ହେ ମୁନି
କହିବା ସେ କଥା ଏବେ ଶୁଣ ହୋଇ ଗୁଣି ।
ଅତ୍ୟନ୍ତ ରହସ୍ୟ ଯେହୁ ଶାସ୍ତ୍ର ଅଗୋଚର
ଶ୍ରବଣ କରିଲେ ସର୍ବ ପାପ ହେବ ଦୂର ।
ସ୍ୱେଚ୍ଛାମୟ ସର୍ବରୂପ ପ୍ରଭୁ ଜନାର୍ଦ୍ଦନ
ପ୍ରିୟାଙ୍କୁ ଯେମନ୍ତ ଲୀଳା କଲେ ଦେଇ ମନ ।
ଷୋଡ଼ଶ ବର୍ଷ ବୟସ୍କା ଶୁଭଭୂଷିତା ଶ୍ରୀମତୀ ରାଧିକା
କାମିନୀ ଗୁଣରେ ସବୁଠାରୁ ସେ ଅଧିକା ।
କାମଶାସ୍ତ୍ର ବିଶାରଦା ଦେଖା କଳାବତୀ
ସୁନ୍ଦରୀ ରସିକେଶ୍ୱରୀ ପ୍ରତିବ୍ରତା ସତୀ ।
ପୈତୃକ ମାନସୀ କନ୍ୟା ପରମ ମାନିନୀ
ମହାଶ୍ରୀ ବିଶିଷ୍ଟ କଲ୍ୟାଣ ଦାୟିନୀ ।
ତାହାଙ୍କ ଗର୍ଭରୁ ଜାତ ହେବାରୁ ସୁନ୍ଦରୀ
ହୋଇଥିଲେ ସକୁଶଳେ କମଳାଙ୍କ ପରି ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ରତିରସେ ମାତି
କ୍ଷଣେ ଅତି କଠୋର ଦିଅନ୍ତି ଯାତନା ।
ଶରୀର ସଂଖେଳ ଛେଦକରି ଶ୍ରୋଣୀ ଉପରେ
ଭ୍ରମଣ କଲେ ସେ କାଳେ ଯୋଷିତା ବକ୍ଷରେ ।
ସୁରତ ସମ୍ଭୋଗ ସୁଖେ ରାଧା ଦେବୀଙ୍କର
ପୁଲକିତ ହୋଇ ଅଙ୍ଗ ଦିଶିଲା ସୁନ୍ଦର ।
ସେହିକ୍ଷଣି ନୟନରେ ନିଦ୍ରା ପଶି ବେଗ
ହୁଅନ୍ତେ ଶୋଇଲେ ଦେବୀ ପ୍ରକ୍ଷିଣ ନିଃଶ୍ୱାସ ।
ଶ୍ରୀକୃଷ୍ଣ ତାହାଙ୍କୁ ଦେଖି ବକ୍ଷସ୍ଥଳେ ଥୋଇ
ସେବନ କଲେ ଜଗତ ଲୋକଶିକ୍ଷା ପାଇଁ ।
ଲୋତକରେ ଦେବୀଙ୍କର ଦେହ ତିନ୍ତିଗଲା
ସ୍ତନତଟକୁ ଚନ୍ଦନ ବିଲୁପ୍ତ ହୋଇଲା ।
ସେ ଅନ୍ତରେ ପୁଣି ପ୍ରଭୁ ଦିବ୍ୟବାସ ଆଣି
ନିଜ ହସ୍ତରେ ପିନ୍ଧାଇ ଦେଲେ ସେହିକ୍ଷଣି ।
ଅମୂଲ୍ୟ ସୁବର୍ଣ୍ଣ ରତ୍ନ ଅଳଙ୍କାରମାନ
ଖଞ୍ଜିଲେ ଯଥାସ୍ଥାନରେ କରଣ ଯତନ ।
ଗଣ୍ଡଦେଶେ ପତ୍ରାବଳୀ ଲେଖି ସେ ଅନ୍ତରେ
ସିନ୍ଦୂର ବିନ୍ଦୁକୁ ଦେଲେ ଲଲାଟ ପଟରେ ।
ପୁଣି ମୋହବଶ ହୋଇ ଗାଢ଼େ ଆଲିଙ୍ଗନ
କଲେ ମୁଖେ ଚୁମ୍ବଦେଇ ପ୍ରଭୁ ଜନାର୍ଦ୍ଦନ ।
ଏହି ସମୟରେ ବ୍ରହ୍ମା ଲୋକ ପିତାମହ
ସଙ୍ଗେ ଘେନି ଇନ୍ଦ୍ର ଆଦି ଦେବତା ସମୂହ ।
ସେହିଠାରେ ଉପଗତ ହେଲେ ବେଗେ ଆସି
ପ୍ରଣମିଲେ ଶ୍ରୀକୃଷ୍ଣଙ୍କୁ ବିନୟ ପ୍ରକାଶି ।
ସେ ଅନ୍ତରେ କରଯୋଡ଼ି ଆରମ୍ଭିଲେ ସ୍ତୁତି
ବୋଇଲେ ନମସ୍ତେ ଦେବ ଶ୍ରୀରାଧିକା ପତି ।
ଜୟ ଜୟ ଜଗନ୍ନାଥ ପ୍ରଭୁ ନିରାକାର
ସ୍ୱେଚ୍ଛାମୟ ନାନାରୂପୀ ଗୋପବେଶଧର ।

ଜ୍ଞାନାନନ୍ଦ ପରାତ୍ପର ପରମ ସୁ ତତ୍ତ୍ୱ
ବ୍ୟକ୍ତାବ୍ୟକ୍ତ ନିରଞ୍ଜନ ତ୍ରିଭୁବନ ଈଶ ।
ଶରଣ ପଞ୍ଜର ଭକ୍ତ ଅନୁଗ୍ରହକାରୀ
ନମସ୍ତେ ନମସ୍ତେ ଜରା ମୃତ୍ୟୁ ଦୁଃଖହାରୀ ।
ଏମନ୍ତ ବୋଲଣ ବ୍ରହ୍ମା ପୁଣି ବାରମ୍ବାର
ଶ୍ରୀକୃଷ୍ଣ ଚରଣେ ନମି କଲେ ନମସ୍କାର ।
ବ୍ରହ୍ମାକୃତ ସ୍ତୋତ୍ର ପାଠକରେ ଯେହୁ ନିତ୍ୟ
କେତେବେଳେ ହେଲେ ତାକୁ ନ ଯଡ଼େ ବିପତ୍ତି
ଧନଜନ ଗୋପଲକ୍ଷ୍ମୀ ସ୍ୱାଗତ ହୁଅଇ
ଅନ୍ତଃକାଳେ ଶ୍ରୀହରିଙ୍କ ଦାସତ୍ୱ ମିଳଇ ।
ଆହେ ମୁନିବର ଏଥୁଅନନ୍ତରେ ଯାହା
ହେଲା କହୁଅଛୁ ମନ ଦେଇ ଶୁଣ ତାହା ।
ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି ପୁଣି ପ୍ରଜାପତି
କହିବା ଆରମ୍ଭ କଲେ ତହିଁ ଯଥାର୍ଥ ଭାରତୀ ।
ବୋଇଲେ ଆହେ ଭକତ ବତ୍ସଳ ସୁରେଶ
ନନ୍ଦ ମନ୍ଦିରକୁ ଯାଅ ଛାଡ଼ି ଏ ପ୍ରଦେଶ ।
ଶତବର୍ଷ ନିବନ୍ଧନ ଶ୍ରୀଦାମାଙ୍କ ଶାପ
ସୁମରଣା କର ଏବେ ଛାଡ଼ିଣ ସନ୍ତାପ ।
ଭକ୍ତ ଶାପ ଅନୁରୋଧେ ଛାଡ଼ି ରାଧିକାଙ୍କୁ
ବିଜେକର ଆହେ ଦେବ ମଥୁରା ପୁରକୁ ।
ଶାପ ଅନ୍ତେ ଦରଶନ ଦେଇ ପୁଣି ଥରେ
ଗୋଲୋକ ଭୁବନେ ଯିବ ଯେନ ସଙ୍ଗତରେ
ଏବେ ନନ୍ଦ ଭୁବନକୁ ଆସିଛୁ ଅକ୍ରୂର
ଧର୍ମରେ ପିତୃବ୍ୟ ସେହୁ ଅଟଇ ତୁମ୍ଭର ।
ତା ସଙ୍ଗରେ ମଧୁପୁରେ ପରବେଶ ହୋଇ
ଶିବଧନୁ ଭାଙ୍ଗି ଦିଅ ଶମ୍ଭୁଙ୍କ ବଢ଼ାଇ ।
ଦୁଷ୍ଟମତି କଂସାସୁର ଜୀବନ ସଂହାର
କର ବେଗେ ଆହେ ପ୍ରଭୁ ଲୋକ ଅଧୀଶ୍ୱର
ପ୍ରବୋଧନା କରି ପିତା ମାତାଙ୍କୁ ସେପରେ
ନିର୍ମିତ କର ସାଗରେ ଦ୍ୱାରବତୀ ପୁରୀ ।
ବାରାଣସୀ ଦଗ୍ଧକରି ଶିବଙ୍କୁ ଦମନ
କରିଅ ସେଠାରେ ଆହେ ଜଗତ ପାବନ ।
ବାଣାସୁରକୁ ନିପାତି ରୁକ୍ମିଣୀ ହରଣ
ଆଦରି ଷୋଳ ସହସ୍ର କାମିନୀ ବରଣ ।
କରିଣ ପୃଥିବୀ ଭାର ନିବାରି ସତ୍ୱରେ
ଆସିବ ପୁଣି ଏଠାକୁ ଶତବର୍ଷ ପରେ ।

ଏରୂପେ କହୁଚ ଜାଣି ଅଛି ବୋଲି ମୁହିଁ
ଜଣା କରାଇଲୁ ଆହେ ପ୍ରଭୁ ଭବସ୍ୱାମୀ ।
ଏମନ୍ତ କହି ବିଧାତା ଦେବଗଣ ଘେନି
ସେହିକ୍ଷଣି ସେ ସ୍ଥାନରୁ ଅନ୍ତର ହୋଇଲେ ।
ସେ ସମୟେ ଶ୍ରୀକୃଷ୍ଣଙ୍କ ମସ୍ତକ ଉପରେ
ପୁଷ୍ପ ବୃଷ୍ଟି ହେଲା ସର୍ବେ ଦେଖିଲେ ନେତ୍ରରେ ।
ଆଉରି ଶୁଭିଲା ଆକାଶରୁ ଦିବ୍ୟ ବାଣୀ
କଂସକୁ ନିପାତ କର ଆହେ ଚକ୍ରପାଣି ।
ବନ୍ଧନରୁ ପିତା ମାତା ଦୁହିଁଙ୍କୁ ଉଦ୍ଧରି
ନିବାରିତ କର ମହାଅନ୍ଧକାର ଘୋର ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ଛାଡ଼ିଣ ରାଧାଙ୍କୁ
ଧୀରେ ଧୀରେ ଉଠିଯାଇ ଅଳପ ଦୂରକୁ ।
ଘେନି ବନରେ କ୍ଷଣେ ମାତ୍ର ଉଭାହେଲେ
ସେହିକାଳେ ରାଧାଦେବୀ ଚେତନା ପାଇଲେ ।
କୃଷ୍ଣଙ୍କୁ ନ ଦେଖି ଘନେ ନାଥ ନାଥ ବୋଲି
ହୃଦୟ ଫଟାଇ ଉଚ୍ଚେ ଘୋଷିଲେ ବେ ଜାଳି ।
ବୋଇଲେ ହେ ପ୍ରାଣପ୍ରିୟ ଛାଡ଼ିକରି ମୋତେ
କେଉଁଆଡ଼େ ଗଲ ଦୟା ନ କରିଣ ଚିତ୍ତେ ।
ଏମନ୍ତ ବୋଲି ମୁହୂର୍ତ୍ତେ ଅଚେତନ ହେଲେ
ମାଳତୀ ବନରେ ଯାଇ ପ୍ରବେଶ ହୋଇଲେ ।
ସେଠାରେ ଶୟନ କରି ଅବସାଦର ସତି
ବୋଇଲେ ଦର୍ଶନ ଦିଅ ଆହେ ପ୍ରାଣପତି ।
ତାହାଙ୍କ କ୍ରନ୍ଦନ ଶୁଣି ଗୋପିକା ସକଳ
ଆସିଲେ ସେହି ସ୍ଥାନକୁ ହୋଇକରି ମେଳ ।
ଚନ୍ଦନ ଶୀତଳ ଜଳ ଚାମରକୁ ଘେନି
ଉପସ୍ଥିତ ହେଲେ ଆସି କେତେକ କାମିନୀ ।
ତାଙ୍କ ମଧ୍ୟେ ଦେବୀଙ୍କର ପ୍ରିୟସଖୀ ଯେତେ
ନାନା ବିଧ ଉପଚାର କଲେ ସେ ସମସ୍ତେ ।
ଏହି ସମୟରେ ପ୍ରଭୁ ନନ୍ଦରାଜ ସୁତ
ଲେଉଟି ପ୍ରିୟାଙ୍କ ପାଶେ ହେଲେ ଆସି ସ୍ଥିତ ।
ନବାଗତେ କଟକ ହେଲା ଗୋପୀଗଣ ଚିତ୍ତ
ନାମ ନ ତାଙ୍କ ଭକତରେ ପଶିଲେ ଧାଇଁ ।
ରାଧିକା ଦେବୀଙ୍କୁ କଲେ କୋଳେ ବସାଇଲେ
ମୁଖରେ ଶୀତଳ ଜଳ ଲଗାଇ ଦେଖିଲେ ।
ଚେତନା ପାଇଣ ଦେବୀ ପ୍ରାଣବଲ୍ଲଭଙ୍କୁ
ପାଶରେ ଦେଖି ଛାଡ଼ିଲେ ହୃଦୟ ବ୍ୟଥାକୁ ।

ସୁସ୍ଥିର ହୋଇ ପତିଙ୍କୁ ଆଲିଙ୍ଗନ କରି
ମଧୁର ବଚନ କହି ମନ ନେଲେ ହରି ।
ତାଙ୍କଠାରେ ବଳେ ରତି କରି ପୀତବାସ
ସନ୍ତୁଷ୍ଟ କଲେ ଯେକାଳେ ପ୍ରିୟାଙ୍କ ମାନସ ।
ରତ୍ନମାଳା ନାମରେ ଯେ ରାଧା ପ୍ରିୟସଖୀ
କହିଲେ ଶ୍ରୀକୃଷ୍ଣଙ୍କର ମୁଖକୁ ଅନାଇଁ ।
ବୋଇଲେ ଆହେ ଶ୍ରୀକୃଷ୍ଣ ମୋହର ବଚନ
ଶୁଣ କହୁଅଛି ଏବେ ଦେଇକରି ମନ ।
ସ୍ତ୍ରୀମାନଙ୍କର ପ୍ରିୟ ଜନକ ଜନନୀ
ଆଉର ଭ୍ରାତାକୁ ମଧ୍ୟ ପ୍ରିୟ ବୋଲି ଘେନି ।
ତାହାଙ୍କଠାରୁ ଅଧିକ ଅଟଇ କୁମର
ସବୁଠାରୁ ଶ୍ରେଷ୍ଠ ପତି ବୋଲି ମନେକରି ।
ପତି ଯେବେ ଗୁଣବନ୍ତ ହୁଅଇ ସର୍ବଦା
ପରମ ସୁଖରେ ଦିନ ନିଏ ପରମଦା ।
ବିଷମ ହୁଅଇ ଯେବେ ବିଷତୁଲ୍ୟ ତାରି
ନିଷ୍ଫଳ ହୁଏ ସକଳ ସଂସାର ବେଭାର ।
ଜାୟାପତି ଦୁହିଙ୍କର ପରସ୍ପର ପ୍ରେମ
ସୌଭାଗ୍ୟ ସମତା ଅଟେ ସଂସାରେ ଉତ୍ତମ ।
ପତି ପତ୍ନୀ ଦୁହେଁ ଯେବେ କଳହରେ ରତ
ହୁଅନ୍ତି ତାହାଙ୍କୁ ଲକ୍ଷ୍ମୀ ତୁହେଁ ପରାପତ ।
ଯେମାନଙ୍କ ଘରେ କଳି କରିଥାଏ ବାସ
ନ ରହନ୍ତି ଦେବତାଏ କେହି ତାଙ୍କ ପାଶ ।
ତୁମ୍ଭେ ଯିବାପରେ ଦେବୀ ମୂର୍ଚ୍ଛିତା ହୋଇଲେ
କାଟିଲ ବୃକ୍ଷ ପରାୟେ ମହୀରେ ପଡ଼ିଲେ ।
ସେତେବେଳେ ଆସି ମୁହିଁ ମୁଖେ ଜଳ ସିଞ୍ଚି
ସଚେତ କରାଇଦେଲି ବସ୍ତ୍ରାଞ୍ଚଳେ ବିଞ୍ଚି ।
ଚେତନା ପାଇଣ ଦେବୀ ବିରହ ବ୍ୟଥାରେ
ପୀଡ଼ିତା ହୋଇ ଶୋଇଲେ ପଦ୍ମଦଳ ପରେ ।
ଆଉର ଚନ୍ଦନ ଭୂଲେ କର୍ପୂର ମିଶାଇ
ବୋଳିଲେ ଅଙ୍ଗରେ ତାପ ଶାନ୍ତହେବା ପାଇଁ ।
ଦେଖି ତାହା ବିରସରେ ପ୍ରିୟସଖୀଗଣ
ନାନା ଉପଚାର ଆଣି ଦେଲେ ତତକ୍ଷଣ ।
ଏ ସକାଶୁ କହୁଅଛି ଆହେ ନଟବର
ବିଚାରି ଉଚିତ ଯାହା ହେବ ତାହା କର ।
ରତ୍ନମାଳାଠାରୁ ଶୁଣି ଏମନ୍ତ ବଚନ
କହିଲେ ତାହାଙ୍କୁ ପୁଣି ନନ୍ଦଙ୍କ ନନ୍ଦନ ।

ବୋଇଲେ ଗୋ ରତ୍ନମାଳା କହିଲୁଟି ଯାହା
ସତବୋଲି ମାନସରେ ଜାଣୁଛି ମୁଁ ତାହା ।
ବିରହ ବେଦନା ସହି ନ ପାରିବେ ରାଧା
ଏ କଥା ହେଉଛି ମୋର ହୃଦୟକୁ ବାଧା ।
ତଥାପି ଲୋକରେ ଯେଉଁ ମର୍ଯ୍ୟାଦାକୁ ମୁହିଁ
ସ୍ଥାପନା କରିଛି ତାହା ଅଲଂଘ୍ୟ ଅଟଇ ।
ଦେବତା ଦାନବ ଯକ୍ଷ ରାକ୍ଷସ କିନ୍ନର
ସମସ୍ତେ ପାଳନ୍ତି ଯେହି ମର୍ଯ୍ୟାଦା ମୋହର ।
କିରୂପେ ଏବେ ତାହାକୁ କରିବି ଅନ୍ୟଥା
ଜଗତ ଲୋକଙ୍କ ମନେ ଉପୁଜାଇ ବ୍ୟଥା ।
ଶ୍ରୀଦାମ ଶାପରେ ଶତ ବର୍ଷ ପର୍ଯ୍ୟନ୍ତେ
ବିଚ୍ଛେଦ ହୋଇବ ମୋର ପ୍ରିୟାଙ୍କ ସହିତେ ।
ସେହି ଶାପ ବଚନ ତ ନୋହିବ ଅନ୍ୟଥା
ଭାବିବାପାଇଁ ଏଥିରେ ଅଛି କେଉଁ କଥା ।
କିନ୍ତୁ ଦେଇଅଛି ମୁହିଁ ରାଧିକାଙ୍କୁ ବର
ଜାଗରଣ କାଳେ ହେବ ବିରହ ଆମ୍ଭର ।
ସ୍ୱପ୍ନରେ ସର୍ବଦା ସଙ୍ଗ ଲାଭ ହେଉଥିବ
ସେ ହେତୁ ବିଚ୍ଛେଦ ଦୁଃଖ ଦୁଃସହ ନ ହେବ ।
ଆଧ୍ୟାତ୍ମିକ ତତ୍ତ୍ୱ କହିଅଛି ମୁଁ ତାହାଙ୍କୁ
ବଞ୍ଚାଇନେବେ ସେ ଶୋକ ଉଦ୍‌ବେଗ ବାଧାକୁ
ତୁମ୍ଭେ ମଧ୍ୟ ପାଶେ ରହି ନାନା ଉପଦେଶ
ଦେଉଥିବ ଯଥା ସମୟରେ ବହି ତୋଷ ।
କୁଶଳରେ ଥାଅ ତୁମ୍ଭେ ଯାଉଅଛି ମୁହିଁ
ଏମନ୍ତ କହି ଶ୍ରୀକୃଷ୍ଣ ଚଳେ ବେଗ ହୋଇ ।
ରତ୍ନମାଳା ଆଦି କରି ସର୍ବ ସଖୀଗଣ
ଯତ୍ନରେ ରାଧାଦେବୀଙ୍କୁ କଲେ ପ୍ରବୋଧନ
ପ୍ରବେଶ ହୋଇ ଶ୍ରୀକୃଷ୍ଣ ବ୍ରଜରାଜ ପୁରେ
ପ୍ରଣାମ କରିଲେ ପିତା ମାତାଙ୍କ ପୟରେ ।
ଯଶୋଦା ଦେବୀଙ୍କ କୋଳେ ବସିତୋଷ ଚିତ୍ତେ
ଭୋଜନ କଲେ ଯେ ଦଧି ଲବଣୀ ସହିତେ ।
ମାତାଙ୍କ ହସ୍ତରୁ ପୁଣି ସୁବାସ ତାମ୍ବୁଳ
ଭୁଞ୍ଜିଲେ ଆନନ୍ଦେ ଅଣି ପ୍ରଭୁ ଆଦିମୂଳ ।
ଏହିଠାରେ ରାଧାଙ୍କର ବିରହ ବୃତ୍ତାନ୍ତ
କ୍ଷେତ୍ରମୋହନ ଗୀତରେ କଲି ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ବିରହରେ ରାଧାଙ୍କର ଶୋକ ଓ ଶ୍ରୀକୃଷ୍ଣଙ୍କର ପୁନର୍ଦର୍ଶନ ଦାନ ବର୍ଣ୍ଣନେ ନାମ ଊନସପ୍ତତିତମୋଽଧ୍ୟାୟଃ ।

# ସ ପ୍ତ ଦ ଶ ମ ଅ ଧ୍ୟା ୟ

## ଅକ୍ରୂରର ଗୋପପୁର ପ୍ରବେଶ ଓ ଶ୍ରୀକୃଷ୍ଣଙ୍କର ମଥୁରା ଗମନ କାଳରେ ଗୋପୀମାନଙ୍କର ଶୃଙ୍ଖଳା

ଏଥୁଅନ୍ତେ ନାରାୟଣ ମୁନି ତୋଷଭରେ
କହିଲେ ବସି ନାରଦ ଋଷିଙ୍କ ଆଗରେ ।
ବୋଇଲେ ଦେଇଣ ମନ ଶୁଣ ହେ ନାରଦ
ଅକ୍ରୂର ଶ୍ରୀକୃଷ୍ଣଙ୍କର ମିଳନ ସମ୍ବାଦ ।
କଂସ ନୃପତିର ଆଜ୍ଞା ପ୍ରମାଣେ ଅକ୍ରୂର
ଗୋପପୁରେ ଯିବାପାଇଁ ହୋଇ ତତପର ।
ଆପଣା ମନ୍ଦିରେ ସେହି ଦିନକ ରହିଲେ
ନିଶାକାଳରେ ଭୋଜନ ସାରିଣ ଶୋଇଲେ ।
ପ୍ରଭାତ ସମୟ ହୋଇନ୍ତେ ଦେଖିଲେ ସ୍ୱପନ
ବିଜେ ହୋଇଛନ୍ତି ଆଗେ କମଳଲୋଚନ ।
କିଶୋର ବୟସ ନବ ନୀରଦ ଶ୍ୟାମଳ
ମାଳତୀମାଳ ଭୂଷିତ ରମ୍ୟ ବକ୍ଷସ୍ଥଳ ।
ଦ୍ୱିଭୁଜ ମୁରଲୀ ହସ୍ତ ସୁପୀତ ବସନ
ଶ୍ରୀଅଙ୍ଗରେ ବିରାଜିତ ନାନା ଆଭରଣ ।
ଚନ୍ଦନ ଚର୍ଚ୍ଚିତ ଅଙ୍ଗ ଦେଖି ପୁଲକିତ
ଶରଦ ଚନ୍ଦ୍ରମା ତୁଲ୍ୟ ଶ୍ରୀମୁଖ ମଣ୍ଡଳ ।
ସେ ଅନ୍ତେ ଦେଖିଲେ ପୁଣି ବିପ୍ର ଜଣେ ଆସି
ଆଦିତ୍ୟ ପରାୟେ ବ୍ରହ୍ମତେଜ ପରକାଶି ।
ଅକସ୍ମାତେ ଆସି ତାଙ୍କ ଆଗେ ଉଭା ହେଲେ
ଶୁଭ ଆଶୀର୍ବାଦ ଦେଇ ଧୀରେ ଚାଲିଗଲେ ।
ତାଙ୍କ ଯିବାପରେ ଏକ ସୁନ୍ଦରୀ ରମଣୀ
ଦେହରେ ଦିବ୍ୟବସନ ଅଳଙ୍କାର ଘେନି ।
ସମୀପରେ ଉପସ୍ଥିତ ହେଲେ ସ୍ୱଇଚ୍ଛାରେ
ପ୍ରଶଂସା ବଚନ କହିଗଲେ ସେ ସତ୍ୱରେ ।
ସେ ଅନ୍ତରେ ଶ୍ୱେତପଦ୍ମ ଶ୍ୱେତହଂସ ସର
ଆମ୍ର ଜମ୍ବୁ ନାରିକେଳ ଆଦି ତରୁବର ।
ଦେଖିଲେ ଆଗରେ ରହିଅଛନ୍ତି ଯତନେ
କ୍ରୀଡ଼ା କରୁଛନ୍ତି ତହିଁ ପକ୍ଷୀଜନ୍ତୁମାନେ ।
ଶ୍ୱେତ ସର୍ପଟାଏ ଆସି ଉଚେ ଫଣା ଟେକି
ଦଂଶିଲା ଦକ୍ଷିଣ ଭୁଜେ ବିସ୍ତାର ପାଟିକି ।
ନିଜ ହସ୍ତେ ଶୁକ୍ଳଧାନ୍ୟ ଦଧି ଘୃତ କ୍ଷୀର
ଶୁକ୍ଳପୁଷ୍ପ ଶୁକ୍ଳଗନ୍ଧ ଦେଖିଲେ ଅକ୍ରୂର ।
ସେ ଅନ୍ତେ ରଜତମଣି ମାଣିକ୍ୟ କାଞ୍ଚନ
ମୁକ୍ତାଫଳ ପୂର୍ଣ୍ଣକୁମ୍ଭ ଶୁଭଦ୍ରବ୍ୟମାନ ।
ମୟୂର ବୃଷଭ ଗଜ ଖଞ୍ଜନ ସାରସ
ଶଙ୍ଖଚିଲ ଆଦି ପକ୍ଷୀ ଜନ୍ତୁଙ୍କର ଦୃଶ୍ୟ ।
ଦେଖିଣ ଅକ୍ରୂର ପୁଣି ଆଗକୁ ଅନାଇଁ
ଦେଖିଲେ ଜଳୁଛି ଅଗ୍ନି ଘୃତସେକ ପାଇ ।
ପାର୍ବତୀ ପ୍ରତିମା ତାହା ପାଶେ ବିରାଜିତ
ଶିବଲିଙ୍ଗ କୃଷ୍ଣମୂର୍ତ୍ତି ସୁଗୃହେ ଶୋଭିତ ।
ବିପ୍ରଶିଶୁ ପକ୍ୱଫଳ ବିଭୂଷିତ ବୃକ୍ଷ
ଦେବସ୍ଥଳୀ ରାଜା ସିଂହ ବ୍ୟାଘ୍ର ଗୁରୁ ଋଷି ।
ଏ ସମସ୍ତ ସ୍ୱପନରେ ଦେଖିଣ ଅକ୍ରୂର
ପ୍ରଭାତରେ ଶଯ୍ୟା ତ୍ୟାଗ କରିଣ ସତ୍ୱର ।
ପ୍ରାତଃକୃତ୍ୟ ସାରି ଇଷ୍ଟଦେବ ମନେ ସ୍ମରି
ପୁଲକିତ ମନେ ଘରୁ ଆସିଲେ ବାହାରି ।
ଉଦ୍ଧବଙ୍କ ଆଗେ ସବୁ ବୁଝାଇ କହିଲେ
ଅନୁମତି ମାଗି ଗୋପେ ବାହାର ହୋଇଲେ ।
ଶ୍ରୀକୃଷ୍ଣଙ୍କୁ ସୁମରଣା କରିଣ ମନରେ
ବାହାରିଲେ ବସି ଦିବ୍ୟ ସ୍ୟନ୍ଦନ ଉପରେ ।
ଯିବାବେଳେ ବାମଭାଗେ ଦେଖିଲେ ନକୁଳ
କୁମ୍ଭାଟୁଆ ଶବ ଚିତା ଅଗ୍ନି ଶିବା ମେଳ ।
ଦକ୍ଷିଣ ଭାଗରେ ଗାଭୀ ମୃଗ ଦ୍ୱିଜଗଣ
ଦେଖାଗଲେ କାର୍ଯ୍ୟ ଶୁଭସୂଚକ ହୋଇଣ ।
ଆବର ପତାକାଶ୍ରେଣୀ ଶ୍ୱେତଅଶ୍ୱ ହଂସ
ସୁବର୍ଣ୍ଣ ରଜତ ମୁକ୍ତା ମାଣିକ୍ୟ ବିଶେଷ ।
କୃଷ୍ଣସାର ମୃଗଗଣ ବିବିଧ ବିମାନ
ଶୁକ୍ଳପୁଷ୍ପ ଆଦିକରି ଶୁଭଦ୍ରବ୍ୟମାନ ।
ଦେଖି ଦେଖି ଆନନ୍ଦରେ ଗମନ ସେ କଲେ
ଶ୍ରୀକୃଷ୍ଣ ସଙ୍ଗୀତ ହରି କୀର୍ତ୍ତନ ଶୁଣିଲେ ।
ସେ ଅନ୍ତେ ବିବିଧ ବୃନ୍ଦାବନସ୍ଥ ମଧ୍ୟରେ
ପ୍ରବେଶ ହୋଇଲେ ରଥ ଚଳାଇ ବେଗରେ ।
ଦେଖିଲେ ସେଠାରେ ରାସମଣ୍ଡଳ ଶୋଭିତ
ଚନ୍ଦନ ପାଦପ ରମ୍ଭାବୃକ୍ଷ ସୁସଜ୍ଜିତ ।

ପୂର୍ଣ୍ଣକୁମ୍ଭ ଚୂତପତ୍ର ତୋରଣ ଥିବାରୁ
ଦୂରକୁ ସେ ଦିଶୁଅଛି ଅନ୍ତଃପୁର ଘରୁ ।
ଚନ୍ଦ୍ରକାନ୍ତି ରତ୍ନମୟ ମନ୍ଦିର ଚତ୍ୱରେ
ଶୋଭା ପାଉଛନ୍ତି ଦିବ୍ୟବାସ ଭୂଷଣରେ ।
ଏହିରୂପେ ବୃନ୍ଦାବନ ସୌନ୍ଦର୍ଯ୍ୟକୁ ଲକ୍ଷି
ଖଣ୍ଡେଦୂର ଯାଏ ଗଲେ ଆଗଭର ହୋଇ ।
ସେଠାରେ ଦେଖିଲେ ନନ୍ଦରାଜାଙ୍କର ପୁର
ବୈକୁଣ୍ଠ ଭୁବନ ପରି ଦିଶଇ ସୁନ୍ଦର ।
ସୁବର୍ଣ୍ଣ ସୋପାନ ରତ୍ନସ୍ତମ୍ଭମାନ ଥାଇ
ନିର୍ମିତ ହୋଇଛି ଦୃଢ଼ ଭାବରେଟି ସେହି ।
ସେ ପୁରକୁ ଦେଖି ସିଂହଦ୍ୱାରେ ପ୍ରବେଶିଲେ
ଦୁଆରକୁ ଲଙ୍ଘି ରାଜଭବନକୁ ଗଲେ ।
ନନ୍ଦରାଜାଙ୍କ ପାଖକୁ ଦିଅନ୍ତେ ସମ୍ବାଦ
ଶୁଣି ବଲ୍ଲଭ ନୃପତି ହୋଇଣ ଆନନ୍ଦ ।
ବୃଷଭାନୁ ଆଦି ସବୁ ବନ୍ଧୁଙ୍କ ସଙ୍ଗରେ
ହେଜି ଆସିଲେ ଯେ ରାମ କୃଷ୍ଣ ସହିତରେ ।
ଶୁକ୍ଳଧାନ୍ୟ ପୂର୍ଣ୍ଣକୁମ୍ଭ ମଧୁପର୍କ ଭୁଲେ
ଗଜରାଜକୁ ଆଗରେ ଚଳାଇଣ ଗଲେ ।
ଅକ୍ରୂରଙ୍କ ସମୀପରେ ଉପସ୍ଥିତ ହୋଇ
ଆଲିଙ୍ଗନ କଲେ ନନ୍ଦରାଜା ତାଙ୍କୁ ଯାଇଁ ।
ସେ ଅନ୍ତରେ ପରସ୍ପରେ କୁଶଳ ସମ୍ବାଦ
ପଚାରିଲେ ମାନସରେ ବହିଣ ପ୍ରମୋଦ ।
ଗୋପାଳେ ଭକତିଭରେ ଦଣ୍ଡବତ ହୋଇ
ଆଶୀର୍ବାଦ ଦେଇ ପାଶେ ବସିଲେକ ଯାଇଁ ।
ରାମକୃଷ୍ଣଙ୍କୁ ଆଗରେ ଦେଖନ୍ତେ ଅକ୍ରୂର
କୋଳେ ବସାଇଲେ କ୍ରମେ କରି ସମାଦର ।
ଦୁହିଁଙ୍କ ମୁଖରେ ଚୁମ୍ବଦେଇ ଶ୍ରୀକୃଷ୍ଣଙ୍କୁ
ଅନାଇଁ କୃତାର୍ଥ ବୋଲି ଭାବିଲେ ନିଜକୁ ।
ସେ ଅନ୍ତରେ ପୁଣି କ୍ଷଣେ ନିରୀକ୍ଷଣ କଲେ
ଶ୍ୟାମଳ ସୁନ୍ଦର ଦିବ୍ୟ ମୂରତି ଦେଖିଲେ ।
ଦ୍ୱିଭୁଜ ମୁରଲୀ ହସ୍ତ ପୀତବାସଧର
ଚନ୍ଦନ କୁଙ୍କୁମ ଦ୍ରବ୍ୟ ବଳସ୍ତ ଶରୀର ।
ଏହିରୂପେ ଦେଖି ପୁଣି କ୍ଷଣକ ଅନ୍ତରେ
ଚତୁର୍ଭୁଜ ହୋଇଛନ୍ତି ଦେଖିଲେ କୋଳରେ ।
ଦୁଇପାଖେ ବସିଛନ୍ତି ଲକ୍ଷ୍ମୀ ସରସ୍ୱତୀ
ପାରିଷଦମାନେ ଚାରିପାଖେ ବେଢ଼ିଛନ୍ତି ।

ପୁଣି ମୁହୂର୍ତ୍ତକ ପରେ ଦେଖିଲେ ଯେ ପୁଣି
ବଳେ ହୋଇଛନ୍ତି ପଞ୍ଚବକ୍ତ୍ର ଶୂଳପାଣି ।
କ୍ଷଣକ ଅନ୍ତରେ ପୁଣି ଧର୍ମସ୍ୱରୂପରେ
ପ୍ରକାଶିତ ହୋଇ ବସିଅଛନ୍ତି କୋଳରେ ।
ଏହିପରି କ୍ଷଣେ କ୍ଷଣେ ଚନ୍ଦ୍ର ଦିବାକର
ପ୍ରକୃତିରୂପେ ପ୍ରକାଶ ହୋଇଲେ ଈଶ୍ୱର ।
ଯେ ସକାଶୁ ଭକ୍ତିଭରେ ଅକ୍ରୂର ଯତନେ
ବସାଇଲେ ନନ୍ଦସୁତ ରତ୍ନସିଂହାସନେ ।
ପ୍ରଦକ୍ଷିଣ କରି କରଯୋଡ଼ି ଉଭାହେଲେ
ନମସ୍ତେ ନମସ୍ତେ ପ୍ରଭୁ ବୋଲି ପ୍ରଣମିଲେ ।
ସେ ଅନ୍ତରେ ପୁଣି ଉଭାହୋଇ ସମ୍ମୁଖରେ
ବୋଇଲେ ହେ ଦେବ ଦୋଷ କ୍ଷମାକର ବାରେ
ପରମ ପୁରୁଷ ତିନିଲୋକର କାରଣ
ନମୋନମ ପରାତ୍ପର ପତିତପାବନ ।
ନିର୍ଗୁଣ ନିରୀହ ଶାନ୍ତରୂପ ନିରାକାର
ସର୍ବରୂପମୟ ସର୍ବ ଦେବ ଅଧୀଶ୍ୱର ।
ନମସ୍ତେ ଗୋପକନ୍ୟାକାଗଣ ବିମୋହନ
ନମଃ ଶ୍ରୀରାଧିକା ଦେବୀ ହୃଦୟ ଚନ୍ଦନ ।
ରାଧା ପ୍ରାଣଅଧିଷ୍ଠାତା ଦେବତା ସ୍ୱରୂପ
ନମସ୍ତେ ଗୋଲୋକପତି ନମୋ ବିଶ୍ୱରୂପ ।
ବେଦସ୍ତୁତ ବେଦରୂପ ବେଦାଧି ଦେବତା
ବିଶ୍ୱେଶ୍ୱର ବିଶ୍ୱମୟ ଜଗତ କରତା ।
ନମସ୍ତେ ପ୍ରକୃତିରୂପ ପ୍ରଧାନ ପୁରୁଷ
ନମୋନମ ଜ୍ୟୋତିର୍ମୟ ପ୍ରକୃତି ଅଧୀଶ ।
ଏହିରୂପେ ସ୍ତୁତିକରି ସେ ସଭା ମଧ୍ୟରେ
ମୂର୍ଚ୍ଛିତ ହୋଇ ପଡ଼ିଲେ ଅବନୀ ଉପରେ ।
ସେ ସମୟେ ହୃଦୟରେ ସେହି ଦିବ୍ୟଜ୍ୟୋତି
ଦରଶନ କରି ତୋଷ କଲେ ନିଜ ମତି ।
ଭକତ ବତ୍ସଳ ପ୍ରଭୁ ସ୍ୱପ୍ନ ଜାଗରଣେ
ଦେଖାଇଲେ ନିଜ ରୂପ ଭକ୍ତକୁ ସମାନେ ।
ମୂର୍ଚ୍ଛିତ ହେବାର ଦେଖି ଅକ୍ରୂରକୁ ନନ୍ଦ
ବସାଇଲେ ଆସନରେ ପାଇଣ ବିଷାଦ ।
ସଚେତ କରାଇ ସର୍ବ ବୃତ୍ତାନ୍ତ ପୁଚ୍ଛିଲେ
ଶୁଣି ଅକ୍ରୂର ତାହାଙ୍କୁ କହି ଆରମ୍ଭିଲେ ।
ବୋଇଲେ କଂସ ନୃପତି ପଠାଇଛି ମୋତେ
ରାମକୃଷ୍ଣଙ୍କୁ ଘେନିଣ ଯିବି ମୁଁ ଭୂପତେ ।

ଆବର ତୁମ୍ଭଙ୍କୁ ମଧ ମଙ୍ଗଳରେ ନେବ
ମଥୁରାପୁରରେ ରାଜାର ପାରେଣ ଭେଟାଇବ ।
ଅକ୍ରୂର କୃତ ଶ୍ରୀକୃଷ୍ଣ ସ୍ତୋତ୍ର ଯେ ପଢ଼ଇ
ସକଳ ସମ୍ପଦ ତାଙ୍କୁ ପ୍ରାପତ ହୁଅଇ ।
ଇହଲୋକରେ ନିର୍ମଳ ଯଶ ଲଭିକରି
ବସଇ ସେ ଅନ୍ତଃକାଳେ ଗୋଲୋକ ନଗରୀ ।
ଏଥିଅନ୍ତେ ମନୋହର ଚମ୍ପକ ତଳରେ
ଶୋଇଲେ ଅକ୍ରୂର ଯେବେ କୃଷ୍ଣଙ୍କୁ କୋଳରେ ।
ପ୍ରଭାତରୁ ଉଠି ନିତ୍ୟକର୍ମ ଶେଷକରି
ରଥରେ ବସିଲେ ବେନି ଅନୁଜଙ୍କୁ ଧରି ।
ବୃଷଭାନୁ ନନ୍ଦ ଚନ୍ଦ୍ର ଭାନୁ ସେ ସୁନନ୍ଦ
ବସିଲେ ସମସ୍ତେ ମନେ ବହ୍ନିଣ ଆନନ୍ଦ ।
ପଟହ ପଣବ ଆଦି ନାନାବିଧ ବାଦ୍ୟ
ବାଜିଲା ଦଗଦ୍ଦଗ କରିଣ ସୁବିଧ ।
ସେ ଶବଦ ଶୁଣି ଗୋପିଗଣ ଧାଇଁଗଲେ
ରଥ ଚକ୍ର ପାଶ୍ୱରେ ବେଢ଼ି ଉଭାହେଲେ ।
ରାଜାଙ୍କର ଅନୁଜ୍ଞା ତ ପାଇଥିଲେ ଯେହ୍ନ
ଭାଙ୍ଗି ପକାଇଲେ ରଥ ପଦାଘାତ ଦେଇ ।
ଶ୍ରୀକୃଷ୍ଣ ତାହାଙ୍କୁ କେତେ ନିବାରଣ କଲେ
ତଥାପି ସେ କଥା କେହି ଗଣନା ନ କଲେ ।
ବଳାତ୍କାରେ ଶ୍ରୀକୃଷ୍ଣଙ୍କୁ ବକ୍ଷଦେଶେ ଘେନି
ରାଧାଙ୍କ ପାଶକୁ ନେଲେ ସକଳ କାମିନୀ ।
କେଉଁମାନେ ଅକ୍ରୂରଙ୍କୁ ତିରସ୍କାର କଲେ
କେଉଁମାନେ କଙ୍କଣରେ ଆଘାତ କରିଲେ ।
ଝିଙ୍ଗାସି ବଚନ କେତେ କହନ୍ତି ଅକ୍ରୂରେ
ଚୋରପରି ନ୍ୟାୟ କେହ୍ନେ ନାହିଁ ଏ ସଂସାରେ ।
କେତେ ଗୋପୀ ବସନରେ ବାନ୍ଧି ଯେହ୍ନେଯାଇ
ଉଲଗ୍ନ କଲେ କାନ୍ଦୁ ବସ୍ତ୍ର ଝିଙ୍କି ନେଇ ।
କ୍ଷତ ବିକ୍ଷତ ଶରୀର ହୋଇ ସେ ଅକ୍ରୂର
ଗଲେ ରାଧା ଦେବୀଙ୍କର ପାଶକୁ ସତ୍ୱର ।
ଶ୍ରୀକୃଷ୍ଣ ତାହାଙ୍କୁ ଖଣ୍ଡେ ଦୂରେ ବସାଇଲେ
ତତ୍ତ୍ୱଜ୍ଞାନ ଦେଇ ପ୍ରାଣପ୍ରିୟାଙ୍କୁ ବୋଧିଲେ ।
ଅକ୍ରୂରଙ୍କୁ ମୁକ୍ତକରି ମଧୁର ବଚନ
କହି ଆନନ୍ଦିତ କଲେ ତାହାଙ୍କର ମନ ।
ଏହିକାଳେ ଆକାଶରୁ ଇନ୍ଦ୍ରଙ୍କର ରଥ
ଖସିକରି ସେହିକ୍ଷଣି ହେଲା ଭୂମିସାତ ।
ତାହା ଦେଖି ପ୍ରଭୁ ମାତୃଭବନକୁ ଗଲେ
ଭୋଜନ କରି ନିଶାରେ ସୁଖରେ ଶୋଇଲେ ।
ରାଧିକା ସହିତେ ଗୋପୀଗଣ ସେହିପରି
ଶୟନ କଲେ କୁସୁମ ତଳ୍ପେ ଆରୋହି ।
ଆବର ଗୋକୁଳବାସୀ ନରନାରୀ ସର୍ବେ
ଶୋଇଲେ ମହାସୁଖରେ ଯେ ଯାହାର ଠାବେ
ସୁମରଣା କରି ରାଧାକୃଷ୍ଣଙ୍କ ପୟର
ଗୀତ ଛନ୍ଦରେ ଲେଖିଲା କ୍ଷେତ୍ରବାସୀ ଛୁର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅକ୍ରୂରର ଗୋପପୁର ପ୍ରବେଶ ଓ ଶ୍ରୀକୃଷ୍ଣଙ୍କର ମଥୁରା ଗମନ କାଳରେ ଗୋପୀମାନଙ୍କର ଶୃଙ୍ଖଳ୍ୟ କଥନେ ନାମ ସପ୍ତତିତମୋଽଧ୍ୟାୟଃ ।

---

## ଏକସପ୍ତତିତମ ଅଧ୍ୟାୟ

### ଅକ୍ରୂର ସଙ୍ଗେ ଶ୍ରୀକୃଷ୍ଣଙ୍କର ପ୍ରସ୍ଥାଣସମୟେ ମଙ୍ଗଳ ବିଧାନ

କହନ୍ତି ନାରଦ ଆଗେ ଋଷି ନାରାୟଣ
ଆହେ ମୁନିବର ମନ ଦେଇକରି ଶୁଣ ।
କୁସୁମ ତଳପ ପରେ ରାଧିକା ସୁନ୍ଦରୀ
ଶୟନ କରନ୍ତେ ସଖୀଗଣ ସଙ୍ଗେ ଧରି ।
ତୃତୀୟ ପ୍ରହର ନିଶା ହେଲା ଆସି ଶେଷ
ତାହା ଜାଣି ଶଯ୍ୟା ତେଜି ପ୍ରଭୁ ହୃଷୀକେଶ ।
ଶୁଭ ମୁହୂର୍ତ୍ତରେ ଯାତ୍ରା ଅନୁକୂଳ କଲେ
ଅକ୍ରୂରଙ୍କୁ ଡାକି ରଥ ସଜାଇ ଆଣିଲେ ।
ଯଶୋଦାଙ୍କୁ ନାନାମତେ ପ୍ରବୋଧନା କରି
ବନ୍ଧୁବାନ୍ଧବ ଜନଙ୍କୁ ସଙ୍ଗତରେ ଧରି ।
ନିଜେ ଯାଇ ରଥପରେ ସେକ୍ଷଣି ବସିଲେ
ବାଦ୍ୟ ବଜାଇବା ପାଇଁ ନିଦେଶ କଲେ ।

ପାଦ ପ୍ରକ୍ଷାଳନ କରି ମନ୍ତ୍ରର ବିଧାନ
ଶୁଚିବନ୍ତ ହୋଇ ତହିଁ କଲେ ପରିଧାନ ।
ଫଳ ପଲ୍ଲବ ସଂଯୁକ୍ତ ଚନ୍ଦନ ଲେପିତ
ପୂର୍ଣ୍ଣକୁମ୍ଭ କରାଇଲେ ବାମେ ସଂସ୍ଥାପିତ ।
ଦକ୍ଷିଣ ଭାଗରେ ବନ୍ଧୁ ଦ୍ୱିଜ ମୃଗ ଆଣି
ରଖାଇଲେ ଶୁଭ ହେବ ବୋଲିକରି ଜାଣି ।
ଆଉରି ସୁବର୍ଣ୍ଣ ଘଟ ନିର୍ମଳ ଦର୍ପଣ
କଲେ ରଥ ଆଗରେ ସେକାଳେ ସଂସ୍ଥାପନ ।
ଗୋରୁଦଧି ଦୂର୍ବାଦଳ ପୁଷ୍ପ ଶୁକ୍ଳଧାନ୍ୟ
ଧଇଲେ ମସ୍ତକପରେ କରି ଅତି ମାନ୍ୟ ।
ଚନ୍ଦନ ଲେପିତ ପୁଷ୍ପମାଳା ଗଳାଦେଶେ
ଲମ୍ବାଇଲେ ନେଇ ପୁଣି ଅତ୍ୟନ୍ତ ହରଷେ ।
ଗୁରୁ ବ୍ରାହ୍ମଣଙ୍କ ପାଦେ ମସ୍ତକ ଲଗାଇ
ନମସ୍କାର କଲେ ପୁଣି ଆଗେ ଉଭା ହୋଇ ।
ସେମାନଙ୍କଠାରୁ ଶୁଭ ଆଶୀର୍ବାଦ ଘେନି
ଶ୍ରବଣ କଲେ ମଙ୍ଗଳ ଶଙ୍ଖ ବେଦଧ୍ୱନି ।
ପ୍ରଥମେ ଦକ୍ଷିଣ ପାଦ ପକାଇ ଆଗକୁ
ନିରୋଧ କରିଣ ବାମ ନାସିକା ଭାଗକୁ ।
ଦକ୍ଷିଣ ନାସାପୁଟରେ ବାୟୁ ତ୍ୟାଗ କଲେ
ପ୍ରଣବ ଯୋଗରେ ଦେହ ଶୁଦ୍ଧ କରାଇଲେ ।
ସେ ଅନ୍ତରେ ନନ୍ଦଙ୍କର ମନ୍ଦିରେ ପ୍ରବେଶ
ହେଲେ କ୍ଷଣକ ମଧ୍ୟରେ ତ୍ରିଜଗତ ଈଶ ।
ଦେଖିଲେ ସେଠାରେ ରହିଅଛନ୍ତି ଅକ୍ରୂର
ପ୍ରାଙ୍ଗଣରେ ଥୁଆ ହୋଇଅଛି ରଥବର ।
ଯେ ଧନାଶୁ ସ୍ୱର୍ଗପୁର ଶୋଭାକୁ ସେ ପୁର
ନିନ୍ଦା କରୁଅଛି ନିଜ ପ୍ରଭାବ ବିସ୍ତାର ।
ମେରୁ ଶୃଙ୍ଗପରି କେତେ ଉଚ୍ଚ ଗୃହମାନ
ସୁବର୍ଣ୍ଣରେ ମଣ୍ଡି ହୋଇ ଦିଶନ୍ତି ଶୋଭନ ।
ଦ୍ୱାରମାନଙ୍କରେ ରମ୍ଭାବୃକ୍ଷ ପନ୍ତି ପନ୍ତି
ତୋରଣମାଳାରେ ଦିବ୍ୟଶୋଭା ପ୍ରକାଶନ୍ତି ।
ପୂର୍ଣ୍ଣକୁମ୍ଭ ସ୍ଥାନେ ସ୍ଥାନେ ହୋଇଛି ସଜ୍ଜିତ
ପୁରୀ ଶୋଭା ଦେଖି ସ୍ୱର୍ଗ ହୋଇବ ମୋହିତ ।
ଚତ୍ୱର ମଧ୍ୟରେ କେତେ ସ୍ୱର୍ଣ୍ଣମୟ ପୀଠ
ମାଣିକ୍ୟ ଜ୍ୟୋତିରେ ଦିଶୁଛନ୍ତି ଝଟଝଟ ।
କେଉଁ କେଉଁ ସ୍ଥାନେ ଥାଇ ପଦ୍ମରାଗ ମଣି
ସୁନ୍ଦର ଦିଶନ୍ତି ଇନ୍ଦ୍ରଧନୁ ଶୋଭା ଜିଣି ।
ରାଜମାର୍ଗେ ସୁବାସିତ ଚନ୍ଦନର ଜଳ
ସିଞ୍ଚାହୋଇ ସବୁସ୍ଥାନ ଦିଶଇ ପଙ୍କିଳ ।
ସେଠାରେ ବନ୍ଧୁଜନଙ୍କ ମଧ୍ୟେ ବେନି ଭାଇ
ରହିଲେ ଅକ୍ରୂର ପାଶେ ଶୁଭମନେ ଧ୍ୟାୟି ।
ବାମ ପାରୁଶେ ଯଶୋଦା ଦେବୀ ଉଭା ହୋଇ
ଆଲିଙ୍ଗନ କଲେ ପୁତ୍ର ସ୍ନେହଭରେ ଯାଇ ।
ଦକ୍ଷିଣ ପାରୁଶେ ନନ୍ଦ ଆନନ୍ଦ ଚିତ୍ତରେ
ଆଶ୍ଳେଷଣ କରି ମୂର୍ଦ୍ଧା ଆଘ୍ରାଣିଲେ ଥରେ ।
ବନ୍ଧୁମାନେ ଚାରିପାଶେ ବେଢ଼ି ସମ୍ଭାଷଣ
କଲେ ଦୁହିଙ୍କ ସଙ୍ଗରେ ସେ କାଳରେ ଜାଣ
ଏହିଠାରେ ଶ୍ରୀକୃଷ୍ଣଙ୍କ ପ୍ରୟାଣ ବିସ୍ତର
କ୍ଷେତ୍ରମୋହନ ଗୀତରେ କରିଲ ପ୍ରଚାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅକ୍ରୂର ସଙ୍ଗେ ଶ୍ରୀକୃଷ୍ଣଙ୍କର ପ୍ରୟାଣ ସମୟେ ମଙ୍ଗଳ ବିଧାନ କଥନେ ନାମ ଏକସପ୍ତତିତମୋଽଧ୍ୟାୟଃ ।

---

## ଦ୍ୱିସପ୍ତତିତମ ଅଧ୍ୟାୟ

## କଂସାସୁର ନିଧନ ଓ ବସୁଦେବ ଦେବକୀଙ୍କର ମୋକ୍ଷଣ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ନମସ୍କାର କରି କୃଷ୍ଣ ଗୁରୁଙ୍କୁ ସତ୍ୱରେ ।
ଶୁଭ ସମୟରେ ପୁରୁ ବାହାର ହୋଇଲେ
ଇନ୍ଦ୍ର ଦେଇଥିବା ରଥ ଉପରେ ବସିଲେ ।
ଅକ୍ରୂର ସହିତେ ଯାଇ ମଥୁରା ନଗରେ
ପ୍ରବେଶ ହୋଇ କ୍ଷଣକ ମାତ୍ରକ ଅନ୍ତରେ ।
ଦେଖିଲେ ସେ ପୁର ଅଟେ ସ୍ୱର୍ଗର ସମାନ
କରିଛନ୍ତି ବିଶ୍ୱକର୍ମା ଯତ୍ନରେ ନିର୍ମାଣ ।

ଖଚିତ ହୋଇଛି ତହିଁ ରତନ ବନ୍ଧନ
ଅମୂଲ୍ୟ ସ୍ୱର୍ଣ୍ଣକଳଶରାଜ ବିରାଜିତ ।
ଶତ ଶତ ରାଜମାର୍ଗ ବେଷ୍ଟିତ ଯେ ହୋଇ
ଚନ୍ଦ୍ରକାନ୍ତ ମଣି ଅନେକ ଉଜ୍ଜ୍ୱଳ ଦିଶଇ ।
ସ୍ଥାନେ ସ୍ଥାନେ ନାନା ଦ୍ରବ୍ୟଘେନିଣ ବଣିକେ
ବିକାକିଣା କରୁଛନ୍ତି ବସି ଏକେ ଏକେ ।
ନିର୍ମଳ ଜଳ ପୂରିତ ସରୋବରଗଣ
ପଦ୍ମରାଗ କିରଣରେ ଦିଶନ୍ତି ଶୋଭନ ।
ଯେ ପୁରେ ପଦ୍ମମସ୍ତି ସ୍ତ୍ରୀ ପ୍ରତ୍ୟେକ ଗୃହରେ
ମଣ୍ଡି ହୋଇ ନାନାବିଧ ବସ୍ତ୍ର ଅଳଙ୍କାରେ ।
ଦେବୀଙ୍କ ପରାୟେ ଦିଶୁଅଛନ୍ତି ଶୋଭିତ
ଦେଖିବା ଲୋକର ହରି ନେଉଛନ୍ତି ଚିତ୍ତ ।
ସ୍ଥିର ଯଉବନବନ୍ତା ଅଟନ୍ତି ସମସ୍ତ
ଦୂର୍ବାଦଳ ଶୁକ୍ଳପୁଷ୍ପ ଧରିଛନ୍ତି ହସ୍ତ ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଏକଲୟ ହୋଇ
କଟାକ୍ଷ ଦୃଷ୍ଟିରେ ସର୍ବେ ରହିଛନ୍ତି ଚାହିଁ
ଶରତ ପଙ୍କଜଦଳ ସଦୃଶ ଲୋଚନ
ପୀନ ପୟୋଧର ପୃଥୁ ଶ୍ରୋଣୀ ଶୋଭାବନ ।
ଦିବ୍ୟବାସ ଅଳଙ୍କାର ଅନେକ ତାହାଙ୍କର
ଶରୀରର ଶୋଭା ହୋଇଥିଲା ମନୋହର ।
ରତନ ବିମାନେ ବସି ଯେ ସମସ୍ତ ନାରୀ
ବିଭୂଷିତ କରୁଥିଲେ ଯେ ରାଜ ନଗରୀ ।
କେଉଁଠାରେ ଭିତ୍ତିଦେଶ ନାନାବିଧ ଚିତ୍ର
ଲେଖା ହୋଇ ଦିଶୁଥିଲା ଅତ୍ୟନ୍ତ ବିଚିତ୍ର ।
କେବଣ ସ୍ଥାନରେ ପୁଷ୍ପ ଉଦ୍ୟାନ ନିକର ।
ବିକଶିତ କୁସୁମରେ ଦିଶନ୍ତି ସୁନ୍ଦର ।
ମଧୁମତ୍ତ ହୋଇ ତହିଁ ମଧୁକରଗଣ
ଝଙ୍କାର ଶବଦ କରୁଛନ୍ତି ବିଚରଣ ।
ଥିବାରୁ ଅନେକ ଦୁର୍ଗ ସେ ପୁର ମଧ୍ୟରେ
ଅଧିଷ୍ଠିତ ଅଟଲ ଯେ ଶତ୍ରୁଜନଙ୍କରେ ।
ଦ୍ୱାରମାନଙ୍କରେ ଶସ୍ତ୍ରଧାରୀ ରକ୍ଷିଗଣ
ରହିଛନ୍ତି ଶତ୍ରୁପକ୍ଷ କରିବାକୁ ଚୂର୍ଣ୍ଣ ।
ଏହିରୂପେ ସେ ପୁରୀର ଶୋଭା ଦେଖି ଦେଖି
ରଥରେ ଗଲେ ଶ୍ରୀକୃଷ୍ଣ ହୋଇ ଅତି ସୁଖୀ ।
କେତେଦୂର ଅନ୍ତରେ ସେ ଦେଖିଲେ ମାର୍ଗରେ
କୁବୁଜା କାମିନୀଟିଏ ଯାଉଅଛି ଧୀରେ ।
ଜରା ହେତୁରେ ତାହାର ପାଚିଲାଣି କେଶ
ବିକୃତ ବିରୂପ ହୋଇଅଛି ମଧ୍ୟଦେଶ ।
ହସ୍ତେ ଧରିଅଛି ସେହି ଚନ୍ଦନ କସ୍ତୁରୀ
ସୁବର୍ଣ୍ଣ ପାତ୍ରରେ ଅତି ଯତନରେ ଭରି ।
ଶ୍ରୀକୃଷ୍ଣଙ୍କୁ ଦେଖି ବେଗହୋଇ ଯେ ଆସିଲା
ଭକ୍ତିଭରେ କରଯୋଡ଼ି ନମସ୍କାର କଲା ।
ସେ ଅନନ୍ତରେ ସୁଶ୍ୟାମଳ ଗାତ୍ରେ ତାହାଙ୍କର
ବୋଳିଲା ଚନ୍ଦନ ସଙ୍ଗେ ମିଶାଇ କର୍ପୂର ।
ପ୍ରଦକ୍ଷିଣେ ପରେ ପୁଣି ନମସ୍କାର କଲା
ଉଦ୍ଧାର କର ହେ ପ୍ରଭୁ ବୋଲିଣ ବୋଇଲା ।
ସେ କାଳେ ଶ୍ରୀକୃଷ୍ଣଙ୍କର ଦରଶନ ମାତ୍ରେ
କୁବୁଜତି ଲୀନ ହୋଇଗଲା ତାର ଗାତ୍ରେ ।
ବୃଦ୍ଧାବସ୍ଥା ଗୁପ୍ତ ହୋଇ ଯୌବନ ଆସିଲା
ଦେବୀ ପରାୟେ ଶରୀର ଶୋଭା ପ୍ରକାଶିଲା ।
ତପତ କାଞ୍ଚନ ତୁଲ୍ୟ ବରନ ତାହାର
ଦେଖାଗଲା ସେ କାଳରେ ଅତି ମନୋହର ।
ସୁଶ୍ରୋଣୀ ସୁଦନ୍ତୀ ବିଲ୍ୱଫଳ ପୟୋଧରା
ଗଜେନ୍ଦ୍ର କାମିନୀ ଜିତ ସ୍ୱର୍ଗ ଅପସରା ।
ରତ୍ନସାର ବିନିର୍ମିତ ଭୂଷଣ ଭୂଷିତା
ସିନ୍ଦୂର କସ୍ତୁରୀ ବିନ୍ଦୁ ଲଲାଟ ଶୋଭିତା ।
ଏମନ୍ତ ରୂପରେ ବାଳା ଶ୍ରୀକୃଷ୍ଣଙ୍କୁ ଚାହିଁ
କଟାକ୍ଷ ଦୃଷ୍ଟି ତାହାଙ୍କ ଉପରେ ପକାଇ ।
ସମ୍ଭୋଗ କରିବାପାଇଁ ବଳିଲା ମନେ
ତା ଜାଣି ଶ୍ରୀକୃଷ୍ଣ ତାକୁ ମଧୁର ବଚନେ ।
ଆଶ୍ୱାସନା କରି ଚାଲିଗଲେ ସ୍ଥାନାନ୍ତରେ
କୃତାର୍ଥ ହୋଇ ଯେ ସ୍ତ୍ରୀ ଗଲା ନିଜଘରେ ।
ଦେଖିଲେ ସ୍ୱର୍ଗ ଭବନ ପରାଏ ତା ଘର
ହୋଇଅଛି ସବୁଠାରୁ ଅଧିକ ସୁନ୍ଦର ।
କେଉଁଠାରେ ରତ୍ନମୟ ଦୀପ ଜଳୁଅଛି
କେବଣ ମନ୍ଦିରେ ଶୋଭା ବୁହଲ ମୁରୁଛି ।
କେତେକ ଗୃହରେ ସ୍ୱର୍ଣ୍ଣଖଟ ଶଯ୍ୟା ପଡ଼ି
ଶୁଭ୍ର ଦିଶୁଅଛି ଯେସନେ ମନ୍ଦାକିନୀ ବଢ଼ି ।
କାନ୍ଥମାନଙ୍କରେ ସ୍ୱର୍ଣ୍ଣ ରଜତ ଦର୍ପଣ
ହୋଇଅଛି ଅତିଶୟ ଯତନେ ଅର୍ପଣ ।
ସେବା କରିବାକୁ ଦାସ ଦାସୀଗଣ ରହି
ରହିଛନ୍ତି ସ୍ୱାମିନୀର ଆଗମନ ଚାହିଁ ।

ଏହିରୂପେ ଦେଖି ନିଜ ପୁରକୁ ସେ ବାଳା
ଧୀରେ ଧୀରେ ଯାଇ ମଧ୍ୟ ପ୍ରବେଶ ହୋଇଲା
ଦେଖି ତାକୁ ଦାସୀମାନେ ବେଗେ ଯୋଗଗଲେ
ସ୍ନାନ କରାଇ ଉତ୍ତମ ବାସ ପିନ୍ଧାଇଲେ ।
ଚନ୍ଦନ କର୍ପୂର ଆଦି ସୁବାସିତ ଦ୍ରବ୍ୟ
ବୋଳିଲେ ଦେହରେ ଆଣି ସେକାଳେ ସେସବ
ଆନନ୍ଦିତା ହୋଇ ବାଳା ସେଠାରୁ ଆସିଲା
ଭୋଜନ ମାତ୍ର ପଲଙ୍କ ଉପରେ ଶୋଇଲା ।
କର୍ପୂର ମିଶା ତାମ୍ବୁଳ ସୁବର୍ଣ୍ଣ ପାତ୍ରରେ
ରଖିଲା ଯତନେ ନେଇ ସେ ପଲଙ୍କ ପାରେ ।
ଚନ୍ଦନ କୁସୁମ ମାଳା କର୍ପୂର ଅଣାଇ
ରଖାଇଲା ପୁଣି ନିଜ ସମୀପରେ ନେଇ ।
ଶୀତଳ ସୁସ୍ୱାଦ ଜଳ ରତ୍ନପାତ୍ରେ ଆଣି
ଥୋଇଲା ପାଶରେ ଯତନରେ ସେ ତରୁଣୀ ।
ଶ୍ରୀକୃଷ୍ଣଙ୍କ ଆଗମନ ସୁମରଣା କରେ
ରହିଲା ସେ ରଜନୀରେ ନିଦ୍ରା ପରିହରେ ।
କାମଶରେ ପୀଡ଼ା ପାଇ ସେ ନବ ବନିତା
କେବଳ କଲା ଶ୍ରୀକୃଷ୍ଣ ସ୍ୱରୂପକୁ ଚିନ୍ତା ।
ଜଗତକୁ କୃଷ୍ଣମୟ ଦେଖି ସେ କାଳରେ
ନ ହେଲା ମାନସ ଆଉ କେଉଁ ବିଷୟରେ ।
ସେ ଅନ୍ତେ ଶ୍ରୀକୃଷ୍ଣ ମାଳାକାରକୁ ମାର୍ଗରେ
ଦେଖିଲେ ଯାଉଛି ପୁଷ୍ପମାଳା ଘେନି କରେ ।
ପ୍ରଭୁଙ୍କୁ ଦେଖି ସେ ମାଳାକାର ତୋଷ ବହି
ସବୁ ମାଳା ଦେଲା ତାଙ୍କ ଗଳାରେ ଲମ୍ବାଇ ।
ଶ୍ରୀକୃଷ୍ଣ ତାହାକୁ ନିଜ ଦାସ୍ୟଭକ୍ତି ଦେଲେ
ମାଳା ଘେନି ପୁଣି ଅନ୍ୟସ୍ଥାନେ ଚଳିଗଲେ ।
ମାର୍ଗରେ ଦେଖିଲେ ପୁଣି ବସ୍ତ୍ରପୁଞ୍ଜ ଧରି
ଯାଉଛି ରଜକ ଜଣେ ପଥ ଅନୁସରି ।
ବଳିଷ୍ଠ ଯୌବନ ଗର୍ବୀ ଅହଙ୍କାରୀ ସେହି
କାହାରିକୁ ହେଲେ ଡରି ଲକ୍ଷ୍ୟ କରେ ନାହିଁ
ଶ୍ରୀକୃଷ୍ଣ ତାହାକୁ ଦେଖି ମାଗନ୍ତେ ବସନ
କହିଲା ସେ କ୍ରୋଧଭରେ ନିଷ୍ଠୁର ବଚନ ।
ବୋଇଲା ଦୁର୍ଲ୍ଲଭ ବସ୍ତ୍ର ଧରିଅଛି ମୁହିଁ
ଗଉଡ଼ ଲୋକଙ୍କୁ ଏହା ଯୋଗ୍ୟ ନ ହୁଅଇ ।
ରାଜାଙ୍କର ବସ୍ତ୍ର ବୋଲି ଜାଣ କି ରୂପରେ
ମାଗୁଅଛ କହ ଯେଉଁ ମୂରୁଖ ପଣରେ ।

ଜାଣିଛ କି ଅଛଇ ଏ ଗୋପାଳ ନଗର
କରୁଥିଲ ଯେଉଁଠାରେ ନିଜେ ସ୍ୱେଚ୍ଛାଚାର ।
ଗୋପକନ୍ୟା ଲମ୍ପଟ ତୁ କାମୁକ ବାଉଳ
ଆପଣାର ଭଲ ମନ୍ଦ କଥାକୁ ନ ଭାଳ ।
ଏ ନଗରେ ରାଜା ଅଟେ କଂସ ନରପତି
ଦିଅଇ ଦୁଷ୍ଟଲୋକଙ୍କୁ ଉପଯୁକ୍ତ ଶାସ୍ତି ।
ତୋର ଆଚରଣ ଯେବେ ଶୁଣିବ ସେ ଏବେ
ଦେଖିବୁ ଏକ୍ଷଣି ଭୃତ୍ୟହସ୍ତେ ଦଣ୍ଡ ଦେବେ ।
ଏରୂପେ ରଜକ ବାକ୍ୟ ଶୁଣି ବେନଭାଇ
ହସିଲେ ଉଚ୍ଚରେ ମୁଖେ ବସ୍ତ୍ରାଞ୍ଚଳ ଦେଇ ।
ଅକ୍ରୂର ମଧ୍ୟେ ସେ କଥା ଶୁଣିଣ ହସିଲେ
ବାତୁଳ ହେଲା ରଜକ ବୋଲି ବିଚାରିଲେ ।
ସେକାଳେ ଶ୍ରୀକୃଷ୍ଣ ରଥୁ ଓହ୍ଲାଇଣ ଯାଇ
ରଜକ ମୁଣ୍ଡେ ଚାପୁଡ଼ା ମାରିଲେ ନିଠାଇ ।
ବସନ ଛଡ଼ାଇ ଘେନି ଯାଇକରି ପୁଣି
ରଥ ଉପରେ ଥୋଇଣ ବସିଲେ ସେକ୍ଷଣି ।
ଶ୍ରୀକୃଷ୍ଣଙ୍କ କରସ୍ପର୍ଶ ରଜକ ପାଇଲା
ସେ ସକାଶୁ ତାର ପୂର୍ବ ପାପ ଦୂରହେଲା ।
ସେହିକ୍ଷଣି ଦିବ୍ୟରୂପ ହୋଇଲା ତାହାର
ନବଯଉବନ ତେଜ ଅତି ମନୋହର ।
ରତ୍ନବିମାନରେ ବସି ଗୋଲୋକ ଭବନେ
ଗଲା ବେଗେ ଶ୍ରୀକୃଷ୍ଣଙ୍କ ପାର୍ଷଦ ଗହଣେ ।
ସେ ମଧ୍ୟ ପାର୍ଷଦହୋଇ ଗୋଲୋକେ ରହିଲା
ଶ୍ରୀକୃଷ୍ଣଙ୍କ ଆଗମନ ଅପେକ୍ଷା କରିଲା ।
ଏହିକାଳେ ଦିବାକର ଅସ୍ତ ପର୍ବତରେ
ଲୁଚାଇଲେ ନିଜରୂପ ଦିବସ ଶେଷରେ ।
ଅକ୍ରୂର ତା ଦେଖିକରି ନିଜପୁରେ ଗଲେ
ଶ୍ରୀକୃଷ୍ଣଙ୍କଠାରୁ ଅନୁମତି ନେଇଥିଲେ ।
କୁବିନ୍ଦ ନାମରେ ଥିଲା ବଇଷ୍ଣବ ଶ୍ରେଷ୍ଠ
ତା ଘରେ ରହିଲେ କୃଷ୍ଣ ହୋଇଣ ସନ୍ତୁଷ୍ଟ ।
ଆଉରି ନନ୍ଦରାଜନ ବଳରାମ ତୁଲେ
ସେଠାରେ ଯାଇଣ ମଧ୍ୟ ସୁଖରେ ରହିଲେ ।
ଆଉ ଯେତେ ବନ୍ଧୁଜନେ ସଙ୍ଗେ ଥିଲେ ଯାଇ
ସମସ୍ତଙ୍କୁ ସ୍ଥାନ ଦେଲେ କୁବିନ୍ଦ ଡକାଇ ।
ଭୋଜନ ପାନ ସାରି ସେ ସର୍ବେ ଯେଝାମତେ
ଶୟନ କଲେ ସୁବର୍ଣ୍ଣ ପଲଙ୍କ ଉପରେ ।

ଶ୍ରୀକୃଷ୍ଣ ସେଠାରୁ ଯାଇ କୁବୁଜାର ପୁରେ
ପ୍ରବେଶ ହୋଇଲେ ଯାଇଁ ଶୟନ ମନ୍ଦିରେ ।
ଦେଖିଲେ ପଲ୍ୟଙ୍କ ପରେ ଶୋଇଛି କୁବୁଜୀ
ନିଦ୍ରାବଶେ ହୋଇଅଛି ନୟନକୁ ବୁଜି ।
ତାକୁ ଦେଖି ଦୟାମୟ ତ୍ରିଭୁବନ ପତି
ବୋଇଲେ ଶୃଙ୍ଗାର ଦାନ କର ଗୋ ସୁଦନ୍ତି ।
ପୂର୍ବକାଳେ ସୂର୍ପଣଖା ରାବଣ ଭଗିନୀ
ହୋଇଥିଲୁ ତୁହି ନିଶାଚରର କାମିନୀ ।
ଆମ୍ଭ ସଙ୍ଗ ପାଇବାକୁ କରିଥିଲୁ ତପ
ଏବେ ଉଠି ଶାନ୍ତ କର କାମଶର ତାପ ।
ସମ୍ଭୋଗ ଶେଷରେ ତୁହି ଗୋଲୋକକୁ ଯିବୁ
ଦାସୀ ହୋଇ ସବୁବେଳେ ମୋ ପାଶେ ରହିବୁ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ଧରି ତାକୁ କରେ
ବିବସନ କରି ବସାଇଲେ ବକ୍ଷସ୍ଥଳେ ।
ଚଉଷଠି ବନ୍ଧେ ତାର ସଙ୍ଗେ ରତିକରି
ଚୁମ୍ବ ଦେଲେ ଗଣ୍ଡସ୍ଥଳେ ଶିରକୁ ଓଟାରି ।
ସ୍ତନ ଶ୍ରୋଣି ଦୁଇସ୍ଥାନେ ନଖକ୍ଷତମାନ
ଦେଲେ କାମରସେ ମଗ୍ନକରି ନିଜ ମନ ।
ଶ୍ରୀକୃଷ୍ଣଙ୍କୁ ପାଇ ସେହି କାମିନୀ ରତନ
ବିପରୀତ ଭାବେ ଦେଲା ମୁଖରେ ଚୁମ୍ବନ ।
ସେଅନ୍ତେ ସୁରତ ସୁଖେ ଅଚେତନ ହୋଇ
ଫୁଲକାଶଯ୍ୟା ଉପରେ ପଡ଼ିଲା ସେ ଶୋଇ ।
ନିଶା ଅବସାନେ ପ୍ରଭୁ ବୀର୍ଯ୍ୟଦାନ କଲେ
ପୁଣି ତାକୁ କୋଳେ ଧରି ଚୁମ୍ବନକୁ ଦେଲେ ।
କ୍ରମେ କ୍ରମେ ନିଶାଶେଷେ ପ୍ରଭାତ ହୋଇଲା
ଦେଖୁ ଦେଖୁ ସବୁଆଡ଼ ନିର୍ମଳ ଦିଶିଲା ।
ସେ ସମୟେ ଗୋଲୋକରୁ ବିମାନେକ ଆସି
କୁବୁଜାର ପୁରମଧ୍ୟେ ପଡ଼ିଲାକ ଖସି ।
ଶ୍ରୀକୃଷ୍ଣଙ୍କ ପାରିଷଦଗଣ ତହିଁ ଥିଲେ
କାମିନୀକୁ ବସାଇଣ ବେଗ ହୋଇ ଗଲେ ।
ଦିବ୍ୟ କଳେବର ଧରି ସେ କୁବୁଜା ନାରୀ
ପ୍ରବେଶ ହୋଇଲା ଯାଇଁ ଗୋଲୋକ ନଗରୀ ।
ସେହିଠାରେ ଚନ୍ଦ୍ରମୁଖୀ ଗୋପିକା ରୂପରେ
ରହିଲା ସେ ଅନ୍ୟ ଗୋପୀମାନଙ୍କ ମଧ୍ୟରେ ।
ଶ୍ରୀକୃଷ୍ଣ କ୍ଷଣକେ ମାତ୍ର ସେ ସ୍ଥାନରେ ରହି
ନିଜପୁରେ ପ୍ରବେଶିଲେ ପ୍ରଭାତରେ ଯାଇ ।

ନନ୍ଦଙ୍କୁ ପ୍ରଣାମ କରି ନିତ୍ୟକର୍ମ ଶେଷେ
ବସିଲେ ଆସନ ପରେ ଅତ୍ୟନ୍ତ ହରଷେ ।
ଶୁଣ ହେ ନାରଦ ମୁନି ଅପୂର୍ବ ଚରିତ
ଶୟନ ଗୃହରେ ଶୋଇଥିଲା କଂସଦୈତ୍ୟ ।
ନିଶୀଥ ସମୟେ ତହିଁ ଦେଖିଲା ସ୍ୱପନ
ଯତ୍ର ତତ୍ର ଆକାଶରୁ ଉଲ୍‌କା ପଡ଼େ ଘନ ।
ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କର ବିମ୍ବ ଦ୍ୱୟ ଛିଡ଼ି
ଗଲେ ଏକ ସମୟରେ ମହୀପରେ ପଡ଼ି ।
ବଜ୍ରହସ୍ତ ହୋଇ ଏକ ପୁରୁଷ ତା ପାଶେ
ଯାଇଁ ଆସୁଥିଲା ମାରିବାକୁ ମହାରୋଷେ ।
ଶ୍ୟାମା ଛିନ୍ନ ନାସିକା ଶୂଦ୍ରାଣୀ ଗୋଟିଏ
ହସି ହସି ତାକୁ ଧୂଳି ଫିଙ୍ଗିଲେ ମୁଠାଏ ।
ଖଡ୍ଗ ଖର୍ପର ଧରି କାଳିକା ମୂରତି
ବୋଇଲେ ରେ ନିଶାଚର ଯିବୁ କ ବରତି ।
ତାଙ୍କ ପଛେ ପଛେ କାକ ଗୃଧ୍ର କଙ୍କପକ୍ଷୀ
ଉଡ଼ି ଆସୁଥିଲେ ମାଂସ ଖାଇବାକୁ ଡାକି ।
ଆବର ଦେଖିଲା ଆସେ କୁକୁର ଶୃଗାଳ
ଖେଦିକରି ଧାଇଁ ଆସୁଥିଲେ ମାଳ ମାଳ ।
କେଉଁଠାରେ ଭସ୍ମ କେଉଁଠାରେ ବା ଅଙ୍ଗାର
କେଉଁଠାରେ ଅସ୍ଥି ଗଦା ହୋଇଛି ଅପାର ।
କୁଲାଳ ତଇଳକାର ଚର୍ମ କପର୍ଦ୍ଦକ
ଶ୍ମଶାନ ଦଗଧ କାଷ୍ଠ ବିଚ୍ଛିନ୍ନ ମସ୍ତକ ।
ଦଗ୍ଧ ସ୍ଥାନ ଜଳଶୂନ୍ୟ ତଡ଼ାଗ ନିକର
ଦଗଧ ମସ୍ର ଲୋହଦଣ୍ଡ ବ୍ୟାଧିଯୁକ୍ତ ନର ।
ଆବର ବ୍ରାହ୍ମଣ ଭିକ୍ଷୁ କ୍ରୋଧଯୁତ ହୋଇ
ଆସିବାର ଦେଖିଲା ସେ କଂସ ନରସାଇଁ ।
ଏହିରୂପେ ଦୁଷ୍ଟସ୍ୱପ୍ନ ଦେଖି ପ୍ରଭାତରେ
ଉଠିଣ କହିଲା ଯାଇ ଜନନୀ ଆଗରେ ।
ପିତାମାତା ପତ୍ନୀ ତାହା ଶୁଣି ଦୁଃଖକରି
କାନ୍ଦିଲେ କି ହେଲା ବୋଲି ମନରେ ବିଚାରି
ଆଶ୍ୱାସନା କଲି ତାଙ୍କୁ କଂସ ନରପତି
ମଞ୍ଚକ ଗୋଟିଏ କରାଇଲେ ସେ ଝଟତି ।
ପୁଣି ତାର ନିକଟରେ ହସ୍ତୀ ରଖାଇଲେ
ମଲ୍ଲ ଯୋଦ୍ଧାଙ୍କୁ ତାହାର ପାର୍ଶ୍ୱରେ ରଖିଲେ ।
ବିବିଧ ମଙ୍ଗଳକର୍ମ ସମ୍ପାଦନ କରି
ସଭା କରାଇଲେ ଯତନରେ ଦଣ୍ଡଧାରୀ ।

ଯଜ୍ଞ କର୍ମରେ କୁଶଳ ପୁରୋହିତଗଣ
କାର୍ଯ୍ୟ ଆରମ୍ଭିଲେ ତହିଁ ଆସି ତତକ୍ଷଣ ।
ବିଲକ୍ଷଣ ଖଡ୍ଗ ଧରି ମଞ୍ଚକ ଉପରେ
ବସିଲେ ରାଜନ ଅତି ଉଲ୍ଲାସ ମନରେ ।
ଯୁଦ୍ଧ କରିବାକୁ ବୀରଗଣଙ୍କୁ ଡକାଇ
ରଖାଇଲେ ନାନାଅସ୍ତ୍ର ଶସ୍ତ୍ର ତାଙ୍କୁ ଦେଇ ।
ବ୍ରାହ୍ମଣଙ୍କୁ ଯଜ୍ଞଶାଳା ପାର୍ଶ୍ୱରେ ବସାଇ
ବସାଇଲେ ପୁଣି ରାଜାମାନଙ୍କୁ ଡକାଇ ।
ଏଥିଅନ୍ତରେ ଶ୍ରୀକୃଷ୍ଣ ବଳରାମ ଦୁହେଁ
ସେ ଯଜ୍ଞସଭାରେ ଆସି ଉପସ୍ଥିତ ହେଲେ ।
ଯେଉଁ ଗୃହେ ଶିବଧନୁ ଥିଲା ସେହିଠାକୁ
ଯାଇଣ ହସ୍ତରେ ଧରି ଭାଙ୍ଗି ଦେଲେ ତାକୁ ।
ଘଡ଼ ଘଡ଼ ଶବ୍ଦପରି ମହାଘୋର ଧ୍ୱନି
ଜାତ ହୋଇ ପୂର୍ଣ୍ଣ କଲା ମଥୁରା ଅବନୀ ।
ସବୁ ଲୋକଙ୍କର କର୍ଣ୍ଣ ସ୍ତବ୍ଧ ହୋଇଗଲା
ଶୁଣି କଂସ ନୃପତିର ବିଷାଦ ବଢ଼ିଲା ।
ବସୁଦେବ ଦେବକୀ ସେ କଥାସବୁ ଶୁଣି
ଆନନ୍ଦିତ ହେଲେ କୃଷ୍ଣ ଆଗମନ ଜାଣି ।
ସେ ଅନ୍ତେ ଶ୍ରୀକୃଷ୍ଣ ଗଜ ମଲ୍ଲଙ୍କର ପ୍ରାଣ
ହରିଲେ ସେକ୍ଷଣି ସମସ୍ତଙ୍କ ଆଗେ ଜାଣ ।
ସଭାମଧ୍ୟେ ଯାଇଁ ତହୁଁ ହୁଅନ୍ତେ ପ୍ରବେଶ
ଯୋଗୀମାନେ ଦେଖି ତାଙ୍କୁ ଲଭିଲେ ଉଲ୍ଲାସ
ଯେଉଁ ସ୍ୱରୂପକୁ ଦେଖୁଥିଲେ ହୃଦୟରେ
ଦେଖିଲେ ସେହି ରୂପକୁ ବାହ୍ୟ ପ୍ରଦେଶରେ
ରାଜାଙ୍କ ଦୃଷ୍ଟିରେ ପ୍ରଭୁ ମହାରାଜା ପରି
ଦିଶିଲେ ସେକାଳେ ଜାଣ ଆହେ ତପସ୍ୱୀର ।
ପିତାମାତା ଦୁହେଁ ତାଙ୍କୁ ଦେଖିଲେ ସେଠାରେ
ଶିଶୁଛନ୍ତି ସ୍ତନ୍ୟପାୟୀ ବାଳକ ପ୍ରକାରେ ।
ଦେଖିବାପାଇଁକି ଯେତେ ସ୍ତ୍ରୀ ଆସିଥିଲେ
କନ୍ଦର୍ପ ପରାୟେ ପ୍ରଭୁ ତାହାଙ୍କୁ ଦିଶିଲେ ।
ବଇରୀ ତ ତାହାଙ୍କର ହୋଇଥିଲା କଂସ
ଦିଶିଲେ ତାହାକୁ ଯେହ୍ନେ ସେ କାଳପୁରୁଷ ।
ଏହିପରି ଭିନ୍ନ ଭିନ୍ନ ରୂପରେ ଦର୍ଶନ
ଦେଲେ ସେ ସମୟେ ପ୍ରଭୁ କମଳଲୋଚନ ।
ସେ ଅନ୍ତେ ପିତାମାତାଙ୍କ ପାଦରେ ନମିଲେ
ସୁଦର୍ଶନ ଆୟୁଧକୁ ସୁମରଣା କଲେ ।

ଇଚ୍ଛା ଜାଣି ସୁଦର୍ଶନ ଚକ୍ର ବେଗ ହୋଇ
ମିଳିଲା ଶ୍ରୀକୃଷ୍ଣଙ୍କର ହସ୍ତଦେଶେ ଯାଇ
ଧରି ତାକୁ ମଞ୍ଚାପାଶେ ହୁଅନ୍ତେ ପ୍ରବେଶ
କୃଷ୍ଣମୟ ବିଚାରିଲା ଜଗତକୁ କଂସ ।
ଆବର ଦେଖିଲା ଆଗେ ରତ୍ନମୟ ଯାନ
ଶୂନ୍ୟ ହୋଇଛି ତହିରେ ମଣ୍ଡିତ ହୋଇଣ ।
ସେକାଳେ କଂସକୁ ବଳେ ଝିଙ୍କି ନରହରି
ଆଣିଲେ ମଞ୍ଚା ଉପରୁ ତଳକୁ ଘୋଷାରି ।
ସୁଦର୍ଶନ ଚକ୍ରାଘାତେ ଦୁଇଖଣ୍ଡ କଲେ
ଗଣ୍ଡିମୁଣ୍ଡ ମହୀପରେ ଗଡ଼ାଇଣ ଦେଲେ ।
ଦିବ୍ୟରୂପ ବହି ତାର ଆତ୍ମା ଚାଲିଗଲା
ରଥ ଚଢ଼ି ଗୋଲୋକରେ ପ୍ରବେଶ ହୋଇଲା
ଶରୀରୁ ଉତ୍ପନ୍ନ ହେଲା ଯେଉଁ ବ୍ରହ୍ମତେଜ
ଭଜିଲା ସେ ଶ୍ରୀକୃଷ୍ଣଙ୍କ ଚରଣ ପଙ୍କଜ ।
ସେ ଅନ୍ତେ ଶ୍ରୀକୃଷ୍ଣ ତାର ଶବକୁ ସଂସ୍କାର
କରାଇ ଦ୍ୱିଜଙ୍କୁ ଦାନ ଦେଲେ ବହୁବାର ।
ଉଗ୍ରସେନଙ୍କୁ ରାଜ୍ୟରେ ରାଜା କରାଇଲେ
ନୃପତିମାନଙ୍କ ମଧ୍ୟେ ଶ୍ରେଷ୍ଠ ସେ ହୋଇଲେ ।
ଏଥିଅନ୍ତେ କଂସମାତା ବନ୍ଧୁବର୍ଗ ଘେନି
ରୋଦନ କରି ବିକଳେ ଲୋଟିଲା ଅବନୀ ।
ବାନ୍ଧବମାନେ ବୋଇଲେ ଆହେ ମହାରାଜ
ସିଂହାସନେ ବିଜେ କରୁନାହଁ କିପାଁ ଆଜ ।
ବନ୍ଧୁଜନଙ୍କୁ ଛାଡ଼ିଣ କେଉଁଠାକୁ ଗଲ
ଦୟାକରି କାହିଁପାଇଁ ସଙ୍ଗରେ ନ ନେଲ ।
ଯେଉଁ ଶ୍ରୀକୃଷ୍ଣଙ୍କୁ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ମୁନିଋଷି ସନ୍ତତରେ ସକଳ ଅମର ।
ସ୍ତୁତି କରୁଥାନ୍ତି ଦରଶନ କରିବାକୁ
ତଥାପି କେବେହେଁ ଦେଖି ନ ପାରନ୍ତି ତାକୁ
ଏମନ୍ତ ପ୍ରଭୁଙ୍କଠାରେ ଅପରାଧ କଲ!
ଜାଣି ଜାଣି ଆପଣାର ପ୍ରାଣ ହରାଇଲ ।
ସେ ପ୍ରଭୁ ପରମବ୍ରହ୍ମ ନିତ୍ୟ ନିରାମୟ
ଭକତଜନଙ୍କୁ ଦେଇ ଥାଆନ୍ତି ଅଭୟ ।
ଦୁଷ୍ଟ ନିବାରିବା ପାଇଁ ମର୍ତ୍ତ୍ୟ ଅବତାର
ହୋଇଛନ୍ତି ପରାତ୍ପର ପରମ ଈଶ୍ୱର ।
ଏହିରୂପେ କେତେକ୍ଷଣ ଶୋକକରି ଭୂମି
ହୋଇଲେ ସେ ଯମପୁରେ ଆହେ ମହାମୁନି ।

ବ୍ରାହ୍ମଣଙ୍କୁ ଡକାଇଣ ନାନାଦ୍ରବ୍ୟମାନ
ଭୋଜନ କରିବାପାଇଁ ଦେଲେକ ବିଧାନ ।
ଏଥିଅନ୍ତରେ ଶ୍ରୀକୃଷ୍ଣ ପିତାଙ୍କ ପାଶକୁ
ଗଲେ ସଭା ତ୍ୟାଗକରି ନେଇଣ ବନ୍ଧୁଙ୍କୁ ।
ଦେଖିଲେ ଶୃଙ୍ଖଳାବଦ୍ଧ ହୋଇ ପିତାମାତା
ପଡ଼ି ରହିଛନ୍ତି ମନେକରି ଘୋରଚିନ୍ତା ।
ତା ଦେଖି ସେକ୍ଷଣି ଛିନ୍ନ କରିଣ ବନ୍ଧନ
ମୁକ୍ତ କରାଇଲେ ତହୁଁ ଜଗତପାବନ ।
ଏଥି ଅନ୍ତରେ ଦୁହିଁଙ୍କର ପାଦତଳେ ପଡ଼ି
ନମସ୍କାର କଲେ ପୁଣି ଉଠି କରଯୋଡ଼ି ।
ଭକ୍ତିଭରେ ଆଗେ ଉଭା ହୋଇ ସ୍ତୁତି କଲେ
ବନ୍ଦନା କରୁଛି ପିତାମାତାଙ୍କୁ ବୋଇଲେ ।
ଆବର ବୋଇଲେ ଯେଉଁ ମୂରୁଖ ଦୁର୍ବୃତ୍ତ
ପିତାମାତାଙ୍କ କାର୍ଯ୍ୟରେ ନ ହୋଇ ରତ ।
ତାହାକୁ ହାତୁକ ବୋଲି ଜାଣିବ ନିଶ୍ଚୟ
ମଲେ ମୁକ୍ତି ତାର ହୋଇଯାଏ କ୍ଷୟ ।
ପିତାଠାରୁ ଶତଗୁଣେ ପୂଜ୍ୟ ଅଟେ ମାତା
ଅଟଇ ଏଥି ଜଗତରେ ପ୍ରତ୍ୟକ୍ଷ ଦେବତା ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ରାମଙ୍କର ତୁଲେ
ପୁଣି ପିତା ମାତାଙ୍କର ପାଦରେ ନମିଲେ ।
ମିଷ୍ଟାନ୍ନ ପାୟସ ଦଧି ଘୃତଆଦି କରି
ଭୁଞ୍ଜାଇଲେ କୁମରଙ୍କୁ ବସୁଦେବ ନାରୀ ।
ଆବର ନନ୍ଦଙ୍କୁ ଆଦି ଯେତେ ଆସିଥିଲେ
ସମସ୍ତଙ୍କୁ ବସୁଦେବ ସତ୍କାର କଲେ ।
ବ୍ରାହ୍ମଣ ଦ୍ୱାରାରେ ନାନାମଙ୍ଗଳ ବିଧାନ
କରାଇଲେ ପୁଣି ସେ କାଳରେ ଦେଇ ମନ ।
କହଇ ଦେବକୀମୋହନ ଆହେ ସାଧୁଜନେ
କଂସ ବଧ ଚରିତକୁ ଶୁଣ ସ୍ଥିରମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କଂସାସୁର ନିଧନ ଓ ବସୁଦେବ ଦେବକୀଙ୍କର ମୋକ୍ଷଣେ ନାମ ଦ୍ୱିସପ୍ତତିତମୋଽଧ୍ୟାୟଃ ।



## ତ୍ରିସପ୍ତତିତମ ଅଧ୍ୟାୟ

## ନନ୍ଦ ଯଶୋଦା ଆଦିଙ୍କର ଶୋକ ବର୍ଣ୍ଣନ

ଏଥୁଅନ୍ତେ ନାରାୟଣ ପୁଣି ନାରଦଙ୍କୁ
କହି ଆରମ୍ଭିଲେ କୃଷ୍ଣ ଚରିତ ରସକୁ ।
ବୋଇଲେ ହେ ମୁନିବର ଶୁଣ ମନଦେଇ
ନନ୍ଦଙ୍କ ପାଶେ ଶ୍ରୀକୃଷ୍ଣ ଉପସ୍ଥିତ ହୋଇ ।
ଆଧ୍ୟାତ୍ମିକ ତତ୍ତ୍ୱକଥା କହି ତାହାଙ୍କର
ମନରୁ ସନ୍ତାପ କରାଇଲେ ବେଗେ ଦୂର ।
ବୋଇଲେ ହେ ତାତ ତୁମ୍ଭେ ଶୋକତ୍ୟାଗକରି
ଆନନ୍ଦିତ ହୋଇ ନିଜପୁରେ ଯାଅ ଫେରି ।
ଯେଉଁ ଜ୍ଞାନ ପୂର୍ବକାଳେ ବିଧାତାଙ୍କୁ ମୁହିଁ
ଦେଇଥିଲି ଗୋଲୋକରେ ପ୍ରୀତିମନ୍ତ ହୋଇ ।
ଆବର ଶେଷ ଗଣେଶ ସ୍ମର ଦିନପତି
ବଳସ୍ତବ ମୁନି ସିଦ୍ଧ ଯୋଗୀଜନ ଯତି ।
ଏମାନଙ୍କୁ ମଧ୍ୟ ଦେଇଅଛି ଯା କିଞ୍ଚିତ
ଶୁଣ କହୁଅଛି ତାହା ଦେଇ କରି ଚିତ୍ତ ।
କେ ଅଟେ କାହାର କାନ୍ତା କେ କାହାର ପୁତ୍ର
ସଂସାର ଲୀଳା ଅଟଇ ଅତ୍ୟନ୍ତ ବିଚିତ୍ର ।
କର୍ମ ଅନୁସାରେ ଜୀବ ଫଳ ଭୋଗ କରେ
ଜାତ ହୁଏ ପୁନଃପୁନ ଅନେକ ଯୋନିରେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରକୁଳରେ ଜାତ
ହୁଅନ୍ତି ଆବର ଅନ୍ୟ ଅନ୍ୟ କର୍ମେ ରତ ।
କେଉଁମାନେ ପଶୁପକ୍ଷୀ ଜନମ ହୁଅନ୍ତି
ଘୋରତର ମାୟାରେ ମଜ୍ଜି ପଡ଼ି ଭ୍ରମୁଥାନ୍ତି ।
ବିଷୟ ଭୋଗ ସମୟେ ହୁଅନ୍ତି ଆନନ୍ଦ
ଦୁଃଖିତ ହୁଅନ୍ତି ପାଇ ମରଣ ବିଚ୍ଛେଦ ।
ପ୍ରଜା ଭୂମି ଧନହାନି ହୁଏ ଯେତେବେଳେ
ମରଣୁ ଅଧିକ କଷ୍ଟ ଲାଗେ ଆସି ବଳେ ।
ସେ କାଳେ ପଣ୍ଡିତଲୋକ ମୂର୍ଖପରି ହୋଇ
କର୍ତ୍ତବ୍ୟ ବିଷୟ ସ୍ଥିର କରି ନ ପାରଇ ।

କେବଳ ମୋହର ଭକ୍ତ ଅଟେ ଯେଉଁ ଲୋକ
ତାଠାରୁ କଦାପି ଗ୍ଲାନି ନ ଯାଏ ସେବେକ ।
ମୋହର ଆଜ୍ଞାରେ ବହୁଅଛି ପ୍ରଭଞ୍ଜନ
ଆକାଶରେ ଚନ୍ଦ୍ର ସୂର୍ଯ୍ୟ କରନ୍ତି ଭ୍ରମଣ ।
କାଳ ଜାଣି ପୁରନ୍ଦର ନୀର ବରଷଇ
ଭଲମନ୍ଦ ସବୁ ଅଗ୍ନି ଦହନ କରଇ ।
ଜନ୍ତୁଙ୍କ ମଧ୍ୟରେ ମୃତ୍ୟୁ ଭ୍ରମି ନିତ୍ୟ ନିତ୍ୟ
କାଳଶେଷେ ନେଉଅଛି ଜନ୍ତୁଙ୍କୁ ଝଟତି ।
କାଳେ ପୁଷ୍ପ ଫଳ ବହୁଛନ୍ତି ବୃକ୍ଷଗଣ
ଗତି କରୁଅଛି ବିନା ଆଧାରେ ପବନ ।
ବାୟୁକୁ ଆଶ୍ରୟ କରି ରହିଅଛି କଚ୍ଛପ
ତା ଉପରେ ରହିଛନ୍ତି ଶେଷ ମହାସର୍ପ ।
ଶେଷ ଆଶ୍ରୟରେ କୁଳ ପର୍ବତ ନିକର
ରହି ଅଛନ୍ତି ସର୍ବଦା ହୋଇକରି ସ୍ଥିର ।
ସେମାନଙ୍କ ଆଶ୍ରୟରେ ସପତ ପାତାଳ
ତାହାଙ୍କୁ ଆଶ୍ରୟ କରି ରହିଅଛି ଜଳ ।
ଜଳ ଉପରେ ପୃଥିବୀ ଭାସୁଅଛି ରହି
ନକ୍ଷତ୍ର ମଣ୍ଡଳ ତାର ଆଶ୍ରିତ ଅଟଇ ।
ଆବର ସପତ ସ୍ୱର୍ଗ ପୃଥିବୀ ଆଶ୍ରିତ
ବୈକୁଣ୍ଠ ଭୁବନ ମାତ୍ର ଅଧାର ରହିତ ।
ସେହିପରି ନିରାଧାର ଅଟଇ ଗୋଲୋକ
ମୁହିଁ ଟି ଅଟେ ସେ ପୁର ଲୋକଙ୍କ ନାୟକ ।
ପଞ୍ଚାଶତ କୋଟିପୂର୍ଣ ପ୍ରମାଣ ତାହାର
ଚଉପାଶେ ବସିଅଛି ସାତ ସାତ ଦ୍ୱାର ।
ଲକ୍ଷେ ପ୍ରାକାର ବେଢ଼ାଇ ରହିଛନ୍ତି ତାକୁ
ଛୁଇଁଅଛି ଗୃହମାନ ଊର୍ଦ୍ଧ୍ୱ ଆକାଶକୁ ।
ବିରଜା ନାମରେ ନଦୀ ବହୁଛି ତା ପାଶେ
ବେଷ୍ଟିତ ହୋଇଛି ରତ୍ନ ଶୈଳଶୃଙ୍ଗରେ ସେ
ସେ ରତ୍ନଶୈଳର ଏକ ବିଶାଳ ଶିଖର
ଅୟୁତେ ଯୋଜନ ହୋଇଅଛି ଉଚ୍ଚତର ।
ଯାହା ପ୍ରସ୍ଥରେ ସେ ଗିରି ଅଟେ ଲକ୍ଷେପୂର୍ଣ
ସେଠାରେ ରାସମଣ୍ଡଳ ରହିଅଛି ଜାଣ ।
ଚନ୍ଦ୍ରବିମ୍ବ ପ୍ରାୟେ ତାହା ବର୍ତ୍ତୁଳ ଅଟଇ
ଅମୂଲ୍ୟ ରତ୍ନରେ ପୂର୍ଣ୍ଣ ହୋଇଅଛି ସେହି ।
କଳ୍ପବୃକ୍ଷ ପାରିଜାତ ତରୁଗଣ ଆଦି
ନନ୍ଦନ ବନକୁ ତୁଚ୍ଛ କରୁଛନ୍ତି ତହିଁ ।
ତିନିକୋଟି ରତ୍ନମୟ ଗୃହମାନଙ୍କରେ
ବାସ କରନ୍ତି ଗୋପ ଗୋପୀଏ ସୁଖରେ ।
ସୁବର୍ଣ୍ଣ ପ୍ରମୁଖ ରତ୍ନ କଳସ ଅପାର
କେତେକ ସ୍ଥାନରେ ଦିଶୁଅଛନ୍ତି ସୁନ୍ଦର ।
ନାନାବିଧ ଉପଭୋଗ ଦ୍ରବ୍ୟରେ ପୂରିତ
ହୋଇଛି ସେ ପୁର ସ୍ୱର୍ଣ୍ଣ ରତ୍ନ ବିଭୂଷିତ ।
ଶୁକଳ ଛତ୍ର ଚାମର ଶୁଭ୍ର ବସ୍ତ୍ରରାଜି
ଅବାରୁ ସୌନ୍ଦର୍ଯ୍ୟ ତାର ଦିଶଇ ବିରାଜି ।
ଅମୂଲ୍ୟ ଶତ ରତନ ପ୍ରକାର ବେଢ଼ାଇ
ରହିଅଛି ସେ ପୁରର ଶୋଭାକୁ ବଢ଼ାଇ ।
ତା ଚଉପାଶରେ ତିନି ପରିଧି ଦୁଆର
ସୁବର୍ଣ୍ଣ ନିର୍ମିତ ହୋଇ ଦିଶଇ ସୁନ୍ଦର ।
ଷୋଡ଼ଶ ଲକ୍ଷ ଗୋପିକା ତହିଁରେ ନିଯୁକ୍ତ
ହୋଇଛନ୍ତି ସେଯାକାର୍ଯ୍ୟ ଜାଣ ଆହେ ତାତ
ସମସ୍ତେ ଅମୂଲ୍ୟ ବାସ ସ୍ୱର୍ଣ୍ଣ ଆଭରଣ
ଭରିଅଛନ୍ତି ଅଙ୍ଗରେ ପୂର୍ଣ୍ଣରୂପେ ଜାଣ ।
କେତେକ ସ୍ଥାନରେ ନାନା ରତ୍ନମୟ ବେଦୀ
ରହିଛନ୍ତି ବିଶେଷରେ ସୌନ୍ଦର୍ଯ୍ୟ ସମ୍ପାଦି ।
ସେ ପୁରେ ରାଧିକା ଦେବୀ ଅଧୀଶ୍ୱରୀ ହୋଇ
ଅନେକ ଗୋପୀଙ୍କ ମଧ୍ୟେ ମହାସୁଖେ ରହି ।
ଶ୍ରୀଦାମ ଶାପରେ ଏବେ ବୃଷଭାନୁ ଘରେ
ଜନମି ଅଛନ୍ତି ସେହି ଗୋପାଳ ନଗରେ ।
ପ୍ରାଣ ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ସେ ମୋର
ମୋଠାରୁ କିଞ୍ଚିତ ଭେଦ ନାହିଁ ତାହାଙ୍କର ।
କିନ୍ତୁ ଶତେ ସମ୍ବତ୍ସର ବିଚ୍ଛେଦ କଷଣ
ଭୋଗ କରିବେ ସେ ଶାପ ସକାଶରୁ ଜାଣ ।
ପୃଥିବୀ ଭାରକୁ ମୁହିଁ ନିବାରଣ କରି
ଗୋଲୋକ ଭୁବନେ ଯିବି ତାଙ୍କୁ ସଙ୍ଗେ ଧରି ।
ଏ ସକାଶୁ ଆହେ ତାତ ଶୋକ ତେଜ ତୁମ୍ଭେ
ବ୍ରଜପୁରେ ଯାଅ ଏବେ ବୋଲୁଅଛୁ ଆମ୍ଭେ ।
ଆମ୍ଭେ ଯିବା ସମୟରେ ଯଶୋଦା ସହିତେ
ତୁମ୍ଭେ ମଧ୍ୟ ଯିବ ବୋଲି ଘେନିଥାଅ ଚିତ୍ତେ ।
ଆବର ବୃଷଭାନୁଙ୍କ କଳାବତୀ ସହ
ସଙ୍ଗତରେ ନେବୁ ଏଥେ ନ କର ସନ୍ଦେହ ।
ମୋର ମାତା ଯଶୋଦାଙ୍କୁ ଏ ସମସ୍ତ କଥା
କହିକରି ଛଡ଼ାଇବ ତାଙ୍କ ହୃଦୁଁ ବ୍ୟଥା ।

ମୁହିଁ ଅଟେ ସକଳ ଜୀବଙ୍କର ଜୀବ
ଜୀବ ଅଟଇ ବିଶ୍ବସ୍ଥ ମୋର ପ୍ରତିବିମ୍ବ ।
ଯେଉଁରୂପେ ଦୁଗ୍ଧଠାରେ ଧବଳତା ଗୁଣ
ଧର୍ମୀ ଧର୍ମୀ ସମ୍ବନ୍ଧରେ ରହିଥାଏ ଜାଣ ।
ସେ ରୂପେ ପ୍ରକୃତି ମୋର ସ୍ବରୂପ ଅଟନ୍ତି
ସୃଷ୍ଟି ସରଜନା ଅର୍ଥେ ଭିନ୍ନ ଦେଖାଯାନ୍ତି ।
ତୁମ୍ଭ ପୁତ୍ର ବୋଲି ମୋତେ ନ କର ବିଚାର
ଦୁଷ୍ଟ ନାଶିବାକୁ ହୋଇଅଛୁ ଅବତାର ।
ଗୋଲୋକ ଈଶ୍ବର ବିନେ ଅଟନ୍ତି ରାଧିକା
ନ ଭାବ ତାହାଙ୍କୁ କେବେ ଗୋପାଳ କନ୍ୟକା
ପ୍ରକୃତିରେ ଆମ୍ଭେ ଦୁହେଁ ପ୍ରକୃତି ପୁରୁଷ
ମାନବ ଶରୀର ଘେନ ହୋଇଛୁ ପ୍ରକାଶ ।
ପୂର୍ବକାଳେ ବ୍ରହ୍ମାଙ୍କୁ ମୁଁ କହିଥିଲି ଯାହା
ଏବେ ମନଦେଇ ଶୁଣ କହୁଅଛୁ ତାହା ।
ଶ୍ରୀକୃଷ୍ଣ ଅଟଇ ମୁହିଁ ଗୋଲୋକ ନଗରେ
ଚତୁର୍ଭୁଜ ବିଷ୍ଣୁ ଅଟେ ବଇକୁଣ୍ଠ ପୁରେ ।
ବ୍ରହ୍ମଲୋକରେ ବୋଲାଏ ବ୍ରହ୍ମା ପ୍ରଜାପତି
କୈଳାସ ଭୁବନେ ଶିବ ନାମ ମୋର ଖ୍ୟାତି ।
ଆବର ଇନ୍ଦ୍ର ବରୁଣ ଯମ ବୈଶ୍ବାନର
ସମସ୍ତେ ଅଟନ୍ତି ଅନ୍ୟ ମୂରତି ମୋହର ।
ଦିଗପାଳ ଗଣରେ ମୁଁ ଅଟଇ ଈଶାନ
ସକଳ ଜୀବର ଆତ୍ମାରୂପେ ବିଦ୍ୟମାନ ।
ଧନରେ ରତ୍ନ ସ୍ବରୂପ ତେଜରେ ସୁବର୍ଣ୍ଣ
ପୂଜ୍ୟ ଦେବତା ମଧ୍ୟରେ ଶାଳଗ୍ରାମ ଜାଣ ।
ନଦୀମାନଙ୍କରେ ଗଙ୍ଗା ମନ୍ତ୍ରେ ପ୍ରଣବ
ବିଦ୍ୟାରେ ବୀଜସ୍ବରୂପ ବୋଲିକରି ଭାବ ।
ସର୍ପମାନଙ୍କ ମଧ୍ୟରେ ଅଟଇ ଅନନ୍ତ
ବ୍ରହ୍ମର୍ଷି ଗଣ ମଧ୍ୟରେ ଭୃଗୁ ତପୋବନ୍ତ ।
ଚିତ୍ରରଥ ଅଟଇ ମୁଁ ଗନ୍ଧର୍ବ ମଧ୍ୟରେ
ଶନୈଶ୍ଚର ଅଟେ ଗ୍ରହମାନଙ୍କ ଭିତରେ ।
ବେଦମଧ୍ୟେ ସାମବେଦ ବୋଲି ମୋର ଖ୍ୟାତି
ଅଚଳ ମଧ୍ୟରେ ମୁହିଁ କୈଳାସ ମୂରତି ।
ଆବର ଜଗତେ ଶ୍ରେଷ୍ଠ ଅଟେ ଯେତେଦ୍ରବ୍ୟ
ମୋର ପ୍ରତିରୂପ ହୋଇଅଛନ୍ତି ସେ ସର୍ବ ।
ବିନାଶଙ୍କ ପ୍ରାଣୀଙ୍କ ମଧ୍ୟ ବଇଷ୍ଣବ ମୁହିଁ
ସମସ୍ତ ଲୋକରେ ଶ୍ରେଷ୍ଠ ଯେଯାରେ ବୋଲାଇ ।

ମୋର ମନ୍ତ୍ର ଉପାସନା କରଇ ଯେ ଜନ
ତାହାଠାରୁ ବଳି କେହି ନାହିଁଟି ପ୍ରଧାନ ।
ଯେହ୍ନେରୂପେ ବୀଜରୁ ମହାବୃକ୍ଷ ହୁଏ ଜାତ
ତହିଁରେ ହୁଅଇ ଫୁଲ ଫଳ ଯେ ବହୁତ ।
ସେ ଫଳରୁ ପୁଣି ବୀଜ ହୁଏ ଉତପନ୍ନ
ବୃକ୍ଷକାରେ ସ୍ଥିତ ହୁଅନ୍ତି ଆତ୍ମା ସେ ତେମନ ।
ସେହିପରି ମୋହଠାରୁ ଜାତ ଏ ସଂସାର
ହୋଇଅଛୁ ଜାଣ ଆହେ ଜ୍ଞାନୀଙ୍କର ବର ।
ସକଳ ଜୀବର ସୃଷ୍ଟି ପାଳନ ନିମିତ୍ତ
ସମସ୍ତ ଯୁଗରେ ମୁହିଁ ଅଟେ ଆହେ ତାତ ।
ସର୍ବଈଶ ସର୍ବବୀଜ ବୋଲିକରି ମୋତେ
ସ୍ତୁତିକରି କହିଥାନ୍ତି ଜ୍ଞାନୀଏ ସତତେ ।
କେବଳ ମୋହିତ ଅଟେ ଯେ ମୋରମାୟାରେ
ସେ କଦାପି ମୋର ତତ୍ତ୍ବ ନ ଜାଣଇ ବାରେ ।
ଧର୍ମବୁଦ୍ଧି ଛାଡ଼ି ପାପ କାର୍ଯ୍ୟେ ରତ ହୋଇ
ଅନ୍ତଃକାଳେ ଅନ୍ତକର ଦଣ୍ଡ ଭୋଗେ ଯାଇ ।
ଯେଉଁଠାରେ ଥାଏ ମୁହିଁ ସେଠାରେ ସମସ୍ତ
ଦେବତାଏ ଆସି ହୋଇଥାନ୍ତି ଏକତ୍ରିତ ।
ଆହେ ବ୍ରଜ ଅଧୀଶ୍ବର ନନ୍ଦ ମହାରାଜ
ମୋହର ବିଚ୍ଛେଦ ଦୁଃଖ ମାନସରୁ ତେଜ ।
ବ୍ରଜପୁରେ ଯାଇ ଏବେ କର୍ମେ ହୁଅ ରତ
ଯଶୋଦା ରାଧାଙ୍କୁ କହି କର ପ୍ରବୋଧିତ ।
ଯେଉଁ ତତ୍ତ୍ବଜ୍ଞାନ ମୁହିଁ ଦେଲିଟି ତୁମ୍ଭଙ୍କୁ
ବୁଝାଇ କହିବ ସବୁ ଗୋପିକାମାନଙ୍କୁ ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
ବ୍ରଜପୁରେ ଗଲେ ନନ୍ଦରାଜା ସେହିକ୍ଷଣି ।
ଗୋପାଳ ଗୋପୀଙ୍କ ଆଗେ ସମସ୍ତ କହିଲେ
ଶୁଣିଣ ସେମାନେ ହୃଦ ବ୍ୟଥା ଦୂରକଲେ ।
ଯଶୋଦା ରାଧିକା ଦୁହେଁ ଦିବ୍ୟଜ୍ଞାନ ପାଇ
ରହିଲେ ବିରହ ଦୁଃଖ ଛାଡ଼ି ତୋଷ ବହି ।
କେତେଦିନ ଅନ୍ତେ ପୁଣି ଯଶୋଦାଙ୍କ ବୋଲେ
ମଥୁରା ନଗରେ ନନ୍ଦ ପ୍ରବେଶ ହୋଇଲେ ।
ଭକ୍ତିଭରେ ଶ୍ରୀକୃଷ୍ଣଙ୍କ ଆଗେ ଉଭାହୋଇ
ସ୍ତୁତିକଲେ ବେଦ ଉକ୍ତ ସ୍ତୋତ୍ରମାନ ଧ୍ୟାଇ ।
ପୁଣି ମାୟା ପ୍ରଭାବରେ ହୋଇଣ ମୋହିତ
ରୋଦନ କଲେ ବିରହ ଦୁଃଖରେ ବହୁତ ।

ଜ୍ଞାନ ପାଇ କହନ୍ତି ସେ ଏ ଜଗତ ତାତ
ମୁଣି ଅଜ୍ଞାନରେ ବୋଲୁଥାଇ ମୋର ସୁତ ।
ଜ୍ଞାନ ଅଜ୍ଞାନ ମଧ୍ୟରେ ପଡ଼ି ସେ ସକଳ
ବୁଝି ନ ପାରନ୍ତି କିବା କର୍ତ୍ତବ୍ୟ ତାଙ୍କର ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ସୁମରଣା କରି
ଆଗେ ଉଭାହେଲେ ତହିଁ ଲେଖା ହେଲପରି
ଏଥିଠାରେ ଆଶ୍ୱାସନା ନନ୍ଦରାଜାଙ୍କର
ସମାପତ ହେଲା ଗୀତେ କହଇ କ୍ଷେତ୍ର ସ୍ଥିର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦ ଯଶୋଦା ଆଦିଙ୍କର ଶୋକ ବର୍ଣ୍ଣନେ ନାମ ତ୍ରିସପ୍ତତିତମୋଽଧ୍ୟାୟଃ ।



## ଚତୁଃସପ୍ତତିତମ ଅଧ୍ୟାୟ

## ନନ୍ଦଙ୍କପ୍ରତି ଶ୍ରୀକୃଷ୍ଣଙ୍କର ସାଂସାରିକ ତତ୍ତ୍ୱ ନିବେଦନ ।

ପୁଣି ନାରାୟଣ ମୁନି ନାରଦଙ୍କ ଆଗେ
କହିଲେ ପୁରାଣ ତତ୍ତ୍ୱ କଥା ଅନୁରାଗେ ।
ବୋଇଲେ ହେ ମୁନିବର ଶୁଣ ଦେଇ ମନ
ନନ୍ଦଙ୍କର ଶୋକ ଦେଖି ପ୍ରଭୁ ଜନାର୍ଦ୍ଦନ ।
ସ୍ନେହମୟ ବଚନରେ ତୋଷିବାକୁ ଚିତ୍ତ
ବୋଇଲେ ମୋଠାରୁ ତୁମ୍ଭେ ଶୁଣ ଆହେ ତାତ
ପୃଥିବୀ ସଲିଳ ତେଜ ମରୁତ ଆକାଶ
ଏହିପରି ପଞ୍ଚଭୂତ ଜଗତେ ପ୍ରକାଶ ।
ଏହି ପଞ୍ଚଭୂତରେଟି ପ୍ରାଣୀଙ୍କର ଦେହ
ନିର୍ମିତ ହୋଇଛି ନାହିଁ ଏଥିରେ ସନ୍ଦେହ ।
ମିଥ୍ୟାଭ୍ରମ କୃତ୍ରିମ ଯେ ମାୟା ଅହଙ୍କାର
ରାଗ ଦ୍ୱେଷ ହିଂସା ଆଦି ବିବିଧ ପ୍ରକାର ।
ଶରୀର ସଙ୍ଗରେ ଏହି ଭାବ ନିତ୍ୟେ ଥାଏ
ଜୀବକୁ ନାନା କାର୍ଯ୍ୟରେ ପ୍ରେରଣା ସେ ଦିଏ ।
ମାୟାରେ ସଙ୍କେତ ବୋଲି ଶରୀରକୁ ଜାଣ
ସେ ମାୟା ଅଟଇ ଭ୍ରମ ଜ୍ଞାନର କାରଣ ।
କେ ଅଟେ କାହାର ପୁତ୍ର କେ କାହାର ପିତା
କାହାର କେ ପତି ଅବା କେ କାହା ବନିତା
ଜନ୍ମହେଲା ମାତ୍ରେ କର୍ମ କରିବାର ମୂଳ
କର୍ମରେ ହୁଅଇ ଲୋକ ବଳିଷ୍ଠ ଦୁର୍ବଳ ।
ସୁଖଦୁଃଖ ଭୟଶୋକ କର୍ମଯୋଗେ ହୁଏ
ଆଉର ଧର୍ମ ଅଧର୍ମ କର୍ମଟି କରାଏ ।
କେଉଁମାନେ କର୍ମବଳେ ସ୍ୱର୍ଗରେ ବସନ୍ତି
କେ ଅବା ବ୍ରହ୍ମଲୋକରେ ସୁଖକୁ ଭୁଞ୍ଜନ୍ତି ।
ବ୍ରାହ୍ମଣ କୁଳରେ ଜନ୍ମ ହୋଇଥାଏ କେହି
କ୍ଷତ୍ରିୟ ବୈଶ୍ୟ ଯୋନିରେ ଜାତ କେ ହୁଅଇ
କେ ଜନ୍ମ ହୁଅଇ ଶୂଦ୍ର ଯୋନିରେ ସେପରି
କେ ହୁଅଇ ମ୍ଲେଚ୍ଛ କେ ବା ପଶୁ ଦେହଧରି ।
କେଉଁମାନେ କ୍ଷୁଦ୍ରଜନ୍ତୁ ପକ୍ଷୀ ଜନ୍ମପାନ୍ତି
କୀଟହୋଇ କେଉଁମାନେ ଭୂମିରେ ରହନ୍ତି ।
କର୍ମଯୋଗେ ପୁନଃପୁନ କରନ୍ତି ଭ୍ରମଣ
କର୍ମ ଥିବାଯାଏ ମୁକ୍ତି ନ ମିଳଇ ଜାଣ ।
ଯେଉଁଲୋକ ମୋର ପ୍ରିୟ ଭକତ ଅଟଇ
ସେହି କେବଳ କର୍ମକୁ ନିର୍ମୂଳ କରଇ ।
ସତ୍ୟ ତ୍ରେତା ଯୁଗ ପରେ ଦ୍ୱାପର ଯେ ହୁଏ
ସେ ଅନ୍ତରେ କଳିଯୁଗ ଚତୁର୍ଥ ବୋଲାଏ ।
ପଞ୍ଚବିଂଶ ସହସ୍ରେକ ଯୁଗ ଶେଷହେଲେ
ଏକ ମୁନିଙ୍କ ନିଧନ ହୋଇଥାଏ ଭଲେ ।
ମନୁଙ୍କର ସମାନରେ ଇନ୍ଦ୍ରଙ୍କ ଆୟୁଷ
ଚତୁର୍ଦ୍ଦଶ ଇନ୍ଦ୍ରଙ୍କର ଆୟୁ ହେଲେ ଶେଷ ।
ପ୍ରଜାପତିଙ୍କର ଏକ ଦିବସ ହୁଅଇ
ଏହିପରି କ୍ରମେ ଦିନ ମାସ ବର୍ଷ ଯାଇ ।
ଶତବରଷ ହୋଇଲେ ମୋହର ଗୋଟିଏ
ନିମେଷପାତ ହୁଅଇ ଆହେ ବ୍ରଜରାୟେ ।
ବ୍ରହ୍ମାଠାରୁ ତୃଣଯାଏ ସକଳ ପଦାର୍ଥ
ମିଥ୍ୟା ଅଟଇ କେହିଟି ନୁହଇ ଯଥାର୍ଥ ।
କେବଳ ପରମ ଆତ୍ମା ସତ୍ୟ ଅଟେ ମୁହିଁ
ଭକ୍ତ ଅନୁଗ୍ରହ ମୋର ପ୍ରଧାନ ଅଟଇ ।
ଯେ ମୋର ମନ୍ତ୍ରକୁ ନିତ୍ୟ ଉପାସନା କରେ
ମୁକତ ହୁଅଇ ସେହି ଦେହ ତ୍ୟାଗକରେ ।
କର୍ମବନ୍ଧନ ଛିଣ୍ଡାଇ ଗୋଲୋକ ଭୁବନେ
ନିବାସ କରଇ ଅତି ଆନନ୍ଦିତ ମନେ ।

ଅସଂଖ୍ୟ ବ୍ରହ୍ମାଙ୍କ ପାତ ହେଲେ ମଧ୍ୟ ତାର
ପତନ ନୁହଇ କେବେ ବୋଲି ସେନକର ।
ଜନ୍ମ ମୃତ୍ୟୁ ଜରାହୀନ ନିତ୍ୟ ଦେହ ଧରି
ସେବା କରୁଥାଏ ମୋର ପାଶେ ରହିକରି ।
ମୋର ଭକ୍ତମାନଙ୍କର ଅଶୁଭକୁ କେହି
କେତେବେଳେ ହେଲେ କିଛି କରି ନ ପାରଲ
ଭକ୍ତଙ୍କୁ ରଖିବାପାଇଁ ମୋର ସୁଦର୍ଶନ
ଜଗି ରହିଥାଏ ସଦା ହୋଇ ସାବଧାନ ।
ମୋହଠାରୁ ହେଲେ ଭକ୍ତ ଅଟେ ବଳବନ୍ତ
ସକଳ କାର୍ଯ୍ୟକୁ ସମ୍ପାଦଇ ସେ ନିଶ୍ଚିତ ।
ମୁହିଁ ଅଟଇ କେବଳ ସ୍ୱାମୀ ତାହାର
ସ୍ୱାମୀ ହୋଇ କେହି ଆନ ନାହାନ୍ତି ମୋହର
ମୁନି ବୁଦ୍ଧି ଗୁଢ଼ ଏବ ବ୍ରହ୍ମରୂପେ ମୋତେ
ଧ୍ୟାନ କର ଆହେ ନନ୍ଦରାଜ ଏକଚିତ୍ତେ ।
କର୍ମଜାଲ ଛେଦକରି ଗୋଲୋକକୁ ଯିବ
ମହା ଆନନ୍ଦରେ ସେହି ସ୍ଥାନରେ ରହିବ ।
ଯଶୋଦା ଆଦି ସମସ୍ତ ଗୋପିକାମାନଙ୍କୁ
ଦିଅ ଯାଇ ଭଲରୂପେ ଏ ତତ୍ତ୍ୱଜ୍ଞାନକୁ ।
ଏମନ୍ତ କହି ଶ୍ରୀକୃଷ୍ଣ ବିରତ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କପ୍ରତି ଶ୍ରୀକୃଷ୍ଣଙ୍କର ଆଧ୍ୟାତ୍ମିକ ତତ୍ତ୍ୱ ନିବେଦନ କଥନେ ନାମ ଚତୁଃସପ୍ତତିତମୋଽଧ୍ୟାୟଃ ।



## ପଞ୍ଚସପ୍ତତିତମ ଅଧ୍ୟାୟ

### ନନ୍ଦରାଜାଙ୍କ ଅଗ୍ରତରେ ଶ୍ରୀକୃଷ୍ଣଙ୍କର ସଂସାର ନିତ୍ୟକର୍ତ୍ତବ୍ୟ ବର୍ଣ୍ଣନ

ଶ୍ରୀକୃଷ୍ଣଙ୍କ ବାକ୍ୟ ଶୁଣି ନନ୍ଦ ତୋଷହୋଇ
ବୋଇଲେ ଆହେ ଶ୍ରୀକୃଷ୍ଣ ମୂଢ଼ ଅଟେ ମୁହିଁ ।
ସାଂସାରିକ ଜ୍ଞାନ ଦିଅ ଭଲରୂପେ ମୋତେ
ଯାହାଦେଖି ରହିବି ମୁଁ ତୁମ୍ଭ ପାଶେ ନିତେ ।
ଏହିରୂପେ ଶୁଣି କୃଷ୍ଣ ବୋଇଲେ ଏମନ୍ତ
ସନ୍ତୁଷ୍ଟ ହୋଇବ ଶୁଣ ଏବେ ତୁମ୍ଭ ଚିତ୍ତ ।
ବେଦ ପୁରାଣରେ ଯାହା ଅଟଇ ଦୁର୍ଲ୍ଲଭ
ପ୍ରକାଶ୍ୟ ଭାବରେ ମୁହିଁ କହିବ ସେ ସବ ।
କୁଳଟା କାମିନୀ ପ୍ରତି ମନରେ ବିଶ୍ୱାସ
ସ୍ଥାପନା କରି ନ ଯିବ କେଭେ ତାର ପାଶ
ହରି ଭକ୍ତିରସ ରସେ ବିରୁଦ୍ଧ ଅଟଇ
ତା ଯୋଗରେ ମାୟାମୋହ ପାପ ଜାତହୋଇ
ଆବର ନିଜ କାମିନୀଠାରେ ଅତିଶୟ
ଆସକ୍ତ ହେବାର କେବେ ନୁହେଁ ଶୁଭମୟ ।
ପ୍ରତିଦିନ ପ୍ରଭାତରୁ ଶଯ୍ୟାତ୍ୟାଗ କରି
ଅଭୀଷ୍ଟ ଦେବତାଙ୍କର ଚରଣ ସୁମରି ।
ଆବର ଗୁରୁଙ୍କୁ ସୁମରଣା କରିସାରି
ସ୍ନାନ କରିବ ନିର୍ମଳ ସୁଶୀତଳ ବାରି ।
ଯେବେ ସେ ମୋଠାରେ ଭକ୍ତିଭାବ ରଖିଥିବ
ତେବେ ସଂକଳ୍ପ ନ କରି ସ୍ନାନ ସମାପିବ ।
ସେ ଅନ୍ତେ ସନ୍ଧ୍ୟା ତର୍ପଣ ବଢ଼ାଇ ସତ୍ୱରେ
ପାଦ ପ୍ରକ୍ଷାଳନ କରି ପ୍ରବେଶିବ ଘରେ ।
ନିର୍ମିତ ବସନ ପିନ୍ଧି ମୋତେ ଭଜି ଭାବେ
ପୂଜା କରିବ ଆପଣା ଗୃହେ ଦେବଠାବେ ।
ଶାଳଗ୍ରାମ ଶିଳାରେ ବା ସୁବର୍ଣ୍ଣ ଯନ୍ତ୍ରରେ
ଅଥବା ଜଳରେ ବିପ୍ର ଗୁରୁଜନଠାରେ ।
ଷୋଡ଼ଶ ଉପଚାରକୁ ଦେଇ ପୁନଃପୁନ
ପଠନ କରିବ ମନ୍ତ୍ର ବୀଜାକ୍ଷର ଧ୍ୟାନ ।
ଶ୍ରୀଦାମ ସୁଦାମ ବସୁଦାମ ବୀରଭାନ
ସୂରଭାନ ଏହି ପଞ୍ଚ ଗୋପାଳଙ୍କୁ ପୁଣ ।
ସୁନନ୍ଦ ନନ୍ଦ କୁମୁଦ ପାର୍ଷଦଗଣଙ୍କୁ
ପୂଜା କରିବ ଯତନେ ପ୍ରକାଶି ଭକ୍ତିକୁ ।
ତୁଳସୀ ରାଧିକା ଗଙ୍ଗା ଦୁର୍ଗା ବସୁମତୀ
କାର୍ତ୍ତିକେୟ ବିନାୟକ ଲକ୍ଷ୍ମୀ ସରସ୍ୱତୀ ।
ନବଗ୍ରହ ସହିତରେ ଅଷ୍ଟ ଦିଗପାଳ
ପୂଜିବ ଗଣେଶ ଆଦି ଦେବତା ସକଳ ।

ବିଘ୍ନନାଶ ହେବା ପାଇଁ ପୂଜିବ ଗଣେଶ
ସୂର୍ଯ୍ୟଙ୍କୁ ପୂଜିବ ରୋଗ ହେବାପାଇଁ ନାଶ ।
ଅଗ୍ନିଙ୍କର ପୂଜାକଲେ ଦେହ ଶୁଦ୍ଧ ହେବ
ମୋକ୍ଷ ପ୍ରକାଶରେ ପୂଜା ବିଷ୍ଣୁଙ୍କୁ କରିବ ।
ଜ୍ଞାନଅର୍ଥେ ଶଙ୍କରଙ୍କ ପୂଜାବିଧି ସାର
ଦୁର୍ଗାଙ୍କୁ ପୂଜିବ ଭକ୍ତି ମୁକତି ବିସ୍ତାର ।
ପ୍ରଥମେବ ଷନେଗାଟି ପୁଷ୍ପାଞ୍ଜଳି ଦେବ
କରଯୋଡ଼ିଣ କବଚ ସ୍ତୋତ୍ରକୁ ପଢ଼ିବ ।
ଗୁରୁଙ୍କୁ ପ୍ରଣାମ କରି ପୂଜାକରି ପୁଣି
ଦେବତାମାନଙ୍କ ସୂକ୍ତ ସ୍ତୋତ୍ର ପାଠ ଶୁଣି ।
ଆତ୍ମଶୁଦ୍ଧି ହେବାପାଇଁ ଆହ୍ନିକ ଯେ କର୍ମ
ଆଚରିବ ଯେଉଁରୂପେ ଶୁଣ ତାର ମର୍ମ ।
ପ୍ରଥମରେ ମଳମୂତ୍ର ତେଜି ଶୁଦ୍ଧ ହେବ
ଲିଙ୍ଗ ଗୁହ୍ୟ ହସ୍ତ ପାଦ କ୍ଷାଳନ କରିବ ।
ଦନ୍ତ ମୁଖ ଆଦି ଯେତେ ଇନ୍ଦ୍ରିୟ ନିକର
ଶୁଦ୍ଧ କରିବ ଲଗାଇ ସୁନିର୍ମଳ ନୀର ।
କାମିନୀର ମୁଖ ସ୍ତନ କଟାକ୍ଷ ଦର୍ଶନ
ବିନାଶର ବୀଜବୋଲି ମାନସରେ ଘେନ ।
ଦିବସରେ ନିଜସ୍ତ୍ରୀ ସ୍ତ୍ରୀ ଆଳାପ ସମ୍ଭୋଗ
ଯତନରେ ଜ୍ଞାନୀ ଜନ କରିଥିବ ତ୍ୟାଗ ।
ସକଳ ରୋଗର ତାହା ଅଟଇ କାରଣ
ବରୁର ଉତ୍ତମରୂପେ ହେବ ସାବଧାନ ।
ସନ୍ଧ୍ୟାବେଳେ ଏକ ତାରା ଗଗନକୁ ଦୃଷ୍ଟି
ଦେଲେ ଶରୀର ମଧ୍ୟରେ ହୁଏ ରୋଗ ସୃଷ୍ଟି ।
ଅସ୍ତକାଳେ ରବି ଚନ୍ଦ୍ର ମଣ୍ଡଳେ ଦର୍ଶନ
କଲେ ନାନାରୋଗ ଆସି କରେ ଆକ୍ରମଣ ।
ଜଳ ମଧ୍ୟେ ଯେବେ ଚନ୍ଦ୍ର ସୂର୍ଯ୍ୟ ପ୍ରତିବିମ୍ବ
ଦେଖିବ ତେବେ ଶୋକରେ ହୋଇବ ଅଦମ୍ଭ ।
ପର ମଇଥୁନ ଯେହୁ ଗୁପତେ ଦେଖଇ
ଅଚିରେ ତାହାକୁ ବନ୍ଧୁ ବିଚ୍ଛେଦ ଘଟଇ ।
ପାପୀ ଜନ ସହିତରେ ଶୟନ ଭୋଜନ
ସ୍ଥାନବାସ ନ କରିବ ଜ୍ଞାନବନ୍ତ ଜନ ।
ତାହା କଲେ ଜଳମଧ୍ୟେ ତୈଳବିନ୍ଦୁ ପରି
ସମସ୍ତ ଶରୀରେ ପାପ ଆସଇ ସଞ୍ଚରି ।
ଖଳ ଲୋକ ଅଟେ ହିଂସ୍ରଜନ୍ତୁର ସମାନ
ତା ସଙ୍ଗରୁ ମହାଦୁଃଖ ଉପୁଜଇ ଜାଣ ।

ପରଲୋକଙ୍କର ହିଂସା ଅପମାନ କଲେ
ସର୍ବନାଶ ହୁଏ ଏହା ଜାଣିଥାଅ ଭଲେ ।
ଦେବଦ୍ୱିଜ ବଇଷ୍ଣବ ସାଧୁଙ୍କର ବୃତ୍ତି
ଛଡ଼ାଇବ ଯେବେ ଆସି ପଡ଼ିବ ବିପତ୍ତି ।
ସ୍ୱଦତ୍ତ ବା ପରଦତ୍ତ ହୋଇଥିଲେ ହେଲେ
ବ୍ରାହ୍ମଣର ବୃତ୍ତି ଆବା ମହତ୍ତ୍ୱ ହରିଲେ ।
ଷାଠିଏ ସହସ୍ର ବର୍ଷ ବିଷ୍ଠାରେ ନରକେ
କୃମି ହୋଇ ପଡ଼ି ରହିଥାଏ ଦୁଃଖ ଶତେଓ ।
ଆବତ ସହସ୍ର ବାର ଗୃଧ୍ରଜନ୍ମ ପାଏ
ଶତେ ଜନ୍ମଯାଏ ଗ୍ରାମ୍ୟ ଶୂକର ସେ ହୁଏ ।
ବ୍ରଣକୀଟ ହୋଇ ପୁଣି କେତେକ ଦିବସ
ରକ୍ତପୂଜ ଖାଇ ମହାକଷ୍ଟେ କରେ ଶେଷ ।
ଏହିରୂପେ ନାନାକ୍ଷୁଦ୍ର କୀଟ ଜନ୍ମ ହୋଇ
ଅନେକ କାଳ ଅନ୍ତରେ ମୁକତି ଲଭଇ ।
ଦାନଦେଇ ବ୍ରାହ୍ମଣକୁ ଦକ୍ଷିଣା ନ ଦେଲେ
କୁମ୍ଭୀପାକ ନରକରେ ପଡ଼େ ଯାଇ ଭଲେ ।
ଗୋଟିଏ ଦିନ ବିଳମ୍ବ କରିବଟି ଯେବେ
ଦାନର ଦ୍ୱିଗୁଣ ଧନ ଦେବ ଜାଣ ତେବେ ।
ମାସେ ବିଳମ୍ବ ହୋଇଲେ ଶତଗୁଣ ଦେବ
ଦୁଇ ମାସରେ ସହସ୍ର ଗୁଣେ ବଢ଼ାଇବ ।
ବରଷେ ପର୍ଯ୍ୟନ୍ତ ଯେବେ ନ ଦେବ ହେଳାରେ
ନିବାସ କରିବ ଦାତା ନରକ ମଧ୍ୟରେ ।
ଯେବେ ଅବା ଦାନ ନେବାଲୋକ ହେଳା କରି
ନ ମାଗି ଦକ୍ଷିଣା ନିଜେ ରହିବ ଓହରି ।
ଅଥବା ତାହାକୁ ଯାଚି ନ ଦେବ ଯାଜକ
ନରକେ ପଡ଼ିବେ ଅନ୍ତଃକାଳେ ଦୁହେଁଯାକ ।
ବ୍ରାହ୍ମଣକୁ ବଧକରେ ଯେଉଁମୂର୍ଖଜନ
ବିନଷ୍ଟ ହୁଅଇ ତାର ବଂଶ ଯଶ ଧନ ।
ଭିକ୍ଷାମାଗି ନାନାସ୍ଥାନେ ବୁଲଇଟି ସେହି
ଦିନେ ହେଲେ ସୁଖ ଶାନ୍ତି ଲଭି ନ ପାରଇ ।
ଦେବତା ବ୍ରାହ୍ମଣ ଗୁରୁ ଭକ୍ତି ଯେ ନ କରେ
ପଡ଼ଇ ସେ ଅନ୍ତଃକାଳେ ତପ୍ତ ନରକରେ ।
ଯେଉଁ ସ୍ତ୍ରୀ ପତିଠାରେ ହୁଅଇ ବିମୁଖ
ମାତଜନ୍ମ ପାଏ ତାକୁ ନ ମିଳଇ ସୁଖ ।
ଦୁଷ୍ଟପଣେ ପତିକୁ ଯେ କରଇ ତର୍ଜନା
ଦେହ ଅନ୍ତେ ଗଧଜନ୍ମ ପାଏ ସେ ଅଙ୍ଗନା ।

ପତିବ୍ରତା ସ୍ତ୍ରୀ ଯେ ନିଜ ପତିସଙ୍ଗେ ଯାଇ
ବଇକୁଣ୍ଠ ଭୁବନରେ ସୁଖରେ ବସଇ ।
ଶିବ ଦୁର୍ଗା ଗଣେଶ୍ୱର ଦ୍ୱିଜ ବଇଷ୍ଣବ
ଏମାନଙ୍କୁ ଅମାନନା କରେ ଯେ ମାନବ ।
ରଉରବ ନରକରେ କରଇ ନିବାସ
କେତେବେଳେ ସୁସ୍ଥ ନ ହୁଅଇ ତା ମାନସ ।
ପିତାମାତା ପୁତ୍ର ଅବା ସତୀ ଭାରଯାକୁ
ପାଳନ ନ କରେ ଯେହୁ ଗୁରୁଜଣ ସ୍ତ୍ରୀଙ୍କୁ
ସପତ ଜନମ ଯାଏ ନରକରେ ବାସ
କରୁଥାଇ ଯେବେ ଶେଷ ହୁଅଇ ଆୟୁଷ ।
ବିପ୍ରଭକ୍ତିହୀନ ନର ଅଛବ ଯୋନିରେ
ଜାତହୋଇ ମହାପାପ ଆଚରଣ କରେ ।
ଯେଉଁ ଦ୍ୱିଜେ ଶାଳଗ୍ରାମ ଶିଳାଧୌତ ଜଳ
ସେବନ କରନ୍ତି ସେହୁ ଲଭନ୍ତି ସୁଫଳ ।
ପିତୃଦେବତାଙ୍କୁ ପୂଜାକରି ପ୍ରଥମରେ
ଯେଉଁ ଲୋକ ମତ୍ସ୍ୟ ମାଂସ ଭୁଞ୍ଜଇ ତା ପରେ
ତାହାର କଦାପି ଦୋଷ ନ ହୁଅଇ ଜାଣ
ପ୍ରସନ୍ନ ହୁଅନ୍ତି ତାହାଠାରେ ଦେବଗଣ ।
ବୃଥା ମାଂସ ଯେବେ ଲୋକ ଭୁଞ୍ଜଇ ଅଜ୍ଞାନେ
ନିଷ୍ପାପ ହୁଅଇ ଚାନ୍ଦ୍ରାୟଣବ୍ରତ ଦାନେ ।
ବ୍ରାହ୍ମଣ ଯେବେ ଇଚ୍ଛାରେ ମତ୍ସ୍ୟ ମାଂସ ଖାଏ
ଅଶୁଚ ହୋଇଣ ପୂର୍ବସୁକୃତ ହରାଏ ।
ବିଷ୍ଣୁଙ୍କ ନୈବେଦ୍ୟ ନିତ ଭୁଞ୍ଜି ଆନନ୍ଦରେ
ଯେଉଁ ଲୋକ ମତ୍ସ୍ୟ ମାଂସ ପରିତ୍ୟାଗ କରେ
ଅଶ୍ୱମେଧ ଯାଗଫଳ ହୁଅଇ ତାହାର
ଆହେ ମହାରାଜ ଏଥି ସନ୍ଦେହ ନ କର ।
ଏକଦଶୀ କୃଷ୍ଣଜନ୍ମ ଉପବାସ କଲେ
ଶତଜନ୍ମ ପାପନାଶ ହୋଇଯାଏ ଭଲେ ।
ଯେବେ ଏହି ଦିବସରେ ଭୁଞ୍ଜିବଟି ଅନ୍ନ
ତ୍ରୈଲୋକ୍ୟଜନିତ ପାପ ହେବ ତତକ୍ଷଣ ।
ବାଳ ବୃଦ୍ଧ ରୁଗଣ ଲୋକପକ୍ଷେ ଏ ନିୟମ
ନ ଖଟଇ ଜାଣ ଆହେ ଗୋପଙ୍କ ଉତ୍ତମ ।
ତେମନ୍ତ ହେଲେ ଭଷର ଦୁଇଗୁଣ ଦ୍ରବ୍ୟ
ବ୍ରାହ୍ମଣଙ୍କୁ ଦେଲେ ପୁଣ୍ୟ ହୁଅଇ ଅଭାବ ।
ଶ୍ରୀରାମ ନବମୀ ଶିବରାତ୍ରିରେ ଯେ ଜନ
ସମର୍ଥ ହେଲେହେଁ ସୁଖେ ଭୁଞ୍ଜେ ବସି ଅନ୍ନ ।
ଅନ୍ତଃକାଳେ ରଉରବ ନରକରେ ସେହି
ପଡ଼ି ମହାକଷ୍ଟ ଭୋଗ କରୁଥାଏ ଯାଇ ।
ଅମାବାସ୍ୟା ଚତୁର୍ଦ୍ଦଶୀ ଅଷ୍ଟମୀ ସଂକ୍ରାନ୍ତି
ଏସବୁରେ ସ୍ତ୍ରୀ ତେଲ ମତ୍ସ୍ୟ ସେବନ ଯେ ଦୁର୍ମତି
ଚଣ୍ଡାଳ ସମାନ ସେହି ଅଟଇ ନିଶ୍ଚୟ
ଆହେ ବଜ୍ରରାଜ ଏଥି ନାହିଁ ଯେ ସଂଶୟ ।
ରବିବାରେ କାଂସ୍ୟପାତ୍ରେ ମତ୍ସ୍ୟ ମାଂସ ଯେବେ
ଭୁଞ୍ଜିବ ନରକ ଗତି ହେବ ଜାଣ ତେବେ ।
ରଜସ୍ୱଳା ବେଶ୍ୟାଠାରୁ ଯେଉଁ ଦ୍ୱିଜ ଅନ୍ନ
ଘେନିବେ କେବଣ କାଳେ କରଇ ଭୋଜନ ।
ମଳଭୋଗୀ ହୋଇ ସେହୁ ନରକରେ ପଡ଼ି
ଯାତନା ସହ୍ୟ କରଇ ମହାକଷ୍ଟେ ସଢ଼ି ।
ବହୁଗୋଟି ପୁରୁଷଙ୍କୁ ଭଜେ ଯେଉଁ ନାରୀ
ମରିଚିତ ହୁଅଇ ସେ ବେଶ୍ୟା ବୋଲିକରି ।
ଦେବତା ପିତୃଯଜ୍ଞରେ ତାର ଅନ୍ନ ନୀର
ଉପଯୁକ୍ତ ନୁହେ ଜାଣ ଆହେ ବ୍ରଜେଶ୍ୱର ।
ଶୂଦ୍ରର ଶ୍ରାଦ୍ଧ ଦିବସେ ଯେଉଁ ବିପ୍ର ଜାଣି
ଗ୍ରହଣ କରଇ ତାର ଘରୁ ଅନ୍ନପାଣି ।
କୁମ୍ଭୀପାକ ନରକରେ ବାସକରି ଅନ୍ତେ
କ୍ଲେଶ ଭୋଗ କରଇ ସେ ଯୁଗେ ପରିଯନ୍ତେ ।
ସନ୍ଧ୍ୟାହୀନ ହେଲେ ଦ୍ୱିଜ ସକଳ କର୍ମରେ
ଅନର୍ହ ହୁଅଇ ସବୁବେଳେ ସବୁଠାରେ ।
ବିଷ୍ଣୁପୂଜା ନ କଲେ ସେ ଚଣ୍ଡାଳ ସମାନ
ହୁଅଇ ନିଶ୍ଚୟ ଏହା ଜାଣ ହେ ରାଜନ ।
ନଦୀଗର୍ଭ ଗର୍ତ୍ତମଧ୍ୟ ବୃକ୍ଷମୂଳ ଜଳ
ଦେବାଳୟ ଶସ୍ୟକ୍ଷେତ୍ରେ ନ ତେଜିବ ମଳ ।
କର୍ଷିତ ଭୂତଳ କ୍ଷୁଦ୍ର ବୃକ୍ଷମୂଳ ସ୍ଥିତ
ନଦୀଧୌତ ଜଳେ ହୋଇଥାଏ ଯେ ଖୋଦିତ
ଏମନ୍ତ ମୃତ୍ତିକା ଶୌଚ ଅର୍ଥେ ନ ଆଣିବ
ଆଣିଲେ ଦେବତା ଦ୍ରୋହ ଦୋଷକୁ ପାଇବ ।
ଯେଉଁ ବିପ୍ର ଶୂଦ୍ରଙ୍କର ଶବଦାହ କରେ
ଅନ୍ତକାଳେ ପଡ଼ଇ ସେ ନରକ ମଧ୍ୟରେ ।
ଧୂପଦୀପ ଯଜ୍ଞ ପବିତ୍ର ଶିବଲିଙ୍ଗ ମଣି
ଶାଳଗ୍ରାମ ଶିଳା ଦେବ ପ୍ରତିମାକୁ ପୁଣି ।
ଆବର ହୀରକ ଗାଙ୍ଗ୍ରୀମୁକ୍ତ ମୁକ୍ତାଫଳ
ଭୂମିରେ ପକାଏ ଯେଉଁ ମୂର୍ଖ ନୀଚ ଖଳ ।

ଦରିଦ୍ର କୃପଣ ରୋଗୀ ବଂଶହୀନ ମଧ୍ୟ
ପୁଣି ପ୍ରଜାବନ୍ତ ହୀନ କୁତ୍ସିତ ହୁଅଇ ।
ଦିବସରେ ଅବା ସନ୍ଧ୍ୟା ସମୟେ ଯେ ନର
ନିଦ୍ରା କିବା ସ୍ତ୍ରୀସମ୍ଭୋଗ କରେ ନିରନ୍ତର ।
କାମେ ବଶ ହୋଇ ଗୁରୁ ଗୌରବ ନ ମାନି
ରମଣୀ ସମ୍ଭୋଗ କରେ ଯେ ମୂଢ଼ ଅଜ୍ଞାନୀ ।
ଅନ୍ତିମେ ତପତ ଲୌହରମଣୀ ତା ଦେହେଁ
ଯମଦୂତମାନେ ବାନ୍ଧି ଦିଅନ୍ତି ନିଶ୍ଚୟେ ।
ସପତ ଜନମଯାଏ ଦୁର୍ଗଣ ସେ ହୁଅଇ
ଆବର ଦରିଦ୍ର ହୀନ ସତଜନ୍ମ ପାଇ ।
ସୂର୍ଯ୍ୟ ଉଦୟ ଅନ୍ତେ ଯେ ଘଷଇନ୍ତି ଦନ୍ତ
ଅସ୍ପୃଶ୍ୟ ହୁଅଇ ସେହି ମାସେ ପର୍ଯ୍ୟନ୍ତ ।
ମୃତ୍ତିକା ଗୋମୟ ଅବା ବାଲୁକାରେ ଶିବ
ଲିଙ୍ଗ ନିର୍ମିତ କରି ଯେ ଭକ୍ତିରେ ପୂଜିବ ।
ଶତକଳ୍ପ ଶିବଲୋକେ ହେବ ତାର ବାସ
ନ ଯିବ ସେ ଅନ୍ତଃକାଳେ ଅନ୍ତକର ପାଶ ।
ସହସ୍ରେ ପୂଜିଲେ ମନୋରଥ ହେବ ପୂର୍ଣ୍ଣ
ଲକ୍ଷେ ଯେ ପୂଜିବ ସେହି ଶିବଙ୍କ ସମାନ ।
ଶିବପୂଜା ହୀନ ଅଟେ ଯେ ମୂଢ଼ ବ୍ରାହ୍ମଣ
ନରକ ଭୋଗ କରଇ ଅବଶ୍ୟ ସେ ଜାଣ ।
ମୋହର ପୂଜିତ ଶିବ ଲିଙ୍ଗଙ୍କୁ ଯେ ଲୋକ
ନିନ୍ଦାକରେ ଅନ୍ତଃକାଳେ ଭୋଗେ ସେ ନରକ
ସମସ୍ତଙ୍କଠାରୁ ବଳି ବିପ୍ର ମୋର ପ୍ରିୟ
ବିପ୍ରଙ୍କୁ କଷ୍ଟ ହୋଇଲେ କମ୍ପେ ମୋ ହୃଦୟ ।
ସେହିପରି ପ୍ରିୟ ମୋର ଅଟଇ ଗୋଧନ
ତାର ପ୍ରତିଲୋମେ ଦେବତା ଯେ ବିଦ୍ୟମାନ
ଗୋ ବ୍ରାହ୍ମଣ ହିତ ଲାଗି ଘେନେ ଅବତାର
ଏହିକଥା ମନେ ରଖିଥିବ ହେ ପିଅର ।
ଗୋ ବ୍ରାହ୍ମଣଠାରୁ ପ୍ରିୟ ଅଧିକ କମଳା
ବକ୍ଷସ୍ଥଳେ ଅବସ୍ଥାନ କରନ୍ତି ସେ ବାଳା ।

ଲକ୍ଷ୍ମୀଙ୍କଠାରୁ ଅଧିକ ଅଟନ୍ତି ରାଧିକା
ରାଧିକାଠାରୁ ଉତ୍କୃଷ୍ଟ ଶଙ୍କରହିଁ ଏକା ।
ଶିବଙ୍କଠାରୁ ବଳି ପ୍ରିୟନୋହଇ ମୋର
କେଉଁଠାରେ କେହି ନୋହିଲେ ନାହିଁ ମନେକର
ଯେଉଁଲୋକ ଶିବଠାରେ କରଇ ଭକତି
ପ୍ରସନ୍ନ ହୁଅଇ ମୁହିଁ ସର୍ବଦା ତା ପ୍ରତି ।
ମୋହର ଆତ୍ମା ସ୍ୱରୂପ ଅଟନ୍ତି ଶଙ୍କର
ରହିଥାଏ ତାଙ୍କ ପାଶେ ମୁହିଁ ନିରନ୍ତର ।
ସୃଷ୍ଟି ସ୍ଥିତି ଲୟକର୍ତ୍ତ୍ରୀ ଶକ୍ତି ନାରାୟଣୀ
ଜଗତ ରଚଇ ମୁହିଁ ଯାହାଙ୍କର ଘେନି ।
ସେ ଦେବୀଙ୍କୁ ଶଙ୍କରଙ୍କୁ କରିଛି ପ୍ରଦାନ
ପ୍ରକୃତି ନାମରେ ସେହି ଖ୍ୟାତ ବୋଲି ଜାଣ
ସେହିଁ ରାଧିକା ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ
କରିଛନ୍ତି ଭିନ୍ନ ଭିନ୍ନ ରୂପେ ଅବସ୍ଥିତି ।
ଜଗତରେ ଯେତେ ମୁଖ୍ୟ ଦେବୀ ରହିଛନ୍ତି
ସମସ୍ତେ ତାହାଙ୍କ ଅଂଶ କଳାରେ ଉତ୍ପତ୍ତି ।
ଅଗ୍ନିରେ ଦାହିକା ଶକ୍ତି ଅଟନ୍ତି ସେ ଜାଣ
ପ୍ରକାଶିକା ଶକ୍ତି ସୂର୍ଯ୍ୟ ଚନ୍ଦ୍ରଠାରେ ପୁଣ ।
ଦେବତାଙ୍କଠାରେ ଦେବ ଶକତି ଅଟନ୍ତି
ରାଜାଙ୍କ ଗୃହରେ ରାଜଲକ୍ଷ୍ମୀ ସେ ବୋଲାନ୍ତି ।
ସତ୍ତ୍ୱ ରଜ ତମ ଗୁଣରୂପେ ସବୁବେଳେ
ପ୍ରକାଶିତ ହୋଇ ଦେଖାଯାନ୍ତି ମହୀତଳେ ।
ଯେଉଁ ଶକ୍ତି ବଳେ ସୃଷ୍ଟି ସ୍ଥିତି ଲୟ ଜାଣ
ଆଦ୍ୟାଶକ୍ତି ବୋଲି ଅଟଇ ଯେ ତାର ନାମ ।
ସେହି ଶକ୍ତିମତୀ ଶକ୍ତି ଶିବଙ୍କୁ ମୁଁ ଦେଇ
ରହିଅଛି ତାଙ୍କଠାରେ ପ୍ରୀତିଭାବ ବହି ।
ବିସ୍ତରିଲ ବୋଲି ତୁମ୍ଭେ କହିଲି ବତାଇ
ଆଉ କି ଶୁଣିବା ଇଚ୍ଛାଥିଲେ କହିବଇଁ ।
ଏମନ୍ତ କହି ଶ୍ରୀକୃଷ୍ଣ ମଉନେ ରହିଲେ
ତାଙ୍କ ଶ୍ରୀଚରଣ ଧ୍ୟାୟି କ୍ଷେତ୍ରବାସୀ ବୋଲେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦରାଜାଙ୍କ ଅଗ୍ରତରେ ଶ୍ରୀକୃଷ୍ଣଙ୍କର ସଂସାର ନିତ୍ୟକର୍ତ୍ତବ୍ୟ ବର୍ଣ୍ଣନେ ନାମ ପଞ୍ଚସପ୍ତତିତମୋଽଧ୍ୟାୟଃ ।**



# ଷଷ୍ଠସପ୍ତତିତମ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର ନନ୍ଦଙ୍କ ଆଗରେ ପାପପୁଣ୍ୟର ଚରିତ୍ର ବର୍ଣ୍ଣନ

ଶ୍ରୀକୃଷ୍ଣଙ୍କ ମୁଖ ଶୁଣି ପଚାରନ୍ତି ନନ୍ଦ
କହ ମୋ ଆଗରେ ପାପପୁଣ୍ୟ ଚିହ୍ନଭେଦ ।
କାହାକୁ ଦେଖିଲେ ପାପପୁଣ୍ୟ ଅବା ହୋଇ
ସେ ସମସ୍ତ କହ ମୋତେ ସଂଶୟ ଫିଟାଇ ।
ଶ୍ରୀକୃଷ୍ଣ ତା ଶୁଣିକରି ବୋଇଲେ ହେ ତାତ
କହିବି ସେ କଥା ଏବେ ଶୁଣ ହୋଇ ଶାନ୍ତ ।
ବ୍ରାହ୍ମଣ ବୈଷ୍ଣବ ପୁଣ୍ୟତୀର୍ଥ ଦରଶନେ
ତୀର୍ଥସ୍ନାନ ଫଳଲାଭ କରନ୍ତି ଜନେ ।
ସୂର୍ଯ୍ୟବିମ୍ବ ଗୁରୁଜନ ପତିବ୍ରତା ସ୍ତ୍ରୀଷ
ସନ୍ନ୍ୟାସୀ ତପସ୍ୱୀ ଯତି ଋଷି ବ୍ରହ୍ମଗୃଷ ।
ଶୁଭ୍ର ସ୍ୱଚ୍ଛ ମୀନରାଜି ସ୍ରୋତଜଳ ଗୃଷ ।
ଗୋଗୋଷ୍ଠ ଗଜେନ୍ଦ୍ର ସିଂହ ଶ୍ୱେତାଶ୍ୱ ଚମରୀ
ମୟୂର ଖଞ୍ଜନ ପିକ ରାଜହଂସ ଗୃଧ୍ର
ଶଙ୍ଖଚିଲ ଭରଦ୍ୱାଜ ପତନି ବଂଶଧ ।
ବସ୍ତ୍ରାଯୁକ୍ତ ଧେନୁ ପତି ପୁତ୍ରବନ୍ତୀ ସ୍ତ୍ରୀ ସା
ସୁବର୍ଣ୍ଣ ପ୍ରଷ୍ଣାପ ମଣି ପୁଣ୍ୟତୀର୍ଥ ବାରି ।
ତୁଳସୀ ଶୁକଳ ପୁଷ୍ପଫଳ ଶୁକ୍ଳଧାନ୍ୟ
ଦଧିଦୁଗ୍ଧ ଘୃତ ମଧୁପୂର୍ଣ୍ଣ କୁମ୍ଭମାନ ।
ରଜତ ଦର୍ପଣ ଲଜାଖଣ୍ଡ ପୁଷ୍ପମାଳ
ଗୋରଚନା ପୁଷ୍ପବାଟୀପୂର୍ଣ୍ଣ ପୁଷ୍ପଫଳା ।
କର୍ପୂର ସ୍ଫଟିକ ଆଦି ଶୁଭ୍ର ଦ୍ରବ୍ୟମାନ
ଦରଶନ କଲେ ଲୋକ ହୁଏ ପୁଣ୍ୟବାନ ।
ଆବର ପାତକ ଅକ୍ଷବଟ ତରୁବର
ଦେବଖାତ ଦେବମୂର୍ତ୍ତି ଦେବତା ମନ୍ଦିର ।
ସୁଗନ୍ଧ ପବନ ଦେବାଶ୍ରିତ ଶୁଭ ଘଟ
ଶଙ୍ଖ ଦୁନ୍ଦୁଭି ରୁଦ୍ରାକ୍ଷ ପୁଣ୍ୟ ନଦୀତଟ ।
ଏହାଙ୍କୁ ଦେଖିଲେ ଲୋକ ପୁଣ୍ୟ ଲାଭ କରେ
ଦେହ ଅନ୍ତେ ନ ପଡ଼ଇ ଶମନ ପଞ୍ଜରେ ।
ପୁରାଣ ପୁସ୍ତକ ଶୁଦ୍ଧ ଦୂର୍ବାକ୍ଷତ ଯେବେ ।
ଦର୍ଶନ କରିବ ପାପ ନାଶଯିବ ତେବେ ।
ତପସ୍ୱୀ ଗୃହୀତ ମନ୍ତ୍ର କୃଷ୍ଣସାର ମୃଗ
ଯଜ୍ଞ ମହୋତ୍ସବ ନୃତ୍ୟ ହୋମ ଦାନ ଯାଗ ।

ଏହା ଦରଶନ କଲେ ପୁଣ୍ୟ ଲଭନ୍ତୁଏ
ନିଶ୍ଚୟ ବୋଲିଣ ଜାଣ ଆହେ ଗୋପରାୟେ ।
ଗୋମୂତ୍ର ଗୋମୟ ଗୋଷ୍ଠରେଣୁ ପରଶରେ
ଅଶେଷ ପୁଣ୍ୟ ଅର୍ଜନ କରିଥାନ୍ତି ନରେ ।
ସର୍ବଶସ୍ୟ ପୂର୍ଣ୍ଣକ୍ଷେତ୍ର ରୂପବନ୍ତୀ ବେଶ୍ୟା
ଦୂର୍ବାକ୍ଷତ ଗନ୍ଧପୁଷ୍ପ ଅନ୍ନ ଘୃତ ମିଶା ।
ଦେଖିଲେ ଅବଶ୍ୟ ପୁଣ୍ୟ ହୁଏ ଆହେ ନନ୍ଦ
କାର୍ତ୍ତିକ ମାସ ଏଥିରେ ନାହିଁ ଜାଣ ଛନ୍ଦ ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ରାଧିକା ମୂରତି
ପୂଜାକଲେ ହୁଏ ସର୍ବ ସମ୍ପଦ ପ୍ରାପତି ।
ହିଙ୍ଗୁଳା ଅଷ୍ଟମୀଦିନ ଦୁର୍ଗା ଦେବୀଙ୍କର
ଆରାଧନା କଲେ ପାପୁଁ ମୁକ୍ତ ହୁଏ ନର ।
କାଶୀକ୍ଷେତ୍ର ଶିବରାତ୍ରୀ ନିଶାରେ ଯେ ଲୋକ
ବିଶ୍ୱନାଥଙ୍କୁ ଅର୍ଚ୍ଚନା କଲେ ଗୁଡ଼ ଦକ ।
ଆବର ବ୍ରତ ପାଳନ ଉପବାସ ଆଦି
କରଇ ନାନାପ୍ରକାରେ ପଦାର୍ଥ ସମ୍ପାଦି ।
ଜନମ ମରଣ ତାର ଖଣ୍ଡନ ହୁଅଇ
ଜୀବିତ ଦଶାରେ ବହୁ ସମ୍ପଦ ମିଳଇ ।
ବିନ୍ଧ୍ୟ ମାଧବଙ୍କୁ ଜନ୍ମ ଅଷ୍ଟମୀ ଦିନରେ
ପୂଜାକଲେ ମୁକ୍ତିଲାଭ ହୁଏ ନିଶ୍ଚୟରେ ।
ପୌଷମାସ ଅମାବାସ୍ୟା ନିଶାରେ ଲକ୍ଷ୍ମୀଙ୍କୁ
ପୂଜା ଯେ କରଇ ପାପ ନ ବାଧଇ ତାକୁ ।
ସପତ ଜନମ ପାଏ ପୁତ୍ର ପୌତ୍ର ଧନ
ପ୍ରାପତ ହୁଅଇ ଜାଣ ହେ ନନ୍ଦ ରାଜନ ।
ଚୈତ୍ର ଚତୁର୍ଦ୍ଦଶୀ ଦିନ ଭଦ୍ରକାଳୀଙ୍କର
ଉପାସନା କଲେ ମୁକ୍ତି ଲଭକରେ ନର ।
ଅଯୋଧ୍ୟାରେ ଶ୍ରୀରାମଙ୍କୁ ରାମ ନବମୀରେ
ପୂଜିଲେ ବସଇ ଲୋକ ଗୋଲୋକ ନଗରେ
ବିଷ୍ଣୁପଦେ ପିଣ୍ଡଦାନ ପ୍ରୟାଗେ ମୁଣ୍ଡନ
କଲେ ନିଶ୍ଚେ ହୁଏ ଜନ୍ମ ମରଣ ଖଣ୍ଡନ ।
ବଦରି ଆଶ୍ରମ ଅବା ନଇମିଷାରଣ୍ୟ
ଅଥବା ପୁଷ୍କର ତୀର୍ଥେ କରି ଦାନପୁଣ୍ୟ ।

ନମାତେ ପୂଜାକଲେ ଲୋକ ଜନ୍ମ ମୃତ୍ୟୁ ଛାଡ଼ି
ଅନ୍ତଃକାଳେ ବସେ ମୋର ଆସନକୁ ମାଡ଼ି ।
ଦୋଳଯାତ୍ରାରେଯେବୃନ୍ଦାବନେଦେଖେମୋତେ
ସଂସାର ଖଣ୍ଡନ ତାର ହୁଅଇ କହୁଛେ ।
ଭାଦ୍ରମାସେ ମଣ୍ଡପରେ ମୋହର ସ୍ୱରୂପ
ଦରଶନ କଲେ ସର୍ବଦୋଷ ହୁଏ ଲୋପ ।
କଳିଯୁଗେ ଯେଉଁ ଲୋକ ଜଗନ୍ନାଥଙ୍କର
ଦରଶନ କରେ ରଥ ଆଗେ ହୋଇ ସ୍ଥିର ।
ଜନମ ମରଣ ଦୁଃଖ ନ ଲାଗେ ତାହାକୁ
ନ ଛାଡ଼ଇ କେବେ ସେହି ମୋହର ପାଶକୁ ।
ଉତ୍ତରାୟଣ ନାମକ ଯେବଣ ସଂକ୍ରାନ୍ତି
ତହିଁରେ ଯେ ମୋତେ ପୂଜାକରେ ଦେଇ ମତି
ଅଥବା କାର୍ତ୍ତିକ ପୂର୍ଣ୍ଣମାସୀ ଦିବସରେ
ମୋର ପ୍ରତିମାକୁ ଯେହୁ ଆରାଧନା କରେ ।
ତାହାର ଜନମ ମୃତ୍ୟୁ ଜରାବ୍ୟାଧି ଦୁଃଖ
ନ ରହଇ କେବେ ଜାଣ ଆହେ ଗୋପମୁଖ ।
ଚନ୍ଦ୍ରଭାଗା ସମୀପରେ ରାଧାଙ୍କର କୂଳେ
ମୋତେ ପୂଜାକରେ ଯେଉଁ ଲୋକ ଭକ୍ତିଭରେ
ତାହାର ଅଶେଷ ପୁଣ୍ୟ ହୁଅଇ ନିଶ୍ଚୟ
ଆବର ସମସ୍ତ ପାପରାଶି ଯାଏ କ୍ଷୟ ।
ଆଷାଢ଼ ପୂର୍ଣ୍ଣିମା ଦିନ ସେତୁବନ୍ଧ ପରେ
ଶ୍ରୀରାମେଶ୍ୱରଙ୍କ ପୂଜାକଲେ ଭକ୍ତିଭରେ ।
ଦେହ ଅନ୍ତରେ ଅବଶ୍ୟ ମିଳଇ ମୁକତି
ନୁହଇ ପୁଣି ମନୁଷ୍ୟ ଲୋକରେ ଉତ୍ପତ୍ତି ।
ଉତ୍ତରାୟଣ ହୁଅନ୍ତେ କୋଣାର୍କ ତୀର୍ଥରେ
ସୂର୍ଯ୍ୟ ଦେବଙ୍କର ପୂଜା ଯେଉଁ ଲୋକ କରେ
ତାହାର ଖଣ୍ଡନ ହୋଇ ଅଶେଷ ଦୁରିତ
ବଇକୁଣ୍ଠ ପୁରେ ସ୍ଥାନ ମିଳଇ ନିଶ୍ଚିତ ।
ପଶ୍ଚିମ ସମୁଦ୍ର ତଟେ ଉପବାସ କରି
ପାରଣା ଯେ କରେ ଦଧି ଦୁଗ୍ଧ ଘୃତଭରି ।
ଆବର ପାର୍ବତୀଙ୍କର ପ୍ରତିମା ପାଶରେ
ଭକ୍ତିଯୁକ୍ତ ହୋଇ ଯେହୁ ବ୍ରତକୁ ଆଚରେ ।
ଜୀବନ ମୁକତି ତାର ଶରୀର ହୁଅଇ
କୈଳାସ ଭୁବନେ ବାସ କରଇ ସେ ଯାଇ ।
ବିପ୍ର ସଂସ୍ଥାପନା କଲେ ହୁଏ ଯେତେ ପୁଣ୍ୟ
ତା ସଙ୍ଗରେ ଉପବାସ ବ୍ରତ ନୁହେ ଗଣ୍ୟ ।

ଦେବତା ବୈଷ୍ଣବ ମୁନି ଋଷିଗଣ କେହି
ବିପ୍ରସଂସ୍ଥାପନା ଫଳ ନ ପାରନ୍ତି ଦେଇ ।
ଜୀବିତ ଦଶାରେ ସର୍ବ ସମ୍ପଦକୁ ଭୋଗ
କରଇ ସେ ଲୋକ ପୁଣି ଦେହ ଅନ୍ତେ ସ୍ୱର୍ଗ ।
ଅଷ୍ଟ ବରଷର କନ୍ୟା ବ୍ରାହ୍ମଣଙ୍କୁ ଦାନ
କରଇ ଯେ ଭରି ନାନା ବାସ ଆଭରଣ ।
ଦୁର୍ଗାଦାନ ଫଳ ତାର ହୁଏ ଆହେ ତାତ
ଆବର ଲଭଇ ସେହି ମୋହର ଦାସତ୍ୱ ।
ପଣ୍ଡିତ ଅନାଥ ପୁଣି ଦରିଦ୍ର ବିପ୍ରକୁ
ଅକାତରେ ଯେଉଁ ଲୋକ ଦିଅଇ ଧନକୁ ।
ଆବର ଛତ୍ର ଗୃହର ଉପାନହ ଆଦି
ଦେବ ଯେବେ ଆନନ୍ଦରେ ଯତନେ ସମ୍ପାଦି ।
ଭୂମିଦାନ ଫଳପ୍ରାପ୍ତି ହେବ ନିଶ୍ଚୟରେ
କଞ୍ଚିତ ମାତ୍ର ସଂଶୟ ନାହିଁଟି ଏଥିରେ ।
ଗଜ ଦାନରୁ ଅଧିକ କୃଷ୍ଣ ଅଶ୍ୱଦାନ
ଶ୍ୱେତ ଅଶ୍ୱ ଦେଲେ ଫଳ ତହୁଁ ଚାରିଗୁଣ ।
ଗଜ ତୁଲ୍ୟ ଫଳ ହୁଏ କୃଷ୍ଣ ଗାଈ ଦେଲେ
ଅନ୍ୟ ଗାଈଦାନେ ଯୁକ୍ତହୁଏ ଅର୍ଦ୍ଧଫଳେ ।
ପ୍ରସବ ସମୟେ ଗାଈବଛା ସହିତରେ
ଦାନକଲେ ଭୂମିଦାନ ଫଳ ହୋଇପାରେ ।
ବିଦ୍ୟାଦାନ କଲେ ମହାପୁଣ୍ୟ ଲଭିହୁଏ
ଆଉ କେତେ ଦାନ ପୁଣ୍ୟ ତା ସମାନ ନୁହେଁ
ସୁବର୍ଣ୍ଣ ଦାନରେ ଲଭ ହୁଅଇ ସମ୍ପତ୍ତି
ରଜତ ଦେଲେ ହୁଅଇ ରାଜତ୍ୱ ପ୍ରାପତି ।
ଅନ୍ନ ଦାନେ ଯେତେ ପୁଣ୍ୟ ହୁଅଇ ମୁଁ ତାହା
କହି ନ ପାରିବି ଜାଣ ଆହେ ନରନାହା ।
ଉତ୍ତମ ଦ୍ୱିଜକୁ ଡାକି ଦେବ ଯେବେ ଅନ୍ନ
ସକଳ ଦାନ ନୋହିବ ତାହାର ସମାନ ।
ବସ୍ତ୍ର ଦାନ କଲେ ସୂତ୍ର ପ୍ରମାଣ ବରଷ
ଦାନକର୍ତ୍ତା କରେ ଯାଇ ବଇକୁଣ୍ଠେ ବାସ ।
ଶ୍ରୀହରିଙ୍କ ସମୀପରେ ଘୃତ ଦିଏ ଦାନ
ଦେଲେ ମିଳଇ ଅବଶ୍ୟ ଗୋଲୋକରେ ସ୍ଥାନ
ବ୍ରାହ୍ମଣଙ୍କୁ ଯେହି ଘୃତ ଦୀପ ଦାନ କଲେ
ଯମପୁର ଦରଶନ ନ ହୁଅଇ ଭଲେ ।
ଦିବ୍ୟ ସହସ୍ର ବରଷ ଇନ୍ଦ୍ରଙ୍କ ମନ୍ଦିରେ
ବସଇ ସେ ଲୋକ ମହାସୁଖେ ଆନନ୍ଦରେ ।

ତାମ୍ବୁଳ ପ୍ରଦାନକଲେ ଶତେକବର୍ଷ ଯାଏ
ସ୍ୱର୍ଗପୁରେ ରହି ଲୋକ ମହାସୁଖ ପାଏ ।
ଫଳପୁଷ୍ପ ପୁଷ୍ପମାଳା ଦିଏ ଯେଉଁ ନର
ଅନ୍ତଃକାଳେ ଭୁଞ୍ଜଇ ସେ ସ୍ୱର୍ଗସୁଖ ସାର ।
ଶଯ୍ୟାଦାନେ ଶତେକବର୍ଷ ବଇକୁଣ୍ଠ ଭୋଗ
ହୁଅଇ ଯଥାର୍ଥରୂପେ ଆହେ ମହାଭାଗ ।
ଏହିରୂପେ ଦାନଫଳ ଭୋଗ ସମାଗ୍ରର
ନିରୂପିତ ହୋଇଅଛି ବିବିଧ ପ୍ରକାର ।
ପୁଚ୍ଛିବାରୁ ତୁମ୍ଭ ଆଗେ କହିଲି ସମସ୍ତ
ବ୍ରଜପୁରେ ଯାଅ ଏବେ ସ୍ଥିରକରି ଚିତ୍ତ ।
ଶୁଭଦିନେ ବ୍ରାହ୍ମଣଙ୍କୁ ଅନ୍ନବସ୍ତ୍ର ଦେଇ
ନିଶ୍ଚିନ୍ତରେ ସ୍ୱର୍ଗସୁଖ ଭୋଗକର ଯାଇ ।
ସନ୍ତ୍ରସ୍ତ ପରିବାରଙ୍କୁ ସାନ୍ତ୍ୱବଚନରେ
ଆଶ୍ୱାସନା କର କହି ବିବିଧ ପ୍ରକାରେ ।
ଶୁଣିଲ ତ ଦାନପୁଣ୍ୟ ଫଳ ଭଲକରି
ସ୍ୱପ୍ନ ଦରଶନ ଫଳ ଶୁଣ କର୍ଣ୍ଣଡେରି ।
ସୁସ୍ୱପନ ଦର୍ଶନରେ ପୁଣ୍ୟ ହେବ ଯେତେ
ନ କହିବ ନୀଚ ଶଠ ଆଗେ କଦାଚିତେ ।
ଆଉରି ଶତ୍ରୁଜନଙ୍କ ଆଗେ ନ କହିବ
ପଣ୍ଡିତ ଜ୍ଞାନୀଙ୍କୁ କହି ସୁଫଳ ପାଇବ
ରାତ୍ରିକାଳେ ନ କହିଣ କହିବ ଦିବସେ
ଦେବାଳୟେ ଅବା ବଟ ଅଶ୍ୱତ୍ଥର ପାଶେ
ଏମନ୍ତ ହେଲେ ସେ ଗଙ୍ଗା ସ୍ନାନଫଳ ପାଇ
କଥିତ ମାତ୍ର ଏଥିରେ ସନ୍ଦେହ ସେ ନାହିଁ ।
ସୁସ୍ୱପ୍ନଦର୍ଶନେ ଧର୍ମ ଅର୍ଥ କାମ ମୋକ୍ଷ
ପ୍ରାପତ ହୁଅଇ ଜାଣ ଆହେ ଗୋପଶିଖ ।
ଭ୍ରମର ଅଜ୍ଞାନ ନାଶ ହେବାପାଇଁ ମୁହିଁ
କହିଲି ଏ ସବୁ ତତ୍ତ୍ୱଜ୍ଞାନକୁ ବତାଇ ।
ଆଉ କିଛି ଶୁଣିବାକୁ ଇଚ୍ଛା ଅଛି ଯେବେ
ପଚାର ଯଥାର୍ଥରୂପେ କହିବଟି ତେବେ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ନୀରବ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭଣି ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ନନ୍ଦଙ୍କ ଆଗରେ
ପାପପୁଣ୍ୟର ଚରିତ ବର୍ଣ୍ଣନେ ନାମ ଷଷ୍ଟସପ୍ତତିତମୋଽଧ୍ୟାୟଃ ।



## ସପ୍ତସପ୍ତତିତମ ଅଧ୍ୟାୟ

## ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ସ୍ୱପ୍ନ ବିଷୟ ବର୍ଣ୍ଣନ

ଶ୍ରୀକୃଷ୍ଣଙ୍କୁ ପୁଣି ବ୍ରଜଅଧୀଶ୍ୱର ନନ୍ଦ
ପଚାରିଲେ ପ୍ରକାଶିଣ ପରମ ଆନନ୍ଦ ।
ବୋଇଲେ ହେ ମହାପ୍ରଭୁ କି ସ୍ୱପ୍ନ ଦେଖିଲେ
କେଉଁଫଳ ହୁଏ ତାହା କହ ମୋତେ ଭଲେ
ଶ୍ରୀକୃଷ୍ଣ ବୋଇଲେ କହୁଅଛି ଏବେ ଶୁଣ
ଯେଉଁ ସ୍ୱପନରେ ହୁଏ ଯେଉଁ ଦୋଷ ଗୁଣ ।
ସାମବେଦେ କାନ୍ୱଶାଖା ପୁଣ୍ୟ ଅଧ୍ୟାୟରେ
ବ୍ୟକ୍ତ ହୋଇଅଛି ସ୍ୱପ୍ନ ଅଧ୍ୟାୟ ନାମରେ ।
ତହିଁର ଯଥାର୍ଥ ତତ୍ତ୍ୱ କହିବି ବତାଇ
ଶୁଣିଲେ ସନ୍ଦେହ ମନୁ ଯିବ ଦୂରହୋଇ ।
ରାତ୍ରିର ପ୍ରଥମ ଯାମେ ଦେଖିଲେ ସ୍ୱପନ
ବରଷକ ଅନ୍ତେ ଫଳ ଭୋଗ ହୁଏ ଜାଣ ।
ଦ୍ୱିତୀୟ ପ୍ରହରେ ଆଠମାସ ପରେ ହୁଏ
ତୃତୀୟ ଯାମେ ଦେଖିଲେ ତିନମାସ ଯାଏ ।
ଚତୁର୍ଥ ପ୍ରହରେ ହୁଏ ଅର୍ଦ୍ଧମାସଠାରେ
ପ୍ରଭାତେ ଦେଖିଲେ ଦଶ ଦିବସ ମଧ୍ୟରେ ।
ଅରୁଣ ଉଦୟ ବେଳେ ଦେଖିବଟି ଯେବେ
କ୍ଷଣକରେ ଫଳାଫଳ ଘଟିଥାଏ ତେବେ ।
ଚିନ୍ତା ବ୍ୟାଧିରେ ଯୁକ୍ତ ହୋଇବା ସମୟରେ
ନାନା ସ୍ୱପ୍ନ ଦେଖାଯାଏ ନିଦ୍ରାବସ୍ଥାରେ ।
ସେହି ସମସ୍ତ ସ୍ୱପନ ନିଷ୍ଫଳ ଜାଣିଲ
ଭଲମନ୍ଦ କିଛିହେଲେ ତହିଁରେ ନୁହଇ ।
ଆଉରି ପୁରୁଷମୂତ୍ର ବେଗବନ୍ତ ହେଲେ
ଅନେକ ସ୍ୱପନ ଦେଖାଯାଏ ନିଦ୍ରାବେଳେ ।

ସେହି ସ୍ୱପନରେ ମଧ୍ୟ କହୁଛି ଫଳ ନୃଦେ
ଭୟ ଶୋକରୁ ପୁଣି ସେ ସ୍ୱପ୍ନ ଦେଖାଯାଏ ।
ଆକାଶ କୁସୁମ ତୁଲ୍ୟ ତାର ଫଳ ବୃଥା
ବିଚରିବାପାଇଁ ଏଥି ନାହିଁ କେଉଁ କଥା ।
ସ୍ୱପନ ଦେଖିବା ପରେ ରାତ୍ରି ଯେବେ ଥିବ
କାହାଆଗେ ହେଲେ ସେହି କଥା ନ କହିବ ।
କାଶ୍ୟପ ଗୋତ୍ରଜ ଲୋକ ଆଗରେ କହିଲେ
ବିପତ୍ତି ତହିଁରୁ ଜାତ ହୁଏ ଜାଣ ଭଲେ ।
ଦୁର୍ଗତକୁ ଜଣାଇଲେ ପଡ଼ଇ ଦୁର୍ଗତି
ମିତକୁ କହିଲେ ରୋଗହୁଏ ସେହି ମତି ।
ଶତ୍ରୁ ଆଗରେ ପ୍ରକାଶ କଲେ ଭୟ ହୁଏ
ମୂର୍ଖକୁ କହିଲେ କଳି ଲାଗଇ ନିଶ୍ଚୟେ ।
କାମିନୀ ଆଗେ କହିଲେ ହୁଏ ଧନ ହାନି
ଚୋରେ ପ୍ରକାଶିଲେ ଚୌରଭୟ ବୋଲି ଜାଣି
ପଣ୍ଡିତକୁ ଜଣାଇଲେ ବାଞ୍ଛା ପୂର୍ଣ୍ଣହୁଏ
କର୍ମଠ ଆଗେ କହିଲେ ପାପ ନାଶଯାଏ ।
ଗଜହସ୍ତୀ ହୟରେ ବା ପ୍ରାସାଦ ଉପରେ
ଅଥବା ପର୍ବତ ଶିଖେ ପାଦପ ଶାଖାରେ ।
ଆରୋହଣ କରିବାର ଦେଖିଲେ ସ୍ୱପନେ
ଧନ ସମ୍ପଦ ବହୁତ ମିଳେ ଅଳ୍ପଦିନେ ।
ହସ୍ତେ ବାଣାଧରି ସ୍ୱପ୍ନେ କରିଲେ ରୋଦନ
ଶସ୍ୟବନ୍ତ ଭୂମିଲାଭ ହୁଏ ମନେ ଘେନ ।
ଶସ୍ତ୍ରାହତ ହେଲେ ଅବା ବ୍ରଣରେ ପୀଡ଼ିତ
ଅଥବା ଅଙ୍ଗରେ ବିଷ୍ଠା ରୁଧିର ଲେପିତ ।
ନୋହିଲେ ବା କୃମିକୀଟ ଦଂଶନ ହୋଇଲେ
ବିପୁଳ ସମ୍ପଦ ପ୍ରାପ୍ତି ହୁଏ ଅଳ୍ପକାଳେ ।
ଅଗମ୍ୟ ଗମନ କଲେ ସ୍ୱପ୍ନରେ କାମିନୀ
ଲାଭହୁଏ ପ୍ରିୟତମା ଚିତ୍ତ ବିନୋଦିନୀ ।
ମୂତ୍ର ସହିତରେ ଶୁକ୍ର ପିଇ ନରକରେ
ପଡ଼ଇ ସେ ଯାଇକରି ସ୍ୱପ୍ନ ଅବସ୍ଥାରେ ।
ଅଥବା ରକତପୂର୍ଣ୍ଣ ସମୁଦ୍ରେ ପଶଇ
ତେମନ୍ତ ହେଲେ ସେ ଶୁଭ ସମ୍ବାଦ ଶୁଣଇ ।
ଆବର ବହୁତ ଧନ ମିଳଇ ତାହାକୁ
ସେନା ସାହାଯ୍ୟରେ ସେହୁ ଜିଣଇ ଶତ୍ରୁଙ୍କୁ ।
ସୁବର୍ଣ୍ଣ ରଜତ ଅନ୍ନ ଧେନୁ ଗଜ ବୃକ୍ଷ
ପୁତ୍ର କନ୍ୟା ରଥ ଧ୍ୱଜ ନୃପ ଫଳ ପୁଷ୍ପ ।
ସ୍ୱପନରେ ଏ ସମସ୍ତ ଦେଖିବ ଯେ ଲୋକ
ଲଭିବ ସେ ଧନରତ୍ନ କୁଟୁମ୍ବ ଅନେକ ।
ପୂର୍ଣ୍ଣକୁମ୍ଭ ଦ୍ୱିଜ ଅଗ୍ନି ତାମ୍ବୁଳ ମଣ୍ଡର
ଶୁକ୍ଳଧାନ୍ୟ ନଟ ବେଶ୍ୟା ଦେଖିବ ଯେ ନର ।
ଅଚଳ ସମ୍ପଦ ତାକୁ ମିଳବଟି ଜାଣ
ଗୋକ୍ଷୀର ଘୃତ ଦେଖିଲେ ହେବ ବହୁପୁଣ୍ୟ
ପଦ୍ମପତ୍ରେ ଦଧି ଦୁଗ୍ଧ ଘୃତ ଯେ ପାୟସ
ମିଷ୍ଟାନ୍ନ ସ୍ୱସ୍ତିକ ସ୍ୱପ୍ନେ କରଇ ଯେ ଗ୍ରାସ ।
ନୃପତି ତୁଲ୍ୟ ସମ୍ପଦ ଭୋଗକରେ ସେହି
ଦେହ ଅନ୍ତେ ସ୍ୱର୍ଗେ ବସେ ମହାସୁଖ ପାଇ ।
ପକ୍ଷୀ ମନୁଷ୍ୟ ମାଂସ ଯେ ଭୁଞ୍ଜେ ସ୍ୱପନରେ
ବହୁତ ଧନ ସମ୍ପଦ ଭୋଗ ସେହି କରେ ।
ଛତ୍ର ପାଦୁକା ଘେନି ଯେ ସ୍ୱପ୍ନେ ଗଲେ ବାଟ
ଆବର ଖଡ୍ଗ ଧରି ଦଉଇ ଚମଟ ।
ତାହାକୁ ମଧ୍ୟ ବହୁତ ସମ୍ପଦ ମିଳଇ
ପୁଣି ସକଳ ସ୍ଥାନରେ ଖ୍ୟାତି ସେ ଲଭଇ ।
ଭେଳାରେ ଯେ ସନ୍ତରଣ କରେ ଜଳରାଶି
ହୁଅଇ ସେ ଜଗତରେ ପ୍ରଧାନ ବିଶ୍ୱାସୀ ।
ଫଳଯୁକ୍ତ ବୃକ୍ଷ ଯେବେ ଦେଖିବ ପ୍ରଭାତେ
ଧନ ଲାଭ ହେବ ଅଳ୍ପ ସମୟେ ନିଶ୍ଚିତେ ।
ଯାହାକୁ ସ୍ୱପ୍ନରେ ସର୍ପ ଗ୍ରେବାଇବ ବନେ
ଧନବନ୍ତହୋଇ ସେହୁ ବସେ ରତ୍ନତଳେ ।
ସୂର୍ଯ୍ୟଚନ୍ଦ୍ରଙ୍କୁ ଦେଖିଲେ ରୋଗ ମୁକ୍ତ ହୁଏ
ଚିରକାଳ ଶରୀରରେ ସ୍ୱାସ୍ଥ୍ୟ ରହିଥାଏ ।
ବଡ଼ବା କୁକ୍କୁଟି କ୍ରୌଞ୍ଚ ଏହାଙ୍କୁ ଦେଖିଲେ
ଉତ୍ତମ ଭାରିଯା ଲାଭ ହୁଏ ଜାଣ ଭଲେ ।
ସ୍ୱପନରେ ଯେଉଁ ଲୋକ ଲୌହ ଶୃଙ୍ଖଳାରେ
ବନ୍ଧହୁଏ ନିଶ୍ଚୟ ସେ ପୁତ୍ରଲାଭ କରେ ।
ପଦ୍ମପତ୍ରେ ଦଧିଅନ୍ନ ପାୟସ ଭୋଜନ
ନଦୀତଟେ ବସି ସ୍ୱପ୍ନେ କରଇ ଯେ ଜନ ।
କ୍ଷତ୍ରିୟ ସନ୍ତାନ ହେଲେ ନୃପତି ହୁଅଇ
ଅନ୍ୟଲୋକ ନୃପତୁଲ୍ୟ ସମ୍ପଦ ଲଭଇ ।
ଜଳୌକା ବୃଶ୍ଚିକ ସର୍ପ ଦେଖିବନ୍ତି ଯେବେ
ଧନପୁତ୍ର ଜୟଲକ୍ଷ୍ମୀ ଲାଭହେବ ତେବେ ।
ଶୃଙ୍ଗଯୁକ୍ତ ପଶୁ ଅବା ବରାହ ବାନର
ଯାହାକୁ ସ୍ୱପ୍ନରେ ପୀଡ଼ା ଦିଅନ୍ତି ଅପାର ।

ଯେଉଁ ଲୋକ ନିଷ୍ଟପୁରେ ରାଜତ୍ୱ ଲଭଇ
ହୋଇଲେ ବା ରାଜଶିରୀ ସମ୍ପତ୍ତିକୁ ପାଇ ।
ମତ୍ସ୍ୟ ମାଂସ ମୁକ୍ତା ଶଙ୍ଖ ଚନ୍ଦନ ହୀରକ
ସ୍ୱପ୍ନ ଶେଷ ସମୟରେ ଦେଖେ ଯେଉଁ ଲୋକ
ବିପୁଳ ଐଶ୍ୱର୍ଯ୍ୟ ଲଭ ହୁଅଇ ତାହାକୁ
ଦେଖଇ ଯେ ପୁଣି ସ୍ୱର୍ଣ୍ଣ ସୁରା ଶୋଣିତକୁ ।
ସେ ମଧ୍ୟ ଧନ ସମ୍ପଦ ଲଭଇ ଅପାର
ପ୍ରତିମା ଶିବଲିଙ୍ଗଙ୍କୁ ଦେଖେ ଯେଉଁ ନର ।
ଧନଧାନ୍ୟ ଜୟଲକ୍ଷ୍ମୀ ଲାଭକରେ ସେହି
ଯେ ଅବା ଫଳପୁଷ୍ପିତ ବୃକ୍ଷକୁ ଦେଖଇ ।
ବିଶେଷରେ ବିଲ୍ୱ ଚୂତ ପାଦପ ଦେଖିଲେ
ପ୍ରଚୁର ଧନ ସମ୍ପଦ ଅଳଭ୍ୟରେ ମିଳେ ।
ଜ୍ୱଳନ୍ତ ଅନଳ ପିଣ୍ଡ ଦେଖିଲେ ନିଷ୍ଟପୁ
ହୁଅଇ ଉତ୍ତମ ବୃଦ୍ଧି ସମ୍ପତ୍ତି ଉଦୟ ।
ଆମଳକ ଧାତ୍ରୀଫଳ ଉତ୍ପଳ ଦର୍ଶନେ
ଧନ ଯଶ ପରାପତ ହୁଏ ତତକ୍ଷଣେ ।
ଦେବତା ବ୍ରାହ୍ମଣ ଗଉ ପିତୃ ବ୍ରହ୍ମଚାରୀ
ଦେଖିଲେ ହୁଅଇ ଲୋକ ସଂକଟରୁ ପାର ।
ଶୁକ୍ଳବସ୍ତ୍ର ଶୁକ୍ଳପୁଷ୍ପ ଶୁକ୍ଳଗନ୍ଧ ଘେନି
ଆଲିଙ୍ଗନ କଲେ ସ୍ୱପ୍ନେ ଯୁବତୀ କାମିନୀ ।
ଜୀବ ଥିବାଯାଏ ଲୋକ ଭୋଗକରେ ଶିରୀ
ଦେହଅନ୍ତରେ ବସଇ ବୈକୁଣ୍ଠ ନଗରୀ ।
ପୀତାମ୍ବର ପୀତପୁଷ୍ପ ଘେନି ନବବାଳା
ଆଲିଙ୍ଗନ କଲେ ହୁଏ ସମ୍ପତ୍ତି ଅଚଳା ।
ଭସ୍ମ ଅସ୍ଥି କାର୍ପାସକୁ ଛାଡ଼ି ଯେତେ ଦ୍ରବ୍ୟ
ଶୁକ୍ଳ ହୋଇଥିଲେ ଶୁଭଫଳ ଦିଏ ସର୍ବ ।
ରତ୍ନ ବିଭୂଷିତା ହୋଇ ଦିବ୍ୟସ୍ତ୍ରୀ ଯେବେ
ଗୃହକୁ ଆସଇ ଶିରୀ ଲାଭ ହୁଏ ତେବେ ।
ବ୍ରାହ୍ମଣ ବ୍ରାହ୍ମଣୀ ଦେବ ଦେବୀ ସ୍ୱପନରେ
ଫଳଟିଏ ଦେଲେ ପୁତ୍ର ହୁଅଇ ସତ୍ୱରେ ।
ଉତ୍ତମ ବ୍ରାହ୍ମଣ ଯାକୁ ସ୍ୱପ୍ନ ସମୟରେ
ସନ୍ତୁଷ୍ଟ ହୋଇଣ ଶୁଭ ଆଶୀର୍ବାଦ କରେ ।
ସବୁବେଳେ ସୁଖଶାନ୍ତି ସମ୍ମାନ ଗୌରବ
ପ୍ରାପତ ହୁଅଇ ତାକୁ ଆହେ ଗୋପଦେବ ।
ଦଇବେ ସ୍ୱପ୍ନରେ ଯେବେ ସୁରଭୀକୁ ଦେଖି
ଭୂମିଲାଭ ହୁଏ ପୁଣି ଭାର୍ଯ୍ୟା ଚନ୍ଦ୍ରମୁଖୀ ।

ହସ୍ତୀ ଯେବେ କରେ ଧରି ନିଜ ମସ୍ତକରେ
ବସାଇ ନେଇ ଆପଣା ଇଚ୍ଛା ଅନୁସାରେ ।
ତେବେ ରାଜ୍ୟଲାଭ ହୁଏ ନିଷ୍ଟପୁତେ ଜାଣ
ଏ କଥା ଅଟଇ ବେଦ ଶାସ୍ତ୍ରରେ ପ୍ରମାଣ ।
ସନ୍ତୁଷ୍ଟ ହୋଇ ବ୍ରାହ୍ମଣ ଆଲିଙ୍ଗନ କଲେ
ତୀର୍ଥସ୍ନାନ ଲଭ ହୋଇଥାଏ ଜାଣ ଭଲେ ।
ଯେଉଁ ଲୋକକୁ ବ୍ରାହ୍ମଣ ସ୍ୱପନରେ ଫୁଲ
ଦାନକରେ ଲଭଇ ସେ ଯଶ ଖ୍ୟାତିବଳ ।
ଆଉରି ବିବାଦ ସ୍ଥଳେ ଜୟଲାଭ କରେ
ପ୍ରଶଂସା ଶୁଣଇ ସବୁ ଲୋକଙ୍କ ମୁଖରେ ।
ତୀର୍ଥ ସୌଧ ରତ୍ନ ଗୃହ ଦେଖଇ ଯେ ଜନ
ଜୟଯୁକ୍ତ ହୁଏ ପୁଣି କରେ ତୀର୍ଥସ୍ନାନ ।
ପୂର୍ଣ୍ଣକୁମ୍ଭ ଯେବେ ସ୍ୱପନରେ ଦିଏ କେହି
ଘେନିବା ଲୋକକୁ ପୁତ୍ର ଧନଲାଭ ହୋଇ ।
ସୁନ୍ଦରୀ କାମିନୀ ଯେବେ କୁଉଁବରେ ପୂର୍ଣ୍ଣ
ଆତ୍ମକ ଘେନି ଗୃହକୁ କରେ ଆଗମନ ।
ତେମନ୍ତ ହେଲେ ପରମ ଲକ୍ଷ୍ମୀ ସାକ୍ଷାତରେ
ଭଜେ କରନ୍ତି ଆନନ୍ଦଚିତ୍ତେ ଆସି ଘରେ ।
ଯାହାର ଘରକୁ ଦିବ୍ୟ ସ୍ତ୍ରୀ ଜଣେ ଆସି
ପୁରୀଷ ତ୍ୟାଗ କରିଣ ଯାଏ ହସି ହସି ।
ବହୁତ ଧନ ସମ୍ପଦ ଲାଭ ହୁଏ ତାର
ଦରିଦ୍ରତା ସଙ୍ଗେ ସଙ୍ଗେ ହୋଇଯାଏ ଦୂର ।
ଯାହାର ଗୃହକୁ ଭାର୍ଯ୍ୟା ଘେନି ସଙ୍ଗତରେ
ବ୍ରାହ୍ମଣ ଗୋଟିଏ ଆସେ କାହିଁ ସ୍ୱଇଚ୍ଛାରେ ।
ଅଥବା ପାର୍ବତୀ ସହ ଆସନ୍ତି ଶଙ୍କର
କି ଅବା ଲକ୍ଷ୍ମୀ ସହିତେ ପ୍ରଭୁ ଦାମୋଦର ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ଧାନ୍ୟ ମୁଷ୍ଟାଞ୍ଜଳି
ଦିଅନ୍ତି ଅଥବା ଦିବ୍ୟ କୁସୁମର ମାଳ ।
ତେମନ୍ତ ହେଲେ ସର୍ବଦା ମହାସୁଖେ ସେହି
ପରିବାର ସହିତରେ ଆନନ୍ଦେ ରହଇ ।
ହରିଦ୍ରା ଇକ୍ଷୁ ଦଣ୍ଡକ ପତାକା ରୋଚନା
ସ୍ନିଗ୍ଧଅନ୍ନ ଯେବେ ସ୍ୱପ୍ନେ ଦିଏ ବାରାଙ୍ଗନା ।
ତେବେ ତାହାକୁ ସକଳ ସମ୍ପଦ ମିଳଇ
ଜୀବନ ଥିବା ପର୍ଯ୍ୟନ୍ତ ସୁଖଲଭ ହୋଇ ।
ଯାହାର ମସ୍ତକେ ବିପ୍ର ନିଜ ଭାର୍ଯ୍ୟାସହ
ଛତ୍ର ଧରି ଗଲେ ମାନ୍ୟ ଦିଏ ବହୁ ସ୍ନେହ ।

ଯେହ୍ନ ଲୋକ ନିଶ୍ଚୟରେ ହୁଅଇ ରାଜନ
ଆହେ ଗୋପ ଅଧୀଶ୍ୱର ଅନ୍ୟଥା ନ ହେବ
ଯେଉଁ ଲୋକ ରଥେ ବସି ଶୁକ୍ଳମାଲ୍ୟ ଭରି
ଦଧି ଖାଏ ସ୍ୱପ୍ନେ ସେହ୍ନ ହୁଏ ଦଣ୍ଡଧାରୀ ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ସ୍ୱପନରେ ଆସି
ଯାହାକୁ ଦିଅନ୍ତି ଦଧି ହୋଇ ମହାତୋଷୀ ।
ସେ ଲୋକ ମଧ୍ୟ ନୃପତି ହୁଏ କାଳାନ୍ତରେ
ରହଇ ଐଶ୍ୱର୍ଯ୍ୟ ଭୋଗ କରି ଆନନ୍ଦରେ ।
ଆଠବରଷର ଏକ ବାଳିକା ଯାହାକୁ
ସ୍ୱପ୍ନେ ଦେଖାଦିଏ ଅଙ୍ଗେ ଘେନି ଭୂଷଣକୁ ।
ତାଠାରେ ପାର୍ବତୀ ଦେବୀ ସନ୍ତୁଷ୍ଟ ହୁଅନ୍ତି
ଅଳ୍ପ ସମୟେ ବହୁତ ସମ୍ପଦ ଦିଅନ୍ତି ।
ଅଥବା ସେ ଯଶୋବନ୍ତ ଧନଶାଳୀ ହୁଏ
ରାଜାପରି ଲୋକଙ୍କର ମଧ୍ୟ ପୂଜା ପାଏ ।
ଶୁକ୍ଳପୀତ ବସ୍ତ୍ର ପିନ୍ଧି ଭରି ଅଳଙ୍କାର
ସ୍ୱପ୍ନରେ ଆସଇ ଯାହା ପାଶେ ରମାବର ।
ସେ ଲୋକ ନିଶ୍ଚୟ କବି ପଣ୍ଡିତ ହୁଅଇ
ବହୁତ ସରସ ଗ୍ରନ୍ଥ ଲେଖି ସେ ପାରଇ ।
ଯେବେ ସେହ୍ନ କାମିନୀଟି ପୁସ୍ତକ ଖଣ୍ଡିଏ
ସ୍ୱଇଚ୍ଛାରେ ନେଇ କାହା ହସ୍ତେ ଦେଇଯାଏ
ବିଶ୍ୱବିଖ୍ୟାତ ସୁକବି ପଣ୍ଡିତ ତା ପରି
ନୁହଇ କେ ଜଗତରେ ଆହେ ଦଣ୍ଡଧାରୀ ।
ଅଥବା ଯେବେ ସେ ସ୍ତ୍ରୀ ବସିଣ ପାଶରେ
ପାଠପଢ଼ାଏ ପୁତ୍ରକୁ ମାତା ପରକାରେ ।
ସେହ୍ନଲୋକ ସାକ୍ଷାତରେ ସରସ୍ୱତୀ ପୁତ୍ର
ସନ୍ଦେହ ହୋଇ ଏଥିରେ ନାହିଁ କିଛି ମାତ୍ର ।
ସ୍ୱପ୍ନରେ ଯାହାକୁ ଏକ ବ୍ରାହ୍ମଣ ସନ୍ତୋଷେ
ପୁସ୍ତକ ଦେଇ ପଢ଼ାଏ ବସି କରି ପାଶେ ।
ସେହ୍ନ ଲୋକ ମଧ୍ୟ ମହା ପଣ୍ଡିତ ହୁଅଇ
କବି ପଣେରେ ତାହାର ତୁଲ୍ୟ କେ ନୁହଇ ।
ସ୍ୱପ୍ନରେ ଯେଉଁ ଲୋକକୁ କେଉଁଠାରୁ ହେଲେ
ପୁସ୍ତକ ଗୋଟିଏ ମିଳିବା ସମୟରେ ମିଳେ ।
ସେହ୍ନ ଲୋକ ପୃଥିବୀରେ ଯଶସ୍ୱୀ ପଣ୍ଡିତ
ଆବର ହୁଅଇ ସବୁ ସ୍ଥାନରେ ବିଖ୍ୟାତ ।
ଯାହାକୁ ସ୍ୱପ୍ନରେ ମହାମନ୍ତ୍ର ଦିଏ ଦ୍ୱିଜ
ସେ ଲୋକ ହୁଅଇ ଧନୀ ଜ୍ଞାନୀ ବିଜ୍ଞପ୍ରାଜ୍ଞ ।

କି ଅବା ଶିଳା ନିର୍ମିତ ପ୍ରତିମାକୁ ଦେଲେ
ମନ୍ତ୍ରସିଦ୍ଧ ନିଶ୍ଚୟରେ ହୁଏ ଜାଣ ଭଲେ ।
ଯେଉଁ ଲୋକ ବ୍ରାହ୍ମଣଙ୍କୁ ସ୍ୱପ୍ନେ ନମସ୍କାର
କରି ଶୁଭ ଆଶୀର୍ବାଦ ପାଏ ତାହାଙ୍କର ।
ରାଜେନ୍ଦ୍ର ଅଥବା କବି ପଣ୍ଡିତ ସେ ହୁଏ
ସବୁରି ମଧ୍ୟରେ ଯଶ ସୁଖ୍ୟାତିକୁ ପାଏ ।
ଯାହାକୁ ସ୍ୱପ୍ନରେ ଦ୍ୱିଜ ଭୂମିଦାନ କରେ
ହୁଅଇ ସେ ମହୀପତି ଅଳ୍ପ ସମୟରେ ।
କି ଅବା ରଥେ ବସାଇ ନାନା ସ୍ୱର୍ଗ ସ୍ଥାନ
ଯେବେ ଯେହ୍ନ ବିପ୍ର ନେଇ କରାଏ ଦର୍ଶନ ।
ଚିରଜୀବୀ ହୁଅଇ ସେ ଲୋକ ମହୀତଳେ
ଆବର ଧନ ସମ୍ପଦ ଭୁଞ୍ଜେ ସବୁବେଳେ ।
ଯାହାକୁ ବ୍ରାହ୍ମଣେ ତୋଷ ହୋଇ କନ୍ୟାଦାନ
କରନ୍ତି ସ୍ୱପ୍ନରେ ସେହ୍ନ ହୁଏ ଧନବାନ ।
ନଦ ନଦୀ ସରୋବର ସମୁଦ୍ର ତଡ଼ାଗ ।
ଶୁକ୍ଳଶୈଳ ଶୁକ୍ଳବନ ଶୁକ୍ଳବର୍ଣ୍ଣ ନାଗ ।
ଦେଖିବା ଲୋକକୁ ମିଳେ ଅଚଳ ସମ୍ପଦ
କେବଣ ସ୍ଥାନରେ ହେଲେ ନ ପଡ଼େ ପ୍ରମାଦ
ଯେଉଁ ଲୋକ ସ୍ୱପନରେ ଦେଖେ ମୃତଦେହ
ଚିରଜୀବୀ ହୁଅଇ ସେ ଆହେ ମହାଶୟ ।
ରୋଗୀକୁ ଦେଖିଲେ ସ୍ୱପ୍ନେ ରୋଗମୁକ୍ତ ହୋଇ
ଦୁଃଖୀକୁ ଦେଖିଲେ ସୁଖ ସମ୍ପଦ ମିଳଇ ।
ସ୍ୱପ୍ନରେ ଉତ୍ତମ ସ୍ତ୍ରୀ ସମୀପକୁ ଆସି
ପତି ହୁଅ ବୋଲି ଯେବେ ବୋଲିବ ବିଶେଷି
ସେହିକ୍ଷଣି ଦର୍ଶକର ନିଦ୍ରା ଭାଙ୍ଗି ଯିବ
ତେବେ ସେ ଅବଶ୍ୟ ରାଜା ହୋଇଣ ରହିବ
ସ୍ୱପ୍ନକାଳେ ଆସି ଯେବେ ସୁନ୍ଦରୀ ବାଳିକା
ହସ୍ତଦେଶେ ଘେନି ଦିବ୍ୟ ଅକ୍ଷୟ ମାଳିକା ।
ଆଗେ ଉଭା ହେବ ତେବେ ପ୍ରତିଷ୍ଠା ପ୍ରାପତି
ହୁଅଇ ନିଶ୍ଚୟ ଜାଣ ଆହେ ବ୍ରଜନାଥ ।
ଯାହାକୁ ସ୍ୱପ୍ନରେ ଦ୍ୱିଜ ବୋଲିବ ମୋହର
ଦାସ ହୁଏ ବୋଲି ପୁଣ୍ୟ ଲଭିବ ସେ ନର ।
ଆବର ଶ୍ରୀହରିଙ୍କର ଦାସତ୍ୱ ପାଇବ ।
ଗୋଲୋକ ଭୁବନେ ଦେହ ଅନ୍ତରେ ରହିବ
ଦରିଦ୍ର ବ୍ରାହ୍ମଣ କରେ ସ୍ୱପ୍ନେ ଦେଲେ ଦାନ
କାଳେ ମିଳିଥାଏ ଧନରତ୍ନ ଅକଳନ ।

ସ୍ୱପ୍ନରେ ବ୍ରାହ୍ମଣ ଅଟେ ସର୍ବ ଦେବମୟ
ତାହାଙ୍କୁ ଦେଖିଲେ ଦୂର ହୋଇଯାଏ ଭୟ ।
ଏହିରୂପେ ସ୍ୱପ୍ନଶାସ୍ତ୍ର ବିଶାରଦମାନେ
କହିଅଛନ୍ତି ସକଳ ଶାସ୍ତ୍ରେ ସବୁସ୍ଥାନେ ।
ଶ୍ରୀକୃଷ୍ଣଙ୍କଠାରୁ ନନ୍ଦ ଏ ସମସ୍ତ ଶୁଣି
ଆନନ୍ଦ ମନରେ ତାଙ୍କୁ ପଚାରିଲେ ପୁଣି ।
ବୋଇଲେ ହେ ବତ୍ସ ଶୁଭ ସ୍ୱପ୍ନର ବିଷୟ
ଶୁଣିବାରୁ ହରଷିତ ହେଲି ଅତିଶୟ ।
ଏବେ ଯାହାଙ୍କୁ ଦେଖିଲେ ଅଶୁଭ ହୁଅଇ
ସେ ସକଳ କଥା କହ ମୋ ଆଗେ ବତାଇ ।
ତୁମ୍ଭେ ଅଟ ସର୍ବମୟ ସର୍ବଦେବ ରୂପ
ତୁମ୍ଭ ଦରଶନେ ନାଶ ହୁଏ ସର୍ବପାପ ।
ବ୍ରହ୍ମା ଆଦି ଦେବଗଣ ତୁମ୍ଭ ପାଦ ଦୁଇ
ଦେଖି ନ ପାରନ୍ତି ଯୁଗ ଯୁଗାନ୍ତରେ ଧ୍ୟାୟି ।
ସୁକୃତବନ୍ତଙ୍କ ଯେ ପାଦ ଦରଶନ କରି
ହୋଇବେ ଅବଶ୍ୟ ମୁକ୍ତି ଦୁଷ୍କୃତରୁ ପାରି ।
ଆଜପରେ ଆଉ କେବେ ହେବ କେବେ ମୋର
ପାଇବି କେଉଁ ସ୍ଥାନରେ ଦର୍ଶନ ତୁମ୍ଭର ।
ଏରୂପେ କହିଣ ନନ୍ଦ ଶୋକଭରେ ହୋଇ
ମୂର୍ଚ୍ଛିତ ହୋଇଲେ ପୁତ୍ର ବିରହକୁ ଧ୍ୟାୟି ।
ତାହା ଦେଖି ଦୟାମୟ ପ୍ରଭୁ ଚକ୍ରଧର
ପ୍ରବୋଧିଲେ କହି ତାଙ୍କୁ ନାନା ପରକାର ।
କ୍ଷେତ୍ରମୋହନ କହଇ ଆହେ ରାଧାକାନ୍ତ
ଅନୁଗ୍ରହ କରି ଫେଡ଼ ମୋହର ଦୁରିତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ସ୍ୱପ୍ନ ବିଷୟ ବର୍ଣ୍ଣନେ ନାମ ଷଟ୍‌ସପ୍ତତିତମୋଽଧ୍ୟାୟଃ ।

---

## ଅଷ୍ଟସପ୍ତତିତମ ଅଧ୍ୟାୟ

### ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଧର୍ମତତ୍ତ୍ୱ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଇଲେ ଆହେ ବ୍ରଜ ଅଧୀଶ୍ୱର
କହିବି ପରମଜ୍ଞାନ ମୋହ ତ୍ୟାଗ କର ।
ବେଦଶାସ୍ତ୍ରେ ଗୋପନୀୟ ହୋଇଅଛି ଯାହା
ସାବଧାନ ହୋଇକରି ଶୁଣ ଏବେ ତାହା ।
ଜଳବୁଦ୍‌ବୁଦ ସମାନ ଅଟଇ ସଂସାର
ମୋହ ଜାଲରେ ବେଷ୍ଟିତ ଥାଏ ନିରନ୍ତର ।
ସ୍ୱପନ ସଦୃଶ ମିଥ୍ୟା ମୋହର କାରଣ
ଶରୀର ଅଟଇ ପଞ୍ଚଭୂତ ପରିପୂର୍ଣ୍ଣ ।
ମାୟାଯୋଗେ ସତ୍ୟବୁଦ୍ଧି ଉତ୍ପନ୍ନ ହୁଅଇ
ପ୍ରଜ୍ଞାତ ତତ୍ତ୍ୱରୁ ପୁଣି ପ୍ରକାଶିତ ହୋଇ ।
ସକଳ ଧର୍ମରେ କାମ ମୋହ ଲୋଭ କ୍ରୋଧ
କରୁଅଛନ୍ତି ଲୋକର ମନକୁ ଆବଦ୍ଧ ।
ସେ ସକାଶୁ ଜ୍ଞାନହୀନ ଦୁର୍ବଳତା ପାଇ
ହିତାହିତ ବିବେଚନା କରି ନ ପାରଇ ।
ନିଦ୍ରା ତନ୍ଦ୍ରା କ୍ଷୁଧା ତୃଷା କ୍ଷମା ଶ୍ରଦ୍ଧା ଶାନ୍ତି
ଦୟା ଲଜ୍ଜା ପୁଷ୍ଟି ତୁଷ୍ଟି ବିବେଚନା ଧୃତି ।
ମନବୁଦ୍ଧି ଚେତନା ଯେ ପ୍ରାଣ ମହାଜ୍ଞାନ
ସର୍ବଦା ଦେହକୁ କରିଥାନ୍ତି ଆକ୍ରମଣ ।
ଆତ୍ମାରୂପେ ସବୁଠାରେ ବିରାଜିତ ମୁହିଁ
ଜ୍ଞାନ ସ୍ୱରୂପରେ ଶିବ ଅଛନ୍ତି ଯେ ରହି ।
ମନରୂପୀ ପ୍ରଜାପତି ପ୍ରକୃତି ଯେ ବୁଦ୍ଧି
ପ୍ରାଣରୂପୀ ନାରାୟଣ ପ୍ରଭୁ କୃପାନିଧି ।
ଚେତନା ରୂପରେ ଲକ୍ଷ୍ମୀଦେବୀ ବିରାଜିତା
ଅଟନ୍ତି ସେ ପଦ୍ମାଳୟ ଜୀବାଧିଦେବତା ।
ଏମାନଙ୍କ ବିନା ଦେହ ରହି ନ ପାରଇ
ପଞ୍ଚଭୂତରେ କ୍ଷଣକେ ବିଲୀନ ହୁଅଇ ।
ମୁଁ ଥିବାଯାଏ ସବେ ସ୍ଥିର ହୋଇଥାନ୍ତି
ଗଲାବେଳେ ମୋର ସଙ୍ଗେ ସଙ୍ଗେ ଚାଲିଯାନ୍ତି ।
ସଙ୍କେତ ରୂପ ଯେ ନାମ ମୋହର କାରଣ
ନିଜ ବୋଲି ତାହାକୁ ମାନସରେ ଘେନ ।
ଅଜ୍ଞାନୀ ଲୋକ ତହିଁକି ଶୋଚନା କରଇ
ଜ୍ଞାନଶୀଳ ଲୋକଙ୍କୁ ଯେ ବାଧି ନ ପାରଇ ।

ପ୍ରକୃତି କଳାରେ ଜାତ ନିଦ୍ରାଦି ଶକତି
ମୋହର ଅହଂକାର ଆଦି ଧର୍ମାଂଶ ଅଟନ୍ତି ।
ସତ୍ତ୍ୱ ରଜ ତମୋରୂପ ତିନିଗୋଟି ଗୁଣ
ବ୍ରହ୍ମା ବିଷ୍ଣୁ ରୁଦ୍ର ଅଂଶେ ଜନ୍ମିଛନ୍ତି ଜାଣ ।
ବିଶ୍ରାମ କରଇ ମୁହିଁ ପ୍ରକୃତିରେ ଯେବେ
ସଗୁଣ ବୋଲିଣ ମୋତେ ବୋଲନ୍ତି ସରବେ
ମୋହର ଅଂଶରେ ଧର୍ମ ଅଟନ୍ତି ସମ୍ଭୂତ
ଚନ୍ଦ୍ର ସୂର୍ଯ୍ୟ ଶେଷଦେବ କଳା ଘେନି ଜାତ
ଏହାପରି ମୁନି ମନୁ ଆଦିକରି ଯେତେ
ମୋହର କଳାରୁ ଜାତ ଦେବତା ସହିତେ ।
ସକଳ ଦେହରେ ମୁହିଁ ରହି ସବୁବେଳେ
ଲିପ୍ତ ନୁହଇ କେବଳ କର୍ମଠାରେ ହେଲେ ।
ମନ ବଚନରେ ମୋର ଅଟଇ ଯେ ଭକ୍ତ
ଜନ୍ମ ମୃତ୍ୟୁ ଜରା ତେଜି ହୁଏ ଜୀବନ୍ମୁକ୍ତ ।
ଆଉରି ଯଶସ୍ୱୀ କବି ପଣ୍ଡିତ ପ୍ରବର;
ବୋଲାଏ ଲୋକଙ୍କ ମଧ୍ୟେ ପ୍ରଧାନ ସେ ନର;
ଦ୍ୱାବିଂଶ ପ୍ରକାର ସିଦ୍ଧି କହୁଅଛୁ ଶୁଣ
ଅଟଇ ସେ ସର୍ବବିଧ ସାଧନ କାରଣ ।
ସିଦ୍ଧମନ୍ତ୍ର ମୋହଠାରୁ ଘେନି ତୋଷମନେ
ମୁକ୍ତି ପାଇଣ ବସିବ ଗୋଲୋକ ଭୁବନେ ।
ଅଣିମା ଲଘିମା ବ୍ୟାପ୍ତି ପ୍ରାକାମ୍ୟ ମହିମା
ଇଷିତ୍ୱ ଵଷିତ୍ୱ କାମାବସାୟୀ ଗରିମା ।
ଦୂରଶ୍ରବଣ ଯେ ଦ୍ୱାରକାୟ ପ୍ରବେଶନ
ମନୋଯାୟିତ୍ୱ ଯେ ଅଟେ ସର୍ବବିଧ ଜ୍ଞାନ ।
ଅଗ୍ନିସ୍ତମ୍ଭ ଜଳସ୍ତମ୍ଭ ସୂଚିର ଜୀବିତା
ବାୟୁସ୍ତମ୍ଭ କ୍ଷୁଧା ତୃଷା ନିଦ୍ରା ବିହୀନତା ।
କାୟବ୍ୟୂହ ବାକ୍ୟ ସିଦ୍ଧି ମୃତ ଆନୟନ
ସୃଷ୍ଟି କାର୍ଯ୍ୟ ପ୍ରାଣାକର୍ଷ ଲୋହାଦିସ୍ତମ୍ଭନ ।
ଇନ୍ଦ୍ରିୟ ନିଗ୍ରହ ବୁଦ୍ଧିସ୍ତମ୍ଭ ସେହିପରି
ସିଦ୍ଧନାମ ଖ୍ୟାତ ଅଟେ ଆହେ ଦଣ୍ଡଧାରୀ ।
ମନ୍ତ୍ରର ସ୍ୱରୂପ ଏବେ ଶୁଣ ମନଦେଇ
କଳପ ପାଦପ ତୁଲ୍ୟ ଯେ ମନ୍ତ୍ର ଅଟଇ ।
ପ୍ରଥମେ ଓଁକାର ଦେଇ ତାହାପରେ ପୁଣି
ଚତୁର୍ଥ୍ୟନ୍ତ ସର୍ବେଶ୍ୱର ଶବ୍ଦ ଦେବ ଆଣି ।
ସର୍ବବିଘ୍ନ ବିନାଶନେ ବୋଲି ତାହାପରେ
ଲେଖିବ ମଧୁସୂଦନ ଶବ୍ଦ ତା ଅନ୍ତରେ ।
ଚତୁର୍ଥୀ ବିଭକ୍ତି ଦେଇ ସ୍ୱାହାନ୍ତ କରିବ
ଏହିରୂପେ ମନ୍ତ୍ରଗୋଟି ଉଦ୍ଧୃତ ହୋଇବ ।
ସାମବେଦରେ କଥିତ ହୋଇଅଛି ଏହି
ଏହାପରି ମନ୍ତ୍ର ଆଉ ନ ମିଳିବ କାହିଁ ।
ଏ ମନ୍ତ୍ର ଯୋଗରେ ମୁନି ଋଷି ସିଦ୍ଧଗଣେ
ବ୍ରହ୍ମ ଦରଶନ କରି ପାରନ୍ତି ଯତନେ ।
ଶତଲକ୍ଷ ଜପକଲେ ମନ୍ତ୍ର ସିଦ୍ଧ ହୁଏ
ଯାହା ଇଚ୍ଛାକଲେ ତାହା ମିଳଇ ନିଶ୍ଚୟେ ।
ଯଦି ନାରାୟଣକ୍ଷେତ୍ରେ ହବିଷ୍ୟାଶୀ ହୋଇ;
ଜପ କରିବ ଏହାକୁ ସ୍ଥିରଭାବେ ରହି ।
ତେବେ ସକଳ ସମ୍ପଦ ହୋଇବ ପ୍ରାପତ
ଏ କଥା ନିଶ୍ଚୟ ବୋଲି ଜାଣ ଆହେ ତାତ
ତୁମ୍ଭେ ଏବେ କାଶୀରେ ବା ମଣିକର୍ଣ୍ଣିକାରେ
ନୋହିଲେ ଶ୍ରୀନାରାୟଣ ନାମକ କ୍ଷେତ୍ରରେ ।
ଜପକର କେତେଦିନ ସଯତ ମାନସେ
ମୁକତି ପାଇବ କର୍ମଭୋଗ ଅବଶେଷେ ।
ଏ ମନ୍ତ୍ର ଘେନିଣ ବେଗେ ବ୍ରଜପୁରେ ଯାଅ
ସମସ୍ତ ପରିବାରଙ୍କୁ ଦରଶନ ଦିଅ ।
ଯାହାଙ୍କୁ ଦେଖିବାମାତ୍ରେ ଜାତହୁଏ ପାପ
କହୁଅଛି ଶୁଣ ଏବେ ତହିଁ ସ୍ୱରୂପ ।
ପ୍ରଥମେ ଦୁଃସ୍ୱପ୍ନ ମହାପାପର କାରଣ
ସେହିପରି ଗୋଘାତକ ବ୍ରହ୍ମଘାତୀ ଜାଣ ।
କୃତଘ୍ନ କୁଟିଳମତି ମାତୃ ପିତୃଘାତୀ
ଦେବଦ୍ରୋହୀ ମିଥ୍ୟାସାଥୀ ପ୍ରବଞ୍ଚକ ମତି ।
ଗ୍ରାମଯାଜୀ ଦେବ ବିପ୍ର-ଧନ ଅପହାରୀ
ଅଶ୍ୱତ୍ଥଘାତକ ଶିବ ବିଷ୍ଣୁ ନିନ୍ଦାକାରୀ ।
ଅଦୀକ୍ଷିତ ଅନାଚାର ସନ୍ଧ୍ୟାହୀନ ଦ୍ୱିଜ
ଦେବଳ ବୃଷଭବାହ ଶୂଦ୍ର ଶୂଦ୍ରଯାଜ ।
ଶୂଦ୍ର ଶବଦାହୀ ଶୂଦ୍ର ଶ୍ରାଦ୍ଧାନ୍ନ ଭକ୍ଷକ
ଅସାର ଛିନ୍ନନାସିକା ଦେବବିନିନ୍ଦକ
ପତିଭକ୍ତିହୀନା ଅବା ବ୍ୟଭିଚାରବତୀ
ବିଧବା ଶୂଦ୍ରାଣୀ ବିଷ୍ଣୁ ଭକ୍ତିହୀନ ଯତି ।
କୋପଯୁକ୍ତ ଦୁଷ୍ଟ ଋଣଗ୍ରସ୍ତ ଜାରଜାତ
ଚୋର ମିଥ୍ୟାବାଦୀ ଅବା ତ୍ୟକ୍ତ ଭାର୍ଯ୍ୟାସୁତ ।
ମାଂସଭୋଜୀ ଦ୍ୱିଜ ଅବା ବୃଷଳୀର ପତି
ବ୍ରାହ୍ମଣୀ କାମୁକ ଶୂଦ୍ର ହେଲେ ସେହିମତି ।

ଜନନୀ ସପତ୍ନୀ ମାତା ଶ୍ୱଶ୍ରୂ ଭଗ୍ନୀ ସୁତା
ଗୁରୁପତ୍ନୀ ପୁତ୍ରବଧୂ ସୋଦର ବନିତା ।
ମାତୃଶ୍ୱସା ପିତୃଶ୍ୱସା ଭଗିନେୟ ପ୍ରିୟା
ମାତୁଳାନୀ ପିତୃବ୍ୟସ୍ତ୍ରୀ ରଜସ୍ୱଳାଜାୟା ।
ଅଗମ୍ୟ ଅଟନ୍ତି ଏସମାନେ ବୋଲି ଜାଣ
ସାମବେଦେ ହୋଇଅଛି ଏହା ନିରୂପଣ ।
ଏମାନଙ୍କୁ ଉପଭୋଗ କରଇ ଯେ ନର
ଅଗମ୍ୟ ଗମନ ଦୋଷ ହୁଅଇ ତାହାର ।
ଆବର ବ୍ରାହ୍ମଣ ହତ୍ୟା ଦୋଷ ଉପୁଜଇ
ଦଇବରେ ଯେବେ କେହି ମନକୁ ବଳାଇ ।
ପାପପ୍ରଣୟ ସକାଶେ ବଡ଼ରଇ ଥରେ
ଲିପ୍ତ ହୁଅଇ ସେ ବ୍ରହ୍ମହତ୍ୟା ପାତକରେ ।
ସୂର୍ଯ୍ୟ ଦରଶନ କରି ବିଷ୍ଣୁଙ୍କୁ ସ୍ମରଣ
କଲେ ସେ ପାପରୁ ମୁକ୍ତି ମିଳିପାରେ ଜାଣ ।
ସେ ସକାଶୁ ସାଧୁମାନେ ପାପ ଭୟକରି
ଅଗମ୍ୟଠାରୁ ଦୂରରେ ରହନ୍ତି ଓହରି ।
କାର୍ଯ୍ୟ ଆଉ କଳପନା କରିଲେ ଅନ୍ତରେ
କାର୍ଯ୍ୟର ଅର୍ଦ୍ଧେକ ଦୋଷ ଲାଗଇ ବିଧିରେ ।
ରାହୁଗ୍ରାସ ସମୟରେ ଯେବେ ନିଶାକର
ଆଶ୍ରା କରିଥାନ୍ତି ସପ୍ତ ଅଷ୍ଟ ଶରୀର ଘର ।
ଅଥବା ଧନ ଚତୁର୍ଥ ରାଶି ଗୃହେ ଥିଲେ
ପାତକ ହୁଅଇ ତାଙ୍କୁ ଦରଶନ କଲେ ।
ଏହିରୂପେ ଦିନକର ଗ୍ରହଣ କାଳରେ
ଦରଶନୀୟ ନୁହନ୍ତି କେଉଁ ପ୍ରକାରେ ।
ଭାଦ୍ରମାସ ଶୁକ୍ଳପକ୍ଷ ଚତୁର୍ଥୀ ତିଥିରେ
ଚନ୍ଦ୍ରଙ୍କୁ ଅଶୁଦ୍ଧ ବୋଲି ଲେଖିଛି ଶାସ୍ତ୍ରରେ ।
ଦେଖିବ ଯେବେ ତାରକା ହରଣ ଦୋଷକୁ
ହିଅନ୍ତି ଚନ୍ଦ୍ରମା କୋପକରି ସେ ଲୋକକୁ ।
ଦଇବେ ଦର୍ଶନ ହେଲେ ମନ୍ତ୍ରପୂତ ଜଳ
ପାନକଲେ ଦୂରହୁଏ କଳଙ୍କ ସକଳ ।
ସେ ମନ୍ତ୍ର କହୁଛି ଶୁଣ ମନଦେଇ କରି
ପ୍ରଥମେ ବୋଲିବ ସିଂହ ପ୍ରସେନ କୁମାରୀ ।
ଜାମ୍ବବାନ ହସ୍ତରେ ସେ ନିହତ ହୋଇଲା
ଯେ ସେନ ସ୍ୟମନ୍ତମଣି ତୋପାଇଁ ରହିଲା ।
ନ କାନ୍ଦ ନ କାନ୍ଦ ଆରେ ବାଳକ କୁମର
ଏହିରୂପେ ପ୍ରବୋଧନା ବାକ୍ୟ କାମିନୀର ।
ବାଳକ କାନ୍ଦିବାବେଳେ କୁହାଯାଇଥିଲା
ସେ ବାକ୍ୟ ଏଠାରେ ମନ୍ତ୍ର ରୂପରେ ରହିଲା ।
ଏ ମନ୍ତ୍ରରେ ଜଳ ମନ୍ତ୍ର ପାନ ଯେବେ କରି
ହୁଏ ଲୋକ ଚନ୍ଦ୍ର ଦରଶନ ଦୋଷୁ ପାରି ।
କହିଲି ତ ଯଥାବିଧି ମନ୍ତ୍ରତତ୍ତ୍ୱ ଜ୍ଞାନ
ପଚ୍ଚରି ଆଉ କି ଶୁଣିବାକୁ ଥିଲେ ମନ ।
ଏରୂପେ ନନ୍ଦଙ୍କ ଆଗେ କହି ବଂଶୀଧର
ମଉନ ହୋଇଲେ ଗୀତେ ଭଣେ ଷେଣସ୍ଥର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଧର୍ମତତ୍ତ୍ୱ ବର୍ଣ୍ଣନେ ନାମ ଅଷ୍ଟସପ୍ତତିତମୋଽଧ୍ୟାୟଃ ।



## ଊ ନା ଶୀ ତି ତ ମ ଅ ଧ୍ୟା ୟ

## ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ତତ୍ତ୍ୱ ବର୍ଣ୍ଣନ

ନାରାୟଣ ବୋଇଲେ ହେ ଏଥୁଅନନ୍ତରେ
ଶ୍ରୀକୃଷ୍ଣଙ୍କୁ ପୃଚ୍ଛି ନନ୍ଦ ଆନନ୍ଦ ମନରେ ।
ବୋଇଲେ ହେ ବତ୍ସ ! ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କର
ଗ୍ରହଣ ବିଷୟ ଏବେ କହ ମୋ ଆଗର ।
ଭାଦ୍ରମାସ ସିତାସିତ ଚତୁର୍ଥୀ ତିଥିରେ
ନଷ୍ଟଚନ୍ଦ୍ର ହୁଏ ଅବା କେଉଁ ପ୍ରକାରେ ।
ବେଦପୁରାଣରେ ଏହା ଅଟଇ ଅବ୍ୟକ୍ତ
ତୁମ୍ଭ ବିନା କହିବାକୁ ହୋଇବ କେ ଶକ୍ତ ।
ଏରୂପେ ଶୁଣି ଶ୍ରୀକୃଷ୍ଣ ବୋଇଲେ ହେ ତାତ
କହିବା ପାଇଁକି ଯୋଗ୍ୟ ନୁହେ ଏ ବୃତ୍ତାନ୍ତ ।
ଦେବତା ଅଟନ୍ତି ଯେଉଁ ଚନ୍ଦ୍ର ସୂର୍ଯ୍ୟ ଦୁଇ
ତାଙ୍କ ଛିଦ୍ର କିରୂପରେ କହିବି ବତାଇ ।

ଶାସ୍ତ୍ରରେ ତ ଲେଖାଅଛୁ ଜ୍ଞାନବନ୍ତ ଜନ
ନ କହିବ ସାଧୁଙ୍କର ଛିଦ୍ର କଥାମାନ ।
ଏ ସକାଶୁ ଏହା ଛାଡ଼ି ଅନ୍ୟ କଥା ଯେବେ
ପଚାରିବ ଏହିକ୍ଷଣି କହିବି ମୁଁ ତେବେ ।
ଏହା ଶୁଣି ବ୍ରଜରାଜ ବିନମ୍ର ଭାବରେ
ବୋଇଲେ ବଞ୍ଚନା ମୋତେ ନ କର କଥାରେ
ଅଦୃଶ୍ୟ ହୋଇଲେ ହେଲେ ରାହୁଗ୍ରାସ ଘେନି
ପୁଣ୍ୟଦ ଅଟନ୍ତି ଯେଉଁ ଚନ୍ଦ୍ର ସୂର୍ଯ୍ୟ ବେନି ।
ତାହାଙ୍କ ବିଷୟ ଯେବେ ଭକ୍ତିଭରେ ମୁହିଁ
ଶୁଣିବି ବୋଲୁଛି କିଛି ଦୋଷ ହେବ ନାହିଁ ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ପିତାଙ୍କ ବଚନ
ବୋଇଲେ କହୁଛି ତେବେ ଶୁଣ ଦେଇ ମନ ।
ଏକଦିନେ ଯମଦଗ୍ନି ମୁନି ହରଷରେ
ରେଣୁକାଦେବୀଙ୍କୁ ଘେନି ନର୍ମଦାର ତୀରେ ।
ନିର୍ଜନ ବନରେ ମିଳି କେଳି ଆରମ୍ଭିଲେ
ବିଚିତ୍ର କାନନ ଶୋଭା ଦରଶନ କଲେ ।
ଯେଉଁଠାରେ ପଲ୍ଲବିତ ଶାଳ ତାଳ ଚୂତ
ତରୁଗଣ ଦିଶୁଥିଲେ ଅତ୍ୟନ୍ତ ଶୋଭିତ ।
କେଉଁଠାରେ ପୁଷ୍ପଭରେ ଅବନତ ହୋଇ
ଚମ୍ପକ ଅଶୋକ ଆଦି ବୃକ୍ଷେ ଛନ୍ତି ରହି ।
ସୁଗନ୍ଧ ସଜଳକଣା ମନ୍ଦ ମନ୍ଦ ବାତ
ବହିବାରୁ ଉଲ୍ଲସିତ ହେଉଥିଲା ଚିତ୍ତ ।
ଏମନ୍ତ ବନରେ ନିଜ ପ୍ରିୟାଙ୍କର ସଙ୍ଗେ
ବିହାର କଲେ ସେ କ୍ରୀଡ଼ା କରି ନାନାରଙ୍ଗେ
ସ୍ୱଭାବେ ସୁନ୍ଦରୀ ଶ୍ରେଷ୍ଠ ରେଣୁକା କାମିନୀ
ଥିଲେ ପୁଣି ଅଙ୍ଗେ ନାନା ଅଳଙ୍କାର ଘେନି ।
ପୂର୍ଣ୍ଣଚନ୍ଦ୍ର ପରି ମୁଖ ଅଟେ ତାହାଙ୍କର
ଚମ୍ପକ କୁସୁମ ପରି ଶରୀର ସୁନ୍ଦର ।
ତାଙ୍କୁ ଘେନି ମୁନି ହୋଇ କାମରେ ଆସକ୍ତ
ସୁରତ ରସରେ ତହିଁ ବଳାଇଲେ ଚିତ୍ତ ।
ଏହି ସମୟରେ ସୂର୍ଯ୍ୟ ଦ୍ୱିଜ ରୂପେ ଆସି
କହିଲେ ବଚନ ମୁନିବରଙ୍କୁ ଉଦ୍ଦେଶି ।
ବୋଇଲେ ହେ ଯମଦଗ୍ନି ବ୍ରହ୍ମାଙ୍କର ତୁମ୍ଭେ
ପ୍ରପୌତ୍ର ଅଟ ଏ କଥା ଜାଣିଅଛୁ ଆମ୍ଭେ ।
ସକଳ ବେଦ ଶାସ୍ତ୍ରରେ ହୋଇଛ ନିପୁଣ
ତପସ୍ୱୀ ମଧ୍ୟରେ ନାହିଁ କେ ତୁମ୍ଭ ସମାନ ।
ତୁମ୍ଭେ ଯେଉଁ ଶାସ୍ତ୍ରମାନ କରିଛ ନିର୍ମିତ
ତାକୁ ପଢ଼ି ଅନ୍ୟଲୋକେ ହୁଅନ୍ତି ପଣ୍ଡିତ ।
ବେଦ ନିରୂପିତ ଧର୍ମ ଜଗତରେ ସାର
ଅଧର୍ମ ସେ ନାହିଁ ଯହିଁ ବେଦର ବିଚାର ।
ଏହା ଜାଣି ଜାଣି ତୁମ୍ଭେ ଦିବସରେ ରତି
କରୁଛ କିରୂପେ ଛାଡ଼ି ଅଧର୍ମରୁ ଭୀତି ।
ସକଳ ଧର୍ମ କର୍ମରେ ସାକ୍ଷୀ ଅଟେ ମୁହିଁ
ସେ ଘେନି କହୁଛି ତୁମ୍ଭ ପାଶେ ଆସି ଧାଇଁ ।
ଏରୂପେ ସୂର୍ଯ୍ୟଙ୍କ ବାକ୍ୟ ଶୁଣି ଯମଦଗ୍ନି
କହିଲେ ତେଜରେ ନିନ୍ଦା କରି କାଳଅଗ୍ନି ।
ମଇଥୁନ ତ୍ୟାଗ କରି ରେଣୁକା ସେ କାଳେ
ଲଜ୍ଜିତା ହୋଇ ରହିଲେ ବସ୍ତ୍ର ଅନ୍ତରାଳେ ।
ମୁନି ବୋଇଲେ ହେ ବିପ୍ରରୂପୀ ଦିନେଶ୍ୱର
ପଣ୍ଡିତ ବୋଲି ଯେ ତୁମ୍ଭେ ନିଜେ ଗର୍ବ କର ।
ଭୃଗୁଙ୍କ ମୁଖରୁ ମୁହିଁ ପଢ଼ି ସବୁ ବେଦ
ଜାଣିଅଛୁ ଧର୍ମାଧର୍ମ ତତ୍ତ୍ୱର ପ୍ରଭେଦ ।
ଅଜ୍ଞାନୀ ପୁରୁଷ କଲେ ଗର୍ହିତ କରମ
ପ୍ରାପ୍ତ କରନ୍ତି ତାହାକୁ ସକଳ ଅଧର୍ମ ।
କିନ୍ତୁ ତେଜୋବନ୍ତ ଅଟେ ଯେବଣ ପୁରୁଷ
ସାମାନ୍ୟ କଥାରେ ତାକୁ ନ ଲାଗଇ ଦୋଷ ।
ଯେଉଁ ରୂପେ ହୁତାଶନ ଭକ୍ଷାଭକ୍ଷ୍ୟ ଦ୍ରବ୍ୟ
ସମାନ ଭାବରେ ଦଗ୍‌ଧ କରିଦିଏ ସର୍ବ ।
ଅନ୍ୟଲୋକଙ୍କ ପକ୍ଷରେ ଧର୍ମ ପୁଣି ତୁମ୍ଭେ
ଫଳଦାତା କର୍ମ ସାକ୍ଷୀ ଅଟ ଜାଣୁ ଆମ୍ଭେ ।
ବୈଷ୍ଣବଙ୍କ ବିଷୟରେ ତୁମ୍ଭମାନଙ୍କର
ବିଚାର କରିବା ପାଇଁ ନାହିଁ ଅଧିକାର ।
ବିଷ୍ଣୁ ଭକ୍ତମାନଙ୍କର କେଉଁଠାରୁ ହେଲେ
ଅଶୁଭ ନୁହଇ ଏହା ଜାଣିଥାଅ ଭଲେ ।
ଶ୍ରୀହରିଙ୍କ ସୁଦର୍ଶନ ଚକ୍ର ନିରନ୍ତରେ
ବିଷ୍ଣୁ ଭକତଙ୍କୁ ରକ୍ଷା କରେ ଯତନରେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯମ ଆଦିକରି
ଶାସନ କରିତା କେହି ନୁହନ୍ତି ଆମ୍ଭରି ।
କଷ୍ଟତ ମାତ୍ରକେ ମୁହିଁ ସର୍ବ ଦେବତାଙ୍କୁ
ସମର୍ଥ ହୋଇ ପାରଇ ଭସ୍ମ କରିବାକୁ ।
ଧର୍ମବନ୍ତ ହୋଇ ତୁମ୍ଭେ ଆମ୍ଭଠାକୁ ଆସି
କହୁଅଛ କେତେ ନିଜ ଗରିମା ପ୍ରକାଶି ।

ମୋହର ଶାସକ ପ୍ରଭୁ ଶ୍ରୀକୃଷ୍ଣ ଅଟନ୍ତି
ତାଙ୍କ ବିନା ନାହିଁ ଆଉ କାହାର ଶକତି ।
ତୁମ୍ଭେ ଏବେ ନିର୍ଜ୍ଜନରେ ରସଭଙ୍ଗ ମୋର
କଲ ଯାହା ମୂର୍ଖପଣେ ଆହେ ଦିବାକର ।
ଏ ସକାଶୁ ମୋର ଶାପେ ରାହୁଗ୍ରସ୍ତ ହେବ
ତେଜ ଓଜସବୁ କାହିଁ ଦୂର ହୋଇଯିବ ।
ଯେଉଁ ମେଘମାନେ ତୁମ୍ଭ ତେଜେ ଦୂର ହୋଇ
ଯାଉଛନ୍ତି ସେହିମାନେ ରହିବେ ଘୋଡ଼ାଇ ।
ଏମନ୍ତ ଦ୍ୱିଜଙ୍କଠାରୁ ଶୁଣି ଦିନପତି
ପୁଟାଞ୍ଜଳି ହୋଇ ତାଙ୍କ ଆଗେ କଲେ ସ୍ତୁତି ।
ବୋଇଲେ ହେ ମୁନି ତୁମ୍ଭେ ଅଟ ତ ବ୍ରାହ୍ମଣ
ସେଯେନ ସବୁର ପୂଜାଯୋଗ୍ୟ ଅଟ ଜାଣ ।
ଅବଧ୍ୟ ଅଟନ୍ତି ସବୁଠାରେ ବିପ୍ରମାନେ
ସମସ୍ତଙ୍କ ସ୍ତୁତିଯୋଗ୍ୟ ସଦା ସବୁସ୍ଥାନେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଧର୍ମଆଦି କରି
ଅଛନ୍ତି ଯେତେ ଦେବତା ଜଗତରେ ପରି ।
ସମସ୍ତେ ସ୍ତୁତି କରନ୍ତି ବ୍ରାହ୍ମଣଙ୍କୁ ପୁଣି
ବିପ୍ରରୂପେ ପ୍ରକାଶିତ ପ୍ରଭୁ ଜନାର୍ଦ୍ଦନ ।
ବ୍ରାହ୍ମଣ ଯେ ଦ୍ରବ୍ୟଦାନ କରନ୍ତି ଅଗ୍ନିରେ
ଗ୍ରହଣ କରନ୍ତି ତାହା ଇନ୍ଦ୍ରଆଦି ସୁରେ ।
ଆପଣ ବୈଷ୍ଣବ ମଧ୍ୟେ ଅଟନ୍ତି ଅଧିକ
କହୁଅଛି କ୍ଷମାକର ମୋର ଦୋଷଯାକ ।
ବଇଷ୍ଣବମାନଙ୍କର ହୃଦୟରେ କୋପ
ଜନମିଲେ ତ୍ରିଲୋକ ହୋଇପାରେ ଲୋପ ।
ଯେଉଁ ବୈଷ୍ଣବଙ୍କ ହୃଦେ ସାକ୍ଷାତେ ଶ୍ରୀହରି
ଅଛନ୍ତି ତାଙ୍କର କ୍ରୋଧ ଜନ୍ମିଛି କିପରି ।
ଏହିରୂପେ ଦିବାକର ସ୍ତୁତି କଲାବେଳେ
କ୍ରୋଧ ଆସି ଆକ୍ରମଣ କଲା ତାଙ୍କୁ ବଳେ ।
ସେ ସକାଶୁ ବୋଇଲେ ହେ ବ୍ରାହ୍ମଣ ଯେ ତୁମ୍ଭେ
ଶାପଦେଲେ ଦୋଷ କିଛି ନ କଲେହେଁ ଆମ୍ଭେ
ମୁଁ ମଧ୍ୟ କ୍ରୋଧରେ ଶାପ ଦେଉଛି ତୁମ୍ଭଙ୍କୁ
ବିବେଚନା କରି ଆଗେ ତୁମ୍ଭର ଦୋଷକୁ ।
ନୋହିଲେ ବୋଲିବେ ଲୋକେ ସୂର୍ଯ୍ୟଦେବଙ୍କର
ପ୍ରଭାବ ସମ୍ପୂର୍ଣ୍ଣରୂପେ ହୋଇଗଲା ଦୂର ।
ଷଡ଼ିପୁ ହସ୍ତରେ ତୁମ୍ଭେ ପରାଭବ ପାଇ
ମରିବ ଏ କଥା ଆନ ନ କରିବେ କେହି ।

ଏରୂପେ ସୂର୍ଯ୍ୟଙ୍କଠାରୁ ଶୁଣି ଦ୍ୱିଜବର
କହିଲେ ପୁଣି କ୍ରୋଧରେ କମ୍ପାଇ ଅଧର ।
ବୋଇଲେ ହେ ସୂର୍ଯ୍ୟ ତୁମ୍ଭେ ଶତ୍ରୁଙ୍କ ହସ୍ତରେ
ପରାସ୍ତ ହୋଇବ ବୋଲି ଜାଣ ନିଶ୍ଚୟରେ ।
ଏହିପରି ଦୁହିଙ୍କର ହୁଅନ୍ତେ କଳହ
ସେ କଥାକୁ ଜାଣି ବ୍ରହ୍ମା ଲୋକପିତାମହ ।
କଶ୍ୟପଙ୍କୁ ସଙ୍ଗେ ଘେନି ସେଠାକୁ ଆସିଲେ
ସୂର୍ଯ୍ୟଙ୍କୁ ନାନାପ୍ରକାର ପ୍ରବୋଧନା କଲେ ।
ସେ ଅନ୍ତେ ଯମଦଗ୍ନିଙ୍କ ମୁଖକୁ ଅନାଇ
କହିଲେ ତାହାଙ୍କୁ ମଧ୍ୟ ବହୁତ ବୁଝାଇ ।
ପୁଣି ସୂର୍ଯ୍ୟଦେବତାଙ୍କୁ ବୋଇଲେ ହେ ତୁମ୍ଭେ
କ୍ଷମା କର ବ୍ରାହ୍ମଣଙ୍କ ଦୋଷ ବୋଲୁ ଆମ୍ଭେ ।
ନାରାୟଣ ସ୍ୱରୂପ ତ ଅଟନ୍ତି ବାହ୍ମଣ
ତାହାଙ୍କୁ ଦଣ୍ଡ ଦେବାର ଅନୁଚିତ ଜାଣ ।
ତାଙ୍କ ଶାପ ଉପଶମ କରିବାକୁ ମୁହିଁ
ଆସିଛି ଭୃଗୁଙ୍କଠାରୁ ଅନୁମତି ପାଇ ।
କଶ୍ୟପ ମରୀଚି ଦୁହେଁ ମଧ୍ୟ ସେହିପରି
ସ୍ତୁତିକଲେ ତୁମ୍ଭଠାକୁ ଆସିବାକୁ ହେରି ।
ଶାନ୍ତ ହୁଅ ଏବେ ତୁମ୍ଭେ ଆହେ ଦିନେଶ୍ୱର
ସାକ୍ଷୀ ହୋଇଥିବ ସର୍ବଲୋକଙ୍କ ମଧ୍ୟର ।
କେତେବେଳେ ମେଘ ମଧ୍ୟେ ଆବୃତ ହୋଇବ
କ୍ଷଣକ ମଧ୍ୟରେ ତହୁଁ ମୁକତି ପାଇବ ।
ନିୟତ ଅଧିକ ବର୍ଷେ ରାହୁଗ୍ରହ ଆସି
ହେଉଥିବ ବଳେ ତୁମ୍ଭ ମଣ୍ଡଳକୁ ଗ୍ରାସି ।
ସେତେବେଳେ କେତେକାଳ ଅଦୃଶ୍ୟହୋଇବ
ତୁମ୍ଭଙ୍କୁ ଦେଖିଲେ ଲୋକ ପାପମୁକ୍ତ ହେବ ।
ଆଉ ସବୁ ସମୟରେ ପୁଣ୍ୟ ଦୃଶ୍ୟ ହୋଇ
ଥିବ ଏହା ନିଶ୍ଚୟରେ କହୁଅଛି ମୁହିଁ ।
ଯେଉଁ ଲୋକ ପ୍ରତିଦିନ ପ୍ରଭାତ କାଳରେ
ନମସ୍କାର କରୁଥିବ ତୁମ୍ଭଙ୍କୁ ଭକ୍ତିରେ ।
ତାହାର ଦୁରିତରାଶି ବିନଷ୍ଟ ହୋଇବ
ଦେହରେ ଉତ୍ତମ ତେଜ ବିରାଜି ଉଠିବ ।
ଜନ୍ମ ଚତୁର୍ଥ ସପ୍ତମ ଅଷ୍ଟମ ଦ୍ୱାଦଶ
ଦଶମ ରାଶିରେ ଜାତ ଯେବଣ ମନୁଷ୍ୟ ।
ତାହାଙ୍କ ପକ୍ଷେ ଗ୍ରହଣ ଦର୍ଶନ ଅଶୁଭ
ହୋଇବ ନିଶ୍ଚୟ ଜାଣ ଆହେ ଗ୍ରହାଧିପ ।

ଆବର ମଧ୍ୟାହ୍ନ କାଳେ ଅସ୍ତ ସମୟରେ
ଘନ ଆବରଣେ ଅବା ଜଳର ମଧ୍ୟରେ ।
ଅର୍ଦ୍ଧୋଦୟ କାଳରେ ଯେ ଦେଖିବ ତୁମ୍ଭଙ୍କୁ
ପାତକ ଚରଣ ନିଶ୍ଚେଁ କରିବ ତାହାଙ୍କୁ ।
ଶ୍ୱଶୁର ଶାଳକ ଭାର୍ଯ୍ୟା ଯଜାଣରୁ ତୁମ୍ଭ
ହତଭଗା ହେବ ଏହା ବୋଲୁଅଛୁଁ ଆମ୍ଭେ
ମାଳ ସୁମାଳି ମୁଣ୍ଡରେ ଶିବଙ୍କ ସହିତ
ଆସ୍ଫାଳନ କରି ତହିଁ ହେବ ପରାଜିତ ।
ଏମନ୍ତ କହି ସୂର୍ଯ୍ୟଙ୍କୁ ପ୍ରବୋଧନା କରି
ମୁନିଙ୍କୁ ବୋଇଲେ ଶୁଣ ଆହେ ତପବର ।
ଶାନ୍ତ ହୋଇ ଏବେ ତୁମ୍ଭେ ଯାଅ ନିଜ ସ୍ଥାନେ
ସୂର୍ଯ୍ୟଠାରେ ବୈରଭାବ ନ ରଖିଣ ମନେ ।
ତୁମ୍ଭ ବ୍ରହ୍ମତେଜ ବଳେ ଏ ତିନି ଜଗତ
ମୁହୂର୍ତ୍ତ ମଧ୍ୟରେ ହୋଇପାରେ ଭସ୍ମସାତ ।
ସୂର୍ଯ୍ୟଙ୍କ ପାଳକ ତୁମ୍ଭେ ଅଟ ତପୋବନ୍ତ
ତୁମ୍ଭର ପାଳକ ମଧ ସ୍ୱାହାଦେବୀ କାନ୍ତ ।
ପରସ୍ପରେ ପୂଜାଯୋଗ୍ୟ ଅଟ ତୁମ୍ଭେ ଦୁହେଁ
କଥାପି ବଇର ଭାବ ପ୍ରକାଶିଲ କାହେଁ ।

ଶ୍ରୀହରିର ଅଂଶେ ଜନ୍ମିବେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ
ତାହାଙ୍କ ଅସ୍ତ୍ରରେ ତୁମ୍ଭେ ପାଇବ ନିଧନ ।
ପୂର୍ବରେ ଯେ ଯେଉଁ କର୍ମ କରିଥାଏ ତାହା
ଭୋଗ କରେ ଅନ୍ୟଜନ୍ମେ ଅଟେ ଋଷିନାହା ।
ତୁମ୍ଭଠାରୁ ନାରାୟଣ ଅଂଶେ ଏକସୁତ
ଜନମିବେ ହୋଇବେ ସେ ମହାବଳବନ୍ତ ।
ଏକବିଂଶ ଥର ବୁଲି ପୃଥିବୀକୁ ସେହି
ନିକ୍ଷତ୍ର କରିବେ ହସ୍ତେ ଧନୁଶର ବହି ।
ତୁମ୍ଭର ମରଣ ହେବ ଯଣର କାରଣ
ମୁଖ୍ୟାନ୍ତ ପାଇବ ଯବୁକାଳେ ତୁମ୍ଭେ ଜାଣ ।
ଏମନ୍ତ କହିଣ ବ୍ରହ୍ମା ନିଜପୁରେ ଗଲେ
ଯମଦଗ୍ନି ସୂର୍ଯ୍ୟ ଦୁହେଁ ନିବୃତ୍ତ ହୋଇଲେ ।
ସେହି କାରଣରୁ ଆହେ ବ୍ରଜ ଅଧୀଶ୍ୱର
ଗ୍ରାସ କରୁଛି ରବିଙ୍କୁ ସିଂହିକା କୁମର ।
ଚନ୍ଦ୍ର ଗ୍ରହଣ ବିଷୟ କହୁଅଛୁ ଏବେ
ଶୁଣ ସାବଧାନ ହୋଇ ଇଚ୍ଛା ହୁଏ ଯେବେ ।
ଏହିଠାରେ ସୂର୍ଯ୍ୟଙ୍କର ଗ୍ରହଣ ବୃତ୍ତାନ୍ତ
ଲକ୍ଷଣମୋହନ ଗୀତରେ କଲେ ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର
ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ତତ୍ତ୍ୱ ବର୍ଣ୍ଣନେ ନାମ ଊନାଶୀତିତମୋଽଧ୍ୟାୟଃ ।

---

## ଅଶୀତିତମ ଅଧ୍ୟାୟ

### ଚନ୍ଦ୍ରଙ୍କ ଦ୍ୱାରା ଗୁରୁପତ୍ନୀ ହରଣ ବୃତ୍ତାନ୍ତ

ନନ୍ଦଙ୍କ ମୁଖକୁ ଚାହିଁ ପ୍ରଭୁ ବ୍ରହ୍ମଋଷି
କହନ୍ତି ଚନ୍ଦ୍ରଗ୍ରହଣ ବୃତ୍ତାନ୍ତ ବିଶେଷି ।
ପୁରାଣ ସମ୍ବାଦ ଶୁଣ ଆହେ ବ୍ରଜେଶ୍ୱର
ଯେଉଁରୂପେ କଳଙ୍କିତ ହେଲେ ନିଶାଚର ।
ପୂର୍ବକାଳେ ଗୁରୁପତ୍ନୀ ତାରା ମହାସତୀ
ସ୍ନାନ ସାରି ଆସୁଥିଲେ ଗୃହକୁ ଝଟତି ।
ସେହି ସମୟରେ ଚନ୍ଦ୍ର ରଥପରେ ବସି
ଯାତ୍ରା କରୁଥିଲେ ବନବିହାର ଉଦ୍ଦେଶି ।
ଦେଖିଲେ ମାର୍ଗରେ ତାରାଦେବୀ ଆସୁଛନ୍ତି
ଚମ୍ପକ କୁସୁମ ପରି ଦିଶେ ଦେହ କାନ୍ତି ।

ନବ ଯଉବନବତୀ ଅତ୍ୟନ୍ତ ସୁନ୍ଦରୀ
ନାନାବିଧ ସ୍ୱର୍ଣ୍ଣରତ୍ନ ଅଳଙ୍କାର ଭରି ।
କୁସୁମିତ ଲତାପରି ପାଉଅଛି ଶୋଭା
ଦେଖିବା ମାତ୍ରକେ ମୁନି ମନ ହେବ ଲୋଭା ।
କୋମଳାଙ୍ଗୀ ସ୍ମିତମୁଖୀ ଘନ ପୀନସ୍ତନୀ
ସୁଶ୍ରୋଣୀ ଚାରୁବଦନା ତ୍ରୈଲୋକ୍ୟ ମୋହିନୀ ।
ମସ୍ତକରେ ସୁଶୋଭିତ କସ୍ତୁରୀ ତିଳକ
ତା ମଧ୍ୟେ ସିନ୍ଦୂର ବିନ୍ଦୁ ଦିଶେ ଜକଜକ ।
ନୀଳୋତ୍ପଳ ଦଳତୁଲ୍ୟ ସୁଚାରୁ ନୟନ
ତହିଁରେ କଜ୍ଜ୍ୱଳ ରେଖା ଅତ୍ୟନ୍ତ ଶୋଭନ ।

ତାଙ୍କୁ ଦେଖି ନିଶାପତି ମୋହିତ ହୋଇଲେ
ଚେତନା ହରାଇ ରଥ ଉପରେ ପଡ଼ିଲେ ।
କ୍ଷଣକେ ଅନ୍ତରେ ପୁଣି ଉଠି ତତକାଳେ
ଗୁରୁପତ୍ନୀଙ୍କର ହସ୍ତ ଧରିଆଣି ବଳେ ।
କାମରେ ଆସକ୍ତ ହୋଇ ଆଲିଙ୍ଗନ କରି
ମୁଖେ ଚୁମ୍ବ ଦେଲେ କେଶ ପାଶକୁ ଓଟାରି ।
ସମ୍ଭୋଗ କରିବାପାଇଁ ବସ୍ତରନ୍ତେ ମନେ
କହିଲେ ତାରକା ତାଙ୍କୁ କୋମଳ ବଚନେ
ବୋଇଲେ ହେ ଚନ୍ଦ୍ର ମୋତେ ପରିତ୍ୟାଗ କର
ନୋହିଲେ ମହାପାତକ ହୋଇବ ତୁମ୍ଭର ।
ଜାଣିଛ ତ ଅଟେ ମୁହିଁ ଗୁରୁଙ୍କ ରମଣୀ
ପତିବ୍ରତା ସତୀ ପୁଣି ଅଟଇ ବ୍ରାହ୍ମଣୀ ।
ଗୁରୁପତ୍ନୀ ସଙ୍ଗମରେ ବ୍ରହ୍ମହତ୍ୟା ପାପ
ଉପସ୍ଥିତ ହୋଇ ବଳେ ଦିଅଇ ସନ୍ତାପ ।
ବିପ୍ରପତ୍ନୀ ଗୁରୁପତ୍ନୀ ଯେବେ ପତିବ୍ରତା
ହୋଇଥାନ୍ତି ତେବେ ଲାଗେ ଶତେ ବ୍ରହ୍ମହତ୍ୟା
ଧର୍ମରେ ତୁମ୍ଭର ମାତୃ ସ୍ୱରୂପା ତ ମୁହିଁ
ହରଣ କରୁଛ ମୋତେ କାମେ ମତ୍ତ ହୋଇ ।
ସ୍ୱଧର୍ମକୁ ରକ୍ଷା କରି ଏବେ ଦୂର ହୁଅ
ନୋହିଲେ ସ୍ତ୍ରୀବଧ ପାପ ପାଇବ ନିଶ୍ଚୟ ।
ଏରୂପେ ତାରକା ଦେବୀ କହିବା କାଳରେ
ନ ଶୁଣି ଚନ୍ଦ୍ର ତାହାଙ୍କୁ ବସାଇ କୋଳରେ
ନିର୍ଜନ ବନ ମଧ୍ୟକୁ ରଥ ଚଳାଇଲେ
ତା ଦେଖିଣ ତାରା କ୍ରୋଧେ ଶାପ ତାଙ୍କୁ ଦେଲେ
ବୋଇଲେ ହେ ଚନ୍ଦ୍ର ମୋତେ ହରୁଅଛ ଯେଣୁ
କଳଙ୍କ ହୋଇବ ମୋର ଶାପଯୋଗେ ତେଣୁ
ଆଉର ତୁମ୍ଭଙ୍କୁ ରାହୁ କରିବ ଯେ ଗ୍ରାସ
ସେହି ସମୟରେ ତୁମ୍ଭେ ହେବ ପାପଦୃଶ୍ୟ ।
କେତେଦିନ ପରେ ଯକ୍ଷ୍ମା ରୋଗରେ ପୀଡ଼ିତ
ହୋଇବ ଯେବେ ଧରମଶାସ୍ତ୍ର ଅଟେ ସତ ।
ଏରୂପେ ଚନ୍ଦ୍ରଙ୍କୁ ଶାପ ଦେଇ ସେ ସୁନ୍ଦରୀ
କନ୍ଦର୍ପକୁ ପୁଣି ଶାପ ଦେଲେ କୋପ କରି ।
ବୋଇଲେ ରେ କାମ ମୋତେ ଚନ୍ଦ୍ର ସହିତରେ
ଯୋଗ କରାଇଲୁ କିଛି ନ ଭାବି ଚିତ୍ତରେ ।
ସେ ଧକାଶୁ ଶାପ ଦେଉଅଛି ଏବେ ଯେଣ
ଅନଳରେ ଭସ୍ମ ହେବ ତୋର ଅପଘନ ।

ଏମନ୍ତ ବୋଲିଣ ଦେବୀ ମଉନେ ରହିଲେ
ତଥାପି ଚନ୍ଦ୍ର ସେ କଥା କର୍ଣ୍ଣେ ନ ଶୁଣିଲେ ।
କାମେ ଅନ୍ଧ ହୋଇଥାଏ ଯେଉଁ ମୂଢ଼ପ୍ରାଣୀ
ହିତ ବା ଅହିତ କିଛି ନ ପାରେ ସେ ଜାଣି ।
କାମରେ ଅଜ୍ଞାନ ଚନ୍ଦ୍ର ଗୁରୁପତ୍ନୀ ତୁଲେ
କ୍ରୀଡ଼ା ଆରମ୍ଭିଲେ ମାତି ସୁରତରସରେ ।
ସୁଶୀତଳ ସରୋବର ନଦ ନଦୀ ପାଶେ
କୁସୁମିତ ମନୋରମ କୁଟୀର ଆବାସେ ।
କୁସୁମ ଶଯ୍ୟାରେ ନବପତ୍ର ଉପାଧାନ
ପକାଇ ଉତ୍ତମରୂପେ କରିଣ ଯତନ ।
ଦେହରେ ସୁଗନ୍ଧ ଶୀତ ଚନ୍ଦନକୁ ବୋଳି
ଶୟନ କରିଣ ସୁଖେ କଲେ କାମ କେଳି ।
ସମ୍ଭୋଗ ସୁଖରେ ମଗ୍ନ ହୋଇ ନିରନ୍ତର
ନ ଜାଣିଲେ ଗଲା କେତେ କ୍ଷଣଦା ବାସର ।
ସେ ଅନ୍ତରେ ପୁଣି ଚନ୍ଦ୍ରଶୈଳ ବନଦେଶେ
ପ୍ରବେଶ ହୋଇ ବିହାର କଲେ ସେ ହରଷେ
ଅସ୍ତଶୈଳ କଳ୍ପବୃକ୍ଷ ତୃଣର ଆଶ୍ରମ
କୁସୁମିତ ତରୁଲତା ମନୋରମ ଧାମେ ।
କାମଧେନୁମାନଙ୍କରେ କ୍ଷୀରପାନ କରି
କ୍ଷୀରୋଦ ତଟରେ କ୍ରୀଡ଼ାକଲେ ଯେଷ୍ଟପରି ।
ସେ ସମୟେ ହୁତାଶନ ଦିବ୍ୟ ବସ୍ତ୍ର ଆଣି
ଦେଲେ ତାହାଙ୍କର ତୋଷ ହେବ ବୋଲି ଜାଣି
ସୁବର୍ଣ୍ଣ ମାଳିକା ରତ୍ନଛତ୍ର ସହିତରେ
ବରୁଣ ଦେବତା ଆଣି ଦେଲେ ସେକାଳରେ
ସେ ଅନ୍ତରେ ଦୈତ୍ୟଗୁରୁ ବଳି ରାଜାଙ୍କର
ଗୃହରୁ ଆସି ସେଠାରେ ମିଳିଲେ ସତ୍ୱର ।
ତାଙ୍କୁ ଦେଖି ନିଶାକର ଚରଣରେ ପଡ଼ି
ଅଭିନନ୍ଦିଲେ ସମ୍ମୁଖରେ ଶିରେ କର ଯୋଡ଼ି
ତାରକା ହରଣ କଥା କହି ସେ କାଳରେ
ଶରଣ ପଶିଲେ ଭୟ କରିଣ ମନରେ ।
ତାହା ଦେଖି ଶୁକ୍ରମୁନି ଦୟାକରି ଚିତ୍ତେ
କହିଲେ ମିଷ୍ଟ ବଚନ ଚନ୍ଦ୍ରଙ୍କ ଅଗ୍ରତେ ।
ବୋଇଲେ ହେ ବତ୍ସ ଶୁଣ କହୁଅଛି ମୁହିଁ
ଗୁରୁପତ୍ନୀଙ୍କୁ ହରିବା ଉଚିତ ନୁହଇ ।
ଗୁରୁ ତୁମ୍ଭର ଅଟନ୍ତି ସେ ମହାଦେବଙ୍କର
ଶୁଦ୍ଧାଙ୍କର ପ୍ରୀତ ସେହି ଅଟନ୍ତି ଆଉର ।

ସକଳ ଦେବତାଙ୍କର ପରମ ପୂଜିତ
ହୋଇଅଛନ୍ତି ସର୍ବଦା ଜାଣ ଆହେ ସୁତ ।
ସେ ସକାଶୁ ବୋଲୁଅଛି ତାରକାକୁ ଦେଇ
ଶରଣ ପଶ ତାହାଙ୍କ ଚରଣରେ ଯାଇ ।
ମାତୃ ସମାନ ଅଟନ୍ତି ଗୁରୁଙ୍କ ଭାରଯା
ତାଙ୍କୁ ହରିବାକୁ ବୃଥା ବଳାଇଲ ମଜ୍ଜା ।
ପତିବ୍ରତା ଗୁରୁପତ୍ନୀ ହୋଇଥାନ୍ତି ଯେବେ
ତାହାଙ୍କୁ ହରିଲେ ବ୍ରହ୍ମହତ୍ୟା ହୁଏ ତେବେ ।
ସେ ପାପରେ ନାନାକ୍ଳେଶ ଭୋଗକରି ଲୋକ
ଦେହ ଅନ୍ତେ ପୁଣି ଭୋଗକରେ କୁମ୍ଭୀପାକ ।
ବ୍ରହ୍ମାଙ୍କ ଆୟୁଷ ଶେଷ ହେବା ଯାଏ ସେହି
ଯମଦୂତ ହସ୍ତେ ନାନା ଯାତନା ସହଇ ।
କଷ୍ଟପୁରେ ପୂର୍ବକୃତ କର୍ମ ଭୋଗ ହୁଏ
ସେ କଥା ଅନ୍ୟଥା କରି ନ ପାରନ୍ତି କେଏ ।
ଏହିଠାରେ ତାହାଙ୍କର ହରଣ ବୃତ୍ତାନ୍ତ
ଏଷନମୋହନ ଗୀତରେ କଲି ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଚନ୍ଦ୍ରଙ୍କ ଦ୍ୱାରା ଗୁରୁପତ୍ନୀ ହରଣ ବୃତ୍ତାନ୍ତ ବର୍ଣ୍ଣନେ ନାମ ଅଶୀତିତମୋଽଧ୍ୟାୟଃ ।



## ଏକାଶୀତିତମ ଅଧ୍ୟାୟ

## ଶିବଙ୍କର ଚନ୍ଦ୍ରଙ୍କ ପ୍ରତି କୋପ ଓ ଶୁକ୍ର ମୁନିଙ୍କ କର୍ତ୍ତୃକ କ୍ଷମା ପ୍ରାର୍ଥନା

ଶ୍ରୀକୃଷ୍ଣ ବୋଇଲେ ତାତ ଶୁଣ ମନଦେଇ
ଏହି ସମୟରେ ସୁରସେନା ଆସି ତହିଁ ।
ଆକାଶ ମାର୍ଗରୁ ଖସି ପ୍ରବେଶ ହୋଇଲେ ।
ରଣଶସ୍ତ୍ର ଅସ୍ତ୍ରମାନ ହସ୍ତେ ଧରିଥିଲେ ।
ସହକୋଟି ପତାକା ଶତକୋଟି ମହାରଥ
ଲକ୍ଷକୋଟି ଗଜ ଆସିଥିଲେ ତାଙ୍କ ସାଥ ।
ତାର ଶତଗୁଣ ଅଶ୍ୱ ଷଡ଼୍‌ଗୁଣ ପଦାତି
ପଞ୍ଚଲକ୍ଷ ବାଦ୍ୟକାର ରହିଥିଲେ କତି ।
ଐରାବତ ମହେନ୍ଦ୍ର ଯେ ଶ୍ୱେତାଶ୍ୱ କୁବେର
ବରୁଣ ଅନଳ ଦେବ ସହିତେ ସମୀର
ମହିଷ ଉପରେ ବସି ଆସିଲେ ଶମନ
ରଥ ଆରୋହି ଆସିଲେ ତ୍ରିପୁରାଙ୍କ ରମଣ ।
ଗଜରେ ବସି ଆସିଲେ ଈଶାନ ଦୈବତ
ନାଗ ବାହନ ଆରୋହି ଆସିଲେ ଅନନ୍ତ ।
ଆବର ଗନ୍ଧର୍ବ ଯକ୍ଷ ପନ୍ନଗ କିନ୍ନର
ମୁନିମାନଙ୍କ ସହିତେ ସିଦ୍ଧ ବିଦ୍ୟାଧର ।
ସମସ୍ତେ ଆସି ସେଠାରେ ଉପସ୍ଥିତ ହେଲେ
ଯୁଦ୍ଧ କରିବା ସକାଶେ ଚନ୍ଦ୍ରଙ୍କୁ ଡାକିଲେ ।
ସେମାନଙ୍କୁ ଦେଖି ଶୁକ୍ରମୁନି ନିର୍ଭୟରେ
ଅସୁରସୈନ୍ୟ ଡକାଇ ଆଣିଲେ ସତ୍ୱରେ ।
କ୍ଷୀରସିନ୍ଧୁ ତଟେ ରତ୍ନମାଳା ନଦୀକୂଳରେ
ରହିଲେ ଉଭୟ ପକ୍ଷ ଶସ୍ତ୍ର ବନ୍ଧ କରେ ।
ଏହିକାଳେ ସୁରସୈନ୍ୟ ମଧ୍ୟରୁ ଶଙ୍କର
ବୃଷଭ ପୃଷ୍ଠରେ ବସି ହୋଇଲେ ବାହାର ।
ତ୍ରିଶୂଳ ପଟ୍ଟିଶ ଗଦା ଶକ୍ତି ପରଶୁଧ
ଧନୁଶର ଆଦି କରି ବିବିଧ ଆୟୁଧ ।
ଯେଉଁଣି ସେଠାରେ ଆସି ଉପସ୍ଥିତ ହେଲେ
ତାହାଙ୍କୁ ଦେଖିଣ ଶୁକ୍ରମୁନି ତତକାଳେ ।
ଆସନରୁ ଉଠି ବେଗେ ଦଣ୍ଡବତ ହେଲେ
ରତ୍ନସିଂହାସନ ଆଣି ବସିବାକୁ ଦେଲେ ।
ଆଶୀର୍ବାଦ କରି ଶିବ ଆନନ୍ଦିତ ମନେ
ବସିଲେ ଯେ ଦେବସଭା ମଧ୍ୟରେ ଆସନେ ।
ଏଥିଅନ୍ତେ ପ୍ରଜାପତି ବ୍ରାହ୍ମଣ ବେଶରେ
ମିଳିଲେ ଆସି ସେ ସୈନ୍ୟଗଣଙ୍କ ମଧ୍ୟରେ ।
ବହ୍ନି ଶୁଦ୍ଧ ଦିବ୍ୟ ବାସ ପରିଧାନ କରି
ଦିଶୁଥିଲେ ସାକ୍ଷାତରେ ତେଜପିଣ୍ଡ ପରି ।
ପ୍ରସନ୍ନବଦନେ ଗୃହିଁ ସର୍ବ ଦେବତାଙ୍କୁ
ପଚାରିଲେ ଆନନ୍ଦରେ ଶୁଭ ସମ୍ବାଦକୁ ।
କୃତାଞ୍ଜଳି ହୋଇ ବେଗେ ଶୁକ୍ର ମୁନିବର
ରତ୍ନ ଆସନେ ବସାଇ ପୂଜିଲେ ସତ୍ୱର ।

ସେ କାଳରେ ପିତାମହ ଶିବଙ୍କ ସମ୍ମତେ
ଶୁକ୍ରାଚାର୍ଯ୍ୟଙ୍କୁ ବୋଇଲେ ଶୁଣ ମହାମତେ ।
ଚନ୍ଦ୍ର ଯେଉଁରୂପେ କରିଅଛନ୍ତି ଦୁର୍ନୀତି
ବିଚାରିଲେ ମନେ ଜାତ ହୁଏ ଲଜ୍ଜାଯୁକ୍ତି ।
ସ୍ନାନସାରି ଆସୁଥିଲେ ଗୁରୁଙ୍କ ବନିତା
ହରିଲେ ତାହାଙ୍କୁ ବଳେ ଛାଡ଼ିଦେଇ ଚିନ୍ତା ।
ସେ ସକାଶୁ ଦେବସୈନ୍ୟ ମହାକ୍ରୋଧ ବହି
ଆସିଛନ୍ତି ଦେଖ ଯୁଦ୍ଧ କରିବାର ପାଇଁ ।
ଚନ୍ଦ୍ର ତ ତୁମ୍ଭ ପାଶରେ ପଶିଛି ଶରଣ
ଏଣୁ ଦେବଦୈତ୍ୟଙ୍କର ହେବ ଘୋରରଣ ।
ତାହା ଜାଣି ଶିବଙ୍କର ସନ୍ନିଧରେ ମୁହିଁ
ଆମ୍ଭେ ତାତ ତୁମ୍ଭଠାକୁ ଆସିଅଛୁ ଧାଇଁ ।
ଶଙ୍କର ବୋଇଲେ ଆହେ ଶୁନ ମୁନିବର
ଯେବେ ଜୀଇଁବାକୁ ଇଚ୍ଛା ଅଛିଟି ତୁମ୍ଭର ।
ତେବେ ଚନ୍ଦ୍ରଙ୍କୁ ମୋଠାରେ ସମର୍ପଣ କର
ନୋହିଲେ କରିବି ଦୈତ୍ୟଗଣଙ୍କୁ ସଂହାର ।
ତାଙ୍କ ସହିତରେ ମଧ୍ୟ ତୁମ୍ଭଙ୍କୁ ନାଶିବି
ନିଶ୍ଚୟ ବୋଲଇ ଏହା ଥାଅ ମନେ ଭାବି ।
ମୁହିଁ କ୍ରୋଧ ହେଲେ ନିଶାଚରଙ୍କର ଜୀବ
କ୍ଷଣେମାତ୍ର କଦାଚିତେ ରହି ନ ପାରିବ ।
ଦୁର୍ବାସା ମହର୍ଷି ମୋର ଅଂଶରେ ଉତ୍ପନ୍ନ
ଅଟନ୍ତି ତାହାଙ୍କ ଗୁରୁ ଅଙ୍ଗିରାଟି ଜାଣ ।
ଅଙ୍ଗିରା ଋଷିଙ୍କ ପୁତ୍ର ବୃହସ୍ପତି ଯେଣୁ
ସମ୍ବନ୍ଧ ଯେନି ମୋହର ଗୁରୁ ସେହି ତେଣୁ ।
ଗୁରୁପୁତ୍ର ଅଟନ୍ତି ଯେ ଗୁରୁଙ୍କ ସମାନ
ଦୁହିଙ୍କଠାରେ ପ୍ରଭେଦ ନାହିଁ କିଛି ଜାଣ ।
ଚନ୍ଦ୍ରଙ୍କୁ କ୍ରୋଧରେ ସୃହିଁ ଦେଇଥିଲେ ଗୁରୁ
ଭସ୍ମ ହୋଇଥାନ୍ତେ ସେହୁ ସେହି ସମୟରୁ ।
କିନ୍ତୁ ଶିଷ୍ୟ ବୋଲି ମନେ ଦୟା ଜାତକରି
ନ ଦେଲେ ତାହାଙ୍କ ପ୍ରାଣ ଧର୍ମକୁ ବିଚାରି ।
ପୂର୍ବରେ ଉତଥ୍ୟ ପତ୍ନୀ ସଗଙ୍କୁ ଯେ ବେଳେ
ଧରିଆଣି ଉପଭୋଗ କରିବାର ବେଳେ ।
ଉତଥ୍ୟ ମହର୍ଷି ଦେଖି ଅଭିଶାପ ଦେଲେ
ସେ ଯୋଗେ ଗୁରୁଙ୍କ ପତ୍ନୀ ଉପଭୋଗ୍ୟା ହେଲେ
ଏବେ ମୁହିଁ ବୋଲୁଅଛି ବେଗେ ତାରକାଙ୍କୁ
ସମର୍ପଣ କରି ନେଇ କହିଣ ଗୁରୁଙ୍କୁ ।

ମୋହର ବଇରି ଚନ୍ଦ୍ର ହୋଇଅଛି ଯେଣୁ
ତାହାଙ୍କୁ ବିନାଶ ନିଶ୍ଚେ କରିବି ମୁଁ ତେଣୁ ।
ଗୁରୁଭାର୍ଯ୍ୟା ହରିବାକୁ ତାହାଠାରୁ ବଳି
ପାତକୀ ନ ଥିବେ କେହି ବୋଲି ମୁଁ ଜାଣିଲି ।
ପାପିଷ୍ଠ ଲୋକ ଶରଣ ପଶିବ ଯାହାଠାରେ
ସେ ମଧ୍ୟ ପାତକୀ ହୋଇ ରହିବ ସଂସାରେ ।
ତୁମ୍ଭେ ଏବେ ତାରା ସହିତରେ ଆଣି ତାଙ୍କୁ
ଦିଅ ଏହିଠାରେ ମାନି ଆମ୍ଭର ଆଜ୍ଞାକୁ ।
ଏରୂପେ ଶିବଙ୍କ ବାକ୍ୟ ଶୁଣି ଶୁକ୍ରମୁନି
କହିଲେ ତାହାଙ୍କୁ ଶିରେ ଯୋଡ଼ି କର ବେନି ।
ବୋଇଲେ ଆହେ ଈଶ୍ୱର ଜଗତ ମଧ୍ୟରେ
କର୍ତ୍ତା ହର୍ତ୍ତା ଅଟ ତୁମ୍ଭେ ସବୁ ସମୟରେ ।
ସୁରାସୁର ଭେଦଭାବ ନାହିଁ ତ ତୁମ୍ଭର
ତୁମ୍ଭ ଆଶ୍ରାରେ ରହିଛି ନିଖିଳ ସଂସାର ।
ଏହିରୂପେ ହେବାଠାରେ ଦେବଙ୍କ ସହାୟ
ହୋଇଣ କରିବ କେହି ଦୈତ୍ୟଙ୍କର କ୍ଷୟ ।।
ସଂସାର କର୍ତ୍ତା ଯେ ଅଟ ସର୍ବ ଜଗତର
କି ସଣ ହୋଇବ ଅବା ମାରି ନିଶାକର ।
ନିର୍ଗୁଣ ପରମବ୍ରହ୍ମ ଜ୍ୟୋତିର୍ମୟ ତୁମ୍ଭେ
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ ।
ଗୁଣଭେଦ ମୂର୍ତ୍ତିଭେଦ ଅଟଇ ତୁମ୍ଭର
ତେଣୁ ବୋଲୁଅଛି ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ବଳିଦ୍ୱାରେ ତୁମ୍ଭେ ହୋଇଥିଲ ଯେ ବାମନ
ଯେନିଲ ତାହାଙ୍କଠାରୁ ତିନିପୁର ଦାନ ।
ଇନ୍ଦ୍ରଙ୍କୁ ବିପୁଳ ଲକ୍ଷ୍ମୀ ଦେଲ କାଞ୍ଚିତରେ
ବିନାଶ କରି ସକଳ ଅସୁରଙ୍କୁ ଖରେ ।
କ୍ରୋଧ ସଂହାର କରିଣ ପରସନ୍ନ ହୁଅ
ବ୍ରାହ୍ମଣକୁ ମାରି ହେବ କି ସଣ ଉଦୟ ।
ଚନ୍ଦ୍ର ଯେ ଶରଣ ପଶିଅଛନ୍ତି ମୋଠାରେ
ତାଙ୍କୁ ସମର୍ପିବି ତୁମ୍ଭ ପାଶେ କି ପ୍ରକାର ।
କିନ୍ତୁ ଆପଣଙ୍କ ପାଦ-ପଙ୍କଜରେ ମୁହିଁ
ଶରଣ ପଶୁଛି ରକ୍ଷାକର ଦୟାବହି ।
ନିଖିଳ ଜଗତ ଲୋକ ଅଟନ୍ତି ତୁମ୍ଭର
ତୁମ୍ଭେ ନ ରଖିଲେ ବଞ୍ଚିପାରେ କାହାଠାରେ ।
ଏରୂପେ ଶୁକ୍ରଙ୍କ ବାକ୍ୟ ଶୁଣି ତ୍ରିଲୋଚନ
ବୋଇଲେ ହେ ମୁନି ତୁମ୍ଭେ ଭସ୍ମକୁ ନ ଯେନ

ଚନ୍ଦ୍ରଙ୍କୁ ମୋ ପାଖେ ଆଣି ଦିଅ ବେଗକରି
ତେମନ୍ତ ହେଲେ ଅଶୁଭ ନୋହିବ କାହାରି ।
ଏହି ସମୟରେ ବ୍ରହ୍ମା ସେଠାକୁ ଆସିଲେ
ତାରା ସହିତ ଚନ୍ଦ୍ରଙ୍କୁ ବେଗେ ଅଣାଇଲେ ।
ଶିବଙ୍କ ପାଦ-ପଦ୍ମରେ ସମର୍ପଣ କରି
କହିଲେ ନାନାପ୍ରକାର କଥାକୁ ବିସ୍ତରି ।
ଅନୁତାପାନଳେ ଚନ୍ଦ୍ର ହେଉଛନ୍ତି ଘାରି
ଲଜ୍ଜାଭରେ ବଦନକୁ ଟେକି ସେ ନ ପାରି ।
ତାହା ଦେଖି ସଦାଶିବ ପ୍ରସନ୍ନ ହୋଇଲେ
ଚନ୍ଦ୍ରଙ୍କୁ ଅଭୟ ଦେଇ ପାପମୁକ୍ତ କଲେ ।
କ୍ଷୀର ସମୁଦ୍ରରେ ପୁଣି କରାଇଣ ସ୍ନାନ
ସମ୍ପାଦିଲେ ଯଥାବିଧି ପ୍ରାୟଶ୍ଚିତ୍ତ ବିଧାନ ।
ଯୋଗବଳେ ଦୁଇଭାଗ କରି ତାଙ୍କ ଅଙ୍ଗ
ଭାଗେ ନେଇ କଲେ ନିଜ ଲଲାଟରେ ସଙ୍ଗ ।
ସେହିଦିନଠାରୁ ଚନ୍ଦ୍ର ଶେଖର ନାମରେ
ଖ୍ୟାତହେଲେ ମହାଦେବ ଜଗତ ମଧ୍ୟରେ ।
ଦେବସଭା ମଧ୍ୟେ ଚନ୍ଦ୍ର ଲଜ୍ଜାକୁ ନ ସହି
ଦେହତ୍ୟାଗ କଲେ ଯୋଗଧ୍ୟାନେ କ୍ଷଣେ ରହି
ତାହା ଦେଖି ବ୍ରହ୍ମା ତାଙ୍କ ଶରୀରକୁ ନେଲେ
କ୍ଷୀରସମୁଦ୍ର ମଧ୍ୟରେ ପକାଇ ଆସିଲେ ।
ଅତ୍ରି ମୁନି ଥିଲେ ସେହି କ୍ଷୀରସିନ୍ଧୁ ତୀରେ
ଅଶ୍ରୁପାତ କଲେ ଦୟା ବହିଣ ମନରେ ।
ସେ ଅଶ୍ରୁ ପଡ଼ନ୍ତେ ସିନ୍ଧୁଜଳ ମଧ୍ୟେ ଯାଇ
ଜାତ ହେଲେ ଚନ୍ଦ୍ର ତହିଁ ଶୁଚିମନ୍ତ ହୋଇ ।
ବ୍ରହ୍ମା ଶିବ ଦୁହେଁ ତାହା ଦେଖି ତୋଷହେଲେ
ବେଦ ପଢ଼ିଣ ଚନ୍ଦ୍ରଙ୍କୁ ଅଭିଷେକ କଲେ ।
ସେ ଅନ୍ତେ ଶିବ ବୋଇଲେ ଆହେ ଶଶଧର
ତୁମ୍ଭେ ଏବେ ନଭପୁରେ ଯାଅ ନିଜପୁର ।
ପତିବ୍ରତା ଶାପ କେବେ ବୃଥା ତ ନ ହେବ
ଏଣୁ ତୁମ୍ଭେ ଯକ୍ଷ୍ମାରୋଗେ ପୀଡ଼ାକୁ ପାଇବ ।
କିନ୍ତୁ ମୋର ଆଶୀର୍ବାଦେ ସେ ମହା ରୋଗର
ହେବ ସମୟରେ ଉପଯୁକ୍ତ ପ୍ରତିକାର ।
ଭାଦ୍ର ଚତୁର୍ଥୀ ତିଥିରେ ଗୁରୁଙ୍କ ଭାର୍ଯ୍ୟା
ହରଣରେ ତୁମ୍ଭେ ଯହିଁ ବଳାଇଲ ମଜ୍ଜା ।
ସେ ଧକାଶୁ ଯୁଗେ ଯୁଗେ ସେ ଦିନ ନିଶାରେ
ପାପ ଦୃଶ୍ୟ ହେବ ତୁମ୍ଭେ ଜାଣ ନିଶ୍ଚୟରେ ।

କୋଟିଏକଳ୍ପରେହେଲେଭୋଗ ଯେବେନୋହି
କଦାପି ସୁକୃତ କର୍ମ କ୍ଷୟକୁ ନ ପାଇ ।
ଦେହତ୍ୟାଗ କଲ ହେଲେ ଏ କର୍ମ ତୁମ୍ଭର
କ୍ଷୟ ହୋଇ ନାହିଁ ବୋଲି ମନରେ ବିଚାର ।
ପ୍ରାୟଶ୍ଚିତ୍ତ କଲେ ତାହା ହେବ ନିରାକୃତ
ନୋହିଲେ ମୁକତ ଲଭ ନୁହଇ ନିଶ୍ଚିତ ।
ତାରା ହରଣ କଳଙ୍କ ତୁମ୍ଭ ମଣ୍ଡଳରେ
ଚିହ୍ନ ସ୍ୱରୂପ ରହିବ ଯୁଗ ଯୁଗାନ୍ତରେ ।
ଏଥିଅନ୍ତେ ପ୍ରଜାପତି ତାରାଙ୍କୁ ଅନାଇ
ବୋଇଲେ କାହାର ଗର୍ଭ ଅଛ ତୁମ୍ଭେ ବହି ।
ଯଥାର୍ଥ ରୂପରେ ଆମ୍ଭ ଆଗେ ବ୍ୟକ୍ତକର
ଗର୍ଭ ତେଜ ଶୁଦ୍ଧ ହୋଇ ଯିବ ନିଜ ଘର ।
ବଳାତ୍କାରେ ଜାର ଯେବେ ଉପଭୋଗ କରେ
କାମିନୀର ଦୋଷ କିଛି ନୁହଇ ତହିଁରେ ।
ଅସତୀ ବୋଲି ସେ ନିନ୍ଦନୀୟ ଭବେ ନୁହେଁ
ସବୁ ଦୋଷ ପୁରୁଷ ସେ ଏକା କରି ବହେ ।
ଜାଣି ଜାଣି କଲେ ନିଶ୍ଚେ ନରକରେ ବାସ
ହୁଏ ଆଗୋ ପତିବ୍ରତା ରମଣୀଙ୍କ ଈଶ ।
ତାରା ବୋଇଲେ ଏ ଅଟେ ଚନ୍ଦ୍ରଙ୍କର ଗର୍ଭ
ଶୁଣିଣ ହସିଲେ ଦେବ ମୁନିଋଷି ସର୍ବ ।
ତାଙ୍କ ମଧ୍ୟେ ବୃହସ୍ପତି ନମ୍ରମୁଖ ହୋଇ
ବସିଥିଲେ ମନେ ମନେ ଲଜ୍ଜାଭାବ ବହି ।
ସଦାଶିବ ନେଇ ତାଙ୍କ ପାଶେ ତାରକାଙ୍କୁ
ସମର୍ପଣ କଲେ କହି ମଧୁର କଥାକୁ ।
ପ୍ରିୟାକୁ ଘେନିଣ ଗୁରୁ ନିଜପୁରେ ଗଲେ
ସେହିକ୍ଷଣି ତାରାଗର୍ଭୁ ବୁଧ ଜନ୍ମ ହେଲେ ।
ବ୍ରହ୍ମାଶିବ ଆଦି ସବୁ ଦେବଙ୍କ ସମ୍ମତେ
ଗଲେ ଚନ୍ଦ୍ର ଘେନି ତାଙ୍କୁ ଆପଣା ସଙ୍ଗତେ ।
ସେ ଅନ୍ତରେ ବ୍ରହ୍ମା ଆଦି ଯେଉଁମାନେ ତହିଁ
ଥିଲେ ସେ ଯାହା ସ୍ଥାନକୁ ଗଲେ ଭିନ୍ନ ହୋଇ
କୃତକାର୍ଯ୍ୟ ହୋଇ ନିଜେ ଶୁଣ ମୁନିବର
ସ୍ୱସ୍ଥାନକୁ ଗଲେ ଜାଣ ଆହେ ବ୍ରଜେଶ୍ୱର ।
ଏମନ୍ତ ଅଟଇ ଚନ୍ଦ୍ରଗ୍ରହର ବୃତ୍ତାନ୍ତ
ଶୁଣିଲେ ଅଶେଷ ପାପ ହୁଅଇ ଖଣ୍ଡିତ ।
ଆନନ୍ଦ ବର୍ଦ୍ଧକ ପୁଣି ଶୋକ ବିନାଶନ
ଅଟଇ ଏହି ଚରିତ ବୋଲି ମନେ ଘେନ ।

ତୁମ୍ଭେ ଏବେ ଶୋକ ତେଜି ବ୍ରଜପୁରେ ଯାଅ
ଯଶୋଦା ଦେବୀଙ୍କୁ ପ୍ରବୋଧନା କରି କହ ।
ଏମନ୍ତ କହି ଶ୍ରୀକୃଷ୍ଣ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଗାଇ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କର ଚନ୍ଦ୍ରଙ୍କ ପ୍ରତି କୋପ ଓ ଶୁନମୁନଙ୍କ କର୍ତ୍ତୃକ କ୍ଷମା ପ୍ରାର୍ଥନା କଥନେ ନାମ ଏକାଶୀତିତମୋଽଧ୍ୟାୟଃ ।



## ଦ୍ୱିଶୀତିତମ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କ ଦ୍ୱାରା ଦୁଃସ୍ୱପ୍ନର ଫଳାଫଳ ବିବରଣ

ଏଥୁଅନନ୍ତରେ ଗୋପ ଅଧୀଶ୍ୱର ନନ୍ଦ
ପଚାରିଲେ ଶ୍ରୀକୃଷ୍ଣଙ୍କୁ ହୋଇଣ ଆନନ୍ଦ ।
ବୋଇଲେ ଶୁଣିଲି ସବୁ କଥା ଭଲକରି
ଏବେ ଦୁଃସ୍ୱପ୍ନ ଚରିତ କହନ୍ତୁ ବିସ୍ତାରି ।
ତାହା ଶୁଣିଣ ଶ୍ରୀକୃଷ୍ଣ ବୋଇଲେ ହେ ତାତ
କହିବି ଏବେ ସେ କଥା ଶୁଣ ଦେଇ ଚିତ୍ତ ।
ସ୍ୱପନରେ ଯେଉଁ ଲୋକ ହସଇ ହରଷେ
କି ଅବା ବିବାହ ନୃତ୍ୟ ଗୀତ ବାଦ୍ୟରସେ ।
ପ୍ରବର୍ତ୍ତିତ ହୁଏ ତାକୁ ପଡ଼ଇ ବିପତ୍ତି
ନିଶ୍ଚୟ ଏ କଥା ଜାଣ ଆହେ ବ୍ରଜପତି ।
ସ୍ୱପନରେ କେଶ ଦନ୍ତ ଖଣ୍ଡିତ ହୋଇଲେ
ଧନହାନି ଅବା ଦେହେ ପୀଡ଼ା ଜନ୍ମେ ଭଲେ ।
ତଇଳ ଜର୍ଜର ହୋଇ ଦକ୍ଷିଣ ଦିଗକୁ
ଗମନ ଯେ କରେ ସ୍ୱପ୍ନେ ଚଢ଼ିଣ ଗଧକୁ ।
ଅଥବା ଉଷ୍ଟ୍ର ମହିଷ ପୃଷ୍ଠେ ବସିକରି
ଗଲେ ଯମଦୂତେ ଆସି ନିଅନ୍ତି ଓଟାରି ।
ଚୂର୍ଣ୍ଣ ଜବାପୁଷ୍ପ ଅବା ତଇଳ ଲବଣ
ଦେଖିଲେ ବିପତ୍ତି ନିଶ୍ଚେ ପଡ଼ଇନ୍ତି ଜାଣ ।
ଛିନ୍ନନାସା କୃଷ୍ଣବର୍ଣ୍ଣା ଅଥବା ଶୂଦ୍ରାଣୀ
ତାଳଫଳ କପର୍ଦ୍ଦକ ଦେଖେ ଯେଉଁ ପ୍ରାଣୀ ।
ମହାଶୋକରେ ବ୍ୟଥିତ ସର୍ବଦା ସେ ହୁଏ
କ୍ଷଣେହେଲେ ଶାନ୍ତି ତାକୁ ପ୍ରାପତ ନ ହୁଏ ।
ବ୍ରାହ୍ମଣ ଅବା ବ୍ରାହ୍ମଣୀ କ୍ରୋଧଭର ହୋଇ
ସ୍ୱପ୍ନରେ ଯାହାକୁ ଦେଖା ଦିଅନ୍ତି ଛୁହାଇ ।
ତାହାଘରୁ ମହାଲକ୍ଷ୍ମୀ ପଳାଇ ଯାଆନ୍ତି
ପଦେ ପଦେ ତାହାଠାକୁ ଆସଇ ବିପତ୍ତି ।
ରକତ ବର୍ଣ୍ଣ କୁସୁମ ପୁଷ୍ପିତ ପଲାଶ
ବୃକ୍ଷ ଅବା ଶୁକ୍ଳବର୍ଣ୍ଣ ବସନ କାର୍ପାସ ।
ସ୍ୱପ୍ନରେ ଦେଖିଲେ ମହାଦୁଃଖ ହୁଏ ଜାତ
ନିଶ୍ଚୟ ବୋଲିଣ ଏହା ଜାଣ ଆହେ ତାତ ।
କୃଷ୍ଣବାସ ପିନ୍ଧି ଯେବେ କାମିନୀ ଗୋଟିଏ
ହସି ଗୀତ ଗାନକରି ସ୍ୱପ୍ନେ ଦେଖାଯାଏ ।
କିଅବା କୃଷ୍ଣାଙ୍ଗୀ ଦୁଷ୍ଟା ବିଧବା କୁଜନ
ଦେଖିଲେ ତେବେ ଅବଶ୍ୟ ହୁଅଇ ମରଣ ।
ଦେବତାମାନେ ଆସିଣ ଯାହାର ଆଗରେ
ନୃତ୍ୟଗୀତ ଗାନକରି ହସନ୍ତି ଉଚ୍ଚରେ ।
କିଅବା ବାହୁରେ କରି ତାଡ଼ଣ ଧାମନ୍ତି
ତେମନ୍ତ ହେଲେ ତାହାର ନାଶ ହୁଏ ଖିତି ।
ପୁରୀଷ ଅଥବା ମୂତ୍ର ରେତ ବସା ମେଦ
କି ଅବା ସୁବର୍ଣ୍ଣ ରୌପ୍ୟ ମଣି ରତ୍ନ ଭେଦ ।
ସ୍ୱପ୍ନରେ ଦେଖିଲେ ଲୋକ ଦଶମାସଠାରେ
ଶରୀର ଛାଡ଼ି ବସଇ ଯମଙ୍କ ନଗରେ ।
ଯାହାକୁ କୃଷ୍ଣ ବସନ କୃଷ୍ଣମାଳା ଭରି
ଆଲିଙ୍ଗନ କରେ ଆସି ସ୍ୱପ୍ନେ ଏକ ସ୍ତିରି ।
ତାହାର ଅଚିରେ ମୃତ୍ୟୁ ହୁଅଇଟି ଜାଣ
ଏମନ୍ତ ହୋଇଛି ଶାସ୍ତ୍ର ମତରେ ପ୍ରମାଣ ।
ମୃଗ ଅବା ମନୁଷ୍ୟର ମୃତ ଶିଶୁ ଯେବେ
ସ୍ୱପ୍ନେ ନଦେଖାଯାଏ ହାନି ଘଟଇନି ତେବେ ।
କ୍ଷୀର ଦଧି ଘୃତ ଅବା ମଧୁ ଯା ଦେହରେ
ବୋଳା ନହାଇବାର ଦେଖାଯାଏ ସ୍ୱପନରେ ।
ତାହାର ଶରୀରେ ମହାପୀଡ଼ା ହୁଏ ଜାତ
ଅନ୍ୟଥା ନୁହଇ କେବେ ଜାଣ ଆହେ ତାତ

ଗଯ ଉଷ୍ଟ ନଯାଶ୍ୱ ମେହବା ରଥେ ଏକା ହୋଇ
ସ୍ୱପ୍ନରେ ବସିଲେ ଲୋକ ନିଶ୍ଚୟ ମରଇ ।
ରକତ ମାଲ୍ୟ ବସନ ପିନ୍ଧି କେଉଁ ନାରୀ
ଆଲିଙ୍ଗନ କରେ ଯେବେ ସ୍ୱପ୍ନେ ଆସିକରି ।
ହେମନ୍ତ ହେଲେ କରଇ ରୋଗ ଆକ୍ରମଣ
ଆବର ବିବିଧ ପୀଡ଼ା ଜାତହୁଏ ଜାଣ ।
ପଡ଼ିଥିବ ନଖ କେଶ ନିର୍ବାଣ ଅଙ୍ଗାର
କି ଅବା ଭସ୍ମ ପୂରିତ ଚିତାକୁ ଯେ ନର ।
ସ୍ୱପ୍ନରେ ଦେଖଇ ତାର ମରଣ ହୁଅଇ
ରଖି ନ ପାରନ୍ତି ଦେବଋଷିମାନେ କେହି ।
ଶ୍ମଶାନ ଶୁଖିଲା ତୃଣ କାଷ୍ଠ ଲୋହ ମସୀ
ସ୍ୱପ୍ନରେ ଦେଖିଲେ ରୋଗ ଘୋଟଇ ଆକର୍ଷି ।
ପାଦୁକା ଫଳକ ରକ୍ତ ପୁଷ୍ପମାଳ ମାଷ
ମସୁର ମୁଗ ଯାହାର ହୁଏ ସ୍ୱପ୍ନ ଦୃଶ୍ୟ ।
ସକଳ ଶରୀରେ ତାର ବ୍ରଣ ଜାତ ହୁଏ
ବହୁତ ସମୟଯାଏ ପୀଡ଼ା ଦେଉଥାଏ ।
ଭଲ୍ଲୁକ ବାନର ସର୍ପ ଗୃଧ୍ର କଙ୍କ କାକ
ପୂୟ ଗାଢ ଲୋମ ସ୍ୱପ୍ନ ଦେଖଇ ଯେ ଲୋକ ।
ତାହାର କେବଳ ବ୍ୟାଧି ହୁଏ ଦେହେ ଜାତ
ଆବର ହୁଅଇ ଅଙ୍ଗ ଶସ୍ତ୍ର ଅସ୍ତ୍ର କ୍ଷତ ।
ଭଗ୍ନଖଣ୍ଡ କ୍ଷତ ଦେହ ଶୂଦ୍ର କୁଷ୍ଠରୋଗୀ
ରକତ ବସନ ଜଟାଧର ଶ୍ରମ ଭୋଗୀ ।
ଆବର ମହିଷ ଖର ଶୂକର ଶୃଗାଳ
ମହାଘୋର ଅନ୍ଧକାର ମୃତଦେହ ମାଳ ।
ଯୋନି ଲିଙ୍ଗ ଦେଖଇ ଯେ ସ୍ୱପ୍ନ ସମୟରେ
ତାହାକୁ ବିପଦ ନିଶ୍ଚେ ପଡ଼ଇ ଅଚିରେ ।
କୁତ୍ସିତ ରୂପ କୁଚେଳ ମ୍ଳେଚ୍ଛ ଯମଦୂତ
ଖଡ଼ଗ ପଟ୍ଟିଶ ଶୂଳ ପାଶାଙ୍କୁଶ ହସ୍ତ ।
ଯମଦୂତ ଆଦି ମହାଭୟଙ୍କର ମୂର୍ତ୍ତି
ଦେଖିଲେ ସ୍ୱପ୍ନରେ ଲୋକ ବନ୍ଧେ ଯମକନ୍ତି ।
ବ୍ରାହ୍ମଣ ବ୍ରାହ୍ମଣୀ ସ୍ୱପ୍ନ ସମୟରେ ଯେବେ
ବିଦାୟ ହୁଅନ୍ତି ମହାଦୁଃଖ ହୁଏ ତେବେ ।
କୃଷ୍ଣ ପୁଷ୍ପମାଳା ଅବା ଶସ୍ତ୍ରଧାରୀ ସୈନ୍ୟ
ସ୍ୱପ୍ନରେ ଦେଖିଲେ ଲୋକ ଲଭଇ ମରଣ ।
ବାଦ୍ୟ ନୃତ୍ୟ ଗୀତ ନାଦ ରକତ ଅମ୍ବର
ମୃଦଙ୍ଗ ଆଦିର ଶବ୍ଦ ଶୁଣେ ଯେଉଁ ନର ।
ଦୁଃଖ ଭୋଗ କରଇ ଯେ ଦେହ ଥିବାଯାଏ
ଶତ୍ରୁଙ୍କ ହସ୍ତରେ ମଧ୍ୟ ପରାଭବ ପାଏ ।
ଅନ୍ୟ ଲୋକର ମରଣ ଦେଖିଲେ ସ୍ୱପ୍ନରେ
ଅଳପ ସମୟେ ଲୋକ ପ୍ରାଣତ୍ୟାଗ କରେ ।
ମହିଷ ଆଦି ଧରଇ ଯେ ସ୍ୱପନରେ ଯାଇ
ତାହାର ଘରେ ମୃତ୍ୟୁ ନିଶ୍ଚୟ ଘଟଇ ।
ଛିନ୍ନ ମସ୍ତକ ବିକୃତ ମୁକ୍ତକେଶ ଶବ
ଯାହାର ଆଗେ ସ୍ୱପ୍ନରେ ନୃତ୍ୟ କରୁଥିବ ।
ସେ ଲୋକ ମରଣ ମୁଖେ ପଡ଼ଇ ଅଚିରେ
ନୋହିଲେ ଆଘାତ ପାଏ ଶତ୍ରୁଙ୍କ ହସ୍ତରେ ।
ଯାହାର ମୁଣ୍ଡରୁ କେଶ ଛିଡ଼ଇ ସ୍ୱପନେ
କି ଅବା ଭ୍ରଜଣ ଦନ୍ତ ଝଡ଼େ ଏଣେ ତେଣେ ।
ସେ ଲୋକର ଧନ ନାଶ ହୁଅଇ ନିଶ୍ଚିତ
ଅଥବା ଶରୀରେ ଘୋରପୀଡ଼ା ହୁଏ ଜାତ ।
ଯାହାକୁ ସ୍ୱପ୍ନରେ ଶୃଙ୍ଗୀ ଦଂଷ୍ଟ୍ରୀ ଆସିକରି
ଆଘାତ କରନ୍ତି ଅବା ମାରେ ଶସ୍ତ୍ରଧାରୀ ।
ରାଜାଠାରୁ ତାର ଭୟ ହୁଅଇ ଉତ୍ପନ୍ନ
ବ୍ରହ୍ମା ଶିବ ହେଲେ କରି ନ ପାରନ୍ତି ଆନ ।
ଛିନ୍ନ ବୃଷ୍ଟି ଶିଳା ତୁଷ ରକତ ଅଙ୍ଗାର
ଭସ୍ମ ବୃଷ୍ଟି ହେବ ଯେବେ ସ୍ୱପ୍ନରେ ଗୋଚର ।
ଅଶେଷ ଦୁଃଖ ପ୍ରାପତ ହୁଅଇ ଲୋକକୁ
ଦେଖଇ ଯେ ସ୍ୱପ୍ନେ ରଥ ତୁରଗ ହସ୍ତୀଙ୍କୁ ।
ଆକାଶ ମାର୍ଗରୁ ପଡ଼ିବାର ଖସି ତଳେ
ବିପତ୍ତି ଆସିଣ ତାହା ଗ୍ରାସକରେ ବଳେ ।
କ୍ଷାରକୁଣ୍ଡ ଗର୍ତ୍ତରେ ବା ଭସ୍ମାଙ୍ଗାର ପରେ
ପଡ଼ଇ ଯେ ଲୋକ ଉଚ୍ଚସ୍ଥାନରୁ ସ୍ୱପ୍ନରେ ।
ତାହାର ମୃତ୍ୟୁ ହୁଅଇ ଆହେ ବ୍ରଜେଶ୍ୱର
ସନ୍ଦେହ କିଛୁ ଏଥିରେ ନାହିଁ ମନେକର ।
ଯାହାର ମସ୍ତକୋପରୁ ସ୍ୱପ୍ନ ସମୟରେ
ଦୁଷ୍ଟଲୋକ ଛତ୍ର ନେଇଯାଏ ବଳାତ୍କାରେ ।
ସେ ଲୋକର ପିତା ଅବା ଗୁରୁଙ୍କର ନାଶ
କିଞ୍ଚିତ କାଳ ମଧ୍ୟରେ ଘଟଇ ଅବଶ୍ୟ ।
ବତ୍ସା ସହିତରେ ଗାଈ ପଳାଏ ଯା ଘରୁ
ବିମୁଖ ହୁଅନ୍ତି ଲକ୍ଷ୍ମୀ ସଦା ତାହାଠାରୁ ।
ଯାହାକୁ ପାଶରେ ବାନ୍ଧି ସ୍ୱପନରେ କେହି
ଯମଦୂତଙ୍କ ହସ୍ତରେ ସମର୍ପି ଦିଅଇ ।

ସେ ଲୋକ ନିଶ୍ଚୟ ପଡ଼ଇ ମରଣ ମୁଖରେ
ଜାଇଁଥିବା ଯାକ ମହା ଦୁଃଖ ଭୋଗକରେ ।
ବ୍ରାହ୍ମଣ ବ୍ରାହ୍ମଣୀ ଅବା ଗଣକ ଯାହାକୁ
ଶାପ ଦିଅନ୍ତି ସ୍ୱପ୍ନରେ ପ୍ରକାଶି କ୍ରୋଧକୁ ।
ବିପତ୍ତି ପଡ଼ଇ ତାକୁ ଆହେ ବ୍ରଜଈଶ
ଆବର ହୁଅଇ ତାର ଧନଧାନ୍ୟ ନାଶ ।
ଭଲ୍ଲୁକ ଶ୍ୱାନ ବାୟସ ଯାହାର ଗାତ୍ରରେ
ପଡ଼ନ୍ତି କ୍ରୋଧରେ ଆସି ସ୍ୱପ୍ନ ସମୟରେ ।
ମୃତ୍ୟୁ ଦେବତା ତାହାର ବାଳ ଧରିନେଇ
ଯମଙ୍କ ଆଗରେ ଠିଆ କରେ ଦଣ୍ଡଦେଇ ।
ମହିଷ ଶୂକର ଉଷ୍ଟ୍ର ଗର୍ଦ୍ଦଭ ଯାହାକୁ
ଧାଇଁଆସି ସ୍ୱପନରେ ଦିଅନ୍ତି ପୀଡ଼ାକୁ ।
ଏରୂପେ ନାନା ପ୍ରକାରେ ଦୁଃସ୍ୱପ୍ନ ଦର୍ଶନ
ହେଲେ ତହିଁରୁ ବିପଦ ପଡ଼ଇଟି ଜାଣ ।
ସେଥିପାଇଁ ଶାନ୍ତି କ୍ରିୟା କରିବଟି ଯେବେ
ଅଶୁଭ ଦେଖିଲେ ମଧ୍ୟ ଶୁଭ ହେବ ତେବେ ।
ରକ୍ତ ଚନ୍ଦନ କାଷ୍ଠ ଘୃତ ସହିତରେ
ହୋମ କରିବ ବେଦୋକ୍ତ ବିଧାନ ପ୍ରକାରେ ।
ମୋହର ନାମକୁ ଯେବେ ସହସ୍ରେ ଜପିବ
ଦୁଃସ୍ୱପ୍ନ ଦର୍ଶନେ ମଧ୍ୟ ଶୁଭଫଳ ହେବ ।
ଅଚ୍ୟୁତ କେଶବ ବିଷ୍ଣୁ ହରି ଜନାର୍ଦ୍ଦନ
ସତ୍ୟ ହଂସ ନାରାୟଣ ଏହି ଅଷ୍ଟ ନାମ ।
ଶୁଭଦାୟକ ଅଟଇ ସବୁ ଲୋକଙ୍କର
ପାତକ ନାଶନ ବୀଜ ଅଟଇ ଆବର ।
ଶୁଚିବନ୍ତ ହୋଇ ପୂର୍ବମୁଖେ ଜପକଲେ
ଶୁଭହୁଅଇ ଅବଶ୍ୟ ଜାଣିଥାଅ ଭଲେ ।
ବିଷ୍ଣୁ ନାରାୟଣ କୃଷ୍ଣ ମାଧବ ମୁରାରି
ଶ୍ରୀରାମ ଗୋବିନ୍ଦ ଦଧିବାମନ ଦୈତ୍ୟାରି ।
ଏ ନାମ ଜପିଲେ ଲୋକ ନିଷ୍ପାପ ହୁଅଇ
ସକଳ କାର୍ଯ୍ୟରେ ଶୁଭଫଳକୁ ଲଭଇ ।
ଲକ୍ଷେବାର ଜପକଲେ ବନ୍ଧନୁ ମୁକତ
ହେବ ନିଶ୍ଚୟରେ ଆହେ ବ୍ରଜପୁର ନାଥ ।
ଶିବ ଦୁର୍ଗା ସରସ୍ୱତୀ ସ୍କନ୍ଦ ଗଣେଶ୍ୱର
ଧର୍ମ ତୁଳସୀ ରାଧିକା ଗଙ୍ଗା ଏହାଙ୍କର ।
ନାମ ସୁମରଣା କରି ସ୍ନାନ କଲେ ଜନ
ସକଳ କାମନା ପୂର୍ଣ୍ଣ ହୁଏ ଅଳ୍ପକାଳେ ।
ଅଶୁଭ ସ୍ୱପନ ଯେତେ ଦେଖିବ ତାହାର
ଶୁଭଫଳ ପରାପତ ହେବ ନିରନ୍ତର ।
ମହାମାୟାଙ୍କର ମନ୍ତ୍ର ଜପ ଯେ କରଇ
ତାହାର ଅବଶ୍ୟ ସବୁ କଷ୍ଟ ନାଶଯାଇ ।
ସେ ମନ୍ତ୍ର ସ୍ୱରୂପ କହୁଅଛି ଏବେ ଶୁଣ
ପ୍ରଥମେ ଓଁକାର ପରେ ମାୟାବୀଜ ପୁଣ
ଯେ ଅନ୍ତରେ ଲକ୍ଷ୍ମୀବୀଜ ଅକ୍ଷର ବସାଇ
ଦୁର୍ଗତିନାଶିନୀ ମହାମାୟା ପଦ ଦୁଇ ।
ଚତୁର୍ଥ୍ୟନ୍ତ କରି ତାହା ଅନ୍ତରେ ଲେଖିବ
ସ୍ୱାହା ବେନି ଅକ୍ଷରକୁ ଶେଷେ ବସାଇବ ।
ଏହିରୂପେ ମନ୍ତ୍ରଗୋଟି ସଙ୍କଳନ କରି
ଦଶବାର ପଢ଼ି ମନେ ଚିନ୍ତିବ ଶ୍ରୀହରି ।
ଯେମନ୍ତ ହେଲେ ଦୁଃସ୍ୱପ୍ନ ଫଳ ହୁଏ ନଷ୍ଟ
ଆବର ଦୂର ହୁଅଇ ନାନାବିଧ କଷ୍ଟ ।
ଶତଲକ୍ଷ ଜପକଲେ ମନ୍ତ୍ର ସିଦ୍ଧହୁଏ
ଇହ ପର ଲୋକରେ ସେ ଶୁଭଫଳ ଦିଏ ।
ଦୁଃସ୍ୱପ୍ନ ଦେଖିଲେ ତାହା ପଣ୍ଡିତଙ୍କ ପାଶେ
ପ୍ରକାଶ କରିବ ଯାଇ ନିଶା ଅବଶେଷେ ।
ତାହାହେଲେ ଯେତେକିଛି ଜାତହେବା ଦୋଷ
ଅନଳରେ ତୃଣପରି ହୋଇଯିବ ଧ୍ୱଂସ ।
ମୂର୍ଖଙ୍କ ଆଗେ କହିଲେ ଦୁଇଗୁଣ ପାପ
ଜାତ ହୋଇ ଦେବ ସର୍ବକାଳରେ ସନ୍ତାପ ।
ଆହେ ତାତ ଏହିପରି ଦୁଃସ୍ୱପ୍ନର ଫଳ
ପଚ୍ଛରିବାରୁ ତୁମ୍ଭଙ୍କୁ କହିଲି ସକଳ ।
ଏବେ ଶୋକ ତ୍ୟାଗକରି ବ୍ରଜପୁରେ ଯାଅ
ଧର୍ମରେ ମାନସ ଦେଇ ନିଶ୍ଚିନ୍ତରେ ଥାଅ ।
ଆଉ କେଉଁକଥା ଶୁଣିବାକୁ ଥିଲେ ମନ
କହିବି ଉତ୍ତମରୂପେ ପଚ୍ଛର ବଚନ ।
ନନ୍ଦଙ୍କୁ ଯେ ଉପଦେଶ ଦେଲେ ନନ୍ଦସୁତ
ଏ ମାୟା ସଂସାରେ ତାହା ଅଟଇ ଅମୃତ ।
ସଂସାର ଜନ ଉଦ୍ଧାର ହୋଇବା ନିମନ୍ତେ ।
ଅଧମ କ୍ଷେତ୍ରମୋହନ ଭବ ଲେଖେ ଗୀତେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଦୁଃସ୍ୱପ୍ନର ଫଳାଫଳ ବିବରଣ କଥନେ ନାମ ଦ୍ୱିଶୀତିତମୋଽଧ୍ୟାୟଃ ।

# ଦ୍ୱ୍ୟଶୀତିତମ ଅଧ୍ୟାୟ

## ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ନାନାବିଧ ଧର୍ମତତ୍ତ୍ୱ କଥନ

ଏଥୁ ଅନନ୍ତରେ ନନ୍ଦ ଶ୍ରୀକୃଷ୍ଣଙ୍କ ଆଗେ
ପଚାରିଲେ ପୁଣି ଧର୍ମତତ୍ତ୍ୱ ଅନୁରାଗେ ।
ବୋଇଲେ ହେ ପୁତ୍ର ତୁମ୍ଭେ ଜଗତ କାରଣ
ତୁମ୍ଭଠାରୁ ଚରାଚର ହୋଇଛି ଉତ୍ପନ୍ନ ।
ସକଳ ବେଦ ଶାସ୍ତ୍ରର ହେତୁ ଅଟ ତୁମ୍ଭେ
ତୁମ୍ଭଙ୍କୁ ପାଇ କୃତାର୍ଥ ହୋଇଅଛୁ ଆମ୍ଭେ ।
ତୁମ୍ଭବିନା କାହାଠାରୁ ଅଶେଷ ବୃତ୍ତାନ୍ତ
ଶୁଣିକରି ଆନନ୍ଦିତ ହୋଇଥାନ୍ତା ଚିତ୍ତ ।
ଏବେ ଆଉ କେତେ କଥା ଶୁଣିବାର ପାଇଁ
ଇଚ୍ଛା ହେଉଅଛି ତାହା କହ ଧିରୁ ଫେଇ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ସୁରଜାତି
କେଉଁମାନେ କି ପ୍ରକାର ଧର୍ମ ଆଚରନ୍ତି ।
ଆଉର ସନ୍ନ୍ୟାସ ଯତି ବ୍ରହ୍ମଚାରୀ ଜନେ
ବୈଷ୍ଣବ ବିଧବା ସତୀ ପତିବ୍ରତାମାନେ ।
ଗୃହସ୍ଥ ଆଦି ଯେ ଧର୍ମ ଉପାସକଗଣ
କିରୂପେ କରନ୍ତି ଅବା ଧର୍ମ ଆଚରଣ ।
ପୁତ୍ରକନ୍ୟାମାନଙ୍କରେ ପିତାମାତାଠାରେ
ବ୍ୟବହାର ହୋଇଥାଏ କେବଣ ପ୍ରକାରେ ।
କେତେ ପ୍ରକାର ଜଗତେ ଅଛି ସୃଷ୍ଟିଜାତି
ଭକ୍ତମାନେ ଅବା କେତେ ପ୍ରକାର ଅଟନ୍ତି ।
ନିତ୍ୟ ଅନିତ୍ୟ ଅଟଇ କେବଣ ପଦାର୍ଥ
କିରୂପେ ବ୍ରାହ୍ମଣ କେତେ ପ୍ରକାର ଜଗତ ।
ତୁମ୍ଭେ ସବୁକଥା ମୋତେ କହ ଭଲକରି
ତୁମ୍ଭ କୃପାଯୋଗେ ମୁହିଁ ହେବି ଭବୁ ପାରି ।
ଏରୂପେ ପିତାଙ୍କଠାରୁ ଶୁଣି ଭଗବାନ
କହିଲେ ତାହାଙ୍କ ଆଗେ ଯଥାର୍ଥ ବଚନ ।
ବୋଇଲେ ଦ୍ୱିଜଙ୍କ ଧର୍ମ କହୁଅଛି ଶୁଣ
ସନ୍ଧ୍ୟାପୂତହୋଇ ମୋତେସେବେ ଯେ ବ୍ରାହ୍ମଣ ।
ଆଉର ମୋହର ନଇବେଦ୍ୟକୁ ଭୁଞ୍ଜଇ
ଜୀବିତ ଦଶାରେ ସେହୁ ମୁକତ ହୁଅଇ ।
ଶାନ୍ତ ଶିଷ୍ଟ ଶୁଚିମନ୍ତ ଭାବରେ ଯେ ନିତି
ତପ ତୀର୍ଥ ସ୍ନାନ ବ୍ରତ ମନ୍ତ୍ରେ ଦେଇ ମତି ।
ନାନାବିଧ ଧର୍ମଶାସ୍ତ୍ର ଅଧ୍ୟୟନ କଲେ
ବିଷ୍ଣୁ ମନ୍ତ୍ର ଜପ ଗୁରୁସେବା ସହିତରେ ।
ସେହି ଦ୍ୱିଜ ବ୍ରହ୍ମଚାରୀ ବୋଲାଏ ଜଗତେ
ଗୃହସ୍ଥ ହୁଅଇ ତହୁଁ ଗୁରୁଙ୍କ ସମ୍ମତେ ।
ବେଦପାଠ ହୋମଦାନ ଅତିଥି ସେବନ
ତର୍ପଣ ବଳି ପ୍ରଭୃତି ନିତ୍ୟକର୍ମମାନ ।
ଗୃହସ୍ଥ ବିପ୍ରର ଏହା କର୍ତ୍ତବ୍ୟ ଅଟଇ
ଏଥିରେ ହେଳା କରିବା ଉଚିତ ନୁହଇ ।
ମାନ୍ୟଲୋକଙ୍କ ମଧ୍ୟରେ ପିତା ମହାଗୁରୁ
ସତଗୁଣରେ ଅଧିକ ମାତା ତାଙ୍କଠାରୁ ।
ମାତାଙ୍କ ପ୍ରତି ଦେବତା ଶତଗୁଣେ ଶ୍ରେଷ୍ଠ
ଦେବତା ପ୍ରତି କି ମନ୍ତ୍ରଦାତା ଯେ ଗରିଷ୍ଠ ।
ସମସ୍ତଙ୍କଠାରୁ ବଡ଼ ଦେବ ନାରାୟଣ
କରିବ ସର୍ବଦା ତାଙ୍କ ଚରଣ ସେବନ ।
ପ୍ରତ୍ୟକ୍ଷ ଅଟନ୍ତି ଗୁରୁ ନାରାୟଣ ରୂପ
ଭକ୍ତିରେ ପୂଜିବ ତାଙ୍କୁ ଆହେ ବ୍ରଜାଧିପ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସ୍ୱରୂପ ଶ୍ରୀଗୁରୁ
ସକଳ ଧର୍ମ ପ୍ରାପତ ହୁଏ ତାଙ୍କଠାରୁ ।
ଗୁରୁଙ୍କଠାରେ ସକଳ ଦେବତାଙ୍କ ସ୍ଥିତି
ହୋଇଥାଏ ବୋଲି ଜାଣ ଆହେ ମହାମତି ।
ପୁତ୍ର ସମାନରେ ଗୁରୁ ଶିଷ୍ୟଠାରେ ସ୍ନେହ
କରିବ ମନରୁ ତ୍ୟାଗକରି ଲୋଭ ମୋହ ।
ସ୍ୱଧର୍ମରେ ନିରତ ଯେ ବ୍ରାହ୍ମଣ ଅଟଇ
ଜଗତରେ ଶୁଚିମନ୍ତ ବୋଲାଏଟି ସେହି ।
ବିଷ୍ଣୁଙ୍କୁ ସେବିଲେ ବିପ୍ର ହୁଏ ଶୁଦ୍ଧପୂତ
ନୋହିଲେ ଅଶୁଚି ସେହୁ ହୁଅଇ ନିପୂତ ।
ବୃଷବାହ ସୂପକାର ସନ୍ଧ୍ୟାହୀନ ଦ୍ୱିଜ
ଦେବଳ ଶୂଦ୍ରାନ୍ନଭୋଜୀ ମୂର୍ଖ ବହୁପ୍ରଜ ।
ଦିବାଶାୟୀ ଶୂଦ୍ରଶବଦାହୀ ଅଟେ ସେହୁ
ଶୂଦ୍ରର ସମାନ ହୁଏ ଜାଣିଥାଅ ସେହୁ ।
ଶାଳଗ୍ରାମ ପୂଜାକରି ନୈବେଦ୍ୟ ଭୋଜନ
କରଇ ଯେ ପୁଣି ପାଦ ଉଦକ ସେବନ ।

ସେହି ବିପ୍ର ତୀର୍ଥ ସ୍ନାନଫଳ ଲଭିକରି
ଦେହଅନ୍ତେ ବିଷେ ଯାଇ ବିଷ୍ଣୁଙ୍କର ପୁରେ ।
ଗଙ୍ଗାଜଳଠାରୁ ଦଶ ଗୁଣରେ ଉଦକ
ଅଟେ ଶାଳଗ୍ରାମ ଶିଳା ଧଉତ ଅଧିକ ।
ପ୍ରତିଦିନ ତ୍ରିକାଳରେ ସନ୍ଧ୍ୟା ଦେବପୂଜା
କରିବ ବ୍ରାହ୍ମଣେ ଧର୍ମେ ଦେଇକରି ମଜ୍ଜା ।
ଶ୍ରୀରାମ ନବମୀ ଶିବରାତ୍ରି ଏକାଦଶୀ
ଏହି ଦିନରେ ନିଷ୍ଟୟ ହେବ ଉପବାସୀ ।
ତେମନ୍ତ ହେଲେ ଜୀବନ ମୁକ୍ତ ସେ ହୁଅଇ
ତାହାର ସମାନ ଜଗତରେ ନାହିଁ କେହି ।
ତାର ଦକ୍ଷିଣ ପାଦରେ ପୁଣ୍ୟ ତୀର୍ଥମାନ
ଏକତ୍ରିତ ହୋଇ କରିଥାନ୍ତି ଅବସ୍ଥାନ ।
ସେ ଜଳ ସେବନ କଲେ ଦେବପିତୃଗଣ
ସନ୍ତୁଷ୍ଟ ହୁଅନ୍ତି ନିଶ୍ଚୟରେ ବୋଲି ଜାଣ ।
ଶ୍ରୀହରିଙ୍କୁ ସେବାକରି ପ୍ରସାଦ ଯେ ଖାଏ
ତା ପାଦ ରଜରେ ମହୀ ସୁପବିତ୍ର ହୁଏ ।
ସକଳ ତୀର୍ଥବ୍ରତରେ ହୁଅଇ ଯେ ଫଳ
ମିଳେ ତାହା ସେବାକଲେ ବିପ୍ର ପାଦଜଳ ।
ଯମଦୂତ ଅବା ଯମପୁର ଦରଶନ
ସ୍ୱପ୍ନରେ ନ କରେ ଥରେ ବିପ୍ରଭକ୍ତ ଜନ ।
ବିଷ୍ଣୁମନ୍ତ୍ର ଉପାସକ ବ୍ରାହ୍ମଣଟି ଯେହି
ବୈଷ୍ଣବ ବୋଲାଇ ସବୁଠାରେ ଜାଣ ସେହି ।
ବ୍ରାହ୍ମଣ ବୈଷ୍ଣବଠାରୁ ଅଧିକ ହୋଇଣ
ତିନି ଲୋକରେ ନ ଥିବ କେହି ହେଲେ ଜାଣ
ଗୁରୁ ମୁଖରୁ ସେ ବିଷ୍ଣୁମନ୍ତ୍ରକୁ ଶୁଣଇଁ
ସେହି ମଧ୍ୟ ବୈଷ୍ଣବରେ ଉତ୍ତମ ଅଟଇ ।
ସଂସାର କର୍ଷଣ ତ୍ୟାଗ କରି ସେହି ନର
ଅନ୍ତଃକାଳେ ଯିବେ ସୁଖେ ବିଷ୍ଣୁଙ୍କ ପାଶର ।
ପୂର୍ବ ପର ସାତ ସାତ ପୁରୁଷ ସହିତେ
ବନ୍ଧୁ ମିତ୍ରଙ୍କୁ ମୁକତ କରଏ କଷ୍ଟତେ ।
ମନ୍ତ୍ର ଗ୍ରହଣ ମାତ୍ରକେ ହୁଅଇ ଏପରି
ପୁରଶ୍ଚରଣ ବିଷୟ ଶୁଣ ଭଲକରି !
ଯେବେ ପୁରଶ୍ଚରଣକୁ କରଣ ବ୍ରାହ୍ମଣ
ଜପିବ ବିଷ୍ଣୁଙ୍କ ମନ୍ତ୍ର ହୋଇ ସ୍ଥିରମନ ।
ତେମନ୍ତ ହେଲେ ସହସ୍ରେ ପୁରୁଷ ତାହାର
ଅନାୟାସେ ନିସ୍ତେ ହୋଇ ପାରନ୍ତି ଉଦ୍ଧାର ।

ଏକାନ୍ତ ବୈଷ୍ଣବ ହେଲେ ଲକ୍ଷେକ ପୁରୁଷ
ଉଦ୍ଧାର କରିଣ ହୁଏ ବିଷ୍ଣୁଙ୍କର ଦାସ ।
ଜଗତରେ ଭକ୍ତଠାରୁ ଅଧିକ ମୋହର
ନାହିଁ ବୋଲିକରି ତାତ ମନରେ ବିଗ୍ଭର ।
ଯେ ସକାଶୁ ବିଚକ୍ଷଣ ଲୋକ ସେତାଧମନେ
ଗ୍ରହଣ କରିବ ବିଷ୍ଣୁମନ୍ତ୍ର ସାବଧାନେ ।
ବୟସରେ ଜ୍ଞାନରେ ବା ଜାତିରେ ବିଦ୍ୟାରେ
ଊଣା ହୋଇଥିବ ଯେହୁ ନିଜ ତୁଳନାରେ ।
ତାଠାରୁ ମନ୍ତ୍ର ଗ୍ରହଣ କେବେ ନ କରିବ
କଲେ ତହିଁରୁ ଅବଶ୍ୟ ବିପଦ ଘଟିବ ।
ଆଶ୍ରମ ରହିତ ମୂର୍ଖ ସନ୍ନ୍ୟାସୀ ଯେ ଜନ
ତାହାଠାରୁ ମନ୍ତ୍ର ନ ଘେନିବ କଦାଚନ ।
ପିତାଙ୍କଠାରୁ ସେପରି ନ ଘେନିବ କେବେ
ଘେନିଲେ ତହିଁରେ ଫଳ ନାହିଁ ଜାଣ ସବେ
ବ୍ୟାଧିଗ୍ରସ୍ତ ବଂଶହୀନ ଭାର୍ଯ୍ୟାହୀନ ଜନ
ନୁହଇ କଦାପି ମନ୍ତ୍ର ଦେବାକୁ ଭାଜନ ।
ବୈଷ୍ଣବ ବିନା ବିଷ୍ଣୁମନ୍ତ୍ର ଅନ୍ୟଠାରୁ
ଗ୍ରହଣ କରିବ ନାହିଁ ଆହେ ଜ୍ଞାନୀ ଗୁରୁ ।
ବୟୋହୀନ ଗୁରୁ କଲେ ଅଳ୍ପାୟୁଷ ହୁଏ
ଜ୍ଞାନହୀନ ହୋଇଥିଲେ ଅଜ୍ଞାନ ଜନ୍ମାଏ ।
ବିଦ୍ୟାହୀନଠାରୁ ମନ୍ତ୍ର ଘେନିବନ୍ତି ଯେବେ
ମୂର୍ଖ ହୋଇବ ସବୁରି ମଧ୍ୟରେ ସେ ତେବେ ।
ଜାତିହୀନରୁ ଘେନିଲେ ହୁଏ ସର୍ବନାଶ
ପିତାଙ୍କଠାରୁ ଘେନିଲେ ନଷ୍ଟ ହୁଏ ଯଶ ।
ଏହିପରି ଆଉ ଯେତେ ଅଯୋଗ୍ୟ ବ୍ରାହ୍ମଣ ।
ତାହାଙ୍କଠାରୁ ଘେନିବା ଦୁଃଖର କାରଣ ।
ବୈଷ୍ଣବ ବ୍ରାହ୍ମଣ ଏକା ଅଟେ ଶୁଦ୍ଧପୂତ
ବିଷ୍ଣୁଙ୍କୁ ଯେ ପକ୍ୱଅନ୍ନ ଦେବାର ଉଚିତ ।
ଓଁକାର ପଠନ ଶାଳଗ୍ରାମ ଶିଳାର୍ଚ୍ଚନ
ପକ୍ୱଅନ୍ନ ପୂଜା ହୋମକାର୍ଯ୍ୟ ବଳିଦାନ ।
ଏହା ଯେବେ ବିପ୍ର ବିନା ଅନ୍ୟଲୋକ କରେ
ଅନ୍ତଃକାଳେ ପଡଇ ସେ ଘୋର ନରକରେ
ଦୁରାଚାର ଉଦାସୀନ ଠାରୁ ଅନ୍ନଗ୍ରାସ
କଲେ ହୁଅଇ ଲୋକର ସଂପଦ ବିନାଶ ।
ବ୍ରାହ୍ମଣ ସର୍ବଦା ନିତ୍ୟ ହବିଷ୍ୟ କରିବ
ମହାଦି ଆମିଷ ଦ୍ରବ୍ୟ କେବେ ନ ଛୁଇଁବ ।

ଆମିଷ ଛାଡ଼ିବା ଲୋକ ଦେବଜୀବନ୍ତ ହୁଏ
ଜୀବବଧ ପାତକରୁ ମୁକତକ ପାଏ ।
ଘୃତଦଧ ନୂଆହାଣ୍ଡ କରିଣ ରାନ୍ଧିବ
ବିଷ୍ଣୁ ଆଦି ଦେବତାଙ୍କୁ ନଇବେଦ୍ୟ ଦେବ ।
ନୋହିଲେ ପକ୍ଷେକ ମାସ ରଖି ସେ ଅନ୍ତରେ
ତ୍ୟାଗ କରିବ ଷୋଡ଼ଶ ଦିନ ପ୍ରଚାରେ ।
ପରିଷ୍କୃତ ସ୍ଥାନେ ପାକ କରି ଶୁଦ୍ଧଚିତ୍ତେ
ପବିତ୍ର ଭାବରେ ପୂଜା କରିବନ୍ତି ମୋତେ ।
ଯେବେ ଅବା ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ହୋଇବ
ନୋହିଲେ ସୂତକ ମୃତ ଅଶୌଚ ପଡ଼ିବ ।
କି ଅବା ଅଶୁଚି ଲୋକ ଶ୍ୱାନ ଆଦି ଜୀବ
ଛୁଇଁବେ ଯେବେ ସେ ପାକ ସେକ୍ଷଣି ତେଜିବ
ଉତ୍ତମ ପ୍ରକାରେ ପକ୍ୱ ହୋଇଥିବା ଅନ୍ନ
ଶୁଚିମନ୍ତ ହୋଇ ଦ୍ୱିଜ କରିବ ଭୋଜନ ।
ସୂର୍ଯ୍ୟଥିବା ସମୟରେ ଭୁଞ୍ଜିଲେ ଦ୍ୱିଥର
ନିଷ୍ଫଳ ହୋଇବ ସବୁ କର୍ମ ଧର୍ମ ତାର ।
ହବିଷ୍ୟ ଦିନରେ ଅବା ପିତୃ ଦିବସରେ
କାମିନୀ ସଙ୍ଗମ ତ୍ୟାଗ କରିବ ଯତ୍ନରେ ।
ଆବର ଯମର ଯାହା ନିମ୍ନ ସନ୍ତରଣ
ନ କରିବ କେବେ ହେଲେ ଜ୍ଞାନବନ୍ତ ଜନ ।
ସନ୍ଧ୍ୟାହୀନ ଦୁଷ୍ଟମତି ବୃଷଳୀ କାମୁକ
ଦେବଳ ବୃଷଭ ବାହୀ ଶୂଦ୍ର ବିରେଚକ ।
ଏମାନଙ୍କୁ ନିଜ ପାତ୍ର ନ ଦେବ ବ୍ରାହ୍ମଣ
ଦେଲେ ହେବ ତାର ନିଶ୍ଚେ ନରକେ ପତନ
କନ୍ୟା ବିକ୍ରୟ ଯେ କରେ ସେ ମହା ପାପିଷ୍ଠ
କୁମ୍ଭୀପାକରେ ପଡ଼ିଣ ଭୋଗୁଥାଏ କଷ୍ଟ ।
କନ୍ୟାର ଦେହରେ ଯେତେ ଲୋମ ରହିଥାଏ
ସେତେବର୍ଷ ଯାଏ ତାର ମୁକତି ନ ହୁଏ ।
ସେ ସକାଶୁ ବିଜ୍ଞଲୋକ ସୁପାତ୍ର ହସ୍ତରେ
ସମର୍ପିବ କନ୍ୟା କିଛି ନ ଭାବି ମନରେ ।
ବିପ୍ର ବଇଷ୍ଣବଙ୍କର ଧର୍ମ ଏହିପରି
କ୍ଷତ୍ରିୟଙ୍କ ଧର୍ମ ଏବେ ଶୁଣ କର୍ଣ୍ଣଡେରି ।
କ୍ଷତ୍ରିୟ ଯେ ପ୍ରତିଦିନ ଦେବ ବ୍ରାହ୍ମଣଙ୍କୁ
ଅର୍ଚ୍ଚନା କରିବ ମନେ ରଖିବ ଭକ୍ତିକୁ ।
ଆବର ରାଜ୍ୟ ପାଳନା ରଣେ ନିର୍ଭୟତା
ପ୍ରକାଶ କରିବ ସବୁବେଳେ ଛାଡ଼ି ଚିନ୍ତା ।

ଶରଣାଗତ ଲୋକଙ୍କୁ ଅଭୟ ପ୍ରଦାନ
କରିବ ପୁଣି ବ୍ରାହ୍ମଣେ ବଇଷ୍ଣବେ ଦାନ ।
ମାନ୍ତ୍ରଶାସ୍ତ୍ର ବିଶାରଦ ପଣ୍ଡିତଙ୍କୁ ନିତି
ପୋଷିବ ତାହାଙ୍କଠାରେ ପରକାଶି ଭକ୍ତି ।
ହସ୍ତୀ ଅଶ୍ୱ ରଥ ଆଦି ଚତୁରଙ୍ଗ ବଳ
ରଖାଇବ ଯତନରେ ବୁଝି କାଳବେଳ ।
ଯୁଦ୍ଧଯାତ୍ରା କରିବାକୁ ବିମୁଖ ନୋହିବ
ଶସ୍ତ୍ର ଅସ୍ତ୍ର ଦେଇ ଶତ୍ରୁଜନଙ୍କୁ ନାଶିବ ।
ରଣରେ ଯେ ପ୍ରାଣତ୍ୟାଗ କରେ ଶତ୍ରୁହାତେ
ସ୍ୱର୍ଗ ପ୍ରାପତ ତାହାଙ୍କୁ ହୁଅଇ ନିଶ୍ଚିନ୍ତେ ।
ବୈଶ୍ୟଙ୍କର ଧର୍ମ ଅଟେ ବାଣିଜ୍ୟ କରଣ
କୃଷି ସହିତରେ ପୁଣି ପଶୁ ସଂରକ୍ଷଣ ।
ବିପ୍ର ଦେବାର୍ଚ୍ଚନ ଦାନ ବ୍ରତ ଉପବାସ
ଧର୍ମ ଶ୍ରବଣ ବ୍ରାହ୍ମଣ ବୈଷ୍ଣବେ ବିଶ୍ୱାସ ।
ଶୂଦ୍ର ଜାତିରେ ଧର୍ମଟି ଅଟେ ବିପ୍ରାର୍ଚ୍ଚନ
ତହିଁରୁ ଅଧିକ କିଛି ନାହିଁ ବୋଲି ଜାଣ ।
ବ୍ରାହ୍ମଣଙ୍କ ଦ୍ୱେଷ ଅବା ଦ୍ରୋହ ଆଚରିଲେ
ଚଣ୍ଡାଳ ଯୋନିରେ ଶୂଦ୍ର ଜନ୍ମପାଏ ଭଲେ ।
ଆବର ଶ୍ୱାପଦ ଗୃଧ୍ର କଙ୍କ କାକ ହୋଇ
କେତେକାଳ ଅନ୍ତେ ପଡ଼େ ନରକରେ ଯାଇ
ଯେଉଁ ଶୂଦ୍ର ବ୍ରାହ୍ମଣୀକୁ ଉପଭୋଗ କରେ
ମଗ୍ନ ହୁଅଇ ସେ ମାତୃହରଣ ପାପରେ ।
ତପତ ତଇଳକୁଣ୍ଡେ ପଡ଼ି ଦେହଅନ୍ତେ
ବ୍ୟାକୁଳ ହୁଅଇ ଯମଦୂତ ଦଣ୍ଡାଘାତେ ।
ସେ ଅନ୍ତେ କୋଟିସହସ୍ର ଜନ୍ମପାଏ ପୁଣି
ବିଷ୍ଠାରେ ହୁଅଇ କ୍ଷୁଦ୍ର କୃମିରୂପ ହେନି ।
ସନ୍ନ୍ୟାସୀମାନଙ୍କ ଧର୍ମ କହୁ ଅଛୁ ଏବେ
ଶୁଣ ସାବଧାନ ହୋଇ ଇଚ୍ଛା ଅଛି ଯେବେ ।
ଦଣ୍ଡଗ୍ରହଣ ମାତ୍ରକେ ଧାର୍ମିକ ମୁ ରୁଷ
ହୁଏ ସାକ୍ଷାତରେ ନାରାୟଣଙ୍କ ସଦୃଶ ।
ପୂର୍ବାପର କର୍ମସବୁ ନିକୃନ୍ତନ କରି
ମୋହର ପାଶକୁ ଯାଏ ମୋତେ ଚିହ୍ନି ପାରି ।
ସନ୍ନ୍ୟାସୀଙ୍କ ପାଦରଜ ପରଶରେ ମହୀ
ପବିତ୍ର ହୁଅଇ ସର୍ବ କଲୁଷ ଛଡ଼ାଇ ।
ସନ୍ତୁଷ୍ଟ କରାଏ ଯେହୁ ସନ୍ନ୍ୟାସୀମାନଙ୍କୁ
ଅଶ୍ୱମେଧ ଯାଗଫଳ ପ୍ରାପ୍ତହୁଏ ତାଙ୍କୁ ।

ସାୟଂକାଳ ହେବାମାତ୍ରେ ସନ୍ନ୍ୟାସୀଏ ନିତ
ଉତ୍ତମ ଲୋକର ଗୃହେ ଅତିଥି ହୁଅନ୍ତ ।
ଭଲ ଅବା ମନ୍ଦ ନହେଉ ଦିଅଇ ସେ ଯାହା
ଆନନ୍ଦେ ଘେନନ୍ତ ଆହେ ବ୍ରଜକୁଳ ନାହା ।
ଅନ୍ନ ଅବା ଜଳଦାନ କଲେ ତାହାଙ୍କର
ନ ଥାଏ ଚର୍ଚ୍ଚିରେ ଊଣା ଅଧିକ ବିଚାର ।
ମିଷ୍ଟ ପଦାର୍ଥ କଦାପି ନ ମାଗନ୍ତ ସେହି
ଶାପ ନ ଦିଅନ୍ତ ମନେ କ୍ରୋଧଭାବ ବହି ।
ଧନବସ୍ତ୍ର ଆଦି ଯେତେ ଭୋଗ୍ୟ ଦ୍ରବ୍ୟମାନ
ନେବାପାଇଁ କଷ୍ଟ ହେଲେ ନ କରନ୍ତ ମନ ।
ଶୀତ ଗ୍ରୀଷ୍ମ ବରଷାରେ ସୁଖ ଦୁଃଖ କଷ୍ଟ
ବିଚାର କରନ୍ତ ନାହିଁ ଜାଣ କହୁଅଛୁ ।
କାମ କ୍ରୋଧ ଲୋଭ ମୋହ ପରିତ୍ୟାଗ କରି
ସମସ୍ତଙ୍କୁ ବିଚାରନ୍ତ ପୁତ୍ରକନ୍ୟା ପରି ।
ସେଠାରେ ଗୋଟିଏ ରାତ୍ରି ରହି ପ୍ରଭାତରେ
ଯାଆନ୍ତ ଅନ୍ୟ ସ୍ଥାନକୁ ସନ୍ତୋଷ ଚିତ୍ତରେ ।
ସନ୍ନ୍ୟାସୀ ହୋଇ ଯେ କୃଷି ବାଣିଜ୍ୟ କରଇ
ସେ ପାପିଷ୍ଠ ଦୁରାଚାର ପତିତ ହୁଅଇ ।
ଆବର ଯାନ ବାହନ ସୁଖ ଉପଭୋଗ
ଇଚ୍ଛା କଲେ ନଷ୍ଟେଁ ତାକୁ ଘୋଟଇ ଅଭାଗ୍ୟ ।
ବ୍ରାହ୍ମଣ କାମିନୀ ଯେବେ ବିଧବା ହୁଅଇ
ନିଷ୍କାମ ବ୍ରତ ତାହାର ଉଚିତ ଅଟଇ ।
ଦିନଶେଷେ ହବିଷ୍ୟାନ୍ନ ଭୋଜନ କରିବ
ଗନ୍ଧଦ୍ରବ୍ୟ ସୁବାସିତ ତୈଳ ନ ଘେନିବ ।
ଆବର ଚନ୍ଦନ ପୁଷ୍ପ ସିନ୍ଦୂର କସ୍ତୁରୀ
ନ ଘେନିବ କେବେ ଉପଭୋଗ ଇଚ୍ଛାକରି ।
ସ୍ୱର୍ଣ୍ଣରତ୍ନ ଅଳଙ୍କାର ଘେନିବାକୁ ମନ
ନ କରିବ କେବେ ହେଲେ ଆହେ ତାତଜାଣ ।
ଶୁଦ୍ଧପୂତ ହୋଇ ନିତ୍ୟ ବିଷ୍ଣୁ ଶ୍ରୀଚରଣ
ଏକାନ୍ତ ମନରେ କରୁଥିବ ସୁମରଣ ।
ନାରାୟଣ ନାମ ଜପକରି ନିରନ୍ତର
ଶୁଦ୍ଧଭାବେ କଟାଇବ ରଜନୀ ବାସର ।
ପୁତ୍ରପରି ଗୁରୁଙ୍କଠାରେ ରଖି ଭାବ
ନ କରିବ କେବେ ଭୋଗ ବିଳାସ ବିଭବ ।
ଏକାଦଶୀ ଜନ୍ମାଷ୍ଟମୀ ଶ୍ରୀରାମ ନବମୀ
ଏହିଦିନେ ଉପବାସ କରିବଟି ଜାଣି ।

ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ଭ୍ରଷ୍ଟଦ୍ରବ୍ୟ ଛାଡ଼ି
ଭୋଜନ କରିବ ଅନ୍ୟ ପଦାର୍ଥକୁ ଲୋଡ଼ି ।
ବିଧବା ବ୍ରାହ୍ମଣୀ ଯତି ବ୍ରହ୍ମଚାରୀଙ୍କର
ଉଚିତ ନୁହେଁ ତାମ୍ବୁଳ କେବେ ଭୁଞ୍ଜିବାର ।
ଗୋମାଂସ ସୁରା ସମାନ ଅଟଇଟି ସେହି
ଶ୍ରୁତିଶାସ୍ତ୍ରରେ ଏ କଥା ଲେଖାଅଛି ହୋଇ ।
ମସୂର ଜମ୍ବୀର ପର୍ଣ୍ଣ ରକ୍ତବର୍ଣ୍ଣ ଶାକ
ତ୍ୟାଗ କରିବ କଦାପି ନ ହୋଇ ବିବେକ ।
ବର୍ତ୍ତୁଳାକାର ଅଲାବୁ ନ ଭକ୍ଷିବ କେବେ
ନରକେ ପଡ଼ିବ ତାହା ଭୁଞ୍ଜିବଟି ଯେବେ ।
ପର୍ଯ୍ୟଙ୍କ ଉପରେ ଯେବେ କରିବ ଶୟନ
ପତିର ଆତ୍ମା ହୋଇବ ନରକେ ପତନ ।
ଆବର କାମିନୀଙ୍କର ଯେତେ ଭୋଗ ଦ୍ରବ୍ୟ
ସର୍ବଦା ତାହାକୁ ବଳେ ତ୍ୟାଗ କରୁଥିବ ।
ନର୍ତ୍ତକ ଗାୟକ ଯୁବା ସୁବେଶ ପୁରୁଷ
ନ ରହିବ କେବେ ହେଲେ ଏହାଙ୍କର ପାଶ ।
ସବୁବେଳେ ଧର୍ମଶାସ୍ତ୍ର ତତ୍ତ୍ୱ ଶୁଣୁଥିବ
ଦେବତା ବ୍ରାହ୍ମଣଠାରେ ଭକତି କରିବ ।
ଏହିରୂପେ ବିଧବାର କର୍ତ୍ତବ୍ୟ ଅଟଇ
ପରମାର୍ଥ ରୂପ ଏବେ ଶୁଣ ମନଦେଇ ।
ପ୍ରଥମରେ ଅଧ୍ୟୟନ ଅଧ୍ୟାପନା କରି
ଶିଷ୍ୟଙ୍କୁ ପାଳିବ ନିଜ ପୁତ୍ର କନ୍ୟାପରି ।
ଗୁରୁ ବ୍ରାହ୍ମଣଙ୍କ ସେବା ଶୁଶ୍ରୂଷା କରିବ
ଅତିଥିଙ୍କୁ ଯଥାଶକ୍ତି ସତ୍କାର ଦେବ ।
ସିଦ୍ଧାନ୍ତ ଶାସ୍ତ୍ରେ ନୈପୁଣ୍ୟ ପ୍ରକାଶି ନିରତେ
ଭାବନା କରିବ ତାହା ନିଜ ଇଚ୍ଛାମତେ ।
ଉତ୍ତମ ଗ୍ରନ୍ଥର ବ୍ୟାଖ୍ୟା ସଂଶୋଧନ ବିଧି
କରିବ ବିଚାର ଯେଉଁରୂପେ ହେବ ସିଦ୍ଧି ।
ପ୍ରବଳ ଭାବରେ ସ୍ନାନ ଭୋଜନ ବିହାର
କରିବ ସର୍ବଦା କର୍ମେ ହୋଇ ତତପର ।
ପରମାର୍ଥ ତତ୍ତ୍ୱରୂପ ଅଟଇଟି ସେହି
ପତିବ୍ରତା ଧର୍ମ ଏବେ ଶୁଣ କହୁଥାଇ ।
ପ୍ରତିଦିନ ପତିସେବା ପତିଭକ୍ତି ଭାବ
କରିବା ଅଟଇ ପତିବ୍ରତାର ସ୍ୱଭାବ ।
ବ୍ରତ ଉପବାସ ଧର୍ମ ଆଚରଣ ଯେତେ
କରୁଥିବ ପତିଙ୍କର ବାକ୍ୟ ଅନୁମତେ ।

ନାରାୟଣ ସମାନରେ ପତିକୁ ବିଚାରି
ଥିବ ସବୁବେଳେ ତାର ପାଦ ସେବାକରି ।
ଯାତ୍ରା ନୃତ୍ୟ ଗୀତ ହେବା ସ୍ଥାନକୁ ନ ଯିବ
ପରପୁରୁଷଙ୍କ ମୁଖ କେବେ ନ ଚାହିଁବ ।
ପରଲୋକର ସୁରତ କ୍ରୀଡ଼ା ନ ଦେଖିବ
କାହାକୁ ପରିହାସରେ କଥା ନ କହିବ ।
ଇଚ୍ଛା ଅନୁସାରେ ସ୍ୱାମୀ କରିଲେ ଭୋଜନ
କରିବ ଆନନ୍ଦେ ତାର ପ୍ରସାଦ ସେବନ ।
କଟୁବାକ୍ୟ କହି କେବେ ବ୍ୟଥା ତାର ମନେ
ଜାତ ନ କରିବ ରହି ଅତି ସାବଧାନେ ।
ପୁତ୍ରଠାରୁ ଶତଗୁଣେ ଆଦର କରିବ
ପତିଏକା ଗତି ମୁକ୍ତି ବୋଲି ବିଚାରିବ ।
ଏମନ୍ତ ହେଲେ ସେ ଧର୍ମବଳେ ଆପଣାର
ଶତପୁରୁଷଙ୍କୁ କରି ପାରଇ ଉଦ୍ଧାର ।
ପତିବ୍ରତା ସ୍ତ୍ରୀଙ୍କର ପତି ସହଜରେ
ଅଶେଷ ପାପରୁ ମୁକ୍ତ ହୁଅଇ ସତ୍ୱରେ ।
ପତ୍ନୀକୁ ସଙ୍ଗରେ ଘେନି ଶ୍ରୀହରିଙ୍କ ପାଶେ
ରହିଣ କାଳ କଟାଏ ଅତ୍ୟନ୍ତ ହରଷେ ।
ପୃଥିବୀରେ ଯେତେ ଯେତେ ପୁଣ୍ୟ କୀର୍ତ୍ତିମାନ
ସତୀର ପାଦରେ ସବୁ କରିଥାନ୍ତି ସ୍ଥାନ ।
ମୁନି ଋଷିମାନଙ୍କର ଧର୍ମଫଳ ଯେତେ
ସତୀସ୍ତ୍ରୀ ତାହା ଲଭ କରଇ କହୁଁତେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଦେବଗଣ
ସତୀର ଶାପକୁ ଭୟ କରନ୍ତି ଜାଣ ।
ସତୀକୁ ପ୍ରାର୍ଥନା କଲେ ପାତକରୁ ମୁକ୍ତ
ହୁଅଇ ଲୋକ ନିଶ୍ଚୟ ଆହେ ବ୍ରଜନାଥ ।
ଆପଣା ଧର୍ମବଳରେ ପତିବ୍ରତା ସ୍ତ୍ରୀ
କ୍ଷଣକରେ ଭସ୍ମ କରିପାରେ ତିନିପୁରୀ ।
ସତୀର ଜନନୀ ପିତା ପୁତ୍ର କନ୍ୟା ଯେତେ
ବଇକୁଣ୍ଠପୁରେ ବାସ କରନ୍ତି ସମସ୍ତେ ।

ପତିବ୍ରତାର କର୍ତ୍ତବ୍ୟ କହୁଅଛି ଶୁଣ
ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗ କରିବ ବନ୍ଦନ ।
ସ୍ୱାମୀଙ୍କ ଚରଣ ରେଣୁ ମସ୍ତକେ ଧରିବ
ଭକ୍ତିଭରେ ପାଦତଳେ ପ୍ରଣିପାତ ହେବ ।
ସେ ଅନ୍ତରେ ଗୃହକାର୍ଯ୍ୟ ସମାପନ କରି
ଧଉତ ବସନ ପିନ୍ଧି ଶୁକ୍ଳପୁଷ୍ପ ଧରି ।
ପତିଙ୍କୁ ପୂଜା କରିଣ ନିର୍ମଳ ଜଳରେ
ସ୍ନାନ କରାଇଣ ବସାଇବ ଆସନରେ ।
ସୁଗନ୍ଧ ଚନ୍ଦନ ପୁଷ୍ପମାଳା ଦେଇକରି
ପୂଜା କରିବ ଭକତି ଭାବ ହୃଦେ ଧରି ।
ବୋଲିବ ସର୍ବ ଦେବତାମୟ ମୋର ପତି
ସନ୍ତୁଷ୍ଟ ହୁଅନ୍ତୁ ମୋର ଘେନିଣ ବିନତି ।
ସେ ଅନ୍ତରେ ପାଦ୍ୟ ଅର୍ଘ୍ୟ ନଇବେଦ୍ୟ ଜଳ
ଗୋଟି ଗୋଟିକରି ଆଣି ଦେବ ସେ ସକଳ ।
କ୍ଷିତିରେ ବେନିକର ଯୋଡ଼ି ଆଗେ ଉଭା ହେବ
ଦୋଷ କ୍ଷମା କର ବୋଲି ପ୍ରାର୍ଥନା କରିବ ।
ଆବର ବୋଲିବ ମୋର ପ୍ରାଣରୁ ଅଧିକ
ଅଟନ୍ତି ଯେ ପତି ତାଙ୍କ ପାଦେ ମୋ ମସ୍ତକ ।
ସର୍ବଦା ନମ୍ର ଭାବରେ ରହୁସ୍ଥିର ହୋଇ
ପରମ ଆରାଧ୍ୟ ଦେବ ଅଟନ୍ତି ଯେ ସେହି ।
ଏମନ୍ତ ସ୍ତୋତ୍ର ପଠନ କରି ପ୍ରତିଦିନ
ସ୍ତୁତି କରୁଥିବ କାନ୍ତ ସମୀପରେ ଜାଣ ।
ପୂର୍ବକାଳେ ସରସ୍ୱତୀ ଗଙ୍ଗା ବସୁମତୀ
ଏ ମହାସ୍ତୋତ୍ର ପଠନ କଲେ ବହି ପ୍ରୀତି ।
ଏହାକୁ ପଢ଼ିଲେ ସ୍ତ୍ରୀ ପତିବ୍ରତା ହୋଇ
ଆବର ଧନ ସମ୍ପଦ ସକଳ ଲଭଇ ।
ପତିବ୍ରତା ଧର୍ମ ଅଟେ ଏମନ୍ତ ପ୍ରକାର
ଗୃହୀଙ୍କ ଧର୍ମ ବିଷୟ ଶୁଣ ବ୍ରଜେଶ୍ୱର ।
ଏହିଠାରେ ସତୀସ୍ତ୍ରୀ ଧର୍ମ ସମାପନ
କ୍ଷେତ୍ରମୋହନ ଗୀତରେ କଲା ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ନାନାବିଧ ଧର୍ମତତ୍ତ୍ୱ କଥନେ ନାମ ଷଡଶୀତିତମୋଽଧ୍ୟାୟଃ ।

—:*:—

# ଚତୁରଶୀତତମ ଅଧ୍ୟାୟ

## ନନ୍ଦଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର ଗୃହସ୍ଥ ଧର୍ମ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ବ୍ରଜେଶ୍ୱର
ଯେମନ୍ତ ଧର୍ମ ଅଟଇ ଗୃହୀମାନଙ୍କର ।
ଦେବତା ବ୍ରାହ୍ମଣ ପୂଜା କରିବାର ନିତି
ଗୃହସ୍ଥର ଧର୍ମ ଅଟେ ଆହେ ମହାମତି ।
ପର୍ବଦିନେ ଦେବଗଣ ଗୃହସ୍ଥ ପାଶକୁ
ଆସନ୍ତି ଉତ୍ତମରୂପେ ପୂଜା ପାଇବାକୁ ।
ପିତୃମାନେ ସବୁଦିନେ ଆଶାନ୍ୱିତ ହୋଇ
ଗୃହୀର ପାଶକୁ ବଳେ ଆସୁଥାନ୍ତି ଧାଇଁ ।
ଅତିଥିମାନେ ଗୃହସ୍ଥଠାରୁ ଅନ୍ନପାନ
ପାଇବାକୁ ନିତି ଧାଇଁ ଆସନ୍ତି ଟି ଜାଣ ।
ଅତିଥି ସତ୍କାର ଯେହୁ ଗୃହସ୍ଥ ନ କରେ
ରହଇ ସେ ସବୁବେଳେ ଅଶୁଚି ଭାବରେ ।
ସାୟଂକାଳ ଅଭ୍ୟାଗତ ଗୃହସ୍ଥ ପାଶକୁ
ଆସିକରି ତାହାଠାରୁ ପାଇଣ ପୂଜାକୁ ।
ଶୁଭଆଶୀର୍ବାଦ କରି ପ୍ରଭାତରେ ଯାଏ
ନୋହିଲେ ବିମୁଖ ହେଲେ ଶାପକୁ ସେ ଦିଏ ।
ଯାହାଘରୁ ଅଭ୍ୟାଗତ ହୁଅଇ ନିରାଶ
ପିତୃମାନେ ତାହା ପ୍ରତି ନୁହନ୍ତି ସନ୍ତୋଷ ।
ଦେବତାମାନେ ଗ୍ରହଣ ନ କରି ପୂଜା
ବାହୁଡ଼ି ଯାନ୍ତି ଦୁଃଖିତ କରି ନିଜ ମନ୍ଥା
ସ୍ତ୍ରୀହତ୍ୟା ଗଉହତ୍ୟା ବ୍ରହ୍ମହତ୍ୟା ଦୋଷ
ଅତିଥି ଦ୍ରୋହୀ ଲୋକର ହୁଅଇ ଅବଶ୍ୟ ।
ଭଗ୍ନ ଆଶାରେ ଅତିଥି ଫେରିଯାଏ ଯେବେ
ପୁଣ୍ୟଭାଗ ନେଇ ପାପ ଦେଇଯାଏ ତେବେ ।
ସେ ସକାଶୁ ପ୍ରତିଦିନ ସାବଧାନ ହୋଇ
ଅତିଥିମାନଙ୍କୁ ସେବା କରୁଥିବ ଗୃହୀ ।
ପୋଷିବାକୁ ଯୋଗ୍ୟ ହୋଇଥିବେ ଯେଉଁମାନେ
ଅବହେଳା ତାଙ୍କଠାରେ ନ କରିବ ମନେ ।
ଗୃହସ୍ଥର ପତ୍ନୀ ମଧ୍ୟ ପତି ମନ ଧରି
ରହିବା ଉଚିତ ଜାଣ ଆହେ ଦଣ୍ଡଧାରୀ ।
ଦୁଷ୍ଟ ନଷ୍ଟ ପରି ଯେବେ କଳହ ସେ କରେ
ମନ ନ ଦିଏ ଦେବତା ଅତିଥି ପୂଜାରେ ।

ତେମନ୍ତ ହେଲେ ଅଶେଷ ପାତକରେ ସେହି
ଲିପ୍ତ ହୋଇ ଅନ୍ତଃକାଳେ ନରକେ ପଡ଼ଇ ।
ପତିଭକ୍ତି କରିଥାଏ ଯେବଣ ଗୃହିଣୀ
ଶୁଦ୍ଧମତି ବୋଲି ତାକୁ ଜାଣ ନୃପମଣି ।
ପ୍ରତିଦିନ ପ୍ରାଙ୍ଗଣରେ ଗୋମୟ ଲେପନ
କରିବ ଉତ୍ତମ ଗୃହୀ ପତ୍ନୀ ନିଶ୍ଚେ ଜାଣ ।
ସେ ଅନ୍ତରେ ଗୃହକର୍ମ ସମାପନ କରି
ସ୍ନାନ ଅନ୍ତେ ଦିବ୍ୟ ଧୌତ ବାସ ପିନ୍ଧି ସାରି ।
ଗୃହ ଦେବତାଙ୍କ ପୂଜାବିଧି ବତାଇବ
ସେ ଅନ୍ତେ ବିପ୍ର ଅତିଥିମାନଙ୍କୁ ପୂଜିବ ।
ପାକସିଦ୍ଧ କରି ନିଜପତିଙ୍କୁ ଭୁଞ୍ଜାଇ
ଅତିଥିଙ୍କୁ ଦେବ ଅନ୍ନ ବ୍ୟଞ୍ଜନାଦି ନେଇ ।
ପୁତ୍ର ଶିଷ୍ୟ ଭରତାଙ୍କୁ ସମାନ ଭାବରେ
ପାଳନା କରିବ କିଛି ନ ଭାବି ମନରେ ।
ଶ୍ୱଶୁରୁ ପିତା ମାତା ପତି ଏହାଙ୍କୁ ସର୍ବଦା
ଦେବତା ତୁଲ୍ୟ ଭାବିବ ଗୃହସ୍ଥ ପ୍ରମଦା ।
ଯେବେ ସେମାନଙ୍କଠାରେ ସାମାନ୍ୟ ଭାବନା
କରିବ ତେବେ ଭୋଗିବ ନରକ ଯାତନା ।
ଗୃହସ୍ଥ ଯେ ଆପଣାର କୁଟୁମ୍ବ ସହିତେ
ପୋଷିବ ବନ୍ଧୁଜନଙ୍କୁ ଅକୁଣ୍ଠିତ ଚିତ୍ତେ ।
ଅନ୍ୟଥା ଭଗିନୀ ଅବା ଭାଇର ଭାରିଯା
ଥିଲେ କେବେ ସେମାନଙ୍କୁ ନ କରିବ ତେଜ୍ୟା
ଏରୂପେ ଗୃହସ୍ଥଙ୍କର କର୍ତ୍ତବ୍ୟ ଅଟଇ
ଏହା ରକ୍ଷା ନ କଲେ ପାତକ ଘୋଟଇ ।
ସ୍ତ୍ରୀଜାତି ବାସ୍ତବରେ ଅଟେ ସୁନିର୍ମଳ
ସଂସାର ତା ସାହାଯ୍ୟରେ ହୁଅଇ କେବଳ ।
ପ୍ରଥମରେ ଜଗତରେ ଏକବିଧ ଜାତି
ସୃଜନା କଲେ ନିଜେ ବ୍ରହ୍ମା ପ୍ରଜାପତି ।
ପ୍ରକୃତି ଅଂଶରେ ସେହି ଜାତି ଜନ୍ମିଥିଲ
...ଶା ଅଧିକ କେହିଟି ଜଗତେ ନ ଥିଲ ।
...ଧାରକନ୍ୟକା ଶାପେ ଧର୍ମ ଯେତେବେଳେ
ସମଗ୍ର ରୂପରେ କ୍ଷୟ ହେଲା ମହୀତଳେ ।

ଏହି ସମସ୍ତ କୃତ୍ୟାସ୍ତ୍ରୀ ସୃଜନ୍ତେ ଧାତା
ଯେତ୍ରଠାରୁ ଜାତିଭେଦ ହେଲା ଆହେ ପିତା ।
ଉତ୍ତମ ମଧ୍ୟମ ପୁଣି ଅଧମ ପ୍ରକାରେ
ସେହି ସ୍ତ୍ରୀଜାତି ଖ୍ୟାତ ହେଲେ ଜଗତରେ ।
ପତିବ୍ରତା ଅଟଇ ଯେ ଉତ୍ତମ କାମିନୀ
ଜାରପୁରୁଷରେ ଦୃଷ୍ଟି ନ ଦିଏ ସେ ଜାଣି ।
ଆପଣା ପତିକୁ ପୂଜା କରୁଥାଏ ନିତି
ବ୍ରତ ଉପବାସ ଧର୍ମେ ଦିଏ ପୁଣି ମତି ।
ଯେଉଁ ସ୍ତ୍ରୀ ପତି ଭୟେ ନ ଭଜେ ଜାରକୁ
ମଧ୍ୟମା ବୋଲିଣ ଲୋକେ ବୋଲନ୍ତି ତାହାକୁ
ଏକାନ୍ତ ସ୍ଥାନ ସମୟ ପ୍ରାର୍ଥୟିତା ନର
ନ ଥିଲେ ସତୀତ୍ୱ ରହେ ସ୍ତ୍ରୀମାନଙ୍କର ।
ଦୁଷ୍ଟମତି ଜାରଭୋଗ୍ୟା ଯେବଣ କାମିନୀ
ଅଧମା ବୋଲି ତାହାକୁ ଥାଅ ମନେ ଘେନି ।
ସେ ସ୍ତ୍ରୀ ସର୍ବଦା ପତି ସଙ୍ଗରେ କଳହ
ଆଚରଣ କରୁଥାଏ ଛାଡ଼ି ଭୟ ସ୍ନେହ ।
ଜାର ପୁରୁଷ ଦେଖିଲେ ଆନନ୍ଦରେ ଯାଇ ।
ଅଙ୍ଗ ସମର୍ପଣ କରେ ମିଷ୍ଟକଥା କହି ।
ସୁବେଶ ଯୁବକ ରତିକ୍ଷମ ଯେ ପୁରୁଷ
ତାକୁ ଦେଖିବା ମାତ୍ରକେ ହୁଅଇ ଅବଶ ।
ରାଜା ଅବା ଗୁରୁ ଆସି କହିଲେ ତାହାକୁ
ଛାଡ଼ି ନ ପାରଇ କେବେ ଜାର ପୁରୁଷକୁ ।
ଜଳରେଖା ପରି ଅଟେ ତାହାର ପିରତି
ପର ଆପଣା ବୋଲି କେ ନ ଭାବେ ସେ ମତି
ପ୍ରଗାଢ଼ ସୁରତି ରସ ଯାହାଠାରୁ ପାଏ
ଦେବତା ତୁଲ୍ୟ ତାଠାରେ ଭକ୍ତି କରୁଥାଏ ।
ଗୃହକର୍ମ ବ୍ରତ ତପ ଉପବାସେ ତାର
ମନ ନ ରହଇ ଜାଣ ଆହେ ବ୍ରଜେଶ୍ୱର ।
ଏହିରୂପେ ସ୍ତ୍ରୀଜାତି ତ୍ରିବିଧ ଅଟଇ
ଭକ୍ତଙ୍କର କଥା ଏବେ ଶୁଣ ମନଦେଇ ।
କୁଶଶଯ୍ୟାରେ ଶୟନ କରି ନିରନ୍ତର
ଧ୍ୟାନ କରଇ ଯେ ପାଦ-ପଦ୍ମକୁ ମୋହର ।
ଆବର ବ୍ରହ୍ମତ୍ୱ ଅବା ଦେବତ୍ୱକୁ ସେହି
ମୋହର ଦାସତ୍ୱ ଛାଡ଼ି ଇଚ୍ଛା ନକରଇ ।
କେବଳ ନିଷ୍ଠଳା ଭକ୍ତି ରଖି ମୋହଠାରେ
ଦୟା ରଖିଥାଏ ସବୁ ଜୀବଙ୍କ ଉପରେ ।

ତାହାକୁ କେବେହେଁ କ୍ଷୁଧା ତୃଷା ନିଦ୍ରା ଆସି
ସାମାନ୍ୟଲୋକ ପରାୟେ ନ ପାରନ୍ତି ଗ୍ରାସି ।
ଏମନ୍ତ ଯେ ଭକ୍ତ ସେହି ଅଟଇ ଉତ୍ତମ
ମଧ୍ୟମ ଭକ୍ତଙ୍କ କଥା କହୁଅଛି ଶୁଣ ।
ଭୋଗରେ ଆସକ୍ତ ହୋଇ ଗୃହକର୍ମ କରେ
ସର୍ବବେଳେ ରହେ ଶୁଦ୍ଧ ପବିତ୍ର ଭାବରେ ।
ସକଳ ଜଗତ କର୍ତ୍ତା ଅଟନ୍ତି ଶ୍ରୀହରି
ଭାବନା କରଇ ନିତି ନିତି ଏହିପରି ।
କର୍ମରେ ବାକ୍ୟରେ ଅବା ମନରେ ଅନ୍ୟଥା
ନ କରଇ କେତେବେଳେ ଛାଡ଼ି ମୋର କଥା
ତେମନ୍ତ ଲୋକ ମଧ୍ୟମ ଭକତ ଅଟଇ
ଅଳ୍ପ ଭକ୍ତି ଥିବା ଲୋକ ଅଧମ ବୋଲାଇ ।
ପ୍ରାକୃତିକ ବୋଲି ଅଟେ ତାର ଅନ୍ୟ ନାମ
ତେମନ୍ତ ଲୋକକୁ ଦଣ୍ଡି ନ ପାରଇ ଯମ ।
ଉତ୍ତମ ଭକ୍ତ ସହସ୍ର ପୁରୁଷଙ୍କୁ ମୁକ୍ତ
କରଇ ଶତେକ ଅଟେ ସେ ମଧ୍ୟମ ଭକ୍ତ ।
ଅଧମ ଭକ୍ତ ତହିଁର ଚତୁର୍ଥାଂଶ ମାତ୍ର
ଉଦ୍ଧାର କରିବା ପାଇଁ ହୋଇଥାଏ ପାତ୍ର ।
ବ୍ରହ୍ମାଣ୍ଡ ରଚନା କଥା ଶୁଣ ଏବେ ତାତ
ଈଶ୍ୱର ସୃଷ୍ଟି ଅଟଇ ନିଖିଳ ଜଗତ ।
କପିଳ ଗଣେଶ ଦୁର୍ଗା ଲକ୍ଷ୍ମୀ ସରସ୍ୱତୀ
ଏମାନେ ସୃଷ୍ଟି ବିଷୟ ଅଳପ ଜାଣନ୍ତି ।
ଉତ୍ତମ ରୂପେ କେବଳ ଜାଣନ୍ତି ଶଙ୍କର
ତାହାଙ୍କୁ କେବଣ କଥା ନୁହେଁ ଅଗୋଚର ।
ଯେଉଁରୂପେ ନିତ୍ୟ ଅଟେ ଆତ୍ମା ସେହିପରି
ନିତ୍ୟ ପଦାର୍ଥ ଅଟନ୍ତି ପ୍ରକୃତି ଈଶ୍ୱରୀ ।
ଆବର ଆକାଶ ଦଶଦିଗ ମଧ୍ୟ ନିତ୍ୟ
ଗୋଲୋକ ବୈକୁଣ୍ଠ ଦୁଇ ପୁର ସେହିମତ ।
ଦିନେ ମୁହିଁ ଗୋଲୋକରେ ନୃତ୍ୟ କଲାବେଳେ
ଯୁବତୀ ଗୋଟିଏ ଜାତହେଲା ତତକାଳେ ।
ଅକସ୍ମାତେ ବାମାଙ୍ଗରୁ ପଡ଼ିଲାକ ଖସି
ଦେଖିଲି ହୋଇଛି ବାଳା ଷୋଡ଼ଶ ବରଷୀ ।
ଚମ୍ପକ ବରନ ଗାତ୍ରୀ ପ୍ରସନ୍ନ ବଦନା
କୋମଳାଙ୍ଗୀ ସୁଶୋଭିତ ଉଜ୍ଜ୍ୱଳ ଦଶନା ।
ଗଜେନ୍ଦ୍ର ଗାମିନୀ ନାନା ଭୂଷଣ ଭୂଷିତା
ରତ୍ନସାର ବିରଚିତ ମଞ୍ଜୀର ରଞ୍ଜିତା ।

ଏମନ୍ତ ରୂପରେ ବାମା ଆଗେ ଉଭା ହୋଇ
କଟାକ୍ଷ ଦୃଷ୍ଟିରେ ମୋତେ ଦେଲା ଥରେ ଚାହିଁ
ସେ ଅନ୍ତରେ ରାସସ୍ଥଳେ ଅଗ୍ରବନ୍ତେ ମୋର
ଧାଇଁଲା ଆନନ୍ଦ ମନେ ହୋଇ ତରତର ।
ସେ ସକାଶୁ ରାଧା ବୋଲି ତା ନାମ ହୋଇଲା
ମୋହର ସମାନ ସେହୁ ପୂଜାକୁ ପାଇଲା ।
ପ୍ରକୃଷ୍ଟ ତାର ସ୍ୱଭାବ ହୋଇ ଥିଲା ସେଣୁ
ପ୍ରକୃତି ନାମକୁ ପାଇଥିଲା ସେ କାରଣୁ ।
ସକଳ କାର୍ଯ୍ୟରେ ଶକ୍ତା ହୋଇବାରୁ ସେହି
ଶକତି ନାମରେ ଖ୍ୟାତ ହୋଇଲାଟି ମହୀ ।
ସମସ୍ତ ମଙ୍ଗଳ କାର୍ଯ୍ୟ ହୁଏ ତାଙ୍କଠାରୁ
ସର୍ବମଙ୍ଗଳା ନାମରେ ଖ୍ୟାତ ସେ ହେତୁରୁ
ବୈକୁଣ୍ଠ ଭବନେ ମହାଲକ୍ଷ୍ମୀ ସରସ୍ୱତୀ
ମୂର୍ତ୍ତିଭେଦେ ଭିନ୍ନ ଭିନ୍ନ ରୂପରେ ଅଛନ୍ତି ।
ଆବର ସାବିତ୍ରୀ ଦୁର୍ଗା ନାମରେ ସେପରି
ପ୍ରକାଶିତ ହୋଇଛନ୍ତି ଜଗତ ଈଶ୍ୱରୀ ।
ତାହାଙ୍କ କଳାରେ ଗଙ୍ଗା ତୁଳସୀ ପ୍ରଭୃତି
ସ୍ତ୍ରୀଗଣ ଜଗତରେ ଜାତ ହୋଇଛନ୍ତି ।
ତାହାଙ୍କୁ ରାସ ମଧ୍ୟରେ ଦେଖିକରି ମୁହିଁ
ବ୍ରହ୍ମାଙ୍କ ବୟସ ବାଳକ୍ରୀଡ଼ା କଲି ରହି ।
ଅଦ୍ଭୁତ ଶୃଙ୍ଗାର କଉତୁକ ରସେ ମଜ୍ଜି
କେତେକାଳ ଗଲା ତହିଁ ନ ପାରିଲି ହେଜି ।
ଦୁହିଙ୍କଠାରୁ ଯେକାଳେ ଧର୍ମବାରି ଖସି
ମନୋରମ ସରୋବର ଗଲା ପରକାଶି ।
ତହିଁରୁ ଯେ ଧର୍ମଧାରା ବହି, ଗୋଲୋକରେ
ପ୍ରବେଶ କଲା ସମ୍ପୂର୍ଣ୍ଣ ହୋଇଣ ଜଳରେ ।
ଶୃଙ୍ଗାର ଶେଷରେ ମୁହିଁ ରାଧା ଦେବୀଙ୍କର
ଗର୍ଭରେ ନିକ୍ଷେପ ଯହୁଁ କଲି ବୀର୍ଯ୍ୟଧାର ।
ବ୍ରହ୍ମାଙ୍କ ବୟସ କାଳ ଶତେ ପରସନ୍ତେ
ସେ ଗର୍ଭ ଧାରଣ କରି ଦେବୀ ତାହା ଅନ୍ତେ
ଅଦ୍ଭୁତ ଡିମ୍ବ ଗୋଟିଏ ପ୍ରସବିଲେ କାଳେ
ଦେଖିଣ ତାହାକୁ ଶୋକ କଲେକ ବିକଳେ ।
ସେ ଅନ୍ତରେ କ୍ରୋଧ ହୋଇ ଚରଣ ପ୍ରହାରି
ପକାଇ ଦେଲେ ତାହାକୁ ଜଳକୁ ସୁନ୍ଦରୀ ।
ତହିଁରୁ ମହାବିରାଟ ପୁରୁଷ ଉତ୍ପନ୍ନ
ହୋଇଣ ଯେକାଳେ କଲେ ଜଳରେ ଶୟନ
ତା ଦେଖି ମୁଁ ସେ କଥାକୁ ସହି ନ ପାରିଲି
ରାଧିକାକୁ ଅନପତ୍ୟା ହୁଅ ଗୋ ବୋଇଲି ।
ସେ ସକାଶୁ ତାହାଙ୍କର ଗର୍ଭ ଆଉ ସୂନ୍ତ
କେବଳ ଜାଳରେ ହେଲେ ନ ହୋଇଲେଜାତ
ତାଙ୍କ ରୂପାନ୍ତର ଦୁର୍ଗାଲକ୍ଷ୍ମୀ ସରସ୍ୱତୀ
ତେଣୁ ସେମାନଙ୍କଠାରୁ ନୁହିଲେ ସନ୍ତତି ।
ସେ ଦେବୀଙ୍କ ଅଂଶ କଳାଦେବୀ ଯେତେ ସ୍ତ୍ରୀ
ସଂସାରେ ଜନମିଛନ୍ତି ନାନାରୂପ ଧରି ।
ସେମାନଙ୍କଠାରେ ପୁତ୍ରକନ୍ୟା ଜାତ ହୋଇ
ପୂରି ରହିଛନ୍ତି ସବୁ ସ୍ଥାନରେଟି ସେହି ।
ଜଳରେ ପଡ଼ିଣ ମହାବିରାଟ ପୁରୁଷ
ଆହାର ନ ପାଇ ହେଲା କ୍ଷୁଧାରେ ଅବଶ ।
ତା ଜାଣି ଅମୃତାଙ୍ଗୁଷ୍ଠି ଦେଲି ମୁହିଁ ଧାଇ
ପାନ କରିଣ ରହିଲା ମହାସୁଖେ ସେହି ।
ଯୋଗବଳେ ଜଳମଧ୍ୟେ ତଳ୍ପ ଉପାଧାନ
ନିର୍ମାଣ କରି ଯେଠାରେ କଲା ସେ ଶୟନ ।
ତାହାର ଲୋମ କୂପରେ ଜଳପୂର୍ଣ୍ଣ ହୋଇ
ରହିଲା ଯେତେକ ଜାଣ ଅଛନ୍ତି ବ୍ରହ୍ମାଣ୍ଡ ସାଇଁ ।
କ୍ଷୁଦ୍ର ବିରାଟ ପୁରୁଷ ସେ ଲୋମ କୂପରେ
ଶୟନ କଲେ, ଯେକାଳେ ପ୍ରତ୍ୟକ୍ଷ ଭାବରେ ।
ତାଙ୍କ ନାଭିରୁ ସହସ୍ରଦଳ ପଦ୍ମଫୁଲ
ଜାତ ହୋଇଣ ଦିଶିଲା ଅତ୍ୟନ୍ତ ମଞ୍ଜୁଳ ।
ସେ ପଦ୍ମରୁ ଜନମିଲେ ବ୍ରହ୍ମା ପ୍ରଜାପତି
କମଳୋଦ୍ଭବ ନାମରେ ତେଣୁ ତାଙ୍କ ଖ୍ୟାତି
ଜାତ ହେଲେ ପରେ ବ୍ରହ୍ମା ବିଚାରିଲେ ମନେ
ପିତାମାତା ବନ୍ଧୁବର୍ଗ ମୋର କେଉଁମାନେ ।
ଏମନ୍ତ ବିଚାରି ତିନଲକ୍ଷ ସମ୍ବତ୍ସର
ଭ୍ରମିଲେ ତହିଁରେ ହୋଇ ନ ପାରିଣ ସ୍ଥିର
ସେ ଅନ୍ତରେ ମୋତେ ଯହୁଁ ସ୍ମରଣା କଲେ
ଦିବ୍ୟମନ୍ତ୍ର ଦେଲି ମୁହିଁ ତାଙ୍କୁ ଯୋଗବଳେ ।
ସପତ ଲକ୍ଷ ସହସ୍ର ବରଷ ତାହାକୁ
ଜପିଲେ ସେ ମୋହଠାରେ ଦେଇଣ ମନକୁ ।
ସେ ଦେବ ସନ୍ତୁଷ୍ଟ ହୋଇ ଦେଲି ପୁଣି ବର
ସରଜନା କଲେ ସୃଷ୍ଟି ତହୁଁ ବେଦବର ।
ମୋହର ମାୟାରେ ବ୍ରହ୍ମା ବିଷ୍ଣୁ ସଦାଶିବ
ଇନ୍ଦ୍ର, ଦିଗପାଳ ଆଦିକରି ଯେତେ ଦେବ ।

ଆବର ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଶୂଦ୍ରଆଦି
ଜନମିଲେ ନିଜ ନିଜ କର୍ତ୍ତବ୍ୟ ସମ୍ପାଦି ।
ପ୍ରତ୍ୟେକ ଖଣ୍ଡରେ ସ୍ୱର୍ଗ ମର୍ତ୍ତ୍ୟ ରସାତଳ
ଚନ୍ଦ୍ର ସୂର୍ଯ୍ୟ ନଦ ନଦୀ ଗିରି ବନସ୍ଥଳ ।
ପୂର୍ଣ୍ଣଭାବରେ ବହୁତ କାଳସ୍ଥିତ ହୋଇ
ମହାବିଷ୍ଣୁଙ୍କ ଦେହରେ ଯାଆନ୍ତି ଲଭାଇ ।
ସକଳ ବିଶ୍ୱ ଉପରେ ବଇକୁଣ୍ଠ ପୁର
ନିର୍ମିତ ହୋଇଛି ଇଚ୍ଛା ବଳରେ ମୋହର ।
ସେଠାରୁ ପଚାଶକୋଟି ଯୋଜନ ଅନ୍ତରେ
ଗୋଲୋକ ରହିଛି ଊର୍ଦ୍ଧ୍ୱ ଶୂନ୍ୟ ମଣ୍ଡଳରେ ।
ପବନ ବଳରେ ସେହି ଲୋକ ଅବସ୍ଥିତ
ଶତଶୃଙ୍ଗ ପୁଣ୍ୟ ବୃନ୍ଦାବନରେ ଶୋଭିତ ।
ତାହାର ପାଶରେ ରାସମଣ୍ଡଳଟି ରହି
ସୁବର୍ଣ୍ଣ ରତ୍ନଗଣରେ ରଞ୍ଜିତ ଦିଶଇ ।
ବିରଜା ନାମେ ତଟିନୀ ବହି ତାର ପାଶେ
ପରିଖା ବେଷ୍ଟିତ ହୋଇଥିଲି ପରି ଦିଶେ ।
ଦୀର୍ଘ ପ୍ରସ୍ଥରେ ସେ କୋଟି ଯୋଜନ ପ୍ରମାଣ
ପ୍ରତ୍ୟେକ ମନ୍ଦିର ଦିଶୁଅଛି ମନୋରମ ।
ଗୋପାଳ ଗୋପିକାଗଣ ପୂର୍ଣ୍ଣ ହୋଇ ତହିଁ
ଆନନ୍ଦ ମନରେ ମହାସୁଖେ ଛନ୍ତି ରହି ।
ଆବର କଳପ ବୃକ୍ଷ କାମଧେନୁଗଣ
ସେଠାରେ ବହୁତ ରହି ଅଛନ୍ତିଟି ଜାଣ ।
ଚନ୍ଦନ କର୍ପୂର ଆଦି ଭୋଗଦ୍ରବ୍ୟମାନ
ଅଛଇ ପ୍ରତ୍ୟେକ ଗୃହେ ଯତନରେ ପୁଣ ।
ରାଧା ଦେବୀଙ୍କର ତିନକୋଟି ଦାସୀ ତହିଁ
ଅନ୍ତଃପୁର ରକ୍ଷା କରିଛନ୍ତି ମନଦେଇ ।
ଆବର ଲକ୍ଷେକ ମତ୍ତଗଜ ନିରନ୍ତରେ
ଜଗିଛନ୍ତି ବିଭୂଷିତ ହୋଇଣ ରତ୍ନରେ ।
କେତେକ ସ୍ଥାନରେ ଫଳ ପଲ୍ଲବ ସହିତ
ମଙ୍ଗଳ କଳଶ ରଖା ଯାଇଛି ବହୁତ ।

ଦଧି ଲଜା ଦୁର୍ବାଦଳ ଅକ୍ଷତ କୁସୁମ
କେତେକ ସ୍ଥାନରେ ଦେଖୁଛନ୍ତି ମନୋରମ ।
ପଞ୍ଚସୂତେ ଗୁନ୍ଥା ହୋଇ କୁସୁମର ମାଳା
କେଉଁଠାରେ ବନ୍ଧା ହୋଇଅଛି ଭେଳାଭେଳା ।
ଅମୂଲ୍ୟ ରତ୍ନରଚିତ ଶତଶୃଙ୍ଗ ଗିରି
ଦିଶୁଛି ତା ପାଶେ ରହି ସୂର୍ଯ୍ୟ ବିମ୍ବପରି ।
ଗୋଲୋକ ପୁରର ଯେହ୍ନେ ପ୍ରାକାର ସଦୃଶ
ହୋଇଣ ବେଢ଼ାଇ ରହିଅଛି ଚୌପାଶ ।
ସେହିଠାରେ ବୃନ୍ଦାବନ ଦିବ୍ୟଶୋଭା ବହି
କଳପବୃକ୍ଷଗଣରେ ପୂର୍ଣ୍ଣ ଅଛି ହୋଇ ।
ଆବର ବିବିଧ ପୁଷ୍ପ ଉଦ୍ୟାନର ଶୋଭା
ଦେଖିବା ମାତ୍ରେ ନୟନ ମନ କରେ ଲୋଭା ।
ନିକଟରେ ସୁନିର୍ମଳ ଜଳପୂର୍ଣ୍ଣ ହୋଇ
କ୍ରୀଡ଼ା ସରୋବରମାନ ରହିଛନ୍ତି ତହିଁ ।
ଭ୍ରମର କୋକିଳଗଣ କଳନାଦ କରି
ବୁଲୁଅଛନ୍ତି ତହିଁରେ ତୋଷମନେ ଧରି ।
ଗୋପୀଙ୍କର ମନୋରଥ ପୂରାଇବା ପାଇଁ
ମହାକଳ୍ପବୃକ୍ଷ ତାର ମଧ୍ୟେ ଅଛି ରହି ।
ଅସଂଖ୍ୟ ଦାସୀଙ୍କୁ ଘେନି ରାଧିକା ସେଠାରେ
କ୍ରୀଡ଼ା କରନ୍ତି ସର୍ବଦା ଆନନ୍ଦ ମନରେ ।
ଶ୍ରୀଦାମ ଶାପରେ ଏବେ ବୃଷଭାନୁ ସୁତା
ବୋଲାଉ ଅଛନ୍ତି ଯେହ୍ନି ତ୍ରୈଲୋକ୍ୟ ପୂଜିତା ।
ଆହେ ତାତ ରାଧାଦେବୀ ମୋହର ସମାନ
ଧରାର ପୂଜ୍ୟା ଅଟନ୍ତି ବୋଲି ମନେ ଘେନ ।
ବ୍ରହ୍ମାଣ୍ଡ ସ୍ୱରୂପ ତୁମ୍ଭ ଆଗରେ ସମସ୍ତ
କହିଲି ପୁଚ୍ଛିଲ ବୋଲି ହୋଇଣ ଉଷତ ।
ଆଉ କେଉଁ କଥା ଶୁଣିବାକୁ ଇଚ୍ଛା ଥିଲେ
ପଚାର କହିବି ଏହିକ୍ଷଣି ବସି ଭଲେ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ମଉନ ହୋଇଲେ
ଅଧମ ଷେନ ମୋହନ ଗୀତେ ଭାବି ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଅଗ୍ରତେ ଶ୍ରୀକୃଷ୍ଣଙ୍କର
ଗୃହସ୍ଥ ଧର୍ମ ବର୍ଣ୍ଣନେ ନାମ ଚତୁରଶୀତିତମୋଽଧ୍ୟାୟଃ ।

—*—

# ପଞ୍ଚାଶୀତିତମ ଅଧ୍ୟାୟ

## ଚାରିବର୍ଣ୍ଣଙ୍କର ଭକ୍ଷ୍ୟାଭକ୍ଷ୍ୟ ଓ କର୍ମବିପାକ କଥନ

ପୁଣି ଶ୍ରୀକୃଷ୍ଣଙ୍କୁ ନନ୍ଦ ବୋଇଲେ ସରାଗେ
ଆଉ କେତେ କଥା ବାବୁ କହ ମୋର ଆଗେ
ବ୍ରାହ୍ମଣ କ୍ଷତ୍ରିୟ ଆଦି ଚାରି ବର୍ଣ୍ଣଙ୍କର
ଭକ୍ଷ୍ୟାଭକ୍ଷ୍ୟ ଦ୍ରବ୍ୟ କର୍ମ ବିପାକ ବିସ୍ତର ।
ତୁମ୍ଭ ମୁଖରୁ ଶୁଣିଲେ ମୋହର ମାନସ
ସନ୍ଦେହ ଗ୍ରନ୍ଥି ନଷ୍ଟ ହୋଇବ ସନ୍ତୋଷ ।
ଶ୍ରୀକୃଷ୍ଣ ବୋଇଲେ ତାହା କହୁଅଛୁ ଏବେ
ଶୁଣ ତାତ ମନଦେଇ ଇଚ୍ଛା ହୁଏ ଯେବେ ।
ତାମ୍ରପାତ୍ରେ ନାରିକେଳ ଜଳଘୃତ କ୍ଷୀର
ଭକ୍ଷ୍ୟଦ୍ରବ୍ୟ ମଧୁ ଗୁଡ଼ ଫଳମୂଳାହାର ।
ଅଭକ୍ଷ୍ୟ ଅଟଇ ବୋଲି ଶାସ୍ତ୍ର ଅଛି ଲେଖି
ତେଣୁ ଅବଶ୍ୟ ଏସବୁ ଦେବନି ଉପେକ୍ଷି ।
କାଂସ୍ୟପାତ୍ରେ ନାରିକେଳ ଜଳ ରଖି ଯେବେ
ମଦ୍ୟ ସମାନ ଅଭକ୍ଷ୍ୟ-ହୁଅଇ ସେ ତେବେ ।
ସେହିପରି ତାମ୍ରପାତ୍ରେ ମଧୁ ଅବା କ୍ଷୀର
ରଖିଲେ ଅମେଧ୍ୟ ହୁଏ ବୋଲି ମନେ କର ।
ଉଚ୍ଛିଷ୍ଟ ଅନ୍ନରେ ଘୃତ ଦୁଗ୍ଧରେ ଲବଣ
ମିଶାଇଲେ ହୁଏ ତାହା ଗୋମାଂସ ସମାନ ।
ମଧୁମିଶ୍ର ଘୃତ ଅବା ଗୁଡ଼ମିଶ୍ର ତୈଳ
ଅଭକ୍ଷ୍ୟ ବୋଲାଏ ଜାଣ ଆହେ ବ୍ରଜପାଳ ।
ମାଘ ମାସରେ ମୂଳକ ଭକ୍ଷଣ କରିଲେ
ମହାପାତକ ତହିଁରୁ ଜାତ ହୁଏ ଭଲେ ।
ଦିବସରେ ଦୁଇଥର ଅଥବା ସନ୍ଧ୍ୟାରେ
ଭୁଞ୍ଜିବା ନିଷେଧ କରାଯାଇଛି ଶାସ୍ତ୍ରରେ ।
ପାମାୟୁ ପାୟସ ଚୂର୍ଣ୍ଣ କ୍ଷୀର ତକ୍ର ଘୃତ
ଲବଣ ସ୍ୱସ୍ତିକ ମଧୁ ଗୁଡ଼ ନବନୀତ ।
ଏ ସମସ୍ତ ଦ୍ରବ୍ୟ ଯେବେ ପରହସ୍ତେ ଥିବ
ନିଜ ହସ୍ତରେ ନ ଧରି କେବେ ନ ଭୁଞ୍ଜିବ ।
ରୌପ୍ୟ ପାତ୍ରରେ କର୍ପୂର ରଖିଲେ ଅଭକ୍ଷ୍ୟ
ହୁଅଇ ଏ କଥା ଶ୍ରୁତି ଶାସ୍ତ୍ରରେ ପ୍ରତ୍ୟକ୍ଷ ।
ପରଷିବା ଲୋକ ଆଗ ଭୁଞ୍ଜିବ ଯାହାକୁ
ଅଭକ୍ଷ୍ୟ ବୋଲି ଜାଣିବ ସେ ଭକ୍ଷ୍ୟ ଦ୍ରବ୍ୟକୁ
ନକୁଳ ଗଣ୍ଡକ ପକ୍ଷୀ ମହିଷ ଶୂକର
ସର୍ପ ଗର୍ଦ୍ଦଭ ଶୃଗାଳ କୁକ୍କୁର ମାର୍ଜ୍ଜାର ।
ବ୍ୟାଘ୍ର ସିଂହ ଆଦି ହିଂସ୍ରଜନ୍ତୁଙ୍କର ମାଂସ
କେତେବେଳେ ହେଲେ ଆଣି ନ କରିବ ଗ୍ରାସ
କୁମ୍ଭୀର ଗୋଧିକା ଜୋକ କର୍କଟ ମଣ୍ଡୂକ
ଗୋଜାତି ଚମରୀ ହସ୍ତୀ ଭଲ୍ଲୁକ ଘୋଟକ ।
କଳିଯୁଗେ ଏହାଙ୍କର ମାଂସ ଭକ୍ଷ୍ୟ ନୁହେ
ଶାସ୍ତ୍ରରେ ନିଷେଧ କରିଅଛନ୍ତି ମୁନିଏ ।
ଘୋଟକର କ୍ଷୀର ମାଂସ ଚାରିବର୍ଣ୍ଣ ଲୋକେ
ଯେ ଖାଇଲେ ହେଲେ ନିଶ୍ଚୟ ପଡ଼ିବେ ପାତକେ
ଆର୍ଦ୍ରକର ମୂଳ ରବିବାରେ ନ ଖାଇବ
ନ ଜାଣି ଖାଇଲେ ପ୍ରାୟଶ୍ଚିତ୍ତ କରିଯିବ ।
ପର୍ଯ୍ୟୁଷିତ ଜଳ ଦୁଗ୍ଧ ଅନ୍ନକୁ ବ୍ରାହ୍ମଣ
କେବେହେଲେ ନ ଭୁଞ୍ଜିବ ଆହେ ନରଗଣ ।
ଅଗାର ଅନ୍ନକୁ ଚାରିବର୍ଣ୍ଣ ମଧ୍ୟେ କେହି
ଭକ୍ଷଣ କରିଲେ ମହାପାତକ ଲଭଇ ।
ଗୋମାଂସ ସୁରା ସମାନ ଅଟଇ ସେ ଅନ୍ନ
ପତିତ ହୁଅଇ ବିପ୍ର କରିଲେ ଅଶନ ।
ବ୍ରାହ୍ମଣ ବୈଷ୍ଣବ କେହି ମଦ୍ୟ ଅବା ମାଂସ
ଭକ୍ଷଣ କଲେ ଲଭଇ ଜୀବହତ୍ୟା ଦୋଷ ।
କେବଳ ଦେବ ପିତୃଙ୍କୁ ନଇବେଦ୍ୟ କରି
ଭୁଞ୍ଜିଲେ ହୋଇବ ସେହି ଦୋଷରୁଁଟି ପାରି ।
ଅନ୍ୟଲୋକ ପକ୍ଷରେ ଯେ ପଞ୍ଚ ପଦାର୍ଥେ
ଅଭକ୍ଷ୍ୟ ହୁଅଇ ବୋଲି ଘେନିଥାଅ ମନେ ।
ତୈଳ ଲବଣ ଯେବେ ଅସଂସ୍କୃତ ହେବ
ଜାଣିବା ଲୋକ ତାହାକୁ କେବେ ନ ଖାଇବ
ଏକହସ୍ତେ ଘେନି କେବେ ନ ପିଇବ ଜଳ
ପିଇବ ଦୁଇ ହସ୍ତରେ କରି ସୁନିର୍ମଳ ।
ଗୋରସ ଅଥବା ଗୁଡ଼ ମଧୁସଙ୍ଗେ ଯେବେ
ଅକସ୍ମାତେ ପିପୀଳିକାଗଣ ମିଶିଥିବେ ।
ତେମନ୍ତ ହେଲେ ବ୍ରାହ୍ମଣ ବୈଷ୍ଣବ ତାହାକୁ
ଗ୍ରହଣ କରିବେ ନାହିଁ କହିଲି ତୁମ୍ଭଙ୍କୁ ।

ପକ୍ୱଫଳକୁ ବାୟୁଧ କୀଟ ପକ୍ଷୀ କେହ୍ବ
ଉଚ୍ଛିଷ୍ଟ କରଣ ଯେବେ ଯିବେ ଛାଡ଼ ଦେଇ ।
ତାହାକୁ ଭକ୍ଷଣ କଲେ ହୋଇ ଉପୁଜଳ
ଜାକ ଭକ୍ଷ୍ୟ ଯବ୍ଦ୍ର ଦ୍ରବ୍ୟ ତେମନ୍ତ ଅଟଇ ।
ଘୃତରେ ବା ତୈଳରେ ଶୂଦ୍ର ଯେଉଁଦ୍ରବ୍ୟ
ପକ୍ୱ କରିଥିବ ତାହା କେବେ ନ ଖାଇବ ।
ବ୍ରାହ୍ମଣ ପକ୍ଷରେ ସେହ୍ବ ନିୟମ ପାଳତ
ହୁଅଇ କେବଳ ଜାଣିଥାଅ ଆହେ ତାତ ।
ଅଶୌଚ କାଳରେ କାହାଠାରୁ ଜଳଅନ୍ନ
ଗ୍ରହଣ କରିବ ନାହିଁ ଜ୍ଞାନବନ୍ତ ଜନ ।
ଏକାଦଶ ଦିବସରେ ଶୁଦ୍ଧହୁଏ ମାତ୍ର
ସେଠାରୁ ତାହାର ଦ୍ରବ୍ୟ ନୁହେ ଅପବିତ୍ର ।
ଏହ୍ବପରି ଭକ୍ଷ୍ୟାଭକ୍ଷ ଦ୍ରବ୍ୟର ବିଚାର
କର୍ମବିପାକ ବିଷୟ ଶୁଣ ବ୍ରଜେଶ୍ୱର ।
ଭୋଗ ନ କରିଲେ ଶତକୋଟି କଳପରେ
କର୍ମକ୍ଷୟ ନ ହୁଅଇ କେବଣ ପ୍ରକାରେ ।
ଦେବତା ସାହାଯ୍ୟେ ଅବା ପୁଣ୍ୟ ତୀର୍ଥବଳେ
କଞ୍ଚିତ ମାତ୍ରକ କ୍ଷୟ ହୁଏ ମହୀତଳେ ।
ଯେଉଁରୂପେ ସୁରାକୁମ୍ଭ ଧୋଇଲେ ନଦୀରେ
ପବିତ୍ର ନୁହଇ କେବେ ହେଲେ କେଉଁଠାରେ
ସେହ୍ବପରି ପ୍ରାୟଶ୍ଚିତ୍ତ ଯୋଗରେ କାହାର
ଶୁଦ୍ଧି ନ ହୁଅଇ ବୋଲି ମନରେ ବିଚାର ।
ଶୁଭାଶୁଭ କର୍ମଯେବେ ଭୋଗ ବିନା କେହ୍ବ
କ୍ଷୟ କରିବା ସକାଶେ ସମର୍ଥ ନୁହଇ ।
ଭୋଗ ଶେଷ ହେଲେ ଆତ୍ମା ହୁଅଇ ମୁକତ
ସେ ଅନ୍ତେ ଲାଭ କରଇ ମୋହର ଦାସତ୍ୱ ।
ସୁକୃତରେ ଦୁଷ୍କୃତ ବା ଦୁଷ୍କୃତରେ ତପ
ଖଣ୍ଡିତ ନୁହଇ ଜାଣ ଆହେ ବ୍ରଜାଧିପ ।
ବ୍ରତ ଉପବାସ ତୀର୍ଥ ସ୍ନାନ ଦାନ କଲେ
ମୁକତି ପ୍ରାପତ ହୋଇ ନ ପାରଇ ଭଲେ ।
କେବଳ କରମ ଭୋଗ ଶେଷରେ ମୋହର
ସେବାକରି ମୁକ୍ତିଲାଭ କରିପାରେ ନର ।
ଜ୍ଞାନରେ ବା ଅଜ୍ଞାନରେ ଗୋବଧ ଯେ କରେ
ଗୋଲୋମ ସମାନ ବର୍ଷ ପଡ଼େ ନରକରେ ।
ସେ ଅନ୍ତେ ନୀଚକୁଳରେ ଜନମ ହୁଅଇ
ଦରିଦ୍ର ବ୍ୟାଧିତ ହୀନ ରୂପ ବର୍ଣ୍ଣ ପାଇ ।

କେତେକାଳ ପରେ ପୁଣି ବ୍ରାହ୍ମଣ କୁଳରେ
ଜାତହୋଇ କୁଷ୍ଠରୋଗ ଦୁଃଖ ଭୋଗକରେ ।
ଲକ୍ଷେ ବ୍ରାହ୍ମଣଙ୍କୁ ଯେବେ ଦିଅଇ ଭୋଜନ
ତେବେ ତହିଁରୁ ମୁକତି ଲଭଇନ୍ତି ଜାଣ ।
କ୍ଷତ୍ରିୟ ପକ୍ଷରେ ଏହାଠାରୁ ଅର୍ଦ୍ଧ ଅଂଶ
ଭୋଗ କରିବାକୁ ହୁଏ ଆହେ ବ୍ରଜଈଶ ।
ତହିଁରୁ ଅର୍ଦ୍ଧେକ ଭୋଗ କରେ ବୈଶ୍ୟଜାତି
ତାର ଅର୍ଦ୍ଧ ଅଂଶ ହୁଏ ଶୂଦ୍ରକୁ ପ୍ରାପତି ।
କିନ୍ତୁ ଏ ପାତକ ପ୍ରାୟଶ୍ଚିତ୍ତ କଲେ ଯାଏ
କିଞ୍ଚିତ ମାତ୍ରକ ଜନ୍ମାନ୍ତରେ ଭୋଗ ହୁଏ ।
ସ୍ତ୍ରୀ ହତ୍ୟା ଅଟେ ଗୁରୁ ବଧରେ ସମାନ
କଲେ ମନୁଷ୍ୟ ହୁଅଇ ନରକେ ପତନ ।
ସ୍ତ୍ରୀର ଦେହରେ ଯେତେକ ଲୋମ ରହିଥାଏ
ସେତେ ବର୍ଷଯାଏ କାଳ ସୂତ୍ର ଭୋଗହୁଏ ।
ସୂଚିମୁଖ କୃମିଗଣ ବେଢ଼ି ଚାରିପାଶେ
ଚୋବାଉଥାନ୍ତି ସମସ୍ତ ଶରୀରକୁ ରୋଷେ ।
ସେ ଅନ୍ତରେ କେତେକାଳ ପଶୁଜନ୍ମ ପାଇ
ପୁଣି ଶୂଦ୍ର ହୋଇ ଯକ୍ଷ୍ମା ରୋଗରେ ପଡ଼ଇ ।
ଦଶସହସ୍ର ବ୍ରାହ୍ମଣଙ୍କୁ ଭୁଞ୍ଜାଇଲେ ମୁକ୍ତି
ମିଳଇ ତହିଁରୁ ଜାଣ ଆହେ ବ୍ରଜପତି ।
ତାହାପରେ ପୁଣି ଦ୍ୱିଜରୂପେ କେତେଦିନ
ଭୋଗକରି କରେ ଯେବେ ସ୍ୱର୍ଣ୍ଣରତ୍ନ ଦାନ ।
ତେବେ ସକଳ କଲୁଷ ବିନଷ୍ଟ ହୁଅଇ
ସମସ୍ତ ଲୋକରେ ଶୁଦ୍ଧ ପବିତ୍ର ବୋଲାଇ ।
ଗର୍ଭଘାତୀ ଲୋକ ସୂଚିମୁଖ ନରକରେ
ପଡ଼ଣ ତାଡ଼ନା ସହେ ଯମଦୂତ କରେ ।
ଶତ ବର୍ଷ ଅନ୍ତେ ହୋଇ ଘୋଟକ ଜନମ
ବହୁତକାଳ କଷ୍ଟରେ କଟାଇଣ ଦିନ ।
ବୈଶ୍ୟକୁଳେ ଜାତ ହୋଇ ନୀଚକର୍ମ କରେ
ସ୍ୱର୍ଣ୍ଣଦାନ ଦେଇ ଶୁଦ୍ଧ ହୁଏ ସେ ଅନ୍ତରେ ।
କ୍ଷତ୍ରିୟକୁ ବ୍ରାହ୍ମଣ ବା ବୈଶ୍ୟକୁ କ୍ଷତ୍ରିୟ
ବିନାଶ କରଇ ଯେବେ ହୋଇଣ ନିର୍ଦ୍ଦୟ ।
ତେବେ ସହସ୍ରେ ବରଷ ତପ୍ତଶୂଳେ ପଡ଼
ସହ୍ୟ କରୁଥାଏ ଯମଦୂତଙ୍କର ବାଡ଼ ।
ସେ ଅନ୍ତରେ ଗଜମୂର୍ଖ ହୁଏ ଶତବର୍ଷ
ଶୂଦ୍ରଜନ୍ମ ପାଏ ପୁଣି ତାହା ହେଲେ ଶେଷ ।

ଗଜଦାନ କଲେ ସେହି ପାପୁ ମୁକ୍ତ ହୁଏ
ଶୁଦ୍ଧି ଲାଭ କରି ତହୁଁ ପୁଣ୍ୟ ଲୋକପାଏ ।
ବୈଶ୍ୟଘାତି ଶୂଦ୍ର ଅବା ଶୂଦ୍ରଘାତି ବୈଶ୍ୟ
ଅଥବା ସ୍ୱଜନଘାତି ଅଟେ ଯେ ପୁରୁଷ ।
ଏମାନେ ସମାନ ପାପୀ ଅଟନ୍ତି ଜାଣ
ଫଳାଫଳ ଭୋଗ କରିଥାନ୍ତି ସେ ସମାନ ।
ଅଜ୍ଞାନରେ ବିପ୍ର ଯେବେ ଶୂଦ୍ର ବଧ କରେ
ଶୁଚି ହୁଅଇ ସେ ଲକ୍ଷେ ଗାୟତ୍ରୀ ଜପରେ
କୁକୁର ଘାତକ ଲୋକ କରି ଗଙ୍ଗାସ୍ନାନ
ଶୁଦ୍ଧ ହୁଏ ଦେଲେ ତହିଁ ସ୍ୱର୍ଣ୍ଣରତ୍ନ ଦାନ ।
ମାର୍ଜାରକୁ ବଧ କଲେ ଗଙ୍ଗାସ୍ନାନ କରି
ଲବଣ ଦାନ କରିଲେ ତହିଁରୁ ନିସ୍ତରି ।
ମୋହର ପାଦଚିହ୍ନିତ ସର୍ପକୁ ନାଶିଲେ
ବ୍ରହ୍ମହତ୍ୟା ପାପଗୋଟି ହୁଏ ଜାଣ ଭଲେ ।
ଘାତକ ଲୋକ ଯେ ସେହି ନର୍କ ଭୋଗ କରି
ସର୍ପ ଜନ୍ମ ହୁଏ କେତେକାଳ ସେହିପରି ।
ସେ ଅନ୍ତେ ମନୁଷ୍ୟହୋଇ ମୋତେ ସେବାକଲେ
ସେ ପାପରୁ ମୁକ୍ତିଲଭ କରଇଟି ଭଲେ ।
ଅଶ୍ୱ ଗଜ ଘାତକ ଯେ ମୂତ୍ର କୁଣ୍ଡେ ପଡ଼ି
ଦଶବରଷ କଷଣ ସହେ ଦୁଃଖେ ସଡ଼ି ।
ସେ ଅନ୍ତେ ହସ୍ତୀ ଘୋଟକ ଜନମ ଅନ୍ତରେ
ମନୁଷ୍ୟ ହୋଇଣ ପଶୁବଳ ସେବା କରେ ।
ଶତେ ବ୍ରାହ୍ମଣ ଭୋଜନ କରାଇଲେ ଯାଇ
ପାପରୁ ମୁକତି ଲଭ ଶୁଚିମନ୍ତ ହୋଇ ।
କ୍ଷୁଦ୍ର ଜନ୍ତୁ ବଧ କଲେ ସେହି ଜନ୍ତୁଙ୍କର
ଯୋନିରେ ଜନମ ଲଭ କରଇ ସେ ନର ।
ସେ ଅନ୍ତେ ମନୁଷ୍ୟ ହୋଇ ଦେବତା ବ୍ରାହ୍ମଣ
ସେବା କରିଲେ ତହିଁରୁ ମୁକ୍ତ ହୁଏ ଜାଣ ।
ଯେଉଁ ଜନ୍ତୁମାନଙ୍କର ହିଂସାଭାବ ନାହିଁ
ତାହାଙ୍କୁ ନାଶିଲେ ପାପ ଅବଶ୍ୟ ହୁଅଇ ।
ହିଂସ୍ରକ ଜନ୍ତୁଙ୍କୁ ନାଶ କରିବ ଯେ ଦେଖି
ତାର ପାପ ନୁହେଁ ବୋଲି ଶାସ୍ତ୍ରେ ଅଛି ଲେଖି
ଶସ୍ତ୍ରଭେଦ ହାଣିଲେ ଯେ ଅଶ୍ୱତ୍ଥ ବୃକ୍ଷକୁ
ଶତେ ବର୍ଷଯାଏ ସେହୁ ଭୁଞ୍ଜେ ନର୍କକୁ ।
ସେ ଅନ୍ତେ ଶାଳ୍ମଳୀବୃକ୍ଷ ହୋଇ ବନଦେଶେ
ଷଡ଼ଋତୁଙ୍କର ତାପ ସହ୍ୟ କରଇ ସେ ।
ପୁଣି ନରଜନ୍ମ ପାଇ ନାନାବିଧ ରୋଗ
ବହୁତକାଳ ପର୍ଯ୍ୟନ୍ତ କରୁଥାଏ ଭୋଗ ।
ସ୍ୱର୍ଣ୍ଣଦାନ କଲେ ତହୁଁ ମୁକତି ଲଭଇ
ନୋହିଲେ ଅନ୍ୟ ପ୍ରକାର ଗତି ତାର ନାହିଁ
ମିଥ୍ୟାସାକ୍ଷୀ ଶୂଦ୍ରଯାଜୀ ବୃଷଭ ବାହକ
ଏମାନଙ୍କୁ ନିଶ୍ଚେ ଭୋଗ ହୁଅଇ ନରକ ।
ସେ ଅନ୍ତରେ ଗୃଧ୍ର କାକ ଆଦି ଜନ୍ମ ପାଇ
ବହୁତ କାଳରେ ମୁକ୍ତି ଲଭନ୍ତି ସେହି ।
ଶତେପଳ ସ୍ୱର୍ଣ୍ଣଦାନ କଲେ ତାହାଙ୍କର
ପାପ ଛାଡ଼ି ଶୁଚିମନ୍ତ ହୁଅଇ ଶରୀର ।
ବସ୍ତ୍ର ଘୃତ ରୌପ୍ୟ ଅବା ଶୂଦ୍ର ଭକ୍ଷଦ୍ରବ୍ୟ
ହରିବା ଲୋକ ନିଶ୍ଚୟ ବକ ଜନ୍ମ ହେବ ।
ସେଅନ୍ତେ ନରକ ଭୋଗ କଲପରେ ପୁଣି
ଶୂଦ୍ର ଯୋନିରେ ଉତ୍ପନ୍ନ ହୁଏ ପାପ ଘେନି ।
ବ୍ରାହ୍ମଣ ଭୋଜନ କରି ତହିଁରୁ ମୁକତି
ଲଭଇ ସେ ଅନ୍ତେ ଜାଣ ଆହେ ବ୍ରଜପତି ।
ଧାନ୍ୟ ହରିନେଲେ ସପ୍ତଜନ୍ମ ପରିଯନ୍ତେ
କୃପଣ ଦରିଦ୍ର ଦୁଃଖୀ ହୁଅଇ ନିଶ୍ଚିତେ ।
ସେ ଅନ୍ତରେ ମଳକୁଣ୍ଡେ ପଡ଼ି କଷ୍ଟପାଇ
ଶତେବର୍ଷ ଅନ୍ତେ ମୁକ୍ତିଲଭ କରେ ଯାଇ ।
ସ୍ୱର୍ଣ୍ଣ ଚୋରି କଲେ ତପ୍ତ ବୈତରଣୀ କୁଣ୍ଡେ
ପଡ଼ିଣ ପ୍ରହାର ସହ୍ୟ କରୁଥାଏ ମୁଣ୍ଡେ ।
ଶତେବର୍ଷ ଅନ୍ତେ ପୁଣି ନରଜନ୍ମ ହୋଇ
ସ୍ୱର୍ଣ୍ଣଦାନ କଲେ ତହୁଁ ମୁକତି ଲଭଇ ।
ଅଗମ୍ୟ ଗମନକାରୀ ଅଟଇ ଯେ ଲୋକ
ସହସ୍ରେବରଷ ଯାଏ ଭୋଗେ କୁମ୍ଭୀପାକ ।
ସେ ଅନ୍ତରେ ଯୋନିକୀଟ ହୋଇ କେତେଦିନ
ବିବିଧ ଯାତନା ଭୋଗ କରେ ହୋଇ କ୍ଷୀଣ ।
ପୁଣି ମନୁଷ୍ୟ ଜନମ ହୁଅଇ ସେ ଯେବେ
ତୀର୍ଥ ଗମନରେ ମୁକ୍ତିଲଭ କରେ ତେବେ ।
ଶାଳଗ୍ରାମ ଚୋରି କଲେ କାଳସୂତ୍ରେ ବାସ
କରଇ ଦେହଅନ୍ତରେ ସେ ପାପୀ ପୁରୁଷ
ଲୌହ ଚୋରାଇଲେ ବଂଶବିହୀନ ହୁଅଇ
ମସୀ ଚୋରାଇଲେ କଳକଣ୍ଠ ଜନ୍ମ ପାଇ ।
ଅଞ୍ଜନ ହରିଲେ ହୁଏ ଖଞ୍ଜରୀଟ ପକ୍ଷୀ
କୃମି ହୁଏ ମିଷ୍ଟଦ୍ରବ୍ୟ ଚୋରାଇଯେ ଭକ୍ଷି ।

ବେଶ୍ୟାବୃତ୍ତି କଲେ ଷଷ୍ଠି ବର୍ଷ ନରକେ ପଡ଼ଇ
ସାତଜନ୍ମ ଯାଏ ପୁଣି ବିଧବା ହୁଅଇ ।
ଆତ୍ମର ବନ୍ଧନ ଯେବେ ହୁଅଇ ଯବନ
ବ୍ରାହ୍ମଣଙ୍କ ଅଧର୍ମାଗ୍ରସ୍ତ ବୋଲି ତାକୁ ଜାଣ ।
ଅପର ଜନ୍ମରେ ସେହୁ ପଶୁଘାତୀ ହୁଏ
ଜୀବବଧ କରି ନିଜ ଜୀବ ପୋଷୁଥାଏ ।
ଦେବତା ନିନ୍ଦୁକ ଲୋକ ହୁଅଇ ବଧିର
ମୂକ ହୁଅଇ ଯେ ଅଟେ ନିଜ ବାକ୍ୟହର ।
ଦୃଷ୍ଟିଶକ୍ତି ବିନାହୀନ ହୁଅଇ ନିଶ୍ଚୟ
ଜିହ୍ୱାହୀନ ହୁଏ ଯେହୁ ସଦା ମିଥ୍ୟାପ୍ରିୟ ।
ଛାଗ ମେଷ ହରଣ ଯେ କରେ ଗୁପତରେ
ଅଧିକ ଛାଗ ଘାତକ ହୁଏ ଜନ୍ମାନ୍ତରେ ।
ଦାନଦେଇ ଯେଉଁଲୋକ କରେ ଅପହାର
ମ୍ଳେଚ୍ଛପାନରେ ଉତ୍ପତ୍ତି ହୁଅଇ ତାହାର ।
ତଇଳ ଚୋରାଇଥିଲେ ତୈଳକୀଟ ହୁଏ
କେତେକାଳ ପରେ କେଶକୀଟ ଜନ୍ମ ପାଏ ।
ଶତବର୍ଷ ତପ୍ତ ତୈଳକୁଣ୍ଡେ ପଡ଼ି ପୁଣି
ସୁବର୍ଣ୍ଣ ବଣିକରୂପେ ଜନମେ ଧରଣୀ ।
ସେଅନ୍ତେ କରଣ ସ୍ୱର୍ଣ୍ଣକାରଙ୍କର ଘରେ
ଜନମ ହୁଅଇ ସେହୁ ଜନ୍ମ ଜନ୍ମାନ୍ତରେ ।
କରଣ ସୁବର୍ଣ୍ଣକାର ସୁବର୍ଣ୍ଣ ବଣିକ
ଏହାଙ୍କ ପରି ଜଗତେ ନ ଥିବ କେ ଠକ ।
ମାତା ପିତାଙ୍କ କଥାରେ ଏ ତିନି ଜାତିର
ବିଶ୍ୱାସ ହୁଅଇ ନାହିଁ ବୋଲି ମନେ କର ।
ଏହାଙ୍କ ହୃଦୟ କ୍ଷୁର ଧାରର ସମାନ
ଏମାନେ ଅଟନ୍ତି ସବୁବେଳେ ଦୟାହୀନ ।
ଆହେ ତାତ ଏମାନଙ୍କୁ କେଉଁ ପ୍ରକାରେ
ବିଶ୍ୱାସ କରିବ ନାହିଁ କେବେହେଁ ମନରେ ।
ରକ୍ତ ପୀତ ବସ୍ତ୍ର ଅପହରଣ ଯେ କରି
ଜନମଇ ରକ୍ତପୀତ କୀଟରୂପ ଧରି ।
ସନ୍ଧ୍ୟାରେ ବା ପ୍ରାତଃକାଳେ କରେ ଯେ ଶୟନ
ଯେ ଅବା ହରି ନିଅଇ ଯଜ୍ଞସୂତ୍ରାସନ ।
ନୋହିଲେ ବା ବେଦ ଧର୍ମଶାସ୍ତ୍ର ନିନ୍ଦା କରେ
କିଅବା ଅଶୁଚି ହୋଇ ସତ୍କର୍ମ ଆଚରେ ।
ତେମନ୍ତ ଲୋକକୁ ସ୍ୱର୍ଗଭୋଗ ନ ହୁଅଇ
କର୍ମଧର୍ମ ଯାହା କଲେ ସବୁ ବୃଥା ଯାଇ ।
ବ୍ରାହ୍ମଣୀକୁ ଧର୍ଷଣ ଶୂଦ୍ର କରେ ଯେବେ
ନରକ ଭୋଗ କରିଣ ରୋଗୀ ହୁଏ ତେବେ ।
ସେ ଅନ୍ତରେ ତୀର୍ଥଯାତ୍ରା କରି କେତେଦିନ
ଯେ ପାପରୁ ମୁକ୍ତିଲାଭ କରଇଟି ଜାଣ ।
ଅପବିତ୍ର ହୋଇ ଦେବ ନଇବେଦ୍ୟ ଦେଲେ
ଅଥବା ସକେଶ ଶିବଲିଙ୍ଗ ପୂଜା କଲେ ।
ଯବନକୁଳରେ ଜନ୍ମ ହୁଅଇ ଅବଶ୍ୟ
ଆବର ଦରିଦ୍ର ଅଙ୍ଗ ହୀନ କ୍ଷୁଦ୍ର ଦୃଶ୍ୟ ।
ବିଧିମତେ ଶତେ ଶିବଲିଙ୍ଗ ପୂଜାକଲେ
ଅପର ଜନ୍ମରେ ରାଜା ହୁଅଇ ସେ ଭଲେ ।
ସହସ୍ର ପୂଜିଲେ ସ୍ୱର୍ଗେ ଦେବତାଙ୍କ ସଙ୍ଗେ
ଚିରକାଳ କ୍ରୀଡ଼ା କରଇ ସେ ନାନାରଙ୍ଗେ ।
ଏହିପରି ଯେତେବେଳେ ଅଧିକ ପୂଜିବ
ତେତିକ ମାତ୍ରାରେ ପୁଣ୍ୟ ଫଳକୁ ପାଇବ ।
ବହୁତ ଜନ୍ମ ତପସ୍ୟା କଲେ ଦ୍ୱିଜ ହୋଇ
ଅଧିକ ହେଲେ ଶାସ୍ତ୍ରଜ୍ଞ ପଣ୍ଡିତ ହୁଅଇ ।
ଶତଜନ୍ମ ବିଷ୍ଣୁ ସେବା କରିଲେ ବୈଷ୍ଣବ
ହୁଅଇ ଭାରତବର୍ଷେ ଧାର୍ମିକ ମାନବ ।
ବୈଦ୍ୟହୋଇ ଯେଉଁଲୋକ ଚିକିତ୍ସା ନ କରେ
ଅଥବା ଧନଲୋଭରେ ରୋଗୀକୁ ସଂହାରେ ।
ସେହିଲୋକ ଜନ୍ମାନ୍ତରେ ହୁଏ ବ୍ୟାଳଗ୍ରାହୀ
ବୁଲୁଥାଏ ବନେ ବନେ କ୍ରୂର ଭାବ ବହି ।
ବେଶ୍ୟାସକ୍ତ ଲୋକର ଯେ ଦୁଷ୍ଟ କାର୍ଯ୍ୟ କରେ
ଶତେବର୍ଷ ପଡ଼ଇ ସେ ନରକ ମଧ୍ୟରେ ।
ପରକୃତ ଜଳାଶୟ ପୋତି ଯେଉଁ ଜନ
କରଇ ତହିଁରେ ନାନା ଶସ୍ୟ ଉତ୍ପାଦନ ।
ତିନି ଜନ୍ମଯାଏ ସେହୁ କୁମ୍ଭୀର କଚ୍ଛପ
ହୁଅଇ ଜଳ ମଧ୍ୟରେ ଆହେ ବ୍ରଜାଧିପ ।
ଶ୍ରୀରାମ ନବମୀ ଏକାଦଶୀ ଦିନ ଯେହି
ଉପବାସ କରିବାକୁ ଅଶକ୍ତ ହୁଅଇ ।
ସେହି ଲୋକ ହବିଷ୍ୟାନ୍ନ ଭୋଜନ କରିବ
ନୋହିଲେ ଅଶେଷ ପାପ ନିଶ୍ଚୟ ପାଇବ ।
ଅମାବାସ୍ୟା ରାତ୍ରିକାଳେ ଭୋଜନ ଯେ କରେ
ଶ୍ୱାପଦଗୃଧ୍ର ଶୂକର ହୁଏ ସେ ଲୋକରେ ।
ଚିତ୍ରବସ୍ତ୍ର ଚୋରିକଲେ ହୁଅଇ ମୟୂର
ମନୁଷ୍ୟ ଜନ୍ମେ ହୁଅଇ କୁବ୍ଜକ ବଧିର ।

ପଞ୍ଚପର୍ବ ଦିନେ ସ୍ତ୍ରୀ ତୈଳ ମତ୍ସ୍ୟ ମାଂସ
ଜାଣିବା ଲୋକ କଦାପି ନ କରିବ ସ୍ପର୍ଶ ।
ତାହା କଲେ ବଜ୍ରଦଂଷ୍ଟ୍ର ନରକେ ପଡ଼ଇ
ସେ ଅନ୍ତରେ ମ୍ଲେଚ୍ଛକୁଳେ ଜନମ ଲଭଇ ।
ଦେବ ବ୍ରାହ୍ମଣଙ୍କୁ ଯେହୁ ନ କରେ ପ୍ରଣାମ
ଅଶୁଚି ଯବନ ହୁଏ ସେ ନର ଅଧମ ।
ଧନବନ୍ତ ହୋଇ ଯେବେ ନିର୍ଦ୍ଧନ ଲୋକଙ୍କୁ
ଅବଜ୍ଞା କରିବ ମନେ ବନ୍ଧୁଣ ଗର୍ବକୁ ।
ତାହା ହେଲେ ସାତଜନ୍ମ ଗୃତକ ହୋଇବ
ଜଳବିନ୍ଦୁକୁ ସର୍ବଦା ଗୃହିଁ ରହିଥିବ ।
ମାଗିବା ଲୋକକୁ ଯେହୁ କରଇ ନିରାଶ
ସାତ ଜନ୍ମଯାଏ ମେଣ୍ଢ ନାହିଁ ତାର ଆଶ ।
ବିଦ୍ୟାବନ୍ତ ହୋଇ ଯେବେ ଆନେ ନ କହଇ
ପରଜନ୍ମେ ସେହୁ ଗଣ୍ଡ-ମୂର୍ଖ ହୁଅଇ ।
ଦେବତା ପିତୃଙ୍କ ପୂଜା ଛାଡ଼େ ଯେ ମୂରୁଖ
ସହସ୍ରେ ବରଷଯାଏ ନରକରେ ଦୁଃଖ ।
ସେ ଅନ୍ତେ ଶୃଗାଳ କାକ ଜନ୍ମ କେତେ ଦିନ
ହେଲା ପରେ ପୁଣି ତହୁଁ ମୁକ୍ତି ପାଏ ଜାଣ ।
ପୂଜା ସମୟରେ ଦୀପ ଲିଭାଇଲେ ହସ୍ତ
ଖଦ୍ୟୋତ ଜନ୍ମ ଲଭଇ ନିର୍ବର୍ଷ ପର୍ଯ୍ୟନ୍ତ ।
ସେ ଅନ୍ତରେ ଦୁଇଜନ୍ମ ଚକ୍ଷୁହୀନ ହୁଏ
ସ୍ୱର୍ଣ୍ଣ ଦାନ କଲେ ତହୁଁ ମୁକତିକି ପାଏ ।
ଧାନ୍ୟ ଚୋରାଇବା ଲୋକ ହୁଅଇ ଚଟକ
କୁଞ୍ଜର ହୁଅଇ ମାଂସ ଚୋରାଇବା ଲୋକ ।
ଅସତ୍କର୍ତ୍ତ ଗ୍ରାମଯାଜୀ ବିପ୍ର ଏହିମାନେ
ନକୁଳ ରୂପ ହୁଅନ୍ତି ସାତଗୋଟି ଜନ୍ମେ ।
ସବୁବେଳେ ଦୁଷ୍ଟବାକ୍ୟ କହୁଥାଏ ଯେହି
ବୃଶ୍ଚିକ କରଟ ପିପୀଲିକା ହୁଏ ସେହି ।
କନ୍ୟା ବିକ୍ରୟ କରି ଯେ ଅରଜଇ ଧନ
ପଶୁଘାତୀ ହୁଏ ଅନ୍ୟଜନ୍ମରେ ସେ ଜନ ।

ବ୍ରାହ୍ମଣ କ୍ଷତ୍ରିୟ ଅବା ବୈଶ୍ୟ ଶୂଦ୍ର ହେଲେ
ଶୌଚ ବିହୀନ ହୁଅଇ ଯେବେ ମହୀତଳେ ।
ସହସ୍ର ବରଷ ଯାଏ ମ୍ଲେଚ୍ଛ ଜନ୍ମ ପାଇ
ବିଷ୍ଣୁ ସେବା କରି ଶୁଚିମନ୍ତ ହୁଏ ଯାଇ ।
ଯେଉଁ ଲୋକ ସ୍ତ୍ରୀ ସ୍ୱଠାରେ ଅତ୍ୟନ୍ତ ଆସକ୍ତ
ହୁଅଇ ସେ ନିଶ୍ଚୟରେ ଯକ୍ଷ୍ମାରୋଗ ଗ୍ରସ୍ତ ।
ଆବର ଅନ୍ୟ ଜନ୍ମରେ ନପୁଂସକ ହୁଏ
ସୂରନ୍ତ ସୁଖରୁ ସଦା ନିବର୍ତ୍ତିଣ ରହେ ।
କାମୁକ ପଣରେ ପରସ୍ତ୍ରୀ ସ୍ୱର ଯେ ସ୍ତନ
ମୁଖ ଶ୍ରୋଣୀକୁ ସର୍ବଦା କରେ ନିରୀକ୍ଷଣ ।
ସେହି ଲୋକ ଦୃଷ୍ଟିହୀନ ନପୁଂସକ ହୁଏ
ଜାଇଥିଲେ ହେଲେ ମଲାପରି ରହିଥାଏ ।
ଶାସ୍ତ୍ରଜ୍ଞାନୀ ଲୋକ ଯେବେ ଧନଲୁବ୍ଧ ହୋଇ
ଜାଣିଥିଲେ ହେଲେ ମିଥ୍ୟା କଥାକୁ କହଇ ।
ସେ ଲୋକ ବାନର ଶ୍ୱାନ ଜନ୍ମ ପାଇକରି
ନିସ୍ତାର ହୁଅଇ ମୋର ନାମକୁ ସୁମରି ।
ସ୍ୱଧର୍ମ ନିରତ ଅଟେ ଯେବଣ ବ୍ରାହ୍ମଣ
ପବନ୍ଟିଅନଳଠାରୁ ପବିତ୍ର ସେ ଜାଣ ।
ତାକୁ ଦେଖିଲେ ସମ୍ମାନ କରନ୍ତି ଅମରେ
ପବିତ୍ର ହୁଅଇ ମହୀ ତା ପାଦ ରଜରେ ।
ବ୍ରାହ୍ମଣ ଅଟଇ ସବୁ ଜାତିମଧ୍ୟେ ଶ୍ରେଷ୍ଠ
ତାହାଠାରୁ କେଉଁ ଲୋକ ନାହିଁଟି ଉତ୍କୃଷ୍ଟ ।
ସନ୍ତୋଷ ହୋଇ ବ୍ରାହ୍ମଣ କଲେ ଆଶୀର୍ବାଦ
ଅଲଭ୍ୟରେ ଲାଭ ହୁଏ ଅଶେଷ ସମ୍ପଦ ।
ଏହିରୂପେ ଶୁଭାଶୁଭ କର୍ମର ବିପାକ
କହିଲି ତୁମ୍ଭ ଆଗରେ ହେ ଗୋପନାୟକ ।
ଆଉ କେଉଁ କଥା ଶୁଣିବାକୁ ଇଚ୍ଛାଥିଲେ
ପଚ୍ଛର ବତାଇ ସବୁ କହିବି ମୁଁ ଭଲେ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ମଉନ ହୋଇଲେ
ଧନହୀନ ସେବାବାସୀ ଗୀତେ ଏବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡେ ଚୂରବର୍ଣ୍ଣଙ୍କର ଭକ୍ଷ୍ୟାଭକ୍ଷ୍ୟ ଓ
କର୍ମବିପାକ କଥନେ ନାମ ପଞ୍ଚାଶୀତିତମୋଽଧ୍ୟାୟଃ ।

—✱—

# ଷଡ଼ଶୀତତମ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ କର୍ତ୍ତୃକ କେଦାରକନ୍ୟା ବୃତ୍ତାନ୍ତ କଥନ

ପୁଣି ବ୍ରଜ ଅଧୀଶ୍ୱର ଶ୍ରୀକୃଷ୍ଣଙ୍କୁ ପୃଚ୍ଛି
ପଚାରିଲେ ପୁରାତନ କଥା ତୋଷବନ୍ତି ।
ବୋଇଲେ ହେ ବତ୍ସ ଆଜ କେତେ ଗୋଟିକଥା
ଆମୂଳ କରିଣ ମୋତେ କହ ହରିକଥା ।
କେଉଁ ବଂଶରେ ଉପୁଜି କେଦାର ନୃପତି
କେ ଅବା ତାହାଙ୍କ କନ୍ୟା ଥିଲେ ଗୁଣବନ୍ତି
ସେମାନଙ୍କ ଚରିତକୁ ଶୁଣିବାକୁ ମୋର
ଇଚ୍ଛା ହୋଇଅଛି କହ ବତାଇ ସତ୍ୱର ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ବୋଇଲେ ହେ ତାତ
କହୁଅଛି ଶୁଣ ଏବେ ସ୍ଥିରକରି ଚିତ୍ତ ।
ପୂର୍ବକାଳେ ସ୍ୱାୟମ୍ଭୁବ ମନୁ ନାମେ ଜାତ
ହେଲେ ବ୍ରହ୍ମାଙ୍କ ଅଂଶରେ ଏକଗୋଟି ସୁତ ।
ତାହାଙ୍କର ସ୍ତ୍ରୀ ଶତରୂପା ନାମ ବହି
ଥିଲେ ପତିବ୍ରତା ପଣେ ଶ୍ରେଷ୍ଠ ଏକା ସେହି ।
ତାଙ୍କଠାରୁ ପ୍ରିୟବ୍ରତ ଉତ୍ତାନ ଚରଣ
ନାମରେ ଦୁଇଟି ପୁତ୍ର ଜାତ ହେଲେ ଜାଣ ।
ଉତ୍ତାନ ପାଦଙ୍କ ସୁତ ଧ୍ରୁବ ବୋଲାଇଲେ
ତାଙ୍କଠାରୁ ବତ୍ସରାର୍ଣ୍ଣ ନାମେ ପୁତ୍ର ହେଲେ ।
ସେହି ବତ୍ସରାର୍ଣ୍ଣଙ୍କର ତନୟ କେଦାର
ସପତ ଦ୍ୱୀପ ପୃଥିବୀ ଅଟେ ତାହାଙ୍କର ।
ବୈଷ୍ଣବ ମଧ୍ୟରେ ସେହି ଉତ୍ତମ ଅଟନ୍ତି
ସେକାଳେ ନ ଥିଲେ ତାଙ୍କ ତୁଲ୍ୟ ନରପତି ।
ପ୍ରତିଦିନ ସେ ରାଜନ ଦ୍ୱିଜଙ୍କୁ ଡକାଇ
ଦିଅନ୍ତି ବହୁତ ସ୍ୱର୍ଣ୍ଣରତ୍ନ ବସ୍ତ୍ର ଗାଈ ।
ଆବର ହସ୍ତୀ ଘୋଟକ ମାଣିକ୍ୟ ପ୍ରବାଳ
ଶତ ଧାନ୍ୟ ନାନା ମିଷ୍ଟ ଦ୍ରବ୍ୟ ଫଳମୂଳ ।
ସୁବର୍ଣ୍ଣ ରତ୍ନ ଭୂଷଣ ଅସଂଖ୍ୟ ଆଣାଇ
ପ୍ରଦାନ କରନ୍ତି ବ୍ରାହ୍ମଣଙ୍କୁ ତୋଷବହି ।
ପ୍ରତ୍ୟେକ ଶତସହସ୍ର କର୍ମଠ ଦ୍ୱିଜଙ୍କୁ
ଇଚ୍ଛା ପ୍ରକାରେ ଦିଅନ୍ତି ଦିବ୍ୟ ଭୋଜନକୁ ।
ଆସନ ବାହନ ଛତ୍ର ଚାମର ବସନ
ଦିଅନ୍ତି ଯେ ଜାଣ କେତେ ବ୍ରାହ୍ମଣଙ୍କୁ ଦାନ ।
ନିଜେ ଫଳମୂଳ ଖାଇ ମୋର ପାଦ ବେନି
ସୁମରଣା କରୁଥାନ୍ତି ଭକ୍ତିଭାବ ଘେନି ।
ସକଳ ପଦାର୍ଥ କରି ମୋତେ ସମର୍ପଣ
ଜପ ଉପବାସେ ସଦା ଦେଇଥାନ୍ତି ମନ ।
ଦିନେ ସୂପକାର ଆସି କହିଲା ତାହାଙ୍କୁ
ବୋଇଲା ହେ ମହାରାଜ ଶୁଣ ମୋ ବାକ୍ୟକୁ ।
ଲକ୍ଷେ ଗାଈ ଆଣି ଏକ ସାମନ୍ତ ନୃପତି
ବିପ୍ରଙ୍କ ଭୋଜନ ପାଇଁ ଦେଇଯାଇଛନ୍ତି ।
ସେମାନଙ୍କ କ୍ଷୀର ଦଧି ଘୃତ ସହିତରେ
ଭୁଞ୍ଜିଲେ ବ୍ରାହ୍ମଣମାନେ ପରମ ସୁଖରେ ।
ଚାରିଯୋଜନ ପୃଥିବୀ ଯାହାର ଅଧୀନ
ସାମାନ୍ୟ ରାଜା ବୋଲିଣ ତାଙ୍କୁ ମନେ ଘେନ ।
ତାର ଶତଗୁଣ ଅଧିକାର ଯେ କରଇ
ମଣ୍ଡଳେଶ୍ୱର ବୋଲିଣ ତାହାଙ୍କୁଟି କହି ।
ତହିଁର ଦ୍ୱାଦଶଗୁଣ ଯାହାର ଅଧିକ
ରାଜେନ୍ଦ୍ର ନାମରେ ଖ୍ୟାତ ହୁଏ ସେହି ଲୋକ ।
ଆପଣଙ୍କଠାରେ ତାହା ହେଉଅଛି ଦୃଶ୍ୟ
ନାହାନ୍ତି ଜଗତେ କେହି ହେବାକୁ ସଦୃଶ ।
ଏରୂପେ ପ୍ରଶଂସା ବାକ୍ୟ ପୁଣି ନରପତି
ଆନନ୍ଦିତ ହେଲେ ସେହି ସମୟରେ ଅତି ।
ପ୍ରତିଦିନ ପାଞ୍ଚଲକ୍ଷ ସୁବର୍ଣ୍ଣ ମୋହର
କେଦାର ନୃପତିଙ୍କର ଆସୁଥାଏ କର ।
ଆବର ଅନେକ ମୁକ୍ତା ମଣି ରତ୍ନ ଆଦି
ଦେଉଥାନ୍ତି କରଦାତା ରାଜାଏ ଯଥାବିଧି ।
ଦିନେ ଯଜ୍ଞ କଲାବେଳେ ହୋମ ଅନଳରୁ
ବାହାର ହୋଇଲେ ପଦ୍ମାଳୟା ସ୍ୱରୂପରୁ ।
କନ୍ୟା ସ୍ୱରୂପରେ ପ୍ରକାଶିତ ହେଲେ ଆସି
ମଧ୍ୟାହ୍ନ ଆଦିତ୍ୟ ପରି ତେଜ ପରକାଶି ।
ନାନା ରତ୍ନ ଅଳଙ୍କାରେ ତାହାଙ୍କ ଶରୀର
ଦିଶୁଥିଲା ସେ କାଳରେ ଅତି ମନୋହର ।
ରାଜାଙ୍କ ଆଗରେ ଉଭା ହୋଇ ସେ ଯୁବତୀ
ବୋଇଲେ ହେ ମହାରାଜା ମୁଁ ତୁମ୍ଭ ଦୁହିତୀ ।

ତାହା ଶୁଣି ରାଜା ଅତି ହରଷିତ ହେଲେ
ପତ୍ନୀଙ୍କ ପାଶରେ ତାଙ୍କୁ ସମର୍ପଣ କଲେ ।
ଅତ୍ୟନ୍ତ ଆଦରେ ରାଜପତ୍ନୀ ସେ କନ୍ୟାକୁ
ପାଳିଲେ ଉତ୍ତମରୂପେ କରିଣ ଯତ୍ନକୁ ।
କେତେଦିନ ପରେ ବାଳା ତପ ଅଭିଳାଷେ
ପିତା ମାତାଙ୍କୁ ଜଣାଇ ଗଲେ ବନଦେଶେ ।
ଯମୁନା ନଦୀ ତଟରେ ଘୋର ତପ କଲେ
ତାହା ଜାଣି ପ୍ରଜାପତି ସେଠାକୁ ଆସିଲେ ।
ବର ମାଗ ବୋଲି ତାଙ୍କୁ ବୋଲିବାରୁ କାଳେ
ମୋତେ ପତିରୂପେ ପାଇବାକୁ ସେ ମାଗିଲେ
ବିଧାତା ବୋଇଲେ କେତେକାଳପରେ ତୁମ୍ଭେ
ଶ୍ରୀକୃଷ୍ଣଙ୍କୁ ପାଇବ ଏ ବର ଦେଲୁ ଆମ୍ଭେ ।
ସେହିଠାରେ ତପ କରି ଥିଲେ ବୋଲି ବାଳା
ବୃନ୍ଦାବନ ସେ ବନର ନାମଟି ହୋଇଲା ।
ଏଥୁ ଅନନ୍ତରେ ଦିନେ ବସନ୍ତ କାଳରେ
ମନୋହର ସୁକୋମଳ କୁସୁମ ତଳ୍ପରେ ।
ନାନା ଅଳଙ୍କାର ଭରି କେଦାର କନ୍ୟକା
ଆନନ୍ଦଭରେ ଶୟନ କରିଥିଲେ ଏକା ।
ତାହାଙ୍କ ଚିତ୍ତ ପରୀକ୍ଷା କରିବାକୁ ଧାତା
ପଠାଇଲେ ସେହିଠାକୁ ଧରମ ଦେବତା ।
ସୁବେଶ ସୁନ୍ଦର ରୂପ ରତ୍ନ ବିଭୂଷିତ
ସକଳ ଅଙ୍ଗରେ ଗନ୍ଧ ଚନ୍ଦନ ଚର୍ଚ୍ଚିତ ।
ତରୁଣ ବୟସ କାମ ସୁନ୍ଦର ମୂରତି
ଦେଖିଲେ ମୋହିତ ହେବ କାମିନୀର ମତି ।
ଏମନ୍ତ ରୂପରେ ଧର୍ମଦେବ ସେହିକାଳେ
ସେ ନବ ବାଳୀର ପାଶେ ଉପସ୍ଥିତ ହେଲେ
ଦେଖି ତାଙ୍କୁ ଶଯ୍ୟାରୁ ଉଠି ବୃନ୍ଦାବତୀ
ପୂଜାକଲେ ଯୁବକଙ୍କୁ ଭକ୍ତିକରି ଅତି ।
ପାଦ୍ୟ ଅର୍ଘ୍ୟ ଦେଇ ଆସନରେ ବସାଇଲେ
କୁଶଳ ବାରତା ପୁଛି ମାନସ ହରିଲେ ।
ଧର୍ମ ବୋଇଲେ ଗୋ ବାଳା ଆମ୍ଭର କୁଶଳ
ହୋଇଅଛି କହ ତୁମ୍ଭେ ଅଛଟିକି ଭଲ ।
କାହାର କନ୍ୟକା ତୁମ୍ଭେ କି ନାମ ତୁମ୍ଭର
ଏକାନ୍ତରେ ବସି କିବା କରୁଛ ବିଚାର ।
କେଉଁ ଅଭିଳାଷେ ତପ କରୁଅଛ ଆସି
ଏ କଥା ଆମ୍ଭ ଆଗରେ କହ ସୁରୁକେଶୀ ।

ଯେବେ ବର ମାଗିବାକୁ କରିଅଛ ମନ
ମାଗ ଏହିକ୍ଷଣି ଆମ୍ଭେ ଦେବୁ ତା ବହନ ।
ଏହା ଶୁଣି ବୃନ୍ଦାବତୀ ବୋଇଲେ ମୋ ନାମ
ବୃନ୍ଦା ଅଟେ ଜାଣ ଆହେ ଯୁବକ ଉତ୍ତମ ।
କେଦାର ନୃପତିଙ୍କର ମୁଁ ଅଟେ ଦୁହିତା
ଆବାଲ୍ୟରୁ କରୁଅଛି ଶ୍ରୀହରିଙ୍କୁ ଚିନ୍ତା ।
ସେ ପ୍ରଭୁଙ୍କୁ ପତିରୂପେ ପାଇବା ଇଚ୍ଛାରେ
ତପସ୍ୟା କରୁଛି ଆସି ବନସ୍ତ ମଧ୍ୟରେ ।
ଯେବେ ଏହି ବର ମୋତେ ଦେବାକୁ ତୁମ୍ଭର
ସାମରଥ ଅଛି ତେବେ ଅନୁଗ୍ରହ କର ।
ନୋହିଲେ ନିଜକାର୍ଯ୍ୟରେ ଯାଅ ବେଗହୋଇ
ଆଉ କହିବାରେ କିଛି ପ୍ରୟୋଜନ ନାହିଁ ।
ଧର୍ମ ବୋଇଲେ ଯା ଇଚ୍ଛା କରିଅଛ ତୁମ୍ଭେ
ଅସମ୍ଭବ ଅଟେ ତାହା ବୋଲୁଅଛୁ ଆମ୍ଭେ ।
ନିରୀହ ନିର୍ଗୁଣ ନିରାକାର ନିରଞ୍ଜନ
ଅଟନ୍ତି ଯେ ପରମାତ୍ମା ପ୍ରଭୁ ଭଗବାନ ।
ଲକ୍ଷ୍ମୀ ସରସ୍ୱତୀ ବିନା ତାଙ୍କୁ ଅନ୍ୟ କେହି
ପତିରୂପେ ପାଇବାର ସମ୍ଭବ ନୁହଇ ।
ଗୋଲୋକେ ଦ୍ୱିଭୁଜ କୃଷ୍ଣ ଶ୍ୟାମଳ ସୁନ୍ଦର
ରାଧିକା ଅଟନ୍ତି ପ୍ରିୟ ପତ୍ନୀ ତାହାଙ୍କର ।
ବୈକୁଣ୍ଠରେ ଚତୁର୍ଭୁଜ ଦେବ ନାରାୟଣ
ଲକ୍ଷ୍ମୀ ସରସ୍ୱତୀ ତାଙ୍କ ବେନି ଭାର୍ଯ୍ୟା ପୁଣ ।
ଶ୍ରୀକୃଷ୍ଣ ଅଟନ୍ତି ଦୁଇରୂପେ ଇଚ୍ଛାମତେ
ତାହାଙ୍କ ଅଂଶରେ ଜାତ ଦେବତା ସମସ୍ତେ ।
ନିମିଷେ ପତନ ଯେବେ ହୁଅଇ ତାଙ୍କର
ବ୍ରହ୍ମାଙ୍କ ଆୟୁଷ ଶେଷ ହୁଏ ମନେ କର ।
ପଞ୍ଚବିଂଶ ସପ୍ତଯୁଗ ଇନ୍ଦ୍ରଙ୍କ ଆୟୁଷ
ଏହିପରି ଚତୁର୍ଦ୍ଦଶ ଇନ୍ଦ୍ର ଗଲେ ନାଶ ।
ବିଧାତାଙ୍କ ଦିନରାତି ହୁଅଇଟି ଜାଣି
ଏମନ୍ତେ ଶତେବରଷ ଭୋଗ କରି ପୁଣ ।
ବିଲୀନ ହୁଅନ୍ତି ଅନ୍ତରେ ବ୍ରହ୍ମା ପ୍ରଜାପତି
ଯେତେବେଳେ ହୁଏ ମହାପ୍ରଳୟ ଉତ୍ପତ୍ତି ।
ସନକାଦି ମୁନିଗଣ ନିତ୍ୟ ତ୍ରିସନ୍ଧ୍ୟାରେ
ପ୍ରାର୍ଥନା କରନ୍ତି ଯେହି ହରିଙ୍କ ପଦ୍ମରେ ।
ଆବର ବିଧାତା ଶମ୍ଭୁ ଆଦି ଯେତେ ଦେବେ
ସ୍ତୁତି କରୁଥାନ୍ତି ଯେଝାମତେ ନିତି ସର୍ବେ ।

ତାଙ୍କଠାରୁ ବଳ ହୋଇ ନାହିଁ କେ ଜଗତେ
ଶୁଣ ଆହେ ଗୋ ବୃନ୍ଦାବତୀ ସାବଧାନ ଚିତ୍ତେ ।
ଯେ ବ୍ରହ୍ମ ସ୍ୱରୂପା ମୂଳ ପ୍ରକୃତି ଈଶ୍ୱରୀ
ବିଷ୍ଣୁମାୟା ଦୁର୍ଗାଦେବୀ ତ୍ରିଭୁବନ ଶିରୀ ।
ଯାହାଙ୍କ ମାୟାରେ ଲୋକ ହୁଅଇ ମୋହିତ
ଅଟନ୍ତି ଯେ ବେଦମାତା ପରମ ଦୈବତ ।
ସେ ଦେବୀ ସର୍ବଦା ଯାହାଙ୍କର ସ୍ତୁତିଗାନ
ସବୁବେଳେ ଭକ୍ତିଭରେ କରୁଛନ୍ତି ଜାଣ ।
ଯାହାଙ୍କ ଭୟରେ ଚନ୍ଦ୍ର ସୂର୍ଯ୍ୟ ତାରାଗଣ
କରୁଛନ୍ତି ନେ ଯାହାର ମାର୍ଗେ ବିଚରଣ ।
ଆବର ବାସବ ଆଦି ଦିଗପାଳମାନେ
ପାଳନ କରନ୍ତି ତିନିଲୋକ ସାବଧାନେ ।
ଯାହାଙ୍କ ଭୟରେ ସପ୍ତସିନ୍ଧୁ କେତେବେଳେ
ନିଜ ନିଜ ସୀମା ଲଙ୍ଘି ନ ଯାଆନ୍ତି ତଳେ ।
ସେ ପ୍ରଭୁଙ୍କୁ ପତିରୂପେ ପାଇବାକୁ ମନ
କରିଅଛ ଯାହା ଏ ତ ଅଟି ବିଡ଼ମ୍ବନ ।
ଗୋଲୋକରେ ରାଧାଙ୍କର ଅଟନ୍ତି ସେ ସାଧ
ଅନ୍ୟ କାମିନୀ ପକ୍ଷରେ ସୁଦୁର ଆରାଧ ।
ଏ ସକାଶୁ ତାଙ୍କଠାରୁ ନିବର୍ତ୍ତାଇ ଚିତ୍ତ
ମୋତେ ଭଜିଲେ ତୁମ୍ଭର ହେବ ଜାଣ ହିତ ।
ସୁନ୍ଦର ଯୁବକ ବଳବନ୍ତ ଅଟେ ମୁହିଁ
ଦେବାସୁର ମଧ୍ୟେ ମୋହପରି କେହି ନାହିଁ ।
ମୋତେ ଭଜିଲେ ତ୍ରୈଲୋକ୍ୟ ସମ୍ପଦ ତୁମ୍ଭର
ହସ୍ତଗତ ହେବ ବୋଲି ମନରେ ବିଚାର ।
ସପତ ସାଗର ପାରେ କାଞ୍ଚନ ପର୍ବତେ
କ୍ରୀଡ଼ା କର ବିପିନରେ ମୋହର ସହିତେ ।
ଲଙ୍କାପୁରେ ଅବା ମେରୁ ପର୍ବତ ଗହ୍ୱରେ
କି ଅବା ମଳୟ ଦ୍ରୋଣୀ କାନନ ମଧ୍ୟରେ ।
ନୋହିଲେ ବା ବ୍ରହ୍ମଲୋକ ସତ୍ୟଲୋକେ ଯାଇ
ବିହାର କରିବ ମୋର ସଙ୍ଗେ ସୁଖ ପାଇ ।
ଇନ୍ଦ୍ର ମରୁତ କୁବେର ବରୁଣ ଶମନ
ସୂର୍ଯ୍ୟ ଆଦି ଦେବଙ୍କର ଯେତେ ରମ୍ୟସ୍ଥାନ ।
ସେହି ସ୍ଥାନମାନଙ୍କରେ ମୋତେ ସଙ୍ଗେ ଧରି
କ୍ରୀଡ଼ା କର ଇଚ୍ଛାମତେ ଆହେ ଗୋ ସୁକୁମାରୀ ।
ଏହିରୂପେ କହି ଧର୍ମ ଦେବତା ସେକାଳେ
ବୃନ୍ଦାବତୀଙ୍କୁ ସମ୍ଭୋଗ କରିବାକୁ ଗଲେ ।

ଧସ୍ତାଧସ୍ତି କରିବାପାଇଁ ତାଙ୍କ ଧସ୍ତାପଣ
କପଟରେ ଏହିପରି କଲେ ସେହି ଜାଣ ।
ତା ଦେଖି କେଦାର ସୁତା ନେତ୍ର ରଙ୍ଗ କରି
କହିଲେ ଧର୍ମଦେବଙ୍କୁ ବଚନ ଉଚ୍ଚାରି ।
ବୋଇଲେ ଜାତିରେ ତୁମ୍ଭେ ଅଟ ତ ବ୍ରାହ୍ମଣ
କରୁଅଛ କାହିଁପାଇଁ ହୀନ ଆଚରଣ ।
ବ୍ରାହ୍ମଣର ସତ୍ୟ ବ୍ରତ ତପ ମନ୍ତ୍ର ଧ୍ୟାନ
ନିତ୍ୟ ଦେବପୂଜା ପିତୃ ଅତିଥି ସେବନ ।
ଉଚିତ କର୍ମ ଅଟଇ ଆହେ ମହାଭାଗ
ପରମ ଗର୍ହିତ ପର କାମିନୀ ସମ୍ଭୋଗ ।
ପତିବ୍ରତା ଧରଷଣ କରେ ଯେଉଁ ଲୋକ
ମାତୃଗାମୀ ପରାୟେ ସେ ଲଭଇ ପାତକ ।
ଶତଗୋଟି ବ୍ରହ୍ମହତ୍ୟା ହୁଅଇ ତାହାର
ଦେହ ଅନ୍ତେ କୁମ୍ଭୀପାକେ କରେ ଯାଇ ଘର
କ୍ଷଣିକ ସୁଖ ସକାଶେ ଚିରକାଳ ଯାଏ
ଯମଦୂତଙ୍କ ହସ୍ତରେ ଘୋର ଦଣ୍ଡ ପାଏ ।
ସର୍ବନାଶର କାରଣ ଅଟଇଟି ଏହି
ମୂର୍ଖଲୋକ ଏ କଥାକୁ ଭାବି ନ ପାରଇ ।
ଯେଉଁରୂପେ ଦୀପଶିଖା ଦେଖିକରି କୀଟ
ପଡ଼ିଣ ମରଇ ତହିଁ ହୋଇ ଛଟପଟ ।
ବଡ଼ଶୀ ଅଗ୍ରରେ ଖାଦ୍ୟଦ୍ରବ୍ୟ ଦେଖି ମୀନ
ଗ୍ରାସ କରି ଯେଉଁରୂପେ ହରାଏ ଜୀବନ ।
ସେହିପରି ପରସ୍ତ୍ରୀ ସୌନ୍ଦର୍ଯ୍ୟରେ ଭୁଲି
କାମୁକ ପୁରୁଷ ଦୁଃଖ ପାଉଥାଏ ବୁଲି ।
କାମିନୀର ମୁଖପଦ୍ମ ନାଭିଶ୍ରୋଣୀ ସ୍ତନ
ନିଶ୍ଚୟ ଅଟଇ ସର୍ବ ନାଶର କାରଣ ।
ଏକାକିନୀ ଦେଖି ମୋତେ ଭୋଗ କରିବାକୁ
ଆସୁଅଛ ତୁମ୍ଭେ ମନୁଟେକିଣ ଉଦ୍ୟୁକ୍ତ ।
କିନ୍ତୁ ଏହିଠାରେ ଧର୍ମ ଅଷ୍ଟଦିଗପାଳ
ସବୁବେଳେ ଆସି ହୋଇଛନ୍ତି ଜାଣ ଠୁଳ ।
ଶ୍ରୀକୃଷ୍ଣ ପରମଆତ୍ମା ଦେବଙ୍କ ସହିତେ
ମୋତେ ରକ୍ଷା କରିବାକୁ ଅଛନ୍ତି ନିରତେ ।
ବିଷ୍ଣୁମାୟା ଭଗବତୀ ଦୁର୍ଗତି ନାଶିନୀ
ରହିଅଛନ୍ତି ମୋହର ପାଶେ ଶସ୍ତ୍ର ଘେନି ।
ତୁମ୍ଭଙ୍କୁ ମୁଁ ଶାପାନଳେ କ୍ଷଣକ ମଧ୍ୟରେ
ଭସ୍ମ କରିବାକୁ ସମରଥ ହୋଇପାରେ ।

କନ୍ତୁ ଅଷ୍ଟାଭର ଶତଯୁଗ ତପକର
ନୟମିତ ପ୍ରକାରେ ମୁଁ ଦେଇଅଛି ଘାସ ।
ଆଜଯାଏ କାହାଠାରେ କରନାହିଁ କୋପ
ଏବେ ତୁମ୍ଭଙ୍କୁ କାହିଁକି ଦେବ ଅଭିଶାପ ।
ସ୍ୱଭାବେ ବ୍ରାହ୍ମଣ ଜାତି ଅଟଇ ଅବଧ
ତାହାକୁ ନାଶ କରିବା ନୁହେ କାହା ସାଧ ।
ଆହେ ଦ୍ୱିଜବର ମୋର ଦୋଷ କ୍ଷମା କର
ଯଥାସୁଖେ ଯାଅ ହେଉ ମଙ୍ଗଳ ତୁମ୍ଭର ।
ଏମନ୍ତ କହିଣ ସତୀ ନୀରବ ହୋଇଲେ
ତାହାଙ୍କ କଥାକୁ ଧର୍ମ କର୍ଣ୍ଣେ ନ ଶୁଣିଲେ ।
ପୁଣି ତାଙ୍କୁ ଧରଷଣ କରିବାକୁ ବଳେ
କପଟରେ କ୍ରମେ କ୍ରମେ ଧର୍ମୀପକୁ ଗଲେ ।
ତା ଦେଖି କେଦାରସୁତା କୋପଭର ହୋଇ
ବୋଇଲେ ରେ ଦୁରାଚାର କ୍ଷୟ ହୁଅ ତୁହି ।
ଏହିପରି ତିନିଥର ଶାପ ଦେଇ ତାଙ୍କୁ
ରହିଲେ କ୍ରୋଧରେ ରକ୍ତ କରିଣ ନେତ୍ରକୁ ।
ସେ ସମୟେ ବ୍ରହ୍ମା ବିଷ୍ଣୁ ଶିବଆଦି ଦେବେ
ଉପସ୍ଥିତ ହେଲେ ସେହିଠାରେ ଆସି ସର୍ବେ !
ଦେଖିଲେ ସତୀଶାପରେ ଧର୍ମଙ୍କ ଶରୀର
କଳାରୂପ ହୋଇ ଦିଶୁଅଛି ନାରଖାର ।
ନିଶ୍ଚେଷ୍ଟ ଭାବରେ ପଡ଼ିଅଛନ୍ତି ସେ ତଳେ
ଦେଖିଣ କାନ୍ଦିଲେ ସର୍ବେ ଘେନି ତାଙ୍କୁ କୋଳେ
ସେ ଅନ୍ତେ ବୃନ୍ଦାବତୀଙ୍କୁ ଅନାଇଁ ଶ୍ରୀହରି
ବୋଇଲେ ଗୋ ପତିବ୍ରତେ ଶୁଣ କର୍ଣ୍ଣ ଡେରି
ଏ ଦ୍ୱିଜ ଅଟନ୍ତି ସାକ୍ଷାତରେ ଧର୍ମଦେବ
ଆସିଥିଲେ ବୁଝିଯିବା ପାଇଁ ତୁମ୍ଭ ଭାବ ।
ଏବେ ତୁମ୍ଭେ ଦୟାକରି ଏହାଙ୍କ ଜୀବନ
ରକ୍ଷାକର ଆମ୍ଭର ଏ ଭିକତିଟି ଜାଣ ।
ବିଧାତା ବୋଇଲେ ଧର୍ମବିନା ଏ ଜଗତ
କ୍ଷଣକେ ହୋଇବ ମହା ଅନ୍ଧାରେ ଆବୃତ ।
ମହାଦେବ ବୋଇଲେ ଗୋ ସତୀ ଶିରୋମଣୀ
ଧର୍ମକୁ ଜୀଆଅ ଆମ୍ଭ ବଚନକୁ ଘେନି ।
ସୂର୍ଯ୍ୟ ବୋଇଲେ ସମସ୍ତେ ଦେବୁ ଆମ୍ଭେ ବର
ଧର୍ମକୁ ଜୀଆଅ ଶୁଭ ହୋଇବ ତୁମ୍ଭର ।
ଅନନ୍ତ ବୋଇଲେ ଧର୍ମ ଅରଜିବା ପାଇଁ
ତପ କରୁଅଛ ବନେ ମହାକଷ୍ଟ ସହି ।

ତଥାପି ଧର୍ମକୁ କପାଁ କରୁଅଛ ନାଶ
ଜୀବଦାନ ଦିଅ ଆଗୋ ସତୀଗଣ ଈଶ ।
ଚନ୍ଦ୍ର ବୋଇଲେ ବ୍ରହ୍ମାଙ୍କ ଆଦେଶ ପ୍ରକାରେ
ଏଠାକୁ ଆସିଲେ ଧର୍ମ ବ୍ରାହ୍ମଣ ବେଶରେ ।
ବିଚାରିଲେ ତାହାଙ୍କର ଦୋଷ ନାହିଁ କିଛି
ଅନୁଗ୍ରହ ଏବେ ତାଙ୍କୁ କର ମୁଁ ବୋଲୁଛି ।
ମହେନ୍ଦ୍ର ବୋଇଲେ ତପକର ଧର୍ମବଳେ
ସୁଖଭୋଗ କରେ ଲୋକ ସ୍ୱର୍ଗ ଆଦି ଫଳେ ।
ଯେବେ ସେ ଧର୍ମଙ୍କୁ ତୁମ୍ଭେ କରୁଅଛ କ୍ଷୟ
କି ରୂପେ ହେବ ସଂସାରେ ତପ ଫଳୋଦୟ ।
ବରୁଣ ବୋଇଲେ ଦେବି ଧର୍ମ ସନାତନ
ତାହାଙ୍କଠାରେ କଦାପି ନୁହ କୋପମନ ।
ପବନ ବୋଇଲେ ମାତ ଜୀଆଇ ଧର୍ମକୁ
ରକ୍ଷାକର ଏବେ ତିନିଭୁବନ ଲୋକଙ୍କୁ ।
ଅନଳ ବୋଇଲେ ନିଜ ଧର୍ମ ଉପାର୍ଜ୍ଜନ
କରିବାପାଇଁ ଯେ ତୁମ୍ଭେ ଆସିଅଛ ବନ ।
ନ ଜାଣି ସେ ଧର୍ମକୁ ତ କରିଲଣି କ୍ଷୟ
ଏବେ ପୁଣି ତାଙ୍କଠାରେ ହୁଅ ଗୋ ସଦୟ ।
ଯମ ବୋଇଲେ ଗୋ ସତୀ ସଂସାର ମଧ୍ୟରେ
ଶୁଭାଶୁଭ କର୍ମ ମୁହିଁ ଜାଣେ ନିରନ୍ତରେ ।
ଧର୍ମ ଅଟନ୍ତି ସକଳ ସାକ୍ଷୀ ସନାତନ
ତାଙ୍କ ବିନା କେହି ଚଳି ନ ପାରିବେ ଜାଣ ।
ବିନାଦୋଷରେ ସେ ଏବେ ଦଣ୍ଡ ପାଇଛନ୍ତି
ତାହାଙ୍କ ଜୀବନ ଦାନ ଦିଅ ମହାସତୀ ।
ଏରୂପେ ଦେବଙ୍କ ବାକ୍ୟ ଶୁଣି ତପସ୍ୱିନୀ
ରହିଲେ ମୁହୂର୍ତ୍ତେପାଏ ମନେ ମନେ ଗୁଣି ।
ବୋଇଲେ ହେ ଦେବଗଣ ଧର୍ମ ମୋହଠାକୁ
ଆସିଥିଲେ ମୋର ମନକଥା ବୁଝିବାକୁ ।
କପଟରେ ଦ୍ୱିଜରୂପ ବହିଥିଲେ ସେହି
ତାହାଙ୍କର ମାୟା ବୁଝି ନ ପାରିଲି ମୁହିଁ ।
ସେ ସକାଶୁ କୋପାନଳେ ଦେଲି ତାଙ୍କୁ ତାପ
ଜାଣିବାରୁ ଏବେ ଜାତ ହେଉଛି ସନ୍ତାପ ।
ନିଶ୍ଚୟରେ ମୋର ହୋଇଅଛି ତାହା ଦୋଷ
ପୁଣି ଜୀଆଇବାପାଇଁ ଭାବୁଛି ମାନସ ।
ପ୍ରସନ୍ନ ହୋଇଣ ତୁମ୍ଭେମାନେ ମୋହଠାରେ
ସହାୟ ହୋଇବ ମୁହିଁ ମାଗୁଅଛି ବାରେ ।

ଏମନ୍ତ କହିଣ ଦେବୀ ଶନାଳର ମୋତେ
ବୋଇଲେ ମୋହର ତପ ଧ୍ୟାନ ଧର୍ମ ଯେବେ
ସତ୍ୟ ଅଟେ ଯେବେ ମୁହିଁ ଦେଇଥିବା ଶାପ
ନ ଦେଉ ଏ ଦ୍ୱିଜରୂପୀ ଧର୍ମଙ୍କୁ ସନ୍ତାପ ।
ବ୍ରହ୍ମା ଶିବ ନାରାୟଣ ଯେବେ ସତ୍ୟମୂର୍ତ୍ତି
ଈଶ୍ୱର ହେଉନ୍ତୁ ଏହି ବ୍ରାହ୍ମଣ ସନ୍ତତି ।
ଏମନ୍ତ ବୋଲି ଧର୍ମଙ୍କୁ କୋଳରେ ବସାଇ
ରୋଦନ କଲେ ଦୟାରେ ବିଚଳିତ ହୋଇ ।
ଏହି ସମୟରେ ଧର୍ମପତ୍ନୀ ମୂର୍ତ୍ତି ଦେବୀ
ପତିଙ୍କର କଷ୍ଟମାନ ମନେ ମନେ ଭାବି ।
ରୋଦନ କରି ବିଷ୍ଣୁଙ୍କ ପାଦରେ ପଡ଼ିଲେ
କରଯୋଡ଼ି ପୁଣି ବିନୟରେ ଜଣାଇଲେ ।
ବୋଇଲେ ହେ ମହାପ୍ରଭୁ ମୋହର ପତିଙ୍କୁ
ଜୀବଦାନ ଦିଅ ଏବେ ପ୍ରକାଶି ଦୟାକୁ ।
ପତିବିନା କ୍ଷଣେ ମାତ୍ର ମୋହର ଜୀବନ
ରହି ନ ପାରିବ ଆହେ ପ୍ରଭୁ ଭଗବାନ ।
ପତିହୀନା ସ୍ତ୍ରୀ ଯେ ଅଟେ ପରମ ପାପିନୀ
ନିର୍ଜୀବ ପରାଏ ରହିଥାଏ ବିଯୋଗିନୀ ।
ପୁତ୍ର ଭ୍ରାତା ବନ୍ଧୁ ପିତା ମାତା ଆଦିକରି
ସୁଖସମ୍ପୂ ଅଟନ୍ତି ସମସ୍ତେ ସବୁରି ।
ସମ୍ପଦ ବିପଦକାଳେ ସମଭାବେ ପତି
ସୁଖ ଅବା ଦୁଃଖ ଭୋଗ କରୁଥାନ୍ତି ନିତି ।
ଆହେ ମହାପ୍ରଭୁ ତୁମ୍ଭେ ଜଗତ କାରଣ
ଦୟାକରି ଦିଅ ମୋର ପତିଙ୍କୁ ଜୀବନ ।
ଏମନ୍ତ ବୋଲିଣ ଦେବୀ ନୀରବ ହୋଇଲେ
ତା ଦେଖି ଶ୍ରୀହରି ବୃନ୍ଦାବତୀଙ୍କୁ କହିଲେ ।
ବୋଇଲେ ଗୋ ପତିବ୍ରତେ ତପବଳେ ତୁମ୍ଭେ
ବ୍ରହ୍ମାଙ୍କ ଆୟୁଷ ପାଇଅଛ ଜାଣୁ ଆମ୍ଭେ ।
ତାହା ସମର୍ପଣ କରି ଧର୍ମ ଦେବତାଙ୍କୁ
ଆନନ୍ଦ ମନରେ ଯାଅ ଗୋଲୋକ ପୁରକୁ ।
ନିଶ୍ଚୟରେ ତୁମ୍ଭେ ମୋତେ ପତି ସ୍ୱରୂପରେ
ଲଭିବ ସନ୍ଦେହ କିଛି ନାହିଁଟି ଏଥିରେ ।
କେତେଦିନ ଅନ୍ତେ ପୁଣି ଗୋପାଳ ନଗରେ
ଜନମିବ ରାଧାନାମେ ବଲ୍ଲବୀ ଉଦରେ ।
ରାଧାଦେବୀଙ୍କର ଛାୟାରୂପ ହୋଇ ତୁମ୍ଭେ
ଜାତ ହେବ ନିଶ୍ଚୟରେ କହୁଅଛୁ ଆମ୍ଭେ ।

ଆମ୍ଭର କଳାରେ ଜାତ ଛାୟା ତାଙ୍କ କର
ଗ୍ରହଣ କରିବ ଆଗୋ ରମଣୀଙ୍କ ବର ।
ସେ ସମୟେ ଶ୍ରୀକୃଷ୍ଣଙ୍କୁ ରାସକ୍ରୀଡ଼ା ସ୍ଥଳେ
ଲଭିବ ଆପଣା ପୁଣ୍ୟ କର୍ମ ଜାତ ଫଳେ ।
ଶ୍ରୀଦାମ ଶାପରେ ରାଧା ବୃଷଭାନୁ ସୁତା
ହୋଇବ ଯଥାର୍ଥ ରୂପରେ ନାହିଁ କିଛି ଚିନ୍ତା ।
ନାରାୟଣଙ୍କ ସଙ୍ଗରେ ବିବାହ ତାଙ୍କର
ହେବାବେଳେ ତୁମ୍ଭଙ୍କୁ ସେ ରଖାଇ ସେଠାର
ଅନ୍ତର୍ଦ୍ଧାନ ହୋଇଯିବେ ଗୋଲୋକ ଭୁବନେ
ଦେଖି ନ ପାରିବେ ଗୋପେ ତାହାଙ୍କୁ ନୟନେ
ରାଧିକା ବୋଲି ତୁମ୍ଭଙ୍କୁ ମନେ ବିଚାରିବେ
ପ୍ରକୃତ ସେ ରାଧା ଶ୍ରୀକୃଷ୍ଣଙ୍କ ପାଶେ ଥିବେ ।
ଏରୂପେ ବିଷ୍ଣୁଙ୍କ ବାକ୍ୟ ଶୁଣି ବୃନ୍ଦାବତୀ
ନିଜ ଆୟୁଷ ଧର୍ମଙ୍କୁ ଦେଲେ ଛାଡ଼ି ଖିତି ।
ସେହିକ୍ଷଣି ଧର୍ମଦେବ ଦିବ୍ୟରୂପ ବହି
ଦେବତାଙ୍କ ସମୀପରେ ଉଭା ହେଲେ ଯାଇ ।
ପୂର୍ବଅପେକ୍ଷା ଅଧିକ ସୁନ୍ଦର ଦିଶିଲେ
ଦେଖି ତାଙ୍କୁ ଦେବଗଣ ହରଷିତ ହେଲେ ।
ସେ ଅନ୍ତରେ ବୃନ୍ଦାବତୀ ସମସ୍ତଙ୍କୁ ଚାହିଁ
ବୋଇଲେ ମୋହର ବାକ୍ୟ ଶୁଣ ମନଦେଇ ।
ନ ଜାଣି ଧର୍ମଙ୍କୁ ମୁହିଁ କ୍ଷୟ ହୁଅ ବୋଲି
କ୍ରୋଧ ହୋଇ ତିନିବାର ଶାପ ଦେଇଗଲି ।
ଆଉ ଥରେ ପୁଣି ତାହା ବୋଲିବାକୁ ମନ
କରନ୍ତେ ବାରଣ କଲେ ମୋତେ ବିବସ୍ୱାନ ।
ମୋହର ବଚନ କେବେ ଅନ୍ୟଥା ନ ହେବ
ସେ ସକାଶୁ କ୍ଷୟ ନିଶ୍ଚେ ହେବେ ଧର୍ମଦେବ ।
ସତ୍ୟଯୁଗେ ଚାରିପାଦେ ପୂର୍ଣ୍ଣରୂପେ ଥିବେ
ତ୍ରେତୟା ଯୁଗରେ ତିନିପାଦରେ ରହିବେ ।
ଦ୍ୱାପର ଯୁଗରେ ପୁଣି ଦୁଇପାଦେ ରହି
କଳିଯୁଗେ ପାଦେ ମାତ୍ର ରହିବେଟି ସେହି ।
ଏହିରୂପେ ତିନିବାର କ୍ଷୟ ତାହାଙ୍କର
ହୋଇବ ଅବଶ୍ୟ ମାତ୍ର ବଚନ ମୋହର ।
ଏମନ୍ତେ କେଦାରସୁତା କହୁଥିଲେ ବସି
ଆକାଶୁ ଆସିଲା ଦିବ୍ୟରଥ ଏକ ଖସି ।
ଅମୂଲ୍ୟରତ୍ନ ନିର୍ମିତ ଅଟଇ ସେ ଯାନ
ଦିଶୁଅଛି ନାନା ମଣିଗଣରେ ଶୋଭନ ।

ତାହା ଦେଖି ବୃନ୍ଦାବତୀ ଦେବଙ୍କୁ ସେ କାଳେ
ନମସ୍କାର କରି ସେହି ସ୍ଥାନରେ ବସିଲେ ।
ପାରିଷଦଗଣ ସଙ୍ଗେ କଥାବାର୍ତ୍ତା ହୋଇ
ମିଳିଲେ କ୍ଷଣକ ମଧ୍ୟେ ଗୋଲୋକରେ ଯାଇ ।
ଦେବତାମାନେ ସେକଥା ଦେଖି ତୋଷହେଲେ
ଯେ ଯାହାର ପୁରେ ଯାଇ ପ୍ରବେଶ ହୋଇଲେ ।
ଏହିରୂପେ ବୃନ୍ଦାବତୀ ଦେବୀଙ୍କ ଚରିତ
ମୁଁ ଛି ବାରୁ ତୁମ୍ଭ ଆଗେ କହିଲି ସମସ୍ତ ।
ଆଉ କେଉଁ କଥା ଶୁଣିବାକୁ ଇଚ୍ଛା ଥିଲେ
ପଚାର ଆମୂଳ କରି କହିବି ମୁଁ ଭଲେ ।
ଏମନ୍ତ ବୋଲି ଶ୍ରୀକୃଷ୍ଣ ହୋଇଲେ ମଉନ
ଗୀତରେ କ୍ଷେତ୍ରମୋହନ କରିଲି ରଚନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ କାର୍ତ୍ତିକ କେଦାରକନ୍ୟା ବୃତ୍ତାନ୍ତ କଥନେ ନାମ ଷଡ଼ଶୀତିତମୋଽଧ୍ୟାୟଃ ।



## ସପ୍ତାଶୀତିତମ ଅଧ୍ୟାୟ

### ଶ୍ରୀକୃଷ୍ଣଙ୍କ ନିକଟକୁ ସନତ୍କୁମାର ଆଦି ମୁନିମାନଙ୍କର ଆଗମନ

ପୁଣି ଶ୍ରୀକୃଷ୍ଣଙ୍କୁ ଗୁହିଁ ବ୍ରଜ ଅଧିପତି
ପଚାରିଲେ ପରକାଶ କରିଣ ବିନତି ।
ବୋଇଲେ ହେ ପ୍ରଭୁ ତୁମ୍ଭ ସ୍ୱରୂପକୁ କେହି
ଜାଣିବାକୁ ସମରଥ ହୋଇ ନ ପାରଇ ।
ବ୍ରହ୍ମା ଶିବଆଦି କରି ସକଳ ଦେବତା
କରୁଥାନ୍ତି ସବୁବେଳେ ତୁମ୍ଭ ନାମ ଚିନ୍ତା ।
କିଏ ତୁମ୍ଭେ ଅଟ ଏହା ଜାଣିବାକୁ ମୋର
କଉତୁକ ଜାତ ହେଉଅଛି ନିରନ୍ତର ।
ଯଥାର୍ଥ ରୂପରେ ତାହା ଶୁଣି ତୁମ୍ଭଠାରୁ
ସନ୍ତୁଷ୍ଟ ହୋଇବି ଜାଣ ଆନନ୍ଦ ଜ୍ଞାନରୁ ।
ଏହିରୂପେ ନନ୍ଦରାଜା କହିବାବେଳେ
ମୁନି ଋଷିମାନେ ଆସି ସେଠାରେ ମିଳିଲେ ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଉତ୍କଣ୍ଠିତ ହୋଇ
ଶିଷ୍ୟଗଣ ସହିତରେ ପ୍ରବେଶିଲେ ତହିଁ ।
ପୁଲସ୍ତ୍ୟ ପୁଲହ କ୍ରତୁ କଣ୍ୱ କାତ୍ୟାୟନ
ଅଙ୍ଗିରା ବଶିଷ୍ଠ ଭୃଗୁ ବୋଢ଼ୁ ସନାତନ
ପ୍ରଚେତା ପାଣିନି ଗଉତମ ପଞ୍ଚଶିଖ
କଣ୍ୱାଦ ଦୁର୍ବାସା ବିଶ୍ୱାମିତ୍ର ମୁନିମୁଖ୍ୟ ।
ସନକ ସନନ୍ଦ ବାଲ୍ମୀକି ପରାଶର
କଶ୍ୟପ କପିଳ ବକ୍ରାଦ୍ରୀକ ଋଷିବର ।
ଆସୁରି ମରୀଚି ଶୃଙ୍ଗୀ ଅତ୍ରି ବୃହସ୍ପତି
ବ୍ୟାସ ଗର୍ଗ ଜୈମିନି ଯାଜ୍ଞବାଲ୍କ୍ୟ ଯତି ।
ମିତବାଚ ବାଲ୍ମାୟନ ଋଷ୍ୟଶୃଙ୍ଗ ଶୁକ
ସୌଭରି ଶୁଦ୍ଧ ଜଟିଳ ପୈଳ ସୁଭଦ୍ରକ ।
ଭରଦ୍ୱାଜ ମାର୍କଣ୍ଡେୟ ଲୋମଶ ଭାର୍ଗବ
ଅଷ୍ଟାବକ୍ର ଶତାନନ୍ଦ ଋଷି ବାମଦେବ ।
ସମ୍ବର୍ତ୍ତ ଉତଥ୍ୟ ପରଶୁରାମ ମହାମତି
ଜାବାଲି ଅଗସ୍ତ୍ୟ ସୁଦାମନ୍ତ ସିଦ୍ଧପତି ।
ଗୌରମୁଖ ଉପମନ୍ୟୁ ଶ୍ରୁତଶ୍ରବା ମୁନି
ମୈତ୍ରେୟ ଚ୍ୟବନ ନର ନାରାୟଣ ବେନି ।
ଇତ୍ୟାଦି ଆଦି ସମସ୍ତ ମୁନିଗଣ ମିଳି
ଶ୍ରୀକୃଷ୍ଣଙ୍କ ପାଶେ ଉପସ୍ଥିତ ହେଲେ ଆସି ।
ତାଙ୍କୁ ଦେଖି ନନ୍ଦସୁତ ନମସ୍କାର କଲେ
ଉପଯୁକ୍ତ ଆସନରେ ବସାଇ ପୂଜିଲେ ।
ପାଦ୍ୟଅର୍ଘ୍ୟ ଦେଇ ନାନାକୁଶଳ ସମ୍ବାଦ
ପଚାରିଲେ ସେ କାଳରେ ହୋଇଣ ଆନନ୍ଦ ।
ନନ୍ଦ ସେମାନଙ୍କଠାରୁ ଅନୁମତି ପାଇ
ବସିଲେ ତାହାଙ୍କ ପାଶେ ଆସନ ପକାଇ ।
ସେହି ସମୟରେ ଶୂନ୍ୟେ ଦିବ୍ୟ ତେଜରାଶି
ମଧ୍ୟାହ୍ନ ଆଦିତ୍ୟ ପରି ଗଲା ବେଗେ ଦିଶି ।
ଦେଖିଣ ସମସ୍ତେ ସେହି ତେଜକୁ ଚାହିଁଲେ
ତା ମଧ୍ୟେ ର ଶିଶୁ ଏକ ଅଛନ୍ତି ଦେଖିଲେ ।
ତପନ୍ତ ସୁବର୍ଣ୍ଣ ସମ ତାହାଙ୍କର ତେଜ
ଦଶଦିଗ ଆଲୋକିତ କରୁଅଛି ଉଜ ।

ପଞ୍ଚବରଷ ବୟସ ନଗ୍ନ ଯେ ବାଳକ
ସୁନ୍ଦର ସଣ୍ଟରେ ଦିଶୁଅଛନ୍ତି ଅଧିକ ।
ଆକାଶମାର୍ଗରୁ ଖସି ମୁହୂର୍ତ୍ତ ମଧ୍ୟରେ
ଉପଗତ ହେଲେ ବେଗେ ଆସି ସେ ସଭାରେ
ତାହାଙ୍କୁ ଦେଖିଣ ସର୍ବେ ଆସନୁ ଉଠିଲେ
ଭକ୍ତିଭରେ କରଯୋଡ଼ି ନମସ୍କାର କଲେ ।
ସମସ୍ତଙ୍କୁ ଆଶୀର୍ବାଦ କରିଣ ସେଠାରେ
ସନତ୍କୁମାର ମୁନି ବସି ଆସନରେ ।
ମୁନିଙ୍କ ମୁଖକୁ ଚାହିଁ କହିଲେ ବଚନ
ବୋଇଲେ କୁଶଳେ ଅଛନ୍ତି କି ତପୀଗଣ ।
ପରମାତ୍ମା ସନାତନ ପ୍ରଭୁ ନନ୍ଦସୁତ
ତାଙ୍କର କୁଶଳ ପ୍ରଶ୍ନ ନୁହଇ ଉଚିତ ।
ସର୍ବବୀଜ ସର୍ବାଧାର ଯେ ମହାପୁରୁଷ
ମହୀମଣ୍ଡଳାର ଭାର କରିବାକୁ ନାଶ ।
ନରରୂପେ ମର୍ତ୍ତ୍ୟଲୋକେ ଜନମି ଅଛନ୍ତି
ଭାଗ୍ୟବଳେ ହେଲି ତାଙ୍କ ଦର୍ଶନ ପ୍ରାପତି ।
ଏରୂପେ ମୁନିଙ୍କଠାରୁ ଶୁଣି ଭଗବାନ
ବୋଇଲେ ହେ ଦ୍ୱିଜବର ଶୁଣ ମୋ ବଚନ ।
ମନୁଷ୍ୟ ଶରୀର ବହି ଥିବାଠାରୁ ମୁହିଁ
କୁଶଳ ପ୍ରଶ୍ନ ଉଚିତ ନୁହେଁ କାହିଁପାଇଁ ।
ସନତ୍କୁମାର ଶୁଣି ବୋଇଲେ ହେ ଦେବ
ପ୍ରାକୃତ ଦେହର ସିନା ଥାଏ ଶୁଭାଶୁଭ ।
ନିତ୍ୟଦେହରେ କୁଶଳ ପ୍ରଶ୍ନ ଅନର୍ଥକ
ଯେଣୁ ଅଟଇ ସେ ସର୍ବ ଶୁଭ ବିଧାୟକ ।
ଶ୍ରୀକୃଷ୍ଣ ବୋଇଲେ ପାଞ୍ଚ ଭୌତିକ ଶରୀର
ପ୍ରାକୃତିକ ଅଟେ ଆହେ ଦ୍ୱିଜଙ୍କର ବର ।
ନିତ୍ୟପ୍ରକୃତି ଯେ ସେହୁ ଶରୀର ବିହୀନ
ତାହାଙ୍କ ବିନା ସମସ୍ତ ପ୍ରାକୃତିକ ଜାଣ ।
ଏମନ୍ତ ବଚନ ଶୁଣି ସନତ୍କୁମାର
ବୋଇଲେ ଆହେ ପରମ ପୁରୁଷ ଈଶ୍ୱର ।
ରକତବିନ୍ଦୁରୁ ଜାତ ଅଟେ ଯେଉଁ କାୟ
ସେ କେବଳ ପ୍ରାକୃତିକ ସୁଖ ଦୁଃଖମୟ ।
ଆପଣ ପ୍ରକୃତି ବୀଜ ଅନାଦି ପୁରୁଷ
ନିରାକାର ଜ୍ୟୋତିର୍ମୟ ସ୍ୱଜଗତ ଈଶ ।
ସେ ସକାଶୁ ଆପଣଙ୍କୁ ପ୍ରାକୃତ ରୂପରେ
କେହିହେଲେ ନିରୂପଣ ନ କରିବ ବାରେ ।

ଶ୍ରୀକୃଷ୍ଣ ବୋଇଲେ ମୁହିଁ ବସୁଦେବ ସୁତ
ଦେବ ଗର୍ଭରୁ ହୋଇ ଅଛଇ ସମ୍ଭୂତ
ତେବେ ପ୍ରାକୃତ ବୋଲିଣ କାହିଁପାଇଁ ମୋତେ
ନ ବୋଲିବ କହ ଆହେ ବିପ୍ର ମହାମତେ ।
ସନତ୍କୁମାର ବୋଇଲେ ବସୁଦେବଠାରୁ
ଜାତ ହୋଇଅଛ ତୁମ୍ଭେ ଆହେ ଲୋକଗୁରୁ ।
ସେ ସକାଶୁ ବାସୁଦେବ ବୋଲାଅ ଜଗତେ
କିନ୍ତୁ ତହିଁର ରହସ୍ୟ ଶୁଣ ଏକଚିତ୍ତେ ।
ବାସୁ ଶବ୍ଦର ଅର୍ଥ ସକଳ ନିବାସ
ତେମନ୍ତ ରୂପରେ ଯେଉଁ ଦେବ ପରକାଶ ।
ବାସୁଦେବ ବୋଲି ତାଙ୍କ ନାମଟି ଅଟଇ
ବେଦଶାସ୍ତ୍ରରେ ନିଶ୍ଚିତ ଅଛି ଏହା ହୋଇ ।
ବାସୁଦେବ ବୋଲିକରି ଯେ ତୁମ୍ଭର ନାମ
ସକଳ ପ୍ରକାରେ ହୋଇଅଛି ଏ ଉତ୍ତମ ।
ରକ୍ତବୀର୍ଯ୍ୟାଶ୍ରିତ ଦେହ ତୁମ୍ଭର ତ କାହିଁ
କେବଣ ପ୍ରକାରେ ନିରୂପିତ ହେଉନାହିଁ ।
ସାକ୍ଷୀ ଅଟନ୍ତି ଏଥିରେ ମୁନି ଋଷିଗଣ
ଆବର ଧର୍ମଦେବତା ଚନ୍ଦ୍ର ବିବସ୍ୱାନ ।
ଏ ସମୟେ ଭୃଗୁମୁନି କହିଲେ ବଚନ
ବୋଇଲେ ଶୁଣିବା ହେଉ ହେ ଦ୍ୱିଜ ନନ୍ଦନ
ଆପଣ ବୈଷ୍ଣବଙ୍କର ଅଗ୍ରଣୀ ଅଟନ୍ତି
ଯଥାର୍ଥ ସତ୍ୟ ଅଟଇ ଯାହା କହୁଛନ୍ତି ।
ହୋଇଅଛି ଟିକି ସବୁ କୁଶଳ ତୁମ୍ଭର
ସନ୍ତୁଷ୍ଟ କରାଅ କହି ମାନସ ଆମ୍ଭର ।
କେଉଁ କାର୍ଯ୍ୟରେ ଏଠାକୁ କଲ ଆଗମନ
କହ ତାହା ଶୁଣିବାକୁ ହେଉଅଛି ମନ ।
ଏମନ୍ତ ଶୁଣିଣ ସନତ୍କୁମାର ମହର୍ଷି
ବୋଇଲେ ଯେଉଁ କାର୍ଯ୍ୟରେ ଅଛି ମୁହିଁ ଆସି
ଯଥାର୍ଥ ରୂପରେ ଏବେ କହୁଅଛି ଶୁଣ
ସାବଧାନ ହୋଇ ଆହେ ମୁନିଋଷିଗଣ ।
ଶ୍ରୀକୃଷ୍ଣ ବୋଇଲେ ଦ୍ୱିଜବର ମହାମତି
ଆପଣ ସକଳ ଧର୍ମ ତତ୍ତ୍ୱଜ୍ଞ ଅଟନ୍ତି ।
ଆପଣଙ୍କ କଥା ସବୁ ଜଣାଅଛି ମୋତେ
ଆସିବା କାରଣ କହ ଦୟାକରି ଚିତ୍ତେ ।
ସନତ୍କୁମାର ବୋଇଲେ ପ୍ରଭୁ ଭଗବାନ
ଜଗତ ମଧ୍ୟରେ ଧନ୍ୟ ଅଟନ୍ତି ଆପଣ ।

ସର୍ବେଶ୍ୱର ସର୍ବମୟ ନିତ୍ୟ ନିରାକାର
ଅବିଦିତ ହୋଇ କିଛି ନାହିଁ ଯେ ତୁମ୍ଭର ।
ଶ୍ରୀକୃଷ୍ଣ ବୋଇଲେ ସତ୍ୟ କହୁଅଛ ତୁମ୍ଭେ
ସକଳ କର୍ମର ଫଳ ଦାତା ଅଟୁ ଆମ୍ଭେ ।
ସମସ୍ତ ବିଶ୍ୱ ହୋଇଛି ଆମ୍ଭଠାରୁ ଜାତ
ଆମ୍ଭେହିଁ ପାଳନା କରୁଅଛୁ ଏ ଜଗତ ।
ଶ୍ରୀକୃଷ୍ଣଙ୍କ ମୁଖୁ ଏହା ଶୁଣି ଋଷିଗଣ
ବିସ୍ମିତ ହୋଇ ସମସ୍ତେ ଉଠି ତତକ୍ଷଣ ।
ସନତ୍କୁମାରଙ୍କ ପାଶେ ବେଢିଣ ବସିଲେ
ବିନୟ ପ୍ରକାଶ କରି ବଚନ ଭାଷିଲେ ।
ବୋଇଲେ ହେ ଦ୍ୱିଜକୁଳ-ମସ୍ତକ-ମଣ୍ଡନ
ସାକ୍ଷାତରେ ବ୍ରହ୍ମମୟ ଅଟନ୍ତି ଆପଣ ।
ଶ୍ରୀକୃଷ୍ଣଙ୍କ ଆଗେ ଯେଉଁ ଅପୂର୍ବ ସଙ୍କେତ
କହିବେ ତା ଶୁଣି ଆମ୍ଭେ ହୋଇବୁ କୃତାର୍ଥ ।
କେବଣ ସ୍ଥାନରେ କିବା ଆଶ୍ଚର୍ଯ୍ୟ ବିଷୟ
ଶୁଣିଅଛ ଦୟା କରି କହ ମହାଶୟ ।
ଏହିରୂପେ ମୁନିଗଣ ପଚାରିବା ବେଳେ
ଈଶ୍ୱର ପାର୍ବତୀ ଆସି ସେଠାରେ ମିଳିଲେ ।
ଆଉରି ବ୍ରହ୍ମା ଅନନ୍ତ ସୂର୍ଯ୍ୟ ନିଶାକର
ବାସବ ବସୁ ସହିତେ ସକଳ ଅମର ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ସତ୍ୱରେ ଆସିଲେ
ମୁନି ଋଷିଙ୍କ ମଧ୍ୟରେ ଉପସ୍ଥିତ ହେଲେ ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ଭକ୍ତି ସହିତରେ
ନାନା ଉପଚାର ଦେଇ ପୂଜିଲେ ସତ୍ୱରେ ।
ବ୍ରହ୍ମା ଶିବ ଶେଷଦେବ ପାର୍ବତୀଙ୍କୁ ଦେଖି
ପ୍ରଣାମ କଲେ ମୁନିଏ ହୋଇ ମହାସୁଖୀ ।
ସେ ଅନ୍ତରେ ପୁଣି ସବୁ ଦେବଙ୍କୁ ନମିଲେ
ସୁଖେ ବସି ପରସ୍ପରେ କଥାବାର୍ତ୍ତା ହେଲେ ।
ଏଥିଅନ୍ତେ ମହାମତି ସନତକୁମାର
ବୋଇଲେ ଶୁଣିମା ହେଉ ବଚନ ମୋହର ।
ପ୍ରଥମରେ ଗୋଲୋକକୁ ଯାଇଥିଲି ମୁହିଁ
ଶ୍ରୀକୃଷ୍ଣଙ୍କୁ ସେ ସ୍ଥାନରେ ନ ଦେଖିଲି କାହିଁ ।
ସେ ଅନ୍ତରେ ପୁଣି ବଇକୁଣ୍ଠପୁରେ ଗଲି
ଚତୁର୍ଭୁଜ ବିଷ୍ଣୁଙ୍କୁ ସେଠାରେ ନ ଦେଖିଲି ।
ସେଠାରୁ ଯାଇଣ କ୍ଷୀର ସମୁଦ୍ରେ ମିଳିଲି
ଶ୍ରୀହରିଙ୍କୁ ମଧ୍ୟ ତହିଁ ଦେଖି ନ ପାରିଲି ।
ସେଥିମଧ୍ୟରେ ଅତ୍ୟନ୍ତ ମ୍ଳାନ ହୋଇକରି
କ୍ଷୀର ସମୁଦ୍ରରେ ଧ୍ୟାନ ସନ୍ଧ୍ୟା ଆଦି ସାରି ।
ଆସିବାବେଳେ ବିସ୍ତୀର୍ଣ୍ଣ ବାଲୁକା ମଧ୍ୟରେ
ଦେଖିଲି କଚ୍ଛପ ରହି ଅଛନ୍ତି ସେଠାରେ ।
ଭୟ ସକାଶରୁ ତାହାଙ୍କର ଅଙ୍ଗସାକ
କମ୍ପୁଅଛି ପୁନଃପୁନ ହୋଇ ଠକ ଠକ ।
ଗାଲବ ନାମରେ ଏକ ମତ୍ସ୍ୟ ତାଙ୍କୁ ବଳେ
ପେଲି ନ ପେଲି ଫିଙ୍ଗି ଦେଇଅଛି ନେଇ କୂଳେ
ତାଙ୍କୁ ଦେଖି ବୋଇଲି ମୁଁ ଅଟ ତୁମ୍ଭେ ଧନ୍ୟ
ସେ ବୋଇଲେ ନୁହଇ ମୁଁ ଆହେ ତପୋଧନ
ସବୁଠାରୁ ଧନ୍ୟ ଅଟେ କ୍ଷୀରୋଦ ସାଗର
ଯହିଁରେ ଅଛନ୍ତି ମୋର ତୁଲ୍ୟ ଜଳଚର ।
ଆଉରି ମୋଠାରୁ ବଡ଼ ରହିଛନ୍ତି କେତେ
କହି ନ ପାରିବ କେହି ବୋଲି ଏତେ ତେତେ
ସପତ ସମୁଦ୍ର ବହିଅଛି ଯେଉଁ କ୍ଷିତି
ମୋହର ବିଚାରେ ସେହୁ ଧନ୍ୟ ଅଟେ ଅତି ।
କୃଷ୍ଣ ଅଂଶରେ ଉତ୍ପନ୍ନ ନାଗ ଅଧୀଶ୍ୱର
ଯେ ହୋଇଅଛନ୍ତି ପୁଣି ମୋହର ଆଧାର ।
ସେହି ଶେଷଦେବ ମଧ୍ୟ ହୋଇଛନ୍ତି ଧନ୍ୟ
କଦାପି ନୁହଇ ମୁହିଁ ତାଙ୍କର ସମାନ ।
ଆଉରି ଧନ୍ୟ ଅଟନ୍ତି ପବନ ଦେବତା
ଯେ ହୋଇଛନ୍ତି ସବୁର ଜୀବନ କରତା ।
ଧନ୍ୟ ଅଟନ୍ତି ଯେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
କରୁଅଛନ୍ତି ଯେ ସୃଷ୍ଟି ପାଳନ ସଂହାର ।
ସବୁ ଦେବଙ୍କ ଆଗରେ ପୂଜା ସେ ପାଆନ୍ତି
ଧନ୍ୟ ସେହି ଜ୍ଞାନଗୁରୁ ପ୍ରଭୁ ଗଣପତି ।
ନଦୀମାନଙ୍କରେ ଗଙ୍ଗା ତୀର୍ଥରେ ପୁଷ୍କର
ନଗର ମଧ୍ୟରେ କାଶୀ ଦେବେ ଗଣେଶ୍ୱର ।
ଅଧିକ ଅଟନ୍ତି ଏହା ଶ୍ରୁତିଶାସ୍ତ୍ର ସିଦ୍ଧ
ଗଣେଶ ତୁଲ୍ୟ ନୁହନ୍ତି କେବଣ ବିବୁଧ ।
ବେଦ ପ୍ରଣିହିତ ଅଟେ ଧର୍ମ ଏ ଜଗତେ
ନାରାୟଣ ଅଂଶ ଜାତ ବେଦହିଁ ସାକ୍ଷାତେ ।
ବେଦଯୋଗରେ ସକଳ ଶାସ୍ତ୍ର ଉତପନ୍ନ
ହୋଇଅଛି ଜାଣ ଆହେ ଦ୍ୱିଜକୁଳ-ଗଣ ।
ଏ ସକାଶୁ ତୁମ୍ଭେ ଏବେ ବେଦ ଅନୁସରି
କାର୍ଯ୍ୟ କର ଅନ୍ୟ ସବୁ କଥାକୁ ପାସୋରି ।

ତାହା ଶୁଣି ମୁଁ ବୋଇଲି ଆହେ ଦେବଗଣ
ତୁମ୍ଭେମାନେ ଜଗତରେ ଧନ୍ୟ ଅଛ ଜାଣ ।
ସେମାନେ ବୋଇଲେ ଆମ୍ଭେ ବ୍ୟବସ୍ଥାକରତା
ଧନ୍ୟ ଅଟେ ଯଜ୍ଞଯାଗ ସର୍ବ-ଫଳଦାତା ।
ତା ଶୁଣି ବୋଇଲି ମୁହିଁ ଆହେ ଯଜ୍ଞ ତୁମ୍ଭେ
ଧନ୍ୟ ଅଛ ତୁମ୍ଭ ତୁଲ୍ୟ ନୋହୁ କେହି ଆମ୍ଭେ ।
ଯଜ୍ଞ ବୋଇଲେ ହେ ଦ୍ୱିଜବର ଆମ୍ଭେମାନେ
ଧନ୍ୟ ହୋଇଅଛୁ ବୋଲି ନ ବିଚାର ମନେ
ଶୁଭକର୍ମରେ ଉତ୍ପତ୍ତି ହେବାରୁ ଆମ୍ଭର
ସେ କେବଳ ଧନ୍ୟ ଅଟେ ବୋଲି ମନେକର
ଶୁଭ କର୍ମକୁ ସ୍ମରି ବୋଇଲି ମୁଁ ତହିଁ
ଆହେ କର୍ମ ତୁମ୍ଭ ତୁଲ୍ୟ ଜଗତେ କେ ନାହିଁ ।
କର୍ମ ବୋଇଲେ ଆମ୍ଭର ଅଛୁ କି ଆୟତ୍ତ
ଫଳଦାତା ଅଟନ୍ତି ସେ ପ୍ରଭୁ ଜଗନ୍ନାଥ ।
ସକଳ ଲୋକର ହର୍ତ୍ତା କରତା ଟି ସେହି
ତାହାଙ୍କଠାରୁ ଅଧିକ ନୋହିପାରେ କେହି ।
ଶ୍ରୀକୃଷ୍ଣ ପରମ ଆତ୍ମା ଦେବ ଜନାର୍ଦ୍ଦନ
କରୁଅଛନ୍ତି ସକଳ ଲୋକର କଲ୍ୟାଣ ।
ତାହା ଶୁଣି ସେଠାରୁ ମୁଁ ବେଗହୋଇ ଗଲି
ଧର୍ମଦେବଙ୍କ ମନ୍ଦିରେ ପ୍ରବେଶ ହୋଇଲି ।
ସେଠାରେ ଜଗଦୀଶ୍ୱର ପ୍ରଭୁଙ୍କୁ ନ ଦେଖି ।
ମଥୁରାକୁ ଆସିଅଛୁ ହୋଇ ମନେ ସୁଖୀ ।
ଏ ପୁଣ୍ୟ ସ୍ଥାନରେ ପ୍ରଭୁଙ୍କର ନିଜ ରୂପ
ଦରଶନ କରି ଦୂର ହୋଇଲା ସନ୍ତାପ ।
ସେ ସକାଶୁ ବୋଲୁଅଛୁ ପରମ ପୁରୁଷ
ଅଟନ୍ତି ସାକ୍ଷାତେ ଦେବ ବସୁଦେବ ଶିଷ୍ୟ ।
ସକଳ ଯଜ୍ଞରେ ଫଳଦାତା ଏ ଅଟନ୍ତି
ଏହାଙ୍କ ଦର୍ଶନେ ଲଭ ହୁଅଇ ମୁକତି ।
ଏହିରୂପେ ଦ୍ୱିଜଙ୍କର ବଚନକୁ ଶୁଣି
ବିସ୍ମିତ ହୋଇଲେ ସର୍ବ ଦେବଋଷି ମୁନି ।
ତାହାଙ୍କ ପାଶରେ ନନ୍ଦରଜା ବସିଥିଲେ
ଶ୍ରୀକୃଷ୍ଣଙ୍କୁ ପରଂବ୍ରହ୍ମ ବୋଲିଣ ଜାଣିଲେ ।
ଆଶ୍ଚର୍ଯ୍ୟ ହୋଇଣ ପୁତ୍ରଭାବ ତ୍ୟାଗକରି
ରୋଦନ କଲେ ପ୍ରାକୃତ ବାଳକଙ୍କ ପରି ।

କ୍ଷଣକ ଅନ୍ତରେ ପୁଣି ଚେତନା ହରାଇ
ପଡ଼ିଲେ ମହୀ ଉପରେ ଅସ୍ତବ୍ୟସ୍ତ ହୋଇ ।
ତା ଦେଖି ପାର୍ବତୀ ଦେବୀ ଦୟାବନ୍ତ ମନେ
ଆଶ୍ୱାସନା କଲେ ତାଙ୍କୁ ଅତ୍ୟନ୍ତ ଯତନେ ।
ପୁଣି ଚେତାପାଇ ନନ୍ଦ ବୋଇଲେ ଗୋ ଦେବୀ
ମୁଁ ଯେ ନ ପାରିଲି ଭଲମନ୍ଦ କଥା ଭାବି ।
ବହୁତ କାଳ ଶ୍ରୀହରି ରହିଲେ ମୋ ଘରେ
ସେବାକରି ନ ପାରିଲି କଞ୍ଚିତ ମାତରେ ।
ମୂରୁଖ ପଣରେ ଧନ୍ଦା ହୋଇଲି ବଞ୍ଚିତ
ଏବେ ଅନୁତାପ କରୁଅଛି ମୋର ଚିତ୍ତ ।
ବିଷୟ ମୋହରେ ପଡ଼ି ନ ଚିହ୍ନି ପ୍ରଭୁଙ୍କୁ
ବୃଥା ନଷ୍ଟକଲି ବହୁମୂଲ୍ୟ ସମୟକୁ ।
ମୃତ୍ତିକା କୁମ୍ଭର ବାଳି ରନ୍ଧ୍ର ରୁନ୍ଧିବାକୁ
ଚୂର୍ଣ୍ଣ କଲି ମୁଁ ଦକ୍ଷିଣ ଆବର୍ତ୍ତ ଶଙ୍ଖକୁ ।
ଚରାଚର ବ୍ରହ୍ମାଣ୍ଡର ଅଟନ୍ତି ଯେ ତାତ
ଅଜ୍ଞାନରେ ତାଙ୍କୁ ଭାବିଥିଲି ମୋର ସୁତ ।
ଯାର ଆଜ୍ଞାବଳେ ସର୍ବ ହୁଅଇ ସଂହାର
ତାର ଦେହେ ବସାଇଲି ମୁଁ ଯଷ୍ଟି ପ୍ରହାର ।
କୋଟିଏ ବ୍ରହ୍ମାଣ୍ଡ ବନ୍ଧା ଯାର ଲୋମମୂଳେ
ମୁଁ ମୂଢ଼ ବାନ୍ଧିଲି ତାଙ୍କୁ ଧରି ବୃକ୍ଷତଳେ ।
ଆହେ ପ୍ରଭୁ ମୋର ଅପରାଧ କ୍ଷମାକର
ଆପଣ ଜଗତ କର୍ତ୍ତା ପ୍ରକୃତିରୁ ପର ।
ଏଠାରୁ ବାହୁଡ଼ି ମୁହିଁ ଗୋକୁଳକୁ ଆଉ
ନ ଯିବି ମୋଠାରେ ଦୟାକର ମହାବାହୁ ।
ଯିବି ଯେବେ ଯଶୋଦାଙ୍କୁ କି ବୋଲି କହିବି
ରାଧାଙ୍କୁ କଅବା କହି ସାନ୍ତ୍ୱନା କରିବି ।
ଗୋପାଳ ଶିଶୁଙ୍କ ଆଗେ କହିବଇଁ କିସ
ବୁଦ୍ଧି ଦିଶୁନାହିଁ ମୋତେ ଆହେ ଦେବଈଶ ।
ଏମନ୍ତ ବୋଲିଣ ନନ୍ଦ ପୁଣି ଜ୍ଞାନହାରି
ପଡ଼ିଲେ ସଭା ମଧ୍ୟରେ ଛିନ୍ନଦ୍ରୁମ ପରି ।
ତାହା ଦେଖି ପ୍ରଭୁ ତାଙ୍କୁ କୋଳରେ ବସାଇ
ପ୍ରବୋଧନା କଲେ ନାନା ତତ୍ତ୍ୱମାନ କହି ।
ଏହିଠାରେ ସମାଗମ ମୁନିମାନଙ୍କର
ଭଣିଲେ ଉତ୍କଳଗୀତେ ଘନ କ୍ଷେତ୍ରଙ୍କର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ନିକଟକୁ ସନତ୍କୁମାର ଆଦି ମୁନିମାନଙ୍କର ଆଗମନ କଥନେ ନାମ ସପ୍ତାଶୀତିତମୋଽଧ୍ୟାୟଃ ।

# ଅଷ୍ଟାଶୀତତମ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ ଦ୍ୱାରା ଭଗବତୀ ସ୍ତୋତ୍ର ସ୍ୱରୂପ ବର୍ଣ୍ଣନ

ଶ୍ରୀକୃଷ୍ଣ ବୋଇଲେ ତାତ ମୋହ ତ୍ୟାଗ କରି
ସାବଧାନ ହୋଇ ଶୁଣ ବଚନ ମୋହର ।
ଜଳବୁଦ୍‌ବୁଦ ସମାନ ଅଟଇ ସଂସାର
ମାୟାରେ ମୋହିତ ହୋଇଅଛି ଚରାଚର ।
ସେ ସକାଶୁ ତୁମ୍ଭେ ଏବେ ସ୍ଥିରକରି ମତି
ଯୋଗ ମାୟାଙ୍କୁ ଭକ୍ତିରେ କର ବସି ସ୍ତୁତି ।
ସେ ଦେବୀ ଅଟନ୍ତି ସର୍ବ ମୋହ ବିନାଶିନୀ
ବ୍ରହ୍ମମୟୀ ଭକ୍ତି ମୁକ୍ତି ସମ୍ପଦଦାୟିନୀ ।
ତ୍ରିପୁର ବଧ ସମୟେ ଦେବ ତ୍ରିଲୋଚନ
କରିଥିଲେ ଯେଉଁ ମହାସ୍ତୋତ୍ରକୁ ପଠନ ।
ସେହି ସ୍ତୋତ୍ର ଏବେ ମୁହିଁ କହୁଛି ତୁମ୍ଭଙ୍କୁ
ଶୁଣ ସାବଧାନ ହୋଇ ଦେଇଣ ମନକୁ ।
ନନ୍ଦ ବୋଇଲେ ସକଳ ବିଘ୍ନ ବିନାଶନ
ଅଟେ ଯେଉଁ ସ୍ତୋତ୍ର ତାହା କହ ଭଗବାନ ।
ଶ୍ରୀକୃଷ୍ଣ ବୋଇଲେ ପୂର୍ବେ ବ୍ରହ୍ମାଙ୍କ ବଚନେ
ଶଙ୍କର ଏହାକୁ ପାଠକଲେ ରଣସ୍ଥାନେ ।
ଯେ ସକାଶୁ ଶତ୍ରୁକୁଳ ବିନାଶନ କରି
ବିଜୟୀ ହୋଇଲେ ସଦାଶିବ ତ୍ରିପୁରାରି ।
ସ୍ନାନକରି ଧୌତବାସ ପରିଧାନ କଲେ
ଶୁଚିମନ୍ତ ହୋଇ ବ୍ରହ୍ମରୂପ ସୁମରିଲେ ।
ସେ ଅନ୍ତେ ଦେବୀଙ୍କ ସ୍ତୋତ୍ର ଏକାଗ୍ର ମନରେ
ପାରାୟଣ କଲେ ବସି ଭକ୍ତି ସହକାରେ ।
ବୋଇଲେ ଗୋ ଦୁର୍ଗାଦେବୀ ଦୁର୍ଗତି ନାଶିନୀ
ତୁମ୍ଭେ ଅଟ ତ୍ରିଜଗତ ଲୋକଙ୍କ ଜନନୀ ।
ବ୍ରହ୍ମରୂପ ନିତ୍ୟାନନ୍ଦ ରୂପା ଅଟ ତୁମ୍ଭେ
ତୁମ୍ଭର ମହିମା କହି ପାରିବୁ କି ଆମ୍ଭେ ।
ସାକାର ଯେ ନିରାକାର ନିର୍ଗୁଣ ସଗୁଣ
ତୁମ୍ଭର ସ୍ୱରୂପ ଦେବୀ ହୋଇଅଛି ପୁଣ ।
ମାୟାରେ ପ୍ରକୃତି ରୂପେ ପ୍ରକାଶିତ ହୋଇ
ପୁରୁଷ ସ୍ୱରୂପ ମଧ୍ୟ ହୁଅ ମହାମାୟି ।
ସକଳ ଦେବ ଜନନୀ ସାବିତ୍ରୀ ରୂପରେ
ରହିଅଛ ସର୍ବବେଳେ ବ୍ରହ୍ମାଙ୍କ ପାଶରେ ।

ଅଶେଷ ସମ୍ପଦ ଦାତ୍ରୀ ମହାଲକ୍ଷ୍ମୀ ରୂପେ
ବୈକୁଣ୍ଠ ଭବନରେ ରହିଅଛ ଆପେ ।
କ୍ଷୀର ସମୁଦ୍ରରେ ଶେଷଶାୟୀ ବିଷ୍ଣୁଙ୍କର
କାମିନୀ ସ୍ୱରୂପେ ରହିଅଛ ନିରନ୍ତର ।
ସ୍ୱର୍ଗପୁରେ ସ୍ୱର୍ଗଲକ୍ଷ୍ମୀ ଅଟ ତୁମ୍ଭେ ଦେବୀ
ବନ୍ଦି ବୋଲୁଅଛି ଇନ୍ଦ୍ର ତୁମ୍ଭ ପାଦ ସେବି ।
ରାଜଗୃହେ ପୁଣି ରାଜଲକ୍ଷ୍ମୀ ସ୍ୱରୂପରେ
ରହିଅଛ ଦେବୀ ତୁମ୍ଭେ ତିନି ଭୁବନରେ ।
ଗୃହସ୍ଥ ଲୋକର ଗୃହେ ଦେବତା ବୋଲାଅ
ବିଷ୍ଣୁଙ୍କ ପାଶରେ ସରସ୍ୱତୀ ରୂପେ ଥାଅ ।
ଗୋଲୋକେ ରାଧିକା ଦେବୀ କୃଷ୍ଣ ପ୍ରାଣପ୍ରିୟା
ଅଟ ତୁମ୍ଭେ ଯୋଗେଶ୍ୱରୀ ଦେବୀ ମହାମାୟା ।
ରାସ ମଣ୍ଡଳରେ ରାସେଶ୍ୱରୀ ନାମ ହେନି
ରହିଅଛ ଦେବୀ ବୃନ୍ଦାବନ ବିନୋଦିନୀ ।
ଶତଶୃଙ୍ଗେ ଚନ୍ଦ୍ରାବଳୀ ନାମ ପରକାଶି
ବିରାଜ କରିଅଛ ଶ୍ରୀକୃଷ୍ଣଙ୍କ ମନ ତୋଷି ।
ଦକ୍ଷସୁତା ଦେବମାତା ସ୍ୱାହା ସ୍ୱଧା ସତୀ
ପୃଥିବୀ ତୁଳସୀ ଗଙ୍ଗା ଶୈଳଜା ଅଦିତି ।
ଏମାନେ ତୁମ୍ଭ ଅଂଶରେ ହୋଇଛନ୍ତି ଜାତ
ସକଳ ଜୀବର ତୁମ୍ଭେ ଅଟ ଆଦିମାତ ।
ଶକ୍ତି ସ୍ୱରୂପିଣୀ ସର୍ବ ସମ୍ପଦ ଦାୟିନୀ
ନମସ୍ତେ ଜଗତକର୍ତ୍ତ୍ରୀ ନିତ୍ୟ ସନାତନୀ ।
ସହସ୍ର ମୁଖରେ ଶେଷଦେବ ତୁମ୍ଭ ସ୍ତୁତି
କରିବାକୁ ସମରଥ ହୋଇ ନ ପାରନ୍ତି ।
ଆବର ଗଣେଶ ସ୍କନ୍ଦ ଆଦିକରି ଯେତେ
ଜାଣି ନ ପାରନ୍ତି ତୁମ୍ଭ ମହିମା କିଅତେ ।
ହେ ଦେବ କରୁଣାମୟି ଦୟାକରି ମନେ
ମୋହର ଶତ୍ରୁ ବିନାଶକର ରଣସ୍ଥାନେ ।
ଏହିରୂପେ ସ୍ତୁତିକରି ଦେବ ତ୍ରିଲୋଚନ
ରଥ ଉପରେ ବସିଲେ ହୋଇଣ ମଉନ ।
ତାହା ଜାଣି ଭଗବତୀ ସେଠାକୁ ଆସିଲେ
ଶିବଙ୍କ ଆଗରେ ନିଜେ ପ୍ରକାଶିତ ହେଲେ ।

ସେ ଅନ୍ତେ ବୋଇଲେ ଆହେ କୈଳାସଈଶ୍ୱର
ପ୍ରସନ୍ନ ହୋଇଲ ମୁହିଁ ମାଗି ଯେନ ବର ।
ଦେବଙ୍କ ମଧ୍ୟରେ ଶ୍ରେଷ୍ଠ ଅଟ ଦେବ ତୁମ୍ଭେ
ତୁମ୍ଭଙ୍କୁ ଅଧିକ ଆଉ କହିବୁ କି ଆମ୍ଭେ ।
ଶଙ୍କର ବୋଇଲେ ଦେବୀ ତୁମ୍ଭ ପ୍ରସାଦରେ
ମୋହର ଶତ୍ରୁ ବିନାଶ ହେଉ ଏ ସମରେ ।
ଭଗବତୀ ବୋଇଲେ ହେ ଜଗତ ପାବନ
ଶ୍ରୀହରିଙ୍କୁ ସୁମରଣା କର ଦେଇ ମନ ।
ଏହି ସମୟରେ ବିଷ୍ଣୁ ବୃଷରୂପ ହୋଇ
ପ୍ରବେଶ ହୋଇଲେ ଶିବଙ୍କର ପାଶେ ଯାଇ ।
ମସ୍ତକରେ ତାହାଙ୍କର ରଥକୁ ଧରିଲେ
ପର୍ବତ ପର୍ଯ୍ୟନ୍ତେ ଗତି କରିଣ ଧାଇଁଲେ ।
ତାହା ଜାଣି ମହାଦେବ ଦିବ୍ୟ ଶସ୍ତ୍ର ଧରି
ମନେ ମନେ ଶ୍ରୀହରିଙ୍କୁ ସୁମରଣା କରି ।
ପ୍ରହାର କରିଣ ତାହା ତ୍ରିପୁର ଦୈତ୍ୟଙ୍କୁ
ବିନାଶିଲେ ଦେଖାଇଣ ନିଜ ପ୍ରଭାବକୁ ।
ତାହା ଦେଖି ଦେବଗଣ ଶିବଙ୍କର ଶିରେ
ପୁଷ୍ପ ବରଷଣ କଲେ ମହାଆନନ୍ଦରେ ।
ସନ୍ତୋଷରେ ଦୁର୍ଗାଦେବୀ ଦେଲେ ମହାଶୂଳ
ଯହିଁରେ ରଣେ ନିପାତ ହେବେ ଶତ୍ରୁକୁଳ ।
ପିନାକ ଧନୁ ଦେଇଣ ପ୍ରଭୁ ନରହରି
କହିଲେ ବହୁତ ତାଙ୍କୁ ପରଶଂସା କରି ।
ମୁନିଋଷିଙ୍କ ସହିତେ ବ୍ରହ୍ମା ପ୍ରଜାପତି
ଶୁଭ ଆଶୀର୍ବାଦ କଲେ ହୋଇ ତୋଷମତି ।
ଅପସରାଗଣ ଆସି ନୃତ୍ୟ ଆରମ୍ଭିଲେ
ଗନ୍ଧର୍ବ କିନ୍ନରଗଣ ଗୀତ ଗାନକଲେ ।
ଏହିରୂପେ ଦେବୀଙ୍କର ସ୍ତବପାଠ କରି
ବିଜୟ ଲଭିଲେ ଦେବ ତ୍ରିପୁର ଅରି ।
ଏ ମହା ସ୍ତୋତ୍ର ଅଟଇ ସର୍ବବିଘ୍ନ ହର
ଭୁକ୍ତି ମୁକ୍ତି ପ୍ରଦାୟକ ଶୁଭଦ ଆବର ।
ଭକତିଭରେ ଏହାକୁ ପଠନ ଯେ କରେ
ସକଳ ପାପରୁ ମୁକ୍ତ ହୁଏ ନିଶ୍ଚୟରେ ।
କାମକ୍ରୋଧ ଲୋଭ ମୋହ ଆଦି ଶତ୍ରୁଗଣ
ତାଙ୍କୁ କେବେ କରି ନ ପାରନ୍ତି ଆକ୍ରମଣ ।
ରୋଗୀ ଯେବେ ପ୍ରତିଦିନ ପାରାୟଣ କରି
ମହାମାୟାଙ୍କର ପାଦପଦ୍ମକୁ ସୁମରି ।
ଅଚିରେ ରୋଗ ମୁକତ ହୁଅଇ ସେ ଜାଣ
ପ୍ରସନ୍ନ ହୁଅନ୍ତି ତାହାଠାରେ ଦେବଗଣ ।
ଦସ୍ୟୁଗ୍ରସ୍ତ ହୋଇଥାଏ ଯେ ଘୋର ବନରେ
ସେ ଯେବେ ଏ ମହାସ୍ତୋତ୍ର ପଢ଼େ ଯତନରେ
ସ୍ୱଇଚ୍ଛାରେ ଦସ୍ୟୁମାନେ ଛାଡ଼ି ପଳାବନ୍ତି
ତାହାର ପାଶରେ କ୍ଷଣେ ରହି ନ ପାରନ୍ତି ।
ସକଳ କଲୁଷହାରୀ ଅଟଇ ଏ ସ୍ତୋତ୍ର
ଏହାକୁ ପଢ଼ିଲେ ଲୋକ ହୁଅଇ ପବିତ୍ର ।
ସ୍ତୋତ୍ରମାନଙ୍କରେ ଏହା ପରମ ଉତ୍କୃଷ୍ଟ
ଏହାଠାରୁ ଆଉ କେଉଁ ସ୍ତୋତ୍ର ନୁହେଁ ଶ୍ରେଷ୍ଠ ।
ଯେ ସକାଶୁ ତୁମ୍ଭେ ଏହି ସ୍ତୋତ୍ର ପ୍ରତିଦିନ
ପଢ଼ିଲେ କରିବ ଅନ୍ତେ ଗୋଲୋକେ ଗମନ ।
ପରମ ଈଶ୍ୱରୀ ଦେବୀ ପର୍ବତ ନନ୍ଦିନୀ
ତାଙ୍କଠାରେ ମନଯୋଗ କର ନୋହି ଭିନ୍ନ ।
ଆହେ ତାତ ତୁମ୍ଭେ ମୋର ପ୍ରାଣର ସମାନ
ଯେ ସକାଶୁ ଏ ସ୍ତୋତ୍ରକୁ ଦେଲି ମୁହିଁ ଜାଣ ।
ମୋହର ପାଶରେ ବସି ପାରାୟଣ କର
ପାର୍ବତୀ ଦେବୀ ମଙ୍ଗଳ କରିବେ ତୁମ୍ଭର ।
ଏରୂପେ ଶ୍ରୀକୃଷ୍ଣଙ୍କର ବଚନକୁ ଶୁଣି
ଆନନ୍ଦ ଚିତ୍ତରେ ନନ୍ଦ ବ୍ରଜକୁଳମଣି ।
ଶୁଚିମନ୍ତ ହୋଇ ସ୍ତୋତ୍ର ପଠନ ସେ କଲେ
ସେହିକ୍ଷଣି ଦୁର୍ଗାଦେବୀ ତାଙ୍କୁ ଦେଖାଦେଲେ ।
ଭକ୍ତିଭରେ ନନ୍ଦରାଜା ଗୋଲୋକେ ନିବାସ
ବର ମାଗିବାରୁ ଦେବୀ ହୋଇ ମହାତୋଷ ।
ଦୁର୍ଲ୍ଲଭ ଜ୍ଞାନ ସହିତେ ଦେଇ ସେ ବରକୁ
ଅନ୍ତର୍ଦ୍ଧାନ ହୋଇଗଲେ ନିଜ ଭବନକୁ ।
ଦେବତାଏ ଯେ ଯାହାର ମନ୍ଦିରକୁ ଗଲେ
ଶ୍ରୀକୃଷ୍ଣ ସୁନ୍ଦର ଗୀତେ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣ ଦ୍ୱାରା ଭଗବତୀ ସ୍ତୋତ୍ର ସ୍ୱରୂପ ବର୍ଣ୍ଣନେ ନାମ ଅଷ୍ଟାଶୀତିତମୋଽଧ୍ୟାୟଃ ।

———॥*॥———

# ଊନନବତିତମ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କର ନନ୍ଦଙ୍କୁ ସଦୁପଦେଶ ପ୍ରଦାନ

ଏଥିଅନ୍ତରେ ଶ୍ରୀକୃଷ୍ଣ ବୋଇଲେ ହେ ତାତ
ବ୍ରଜପୁରେ ଯାଅ ଏବେ ତୋଷକରି ଚିତ୍ତ ।
ଶୁଣିଲ ତ ସବୁ ଧର୍ମ ତତ୍ତ୍ୱ ଉପାଖ୍ୟାନ
ମୋହ ପରିତ୍ୟାଗ କରି ହୁଅ ସ୍ଥିରମନ ।
ଦୁର୍ଗାଦେବୀଙ୍କ ସ୍ତୋତ୍ରକୁ ପାରାୟଣ କରି
ସୁଖରେ କଟାଇ ଥାଅ ଦିବସ ଶର୍ବରୀ ।
ବାଲ୍ୟଭାବେ ଯେତେ ମୁହିଁ କରିଥିବି ଦୋଷ
ବାତ୍ସଲ୍ୟ ଗୁଣରେ କ୍ଷମା କରିବ ଅବଶ୍ୟ ।
ତୁମ୍ଭ ପୁରେ ଯେତେ ମୁହିଁ କଲି ସୁଖଭୋଗ
ସାକ୍ଷାତରେ ମୋତେ ତାହା ହୋଇଥାଏ ସ୍ୱର୍ଗ
ଯଶୋଦା ସହିତେ ସବୁ ଗୋପୀଙ୍କୁ ମୋହର
ବିନୟ ବଚନ ଜଣାଇବ ବହୁବାର ।
ରାଧାଙ୍କୁ ସାନ୍ତ୍ୱନା କରି ବହୁତ କହିବ
ଗୋପ ବାଳକଙ୍କୁ ସେହିପରି ଜଣାଇବ ।
ବନ୍ଧୁମାନଙ୍କ ସହିତେ ମହାସୁଖେ ରହି
ଦେହ ଅନ୍ତେ ବସି ସୁଖେ ଗୋଲୋକରେ ଯାଇ
ଯଶୋଦା ରୋହିଣୀଆଦି ସର୍ବ ଗୋପୀଗଣ
ତୁମ୍ଭ ସହିତରେ ତହିଁ କରିବେ ପ୍ରୟାଣ ।
ଆଦର ଯେ ବୃଷଭାନୁ ଆଦି ଗୋପୀବୃନ୍ଦ
ଯିବେ ସେହି ସମୟରେ ଜାଣ ଆହେ ନନ୍ଦ ।
ରାଧାଙ୍କ ଜନନୀ କଳାବତୀ ତାଙ୍କ ତୁଲେ
ଆନନ୍ଦରେ ଗୋଲୋକକୁ ଯିବେ ସେତେବେଳେ
ଗୋଲୋକରୁ ଶତଲକ୍ଷ ରଥ ସଜ ହୋଇ
ଆସିବ ଏ ସମସ୍ତଙ୍କୁ ନେବାକୁ ବସାଇ ।
ମଣି ମାଣିକ୍ୟ ମୁକ୍ତାଜାଳ ବିଭୂଷିତ
ହୋଇକରି ଦିଶୁଥିବ ଅତ୍ୟନ୍ତ ଶୋଭିତ ।
ବହ୍ନି ଶୁଦ୍ଧ ପୀତବର୍ଣ୍ଣ ବସନ ତହିଁରେ
ଶୋଭା ପାଉଥିବ ବନ୍ଧାହୋଇ ଯତନରେ ।
ଶୁକ୍ଳ ଚାମର ଧରି ପାରିଷଦଗଣ
ସେବା କରିବାକୁ ତହିଁ ରହିଥିବେ ଜାଣ ।
ଅଷ୍ଟରତ୍ନ ବିନିର୍ମିତ ଦରପଣ କୋଟି
ସେହି ରଥ ମାନଙ୍କରେ ହୋଇଥିବେ ଗୋଟି ।
ପାର୍ଥିବ ଶରୀର ତେଜି ତୁମ୍ଭେମାନେ ତହିଁ
ବସିକରି ଗୋଲୋକକୁ ଯିବ ସୁଖପାଇ ।
ଅଯୋନି ସମ୍ଭବା ସେହି ରାଧାଙ୍କ ଜନନୀ
ସେ କେବଳ ଯିବେ ନିଜ ଶରୀରକୁ ଘେନି ।
ପିତୃଙ୍କ ମାନସୀ କନ୍ୟା ଅଟନ୍ତି ତ ସେହି
ତାଙ୍କଠାରୁ ଧନ୍ୟ ଆଉ ଜଗତେ କେ ନାହିଁ ।
ଅତ୍ୟନ୍ତ ଗୁପତ ଅଟେ ଏହି ତତ୍ତ୍ୱ କଥା
ତୁମ୍ଭ ଆଗରେ ଫିଟାଇ କହିଲି ସର୍ବଥା ।
ତୁମ୍ଭଙ୍କୁ ତ ଦୁର୍ଗାଦେବୀ ଦେଇଛନ୍ତି ବର
ଗୋଲୋକକୁ ଯିବ ଏଥି ସନ୍ଦେହ ନ କର ।
ଶ୍ରୀକୃଷ୍ଣଙ୍କଠାରୁ ନନ୍ଦ ଏହିରୂପେ ଶୁଣି
କହିଲେ ତାହାଙ୍କୁ ପୁଣି ଭକ୍ତିଭାବ ଘେନି ।
ବୋଇଲେ ହେ ବତ୍ସ ! ଯେଉଁ ଧର୍ମ ସନାତନ
ପ୍ରତ୍ୟେକ ଯୁଗରେ ହେଉଅଛି ପ୍ରବର୍ତ୍ତନ ।
କ୍ରମରେ ତା ଭିନ୍ନ ଭିନ୍ନ କରି ମୋତେ କହ
ଶୁଣିଲେ ଛୁଡ଼ିବ ମୋର ମନରୁ ସନ୍ଦେହ ।
କଳିଶେଷେ ଯେଉଁ ଯେଉଁ ଘଟନା ହୁଅଇ
ଆଉର କଳିର ଗୁଣ ଦୋଷ ଯେ ଅଛଇ ।
ଧର୍ମର ବା ପ୍ରାଣୀଙ୍କର ହୁଏ କେଉଁ ଗତି
ଏ ସବୁ ବୁଝାଇ ମୋତେ କହ ମହାମତି ।
ଶୁଣିଲି ଅତୀତ କଥା ତୁମ୍ଭ ପ୍ରସାଦରୁ
ଆଗତ ଭବିଷ୍ୟ କହ ଆହେ ମହାତ୍ମେରୁ ।
କହଇ କ୍ଷେତ୍ରମୋହନ ଶ୍ରୀହରିଙ୍କ ପାଦେ
ମୋହର ମାନସ ସଦା ରହୁ ଅପ୍ରମାଦେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କର ନନ୍ଦଙ୍କୁ ସଦୁପଦେଶ ପ୍ରଦାନ କଥନେ ନାମ ଊନନବତିତମୋଽଧ୍ୟାୟଃ ।

—ः—✱—ः—

## ନବତିତମ ଅଧ୍ୟାୟ

### ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଯୁଗଧର୍ମ କଥନ

ପିତାଙ୍କ ବଚନ ଶୁଣି ଶ୍ରୀକୃଷ୍ଣ ଯେ କାଳେ
ପୁରାଣ ଚରିତ କଥା କହି ଆରମ୍ଭିଲେ ।
ବୋଇଲେ ହେ ତାତ କୃତଯୁଗେ ପୂର୍ଣ୍ଣରୂପେ
ସତ୍ୟ ସମ୍ବନ୍ଧରେ ଧର୍ମ ରହିଥାଏ ଆପେ ।
ସମସ୍ତେ ହୁଅନ୍ତି ସତ୍ୟ ଧର୍ମପରାୟଣ
ରାଗ ଦ୍ୱେଷ ନ ରହଇ କାହାଠାରେ ଜାଣ ।
ଉତ୍ତମରୂପେ ହୁଅଇ ବେଦର ପ୍ରଚାର
ପ୍ରସୂତ ହୁଅଇ ଧର୍ମଶାସ୍ତ୍ର ସେ ପ୍ରକାର ।
ବ୍ରାହ୍ମଣମାନେ ସମସ୍ତେ ବେଦ ଅଧ୍ୟୟନ
କରନ୍ତି ସର୍ବଦା ଧର୍ମପଥେ ଦେଇ ମନ ।
ବିଷ୍ଣୁଙ୍କଠାରେ ମାନସ ଦେଇ ତାହାଙ୍କର
ମନ୍ତ୍ର ଉପାସନା କରୁଥାନ୍ତି ନିରନ୍ତର ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଏହି ତିନିବର୍ଣ୍ଣ
ହୋଇଥାନ୍ତି ବଇଷ୍ଣବ ଦୀକ୍ଷାରେ ନିପୁଣ ।
ଶୂଦ୍ରମାନେ ସତ୍ୟପଥେ ଅଗ୍ରସର ହୋଇ
ଦ୍ୱିଜଙ୍କ ସେବାର ଦିନ ନେଉଥାନ୍ତି ନିହିଁ ।
ସତ୍ୟ ଧର୍ମରେ ନିରତହୋଇ ସବୁ ରାଜା
ପୁତ୍ରପରାୟେ ପାଳନା କରୁଥାନ୍ତି ପ୍ରଜା ।
ପ୍ରଜାଙ୍କଠାରୁ ଗ୍ରହଣ କରି ଷଷ୍ଠ ଅଂଶ
ଧରମ କାର୍ଯ୍ୟରେ ତାହା କରୁଥାନ୍ତି ଶେଷ ।
ସବୁକାଳେ ବସୁମତୀ ଶସ୍ୟଜାତ କରି
ରହିଥାଏ ନିରନ୍ତରେ ସମ୍ପଦରେ ପୂରି ।
ପୁତ୍ରମାନେ ପିତାଙ୍କର ଆଜ୍ଞା ପାଳୁଥାନ୍ତି
ଶିଷ୍ୟଗଣ ଗୁରୁଠାରେ କରନ୍ତି ଭକତି ।
ସ୍ତ୍ରୀମାନେ ପତିସେବା କରଣ ସନ୍ତତେ
ଦିନ ନେଉଥାନ୍ତି ପାପ ନ ବହିଣ ଚିତ୍ତେ ।
କାମୁକ କାମିନୀ ଲବ୍‌ଧ ଲମ୍ପଟୀ ପୁରୁଷ
ସେ ଯୁଗରେ କେଉଁଠାରେ ନ ହୁଅନ୍ତି ଦୃଶ୍ୟ
କେଉଁଠାରେ ହେଲେ ନ ରହଇ ଚୋରଭୟ
ହୋଇଥାନ୍ତି ତରୁଗଣ ଫଳ ପୁଷ୍ପମୟ ।
ସୁଦୀର୍ଘ ସୁନ୍ଦର କାୟ ବଳବନ୍ତ ହୋଇ
ସମସ୍ତେ ଥାଆନ୍ତି ଦୀର୍ଘ ଆୟୁଷକୁ ପାଇ ।
ଲକ୍ଷେ ବରଷ ଜୀବନ କାଳ ହୋଇଥାଏ
କାହାରି ଦେହରେ ରୋଗ ପ୍ରବେଶ ନ ହୁଏ ।
ଜଳପୂର୍ଣ୍ଣ ହୋଇଥାନ୍ତି ନଦ ନଦୀଗଣ
ଦୁର୍ଭିକ୍ଷ ନୁହଇ କେତେବେଳେ ହେଲେ ଜାଣ
ସମସ୍ତେ ଶୁଦ୍ଧ ଚିତ୍ତରେ ହରୁଥାନ୍ତି କାଳ
ନ ରହଇ କେଉଁଠାରେ କଳହ କନ୍ଦଳ ।
ସମସ୍ତେ ଅତିଥି ପୂଜା କରୁଥାନ୍ତି ନିତ୍ୟେ
ସବୁରି ମାନସ ସଦା ରହିଥାଏ ସତ୍ୟେ ।
ଦେବତା ବ୍ରାହ୍ମଣ ବଡ଼ଲୋକଙ୍କର ନିନ୍ଦା
କେହିହେଲେ କେତେବେଳେ ନ କରନ୍ତି ଫନ୍ଦା
ଆତ୍ମପ୍ରଶଂସା ନ କରେ କେବଣ ପୁରୁଷ
ପରଗୁଣରେ ସମସ୍ତେ ହୁଅନ୍ତି ସନ୍ତୋଷ ।
ପୁରୁଷ ସ୍ତ୍ରୀ ସକଳ ପଣ୍ଡିତ ହୁଅନ୍ତି
ନିରକ୍ଷର ହୋଇ କାହିଁ କେହି ନ ରହନ୍ତି ।
ସବୁରି ଗୃହରେ ସ୍ୱର୍ଣ୍ଣ ରତ୍ନ ଅପ୍ରମିତ
ରହିଥାଏ କେବେହେଲେ ନୁହନ୍ତି ଦୁଃଖିତ ।
ସତ୍ୟଯୁଗ ଧର୍ମକଥା ଅଟେ ଏ ପ୍ରକାରେ
ପାଦେକ ଏଥିରୁ ଊଣାହୁଏ ତ୍ରେତୟାରେ ।
ଦ୍ୱାପରରେ ଅର୍ଦ୍ଧେକ ତହିଁ ହୁଅଇ ନିଉନ
କଳିଯୁଗେ ତିନିଭାଗ ଊଣାହୁଏ ପୁଣ ।
ଏକଭାଗ ମାତ୍ର ରହିବାରୁ ସେ ଯୁଗରେ
ବଳହୀନ ଅତି କୃଶ ହୁଏ ନିରନ୍ତରେ ।
ଯୁଗ ଆରମ୍ଭରେ ଲୋକେ ସାମାନ୍ୟ ପ୍ରକାରେ
ଅଧର୍ମ କରନ୍ତି ଦୟା ନ ରଖି କାହାରେ ।
ସେ ଅନ୍ତରେ କ୍ରମେ କ୍ରମେ ବଢ଼ଇ ଅନୀତି
କେହି କାହାଠାରେ ଆଉ ନ କରଇ ପ୍ରୀତି ।
କେବଳ କୁଳଟାମାନେ ନିଜ ପାପ କଥା
ଲୁଚାଇବା ପାଇଁ ଭୟ କରନ୍ତି ସର୍ବଥା ।
ଅଧାର୍ମିକଙ୍କର ଧର୍ମବନ୍ତଠାରୁ ଭୟ
କେତେ କେତେ ସମୟରେ ହୁଅଇ ଉଦୟ ।
ଯେତେଦିନ ଯାଏ ଥାଏ ନାରାୟଣେ ଭକ୍ତି
ସେତେକାଳ ଦିଏ ଲୋକ ଧର୍ମଠାରେ ମତି ।

ଆବର ଗ୍ରାମ୍ୟ ଦେବତା ଶସ୍ତ୍ର ଅସ୍ତ୍ର ପୂଜା
କରିବାରେ ଯେତେ ଦିନ ହୋଇଥାନ୍ତି ମଜ୍ଜା ।
ଯେତେଦିନ ଯାଏ ଧର୍ମ ସତ୍ୟ ସହିତରେ
ରହିଥାଏ ଏକପାଦେ ସକଳ ସ୍ଥାନରେ ।
ଏଥିରୁ କଳ୍ପିତ ମାତ୍ର ହେଲେ ବିପର୍ଯ୍ୟସ୍ତ
କୃଷ୍ଣପକ୍ଷ ଚନ୍ଦ୍ର ପରି ହୋଇଯାଏ ଅସ୍ତ ।
ସକଳ ଦୋଷର ସ୍ଥାନ ହେଲେହେଁ ସେ ଯୁଗ
ଗୋଟିଏ ଗୁଣ ତହିଁରେ ହୋଇଅଛି ସଂଯୋଗ ।
ମାନସପୂଜାରେ ପୁଣ୍ୟଫଳ ଲଭନ୍ତି
ତୀର୍ଥସ୍ନାନ କଲେ ପାପ ଦୂର ହୋଇଯାଏ ।
ଯେତେବେଳେ ପୁଣ୍ୟତୀର୍ଥ ଲୋପ ହୋଇଯିବ
ତେତେବେଳେ ଧର୍ମ କେଉଁଠାରେ ନ ରହିବ ।
ଅମାବାସ୍ୟା ରଜନୀରେ ନିଶାକର କର
ଲୁପ୍ତ ହେଲାପରି ଦଶା ଘଟିବ ଧର୍ମର ।
ନନ୍ଦ ବୋଇଲେ ହେ ବତ୍ସ କେତେଦିନଠାରେ
ଅଦୃଶ୍ୟ ହୋଇବେ ପୁଣ୍ୟତୀର୍ଥ ଏ ସଂସାରେ ।
ଆବର ଗ୍ରାମ୍ୟଦେବତା ଶାସ୍ତ୍ର ତନ୍ତ୍ରମାନ
ଲୋପ ହୋଇବାକୁ ଆଉ ଅଛି କେତେ ଦିନ ।
ଶ୍ରୀକୃଷ୍ଣ ବୋଇଲେ ଦଶସହସ୍ର ବରଷ
କଳିଯୁଗ ଯେତେବେଳେ ହୋଇଯିବ ଶେଷ
ସେ ସମୟେ ମର୍ତ୍ତ୍ୟଲୋକ ଛାଡ଼ିଣ ଶ୍ରୀହରି
ପ୍ରବେଶ ହୋଇବେ ଯାଇ ବଇକୁଣ୍ଠ ପୁରୀ ।
ଦେବତା ପ୍ରତିମା ପୂଜା ନ କରିବେ କେହି
ଧର୍ମଶାସ୍ତ୍ର ଆଦି ସବୁ ଯିବେ ଲୋପହୋଇ ।
ନାମ ମାତ୍ରେ ପୁଣ୍ୟତୀର୍ଥ ରହିବଟି ଜାଣ
ବିଶ୍ୱାସ ଛାଡ଼ିବେ ଧର୍ମଠାରୁ ସବୁ ଜନ ।
ସବୁ ଆଡ଼ରେ ଅଧର୍ମ ପ୍ରଭାବ ବିସ୍ତାରି
ରହିବ ଲୋକଙ୍କ ହୃଦ ଆକ୍ରମଣ କରି ।
ଚାରିବର୍ଣ୍ଣେ ହେବେ ଏକବର୍ଣ୍ଣେ ପରିଣତ
ମନ୍ତ୍ର ସ୍ତୋତ୍ର ପାଠ ନ ରହିବଟି କଳ୍ପିତ ।
ବଳିବ ସବୁରି ମନ ପରସ୍ତ୍ରୀଠାରେ
ଅବିଶ୍ୱାସ ହେବ ଗୁରୁଜନଙ୍କ କଥାରେ ।
ବ୍ରାହ୍ମଣଙ୍କଠାରେ ଯଜ୍ଞସୂତ୍ର ନ ରହିବ
ତିଳକ ଦେଖିଲେ ମନେ ଘୃଣା ଜାତହେବ ।
ସନ୍ଧ୍ୟାତରପଣ ଜପ କେହି ନ କରିବେ
ବେଦପାଠରୁ ସମସ୍ତେ ବିରତ ହୋଇବେ ।
ସବୁରି ସହିତ ସେବେ କରିବେ ଭୋଜନ
ଅଭକ୍ଷ୍ୟ ଦ୍ରବ୍ୟ ଭୁଞ୍ଜିବା ପାଇଁ ହେବ ମନ ।
ସତୀ ହୋଇ ନ ରହିବେ କାମିନୀ ଗୋଟିଏ
ବ୍ୟଭିଚାର ଦେଖାଯିବ ସମସ୍ତଙ୍କ ଗୃହେ ।
ପତିଠାରେ ଭକ୍ତିଭାବ ନ ରଖିବେ ସ୍ତିରୀ
ମାତିବେ ସର୍ବଦା ପରପୁରୁଷଙ୍କୁ ଧରି ।
ଜାର ପୁରୁଷକୁ ଭୋଗ୍ୟଦ୍ରବ୍ୟମାନ ଦେଇ
କହିବେ କୋମଳ ବାକ୍ୟ ମାନସ-ରଞ୍ଜାଇ ।
ଭର୍ତ୍ସନା କରି ଆପଣା କାନ୍ତକୁ ନିରତେ
ଭୃତ୍ୟ ସମାନ ବିଚାରି କରୁଥିବେ ଚିତ୍ତେ ।
ପିତାମାତାଙ୍କୁ ଭର୍ତ୍ସନା କରି ପୁତ୍ରମାନେ
ତାଡ଼ନା କରିବେ ଭାବି ଦସ୍ୟୁଙ୍କ ସମାନେ ।
ପ୍ରଜାଠାରୁ ରାଜାଙ୍କର ସ୍ନେହ ଛାଡ଼ିଯିବ
କେବଳ ଅର୍ଥ ଶୋଷଣ କଥାଟି ରହିବ ।
ସେହିପରି ପ୍ରଜାଗଣ ଏକମତ ହୋଇ
ବିନାଶ କରିବେ ରାଜବଂଶକୁ ଉଠାଇ ।
ଦୁଷ୍ଟ ଚୋର ଦସ୍ୟୁମାନେ ଶିଷ୍ଟ ଲୋକଙ୍କର
ଅନିଷ୍ଟ କରିବା ପାଇଁ ହୋଇବେ ତତ୍ପର ।
ନୃପତିଙ୍କଠାରୁ କରପୀଡ଼ା ପାଇ ଲୋକେ
ରହିବେ ବନରେ ବାସକରି ଘୋର ଶୋକେ
ପୃଥିବୀ ହୋଇବ ଶସ୍ୟ ସମ୍ପଦରେ ହୀନ
କ୍ଷୀର ବିହୀନ ହୋଇବେ କାମଧେନୁଗଣ ।
ଜାତ ନ ହୋଇବ ଆଉ ଘୃତ ନବନୀତ
ଆହୁତି ନ ପାଇ ଅଗ୍ନି ନୋହିବେ ତୃପତ ।
ସତ୍ୟ ଛାଡ଼ି ମିଥ୍ୟା କଥା କହିବେ ସମସ୍ତେ
କାହାକୁ ମାନନା କେହି ନ କରିବେ ଚିତ୍ତେ ।
ବ୍ରାହ୍ମଣମାନେ ଆପଣା କର୍ମ ତ୍ୟାଗ କରି
ଭୂମି ଖନନ କରିବେ ନିଜେ ହଳ ଧରି ।
ଆବର ଶୂଦ୍ରଙ୍କ ଶବ କରିବେ ଦହନ
କରିବେ ପୁଣି ଶୂଦ୍ରଙ୍କ ସକାଶେ ରନ୍ଧନ ।
ଶୂଦ୍ରମାନେ ବ୍ରାହ୍ମଣୀଙ୍କୁ ବଳାତ୍କାରେ ଧରି
ସମ୍ଭୋଗ କରିବେ ପାପ ପୁଣ୍ୟ ନ ବିଚାରି ।
ରାଜାଙ୍କୁ ପରାସ୍ତ କରି ଭୃତ୍ୟ ନିଜ ବଳେ
ସିଂହାସନ ଆରୋହଣ କରିବ କୌଶଳେ ।
ଆପଣା ପତିର ପ୍ରାଣ ନେଇ କୁଳସ୍ତିରୀ
ଆନନ୍ଦେ ମାତିବେ ଜାରପୁରୁଷଙ୍କୁ ଧରି ।

ନୀଚ ଆଚରଣ କରି ନୃପତି ସକଳ
ଅଯଶ ଅର୍ଜିବେ ସବୁ ସ୍ଥାନରେ କେବଳ ।
ଲମ୍ପଟାଦର ପରାଧୀନ ସମସ୍ତେ ହୋଇବେ
ନିଜ ଯାହା ଇଚ୍ଛା ପ୍ରକାରେ କାର୍ଯ୍ୟ କରିଯିବେ
କୁଟିଳ କର୍କଶ ଲୁବ୍ଧ ବ୍ୟାଧିଯୁକ୍ତ ହୋଇ
ରହିବେ ସର୍ବଦା ଲୋକେ ମହାକଷ୍ଟ ସହି ।
ଦେବତା ବ୍ରାହ୍ମଣ ଅଭ୍ୟାଗତଙ୍କୁ ନିନ୍ଦିବେ
ମହତ ଲୋକଙ୍କ ପୂଜା ଶୁଶ୍ରୂଷା ଛାଡ଼ିବେ ।
ଧନ ଲୋଭରେ ମନୁଷ୍ୟ ମନୁଷ୍ୟକୁ ମାରି
ନେବେ ତାହାଠାରୁ ସବୁ ଦ୍ରବ୍ୟଯାକ ହରି ।
ଦେବତା ଧ୍ୟାନ ବିହୀନ ହୋଇବ ଜଗତ
ସକଳ ସ୍ଥାନରେ ମହାଭୟ ହେବ ଜାତ ।
ଦରିଦ୍ରତାରେ ସମସ୍ତେ ପାଇ ମହାପୀଡ଼ା
କୁକର୍ମ କରିବେ ଛାଡ଼ି ମାନସରୁ ବ୍ରୀଡ଼ା ।
ବୃଦ୍ଧଅଙ୍ଗର ସମାନ ମନୁଷ୍ୟ ଜନ୍ମିବେ
ଶାକ ପରାୟେ ପାଦପଗଣ ଦେଖାଯିବେ ।
ତାଳ ନାରିକେଳ ବିଲ୍ୱ ପଣସ ସକଳ
ଫଳିବେ ସର୍ଷପପରି ଧାନ ସାନ ଫଳ ।
କ୍ରମେ କ୍ରମେ ପୁଣି ତାହାଠାରୁ ସାନ ହେବ
ମଧୁର ପଦାର୍ଥମାନ ତିକ୍ତ ହୋଇଯିବ ।
ଖାଦ୍ୟ ପେୟ ଦ୍ରବ୍ୟ କିଛି ଗୃହସ୍ଥଙ୍କ ଘରେ
ଦେଖିବାପାଇଁକି ନ ମିଳିବ କେଉଁଠାରେ ।
ସମସ୍ତେ କଳହପ୍ରିୟ ପରଶ୍ରୀକାତର
ହୋଇବେ ସର୍ବଦା ଆହେ ବ୍ରଜ ଅଧୀଶ୍ୱର ।
ରୂପବତୀ ନ ହୋଇବେ କାମିନୀ ଗୋଟିଏ
ସୁନ୍ଦର ହୋଇ ପୁରୁଷେ ନ ରହିବେ କିଏ ।
କରିବେ ବଟ ଅଶ୍ୱତ୍ଥ ବୃକ୍ଷକୁ ଛେଦନ
କ୍ରମେ କ୍ରମେ ବସୁମତୀ ହେବ ତରୁହୀନ ।
ମିଷ୍ଟ ଦ୍ରବ୍ୟରେ ମଧୁରଭାବ ନ ରହିବ
ସୁଗନ୍ଧିତା ସବୁ ପୁଷ୍ପଠାରୁ ଛାଡ଼ିଯିବ ।
ଏହିରୂପେ କେତେଦିନ ଗତହେବାପରେ
ଦ୍ୱାଦଶ ଆଦିତ୍ୟ ଉଦେ ହେବେ ଆକାଶରେ ।
ସକଳ ଜୀବଜନ୍ତୁଙ୍କୁ କରିଣ ସଂହାର
ଭସ୍ମ କରିବେ ପର୍ବତ କାନନ ନିକର ।
ସେ ଅନ୍ତରେ ବହୁବୃଷ୍ଟି ହୋଇ କେତେ ଦିନ
ପୃଥିବୀ ହୋଇବ ଜଳ ମଧ୍ୟରେ ବିଲୀନ ।

ବରଷେ ପର୍ଯ୍ୟନ୍ତେ ସେହି ପ୍ରକାରେ ରହିବ
ପୁଣି କ୍ରମେ ସତ୍ୟ ଆସି ପ୍ରବେଶ କରିବ ।
ଏହି ପ୍ରକାରେ ସମସ୍ତ ଯୁଗ ସମାଚାର
କହିଲି ତୁମ୍ଭ ଆଗରେ କରିଣ ବିସ୍ତାର ।
ଏବେ ସନ୍ତୋଷ ମନରେ ନିଜପୁରେ ଯାଅ
ସବୁବେଳେ ମୋତେ ଆଶୀର୍ବାଦ କରୁଥାଅ ।
ଦୁଗ୍ଧମୁଖ ପୁତ୍ର ମୁହିଁ ଅଟଇ ତୁମ୍ଭର
ଅଧିକ କି କହିବାରେ ମନରେ ବିଚାର ।
ନବନୀତ ଘୃତେ ଦଧି ଦୁଗ୍ଧ ଆଦିକରି
ଯାହା ରଖିଥାଅ ତୁମ୍ଭେ ନିଅଇ ମୁଁ ହରି ।
ଆବର ଦେବତା ପିତୃ ପୂଜା ସକାଶରେ
ରଖିଥାଅ ଯାହା ମୁହିଁ ନିଏ ବଳାତ୍କାରେ ।
ତହିଁରେ ଯେତେକ ଦୋଷ ହୋଇଅଛି ମୋର
ଆହେ ତାତ ଦୟାବହି ସବୁ କ୍ଷମାକର ।
ବାଳକାଳରେ ଲୋକର ବହୁ ଅପରାଧ
ହୁଏ ମାତ୍ର ଏଥିପାଇଁ ନ କରନ୍ତି କ୍ରୋଧ ।
ଯଶୋଦା ମୋର ଜନନୀ ତୁମ୍ଭେ ଅଟ ପିତା
କହୁଛି ମୋ ପାଇଁ ଆଉ ନ କରିବ ଚିନ୍ତା ।
ସମସ୍ତଙ୍କୁ ପ୍ରବୋଧନା କରିଣ କହିବ
ମୁଁ କହିବା କଥା ସବୁ ବସି ବୁଝାଇବ ।
କାଳବଶେ ପରସ୍ପର ସଙ୍ଗ ହୋଇଥାଏ
କାଳ ପ୍ରଭାବରେ ତାହା ପୁଣି ଭଙ୍ଗ ହୁଏ ।
କେ ନୁହେଁ ଜନକ କାର କେହି ନୁହେଁ ସୁତ
ମାୟାବଳେ ଲୋକ ସିନା ହୁଏ ବିମୋହିତ ।
ବସୁଦେବଙ୍କ ଗୃହରେ ଜାତ ହେଲି ମୁହିଁ
ବଢ଼ିଲି କେବଳ ତୁମ୍ଭ ଅନ୍ନ ଜଳ ଖାଇ ।
କଂସଠାରୁ ଭୟ ପାଇ ତୁମ୍ଭ ଗୃହେ ମୋତେ
ରଖିଲେ ଜନକ ନେଇ ଶ୍ରେୟ ଭାବ ଚିତ୍ତେ ।
ଯେଉଁ ଦିନଠାରୁ ପିତା ମାତା ତୁମ୍ଭେ ହୁହେଁ
ବାଲ୍ୟକାଳୁ ମୋତେ ରକ୍ଷା କରିଅଛ ସ୍ନେହେ
ଏହିରୂପେ ଶୁଣି ନନ୍ଦ ବୋଇଲେ ହେ ବତ୍ସ
ବୁଝିଲି ମୁଁ ସବୁ ତୁମ୍ଭେ ଯାହା କହୁଅଛ ।
କିନ୍ତୁ ବୋଲୁଅଛି ଥରେ ବ୍ରଜପୁରେ ଯାଅ
ସୁରମ୍ୟ ରାସମଣ୍ଡଳ ଦେଖି ତୋଷ ହୁଅ ।
ଆବର ରାଧା ସହିତେ ଗୋପୀଙ୍କୁ କଷ୍ଟିତେ
ଦରଶନ ଦେଇ ପୁଣି ଫେରିଆସ ଏଥେ ।

ଏମନ୍ତ କହିଣ ଶ୍ରୀକୃଷ୍ଣଙ୍କୁ କୋଳେ ଧରି
ସ୍ନେହଭରେ ନୟନରୁ ବୁହାଇଲେ ବାରି ।
ବାତ୍ସଲ୍ୟ ମମତା ହୃଦ ପକାଏ କରନ୍ତି
ଗୋପପୁରେ ଯିବାପାଇଁ ବଳେ ନାହିଁ ମତି ।
ଶ୍ରୀକୃଷ୍ଣ ବର୍ଣ୍ଣନ ଗୋପପୁର ଅନ୍ଧକାର
ଅନ୍ତରର କଥା ମନ୍ଥି ପକାଏ ଅନ୍ତର ।
ଏହିଠାରେ ଗୃହଯୁଗ ଧର୍ମ ଧର୍ମାଗ୍ର
ସମାପନ କଲେ ଗୀତେ ପ୍ରେମବାଧୀ ଶୂର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦଙ୍କ ଆଗରେ ଶ୍ରୀକୃଷ୍ଣଙ୍କର ଯୁଗଧର୍ମ କଥନେ ନାମ ନବତିତମୋଽଧ୍ୟାୟଃ ।

---

## ଏକନବତିତମ ଅଧ୍ୟାୟ

## ବସୁଦେବ ଓ ଦେବକୀଙ୍କର ନନ୍ଦଙ୍କ ପ୍ରତି ଭକ୍ତି ଏବଂ ଉଦ୍ଧବଙ୍କର ଗୋପକୁ ଗମନ

ଏଥୁଅନ୍ତରେ ଶ୍ରୀକୃଷ୍ଣ ନନ୍ଦଙ୍କୁ ଅନାଇଁ ।
ବୋଇଲେ ହେ ତାତ ଶୁଣ ସାବଧାନ ହୋଇ ।
ଉଦ୍ଧବଙ୍କୁ ଆଗ ମୁହିଁ ଗୋପ ନଗରକୁ
ପଠାଇ ବୁଝିବି ଗୋପିମାନଙ୍କ କଥାକୁ ।
ବାହୁଡ଼ି କରି ଉଦ୍ଧବ ଆସିବେଟି ଯେବେ
ତାଙ୍କଠାରୁ ଶୁଣି ତୋଷ ହେବ ତୁମ୍ଭେ ତେବେ
ସେ ଅନ୍ତରେ ନିଜେ ଯାଇ ବନ୍ଧୁ ସମସ୍ତଙ୍କୁ
ଆଶ୍ୱାସିତ କରାଇବ ତାହାଙ୍କ ମନକୁ ।
ଏରୂପେ ଶ୍ରୀକୃଷ୍ଣ ନନ୍ଦ ଆଗେ କହୁଥିଲେ
ସେହିଠାକୁ ବସୁଦେବ ଦେବକୀ ଆସିଲେ ।
ତାଙ୍କ ସଙ୍ଗେ ବଳରାମ ଉଦ୍ଧବ ଅକ୍ରୂର
ମିଳିଲେ ଆସି ସେକାଳେ ହୋଇ ତତପର ।
ନନ୍ଦରାଜାଙ୍କୁ ଅନାଇଁ ବସୁଦେବ ନୃପ
ବୋଇଲେ ଶୁଣିବା ହେଉ ଗୋପାଳ ଅଧିପ ।
ବାଲ୍ୟକାଳରୁ ଆମ୍ଭର ମିତ୍ର ଅଟ ତୁମ୍ଭେ
ଜ୍ଞାନରେ ଅଧିକ ହୋଇଅଛ ଜାଣୁ ଆମ୍ଭେ ।
ମୋହର ଯେରୂପେ କୃଷ୍ଣ ଅଟନ୍ତି ତନୟ
ତୁମ୍ଭର ମଧ୍ୟ ସେରୂପେ ବିଶ୍ୱର ହୃଦୟ ।
ଗୋକୁଳରୁ ଭିନ୍ନ ନୁହେ ମଥୁରା ନଗର
ପରମ ବାନ୍ଧବ ତୁମ୍ଭେ ଅଟ ଯେ ଆମ୍ଭର ।
ଯେତେବେଳେ ଶୁଭ ମହୋତ୍ସବ ହେଉଥିବ
ନିଶ୍ଚୟ ତୁମ୍ଭର ପୁତ୍ର ସଙ୍ଗେ ଦେଖା ହେବ ।
ଦେବକୀ ବୋଇଲେ ଆହେ ବ୍ରଜ ଅଧିପତି
କୃଷ୍ଣ ଯେରୂପେ ଆମ୍ଭର କୁମର ଅଟନ୍ତି ।
ସେହି ପ୍ରକାରେ ତୁମ୍ଭର ଅଟନ୍ତି ତନୟ
କିଞ୍ଚିତ ମାତ୍ର ମନରେ ନ ଘେନ ସଂଶୟ ।
ବଳରାମ ସହିତରେ ଏଗାର ବରଷ
ତୁମ୍ଭ ମନ୍ଦିରେ ରହିଣ ସୁଖେ କଲେ ଶେଷ ।
ଏବେ ବୃଦ୍ଧ ବୟସରେ ଅଳ୍ପ କେତେକାଳ
ବିରହ ଶୋକରେ କପାଁ ହୋଇବ ଆକୁଳ ।
ପୁତ୍ର ସହିତରେ ଏହି ମଥୁରା ନଗରେ
ରହିଥାଅ ମହାସୁଖେ ନିଶ୍ଚିନ୍ତ ମନରେ ।
ଏରୂପେ ଶ୍ରୀକୃଷ୍ଣ ପୁଣି ମାତାଙ୍କ ବଚନ
କହିଲେ ଉଦ୍ଧବଙ୍କର ମୁଖକୁ ଚାହିଁଣ ।
ବୋଇଲେ ଆହେ ଉଦ୍ଧବ ଯାଅ ବ୍ରଜପୁର
ଅବଶ୍ୟ ମଙ୍ଗଳ ତହିଁ ହୋଇବ ତୁମ୍ଭର ।
ଯଶୋଦା ରୋହିଣୀ ରାଧା ଗୋପିକା ସକଳ
ମୋତେ ଛାଡ଼ିଦେଇ ହେଉଥିବେଟି ବିକଳ ।
ଆଉ ମୋହର ସଙ୍ଗୀ ଗୋପ ଶିଶୁଗଣ
ସବୁବେଳେ ବସି ମୋତେ କରୁଥିବେ ଧ୍ୟାନ ।
ସେମାନଙ୍କୁ ଆଧ୍ୟାତ୍ମିକ ଜ୍ଞାନତତ୍ତ୍ୱ କହି
ପ୍ରବୋଧନା କରି ତାଙ୍କ ମନକୁ ରଞ୍ଜାଇ ।
ମାତାଙ୍କ ଆଜ୍ଞା ପ୍ରକାରେ ବ୍ରଜପୁର ଭଣ
ଏହିଠାରେ କେତେକାଳ କରନ୍ତୁ ନିବାସ ।
ଯଶୋଦାଙ୍କ ଚରଣରେ ମୋର ନମସ୍କାର
ଜଣା କରାଇବ ଆହେ ଜ୍ଞାନୀଙ୍କର ବର ।
ଏମନ୍ତ କହି ଶ୍ରୀକୃଷ୍ଣ ପିତାମାତା ତୁଲେ
ଅକ୍ରୂର ବଳରାମଙ୍କୁ ତହୁଁ ଘେନିଗଲେ ।

ଉଦ୍ଧବ ସେ ରଜନୀରେ ମଥୁରାରେ ରହି
ପ୍ରଭାତରୁ ଗଲେ ରମ୍ୟ ସ୍ୟନ୍ଦନ ଆରୋହି ।
ଏହିଠାରେ ଉଦ୍ଧବଙ୍କ ଗୋପ ଆଗମନ
ସମାପତ କଲେ ଗୀତେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବସୁଦେବ ଓ ଦେବକୀଙ୍କର
ନନ୍ଦଙ୍କ ପ୍ରତି ଭକ୍ତି ଏବଂ ଉଦ୍ଧବଙ୍କର ଗୋପକୁ ଗମନ କଥନେ
ନାମ ଏକନବତିତମୋଽଧ୍ୟାୟଃ ।

# ଦ୍ୱିନବତିତମ ଅଧ୍ୟାୟ

## ଉଦ୍ଧବଙ୍କ ଦ୍ୱାରା ରାଧାସ୍ତୋତ୍ର କଥନ

ନାରଦଙ୍କୁ ଅନାଇଣ ଋଷି ନାରାୟଣ
କହିଲେ ହେ ମୁନିବର ମନଦେଇ ଶୁଣ ।
ଶ୍ରୀକୃଷ୍ଣଙ୍କ ଆଜ୍ଞା ଘେନି ଉଦ୍ଧବ ସେକାଳେ
ଗୋପ ନଗରକୁ ଯିବାପାଇଁ ବାହାରିଲେ ।
ପ୍ରଥମରେ ଗଣପତି ଶିବ ନାରାୟଣ
ଦୁର୍ଗା ଲକ୍ଷ୍ମୀ ଆଦି ଯେତେ ଦେବ ଦେବୀଗଣ ।
ସେମାନଙ୍କୁ ମାନସରେ ସୁମରଣା କରି
ବ୍ରାହ୍ମଣଙ୍କଠାରୁ ଶୁଭ ଆଶୀର୍ବାଦ ଧରି ।
ମାର୍ଗରେ ସକଳ ଶୁଭ ସଙ୍କେତକୁ ଦେଖି
ପ୍ରବେଶ ହୋଇଲେ ବୃନ୍ଦାବନେ ହୋଇ ସୁଖୀ ।
ପ୍ରଥମେ ମିଳିଲେ ଯାଇ ଭାଣ୍ଡିର ବନରେ
ଅକ୍ଷୟ ବଟବୃକ୍ଷକୁ ଦେଖିଲେ ସେଠାରେ ।
ଆବର ରତ୍ନ ଭୂଷିତ ଗୋପଶିଶୁଗଣ
ରାମ କୃଷ୍ଣଙ୍କୁ ସୁମରି କରନ୍ତି କାରୁଣ୍ୟ ।
ତାହାଙ୍କୁ ଦେଖି ଉଦ୍ଧବ ସମୀପକୁ ଧାଇ
ଆଶ୍ୱାସନା କଲେ ଶ୍ରୀକୃଷ୍ଣଙ୍କ କଥା କହି ।
ସେ ଅନ୍ତରେ ପୁର ମଧ୍ୟେ ପ୍ରବେଶ ହୋଇଲେ
ନନ୍ଦଙ୍କ ମନ୍ଦିର ଛବି ଅଛଇ ଦେଖିଲେ ।
ବିଶ୍ୱକର୍ମାରେ ନିର୍ମିତ ଅଟେ ସେ ମନ୍ଦିର
ନାନା ରତନରେ ହୋଇଅଛି ମନୋହର ।
କେତେକ ସ୍ଥାନରେ ରତ୍ନ କଳଶ ବନ୍ଧିତ
ଥିବାରୁ ଦିଶୁଅଛି ସେ ଅତ୍ୟନ୍ତ ଶୋଭିତ ।
ସେ ପୁର ଦୁଆର ଡେଇଁ ଯାଇଣ ଉଦ୍ଧବ
ପ୍ରାଙ୍ଗଣେ ବସିଲେ ମନେ ବହି ସ୍ନେହଭାବ ।
ଯଶୋଦା ରୋହିଣୀ ଦୁହେଁ ଉଦ୍ଧବଙ୍କୁ ଦେଖି
ପାଦ୍ୟ ଅର୍ଘ୍ୟଦେଇ ପୂଜା କଲେ ହୋଇ ସୁଖୀ ।
ବସିବା ପାଇଁ ଉତ୍ତମ ଆସନକୁ ଦେଲେ
ମଧୁର ବଚନେ ଶୁଭସମ୍ବାଦ ପୁଛିଲେ ।
ନନ୍ଦ କୃଷ୍ଣ ବଳରାମେ କୁଶଳେ ଥିବାର
ପଚାରିଲେ ପୁଣ ହୋଇ ପ୍ରେମେ ଜରଜର ।
ଉଦ୍ଧବ ବୋଇଲେ ସର୍ବେ ଅଛନ୍ତି କୁଶଳେ
ତୁମ୍ଭଙ୍କୁ ଦେଖିବାପାଇଁ ମୋତେ ପଠାଇଲେ ।
ଶ୍ରୀକୃଷ୍ଣଙ୍କ ବ୍ରତପରେ କୁମରଙ୍କୁ ଧରି
ଆସିବେ ନିଶ୍ଚୟ ବ୍ରଜପୁର ଦଣ୍ଡଧାରୀ ।
ତୁମ୍ଭଙ୍କୁ ମୁଁ ଆଶ୍ୱାସନା କରି ଫେରିଯିବି
ତୁମ୍ଭର ବାରତା ନେଇ କୃଷ୍ଣଙ୍କୁ କହିବି ।
ଉଦ୍ଧବଙ୍କଠାରୁ ଶୁଭ ସମ୍ବାଦକୁ ଶୁଣି
ଆନନ୍ଦିତ ମାନସରେ ଯଶୋଦା ରୋହିଣୀ ।
ବ୍ରାହ୍ମଣଙ୍କୁ ଡକାଇଣ ଧନରତ୍ନ ଦେଲେ
ନାନାପ୍ରକାର ମଙ୍ଗଳ କର୍ମ କରାଇଲେ ।
ଉଦ୍ଧବଙ୍କୁ ରତ୍ନମୟ ଆସନେ ବସାଇ
ଭୁଞ୍ଜିବାକୁ ଦେଲେ ମିଷ୍ଟଦ୍ରବ୍ୟମାନ ନେଇ ।
ଦେବତା ପ୍ରତିମା ପୂଜାକରି ତୋଷମନେ
ଦ୍ୱିଜଙ୍କୁ ସନ୍ତୁଷ୍ଟ କଲେ ପୁଣି ଧନଦାନେ ।
ଦକ୍ଷିଣା ସହିତେ ଅନ୍ନ ବସ୍ତ୍ର ଅପ୍ରମିତ
ଦାନ କଲେ ସେ କାଳରେ ହୋଇ ହରଷିତ ।
ଉଦ୍ଧବଙ୍କୁ ପୁନଃପୁନଃ ଅଭ୍ୟର୍ଥନା କଲେ
ରାମକୃଷ୍ଣଙ୍କ ସମ୍ବାଦ ପୁଣି ପଚାରିଲେ ।
ଉଦ୍ଧବ ସେ ସମସ୍ତଙ୍କୁ ଆଶ୍ୱାସନା କରି
କହିଲେ ସକଳ କଥା ମନରେ ବିଚାରି ।
ସେ ଅନ୍ତେ ରାସମଣ୍ଡଳେ ପ୍ରବେଶ ହୋଇଲେ
ଅତି ରମଣୀୟ ହୋଇଅଛି ସେ ଦେଖିଲେ ।

ଶ୍ରୀରାମ କଦଳୀସ୍ତମ୍ଭ ଶତ ଶତ ରହି
ତୋରଣମାଳାରେ ଶୋଭା ପାଉଛନ୍ତି ତହିଁ ।
ଦଧି ଲାଜା ଫଳ ପୁଷ୍ପ ଧାନ୍ୟ ଦୁର୍ବାଙ୍କୁର
କୁଙ୍କୁମ କସ୍ତୁରୀ ଗନ୍ଧ ଚନ୍ଦନ ଆଦିର ।
ପ୍ରତ୍ୟେକ ଗୃହରେ ଥାଇ ଦ୍ରବ୍ୟ ସୁବାସରେ
ମନକୁ ମୋହିତ କରୁଛନ୍ତି ନିରନ୍ତରେ ।
ତିନିଲକ୍ଷ ରତ୍ନ ଗୃହ ଯେଉଁଠାରେ ନିର୍ମିତ
ହୋଇ ଦିଶୁଅଛନ୍ତି ଯେ ଅତ୍ୟନ୍ତ ଶୋଭିତ ।
ଲକ୍ଷେକ ଗୋପାଳ ସେହି ଗୃହମାନଙ୍କରେ
ନିବାସ କରି ଅଛନ୍ତି ପରମ ସୁଖରେ ।
ଶ୍ରୀକୃଷ୍ଣଙ୍କ ଆଗମନ ଅପେକ୍ଷାରେ ରହି
ଅଛନ୍ତି ସମସ୍ତେ ପରସ୍ପରେ ମେଳ ହୋଇ ।
ତାହାଙ୍କ ସଙ୍ଗେ ଆଳାପ କରି ଅଳ୍ପକ୍ଷଣ
ଯମୁନା ନଦୀ ତଟକୁ କଲେକ ଗମନ ।
ମାଳତୀ ଚନ୍ଦନ ଚମ୍ପା କାନନକୁ ଦେଖି
ପ୍ରଦକ୍ଷିଣ କଲେ ତାକୁ ହୋଇ ଅତି ସୁଖୀ ।
ସେ ଅନ୍ତେ ବକୁଳ ମଲ୍ଲୀ ପଳାଶ ଶିରୀଷ
ଉପବନେ ବୁଲି ବୁଲି ଲଙ୍ଘିଲେ ସନ୍ତୋଷ ।
କାଞ୍ଚନ କର୍ଣ୍ଣିକା ଧାତ୍ରୀ ଉଦ୍ୟାନ ଦେଖିଲେ
ନାଗେଶ୍ୱର କାନନରେ ପ୍ରବେଶ ହୋଇଲେ
ପୁଣି ସେହିଠାରୁ ଯାଇ ଶାଳ ତାଳ ବନ
ଶୋଭା ଦେଖି ଆନନ୍ଦିତ କରି ନିଜ ମନ ।
ପନସ ରସାଳ ବନେ ଉପସ୍ଥିତ ହୋଇ
ରହି ରହି ଗଲେ ଗୃହଆଡ଼କୁ ଅନାଇଁ ।
ସେ ବନରେ ମଧୁବ୍ରତେ ମଧୁପାନ କରି
ଭ୍ରମୁଛନ୍ତି ଗୁଣୁ ଗୁଣୁ ଶବଦ ବିସ୍ତାରି ।
ମନ୍ଦ ମନ୍ଦ ପବନରେ କୁସୁମ ସୁବାସ
ଆମୋଦିତ କରୁଅଛି ସବୁରି ମାନସ ।
ତାହା ଦେଖିଣ ଉଦ୍ଧବ ସେହିଠାରୁ ଯାଇ
ବଦରୀ ବନେ ପ୍ରବେଶ ହେଲେ ତ୍ୱରାହୋଇ ।
ସେଠାରେ ଭ୍ରମଣ କରି କିଞ୍ଚିତ ସମୟ
ଦେଖିଲେ ସେ ଅନ୍ତେ ବଲ୍ଲୀ ନିମ୍ବ ବନଚୟ ।
କଦଳୀ ବନରେ ତହୁଁ ପ୍ରବେଶ ହୋଇଲେ
ତାହାର ଦକ୍ଷିଣ ପାର୍ଶ୍ୱେ ଧୀରେ ଧୀରେ ଗଲେ
ନିର୍ଜନ ସ୍ଥାନରେ ରାଧାଦେବୀଙ୍କ ଆଶ୍ରମ
ଦେଖିଲେ ସେ ହୋଇଅଛି ଅତି ମନୋରମ ।

ମ୍ବରପାଣରେ ରଚିତ ସୁବର୍ଣ୍ଣ ପ୍ରାକାର
ଥିବାରୁ ଦିଶୁଅଛି ଅତିଶୟ ମନୋହର ।
ପରିଖା ବେଷ୍ଟିତ ହୋଇ ତାହା ଗୃହପାଶ
ଶତ୍ରୁଙ୍କ ପକ୍ଷରେ ହୋଇଅଛି ଯେ ଅଦୃଶ୍ୟ ।
ଗୁପତ ସଙ୍କେତ ମାର୍ଗ ରହିଛି ତହିଁରେ
ପରିପୂର୍ଣ୍ଣ ହୋଇ ସାର ରାଶି ସମ୍ଭାରରେ ।
ଅମୂଲ୍ୟ ରତ୍ନ ସୁବର୍ଣ୍ଣ କଳଶ ଅପାର
ପ୍ରତ୍ୟେକ ଗୃହରେ ରହି ଦିଶନ୍ତି ସୁନ୍ଦର ।
କେତେକ ସ୍ଥାନରେ ମୁକ୍ତାମଣି ରତ୍ନକୋଟି
ସୌନ୍ଦର୍ଯ୍ୟ ପ୍ରକାଶ କରି ହୋଇଛନ୍ତି ଗୋଟି ।
ସ୍ୱର୍ଣ୍ଣ ରଜତ ଦର୍ପଣ ଶୁକଳ ଚାମର
ଥିବାରୁ ଶୋଭା ପାଉଛି କେତେକ ମନ୍ଦିର ।
ଏହିରୂପେ ଦେଖି ଦେଖି ସିଂହଦ୍ୱାରରେ ଯାଇ
ପ୍ରବେଶ ହେଲେ ଉଦ୍ଧବ ଆହେ ଋଷିସାଇଁ ।
ଦେଖିଲେ ସେଠାରେ ରତ୍ନ ରଞ୍ଜିତ କବାଟ
ନାନା ବରନରେ ଦିଶୁଅଛି ଝଟ ଝଟ ।
ତା ଉପରେ ଚିତ୍ରପଟେ ରମ୍ୟ ବୃନ୍ଦାବନ
ଅଙ୍କିତ ହୋଇଛି ତହିଁ କଦମ୍ବ କାନନ ।
ଶ୍ରୀକୃଷ୍ଣଙ୍କ ବାଲ୍ୟକାଳ ଲୀଳାରସ ଯେତେ
କାନନ ବିହାର ବସ୍ତ୍ରହରଣ ସହିତେ ।
ଚିତ୍ରିତ ହେବାରୁ ଦିଶୁଅଛି ମନୋହର
ଆଦିରେ ରାସମଣ୍ଡଳ ନିକୁଞ୍ଜ କୁଟୀର ।
ନାନାପ୍ରକାରେ ରଚିତ ହୋଇ ଚିତ୍ରପଟେ
ଯତନରେ ରଖା ଯାଇଅଛି ତା ନିକଟେ ।
ସେ ଦ୍ୱାରେ ବହୁତ ଗୋପୀ ବେତ୍ରହସ୍ତେ ଧରି
ନିରନ୍ତର ରହିଛନ୍ତି ହୋଇ ରକ୍ଷାକାରୀ ।
ତାହାକୁ ଲଙ୍ଘନ କରି ଉଦ୍ଧବ ସେଠାରୁ
ଦ୍ୱିତୀୟ ଦ୍ୱାରେ ପ୍ରବେଶ ହେଲେ ନୋହି ଡରୁ
ଏହିପରି କ୍ରମେ କ୍ରମେ ପାଞ୍ଚଦ୍ୱାର ଡେଇଁ
ଷଷ୍ଠଦ୍ୱାରରେ ଉପଗତ ହୋଇଲେ ସେ ଯାଇ
ଦେଖିଲେ ସେଠାରେ ଭିତ୍ତି ଉପରେ ବହୁତ
ଦେବ ଦେବୀଙ୍କର ରୂପ ହୋଇଛି ଚିତ୍ରିତ ।
ରାମ ରାବଣଙ୍କ ଯୁଦ୍ଧ ଦଶ ଅବତାର
ଅଙ୍କିତ ହୋଇଛି ଅନ୍ୟ ଦେଶରେ ଆଦିର ।
ସହସ୍ର ଗୋପିକା ଜଗିଅଛନ୍ତି ଯେଉଁଠାରେ
ରତ୍ନମୟ ବେତ୍ରମାନ ବାହି ନିଜ କରେ ।

ତାଙ୍କ ମଧ୍ୟରେ ମାଧବୀ ନାମେ ଏକବାଳା
ପ୍ରଧାନ ଦ୍ୱାର ରକ୍ଷିକା ହୋଇ ରହିଥିଲା ।
ଉଦ୍ଧବଙ୍କୁ ଦେଖି ସବୁ ବିଷୟ ପଚାରି
କହିଲା ରାଧା ସଖୀଙ୍କ ଆଗେ ଯାଇକରି ।
ସେମାନେ ମଙ୍ଗଳବାର୍ତ୍ତା ଶୁଣି ସେହିକ୍ଷଣି
ମଙ୍ଗଳ ବାଦ୍ୟ ସଙ୍ଗୀତ କରାଇଲେ ଆଣି ।
ଉଦ୍ଧବଙ୍କୁ ପୂଜାକରି ରାଧାଙ୍କ ପାଶରେ
ଉପସ୍ଥିତ କରାଇଲେ ମାନସ ତୋଷରେ ।
ରାଧାଙ୍କ ପୁର ଦର୍ଶନ କଲେଣି ଉଦ୍ଧବ
ଜାତହେଲା ମନେ ତାହାପ୍ରତି ମହାଭାବ ।
ତହିଁରେ ଦେଖିଲେ ବସିଅଛନ୍ତି ରାଧିକା
ବିଶୁଷ୍କନ୍ତି ଯେସନ୍ତେ ଅମାବାସ୍ୟା ଶଶୀରେଖା ।
ଶ୍ରୀକୃଷ୍ଣଙ୍କଠାରେ ମନଦେଇ ନିରନ୍ତର
ଅତ୍ୟନ୍ତ ଅବଶ କରିଅଛନ୍ତି ଶରୀର ।
ପଦ୍ମପତ୍ରରେ ଶୟନ କରିବାରୁ ସେହି
ସୁବାସିତ ପଦ୍ମପୁଷ୍ପ ପ୍ରାୟେ ଛନ୍ତି ହୋଇ ।
ତ୍ୟାଗ କରିଛନ୍ତି ଅଙ୍ଗୁ ସକଳ ଭୂଷଣ
ମଳିନତା ପାଇ ରହି ଅଛଇ ଆନନ ।
ଏରୂପେ ଦେଖି ତାହାଙ୍କୁ ଦଣ୍ଡବତ ହେଲେ
ମସ୍ତକରେ କରଦେଇ ସ୍ତୁତି ଆରମ୍ଭିଲେ ।
ବୋଇଲେ ନମସ୍ତେ ଦେବୀ ବ୍ରହ୍ମାଦି ବନ୍ଦିତା
ଶ୍ରୀକୃଷ୍ଣ ହୃଦୟପଦ୍ମ ପ୍ରଧାନ ଦେବତା ।
ଯାହାଙ୍କ କାରଣ ପୂତ ରହିଛି ଜଗତେ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦାଗ୍ରତେ ।
ନମୋ ଗୋଲୋକ ବାସିନୀ ଦେବୀ ଚନ୍ଦ୍ରାବଳୀ
ତୁମ୍ଭର ମହିମା କେହି ନ ପାରନ୍ତି କଳି ।
ବିରଜା ତଟିନୀ ତୀରବାସିନୀ ସୁକେଶୀ
ବୃନ୍ଦାବନ ବିନୋଦିନୀ ସୁମଧୁରହାସୀ ।
କୃଷ୍ଣପ୍ରିୟା କୃଷ୍ଣ ବକ୍ଷସ୍ଥିତା ମହାମାୟା
ବଇକୁଣ୍ଠ ନିବାସିନୀ ସୁରୁଚିରେ କାୟା ।
ବିଦ୍ୟା ଅଧିଷ୍ଠାତ୍ରୀ ସର୍ବେଶ୍ୱରୀ ସରସ୍ୱତୀ
ଐଶ୍ୱର୍ଯ୍ୟ ଦାୟିନୀ ପଦ୍ମବାସିନୀ ସୁମତି ।
ନମସ୍ତେ ସିନ୍ଧୁତନୟା ଦେବୀ ନାରାୟଣୀ
ନମୋ ନମ ବିଷ୍ଣୁମାୟା ତ୍ରୈଲୋକ୍ୟଜନନୀ ।
କଲ୍ୟାଣ ଦାୟିନୀ ବିଷ୍ଣୁମାୟା ଶୁଭଦାନୀ
ବେଦମାତା ପିତାମହ ପ୍ରେୟସୀ ସାବିତ୍ରୀ ।
ବୁଦ୍ଧି ରୂପା ଜ୍ଞାନଦାୟିନୀ ତେଜଃ ସ୍ୱରୂପିଣୀ
ନମସ୍ତେ ସକଳ ଲୋକ ହୃଦୟ ବାସିନୀ ।
ପୂର୍ବକାଳେ ସତ୍ୟଯୁଗେ ସର୍ବଦେବଙ୍କର
ତେଜରୁ ଉତ୍ପନ୍ନ ହୋଇ ନାଶିଲେ ଅସୁର ।
ନମୋ ଦୁର୍ଗତିନାଶିନୀ ତ୍ରିପୁର ହାରିଣୀ
ତ୍ରିପୁରାରି ପୁରନ୍ଧ୍ରୀ ପୀରତି କାରଣୀ ।
ନମସ୍ତେ ତ୍ରିଗୁଣମୟୀ ଦକ୍ଷସୁତା ସତୀ
ନିତ୍ୟରୂପା ଶିବପ୍ରିୟା ଶଇଳ ଦୁହିତା ।
ତପଃ ସ୍ୱରୂପିଣୀ ଗୌରୀ ଲୋକ ନିବାସିନୀ
ଅପର୍ଣ୍ଣା ଶଙ୍କର ମନମୋହନ କାରିଣୀ ।
ନିଦ୍ରା ତନ୍ଦ୍ରା ଶ୍ରଦ୍ଧା ଭକ୍ତି ଭ୍ରାନ୍ତି କାନ୍ତି ସ୍ଥିତି
ନମୋ ନମ ସୃଷ୍ଟି ରୂପା ଦେବୀ ମହାମତି ।
ସର୍ବଶକ୍ତି ସ୍ୱରୂପିଣୀ ସର୍ବ ଆଦିମାତା
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନୀ କ୍ଷୀରସିନ୍ଧୁ ସୁତା ।
ସକଳ ଦ୍ରବ୍ୟରେ ତୁମ୍ଭେ ରହିଅଛ ପୂରି
ତୁମ୍ଭର ମହିମା ମୁହିଁ ଜାଣିବି କିପରି ।
କେବଳ ଭକତିଭରେ କରୁଅଛି ସ୍ତୁତି
ପ୍ରସନ୍ନ ହୋଇଣ ବାରେ ଦେଖ ମୋ ବିନତି
ଏମନ୍ତ ବୋଲି ଉଦ୍ଧବ ରାଧାଙ୍କର ପାଦେ
ପୁନଃପୁନଃ ପ୍ରଣମିଲେ ଭକ୍ତିପୂର୍ଣ୍ଣ ହୃଦେ ।
ଉଦ୍ଧବ କୃତ ଏ ସ୍ତୋତ୍ର ପଢ଼ଇ ଯେ ନିତି
କେତେବେଳେହେଲେ ତାକୁ ନ ପଡ଼େ ବିପତ୍ତି
ଆସ୍ତିକ ଲୋକ ଯେବେ ପଢ଼େ ଭକ୍ତିଭରେ ।
ଉତ୍ତମ ପୁତ୍ର ପ୍ରାପତ ହୁଏ ନିଶ୍ଚୟରେ ।
ରୋଗ ଭୟ ଶୋକବେଳେ ଏହାକୁ ପଢ଼ିଲେ
ଦେବୀଙ୍କ ପ୍ରସାଦେ ତାହା ଦୂର ହୁଏ ଭଲେ ।
ଏହିଠାରେ ରାଧାଙ୍କର ସ୍ତୋତ୍ର ଉପାଖ୍ୟାନ
ଗୀତରେ ଲକ୍ଷନମୋହନ କରିଲ ରଚନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଉଦ୍ଧବଙ୍କ ଦ୍ୱାରା ରାଧାସ୍ତୋତ୍ର କଥନେ ନାମ ଦ୍ୱିନବତିତମୋଽଧ୍ୟାୟଃ ।

—✻—

# ଦ୍ୱିନବତିତମ ଅଧ୍ୟାୟ

## ଉଦ୍ଧବଙ୍କ ସହିତ ରାଧାଦେବୀଙ୍କର କଥୋପକଥନ

ନାରଦଙ୍କ ମୁଖ ଶୁଣି ଋଷି ନାରାୟଣ
ବୋଇଲେ ହେ ମୁନିବର ସାବଧାନେ ଶୁଣ ।
ଉଦ୍ଧବଙ୍କ ସ୍ତୁତି ଶୁଣି ରାଧିକା ସେକାଳେ
ଚେତନା ପାଇ ତାହାଙ୍କୁ ବଚନ କହିଲେ ।
ବୋଇଲେ ହେ ବତ୍ସ ! ଅଟେ କି ନାମ ତୁମ୍ଭର
କେଉଁ ସ୍ଥାନରୁ ଆସିଲ ପାଶକୁ ମୋହର ।
ସକଳ ଅଙ୍ଗେ ତୁମ୍ଭର ଶ୍ରୀକୃଷ୍ଣ ଆକୃତି
ଦେଖି ସଶଙ୍କିତ ହେଉଅଛି ମୋର ମତି ।
ନିଶ୍ଚୟ ତ ଅଟ ତୁମ୍ଭେ ଶ୍ରୀକୃଷ୍ଣ ପାର୍ଷଦ
ଏଥିରେ କୌଣସି ମତେ ନାହିଁ ମତଭେଦ ।
କୃଷ୍ଣ ବଳରାମଙ୍କର କୁଶଳକୁ ଯେବେ
ଜାଣିଅଛ ମୋ ଆଗରେ କହ ବସି ତେବେ ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ନନ୍ଦ ଯାଇଥିଲେ
କହ କେଉଁ କାରଣରୁ ଫେରି ନ ଆସିଲେ ।
ଉଦ୍ଧବ ବୋଇଲେ ଦେବୀ ଅଟେ ମୁଁ ଷଷ୍ଟିମ୍ବୁ
ଉଦ୍ଧବ ବୋଲି ଅଟଇ ମୋର ନାମ ଧେମ୍ବୁ
ଶ୍ରୀକୃଷ୍ଣଙ୍କ ପାରିଷଦ ବୋଲି ମୋତେ ଜାଣ
ପଠାଇ ଅଛନ୍ତି ତୁମ୍ଭପାଶେ ଭଗବାନ ।
ନନ୍ଦ ବଳରାମ କୃଷ୍ଣ ଶୁଭରେ ଅଛନ୍ତି
ସର୍ବଦା ତୁମ୍ଭ ବିଷୟ ଭାବନା କରନ୍ତି ।
ରାଧିକା ବୋଇଲେ ମୁହିଁ ଅଟେ ଅଭାଗିନୀ
ଶ୍ରୀକୃଷ୍ଣ ମୋତେ ଛାଡ଼ିଣ ଗଲେ ସେହି ଦିନ ।
ଅଛି ସେହି ସୁଶୋଭିତ କଦମ୍ବକାନନ
ସୁରମ୍ୟ କେଳିମନ୍ଦିର ପୁଣ୍ୟ ବୃନ୍ଦାବନ ।
ଚମ୍ପକ କୁସୁମ ବାଟି ପୁଂସ୍କୋକିଳ ନାଦ
ମଧୁପ ଗୁଞ୍ଜନ ଆଦି ସକଳ ସମ୍ପଦ ।
ରାସମଣ୍ଡଳରେ ମଣି ରତ୍ନ ଦୀପାବଳୀ
ସୁନ୍ଦର ଦିଶୁଅଛଇ ନିରନ୍ତରେ ଜଳି ।
ପ୍ରତ୍ୟେକ ମନ୍ଦିରେ ନାନା ଭୋଗଦ୍ରବ୍ୟମାନ
ରହିଅଛନ୍ତି ସର୍ବେ ହୋଇ ପରିପୂର୍ଣ୍ଣ ।
ମୁକୁତା ମାଣିକ୍ୟ ହୀରାଖଣ୍ଡ କୋଟି କୋଟି
ସକଳ ଗୃହରେ ରହିଅଛି ହୋଇ ଗୋଟି ।
ସୁସ୍ୱାଦୁ ନିର୍ମଳ ଜଳ ପୂର୍ଣ୍ଣ ସରୋବର
ପଦ୍ମକୁସୁମରେ ହୋଇଅଛି ମନୋହର ।
ତଥାପି ମୋହର ପ୍ରାଣନାଥଙ୍କର ମୁଖ
ନ ଦେଖି ମନରେ ଜାତ ହେଉଅଛି ଦୁଃଖ ।
ଆହା କୃଷ୍ଣ ରମାନାଥ ହେ ଜୀବବଲ୍ଲଭ
ମୋଠାରୁ କପାଇଁ ତ୍ୟାଗକଲେ ସ୍ନେହଭାବ ।
କେଉଁ ଦୋଷ ତୁମ୍ଭଠାରେ ଅଛି ମୁହିଁ କରି
ଅନ୍ତର ହୋଇଲ ମୋହ ପାଶୁ ନରହରି ।
ଏମନ୍ତ ବୋଲି ରାଧିକା ମୂର୍ଚ୍ଛିତା ହୋଇଲେ
ତା ଦେଖି ଉଦ୍ଧବ ତାଙ୍କୁ ଆଶ୍ୱାସନା କଲେ ।
ବହୁତ କ୍ଷଣରେ ଦେବୀ ଚେତନାକୁ ପାଇ
ଦୁଃଖିତା ହୋଇଲେ ପୁଣି ଶ୍ରୀକୃଷ୍ଣଙ୍କୁ ଧ୍ୟାଇ ।
ତା ଦେଖି ଉଦ୍ଧବ ଅତି ବିସ୍ମିତ ଚିତ୍ତରେ
ବସିଲେ ତାହାଙ୍କ ପାଶେ ମଣ୍ଡନ ଭବନରେ ।
ସେ ସମୟେ ରାଧାଙ୍କର ପ୍ରିୟ ସଖୀଗଣ
ବଞ୍ଚିଲେ ତାହାଙ୍କୁ ଶୁକ୍ଳ ଚାମର ସେବନେ ।
କେଉଁ ସଖୀ ପୁଷ୍ପମାଳା ସୁଗନ୍ଧ ଚନ୍ଦନ
କଲା ନେଇ ଦେବୀଙ୍କର ଅଙ୍ଗେ ସମର୍ପଣ ।
ସିନ୍ଦୂର କଜ୍ଜଳ ରତ୍ନ ଦରପଣ ଧରି
ଉପସ୍ଥିତ ହେଲେ ଆସି କେତେ ସହଚରୀ ।
କେଉଁମାନେ ପାନପତ୍ର ସୁଗନ୍ଧି ତଇଳ
ଆସି ଦେଲେ କେହି ଅବା କର୍ପୂର ତାମ୍ବୁଳ ।
ସୁସ୍ୱାଦୁ ଜଳ ଭୃଙ୍ଗାର ଧରି କେଉଁ ସଖୀ
ପ୍ରବେଶ ହୋଇଲା ଆସି ହୋଇ ମନେ ଦୁଃଖୀ
ଅମୂଲ୍ୟ ବସନ ଧରି ମିଳିଲେକ ଆସି
ଭକ୍ଷ୍ୟଦ୍ରବ୍ୟ ଆଣିଥିଲା କେଉଁ ଶୁଚିକେଶୀ ।
ତାହାଙ୍କୁ ଦେଖି ଉଦ୍ଧବ ଆଶ୍ଚର୍ଯ୍ୟ ହୋଇଲେ
ରାଧିକା ଦେବୀଙ୍କୁ ଶୁଣି ବଚନ କହିଲେ ।
ବୋଇଲେ ଗୋ ଦେବୀ ସର୍ବ ଶକ୍ତିରୂପା ତୁମ୍ଭେ
ତୁମ୍ଭର ପ୍ରଭାବ ସବୁ ଜାଣିଅଛୁ ଆମ୍ଭେ ।
ଶ୍ରୀଦାମ ଶାପରେ ମର୍ତ୍ତ୍ୟପୁରରେ ହେଲେ ଜାତ
ଶ୍ରୀକୃଷ୍ଣଙ୍କ ପ୍ରାଣପ୍ରିୟା ଅଟ ଆଦ୍ୟମାତ ।

ଏବେ ତୁମ୍ଭର ମଙ୍ଗଳ ସମ୍ବାଦକୁ ମୁହିଁ
କହୁଅଛି ଶୁଣ ବସି ସାବଧାନ ହୋଇ ।
ମଥୁରା ନଗରେ ନନ୍ଦ ରାଜାଜ୍ଞା ରହି
ଶ୍ରୀକୃଷ୍ଣଙ୍କ ବ୍ରତୋତ୍ସବ ଦେଖିବାର ପାଇଁ ।
ବସୁଦେବ ନୃପ ତାଙ୍କୁ କଲେ ଆମନ୍ତ୍ରଣ
ସେ ସକାଶୁ ନ ଆସିଲେ ବୋଲିକରି ଜାଣ ।
ଉତ୍ସବ ସମାପ୍ତ ହେଲେ ପୁତ୍ରଙ୍କର ତୁଲେ
ଗୋପକୁ ଆସିବେ ନନ୍ଦ ରାଜନନ୍ଦି ଭଲେ ।
ମାତାଙ୍କୁ ଦର୍ଶନକରି ଶ୍ରୀକୃଷ୍ଣ ହରଷେ
ବୃନ୍ଦାବନକୁ ଆସିବେ ଦିବସର ଶେଷେ ।
ଅଳପ ଦିନ ଅନ୍ତରେ ପୁତ୍ରଙ୍କର ମୁଖ
ଦେଖିଣ ତୁମ୍ଭର ନେତ୍ର ଅରଜିବ ସୁଖ ।
ସକଳ ବିରହ ଦୁଃଖ ପରିତ୍ୟାଗ କରି
ଆନନ୍ଦରେ ଥାଅ ମନେ ସ୍ଥିର ଭାବ ଧରି ।
ଦିବ୍ୟ ବାସ ଭୂଷଣରେ ମଣ୍ଡିତା ଶରୀର
ଲେପନ କରି କୁଙ୍କୁମ ଚନ୍ଦନ କର୍ପୂର ।
କେଶ ସମାର୍ଜ୍ଜନ କରି କୁସୁମ ମାଳାରେ
ବିଭୂଷିତ କର ଦେବୀ ହରଷ ମନରେ ।
ଅଲକ୍ତ ଯାବକ ରାଗ ଦେଇ ପଦ୍ମପାଦେ
ଆହାର ବିହାର ଆଦି କରି ସ୍ଥିର ହୃଦେ ।
ରତ୍ନ ସିଂହାସନ ପରେ ବିଜେ କରି ସୁଖେ
ଆନନ୍ଦରେ ଦିଅ ନିଅ ନ ରହ ବିମୁଖେ ।
ଅମୂଲ୍ୟ ପଲ୍ୟଙ୍କ ଦିବ୍ୟ ଶଯ୍ୟାପରେ ନିତି
ଶୟନ କରିଣ ସୁଖେ ଶେଷକର ରାତି ।
ଗୋପୀଙ୍କ ସହିତେ ନାନା ଆଳାପକୁ କରି
ନିର୍ଜ୍ଜନରେ ଥାଅ ପୁଷ୍ପ ଉଦ୍ୟାନେ ବିହରି ।
ଏମନ୍ତ କହି ଉଦ୍ଧବ ଦେବୀଙ୍କୁ ସେକାଳେ
ପ୍ରଣାମ କରି ମଉନ ହୋଇଣ ବସିଲେ ।
ଶୁଣିଣ ରାଧିକା ଅତି ସନ୍ତୁଷ୍ଟ ମନରେ
ପ୍ରଶଂସା କରି ତାହାଙ୍କୁ ନାନା ପରକାରେ ।
ରତ୍ନସାର ମୁଦ୍ରିକାଟି ହସ୍ତୁ ଆପଣାର
ବାହାର କରି ସେକ୍ଷଣି ଦେଲେ ଉପହାର ।
ସେ ମୁଦ୍ରିକା ବିଶ୍ୱକର୍ମା କାରଣ ନିର୍ମିତ
ଅଗ୍ନି ଦେବତାଙ୍କୁ ଦେଲେ ତୋଷ ବହି ଚିତ୍ତ
ସ୍ନେହରେ ଅଗ୍ନି ଦେବତା ଦେଲେ ଶ୍ରୀକୃଷ୍ଣଙ୍କୁ
ଶ୍ରୀକୃଷ୍ଣ ତା ଦେଇଥିଲେ ରାଧିକା ଦେବୀଙ୍କୁ ।

ସେ ମୁଦ୍ରିକା ଉଦ୍ଧବଙ୍କ ହସ୍ତେ ନେଇ ଦେଲେ
ରତ୍ନମୟ ନାନାବିଧ ଅଳଙ୍କାର ତୁଲେ ।
ବହ୍ନି ଶୁଦ୍ଧ ଦିବ୍ୟ ବସ୍ତ୍ର ପୁଣି ସମର୍ପଣ
କଲେ ଆନନ୍ଦ ରସରେ ବୁଡ଼ାଇଣ ମନ ।
ବ୍ରହ୍ମାଦି ଦେବତାମାନେ ଯେତେ ଭଲ ଦ୍ରବ୍ୟ
ଦେଇଥିଲେ ଉଦ୍ଧବଙ୍କୁ ଦେଲେ ତାହା ସର୍ବ ।
ଆବର ଗନ୍ଧ ଚନ୍ଦନ ରମ୍ୟ ପୁଷ୍ପମାଳ
ସଖୀଙ୍କ ହସ୍ତେ ଅଣାଇ ଦେଲେ ତତକାଳ ।
ରାସମଣ୍ଡଳେ ଶ୍ରୀକୃଷ୍ଣ ଯେଉଁ ଦିବ୍ୟଜ୍ଞାନ
ଦେଇଥିଲେ ତାହା ମଧ କଲେ ସମର୍ପଣ ।
ଶତେ ପୁରୁଷ ପର୍ଯ୍ୟନ୍ତ ନିଶ୍ଚଳା ସମ୍ପତ୍ତି
ପ୍ରଦାନ କଲେ ଆବର ବିଦ୍ୟା ଯଶ କୀର୍ତ୍ତି ।
ପୁଣି ଶ୍ରୀହରିଙ୍କ ଦାସ୍ୟ ଭକ୍ତି ଦାନ କଲେ
ପ୍ରଶଂସା କରିଣ ତାଙ୍କୁ ବହୁତ କହିଲେ ।
ସେ ଅନ୍ତରେ ନିଜେ ଉଠି ବସ୍ତ୍ର ଆଭରଣ
ଅଣାଇଁ କଲେ ଆପଣା ଦେହକୁ ମଣ୍ଡନ ।
ସିନ୍ଦୂର କଜ୍ଜ୍ୱଳ ଗନ୍ଧ ଚନ୍ଦନ ସହିତେ
ଘେନିଲେ ସୁବାସ ପୁଷ୍ପମାଲ୍ୟ ଆଦି ଯେତେ ।
ରତ୍ନ ସିଂହାସନ ପରେ ବିଜେ କଲେ ଯାଇ
ସେବୁଥାନ୍ତି ଗୋପୀଗଣ ପାରୁଶରେ ଥାଇ ।
ଉଦ୍ଧବ ତ ସେହିଠାରେ ଉଭା ହୋଇଥିଲେ
ତାଙ୍କୁ ଅନାଇଣ ଦେବୀ ବଚନ କହିଲେ ।
ବୋଇଲେ ଆପଣ ମୋତେ ସତ୍ୟକଥା କହ
ଶ୍ରୀକୃଷ୍ଣଙ୍କ ଆସିବାରେ ନାହିଁ ତ ସନ୍ଦେହ ।
ସତ୍ୟ ସମାନେ ଜଗତେ ଧର୍ମକାର୍ଯ୍ୟ ଆଉ
ନାହିଁ ବୋଲିକରି ଜାଣ ଆହେ ମହାବାହୁ ।
ମିଥ୍ୟା କହିଲେ ଅଶେଷ ପାତକ ହୁଅଇ
ସେ ଯୋଗରେ ଲୋକ ଘୋର ନରକେ ପଡ଼ଇ
ଉଦ୍ଧବ ବୋଇଲେ ଦେବୀ ବାଲ୍ୟକାଳୁ ମୁହିଁ
ମିଥ୍ୟା ବୋଲିବା ଶବଦ କର୍ଣ୍ଣେ ଶୁଣିନାହିଁ ।
କିରୂପେ କରିବି ଅବା ମୁଖେ ଉଚ୍ଚାରଣ
ଅବିଶ୍ୱାସ ଯୋଗ୍ୟ ନୁହେଁ ମୋହର ବଚନ ।
ଅଳ୍ପଦିନପରେ ତୁମ୍ଭେ ଶ୍ରୀକୃଷ୍ଣଙ୍କ ମୁଖ
ଦର୍ଶନ କରିବ କିଛି ନ ହୁଅ ବିମୁଖ ।
ମଥୁରାପୁରେ ପ୍ରବେଶ ହେବି ମୁହିଁ ଯେବେ
ନନ୍ଦ ଶ୍ରୀକୃଷ୍ଣଙ୍କୁ କହି ପଠାଇବି ତେବେ ।

ଦୟା କରି ତୁମ୍ଭେ ମୋତେ ଦିଅ ଅନୁମତି
ଶ୍ରୀକୃଷ୍ଣଙ୍କ ସମୀପକୁ ଯିବି ମୁଁ ଝଟତି ।
ତୁମ୍ଭର ସବୁ ବୃତ୍ତାନ୍ତ ଯଥାର୍ଥ ପ୍ରକାରେ
କହିବି ନିଶ୍ଚୟ ବସି ତାହାଙ୍କ ଆଗରେ ।
ରାଧିକା ବୋଇଲେ ଯେବେ ମଥୁରାକୁ ଯିବ
ମନରୁ କଦାପି ମୋତେ ପାସୋରି ନ ଦେବ
ଶ୍ରୀକୃଷ୍ଣଙ୍କୁ କହି ମୋର ପ୍ରାଣକୁ ଅନ୍ତରେ
ପଠାଇ ଦେବ ଅବଶ୍ୟ ଦୟାକରି ବାରେ ।
କେତେ ଦୁଃଖ କାହାଣୀ ମୁଁ କହୁଅଛି ଶୁଣ
ସ୍ତ୍ରୀ ଜାତିଙ୍କର ଗତି ଏକା ପତି ବୋଲି ଜାଣ ।
ଜଗତ ମଧ୍ୟରେ ସ୍ତ୍ରୀ ସ୍ୱ ହୃଦ ବୁଝିବାକୁ
ଥିବ ବୋଲି କେହି ମୋର ନ ଆସଇ ମନକୁ
ମୁଁ କହିବା କଥା ସବୁ କୃଷ୍ଣଙ୍କୁ କହିବ
ପାସୋରି ନ ଦେଇ କହୁ ଥିବ ବାପ ଉଦ୍ଧବ
ବୋଲିବ ରାଧା କେବଳ ତୁମ୍ଭ ରୂପ ଚିନ୍ତି
ଆହାର ବିହାର ତେଜି ଦୁଃଖେ ବସିଛନ୍ତି ।
ଜଳ ସ୍ଥଳ ଗିରି ବନ ଗୃହ ବାସସ୍ଥାନ
ଦିଶୁଅଛି ଏହା ସବୁ ତାହାଙ୍କୁ ସମାନ ।
କ୍ଷଣ ମଧ୍ୟକରେ ହେଲା ପ୍ରାଏ ବାତୁଳୀ
କୃଷ୍ଣ କୃଷ୍ଣ ବୋଲି ଉଚ୍ଚେ ଛାଡ଼ନ୍ତି କୋବାଳି
ତୁମ୍ଭଠାରେ ଅନାସକ୍ତ ନୁହନ୍ତି ସେ କେବେ
ତାହାଙ୍କୁ ଥରେ ଆପଣ ଦରଶନ ଦେବେ ।
ଆଜ ତୁମ୍ଭ ସହିତରେ ରାସକ୍ରୀଡ଼ା ସ୍ଥାନେ
ବିହାର କରିବେ ବୋଲି ନାହିଁ ତାଙ୍କ ମନେ
ବୃନ୍ଦାବନେ ସୁରୁଚିର ଚନ୍ଦନ ବନରେ
ଅଥବା ମାଳତୀ ଚମ୍ପା ପୁଷ୍ପ ଉଦ୍ୟାନରେ ।
ତୁମ୍ଭଙ୍କୁ ସଙ୍ଗରେ ଯେନ କ୍ଷଣେ ନେଲେ ଆଜ
ବିହରିବେ ବୋଲି ଆଶା ନାହିଁ ମହାବାହୁ ।
ଶ୍ରୀଖଣ୍ଡ କାନନ ସ୍ୱଚ୍ଛ ଚନ୍ଦ୍ର ସରୋବର
କରନ୍ତି ତହିଁରେ ତୁମ୍ଭ ସଙ୍ଗତେ ବିହାର ।
ଆଜ ତାଙ୍କ ଭାଗ୍ୟରେ ସେ ସୁଖ ନ ମିଳିବ
କେବଳ ଭାବନା କରି କରି ଜୀବ ଯିବ ।
କି ଦୋଷରୁ ପ୍ରାଣେଶ୍ୱର ଛାଡ଼ିଗଲେ ମୋତେ
ଆଜ ତାହାଙ୍କ ଶ୍ରୀମୁଖ ଦେଖିବି କି ସତେ ।
ଏମନ୍ତ କହିଣ ଦେବୀ ମୂର୍ଚ୍ଛିତା ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡେ ଉଦ୍ଧବଙ୍କ ସହିତେ ରାଧାଦେବୀଙ୍କର କଥୋପ କଥନେ ନାମ ତ୍ରିନବତିତମୋଽଧ୍ୟାୟଃ ।

—ଃ✻ଃ✻ଃ—

# ଚତୁର୍ନବତିତମ ଅଧ୍ୟାୟ

## ରାଧାଙ୍କ ପ୍ରତି ସଖୀମାନଙ୍କ ଉପଦେଶ

ଏଥୁଅନ୍ତେ ନାରାୟଣ ବୋଇଲେ ହେ ମୁନି
ରାଧାଙ୍କୁ ଦେଖି ଉଦ୍ଧବ ବସୁଥିବୁ ଯେନି ।
ଶ୍ରୀକୃଷ୍ଣଙ୍କଠାରେ ଭକ୍ତିଭାବ ତାହାଙ୍କର
ଦେଖି ମନେ ମନେ ହୋଇ ଅତି ଚମତ୍କାର
ବୋଇଲେ ଗୋ ଦେବୀ ତୁମ୍ଭ ପାଦ-କମଳରେ
ମୋହର ଭକତିଭାବ ହେଉ ନିରନ୍ତରେ ।
ଏବେ ତୁମ୍ଭେ ଆଶ୍ୱାସିତ ହୋଇ ସୁଖେ ବସ
ଅଳ୍ପଦିନ ପରେ କୃଷ୍ଣ ଆସିବେ ଅବଶ୍ୟ ।
ତୁମ୍ଭ ପାଦ ପରଶରେ ଦେବୀ ବସୁମତୀ
ପବିତ୍ର ଭାବକୁ ପାଇଅଛି ଆଗୋ ସତୀ ।
ଆବର ସୁଭାଗ୍ୟବଳେ ଗୋପିକା ସକଳ
ରହିଛନ୍ତି ତୁମ୍ଭ ସଙ୍ଗେ ହୋଇକରି ମେଳ ।
ସମସ୍ତ ଲୋକରେ ତୁମ୍ଭ ଗୁଣ ସଙ୍କୀର୍ତ୍ତନ
କରିବେ ସର୍ବଦା ଆନନ୍ଦରେ ସବୁ ଜନ ।
ସର୍ବ ଶକ୍ତି ସ୍ୱରୂପିଣୀ ଅଟ ତୁମ୍ଭେ ମାତ
କେହି ଜାଣି ନ ପାରନ୍ତି ତୁମ୍ଭ ଆଦି ଅନ୍ତ ।
ଏହିରୂପେ ଉଦ୍ଧବଙ୍କ କହିବାର କାଳେ
ମାଧବୀ ନାମରେ ଏକ ଗୋପିକା ସେଠାରେ ।
ଉପସ୍ଥିତ ହୋଇ ରାଧା ଦେବୀଙ୍କୁ ଅନାଇଁ
ବୋଇଲେ କାହିଁକି ଚିନ୍ତା କରୁଅଛ ସହି ।

କୃଷ୍ଣଙ୍କର ରୂପ ବେଶ ସୁମରଣା କରି
କେଉଁ ସୁଖ ଲଭ ଅବା ହେଉଛି ତୁମ୍ଭର ।
ତାହାଙ୍କର ବୀର୍ଯ୍ୟ ଶୌର୍ଯ୍ୟ ଗୁଣ ଅବା କେତେ
ତୁଚ୍ଛା କଥା ସୁମରଣା କରୁଅଛ ଏତେ ।
ଆପଣାର ଶରୀରକୁ ଯତନରେ ରଖ
ଦେହ ଥିଲେ ପିନ୍ଧା ଭୋଗ ହେବ ସବୁ ସୁଖ ।
ଏଥି ଅନ୍ତେ ମାଳତୀ ନାମ୍ନୀ ସଖୀ ଆସିକରି
ବୋଇଲା ତୁମ୍ଭଙ୍କୁ ଧିକ ହେଉ ଗୋପେଶ୍ୱରୀ ।
ନିର୍ଲ୍ଲଜ ପଣରେ ଏତେ କର ସୁମରଣା
ଜଗତ ଯୁବତୀଙ୍କର ଯଶ କଲ ଊଣା ।
ଏବେ ମୋର ବୋଲକରି ସ୍ଥିରଚିତ୍ତ ହୁଅ
ନିଜ କର୍ମରେ ସର୍ବଦା ମନକୁ ଲଗାଅ ।
କର୍ମରେଟି ଶତ୍ରୁ ମିତ୍ର ଭାବ ଜାତ ହୁଏ
କାର୍ଯ୍ୟ ନ କଲେ ମନୁଷ୍ୟ ମୂରୁଖ ବୋଲାଏ ।
କେ କାହାର ପତି ଅବା କେ କାହାର ପୁତ୍ର
ସଂସାର ଲୀଳା ଅଟଇ ଅତ୍ୟନ୍ତ ବିଚିତ୍ର ।
ତୁମ୍ଭଙ୍କୁ ଯେ ଶୋକଜଳେ ଭସାଇଣ ଗଲେ
ସେ ନିଷ୍ଠୁର ପୁରୁଷଙ୍କୁ ଚିନ୍ତା କପାଁ କଲେ ।
ପଦ୍ମାବତୀ ବୋଇଲେ ଗୋ ରାଧିକା ସୁନ୍ଦରୀ
କୃଷ୍ଣଙ୍କର କଥା ମୁହିଁ ଜାଣେ ଭଲକରି ।
ଯମୁନା ଜଳ ନିକଟେ ତୁମ୍ଭେ ଯେବେ ମୋତେ
ସବୁ କଥା କହିଥିଲ ନ ଛାଡ଼ି କାହିଁତେ ।
ଖଳ ଲୋକଠାରେ ଯେବେ କରିବ ବିଶ୍ୱାସ
ଜାଣିଥିବ ନିଶ୍ଚୟରେ ହେବ ସର୍ବନାଶ ।
ସକଳ ବିଷୟ ତେଜି ଶ୍ରୀକୃଷ୍ଣଙ୍କ ଠାରେ
ଜୀବନ ଅର୍ପଣ କରିଅଛ ନିରନ୍ତରେ ।
ତଥାପି ତୁମ୍ଭର ଦୁଃଖ ନ ଜାଣିଲେ ସେହି
ସୁଖେ ରହିଲେ ମଥୁରା ନଗରୀରେ ଯାଇଁ ।
ସେ ସକାଶୁ ବୋଲୁଅଛି ରଖିଥାଅ ପ୍ରାଣ
କାଳେ ଅବା ଶ୍ରୀକୃଷ୍ଣଙ୍କୁ କରିବ ଦର୍ଶନ ।
ଏଥି ଅନ୍ତରେ ଚନ୍ଦ୍ରମୁଖୀ ବୋଇଲା ଗୋ ସଖି
ଆଉ ତୁମ୍ଭେ କାହିଁପାଇଁ ହେଉଅଛ ଦୁଃଖୀ ।
ଶ୍ରୀକୃଷ୍ଣ ତ ଛାଡ଼ିକରି ଗଲେ ଦୂରଦେଶ
ତାହାଙ୍କୁ ସ୍ମରଣା କଲେ ହେବ ଅବା କସ ।
ପୁଣ୍ୟଭୂମି ଭାରତରେ ଜନ୍ମଲାଭ କରି
ପତିରୂପେ ଶ୍ରୀକୃଷ୍ଣଙ୍କୁ ପାଇଲ ସେପରି ।
ତଥାପି ବିରହ ଦୁଃଖ ନ ଗଲା ତୁମ୍ଭର
ଅଦୃଶ୍ୟ ହେଉଛନ୍ତି ସୁଧାମୟ ଚନ୍ଦ୍ରକର ।
ସେ ସକାଶୁ ଜାଣୁଅଛି ପୂର୍ବ କର୍ମ ଯୋଗେ
ଫଳାଫଳ ଭୋଗନ୍ତି ମର୍ତ୍ତ୍ୟ ମହୀଭାଗେ ।
କର୍ମ ହେତୁ ରାହୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଗ୍ରାସଇ
ସକଳ ଲୋକର ଭାର ସହିଅଛି ମହୀ ।
ଶ୍ରୀକୃଷ୍ଣଙ୍କୁ ସର୍ବବେଳେ କର ପରଶଂସା
ନ କର କଦାପି ତାଙ୍କ ନିନ୍ଦା ମୁଖେ ବାଧା ।
ଶଶିକଳା ବୋଇଲା ଗୋ ମାଧବୀ ସୁନ୍ଦରୀ
ଶ୍ରୀକୃଷ୍ଣଙ୍କ ତତ୍ତ୍ୱ ତୁହି ଜାଣିଲୁ କପରି ।
ଯାହାଙ୍କର ପାଦପଦ୍ମ ବ୍ରହ୍ମାଦି ଦେବତା
ଅନବରତ ବର୍ଣ୍ଣିଣ କରୁଛନ୍ତି ଚିନ୍ତା ।
ପଦ୍ମା ସରସ୍ୱତୀ ଦୁର୍ଗା ଶେଷ ମହେଶ୍ୱର
ଜାଣି ନ ପାରନ୍ତି ଛଳେ ସ୍ୱରୂପ ଯାହାର ।
ବ୍ରହ୍ମମୟ ଗୁଣାତୀତ ନିତ୍ୟ ସନାତନ
ପରମ ଈଶ୍ୱର ପ୍ରଭୁ ତ୍ରୈଲୋକ୍ୟ କାରଣ ।
ମନକଲେ ନାନାରୂପ ଧରି ସେ ପାରନ୍ତି
ତାହାଙ୍କ ଅଂଶରେ ଜାତ ଅଟଇ ପ୍ରକୃତି ।
ପୃଥିବୀର ଭାର ନିବାରଣ ସକାଶରେ
ଜନମ ହୋଇ ଅଛନ୍ତି ମରତ ଲୋକରେ ।
ସୁଶୀଳା ବୋଇଲା ଚନ୍ଦ୍ର ଅଶ୍ୱିନୀକୁମାର
ସୌନ୍ଦର୍ଯ୍ୟରେ କଳା ତୁଲ୍ୟ ନୁହନ୍ତି ଯାହାର
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଦେବଗଣ
ଧ୍ୟାନ କରୁଥାନ୍ତି ଯାହାଙ୍କର ଶ୍ରୀଚରଣ ।
ସହସ୍ର ବଦନେ ଶେଷଦେବ କହିତରେ
ଯାହାଙ୍କର ସ୍ତୁତି ପଢ଼ି ନ ପାରନ୍ତି ବାରେ ।
ସେହି ସତ୍ୟ ନିରାକାର ପ୍ରଭୁଙ୍କୁ ମାଧବୀ
ନିନ୍ଦା କରୁଅଛି କିଛି ମନରେ ନ ଭାବି ।
ତମା ବଗୁଟେଠ ପୁଣ୍ୟବତୀ ଅଟନ୍ତି ରାଧିକା
ସର୍ବଦା ଯା ଶ୍ରୀକୃଷ୍ଣଙ୍କୁ ଭାବୁଛନ୍ତି ଏକା ।
ରତ୍ନମାଳା ବୋଇଲା ଗୋ ଯେଉଁ ପ୍ରଭୁ ହେଲେ
ଗୋବର୍ଦ୍ଧନ ପର୍ବତକୁ ହସ୍ତରେ ତୋଳିଲେ ।
ସହସ୍ର ସହସ୍ର ଶୈଳ ଚୂର ଯେ ପାରନ୍ତି
ତେମନ୍ତ ଦୈତ୍ୟଙ୍କୁ ପଠାଇଲେ ଯମ କତି ।
ସେ ହେତୁରେ ତାହାଙ୍କର ଯଶ ଜଗତରେ
ଖ୍ୟାତ ହୋଇଅଛି ଜାଣ ସକଳ ସ୍ଥାନରେ ।

ସେ ଅନନ୍ତରେ ପାରିଜାତ କହିଲା ବଚନ
ବୋଇଲା ସପତ ଦ୍ୱୀପ ମହୀ ଶୈଳ ବନ ।
ସପତ ସ୍ୱର୍ଗ ସପତ ପାତାଳ ସହିତେ
ବ୍ରହ୍ମଲୋକ ଆଦି କରି ଲୋକ ଅଛି ଯେତେ ।
ସେ ସମସ୍ତେ ପ୍ରଜାପତି କଲେ ବିରଚିତ
ସେ ପୁଣି ହୁଅଇ ଯାର ଲୋମକୂପେ ସ୍ଥିତ ।
ତାହାଙ୍କର ନାମ ମହା ବିରାଟ ପୁରୁଷ
ଶ୍ରୀକୃଷ୍ଣଙ୍କରଟି ସେହି ଏକ ଷୋଡ଼ାଶାଂଶ ।
ଏମନ୍ତ ପ୍ରଭୁଙ୍କୁ ସ୍ଥିର ଗୋପାଳ ଯୁବତୀ
ମାଧବୀ କେମନ୍ତେ ନିନ୍ଦୁଅଛି ଗୁଢ଼ ଖ୍ୟାତି ।
ତାହା ଶୁଣିଣ ମାଧବୀ ବୋଇଲା ମୁଁ ଯାହା
କହୁଛି ଗୋପୀଏ ବୁଝି ନ ପାରନ୍ତି ତାହା ।
ସେ ଧକାଶୁ ନାନାମତେ ବିଗ୍ଭରନ୍ତି ବସି
ଆହେ ଉଦ୍ଧବ ମୁଁ ପୁଣି ଏକେ ଅବିଶ୍ୱାସୀ ।
ଶ୍ରୀକୃଷ୍ଣଙ୍କୁ ନିନ୍ଦାକରି କହିବାକୁ ମୋର
ମନରେ କରୂପେ ଅବା ହୁଅନ୍ତା ବିଗ୍ଭର ।
ମହୀଭାର ହରିବାକୁ ପ୍ରଭୁ ନାରାୟଣ
ଜନମି ଅଛନ୍ତି ମର୍ତ୍ତ୍ୟ ଲୋକରେ ବହନ ।
ତାହାଙ୍କର ସ୍ୱରୂପକୁ ବ୍ରହ୍ମାଦି ଦେବତା
ଜାଣି ନ ପାରନ୍ତି ବହୁକାଳ କରି ଚିନ୍ତା ।
ମୁଁ ଅବା ତାହାଙ୍କୁ ଚିହ୍ନି ପାରିବ କପରି
କିନ୍ତୁ ବୋଲୁଅଛି ସେହି ସର୍ବମୟ ହରି ।
ତାହାଙ୍କର ରୂପଗୁଣ ଶ୍ରୁତି ଅବିଦିତ
ଅନିର୍ବଚନୀୟ ସର୍ବତତ୍ତ୍ୱ ସମନ୍ୱିତ ।
ତାହାଙ୍କୁ ମୁଁ ନିନ୍ଦା ଅବା କରିବ କେମନ୍ତେ
ନ ବୁଝି ଗୋପିକାମାନେ ବୋଲୁଛନ୍ତି ମୋତେ
ଏହିରୂପେ ଗୋପୀଙ୍କର ବଚନକୁ ଶୁଣି
ଭକ୍ତିରେ ବିହ୍ୱଳ ହୋଇ ଉଦ୍ଧବ ସେକ୍ଷଣି ।
ମୂର୍ଚ୍ଛିତ ହୋଇଣ ମହୀ ଉପରେ ପଡ଼ିଲା
ଶ୍ରୀକୃଷ୍ଣ ସୁମରି କେତେ ରୋଦନ ସେ କଲା ।
ସେ ଅନନ୍ତ ବୋଇଲେ ଏହି ଭାରତବର୍ଷରେ
ଧନ୍ୟ ଅଟେ ଜମ୍ବୁଦ୍ୱୀପ ଦ୍ୱୀପଙ୍କ ମଧ୍ୟରେ ।
ଏ ସ୍ଥାନରେ ପୁଣ୍ୟକର୍ମ କରିବ ଯେ ନର
ଅନ୍ୟସ୍ଥାନେ ଫଳଭୋଗ ହୁଅଇ ତାହାର ।
ଗୋପୀ ପାଦପଦ୍ମ ଧୂଳି ପଡ଼ିଣ ପବିତ୍ର
ହୋଇଅଛି ବସୁମତୀ ଏହିଠାରେ ମାତ୍ର ।

ଆବର ଗୋପିକାଗଣ ନାରୀଙ୍କ ମଧ୍ୟରେ
ଧନ୍ୟ ଅଟନ୍ତି ବୋଲି ମୁଁ ଭାବୁଛି ମନରେ ।
ଯେଣୁ ପ୍ରତିଦିନ ରାଧାଦେବୀଙ୍କ ଚରଣ
ପୂର୍ବ ଭାଗ୍ୟବଳେ କରୁଅଛନ୍ତି ଦର୍ଶନ ।
ଷାଠିଏ ବରଷ ତପ କରି ପ୍ରଜାପତି
ସେ ପାଦକୁ ଥରେ ଦେଖି ନ ପାରି ଅଛନ୍ତି ।
ଗୋଲୋକ ବାସିନୀ ଦେବୀ କୃଷ୍ଣ ପ୍ରାଣେଶ୍ୱରୀ
ଶ୍ରୀଦାମ ଶାପରେ ଛନ୍ତି ମର୍ତ୍ତ୍ୟେ ଅବତରି ।
ବ୍ରହ୍ମା ବିଷ୍ଣୁ ଶିବ ଆଦି କୃଷ୍ଣ ଭକ୍ତ ଯେତେ
ରାଧାଙ୍କ କଳାରେ ତୁଲ୍ୟ ନୁହନ୍ତି ସମସ୍ତେ ।
ଯୋଗୀଶ୍ୱର ସଦାଶିବ ଶ୍ରୀକୃଷ୍ଣ ଭକତି
କିଞ୍ଚିତ ମାତ୍ରରେ ଜ୍ଞାନ କରିପାରିଛନ୍ତି ।
ରାଧା ଆଦି ଗୋପୀଗଣ ସେହି ପ୍ରକାରେ
ଜାଣି ଅଛନ୍ତି କିଞ୍ଚିତ ଅଧିକ ଭାବରେ ।
ସନତକୁମାର ମୁନି ଜାଣନ୍ତି କିଞ୍ଚିତେ
ତହୁଁ ଅଧିକ ହୋଇଣ ନାହିଁ କେ ଜଗତେ ।
ସେ ଗୋପୀଙ୍କ ସଙ୍ଗେ ଯାହା ଦେଖାହେଲି ମୁହିଁ
ମୋଠାରୁ ଅଦୃଷ୍ଟବନ୍ତ ହୋଇ କେହି ନାହିଁ ।
ଏବେ ମନେ ହେଉଅଛି ମଥୁରା ନ ଯିବି
ଏଠାରେ ରହି ଗୋପୀଙ୍କୁ ସେବା କରୁଥିବି ।
ତାହା ଶୁଣି କଳାବତୀ ବୋଇଲେ ମୁ ଯାହା
କହୁଛି ଶୁଣ ଉଦ୍ଧବ ମନ ଦେଇ ତାହା ।
ପିତୃଙ୍କ ମାନସୀ କନ୍ୟା ଆମ୍ଭେ ତିନିଜଣ
ଆମ୍ଭର ଚରିତ ଏବେ କର ହେ ଶ୍ରବଣ ।
ଜନକ କାମିନୀ ଶୈଳପତ୍ନୀ ସେନାସତୀ
ଆବର ମୁଁ ବୃଷଭାନୁଙ୍କର ପ୍ରିୟବତୀ ।
ଦିନେ ଆମ୍ଭେ ଶ୍ରୀହରିଙ୍କ ଦର୍ଶନ ଇଚ୍ଛାରେ
ପ୍ରବେଶିଲୁ ଶ୍ୱେତଦ୍ୱୀପ କ୍ଷୀରୋଦ ସାଗରେ ।
ସନତକୁମାର ମୁନି ଅଳ୍ପକ୍ଷଣ ଅନ୍ତେ
ମିଳିଲେ ଆମ୍ଭର ପାଶେ ଯାଇଣ ତ୍ୱରିତେ ।
ତାଙ୍କୁ ଦେଖି ଆମ୍ଭେମାନେ ତଳୁ ନ ଉଠିଲୁ
ଗର୍ବିତ ଭାବରେ କେହି ପ୍ରଣାମ ନ କଲୁ ।
ତାହା ଜାଣି ମୁନିବର କଲେ ମହାକୋପ
ବୋଇଲେ ତୁମ୍ଭେ ସମସ୍ତେ ଘେନ ଆମ୍ଭ ଶାପ
ଗର୍ବିତ ପଣରେ ମୋତେ ଆମାନନା କଲ
ସେ ଘେନ ଶାପ ଘେନିବା ପାଇଁ ଯୋଗ୍ୟହେଲ

ଏ ମର୍ତ୍ତ୍ୟ ଲୋକରେ ରାଜାଙ୍କର ପତ୍ନୀ ହୋଇ
ରହିବ ସମସ୍ତେ ଆଉ ସ୍ୱର୍ଗକୁ ନ ଯାଇ ।
ଏମନ୍ତ ବୋଲିଣ ମୁନି ପୁଣି ଶାନ୍ତ ହେଲେ
ଦୟା କରିଣ ଆମ୍ଭଙ୍କୁ ବର ଦେଇଗଲେ ।
ବୋଇଲେ ବିଷ୍ଣୁ ଅଂଶରେ ଜାତ ହିମାଳୟ
ଅଟନ୍ତି ସେ ନାନାବିଧ ରତ୍ନର ଆଳୟ ।
ଜ୍ୟେଷ୍ଠ ଭଗିନୀ ମେନକା ତାଙ୍କ ପତ୍ନୀ ହେବେ
ପାର୍ବତୀ ଦେବୀ ତାହାଙ୍କଠାରୁ ଜନମିବେ ।
ଦ୍ୱିତୀୟା ଭଗିନୀ ହେବେ ଜନକ କାମିନୀ
ତାହାଙ୍କ ଦୁହିତା ସୀତା ହୋଇବେଟି ପୁଣି ।
ବୃଷଭାନୁ ପତ୍ନୀ ହେବେ ତୃତୀୟା ଭଗିନୀ
ରାଧାଦେବୀ ବୋଲାଇବେ ତାଙ୍କର ନନ୍ଦିନୀ ।
ଶ୍ରୀଦାମାଙ୍କ ଶାପଯୋଗେ ମର୍ତ୍ତ୍ୟେ ଅବତାର
ହେବ କେତେକାଳ ପାଏ ରାଧା ଦେବୀଙ୍କର ।
କଳାବତୀ ବୃଷଭାନୁ କନ୍ୟା ସହିତରେ
ଯିବେ ଦୁହେଁ ଶରୀର ତେଜି ଗୋଲୋକରେ ।
ମେନକା ଜନକ ପତ୍ନୀ ଦୁହେଁ ଦେହପରେ
ଅନ୍ତଃକାଳେ ପ୍ରବେଶିବେ ବୈକୁଣ୍ଠ ନଗରେ ।
ଶାପ ସକାଶରୁ ତୁମ୍ଭେ ସମ୍ପଦ ପାଇବ
ସନ୍ଦେହ ଏଥିରେ କେବେ ନାହିଁ ଜାଣ ଲବ ।
ବିନା ବିପତ୍ତିରେ ନିଜ ମହିମା କାହାର
ପ୍ରକାଶ ହୁଅଇ ନାହିଁ ବୋଲି ମନେକର ।
ଆହେ ଉଦ୍ଧବ ପାଇଣ ବିଷ୍ଣୁ ଦରଶନ
କର୍ମ କ୍ଷୟ ହେଲା ଆମ୍ଭମାନଙ୍କର ଜାଣ ।
ସନତ୍କୁମାରଙ୍କର ମୁଖରୁ ସେଠାରେ
ଶୁଣିଲୁ ପରମ ଜ୍ଞାନ ଆମ୍ଭେ ଏକାନ୍ତରେ ।
ଯେ ଅନ୍ତେ ତୁଳସୀ ଦେବୀ ବୋଇଲେ ଶ୍ରୀହରି
ଆତ୍ମା ସ୍ୱରୂପରେ ସ୍ଥିତ ଅଟନ୍ତି ସବୁରି ।

ମନୁରୂପେ ବିଦ୍ୟମାନ ବ୍ରହ୍ମା ପ୍ରଜାପତି
ବୁଦ୍ଧି ସ୍ୱରୂପରେ ବହ୍ନି ଅଛନ୍ତି ପ୍ରକୃତି ।
ପରମ ଆତ୍ମା ଶ୍ରୀକୃଷ୍ଣ ସକଳ ଦେହରେ
ସୁଖ ଦୁଃଖ ଭୋଗ କରୁଛନ୍ତି ନିରନ୍ତରେ ।
ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଚକ୍ଷୁ ସ୍ୱରୂପରେ ରହି
ସେବା କରୁଛନ୍ତି ନିତି ଆତ୍ମାକୁଟି ଯେହି ।
ରସନାରେ ସରସ୍ୱତୀ ଚର୍ମେ ବସୁନ୍ଧରା
ରହିଛନ୍ତି ପ୍ରାଣୀଙ୍କର ଆଜୀବନ ସାରା ।
ସମସ୍ତେ ଯେ ପରମାତ୍ମା ଶ୍ରୀକୃଷ୍ଣଙ୍କୁ ନିତି
ଉପାସନା କରିବାରେ ମନ ଦେଇଥାନ୍ତି ।
ଅନ୍ତର୍ଯ୍ୟାମୀ ପ୍ରଭୁ ଯେହି ପରମ ପୁରୁଷ
ତାଙ୍କଠାରୁ ଜାତ ହୁଏ କୋଟି କୋଟି ବିଶ୍ୱ ।
କାଳିକା ବୋଇଲା ବାଳ ବୃଦ୍ଧ ଯୁବାଗଣ
ଆଉର ଯେତେକ ଦେବ ଗନ୍ଧର୍ବ ଚାରଣ
ସମସ୍ତେ ସେ ପରମାତ୍ମା ପ୍ରଭୁଙ୍କୁ ଜାଣନ୍ତି
ତ୍ରିଭୁବନେ କାହାର ଯେ ଅଜ୍ଞାତ ନୁହନ୍ତି ।
ଏବେ ରାଧା ଦେବୀଙ୍କର ଅବସ୍ଥାକୁ ଦେଖି
ପଡ଼ିଛନ୍ତି ଅଜ୍ଞାନରେ ଶୁଖାଇ ଶ୍ରୀମୁଖ ।
ଏହାଙ୍କର ପ୍ରବୋଧନା କରିବା ଉଚିତ
ଅଟେ ବୋଲିକରି ମୁହିଁ ଭାବୁଅଛି ଚିତ୍ତ ।
ତାହା ଶୁଣିଣ ଉଦ୍ଧବ ରାଧାଙ୍କୁ ଅନାଇ
ବୋଇଲେ ସୁସ୍ଥିର ଚିତ୍ତ ହୁଅ ମହାମାୟୀ ।
ଉଦ୍ଧବ ଅଟଇ ମୁହିଁ ଶ୍ରୀକୃଷ୍ଣ କଙ୍କର
ଉପସ୍ଥିତ ହୋଇଅଛି ତୁମ୍ଭ ଶ୍ରୀଗ୍ରମୁର ।
ମଥୁରାକୁ ଯିବି ଏବେ ଦିଅ ଅନୁମତି
ଅନୁଗ୍ରହ କରି ଘେନ ମୋହର ବିନତି ।
ଏରୂପେ କହି ଉଦ୍ଧବ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭାବି ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧାଙ୍କ ପ୍ରତି ସଖୀମାନଙ୍କ
ଉପଦେଶ କଥନେ ନାମ ଚତୁର୍ନବତିତମୋଽଧ୍ୟାୟଃ ।

—*—

# ପଞ୍ଚନବତିତମ ଅଧ୍ୟାୟ

## ରାଧିକାଙ୍କ ନିକଟରୁ ଉଦ୍ଧବଙ୍କର ବିଦାୟ ଗ୍ରହଣ

ନାରାୟଣ ବୋଇଲେ ହେ ଏଥି ଅନନ୍ତରେ
ଉଦ୍ଧବ ବଚନ ଶୁଣି ରାଧିକା ସତ୍ୱରେ ।
ଚେତନା ପାଇଣ ରତ୍ନ ଆସନେ ବସିଲେ
ଗୋପୀଗଣ ପାଶେ ରହି ସେବା କରୁଥିଲେ ।
ଉଦ୍ଧବଙ୍କୁ ରାଧି ଦେବୀ ବୋଇଲେ ଆପଣ
ମଥୁରାପୁରକୁ ଏବେ କରନ୍ତୁ ଗମନ ।
ମୁଁ କହିବା କଥାସବୁ ଶ୍ରୀକୃଷ୍ଣଙ୍କୁ କହି
ପଠାଇବ ମୋ ପାଶକୁ ପାସୋର ନ ଦେଇ ।
ଶ୍ରୀକୃଷ୍ଣ ପରି ପତିଙ୍କୁ ଛାଡ଼ି କେଉଁ ସ୍ତ୍ରୀ
ରହି ପାରିବ ସଂସାରେ ଜୀବନକୁ ଧରି ।
ଯେତେପ୍ରବୋଧନା ମୋତେଦେବତୁମ୍ଭେ ଏଥେ
ପ୍ରବେଶ ନୋହିବ ତାହା ମୋର କର୍ଣ୍ଣପଥେ ।
ପତି ବିନା କାମିନୀର ଜୀବନ ନିଷ୍ଫଳ
ଗତି ମୁକ୍ତି ଦାନକର୍ତ୍ତା ପତିଟି କେବଳ ।
ନବ ସଙ୍ଗମରେ ଯେଉଁ ପ୍ରେମ ସୁଦୁର୍ଲ୍ଲଭ
କେବେ ହେଲେ ମୋ ମନରୁ ପାସୋର ନ ଯିବ
ପ୍ରତିଦିନ ରଜନୀରେ ନିଦ୍ରା ତ୍ୟାଗକରି
ଶୋକ କରୁଅଛି ତାଙ୍କ ଗୁଣକୁ ସୁମରି ।
ତୁମ୍ଭେ ଏବେ ମୋତେ ଶୋକ ସମୁଦ୍ରରୁ ପାର
କରିଣ ଅଶେଷ ଧର୍ମଫଳ ଲାଭ କର ।
ଶ୍ରୀକୃଷ୍ଣ ବିରହ ବ୍ୟଥା ମୋହବିନା କେହି
ଜାଣିବ ବୋଲି ମନରେ ବିଶ୍ୱାସ ନୁହଇ ।
ମୋପରି ଅଭାଗ୍ୟବତୀ କାମିନୀ ଜଗତେ
ନାହିଁ କେଉଁଠାରେ ଜାଣ ଆହେ ମହାମତେ
ମନର ବ୍ୟଥାକୁ କେହି କର୍ଣ୍ଣରେ ଶୁଣିଲେ
ବିଶ୍ୱାସ କରିବ ନାହିଁ କେତେବେଳେ ହେଲେ
ଯେଉଁ ଶ୍ରୀକୃଷ୍ଣଙ୍କ ପାଦ ମୁଖ ଦରଶନ
କରିବା ମାତ୍ରେ ହରଷ ହୁଏ ମୋର ମନ ।
ଆଉର ଯାହାର ନାମ କରନ୍ତେ ଶ୍ରବଣ
ଉଲ୍ଲସିତ ହୋଇ ଉଠୁଅଛି ପଞ୍ଚପ୍ରାଣ ।

ବିଧାତାର ବିଧାତା ଯେ ପ୍ରଭୁ ଦୟାମୟ ।
ଯାହାଙ୍କୁ ସେବିଲେ ଲୋକ ହୁଅଇ ନିର୍ଭୟ
ସେ ପ୍ରଭୁଙ୍କୁ ଛାଡ଼ି ମୁହିଁ ବଞ୍ଚିବି କିପରି
ରହିଅଛି ତାଙ୍କ ପାଶେ ଜୀବନ ମୋହରି ।
ତାହାଙ୍କ ଆଜ୍ଞାରେ ଚଳୁଅଛି ଏ ଜଗତ
ଦେବତାଏ ତାଙ୍କଠାରୁ ହୋଇଛନ୍ତି ଜାତ ।
ହେ ଉଦ୍ଧବ ତୁମ୍ଭେ ଏବେ ମଥୁରାପୁରକୁ
ଯାଇ ବେଗେ ଦରଶନ କର ଶ୍ରୀକୃଷ୍ଣଙ୍କୁ ।
ମୁଁ ପାପିନୀ ବିରହରେ ହୋଇଣ ଦୁଃଖିତା
ଦିନ ନେବି ତାଙ୍କ ପାଦପଦ୍ମ କରି ଚିନ୍ତା ।
ମୋହର ମାନସ ଦୁଃଖ ଜାଣି ଭଗବାନ
ଦେବେ ଅବା ଥରେ ହେଲେ ଶ୍ରୀମୁଖ ଦର୍ଶନ
ଯେଉଁ ମୁଖ ଦେଖିବାକୁ ବ୍ରହ୍ମାଆଦି କରି
ଦେବତାଏ ସବୁବେଳେ ବସିଥାନ୍ତି ଝୁରି ।
ଆଉର ମୁନି ମାନବ ଦାନବ କିନ୍ନର
ଯାହାଙ୍କ ଦର୍ଶନ ଲାଗି ହୁଅନ୍ତି ଆତୁର ।
ଯାହାଙ୍କ ଆଦେଶ ମାନି ଦେବୀ ବସୁମତୀ
ସ୍ଥାବର ଜଙ୍ଗମ ସମସ୍ତଙ୍କୁ ବହିଛନ୍ତି ।
ସେ ପ୍ରଭୁଙ୍କୁ ମୁହିଁ କେଉଁ ସମ୍ପଦ ହେତୁରେ
ପାସୋରି ପାରିବି ମୋତେ କହ ତୁମ୍ଭେ ବାରେ
ଚନ୍ଦ୍ର ସୂର୍ଯ୍ୟ ଯାହାଙ୍କର ଆଜ୍ଞା ପରକାରେ
ଭ୍ରମୁଛନ୍ତି ଦିନରାତି ଆକାଶ ମଧ୍ୟରେ ।
ଯାହାଙ୍କ ଆଦେଶ ପାଇ ସପତ ସାଗର
ରହିଛନ୍ତି ନ ଲଙ୍ଘିଣ କୂଳ ଯେ ଯାହାର ।
ତାହାଙ୍କୁ କିରୂପେ ମୁହିଁ ପାସୋରିଣ ହେଲେ
କେଉଁ ସମ୍ପଦ ଦେଖିଣ ରହିବି ନିଶ୍ଚଳେ ।
ଯେତେ ପରକାରେ ମୋତେ ପ୍ରବୋଧି କହିବ
କଦାପି ମାନସ ମୋର ସ୍ଥିର ନ ହୋଇବ ।
ରାଧାଙ୍କ ମୁଖରୁ ଏହା ଶୁଣିଣ ଉଦ୍ଧବ
ନିବେଦନ କଲେ ସେ କାଳେ ଛାଡ଼ି ଧୈର୍ଯ୍ୟଭାବ

ଦେବୀଙ୍କ ବିରହ ଦୁଃଖ ଦେଖିକରି ସେହି
ଶୋକ ସମ୍ବରଣ କରି ନ ପାରିଲେ ରହି ।
ଏହିଠାରେ ଉଦ୍ଧବଙ୍କ ବିଦାୟ ଗ୍ରହଣ
କହିଲି ମୋହନ ମୋହନ ଗୀତରେ ଭାବଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକାଙ୍କନିକଟରୁ ଉଦ୍ଧବଙ୍କର ବିଦାୟ ଗ୍ରହଣ କଥନେ ନାମ ପଞ୍ଚନବତିତମୋଽଧ୍ୟାୟଃ ।

—ଃ—ଃ—

# ଷଷ୍ଠ ନବତିତମ ଅଧ୍ୟାୟ

## ରାଧା ଦେବୀଙ୍କ ସହିତ ଉଦ୍ଧବଙ୍କର ପୁନଃ କଥୋପକଥନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଉଦ୍ଧବ ହୋଇଲେ ରାଧା ବିରହେ କାତର ।
କଷ୍ଟେ କଷ୍ଟେ ଧୈର୍ଯ୍ୟଲାଭ କଲେ କ୍ଷଣକରେ
ସେ ଅନନ୍ତ ନମିଣ ରାଧା ଦେବୀଙ୍କ ପଦରେ ।
ମଥୁରାକୁ ଯିବାପାଇଁ ମାଗିଲେ ମେଲାଣି
ତା ଦେଖି ମାଧବୀ ତାଙ୍କୁ କହିଲେ ସେକ୍ଷଣି ।
ବୋଇଲେ ଆହେ ଉଦ୍ଧବ ରହି ଏ କ୍ଷଣ
ମୁଁ ଯାହା କହୁଛି ଏବେ ସ୍ଥିରମନେ ଶୁଣ ।
ନିଗୂଢ଼ ପରମ ଜ୍ଞାନ ପାଇବା ସକାଶେ
ଇଚ୍ଛା ଥିଲେ ବସି ରାଧା ଦେବୀଙ୍କର ପାଶେ ।
ଆମୂଳ କରି ସମସ୍ତ ପଚ୍ଛର ଉତ୍ତରେ
ବୁଝି ସକଳ ବିଷୟ ଆହେ ମହାମତେ ।
ଏରୂପେ ଉଦ୍ଧବ ଶୁଣି ଗୋପୀର ବଚନ
ବିନୟେ ରାଧାଦେବୀଙ୍କୁ ପଚାରିଲେ ପୁଣ ।
ବୋଇଲେ ଗୋ ଦେବୀ ଏହି ସଂସାର ମଧ୍ୟରେ
ଥିବାର ପରି ଜୀବ ଭ୍ରମେ ନିରନ୍ତରେ ।
କର୍ମ ଅନୁସାରେ ଶୁଭାଶୁଭ ଫଳମାନ
ଭୋଗ କରୁଥାଏ ଯଥା ସମୟରେ ଜାଣ ।
ଯେତେଯେତେ ସ୍ୱର୍ଗରତ୍ନ ଦେବ ତୁମେମୋତେ
ଗୋଟିଏ ହେଲେ ନ ଯିବ ମୋହର ସଙ୍ଗତେ ।
କେବଳ ତୁମ୍ଭ ଦର୍ଶନ ଫଳ ଘେନିକରି
ହୋଇଅଛନ୍ତି ଯିବି ମୁହିଁ ଗୋଲୋକ ନଗରୀ ।
ଭବସାଗର ତାରଣେ ଶ୍ରୀକୃଷ୍ଣ ଆବର
ତୁମ୍ଭେ ଅଟ ମହାମାୟେମୁଖ୍ୟ କର୍ଣ୍ଣଧାର ।
କାଣ୍ଡିତ ଜ୍ଞାନ ପ୍ରଦାନ କର ଦୟାମୟୀ
ଯହିଁରେ ଉଦ୍ଧାର ହେବ ସଂସାରରୁ ମୁହିଁ ।
ଦେବତା ସିଦ୍ଧ ଦାନବ ମାନବ କିନ୍ନର
ପନ୍ନଗ କୀଟ ପତଙ୍ଗ ସିଦ୍ଧ ବିଦ୍ୟାଧର ।
ଏ ସମସ୍ତ ଯେଉଁକାଳେ ଗତିକୁ ଲଭନ୍ତି
ବୁଝାଇଣ ତାହା ମୋତେ କହ ମହାସତୀ ।
ଉଦ୍ଧବଙ୍କଠାରୁ ଦେବୀ ଶୁଣି ଏ ବଚନ
ବସ୍ତ୍ର ଅଞ୍ଚଳରେ କରି ଲୋତକ ମାର୍ଜନ ।
ବୋଇଲେ ହେ ଭକ୍ତବର ମାଧବୀ କଥାରେ
ଭ୍ରମି ତୁମ୍ଭେ ପଚ୍ଛରୁଛ ମୋତେ ଏ କଥାରେ ।
ସ୍ୱଭାବରେ ସ୍ତ୍ରୀଜାତି ଅଟଇ ତ ମୁହିଁ
ତତ୍ତ୍ୱଜ୍ଞାନ କି ରୂପରେ କହିବି ବତାଇ ।
ଶୁଦ୍ଧ ଅଟେ ଯେଉଁ କାଳ ଗତିଟି ତାହାକୁ
ଜାଣନ୍ତି କେବଳ ହରି କହିଲି ତୁମ୍ଭଙ୍କୁ ।
ମାତ୍ର ଶ୍ରୀକୃଷ୍ଣଙ୍କଠାରୁ ରାସମଣ୍ଡଳରେ
ଶୁଣିଥିଲି ଯାହା କହୁଅଛି ଶୁଣ ବୀରେ ।
ଜଗତ ଈଶ୍ୱର ପ୍ରଭୁ କାଳର ଶାସକ
ନିର୍ଗୁଣ ନିରୀହ ସର୍ବଜୀବଙ୍କ ନାୟକ ।
ଯାହାଙ୍କ ବିନା ଶରୀର କ୍ଷଣେମାତ୍ର ହେଲେ
ସ୍ଥିର ହୋଇ ରହି ନ ପାରଇ ମହୀତଳେ ।
କାଳରୂପୀ ଅଟନ୍ତି ଯେ ସେହି ନରହରି
ତାଇ ସଂସାରୁ ଲୋକ ତାଙ୍କୁ ସେବାକରି ।
ଶ୍ରୀହରିଙ୍କ ଭକ୍ତ ବିନା ଅନ୍ୟ ଲୋକଙ୍କର
ଆୟୁଷ ହରନ୍ତି ସେହି ଜଗତ ଈଶ୍ୱର ।
ବ୍ରହ୍ମାଙ୍କ ମାନସିକ ପୁତ୍ର ଚାରିଜଣ
କପିଳ ସନକ ସନନ୍ଦ ଯେ ସନାତନ ।
ସେମାନେ କେବଳ ସ୍ଥିର ଆୟୁଷ ଅଟନ୍ତି
ନ ଥାଏ କାଳ ସକାଶୁ ତାହାଙ୍କର ଭୀତି ।

ଆବର ଜ୍ଞାନ ପ୍ରବଳ ରୁଦ୍ରଗଣଙ୍କର
ନ କରଇ କାଳ କେବେ ଜୀବନ ସଂହାର ।
ଯେମାନେ ଶ୍ରୀକୃଷ୍ଣ ଭକ୍ତ ଅଟନ୍ତି ସମସ୍ତେ
ନୁହନ୍ତି ତାଙ୍କ ସମାନ ବଇଷ୍ଣବ ଯେତେ ।
ବେଦ ବେଦାଙ୍ଗ ଶାସ୍ତ୍ରଜ୍ଞ ସମସ୍ତ ଅଟନ୍ତି
ସବୁବେଳେ ମାନସିକ ପୂଜା କରୁଥାନ୍ତି ।
ସନକ ସନନ୍ଦ ସନାତନ ଯେ ତୃତୀୟ
ସନତ୍କୁମାର ଯେ ଚତୁର୍ଥଙ୍କ ନାମଧେୟ ।
ଏମାନଙ୍କୁ ପ୍ରତିଦିନ ସୁମରଣା କଲେ
ତୀର୍ଥସ୍ନାନ ଫଳଲାଭ ହୁଅଇଟି ଭଲେ ।
ମାର୍କଣ୍ଡେୟ ମୁନି ପୂର୍ବେ ଥିଲେ ଅଳ୍ପାୟୁଷ
ତାଙ୍କ ଜୀବନର କାଳ ଦଶଟି ବରଷ ।
ତଥାପି ସେ ହରିଭକ୍ତି ଯୋଗରେ ସହଜେ
ସପତ କଳ୍ପ ପର୍ଯ୍ୟନ୍ତ ଜୀଇଛନ୍ତି ନିଜେ ।
ବୋଢ଼ୁ ପଞ୍ଚଶିଖ ଆଦି ସପ୍ତ ଋଷିଗଣ
ହରିଙ୍କୁ ସେବା କରନ୍ତି ଛାଡ଼ି ଅନ୍ୟ କର୍ମ ।
ଯେ ସକାଶୁ ଶତକଳ୍ପ ଆୟୁଷକୁ ପାଇ
ଅଛନ୍ତି ବ୍ରହ୍ମ ଲୋକରେ ମହାସୁଖେ ରହି ।
ହନୁମାନ ବଳି ବ୍ୟାସ ବିଭୀଷଣ କୃପ
ଅଶ୍ୱତ୍ଥାମା ପର୍ଶୁରାମ ଜାମ୍ବବ ସେ ରୂପ ।
ଶ୍ରୀହରିଙ୍କୁ ସୁମରଣା କରି ନିଶିଦିନ
ସମସ୍ତେ ପାଇଅଛନ୍ତି ସୁଚିର ଜୀବନ ।
ଆହେ ଉଦ୍ଧବ ଜଗତେ ଯେଉଁମାନେ ନିତି
ସମର୍ପି ଅଛନ୍ତି ହରି ଶ୍ରୀଚରଣେ ମତି ।
ସେମାନେ ଅବଶ୍ୟ ଶତ ଆୟୁଷକୁ ପାଇ
ଯେ ଯାହା ସ୍ଥାନରେ ମହା ସୁଖେଛନ୍ତି ରହି
ଯେଉଁମାନେ ମୂର୍ଖପଣେ ନ ସେବି ହରିଙ୍କୁ
ବିଷୟ ଭୋଗରେ ନେଉଥାନ୍ତି ସମୟକୁ ।
ଆପଣା ଇଚ୍ଛାରେ ସେହି ବିଷପାନ କରି
ବୃଥା ପ୍ରୟାସରେ ଶାନ୍ତି ହେଉଥାନ୍ତି ମରି ।
ବିପଦ କାଳରେ ଶ୍ରୀହରିଙ୍କ ବିନା କେହି
ବନ୍ଧୁ ହୋଇ ଜଗତରେ ନ ମିଳଇ କାହିଁ ।
ସେ ସକାଶୁ ସାଧୁଜନେ ଦିବସ ନିଶାରେ
ମନ ଦେଇଥାନ୍ତି ଶ୍ରୀହରିଙ୍କ ଚରଣରେ ।
ଏବେ ଶୁଣ କାଳଗତି କଥା ମନ ଦେଇ
ଯାହା ମୋର ଜ୍ଞାନଲଭ୍ୟ ପୂର୍ବୁ ଅଛି ହୋଇ

ସବୁଠାରୁ ସ୍ଥୂଳତର ବିରାଟ ପୁରୁଷ
ତାଙ୍କ ଲୋମମୂଳେ ସ୍ଥିତ କୋଟି କୋଟି ବିଶ୍ୱ,
ସବୁଠାରୁ ସୂକ୍ଷ୍ମରୂପ ଅଟେ ପରମାଣୁ
ସାମାନ୍ୟ ଚକ୍ଷୁର ଲକ୍ଷ୍ୟ ନୁହଇ ସେ ତେଣୁ ।
ତହିଁରୁ ଦୁଇଟି ମିଶି ରେଣୁ ଜାତହୁଏ
ତିନୋଟି ମିଶ୍ରିତ ହେଲେ ତ୍ରିଣୁକ ବୋଲାଏ ।
ସେହି ନିଅଣୁକ ତିନିଗୋଟି ମିଶିକରି
ତ୍ରୁଟି ଜାତ ହୁଏ ଆହେ ଉଦ୍ଧବ ସେପରି ।
ଶତେକ ତ୍ରୁଟିରେ ଏକ ବେଧ ହୁଏ ପୁଣ
ତିନିଗୋଟି ବେଧ ଏକ ଲବର ପ୍ରମାଣ ।
ତିନି ଲବରେ ନିମେଷ ନିମେଷେ କ୍ଷଣ
ପଞ୍ଚକ୍ଷଣ ଯୋଗେ କାଷ୍ଠା ହୁଏ ବୋଲି ଜାଣ ।
ଦଶ କାଷ୍ଠାରେ ଗୋଟିଏ ଲଘୁ ଜାତ ହୁଏ
ପଞ୍ଚଦଶ ଲଘୁରେଟି ଦଣ୍ଡ ବୋଲାଯାଏ ।
ଦୁଇଦଣ୍ଡ ଯୋଗହେଲେ ବୋଲାଏ ମୁହୂର୍ତ୍ତ
ସେହିହୁଏ ବୋଲି ଜାଣ ଆହେ ଜ୍ଞାନବନ୍ତ ।
ଷାଠିଏ ଦଣ୍ଡ ଯୋଗରେ ହୁଏ ଏକ ତିଥି
ତିଥିର ଅଷ୍ଟମାଂଶକୁ ପ୍ରହର ବୋଲନ୍ତି ।
ଚାରି ଚାରି ପ୍ରହରରେ ଦିନ ରାତ୍ର ହୁଏ
ପଞ୍ଚଦଶ ଦିନ ରାତି ପକ୍ଷ ନାମ ବହେ ।
ଶୁକ୍ଳ କୃଷ୍ଣ ଦୁଇପକ୍ଷେ ହୁଏ ଏକମାସ
ଦୁଇଟି ମାସରେ ଏକ ଋତୁର ପ୍ରକାଶ ।
ଛଅ ଋତୁରେ ବରଷ ହୁଅଇ ଗୋଟିଏ
ସମ୍ବତ୍ସର ଅବ୍ଦ ବୋଲି ନାମକୁ ସେ ବହେ ।
ବସନ୍ତ ଗ୍ରୀଷ୍ମ ବରଷା ଶରତ ହେମନ୍ତ
ଶିଶିର ନାମେ ଋତୁଏ ଅଟନ୍ତି ବିଖ୍ୟାତ ।
ବରଷ ମଧ୍ୟ ଅଟଇ ପାଞ୍ଚ ପରକାର
ଶୁଣ କହୁଅଛି ଏବେ ନାମ ତାହାଙ୍କର ।
ପରି ବତ୍ସର ଯେ ଇଦାବର୍ଷ ସମ୍ବତ୍ସର
ଅନୁବର୍ଷ ପୁଣି ଉଦା ବରଷ ଆବର ।
ଗୋଟିଏ ବର୍ଷରେ ହୁଏ ବାରଗୋଟି ମାସ
ଶୁଣ ସେମାନଙ୍କ ନାମ କରିବା ପ୍ରକାଶ ।
ବୈଶାଖ ଜ୍ୟେଷ୍ଠ ଆଷାଢ଼ ଶ୍ରାବଣ ଆବର
ଭାଦ୍ରବ ଆଶ୍ୱିନ କାର୍ତ୍ତିକ ଯେ ମାର୍ଗଶିର ।
ପୌଷ ମାଘ ଫାଲଗୁନ ଚୈତ୍ର ଏହିପରି
ବାରମାସେ ବରଷକେ ଯାଉଅଛି ସରି ।

ବଇଶାଖଠାରୁ ଦୁଇ ଦୁଇଟି ମାସରେ
ବସନ୍ତାଦି ଏକ ଏକ ଋତୁ ଭୋଗ କରେ ।
ମାଘ ଆରମ୍ଭରୁ ଯେବେ ପୂରେ ଛଅମାସ
ଉତ୍ତର ଅୟନ ହୁଏ ସେହିଠାରେ ଶେଷ ।
ଶ୍ରାବଣଠାରୁ ଯେ ପୌଷ ପୂର୍ଣ୍ଣିମା ପର୍ଯ୍ୟନ୍ତ
ଦକ୍ଷିଣାୟନ ନାମରେ ହୁଅଇ ବିଖ୍ୟାତ ।
ଉତ୍ତରାୟଣରେ ଦିନ ଅଧିକ ହୁଅଇ
ଦକ୍ଷିଣାୟନ ହୋଇଲେ ନିଶା ବୃଦ୍ଧି ପାଇ ।
ପକ୍ଷକରେ ଯେଉଁ ପଞ୍ଚଦଶ ଦିନ ଥାଏ
ତିଥି ନାମରେ ସେହିଟି ଅଭିହିତ ହୁଏ ।
ସେ ସବୁ ତିଥିର ନାମ ଶୁଣ ମନଦେଇ
ପ୍ରତିପଦା ଦ୍ୱିତୀୟା ଯେ ତୃତୀୟା ବୋଲଇ ।
ଚତୁର୍ଥୀ ପଞ୍ଚମୀ ଷଷ୍ଠୀ ସପ୍ତମୀ ପୁଣି
ଅଷ୍ଟମୀ ନବମୀ ପରେ ହୁଅଇ ଦଶମୀ ।
ସେ ଅନ୍ତରେ ଏକାଦଶୀ ଦ୍ୱାଦଶୀ ହୁଅଇ
ତ୍ରୟୋଦଶୀ ଚତୁର୍ଦ୍ଦଶୀ ତହିଁ ଦିନ ଦୁଇ ।
ଅମାବାସ୍ୟା ହୁଏ କୃଷ୍ଣପକ୍ଷ ଶେଷଦିନ
ଶୁକ୍ଳ ପକ୍ଷରେ ପୂର୍ଣ୍ଣିମା ବୋଲାଏ ସେ ଜାଣ ।
ପ୍ରତ୍ୟେକ ଦିନରେ ଏକ ନକ୍ଷତ୍ରକୁ ଭୋଗ
ହୋଇଥାଏ ଜାଣ ହେ ଉଦ୍ଧବ ମହାଭାଗ ।
ଅଠାଇଶ ଗୋଟି ଅଟେ ସଂଖ୍ୟା ଯେ ତାହାର
ନାମମାନ କହୁଅଛି ଶୁଣ ହୋଇ ସ୍ଥିର ।
ଅଶ୍ୱିନୀ ହିଜା କୃତ୍ତିକା ରୋହିଣୀ ଯେପରେ
ମୃଗଶିରା ଆର୍ଦ୍ରା ପୁନର୍ବସୁ ପୁଷ୍ୟା ଗତେ ।
ଅଶ୍ଳେଷା ମଘା ଆଉର ପୂର୍ବା ଫାଲ୍‌ଗୁନି
ଉତ୍ତରା ଫାଲ୍‌ଗୁନୀ ହସ୍ତା ଚିତ୍ରା ସ୍ୱାତୀ ଦେନି ।
ବିଶାଖା ଯେ ଅନୁରାଧା ଜ୍ୟେଷ୍ଠା ମୂଳା ତୁଲେ
ପୂର୍ବାଷାଢ଼ା ଉତ୍ତରାଷାଢ଼ାକୁ ଜାଣ ଭଲେ ।
ଶ୍ରବଣାଭିଜିତ ପରେ ଧନିଷ୍ଠା ନକ୍ଷତ୍ର
ଶତଭିଷା ପୂର୍ବଭାଦ୍ରପଦ ତାର ମିତ୍ର ।
ଉତ୍ତର ଭାଦ୍ରବପଦ ରେବତୀ ସହିତେ
ଅଷ୍ଟାବିଂଶ ଋକ୍ଷଭୋଗ ହୁଏ ଦିନଗତେ ।
ଏହାଙ୍କ ସହିତେ ଚନ୍ଦ୍ର ରହି ପ୍ରତିଦିନ
କରୁଛନ୍ତି ଆକାଶରେ ଗମନାଗମନ ।
ଶ୍ରବଣାର ଗୁପ୍ତାକୃତି ବୋଲି ଅଭିଜିତ
ସେ ସକାଶୁ ସତାଇଶ ନକ୍ଷତ୍ର ପ୍ରଶସ୍ତ ।

ଏମାନେ ଭାର୍ଯ୍ୟା ଅଟନ୍ତି ଚନ୍ଦ୍ରଙ୍କର ସର୍ବେ
ରେବତି ରହିଛନ୍ତି ସ୍ୱାମୀପାଶେ ପ୍ରୀତି ଭାବେ ।
ବସନ୍ତ କାଳରେ ଦିନେ ଦେବ ନିଶାକର
ଶ୍ରବଣାକୁ ନେଇ କ୍ରୀଡ଼ା କଲେ ନିରନ୍ତର ।
ସେ କଥାକୁ ଜାଣି ସବେ ହେବାରୁ କୁପିତ
ଚନ୍ଦ୍ରଙ୍କ ପାଶରେ ଗୁପ୍ତାକାର ଅବସ୍ଥିତ
ଶ୍ରବଣା କାମିନୀ ନିଜ ପିତାପାଶେ ଗଲା
ସେ ଦିନୁ ଗୁପ୍ତାର ନାମ ଅଭିଜିତ ହେଲା ।
ସେ ସକାଶୁ ଅଷ୍ଟାବିଂଶ ନକ୍ଷତ୍ର ଗଣନା
କରୁଛନ୍ତି ବିଜ୍ଞଜନେ ଆହେ ମହାମନା ।
ଏବେ ଯୋଗ କରଣର ନାମମାନ ଶୁଣ
ପ୍ରଥମେ ବିଷ୍କୁମ୍ଭ ପରେ ପ୍ରୀତି ଆୟୁଷ୍ମାନ ।
ସୌଭାଗ୍ୟ ଶୋଭନ ଅତିଗଣ୍ଡ ଯେ ସୁକର୍ମା
ଧୃତି ଶୂଳ ଗଣ୍ଡ ବୃଦ୍ଧି ଧ୍ରୁବ ଘାତ ନାମା ।
ହର୍ଷଣ ବଜ୍ର ଅସୃକ ବ୍ୟତିପାଦ ଶିବ
ବରୀୟାନ ପରିଘ ଯେ ସିଦ୍ଧ ସାଧ୍ୟ ଶୁଭ ।
ଶୁକ୍ଳ ବ୍ରହ୍ମ ଇନ୍ଦ୍ର ବୈଧୃତି ସହିତରେ
ଯୋଗଗଣ ଭୋଗହୁଏ ପ୍ରତ୍ୟେକ ଦିନରେ ।
ବବ ବାଳକ କୌଳବ ତୈତିଳ କରଣ
ଗର ବାଣିଜ୍ୟ ଶକୁନ ବିଷ୍ଟି ନାଗ ପୁଣ ।
ଚତୁଷ୍ପଦ କିଂସ୍ତୁଘ୍ନର ସହିତେ ସକଳ
ଦିନରେ କରଣ ଭୋଗହୁଏ ଯଥାକାଳ ।
ନରଙ୍କର ଶୁକ୍ଳପକ୍ଷ ପିତୃଙ୍କର ଦିନ
କୃଷ୍ଣପକ୍ଷରେ ରଜନୀ ହୁଅଇଟି ଜାଣ ।
ନରଙ୍କ ଉତ୍ତରାୟଣ କାଳେ ଦେବଙ୍କର
ଦିବସ ଭୋଗ ହୁଅଇ ବୋଲି ମନେକର ।
ଦକ୍ଷିଣାୟନରେ ନିଶା ହୁଏ ସେ ପ୍ରକାରେ
ଏହିପରି ବରଷକେ ଦିନ ରାତ୍ରି ସରେ ।
ମନ୍ୱନ୍ତର ଦିବ୍ୟଯୁଗ ଏକସ୍ତରି ହେଲେ
ଇନ୍ଦ୍ରଙ୍କ ଆୟୁଷ କାଳ ବୋଲାଏ ଏ ଭଲେ ।
ଚତୁର୍ଦ୍ଦଶ ଇନ୍ଦ୍ରଙ୍କର ସରିଲେ ଆୟୁଷ
ବ୍ରହ୍ମାଙ୍କର ଏକଦିନ ହୋଇଥାଏ ଶେଷ ।
ସେ ସମୟେ ଚନ୍ଦ୍ର ସୂର୍ଯ୍ୟ ନ କରନ୍ତି ଗତି
ବିଶ୍ୱ ପ୍ରଳୟ ହୁଅଇ ଆହେ ମହାମତି ।
ବ୍ରହ୍ମଲୋକରେ ନିବାସ କରଥାଏ ଯେହି
ସେ କେବଳ ଦିନରାତି ହେବାର ଜାଣଇ ।

ଏହିପରି ଶତେକବର୍ଷ ବ୍ରହ୍ମାଙ୍କର ଯେବେ
ଭୋଗହୁଏ ତାଙ୍କ ଆୟୁ ଶେଷହୁଏ ତେବେ ।
ସେହିକାଳରେ ଶ୍ରୀକୃଷ୍ଣଙ୍କ ଗୋଟିଏ ନିମେଷ
ପତନ ହୁଅଇ ଜାଣ ଆହେ ଜ୍ଞାନୀଈଶ ।
ଏହିପରି ଗୋଲୋକରେ କାଳଗତି ବିଧି
ନିରୂପିତ ହୋଇଅଛି ସୃଷ୍ଟି ଜନ୍ମାବଧି ।
ଶ୍ରୀକୃଷ୍ଣ ଅଟନ୍ତି କାଳରୂପୀ ଭଗବାନ
ପରମାତ୍ମା ନିରାକାର ନିତ୍ୟ ସନାତନ ।
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଏହିପରି
ଯୁଗ ଭିଆଇ ଅଛନ୍ତି ପ୍ରଭୁ ନରହରି ।
ଦିବ୍ୟ ଦ୍ୱାଦଶ ସହସ୍ର ଅଠଶ ବରଷ
ଭୋଗକରି ସତ୍ୟଯୁଗ ହୋଇଯାଏ ଶେଷ ।
ନ ସହସ ଛଅଶତ ବର୍ଷ ଭୋଗକରି
ସେ ଅନ୍ତରେ ତ୍ରେତାନାମ ଯୁଗଯାଏ ସରି ।
ଦ୍ୱି ସହସ୍ର ଚତୁଷ୍ଟୟ ଶତବର୍ଷ ଧରି
ଦ୍ୱାପର ଯୁଗଟି ଭୋଗକରି ତହୁଁ ସରେ ।
ଏକ ସହସ୍ର ଦ୍ୱି ଶତ ଦିବ୍ୟବର୍ଷ ଭୋଗ
କଲାପରେ ଶେଷହୁଏ କଳି ନାମେ ଯୁଗ ।
ଏରୂପେ କାଳ ପ୍ରମାଣ ତୁମ୍ଭ ଆଗେ ମୁହିଁ
ପରୁଶିବାରୁ ସମସ୍ତ କହିଲି ବତାଇ ।
ସନ୍ତୋଷ ମନରେ ଏବେ ଶ୍ରୀକୃଷ୍ଣଙ୍କ ପାଶେ
ଯାଇଣ ଦର୍ଶନ କର ଅତ୍ୟନ୍ତ ହରଷେ ।
ଏହିଠାରେ କାଳ ପରିମାଣର ବିସ୍ତର
ଗୀତଛନ୍ଦେ ଭାବ ଲେଖେ କ୍ଷେତ୍ରବାସୀ ଧୀର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧାଦେବୀଙ୍କ ସହିତେ ଉଦ୍ଧବଙ୍କ
ପୁନଃ କଥୋପକଥନେ ନାମ ଷଣ୍ଣବତିତମୋଽଧ୍ୟାୟଃ ।



## ସପ୍ତନବତିତମ ଅଧ୍ୟାୟ

## ଉଦ୍ଧବ କୃତ ରାଧାସ୍ତୋତ୍ର ବର୍ଣ୍ଣନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଯିବାକୁ ଉଦ୍ଧବ ତହୁଁ ହୋନ୍ତେ ତତପର ।
ଆସନରୁ ଉଠି ରାଧାଦେବୀ ସେ କାଳରେ
ଆପଣା ପ୍ରିୟସଖୀଙ୍କୁ ଘେନି ସଙ୍ଗତରେ ।
ନିକଟକୁ ଆସି ଶୁଭ ଆଶୀର୍ବାଦ କଲେ
ଦୂର୍ବାକ୍ଷତ ଶୁକ୍ଳଧାନ୍ୟ ପୁଷ୍ପ ଅଣାଇଲେ ।
ଆବର ଦର୍ପଣ ପୂର୍ଣ୍ଣକୁମ୍ଭ ଆଦିକରି
ରଖାଇଲେ ତାଙ୍କ ଆଗେ ମଙ୍ଗଳ ବଗୃର ।
ନୟନରୁ ବହୁଥିବା ଅଶ୍ରୁ ସଂଗୋପନ
କରିଣ ଦେବୀ ସେ କାଳେ କହିଲେ ବଚନ ।
ବୋଇଲେ ହେ ଭକ୍ତବର ସର୍ବଶୁଭେ ଯାଅ
ପରମାତ୍ମା ଶ୍ରୀକୃଷ୍ଣଙ୍କ ଦରଶନ ପାଅ ।
ସର୍ବଦା ଶ୍ରୀକୃଷ୍ଣେ ଭକ୍ତ ହୋଇ ଆନନ୍ଦ ବହି
ଥାଅ ଯେ ପ୍ରକାରେ ତାଙ୍କ ଆଜ୍ଞା ପାଳିଅଛ ।
ପୁଣ୍ୟଭୂମି ଭାରତରେ ଜନ୍ମଲଭ କରି
ଶ୍ରୀକୃଷ୍ଣଙ୍କଠାରେ ଯେହୁ ଭକ୍ତିକୁ ଆଚରି ।
ଦିନ ନେଉଥାଏ ସେହୁ ଅଟେ ଭାଗ୍ୟବାନ
ସଫଳ ଅଟଇ ଏକା ତାହାର ଜୀବନ ।
ସମସ୍ତ ବସ୍ତୁଠାରୁ କୃଷ୍ଣ ଉପାସନା
ଅଧିକ ଅଟଇ ଜାଣ ଆହେ ମହାମନା ।
ଶ୍ରୀକୃଷ୍ଣଙ୍କୁ ଉଦ୍ଦେଶି ଯେ ବ୍ରତ ଉପବାସ
କରଇ ତାହାକୁ ପ୍ରାପ୍ତ ହୁଏ ହରିଦାସ୍ୟ ।
ଦେବତା ଅତିଥି ପୂଜା ଆଦିକରି ଯେତେ
ଧର୍ମ କର୍ମ ଅନୁଷ୍ଠିତ ହୁଅଇ ଜଗତେ ।
ଶ୍ରୀକୃଷ୍ଣଙ୍କ ଦାସ୍ୟରସେ ଷୋଡ଼ଶ କଳାକୁ
ସମାନ ନୁହଇ ସତ୍ୟ କହୁଛି ତୁମ୍ଭଙ୍କୁ ।
ସେ ସକାଶୁ ହେ ଉଦ୍ଧବ ଯତନରେ ତୁମ୍ଭେ
ଶ୍ରୀକୃଷ୍ଣଙ୍କୁ ସେବା କରୁଥାଅ ବୋଲୁ ଆମ୍ଭେ ।
ତାଙ୍କଠାରେ ଜ୍ଞାତିବୁଦ୍ଧି ନ ରଖି କଷ୍ଟତେ
ଭଜ ସବୁବେଳେ ଅତି ଆନନ୍ଦିତ ଚିତ୍ତେ ।
ଉଦ୍ଧବ ରାଧାଙ୍କ ମୁଖୁ ଶୁଣି ଏ ସମସ୍ତ
ସମ୍ପୂର୍ଣ୍ଣ ଜ୍ଞାନ ପାଇଲେ ଆହେ ତପୋବନ୍ତ

ସେ ଅନ୍ତରେ ଦେବୀଙ୍କର ଚରଣରେ ନେଇ
ଭକ୍ତିଭରେ ଆପଣାର ମସ୍ତକ ଲଗାଇ ।
ଅଙ୍ଗରେ ପୁଲକ ନେତ୍ରେ ଅଶ୍ରୁ ଜାତକରି
ନିବେଦନ କଲେ ତାହାଙ୍କ ସ୍ୱଚ୍ଛେଦ ସ୍ମରି ।
ନମେ ନମେ ଜ୍ଞାନ ମୋକ୍ଷ ଦେବାରୁ ମହାରେ
ପଡ଼ିଲେ ସେକାଳେ ଛିନ୍ନ ଦ୍ରୁମ ପରକାରେ ।
ତାହା ଦେଖି ରାଧା ତାଙ୍କୁ ଉଠାଇ ସତ୍ୱରେ
ଆଶ୍ୱାସିତ କଲେ ଜଳ ସିଞ୍ଚଣ ମୁଖରେ ।
ଜ୍ଞାନ ପାଇଣ ଉଦ୍ଧବ ଯୋଡ଼ି ଦେବନକର
ବୋଇଲେ ହେ ମହାମାଏ ଶୁଣ ମୋର ଗିର
ଭାରତ ବର୍ଷରେ ଜମ୍ବୁଦ୍ୱୀପ ଅଟେ ଧନ୍ୟ
ତହିଁରେ ଉତ୍କୃଷ୍ଟ ଅଟେ ରମ୍ୟ ବୃନ୍ଦାବନ ।
ତୁମ୍ଭ ପାଦ ପରଶରେ ସର୍ବବିଧ ପାପ
ହୋଇଅଛି ଏ ସ୍ଥାନରୁ ସମୂଳରେ ଲୋପ ।
ପୂର୍ବକାଳେ ଶ୍ରୀକୃଷ୍ଣଙ୍କ ସହିତେ ତୁମ୍ଭଙ୍କୁ
ଗୋଲୋକରେ ଥରେ ଦରଶନ କରିବାକୁ ।
ତ୍ରିଭୁବନ ପିତାମହ ବ୍ରହ୍ମା ପ୍ରଜାପତି
ପୁଷ୍କର ତୀର୍ଥରେ ତପକଲେ ଦେଇ ମତି ।
କ୍ରମେ ବହୁତ ସମୟ ଅତୀତ ହୋଇଲା
ତଥାପି ତୁମ୍ଭର ଦରଶନ ନ ମିଳିଲା ।
ସେ ସମୟେ ଆକାଶରୁ ଶୁଭିଲା ବଚନ
ଆହେ ପିତାମହ କପା ଲଭୁଛ କଷଣ ।
ବରାହ କଳପେ ପୁଣ୍ୟ ଭାରତବର୍ଷରେ
ପୁଣ୍ୟମୟ ବୃନ୍ଦାବନେ ରାସ ମଣ୍ଡଳରେ ।
ଦେବସଭା ମଧ୍ୟେ ରାଧାକୃଷ୍ଣ ଦୁହିଁଙ୍କର
ଦର୍ଶନ ପାଇବ ଏଥି ସନ୍ଦେହ ନକର ।
ଏହିରୂପେ ଅଶରୀର ବାଣୀ ଶୁଣି ବ୍ରହ୍ମା
ନିବୃତ ହୋଇଲେ ସେ ତ ମହତ କରମା ।
ସେହି ଦିନଠାରୁ କରିଥିଲେ ସେ ଅପେକ୍ଷା
ଏବେ ଆସି ଏହିଠାରେ କରିଗଲେ ଦେଖା ।
ସଫଳ ଅଟଇ ଗୋପ ଗୋପୀଙ୍କର ଜନ୍ମ
କରୁଛନ୍ତି ଯାହା ନିତି ତୁମ୍ଭଙ୍କୁ ଦର୍ଶନ ।
ଆଉର ତୁମ୍ଭର ସେବା କରି ସବୁବେଳେ
ଦିନ ନେଉଛନ୍ତି ଯାହା ସର୍ବଦା ସକଳେ ।
ସିଦ୍ଧ ବଇଷ୍ଣବ ଯୋଗୀଜନଙ୍କର ଯାହା
ଦୁର୍ଲ୍ଲଭ ଅଟଇ ଲାଭ କରନ୍ତି ସେ ତାହା ।
ପରମ ଆତ୍ମା ଶ୍ରୀକୃଷ୍ଣ ସନ୍ତୋଷ ଚିତ୍ତରେ
ପୂଜା କରିଥିଲେ ତୁମ୍ଭ ପାଦ ପଙ୍କଜରେ ।
ତିରିଶ ସହସ୍ରକୋଟି ଗୋପୀଙ୍କର ତୁମ୍ଭେ
ଅଧୀଶ୍ୱରୀ ଅଟ ଏହା ଜାଣିଲି ମୁଁ ଏବେ ।
ଷଡ଼ବିଂଶ ସଖୀଙ୍କର ମଧ୍ୟରେ ଉତ୍ତମ
ହୋଇଣ ବହିଛ ତୁମ୍ଭେ ଶ୍ରୀରାଧିକା ନାମ ।
ଯେଉଁମାନେ ମୂର୍ଖପଣେ ତୁମ୍ଭଙ୍କୁ ନିନ୍ଦନ୍ତି
ସେହିଟି ଘୋର ରୌରବ ନରକେ ପଡ଼ନ୍ତି ।
ଶତ ବ୍ରହ୍ମହତ୍ୟା ପାପ ହୁଏ ତାହାଙ୍କର
ତୁମ୍ଭ ଭକ୍ତି ବିନା କେବେ ନ ମିଳେ ନିସ୍ତାର ।
ଏହିରୂପେ ବେଦଶାସ୍ତ୍ରେ ଦେବ ପ୍ରଜାପତି
ନିରୂପଣ କରିଛନ୍ତି ଜାଣ ମହାସତୀ ।
ଏବେ କାର୍ଯ୍ୟବଶେ ମୁହିଁ ମଥୁରା ପୁରକୁ
ଯାଉଅଛି ଦେବୀ କ୍ଷମାକର ମୋ ଦୋଷକୁ ।
ଏରୂପେ କହି ଉଦ୍ଧବ ଯିବା ସମୟରେ
କହିଲେ ପୁଣି ରାଧିକା ତାହାଙ୍କୁ କାତରେ ।
ବୋଇଲେ ହେ ବତ୍ସ ତୁମ୍ଭେ ସର୍ବ ଶୁଭେ ଯାଅ
ମୁଁ କହିବା କଥା ଗୋଟି ମନେ ରଖିଥାଅ ।
ପରେ ବାଧା ବିଘ୍ନ ସର୍ବ ହୋଇବ ଖଣ୍ଡନ
ମଥୁରାରେ ସୁଖେ କର କୃଷ୍ଣ ଦରଶନ ।
ତାଙ୍କ ଆଗେ ସବୁ କଥା ବତାଇ କହିବ
ଯେରୂପେ ମୋତେ ତାହାଙ୍କ ଦର୍ଶନ ମିଳିବ ।
ଅଳପକାଳ ମଧ୍ୟରେ ତାହାଙ୍କ ଶ୍ରୀମୁଖ
ଦେଖିକରି ଯେସନେ ମୋର ଦୂରହେବ ଦୁଃଖ
ଆଶାଟି ପରମସୁଖ ଅଟେ ଜଗତରେ
ମହାକଷ୍ଟ ଜାତହୁଏ ତାର ବିଚ୍ଛେଦରେ ।
ଏହା ଭାବ ସୁବିସ୍ତର କରିବ ହେ ବତ୍ସ
ଅଧିକ କହିବି କିବା ତୁମ୍ଭେ ତ ଜାଣିଛ ।
ଏମନ୍ତ ବୋଲି ରାଧିକା ମୂର୍ଚ୍ଛିତ ହୋଇଲେ
ଦେଖି ଗୋପୀଗଣ ତାଙ୍କୁ ଆଶ୍ୱାସନା କଲେ ।
ବିଦାୟ ହୋଇ ଉଦ୍ଧବ ଯଶୋଦାଙ୍କ ପୁରେ
ପ୍ରବେଶ ହୋଇଲେ ସ୍ନେହ କହଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଉଦ୍ଧବ କୃତ ରାଧାସ୍ତୋତ୍ର
ବର୍ଣ୍ଣନ କଥନେ ନାମ ସପ୍ତନବତିତମୋଽଧ୍ୟାୟଃ ।

# ଅ ଷ୍ଟ ନ ବ ତି ତ ମ ଅ ଧ୍ୟା ୟ

## ଉଦ୍ଧବଙ୍କ ମଥୁରାରେ ପ୍ରବେଶ ଓ ଶ୍ରୀକୃଷ୍ଣଙ୍କ ସହିତ କଥୋପକଥନ

ନାରାୟଣ ମୁନିବର ନାରଦଙ୍କୁ କହିଁ
ବୋଇଲେ ଏଥିଅନ୍ତରେ ଶୁଣ ଋଷିସାଇଁ ।
ଯଶୋଦାଙ୍କ ସମୀପରେ ପ୍ରବେଶି ଉଦ୍ଧବ
ପ୍ରଣାମ କଲେ ତାହାଙ୍କୁ ଘେନି ଭକ୍ତିଭାବ ।
ସେ ଅନ୍ତେ ଅନୁଜ୍ଞା ପାଇ ରଥରେ ବସିଲେ
ମଥୁରା ନଗରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଶ୍ରୀକୃଷ୍ଣ ବଟମୂଳେ ବସିଛନ୍ତି
ଅନ୍ୟ କେହି ତାହାଙ୍କର ପାଶରେ ନାହାନ୍ତି ।
ଉଦ୍ଧବ ଆସିବା ଜାଣି ପ୍ରଭୁ ନରହରି
ଆନନ୍ଦରେ ତାଙ୍କ ମୁଖ ନିରୀକ୍ଷଣ କରି ।
ଦେଖିଲେ ବହୁଛି ନେତ୍ରୁ ଅଶ୍ରୁ ଧାର ଧାର
ବିରହ ବାଧାରେ ଅଙ୍ଗ ହୋଇଛି କାତର ।
ତାହା ଦେଖି ବୋଇଲେ ହେ ଉଦ୍ଧବ ଏଠାକୁ
ଆସି କହ ବେଗେ ମୋତେ ଶୁଭ ସମ୍ବାଦକୁ ।
ଜୀବିତ ଅଛନ୍ତିକି ରାଧିକା ସୁନ୍ଦରୀ
ଗୋପ ଗୋପୀଙ୍କର ଶୁଭ ହୋଇଛି କିପରି ।
ଯଶୋଦା ଜନନୀ ମୋର ପୁତ୍ର ବିଚ୍ଛେଦରେ
କାଳ ଅତିକ୍ରମ କରୁଛନ୍ତି କି ପ୍ରକାରେ ।
ତୁମ୍ଭଙ୍କୁ ଦେଖି ସେମାନେ କି କହିଲେ ଆସି
ପାରିଲ କି ନାହିଁ ତୁମ୍ଭେ ତାଙ୍କ ମନ ତୋଷି ।
ସୁରମ୍ୟ ଯମୁନାକୂଳ ପୁଣ୍ୟ ବୃନ୍ଦାବନ
ନିର୍ଜନ ଉଦ୍ୟାନ ନବ ରାସଲୀଳା ସ୍ଥାନ ।
ଆଉରି କୁଞ୍ଜକୁଟୀର ସ୍ୱଚ୍ଛ ସରୋବର
କୁସୁମ ଉଦ୍ୟାନ ସ୍ନିଗ୍ଧ ପାଦପ ନିକର ।
କିରୂପେ ଅଛନ୍ତି ତାହା କହ ହେ ଉଦ୍ଧବ
ଶୁଣିଲେ ମୋହର ମନ ସନ୍ତୁଷ୍ଟ ହୋଇବ ।
ବଳଦେବଙ୍କର ମାତା କି କରୁଅଛନ୍ତି
ଗୋପ ଗୋପୀଏ କିରୂପେ ସମସ୍ତେ ଜୀଅନ୍ତି ।
ରାଧିକା ତୁମ୍ଭଙ୍କୁ କିବା ସନ୍ଦେଶ କହିଲେ
କି ଅପୂର୍ବ ଦ୍ରବ୍ୟମାନ ଭୁଞ୍ଜିବାକୁ ଦେଲେ ।
ମୋତେ ଅବା କେବେ କେହି କରନ୍ତି ସ୍ମରଣା
ସତ କରି ମୋ ଆଗରେ କହ ମହାମନା ।

ଉଦ୍ଧବ ବୋଇଲେ ପ୍ରଭୁ କହିଥିଲ ଯାହା
ପ୍ରତ୍ୟକ୍ଷରେ ଦେଖିକରି ଆସିଲି ମୁଁ ତାହା ।
ବଞ୍ଚିଅଛି ମୋହର ଜନ୍ମହେଲା ସାର୍ଥ
ଆଜୀବନ ନିଃସ୍ପୃହ ମୁଁ ହୋଇଲି କୃତାର୍ଥ ।
ଦେଖିଲି ଭାରତସାର ପୁଣ୍ୟ ବୃନ୍ଦାବନ
ତହିଁରେ ଉତ୍ତମ ଅଟେ ରାସଲୀଳା ସ୍ଥାନ ।
ଗୋଲୋକବାସିନୀ ଗୋପୀଗଣ ସେହିଠାରେ
ରହିଅଛନ୍ତି ସର୍ବଦା ପରମ ସୁଖରେ ।
ତାହାଙ୍କ ମଧ୍ୟରେ ଦେବୀ ରାସଅଧୀଶ୍ୱରୀ
ବିକଳ ହୋଇଛନ୍ତି ନିଜେ ରାଧିକା ସୁନ୍ଦରୀ ।
ବିରହ ବେଦନା ତାଙ୍କୁ କରିଅଛି କୃଶ
ଦେଇଛନ୍ତି ସଦା ତୁମ୍ଭ ପାଦରେ ମାନସ ।
ନିର୍ଜନ କଦଳୀବନ ମଧ୍ୟେ ମହାଯତ୍ନେ
ସୁହୃଦଗଣଙ୍କୁ ସଙ୍ଗେ ଘେନିଣ ଅଛନ୍ତି ।
ଶୀତଳ ପଙ୍କଜ ପତ୍ରେ ଚନ୍ଦନ ଲେପାଇ
ଶୟନ କରିଅଛନ୍ତି ତା ଉପରେ ଯାଇ ।
ସୁବର୍ଣ୍ଣ ରତ୍ନଭୂଷଣ କରିଦେଇ ଦୂର
ପରିଧାନ କରିଛନ୍ତି ମଳିନ ଅମ୍ବର ।
ପ୍ରିୟସଖୀମାନେ ବସି ସମୀପରେ ନିତି
ବ୍ୟଜନ ଚାମର ଘେନି ସେବା କରୁଛନ୍ତି ।
କ୍ଷଣେ କ୍ଷଣେ ଅଚେତନ ହୋଇ ମହାମାୟୀ
ନିର୍ଜୀବ ପରାୟେ ତଳେ ପଡୁଛନ୍ତି ଶୋଇ ।
ଜଳ ସ୍ଥଳ ଗିରି ବନ ଦିବସ ରଜନୀ
ଜାଣୁ ନାହାନ୍ତି ସେ କାମଶର ପୀଡ଼ାଘେନି ।
ନର ପଶୁ ପକ୍ଷୀ ଆଦି ଜୀବଙ୍କୁ ସ୍ପଷ୍ଟରେ
ଚିହ୍ନି ନ ପାରି ଅନାଉଁ ଅଛନ୍ତି କାତରେ ।
ବାହ୍ୟଜ୍ଞାନ ବିରହିତ ହୋଇ ତୁମ୍ଭ ପାଦେ
ସବୁବେଳେ ମନ ଦେଇଛନ୍ତି ଅପ୍ରମାଦେ ।
ଆହେ ପ୍ରଭୁ ତୁମ୍ଭେ ତାଙ୍କ ପାଶକୁ ନ ଗଲେ
ଜୀବନ ସେ ହରାଇବେ ଜାଣିଥାଅ ଭଲେ ।
ସ୍ତ୍ରୀହତ୍ୟା ପାତକଟି ହୋଇବ ତୁମ୍ଭର
ନିଶ୍ଚୟ ବୋଲୁଣ ଏହା ମନରେ ବିଚାର ।

ସେମାନଙ୍କ ସମାନ ଭକ୍ତ ଜଗତରେ କେହି
ନ ଥିବ ବୋଲି ମୋହର ମନକୁ ଆସଇ ।
ଭକତବତ୍ସଳ ତୁମ୍ଭେ ଅଟ ନରହରି
ତାଙ୍କର ଜୀବନ ରକ୍ଷା କର ଦୟାକରି ।
ତୁମ୍ଭେ ପର ଚିତ୍ତ ଥିବା ଠାରେ କାମବାଣେ
ଉଗ୍ର ହେଉଛନ୍ତି ରାଧାଦେବୀ ଅନୁକ୍ଷଣେ ।
ସେ ସକାଶୁ ଜାଣୁଅଛ ପୂର୍ବକର୍ମବଳେ
ସୁଖ ଦୁଃଖ ଭୋଗ ହୋଇଥାଏ ମହୀତଳେ ।
ଯାଙ୍କର ଚରଣେ ବ୍ରହ୍ମା ସନତକୁମାର
ସେବି ନିରନ୍ତର ଆହି ହେଲେ ଭକତ ତୁମ୍ଭର ।
ସେ ସମାନଙ୍କଠାରୁ ଶ୍ରେଷ୍ଠ ରାଧିକା ଅଟନ୍ତି
ସନ୍ଦେହ ନାହିଁ କହୁଛି ଆହେ ଶ୍ରୀପତି ।
ତୁମ୍ଭଙ୍କୁ କହି ପଠାଇ ଦେବି ବୋଲି ମୁହିଁ ।
ସାନ୍ତ୍ୱନା ଦେଇଛି ତାଙ୍କୁ ଆହେ ଯଦୁସାଇଁ ।
ତୁମ୍ଭେ ଏବେ ଅବିଳମ୍ବେ ଯାଇଣ ସେଠାକୁ
ସାର୍ଥକ କର ମୋହର କହିବା କଥାକୁ ।
ଏରୂପେ ଉଦ୍ଧବଙ୍କର ବଚନକୁ ଶୁଣି
କହିଲେ ତାହାଙ୍କୁ ହସି ପ୍ରଭୁ ଚକ୍ରପାଣି ।
ବୋଇଲେ ତୁମ୍ଭେ ଯା ସତ୍ୟ କରିଅଛ ତହିଁ
ଭଗ୍ନ ହେଲେ କିଛି ଅପରାଧ ହେବ ନାହିଁ ।
ସ୍ତ୍ରୀ ଲୋକଙ୍କ ବିଷୟେ ଅବା କର୍ମ ବିବାହରେ
କି ଅବା ବୃତ୍ତିରେ ପ୍ରାଣ ସଙ୍କଟ କାଳରେ ।
ସତ୍ୟ କରିଥିବା କଥା ଅନ୍ୟଥା ହୋଇଲେ
ତହିଁରେ କୌଣସି ଦୋଷ ନୁହଇଟି ଭଲେ ।
ମୋହର ଭକତ ତୁମ୍ଭେ ସାଧୁଙ୍କର ଶ୍ରେଷ୍ଠ
ଏ ସାମାନ୍ୟ କଥାରେ କି ପାଇବ ଅନିଷ୍ଟ ।
ତଥାପି ପ୍ରାକାଶ୍ୟରେ ତୁମ୍ଭର ବଚନ
ସଫଳ କରିବ ମୁହିଁ ସଂଶୟ ନ ଘେନ ।
ସ୍ୱପନରେ ରାଧାଙ୍କର ସମୀପକୁ ଯିବି
ଦିବ୍ୟଜ୍ଞାନ ଦେଇ ତାଙ୍କୁ ପ୍ରବୋଧି ଆସିବି ।
ଆଉର ଗୋପନଗରେ ଯେତେ ରହିଛନ୍ତି
ସମସ୍ତଙ୍କୁ ପ୍ରବୋଧିବି ଛାଡ଼ ତୁମ୍ଭେ ଖିନ୍ତି ।
ଏମନ୍ତ ଶୁଣି ଉଦ୍ଧବ ଶ୍ରୀକୃଷ୍ଣଙ୍କଠାରୁ
ଆପଣା ପୁରକୁ ଗଲେ ନୋହି କିଛି ଖରୁ ।
ଶ୍ରୀକୃଷ୍ଣ ସ୍ୱପ୍ନରେ ଯାଇ ଗୋପ ନଗରକୁ
ନାନାକଥା କହି ପ୍ରବୋଧିଲେ ସମସ୍ତଙ୍କୁ ।
ଯେଉଁ ପ୍ରକାରେ ସନ୍ତୁଷ୍ଟ ହେବ ଯାର ମନ
ତେମନ୍ତ କରି ଆସିଲେ ପ୍ରଭୁ ଭଗବାନ ।
ଏହିଠାରେ ଉଦ୍ଧବଙ୍କ ମଥୁରା ଗମନ
କ୍ଷେତ୍ରମୋହନ ଗୀତରେ କଲା ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଉଦ୍ଧବଙ୍କର ମଥୁରାରେ ପ୍ରବେଶ ଓ ଶ୍ରୀକୃଷ୍ଣଙ୍କ ସହିତେ କଥୋପ କଥନେ ନାମଅଷ୍ଟନବତିତମୋଽଧ୍ୟାୟଃ ।

—ଃ—ଃ—✱—ଃ—ଃ—

## ଊ ନ ଶ ତ ତ ମ ଅ ଧ୍ୟା ୟ

## ବସୁଦେବଙ୍କ ପାଶକୁ ଗର୍ଗମୁନିଙ୍କର ଆଗମନ ଓ କୃଷ୍ଣବଳରାମଙ୍କର ବ୍ରତ ସମାଚାର

ନାରାୟଣ ବୋଇଲେ ହେ ଏଥୁଅନନ୍ତରେ
ଆସିଲେ ଗର୍ଗମହର୍ଷି ବସୁଦେବ ପୁରେ ।
ହସ୍ତେ ଦଣ୍ଡକମଣ୍ଡଳୁ ଶିରେ ଜଟାଭାର
କାନ୍ଧେ ଯଜ୍ଞସୂତ୍ର କଟିତଟେ ଶୁକ୍ଳାମ୍ବର ।
ବ୍ରହ୍ମତେଜରେ ଉଜ୍ଜ୍ୱଳ କରି ଦଶଦିଶ
ଅକସ୍ମାତ ଆସିକରି ହୋଇଲେ ପ୍ରବେଶ ।
ଯଦୁକୁଳ ପୁରୋହିତ ଅଟନ୍ତି ତ ସେହି
ତାଙ୍କୁ ଦେଖି ବସୁଦେବ କୃତାଞ୍ଜଳି ହୋଇ ।
ଆସନରୁ ଉଠି ବେଗେ ସମୀପକୁ ଗଲେ
ଚରଣ ବନ୍ଦନା କରି ସିଂହାସନ ଦେଲେ ।
ଦେବକୀ ମଧ୍ୟ ପ୍ରଣାମ କରିଣ ମୁନିଙ୍କୁ
ବିନୟ ପ୍ରକାଶ କଲେ ଦେଖାଇ ଭକ୍ତିକୁ ।

ଯେ ଅନ୍ତରେ ଗନ୍ଧପୁଷ୍ପ ମାଲ୍ୟ ଆଦିକରି
ଦେଇଣ ପୂଜିଲେ ପ୍ରିୟା ଭୁଲେ ଦଣ୍ଡଧାରୀ ।
ପୁଣି ଦ୍ରବ୍ୟ ମିଷ୍ଟଦ୍ରବ୍ୟ ଭୁଞ୍ଜିବାକୁ ଦେଲେ
ଭୋଜନ ଅନ୍ତେ ମଧୁର ଆଳାପକୁ କଲେ ।
ବଳଦେବ କୃଷ୍ଣ ଦୁହେଁ ମୁନିଙ୍କ ପଦ୍ମରେ
ପ୍ରଣାମ କଲେ ସେକାଳେ ଆସି ଭକ୍ତିଭରେ ।
ଗର୍ଗମୁନି ଶ୍ରୀକୃଷ୍ଣଙ୍କୁ ସୁମରଣା କରି
ବସୁଦେବଙ୍କୁ ବୋଇଲେ ଆହେ ଦଣ୍ଡଧାରୀ ।
ବଳରାମ କୃଷ୍ଣଙ୍କୁ ତ ହେଲାଣି ବୟସ ।
ଉପନୟନରେ କାହିଁ ନ ଦିଅ ମାନସ
ବସୁଦେବ ବୋଇଲେ ହେ ଗର୍ଗମୁନିବର
ଉପନୟନ ଉଚିତ ଦିନ ସ୍ଥିରକର ।
ଗର୍ଗ ବୋଇଲେ ହେ କାଲି ପର ଦିବସରେ
ଶୁଭ ସମୟ ହେଉଛି ମୋହର ବିଚାରେ ।
ଚନ୍ଦ୍ର ତାରା ଶୁଦ୍ଧି ହେଉଅଛି ଭଲରୂପେ
ଶାସ୍ତ୍ରେ ଲେଖିଛନ୍ତି ଯାହା ପ୍ରଜାପତି ଆପେ ।
ତୁମ୍ଭେ ଏବେ ଦେବ ଦ୍ୱିଜ ବନ୍ଧୁଙ୍କ ପାଶକୁ
ପଠାଅ ଶୁଭ ପତ୍ରିକା ନ କର ହେଳାକୁ ।
ସମସ୍ତେ ବ୍ରତ କାର୍ଯ୍ୟରେ ଯୋଗ ଦେବାପାଇଁ
ଆସନ୍ତୁ ଯେ ଯାହା ଯାନ ବାହନ ଆରୋହି ।
ଏରୂପେ ପୁରୋହିତଙ୍କ ବଚନକୁ ଶୁଣି
ଆନନ୍ଦରେ ବସୁଦେବ ନୃପକୁଳ-ମଣି ।
ଆମନ୍ତ୍ରଣ ପତ୍ର ଲେଖି ସମସ୍ତଙ୍କ ପାଖେ
ପଠାଇଲେ ଭୃତ୍ୟ ହସ୍ତେ ଅତ୍ୟନ୍ତ ହରଷେ ।
ଘୃତ ଦୁଗ୍ଧ ଦଧି ଗୁଡ଼ ମଧୁ ଆଦିକରି
ନାନା ଦ୍ରବ୍ୟମାନ ରଖାଇଲେ ପାତ୍ର ଭରି ।
ଅଣାଇଲେ ପଠାଇଣ ଅଧିକୃତ ଜନ
ସୁବର୍ଣ୍ଣ ରତ୍ନ ନିର୍ମିତ ଅଳଙ୍କାରମାନ ।
ଶ୍ରୀକୃଷ୍ଣ ସେକାଳେ ବେଦ ମନ୍ତ୍ର ପୁଙ୍ଗବଙ୍କୁ
ସୁମରଣା କଲେ ମନେ ପ୍ରକାଶି ଭକ୍ତିକୁ ।
ଉପନୟନ ଦିନରେ ଆସି ସେ ସମସ୍ତେ
ମଥୁରାପୁରେ ପ୍ରବେଶ ହୋଇଲେ ହରଷେ ।
ଦେବଋଷି ବିପ୍ର ନୃପ ବନ୍ଧୁ ମିତ୍ରଗଣ
ବସୁଦେବଙ୍କୁ ଭେଟିଲେ ଆସି ତତକ୍ଷଣ ।
ଦେବକନ୍ୟା ନାଗକନ୍ୟା ରାଜକନ୍ୟା କେତେ
ପ୍ରବେଶ ହେଲେ ମଥୁରାପୁରରେ ତୋଷଚିତ୍ତେ ।
ବିଦ୍ୟାଧର ଯକ୍ଷ ରକ୍ଷ ଭିକ୍ଷୁକ ସନ୍ନ୍ୟାସୀ
ଅବଧୂତ ଆଦିକରି ପ୍ରବେଶିଲେ ଆସି ।
ବନ୍ଧୁ ବାନ୍ଧବଙ୍କ ସ୍ତ୍ରୀ ସ୍ୱାମୀମାନେ ମଧ୍ୟ ତହିଁ
ଉପସ୍ଥିତ ହେଲେ ଶୁଭ ଆଶୀର୍ବାଦ ପାଇ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ କୃପ ଦ୍ୱିଜ ଅଶ୍ୱତ୍ଥାମା
ଆସିଲେ ଆଦରେ କେତେ ମହତ କରମା ।
ଏହି ଭାରିଯାଙ୍କୁ ଘେନି ରାଜା ଧୃତରାଷ୍ଟ୍ର
ଉପସ୍ଥିତ ହେଲେ ତହିଁ ଛାଡ଼ି ନିଜରାଷ୍ଟ୍ର ।
ହରଷ ବଢ଼ାଇ କୁନ୍ତୀ ଆପଣା ସୁତଙ୍କୁ
ଘେନିଣ ଆସିଲେ ସେହି ମଥୁରାପୁରକୁ ।
ନାନା ଦେଶରୁ ବହୁତ ଯୋଗ୍ୟ ରାଜପୁତ୍ର
ଆଡ଼ମ୍ବରେ ଆସି ତହିଁ ହୋଇଲେ ଏକତ୍ର ।
ଜୈଗୀଷବ୍ୟ ବାତ୍ସ୍ୟଧର୍ମ ଦେବଳ ପୁଲସ୍ତ୍ୟ
ପିପ୍ପଳାଦ ସଉଭରି ପୁଲହ ଅଗସ୍ତ୍ୟ ।
ସନକ ସନତ ସନାତନ ମହାମୁନି
କପିଳ ଆସୁରି ବୋଢ଼ୁ ବ୍ରହ୍ମତତ୍ତ୍ୱଜ୍ଞାନୀ
ସନତକୁମାର ପଞ୍ଚଶିଖ ବଭାଣ୍ଡକ
ଦୁର୍ବାସା ଅଙ୍ଗିରା ବ୍ୟାସ କଉଶିକ ଶୁକ ।
ଜ୍ଞାନଦ ଯେ ଜ୍ଞାନବ୍ରତ ମହାଯୋଗୀବର
ଶିଷ୍ୟ ଉପଶିଷ୍ୟେ ସହ ମିଳିଲେ ସତ୍ୱର ।
କୁଶିକ ପରଶୁରାମ ଋଷ୍ୟଶୃଙ୍ଗ ଯତି
ଶୃଙ୍ଗୀ ବାମଦେବ ଗଉତମ ମହାମତି ।
ବିଭୁ ଶୁନ ବୃହସ୍ପତି ଆରୁଣି ମହର୍ଷି
ଅଷ୍ଟାବକ୍ର ପାରଭଦ୍ର ବାଲ୍ମୀକ ତପସ୍ୱୀ ।
ବାମନ ବୈଶମ୍ପାୟନ କପିଳ ସୁରଜିତ
ପ୍ରଚେତା ଭୃଗୁ ମରୀଚ ଭଦ୍ର ତପୋବନ୍ତ ।
ଏହିରୂପେ ସିଦ୍ଧ ମୁନିଗଣ ଆସିକରି
ପ୍ରବେଶ ହୋଇଲେ ବେଗେ ସେ ମଥୁରାପୁରୀ ।
ଯେ ଅନ୍ତରେ ମୁଣି କଣ୍ୱ କାତ୍ୟାୟନ ମୁନି
ସୁମନ୍ତୁ ସୁଭାନୁ ବିଶ୍ୱାମିତ୍ର ସାନ୍ଦୀପନି ।
ପାରିଜାତ ପାଶପାନି ପାଣିନି କପିଳ
ପରାଶର କଚ ମାର୍କଣ୍ଡେୟ ତପଶୀଳ ।
ଲୋମଶ ସମ୍ବର୍ତ୍ତ ପୁଣି ଉତଥ୍ୟ ତପସ୍ୱୀ
ଜାବାଳି ଜୈମିନି ନାରଦମୋ ସହିତେ ମିଶି ।
ଶତାନନ୍ଦ ସାନ୍ଦୀପନି କରଥ କୌଶେୟ
ଶ୍ରୁତଶ୍ରବା ଭରଦ୍ୱାଜ ଆଦି ମୁନିଚୟ ।

ଶ୍ରୀକୃଷ୍ଣଙ୍କ ଦରଶନ କରିବା ଇଚ୍ଛାରେ
ମିଳିଲେ ଆସି ସେ କାଳେ ମଥୁରା ନଗରେ ।
ତାଙ୍କୁ ଦେଖି ବସୁଦେବ ଦଣ୍ଡବତ ହୋଇ
ପ୍ରଣାମ କଲେ ତାହାଙ୍କ ପାଦେ ଶିର ଦେଇ ।
ଏଥୁ ଅନନ୍ତରେ ବ୍ରହ୍ମା ହଂସପରେ ବସି
ଆସିଲେ ବସୁଦେବଙ୍କ ପୁରେ ହୋଇ ତୋଷି ।
ରତ୍ନ ବିମାନରେ ଶିବ ପାର୍ବତୀଙ୍କ ଭୁଲେ
ରୁଦ୍ରଗଣଙ୍କୁ ସଙ୍ଗରେ ଘେନିଣ ଆସିଲେ ।
ବାସବ କୁବେର ଯମ ପବନ ବରୁଣ
ଜୟନ୍ତ ନଳ କୁବେର ରୁଦ୍ର ହୁତାଶନ ।
ଦ୍ୱାଦଶ ଆଦିତ୍ୟ ଚନ୍ଦ୍ର ଗ୍ରହ ଋଷିଗଣ
ଆସିଲେ କରିବା ପାଇଁ କୃଷ୍ଣଙ୍କୁ ଦର୍ଶନ ।
ସେମାନଙ୍କୁ ବସୁଦେବ ପାଦପୂଜା କଲେ
କରଯୋଡ଼ି ନାନାସ୍ତୁତି ସ୍ତୋତ୍ରକୁ ପଢ଼ିଲେ ।
ବୋଇଲେ ଧନ୍ୟ ଅଟଇ ମୋହର ଜନମ
ଧନ୍ୟ ମୋର ପିତାମାତା ଧନ୍ୟ ମୋ କରମ ।
ସୃଷ୍ଟି କର୍ତ୍ତା ପ୍ରଜାପତି ଆସି ମୋ ପୁରକୁ
ପବିତ୍ର କଲେ ପକାଇ ପାଦ-ପଙ୍କଜକୁ ।
ପାର୍ବତୀ ସହିତେ ଶିବ ଅନୁଗ୍ରହ କରି
ବିଜେକଲେ ଆସି ରୁଦ୍ରଗଣ ସଙ୍ଗେ ଧରି ।
ସ୍ୱପନରେ ଯାହାଙ୍କର ରୂପକୁ ସ୍ମରଣ
କରିବା ମାତ୍ରେ ଦୁରିତ ହୁଅଇ ଖଣ୍ଡନ ।

ଅଗ୍ରପୂଜ୍ୟ ଗଣେଶ୍ୱର ଦେବ କାର୍ତ୍ତିକେୟ
ଦରଶନ ଦେଲେ ମୋତେ ହୋଇଣ ସଦୟ ।
ଜଗତ ଜନନୀ ମହାଲକ୍ଷ୍ମୀ ଦୁର୍ଗାଦେବୀ
ଆସିଅଛନ୍ତି ମୋହର ମଙ୍ଗଳକୁ ଭାବି ।
ଯେଉଁ ଦେବୀଙ୍କୁ ଅର୍ଚ୍ଚନା କରି ସାଧୁନରେ
ଅନ୍ତଃକାଳେ ନ ପଡ଼ନ୍ତି ନରକ ମଧ୍ୟରେ ।
ସେମାନଙ୍କୁ ଦରଶନ କରି ଆଜ ମୁହିଁ
କୃତାର୍ଥ ହୋଇଲି ଏଥି ସନ୍ଦେହ ଯେ ନାହିଁ ।
ଏହିରୂପେ ସ୍ତୁତିକରି ସେ ନୃପମଣ୍ଡନ
ମୁନି ଋଷିଙ୍କ ସହିତେ କରି ସମ୍ଭାଷଣ ।
ସମସ୍ତଙ୍କୁ ଭିନ୍ନ ଭିନ୍ନ ଆସନେ ବସାଇ
ପୂଜାକଲେ ପୁଣି ତାଙ୍କ ମାନସ ରଞ୍ଜାଇ ।
ଗର୍ଗଙ୍କ ସହିତେ ମୁନି ବ୍ରାହ୍ମଣମାନଙ୍କୁ
ପୂଜିଲେ ଦେଇଣ ରତ୍ନମାଳ୍ୟ ଚନ୍ଦନକୁ ।
ସମସ୍ତଙ୍କ ମଧ୍ୟେ ରତ୍ନ ଆସନେ ବସାଇ
ଗଣେଶଙ୍କ ପୂଜାବିଧି କଲେ ମନଦେଇ ।
ସପ୍ତ ତୀର୍ଥ ଉଦକ ରକ୍ତବର୍ଣ୍ଣ ବାସ
ପଞ୍ଚାମୃତ ପଞ୍ଚଗବ୍ୟ ମାଲ୍ୟ ଗନ୍ଧପୁଷ୍ପ ।
ଦେଇଣ ଗଣେଶ ପୂଜାକରି ପ୍ରଥମରେ
ସ୍ତୁତିପାଠକଲେ ବିଘ୍ନ ବିନାଶ ହେତୁରେ ।
ଏହିଠାରେ ସମାଗମ ଦେବ ଋଷିଙ୍କର
ସମାପ୍ତ ହୋଇଲା ଗୀତେ ଭଣେ କ୍ଷେତ୍ରସ୍ଥିର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବସୁଦେବଙ୍କ ପାଶକୁ
ଗର୍ଗମୁନିଙ୍କର ଆଗମନ ଓ କୃଷ୍ଣ ବଳରାମଙ୍କର ବ୍ରତ ସମାଚାର
କଥନେ ନାମ ଊନଶତତମୋଽଧ୍ୟାୟଃ ।



## ଏକଶତତମ ଅଧ୍ୟାୟ

## ବ୍ରତ ଉପନୟନର ଆରମ୍ଭ ଓ ଶ୍ରୀକୃଷ୍ଣଙ୍କ ପ୍ରତି ବ୍ରହ୍ମାଦି ଦେବତାଙ୍କର ସ୍ତୁତି

ନାରଦ ପୁଣ ବୋଇଲେ ହେ ବ୍ରହ୍ମାଙ୍କ କୁମର ।
ଶୁଣ କହୁଅଛୁ ଏବେ ମନ କରି ସ୍ଥିର ।
ଅଦିତି ଦେବକୀ ରତି ରୋହିଣୀ ସାବିତ୍ରୀ
ଅହଲ୍ୟା ତାରକା ଲୋପାମୁଦ୍ରା ଅରୁନ୍ଧତୀ ।
ସରସ୍ୱତୀ ଆଦିକରି ସର୍ବ ଦେବୀଗଣ
ଗଲେ କରିବାକୁ ଦୁର୍ଗା ଦେବୀଙ୍କୁ ଦର୍ଶନ ।

ପରସ୍ପରେ ନାନାବିଧ କଥାବାର୍ତ୍ତା ହୋଇ
ପ୍ରବେଶ ହୋଇଲେ ଦେବ ମନ୍ଦିରରେ ଯାଇ
ନାନାରତ୍ନ ସୁବର୍ଣ୍ଣରେ ମଣ୍ଡି ସେ ଗୃହକୁ
ପକାଇଲେ ତହିଁ ରତ୍ନମୟ ଆସନକୁ ।
ତହିଁରେ ଦେବୀଙ୍କୁ ଅତି ଯତନେ ବସାଇ
ବିଭୂଷିତ କଲେ ବସ୍ତ୍ର ଗନ୍ଧପୁଷ୍ପ ଦେଇ ।

ପାରିଜାତ ପୁଷ୍ପମାଳା ତାହାଙ୍କ ଗଳାରେ
ଲମ୍ବାଇଲେ ଶ୍ରୀକୃଷ୍ଣଙ୍କ ମାତା ସେ କାଳରେ ।
ସିନ୍ଦୂର କୁଙ୍କୁମ ଦ୍ରବ୍ୟ କସ୍ତୁରୀ କଜ୍ଜ୍ୱଳ
ଯଥାସ୍ଥାନେ ସମର୍ପଣ କଲେ ତତକାଳ ।
ଘୃତ ପକ୍ୱ ମିଷ୍ଟଦ୍ରବ୍ୟ ଅଣାଇ ସତ୍ୱରେ
ଭୁଞ୍ଜାଇଲେ ପାଶେ ବସି ହରଷ ଚିତ୍ତରେ ।
ସେ ଅନ୍ତେ ପାଦରେ ନେଇ ଅଳକ୍ତକ ଦେଲେ
କର୍ପୂର ମିଶା ତାମ୍ବୁଳ ପୁଣି ଭୁଞ୍ଜାଇଲେ ।
ସେ ଅନ୍ତେ ଶୁକ୍ଳ ବ୍ୟଜନ ଶୁକଳ ଚାମର
ଧରିଣ ବିଞ୍ଚିଲେ ଉଲ୍ଲାସ ହୋଇ ସମୀପର ।
ପାର୍ବତୀଙ୍କ ପୂଜାସାର ମୁନି-କାମିନୀଙ୍କୁ
ପୂଜାକଲେ ଯଥାବିଧି ପ୍ରକାଶି ଭକ୍ତିକୁ ।
ଦେବକନ୍ୟା ମୁନିକନ୍ୟା ରାଜକନ୍ୟାଗଣ
ଆସିଥିଲେ ତାଙ୍କୁ ପୂଜାକଲେ ତତକ୍ଷଣ ।
ସେ ଅନ୍ତରେ ନାନା ଶୁଭ ବାଦ୍ୟ ନୃତ୍ୟଗୀତ
କରାଇଲେ ବସୁଦେବ ହୋଇ ତୋଷିଚିତ୍ତ ।
ବ୍ରାହ୍ମଣଙ୍କୁ ଡକାଇଣ ଉତ୍ତମ ଭୋଜନ
ଦେଲେ ସେ କାଳରେ ଶୁଭ ବସ୍ତ୍ରରଣ ମନ ।
ମଥୁରା ଗ୍ରାମଦେବତା ଭୈରବୀ ଦେବୀଙ୍କୁ
ପୂଜାକଲେ ପୁଣି ଦେଇ ସେ ଉପହାରକୁ ।
ମଙ୍ଗଳ ଚଣ୍ଡିକା ଷଷ୍ଠୀଦେବୀଙ୍କୁ ସେପରି
ଅର୍ଚ୍ଚନା କରେ ବସୁଦେବ ଦଣ୍ଡଧାରୀ ।
ସ୍ୱସ୍ତ୍ୟୟନ କରି ପୁଣି ବେଦପାଠମାନ
ଦ୍ୱିଜଙ୍କ ମୁଖରେ କରାଇଲେ ତତକ୍ଷଣ ।
ବଳରାମ ଶ୍ରୀକୃଷ୍ଣଙ୍କୁ ପୀଠରେ ବସାଇ
ସ୍ନାନକରାଇଲେ ଗଙ୍ଗାଜଳକୁ ଅଣାଇଁ ।
ସେ ଅନ୍ତେ ଉତ୍ତମ ବାସ ଚନ୍ଦନ ଭୂଷଣ
ଖଞ୍ଜିଲେ ଅଙ୍ଗରେ ନେଇ ପରିବାରଗଣ
ପିତାମାତା ଗୁରୁଙ୍କର ଚରଣକୁ ଧରି
ପ୍ରଣାମ କଲେ ସେ ବେନି ଭାଇ ଆଗକରି ।
ସେ ଅନ୍ତରେ ସଭା ମଧ୍ୟେ ପ୍ରବେଶ ହୋଇଲେ
ସଭାସଦଙ୍କୁ ଉଚିତ ସମ୍ମାନନା କଲେ ।
ତାଙ୍କୁ ଦେଖି ବ୍ରହ୍ମା ଶିବ ଗଣେଶ୍ୱର ଆଦି
ଆସନରୁ ଉଠି ଶୁଭ ପ୍ରଶଂସା ସମ୍ପାଦି ।
ସେ ସାହାର ସ୍ତୁତିପାଠ କଲେ ସେ କାଳରେ
ମନ ନିବେଶି ପରମବ୍ରହ୍ମ ସ୍ୱରୂପରେ ।

ପ୍ରଜାପତି ବୋଇଲେ ହେ ଜଗତଈଶ୍ୱର
ଆଶ୍ରୟ ଅଟ ଆପଣ ସର୍ବ ପ୍ରାଣୀଙ୍କର ।
ସକଳ କରତା ତୁମ୍ଭେ ପୁଣି ସେ ପାଳକ
ନିଶେଷେ ପୁଣି ତୁମ୍ଭ ସକଳର ସଂହାରକ ।
ଆପଣଙ୍କୁ ସ୍ତୁତି କରିବାକୁ ଏ ଜଗତେ
ସମର୍ଥ କେ ହେବ ବୋଲି ନ ଆସଇ ଚିତ୍ତେ ।
ସେ ଅନ୍ତରେ ସଦାଶିବ ବୋଇଲେ ହେ ଦେବ
ତୁମ୍ଭର ମହିମା କେବା ବର୍ଣ୍ଣନା କରିବ ।
ପରମପୁରୁଷ ତୁମ୍ଭେ ନିତ୍ୟ ନିରାକାର
ଜନମିଅଛ ହରିବା ପାଇଁ ମହୀଭାର ।
ଅନନ୍ତ ବୋଇଲେ ନାଥ ବ୍ରହ୍ମାଣ୍ଡର ପତି
ଅଟ ତୁମ୍ଭେ ନିରାକାର ବ୍ରହ୍ମମୟ ଜ୍ୟୋତି ।
ତୁମ୍ଭ ଅଂଶେ ଜାତ ମହା ବିରାଟ ପୁରୁଷ
ତାହାଙ୍କ ଅଙ୍ଗରେ ଲୀନ କୋଟି କୋଟି ବିଶ୍ୱ,
ସ୍ଥୂଳଠାରୁ ସ୍ଥୂଳତର ଅଟ ନାରାୟଣ
ଭକତବତ୍ସଳ ଦୁଃଖୀଲୋକର ଶରଣ ।
ତୁମ୍ଭର ଗୁଣ ଗାୟନ କରିବାକୁ ମୁହିଁ
କ୍ଷୁଦ୍ର ବୁଦ୍ଧିରେ ସମର୍ଥ ହେବି ଅବା କାହିଁ ।
ସେ ଅନ୍ତରେ ଦେବଗଣ ଶ୍ରୀକୃଷ୍ଣଙ୍କୁ ଚାହିଁ
ବୋଇଲେ ଈଶ୍ୱର ଆମ୍ଭେ ତ୍ରିଭୁବନ ସାଇଁ
ତୁମ୍ଭର ସ୍ତୁତି ପଠନ କରିବାକୁ ଧାତା
ସମର୍ଥ ନୁହନ୍ତି କେତେ କଲେ ହେଲେ ଚିନ୍ତା ।
ଆବର ଶିବ ଗଣେଶ ଦେବୀ ସରସ୍ୱତୀ
ତୁମ୍ଭର ମହିମା କିଛି ଜାଣି ନ ପାରନ୍ତି ।
ଆମ୍ଭେମାନେ ଅଟୁ ଅବା କେତେକ ମାତର
ତୁମ୍ଭଙ୍କୁ ସ୍ତୁତି କରିବୁ ଆମ୍ଭେ ମହେଶ୍ୱର ।
ସେ ଅନ୍ତରେ ଉଲ୍ଲାସ ହୋଇ ମୁନି ଋଷିଗଣ
ବୋଇଲେ ଆହେ ଅନାଦି ଜଗତ କାରଣ ।
ତୁମ୍ଭେ ଅଟ ବେଦଶାସ୍ତ୍ର ତନ୍ତ୍ର ଅଗୋଚର
ଚିହ୍ନି ନ ପାରନ୍ତି କେହି ସ୍ୱରୂପ ତୁମ୍ଭର ।
ସେହି ବେଦ ପଢ଼ି ଆମ୍ଭେ କରିବୁ କି ସ୍ତୁତି
ଦୋଷ କ୍ଷମାକର ପ୍ରଭୁ ତ୍ରିଭୁବନ ପତି ।
ଏମନ୍ତ ବୋଲି ସମସ୍ତେ ନୀରବ ଭାବରେ
ବସିଲେ ପୁଣି ସେ ସାହା ଆସନ ଉପରେ ।
ଦେବଋଷି କୃତ ଏହି ପୁଣ୍ୟ ସ୍ତୋତ୍ରମାନ
ପ୍ରତିଦିନ ଭକ୍ତିଭରେ କରେ ଯେ ପଠନ ।

ଇହଲୋକରେ ସକଳ ଭୋଗ ସେ ଭୁଞ୍ଜାଇ
ଅନ୍ତକାଳେ ବଡ଼ ସୁଖେ ଗୋଲୋକରେ ଯାଇ
କହଇ କ୍ଷେତ୍ରମୋହନ ଶ୍ରୀକୃଷ୍ଣ ଚରଣେ
ମୋହର ମାନସ ରହିଥାଉ ଅନୁକ୍ଷଣେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରତ ଉପନୟନର ଆରମ୍ଭ ଓ ଶ୍ରୀକୃଷ୍ଣଙ୍କ** ପ୍ରତି ବ୍ରହ୍ମାଦି ଦେବତାଙ୍କର ସ୍ତୁତି କଥନେ ନାମ ଶତତମୋଽଧ୍ୟାୟଃ ।

# ଏକୋତ୍ତରଶତତମ ଅଧ୍ୟାୟ

## ଶ୍ରୀକୃଷ୍ଣ ଓ ବଳରାମଙ୍କ ବ୍ରତ ସମାପନ ଓ ଆଗନ୍ତୁକମାନଙ୍କ ସ୍ୱସ୍ଥାନ ପ୍ରୟାଣ

ଏଥୁଅନନ୍ତରେ ଦେବଋଷିଗଣ ତୁଳେ
ବସୁଦେବଙ୍କର ବନ୍ଧୁବାନ୍ଧବ ସକଳେ ।
ପ୍ରାଙ୍ଗଣରେ ଉପସ୍ଥିତ ହୋଇ ଶ୍ରୀକୃଷ୍ଣଙ୍କୁ
ଦରଶନ କଲେ ମନେ ବହୁ ଆନନ୍ଦକୁ ।
କଟିତଟେ ସୁଶୋଭିତ ଝୀନ ପୀତବାସ
ନବୀନ ମେଘ ଦେହରେ ବିଦ୍ୟୁତ ସଦୃଶ ।
କପାଳରେ ସୁବର୍ତ୍ତୁଳ କସ୍ତୁରୀ ଚନ୍ଦନ
ତିଳକ ଥାଇ ଦିଶଇ ଅତି ଶୋଭାବନ ।
ଦ୍ୱିଭୁଜ ସୁନ୍ଦର ଶାନ୍ତ ରାଧା ପ୍ରାଣପତି
ଈଷତ ହାସ ବଦନ ଯୁକ୍ତ ସ୍ମୁରତି ।
ପିତାଙ୍କ ଅଙ୍କରେ ବଳଦେବ ସହିତରେ
ବସିଅଛନ୍ତି ସୁନ୍ଦର ସାହସ ମୁଖରେ ।
ଏଥୁଅନ୍ତେ ଶୁଭଲଗ୍ନେ ଶୁଭ ମୁହୂର୍ତ୍ତରେ
ଶାନ୍ତ ଶୁଭଗ୍ରହ ଦୃଷ୍ଟି ଲଗ୍ନ ଅଧୀଶ୍ୱରେ ।
ସ୍ୱସ୍ତି ବାଚନ ପୂର୍ବକ ବ୍ରତ କର୍ମାରମ୍ଭ
କଲେ ବସୁଦେବ ନରପତି ହୋଇ ଦମ୍ଭ ।
ଦେବ ବ୍ରାହ୍ମଣଙ୍କଠାରୁ ଅନୁମତି ନେଇ
କାର୍ଯ୍ୟ କଲେ ଅଟନ୍ତି ତ ସେ ଉତ୍ତମ ଜ୍ଞାନୀ ।
ପ୍ରଥମରେ ଗଣପତି ବହ୍ନି ନାରାୟଣ
ଶିବ ଦୁର୍ଗାଙ୍କୁ ସେକାଳେ କରି ଆବାହନ ।
ତୋଳ ଉପଚାର ଦେଇ ଯତ୍ନେ ପୂଜା କଲେ
ପୁତ୍ରଙ୍କର ଅଧିବାସ କର୍ମ ଆରମ୍ଭିଲେ ।
ଦିକ୍‌ପାଳ ନବଗ୍ରହଙ୍କୁ ପଞ୍ଚ ଉପଚାରେ
ପୂଜାକଲେ ଯଥାଯୁକ୍ତ ଭକ୍ତି ସହିତରେ ।
ଘୃତରେ ସପତ ଗୋଟି ବସୁଧାରା ଦେଲେ
ଚେଦି ରାଜାଙ୍କୁ ସେଠାରେ ନମସ୍କାର କଲେ ।
ସେ ଅନ୍ତରେ ବୃଦ୍ଧି ଶ୍ରାଦ୍ଧ କରି ସମାପନ
ବେଦୋକ୍ତ ପ୍ରକାରେ କଲେ ଯଜ୍ଞସୂତ୍ର ଦାନ ।
ସାନ୍ଦୀପନ ମୁନିଙ୍କର ଗାୟତ୍ରୀ ମନ୍ତ୍ରକୁ
ଯତ୍ନେ ଉପଦେଶ କରାଇଲେ ସେ ଦୁହିଙ୍କୁ ।
ପୁଣି ଭିକ୍ଷା ସମୟରେ ପ୍ରଥମେ ପାର୍ବତୀ
ଦେଲେ ବହୁ ସ୍ୱର୍ଣ୍ଣରତ୍ନ ହୋଇ ତୋଷମତି ।
ହୀରାସାର ବନମାଳ ବହୁମୂଲ୍ୟ ହାର
ଦେଲେ ସେ ଅନ୍ତରେ ବସୁଦେବ ଦଣ୍ଡଧର
ପୁଣି ଶୁକ୍ଳ ପୁଷ୍ପ ଦୁର୍ବାକ୍ଷତକୁ ଧରିଲେ
ବେଦ ପାଠକରି ଶୁଭ ଆଶୀର୍ବାଦ ଦେଲେ ।
ସେ ଅନ୍ତେ ଅଦିତି ଆଦି ଦେବୀଙ୍କ ସହିତେ
ଦେବକୀ ବସିଲେ ଭିକ୍ଷାଦ୍ରବ୍ୟ ନେଇ ହସ୍ତେ ।
ଯଶୋଦା ରୋହିଣୀ ଦୁହେଁ ତାହାଙ୍କ ମେଳରେ
ଆସି ଉପସ୍ଥିତ ହୋଇଥିଲେ ସେହିଠାରେ ।
ଦେବକନ୍ୟା ନାଗକନ୍ୟା ରାଜକନ୍ୟା ଯେତେ
ଜଣେ ଜଣେ ହୋଇ ତହିଁ ମିଳିଲେ ସମସ୍ତେ ।
ବନ୍ଧୁବାନ୍ଧବଙ୍କ ଘରୁ ଯେଉଁ ସ୍ତ୍ରୀମାନେ
ଉତ୍ସବକୁ ଆସିଥିଲେ ମିଳିଲେ ବହନେ ।
ସମସ୍ତେ ସୁବର୍ଣ୍ଣ ରତ୍ନ ଅନ୍ନ ଆଦି କରି
ଜଣ ଜଣ ହୋଇ ଦେଲେ ଭିକ୍ଷାପାତ୍ରେ ଭରି ।
ନେଇଣ ଭିକ୍ଷାପାତ୍ର ଦେଇଣ ହସ୍ତରେ
ଗର୍ଗମୁନିଙ୍କୁ କିଞ୍ଚିତ ଦେଲେ ପ୍ରଥମରେ ।
ସେ ଅନ୍ତେ ନିଜ ଗୁରୁଙ୍କୁ କିଛି ତହୁଁ ଦେଲେ
ଅବଶିଷ୍ଟ ମାତାଙ୍କର ହସ୍ତେ ସମର୍ପିଲେ ।
ପୁଣି ଗର୍ଗ ମହର୍ଷିଙ୍କୁ ଯଥେଷ୍ଟ ଦକ୍ଷିଣା
ଦେଲେ କିଛି ମାତ୍ର ତହୁଁ ନ କରି ଉଣା ।

ଦେବ ବ୍ରାହ୍ମଣଙ୍କୁ ନାନା ମିଷ୍ଟଦ୍ରବ୍ୟ ଦେଲେ
ଭୋଜନ କରି ସେମାନେ ଆଶୀର୍ବାଦ କଲେ ।
ଯେଉଁମାନେ ଉତ୍ସବରେ ଯୋଗ ଦେଇଥିଲେ
ମେଲାଣି ହୋଇଣ ନିଜ ନିଜ ପୁରେ ଗଲେ ।
ହରଷ ସହିତେ ନନ୍ଦ ବେନି ପୁତ୍ରଙ୍କର
ଶୁଭକର୍ମ ସମାପନ କରି ସେ କାଳର ।
ଦୁହିଙ୍କୁ ବସାଇ କୋଳେ ମୁଖେ ଚୁମ୍ବ ଦେଲେ
ସ୍ନେହଭରେ ନୟନରୁ ଅଶ୍ରୁ ବୁହାଇଲେ ।
ଶ୍ରୀକୃଷ୍ଣ ତାହାଙ୍କୁ ଯତ୍ନେ ଆଶ୍ୱାସନା କରି
ବୋଇଲେ ମୋଠାରୁ ଶୁଣ ଆହେ ଦଣ୍ଡଧାରୀ
ଆଗୋଜନମା ତୁମ୍ଭେ ଯେ ଅଟ ମୋର ମାନ୍ୟ
ତୁମ୍ଭଙ୍କୁ ପାଇଣ ମୁହିଁ ହୋଇଅଛୁ ଧନ୍ୟ ।
ଆମ୍ଭେ ବେନିଭାଇ ଏବେ ଅବନ୍ତୀ ପୁରକୁ
ଯିବୁ ମହାମୁନି ସାନ୍ଦୀପନିଙ୍କ ଗୃହକୁ ।
ବେଦଶାସ୍ତ୍ର ଅଧ୍ୟୟନ କରିବୁ ସେଠାରେ
ଅନୁମତି ଦିଅ ଏବେ ସନ୍ତୁଷ୍ଟ ଚିତ୍ତରେ ।
ସେଠାରୁ ଆସିଲେ ତୁମ୍ଭ ସମୀପକୁ ଯିବୁ
ଦରଶନ କରି ପୁଣି ଲେଉଟି ଆସିବୁ ।
କାଳବଶେ ସୁଖ ଦୁଃଖ ଶୁଭାଶୁଭ ଭୋଗ
ହୁଅଇ ପୁଣି କାଳରେ ସଂଯୋଗ ବିଯୋଗ ।
ଯେଉଁ ଦିବ୍ୟଜ୍ଞାନ ମୁହିଁ ଦେଇଛୁ ପିତାଙ୍କୁ
ବତାଇ ସମସ୍ତ ସେହୁ କହିବେ ତୁମ୍ଭଙ୍କୁ ।
ଏମନ୍ତ କହି ଶ୍ରୀକୃଷ୍ଣ ଅଗ୍ରଜ ସହିତେ
ନନ୍ଦ ଯଶୋଦାଙ୍କ ଆଜ୍ଞା ଘେନିଣ ତୁରିତେ ।
ବସୁଦେବଙ୍କ ସଭାରେ ପ୍ରବେଶ ହୋଇଲେ
ତାହାଙ୍କ ଆଦେଶ ପାଇ ଗୁରୁଗୃହେ ଗଲେ
ନନ୍ଦ ଯଶୋଦା ରୋହିଣୀ ଦୁଃଖିତ ମନରେ
ଦେବକୀ ବସୁଦେବଙ୍କୁ କହି ସେ କାଳରେ ।
ଗୃହକୁ ଯିବା ସକାଶେ ହୋଇଲେ ବାହାର
ତା ଦେଖି ଦେବକୀ ବସୁଦେବ ନରବର ।
ସୁବର୍ଣ୍ଣ ରତ୍ନ ମାଣିକ୍ୟ ହୀରକ ସହିତେ
ଅମୂଲ୍ୟ ବସ୍ତ୍ର ଭୂଷଣ ଦେଲେ ଅପ୍ରମିତେ ।
ଯିବାବେଳେ ତାଙ୍କ ପଛେ ଶ୍ରୀକୃଷ୍ଣ ଜନନୀ
ଦେବକୀ ଆଦି ଯେ ଅନ୍ତଃପୁରର କାମିନୀ ।
ବସୁଦେବ ଉଦ୍ଧବଙ୍କ ସହିତେ ଅକ୍ରୂର
ଗଲେ ସଙ୍ଗରେ ଘେନାଇଁ ନାନା ଉପହାର
କାଳିନ୍ଦୀ ନଦୀ ତଟରେ ସର୍ବେ ଉଭାହେଲେ
ପରସ୍ପରେ ନାନାବିଧ ସମ୍ଭାଷଣ କଲେ ।
ସେ ଅନ୍ତେ ବିଦାୟ ଘେନି ଯେ ଯାହା ପୁରକୁ
ପ୍ରସ୍ଥାଣ କଲେ ଆରୋହି ଯାନ ବାହନକୁ ।
ଆଉ ଯେତେ ଆସିଥିଲେ ବନ୍ଧୁ ମିତ୍ରଜନ
ସମସ୍ତଙ୍କୁ ବସୁଦେବ ଦେଇ ବସ୍ତ୍ର ଧନ ।
ମଧୁର ବଚନ କହି ମାନସ ତୋଷିଲେ
ବିଦାୟ ଘେନି ସେମାନେ ଯେଝା ପୁରେ ଗଲେ
ଏଥୁ ଅନନ୍ତରେ ବିପ୍ରମାନଙ୍କୁ ଡକାଇ
ଦେଲେ ବସୁଦେବ ଧନ ରତ୍ନ ତୋଷ ବହି ।
ବନ୍ଦୀ ଭଟ୍ଟ ବାଦ୍ୟକାର ଆସିଥିଲେ ଯେତେ
ସନ୍ତୁଷ୍ଟ ହୋଇଣ ସର୍ବେ ଗଲେ ଯେଝାମତେ ।
ଯଥେଷ୍ଟ ପ୍ରକାରେ ଧନ ରତ୍ନ ସେମାନଙ୍କୁ
ଦେଲେ ମଧ୍ୟ ବସୁଦେବ ପ୍ରକାଶି ସ୍ନେହକୁ ।
ଉତ୍ସବ ଦେଖିବାପାଇଁ ଆଗନ୍ତୁକ ଜନେ
ଥିଲେ ଯେତେ ବସୁଦେବ ତାଙ୍କୁ ତୋଷମନେ
ଭୋଜନ କରିବା ପାଇଁ ନାନାଦ୍ରବ୍ୟ ଦେଇ
ବିତରଣ କଲେ କେତେ ଧନରତ୍ନ ନେଇ ।
ଏହିଠାରେ ବ୍ରତବିଧି ରାମକୃଷ୍ଣଙ୍କର
ସମାପ୍ତ କରିଲ ଗୀତେ କ୍ଷେତ୍ରବାସୀ ଗୁରୁ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣ ଓ ବଳରାମଙ୍କ ବ୍ରତ ସମାପନ ଓ ଆଗନ୍ତୁକମାନଙ୍କ ସ୍ୱସ୍ଥାନ ପ୍ରସ୍ଥାଣ କଥନେ ନାମ ଏକୋତ୍ତରଶତତମୋଽଧ୍ୟାୟଃ ।

—ଃ✻ଃ—

# ଦ୍ୱିଂଷଉତ୍ତରଶତତମ ଅଧ୍ୟାୟ

## କୃଷ୍ଣ ବଳରାମଦ୍ୱୟଙ୍କର ଗୁରୁଗୃହ ପ୍ରବେଶ ଓ ଗୁରୁପତ୍ନୀଙ୍କର ସ୍ତୋତ୍ରପଠନ

ନାରାୟଣ ବୋଇଲେ ହେ ଶୁଣ ତପୋନିଧି
ସାନ୍ଦୀପନି ଗୃହେ ବଳରାମ ନରହରି ।
ଉପସ୍ଥିତ ହୋଇ ଗୁରୁ ଗୁରୁପତ୍ନୀଙ୍କର
ପାଦ ଧରି ଭକ୍ତିଭରେ କଲେ ନମସ୍କାର ।
ଶୁଭ ଆଶୀର୍ବାଦ ଦେଇ ବହୁ ଧନରତ୍ନ
ଦେଲେ ନେଇ ସେକାଳରେ କରି ଅତି ଯତ୍ନ
ସେଥି ଅନ୍ତେ ଶ୍ରୀକୃଷ୍ଣ ଚାହିଁ ଗୁରୁଙ୍କ ମୁଖକୁ
ବୋଇଲେ ହେ ଦ୍ୱିଜବର ତୁମ୍ଭ ସମୀପକୁ ।
ପଢ଼ିବା ଇଚ୍ଛାରେ ଆସିଅଛୁ ବେନଭାଇ
ଶୁଭ କ୍ଷଣରେ ଆରମ୍ଭ କର ମନଦେଇ ।
ତାହା ଶୁଣି ସାନ୍ଦୀପନି ସନମତ କଲେ
ବସ୍ତ୍ର ଗନ୍ଧ ପୁଷ୍ପ ଦେଇ କୃଷ୍ଣଙ୍କୁ ପୂଜିଲେ ।
ମିଷ୍ଟାନ୍ନ ଭୁଞ୍ଜାଇ ପୁଣି ତାମ୍ବୁଳକୁ ଦେଲେ
ସେଥି ଅନ୍ତେ ଉତ୍ତମ ରୂପେ ସ୍ତୁତି ଆରମ୍ଭିଲେ
ବୋଇଲେ ଆହେ ଈଶ୍ୱର ପରମ ପୁରୁଷ
ତୁମ୍ଭେ ଅଟ ପରଂବ୍ରହ୍ମ ତ୍ରିଭୁବନ ଈଶ ।
ପରାତ୍ପର ପରମାତ୍ମା ସର୍ବମୟ ତୁମ୍ଭେ
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ ।
ତୁମ୍ଭଙ୍କୁ ଭଜିଲେ ଲୋକେ ସଂସାରୁ ମୁକତି
ହୋଇଥାଏ ସହଜରେ ଆହେ ଶ୍ରୀପତି ।
ହେ ନିର୍ଗୁଣ ନିରାକାର ପ୍ରକୃତିରୁ ପର
ସ୍ୱେଚ୍ଛାମୟ ନିରଙ୍କୁଶ ପ୍ରଭୁ ନିରାକାର ।
ଭକତ ବତ୍ସଳ ହୁଅ ମୋଠାରେ ପ୍ରସନ୍ନ
ଅନ୍ତଃକାଳେ ଦିଅ ତୁମ୍ଭ ପାଦତଳେ ସ୍ଥାନ ।
ଏଥିଅନ୍ତେ ମୁନିଙ୍କର ଭାରିଯା ସୁନ୍ଦରୀ
ସ୍ତୁତିକଲେ ଶ୍ରୀକୃଷ୍ଣଙ୍କୁ ଭକ୍ତିଭାବ ଧରି ।
ବୋଇଲେ ହେ ବ୍ରହ୍ମା ଶେଷ ମହେଶ ବନ୍ଦିତ
ମାୟାରେ ହୋଇଛ ତୁମ୍ଭେ ବସୁଦେବ ସୁତ
ମହୀଭାର ହରିବାକୁ ଜନମ ତୁମ୍ଭର
ହୋଇଅଛି ନିଶ୍ଚୟରେ ଏ ମହୀ ମଧ୍ୟର ।
ଯୋଗୀଜନେ ନିରନ୍ତରେ ଧ୍ୟାନମଗ୍ନ ହୋଇ
ବ୍ରହ୍ମଜ୍ୟୋତିରେ ତୁମ୍ଭର ସ୍ୱରୂପକୁ ଧ୍ୟାୟି ।
ଦର୍ଶନ କରନ୍ତି ଦିବ୍ୟ ଅପୂର୍ବ ମୂରତି
ଦ୍ୱିଭୁଜ ମୁରଲୀ ହସ୍ତ ନବଘନ କାନ୍ତି ।
ଚନ୍ଦନଚର୍ଚ୍ଚିତ ଅଙ୍ଗ ସସ୍ମିତ ବଦନ
ପୀତବାସ ବନମାଳା ରମ୍ୟ ଆଭରଣ ।
ବକ୍ଷସ୍ଥଳେ କଉସ୍ତୁଭ ମୁକ୍ତାମୟ ହାର
ବରଦ ବରେଣ୍ୟ କୋଟି କନ୍ଦର୍ପ ସୁନ୍ଦର ।
ସକଳ ବେଦର ସୃଷ୍ଟିକର୍ତ୍ତା ହୋଇକରି
ପଢ଼ିବାକୁ ଆସିଅଛ ମାୟାରୂପ ଧରି ।
ଲୋକ ଶିକ୍ଷା ସକାଶରେ କରିବ ପଠନ
ଜାଣୁଅଛୁ ଏହା ମୁହିଁ ଆହେ ଭଗବାନ ।
ଆଜ ଆମ୍ଭର ଜନମ ହୋଇଲା ସଫଳ
ପାଇଲୁ ଏକ୍ଷଣି ଆମ୍ଭେ ତୀର୍ଥସ୍ନାନ ଫଳ ।
ସଫଳ ଅଟଇ ମୋର ଏ ଦକ୍ଷିଣ ହସ୍ତ
ତୁମ୍ଭଙ୍କୁ ସେ ଅନ୍ନଦାନ କଲା ଜଗନ୍ନାଥ ।
ତୁମ୍ଭ ପାଦ ପରଶରେ ମନ୍ଦିର ପ୍ରାଙ୍ଗଣ
ପବିତ୍ର ହୋଇଲା ଆଜ ଆହେ ନାରାୟଣ ।
ଆହେ କୃପାମୟ ଦୟା କର ମୋହଠାରେ
ଭ୍ରମୁଅଛୁ ପଡ଼ି ଏହି ଅନିତ୍ୟ ସଂସାରେ ।
ଏମନ୍ତ ବୋଲିଣ ସାନ୍ଦୀପନିଙ୍କ ଘରଣୀ
ନିଜକୋଳେ ଶ୍ରୀକୃଷ୍ଣଙ୍କୁ ବସାଇଲେ ଆଣି ।
ମାତା ପରି ସ୍ନେହଭରେ ସ୍ତନ୍ୟ ପିଆଇଲେ
ଶ୍ରୀକୃଷ୍ଣ ତା ଦେଖିକରି ସନ୍ତୁଷ୍ଟ ହୋଇଲେ ।
ଗୁରୁପତ୍ନୀଙ୍କୁ ଅନାଇଁ କହିଲେ ବଚନ
ବୋଇଲେ ଗୋ ମାତ କିମ୍ପାଁ କରୁଛ ସ୍ତବନ
ଦୁଗ୍ଧମୁଖ ବାଳକ ମୁଁ ଅଟେ ତୁମ୍ଭ ସୁତ
ଯାହା ବୋଲିବ ସେ କଥା କରିବି ନିଶ୍ଚିତ ।
ସ୍ୱାମୀଙ୍କ ସହିତେ ତୁମ୍ଭେ ପ୍ରାକୃତିକ ଦେହ
ଛାଡ଼ିଣ ଗୋଲୋକେ ଯିବ ନାହିଁଟି ସନ୍ଦେହ ।
ଜରା ମୃତ୍ୟୁ ବିରହିତ ଶରୀରକୁ ତୁମ୍ଭେ
ଧାରଣ କରି ଗୋଲୋକେ ଯିବ ବୋଲୁ ଆମ୍ଭେ
ଏମନ୍ତ କହି ଗୁରୁଙ୍କ ପାଶେ ବେନି ଭାଇ
ବେଦ ଅଧ୍ୟୟନ କଲେ ଏକମାସ ରହି ।

ଆବର ସମସ୍ତ ଶାସ୍ତ୍ର ସମାପନ କଲେ
ଦକ୍ଷିଣା ସ୍ୱରୂପେ ବହୁଧନ ରତ୍ନ ଦେଲେ ।
ଗୁରୁଙ୍କର ମୃତପୁତ୍ର ଯମ ଭୁବନରୁ
ଫେରାଇ ଆଣିଲେ ନିଜ ବୋହ୍ମ କଟ୍ଟିଁ ଶରୁ
ପଞ୍ଚସହସ୍ର ମୁକ୍ତାମାଳ ପାଞ୍ଚଲକ୍ଷ ମଣି
ଦ୍ୱିଲକ୍ଷ ମାଣିକ୍ୟ ତାଙ୍କୁ ଦେଲେ ନେଇ ପୁଣି
ଗୁରୁପତ୍ନୀଙ୍କୁ ଭୂଷଣ ବସ୍ତ୍ର ଅପ୍ରମିତ
ଦେଲେ ସେ କାଳରେ ବସୁଦେବଙ୍କର ସୁତ
ଅମୂଲ୍ୟ ରତନ ହାର ସୁବର୍ଣ୍ଣ ମୁଦ୍ରିକା
ଦେଲେ ଆନନ୍ଦ ଚିତ୍ତରେ ନେଇଣ ସେ ଏକା
ଗୁରୁ ଗୁରୁପତ୍ନୀ ଦୁହେଁ ସେ ସମସ୍ତ ନେଇ
ପୁତ୍ରହସ୍ତେ ସମର୍ପଣ କଲେ ତୋଷ ବହି ।
ସେ ସମୟେ ଗୋଲୋକରୁ ଆସି ଦିବ୍ୟରଥ
ମୁନିଙ୍କ ସଦନ ପାଶେ ହେଲା ଭୂମିଗତ ।
ଶ୍ରୀକୃଷ୍ଣଙ୍କ ପାରିଷଦଗଣ ତହିଁ ଥିଲେ
ସେ ଦୁହିଙ୍କୁ ବସାଇଣ ଶୂନ୍ୟେ ଚଳିଗଲେ ।
ତାହା ଦେଖି କୃଷ୍ଣ ବଳରାମ ବେନିଭାଇ
ନିଜପୁରେ ଗଲେ ମନେ ବିସ୍ମୟକୁ ବହି ।
ଭକ୍ତିଭରେ ଶ୍ରୀକୃଷ୍ଣଙ୍କ ସ୍ତୋତ୍ରକୁ ଯେ ଲୋକ
ପଠନ କରଇ ତାକୁ ନ ଲାଗେ ପାତକ ।
ନିଶ୍ଚଳ ଭକତି ହୁଏ ଶ୍ରୀକୃଷ୍ଣଙ୍କଠାରେ
ସକଳ ସମ୍ପଦ ମିଳେ ଇହ ଜଗତରେ ।
ଦେହଅନ୍ତେ ଶ୍ରୀକୃଷ୍ଣଙ୍କ ସମୀପକୁ ଯାଇ
ରହେ ଆନନ୍ଦ ମନରେ ଦାସତ୍ୱକୁ ପାଇ ।
ଏ ମରସଂସାରେ ଆଉ ନ ହୁଏ ଜନମ
ଚଉଦ ପୁରୁଷ ତାର ହୁଅନ୍ତି ଯେ ଧନ୍ୟ ।
ଶ୍ରୀକୃଷ୍ଣ ବଳରାମଙ୍କ ବିଦ୍ୟା ଅଧ୍ୟୟନ
ଗୀତଛନ୍ଦେ କ୍ଷେତ୍ରବାସୀ କରିଲା ରଚନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ କୃଷ୍ଣ ବଳରାମ ଦ୍ୱୟଙ୍କର ଗୁରୁଗୃହ ପ୍ରବେଶ ଓ ଗୁରୁପତ୍ନୀଙ୍କର ସ୍ତୋତ୍ର ପଠନ କଥନେ ନାମ ଦ୍ୱିୟୁତ୍ତରଶତତମୋଽଧ୍ୟାୟଃ ।



## ଦ୍ୱିୟୁତ୍ତରଶତତମ ଅଧ୍ୟାୟ

### ଦ୍ୱାରକା ପୁରର ନିର୍ମାଣ ବିଷୟ ବର୍ଣ୍ଣନ

ଏଥୁଅନ୍ତେ ବଳରାମ କୃଷ୍ଣ ବେନିଭାଇ
ମଥୁରାପୁରେ ପ୍ରବେଶ ହେଲେ ବେଗେ ଯାଇ
ପିତାମାତାଙ୍କ ଚରଣେ ନମସ୍କାର କରି
ଗୁରୁଙ୍କର କଥାସବୁ କହିଲେ ବିସ୍ତାରି ।
ସେ ଅନ୍ତେ ବଟମୂଳରେ ବସି ଅଲକ୍ଷଣ
ଗରୁଡ଼କୁ ମନେ ମନେ କଲେ ସୁମରଣ ।
ଲବଣ ସାଗର ବିଶ୍ୱକର୍ମା ସୁଦର୍ଶନ
କୌମୋଦକୀ ଗଦାବର ଶଙ୍ଖ ପାଞ୍ଚଜନ୍ୟ ।
ଏମାନଙ୍କୁ ମଧ୍ୟ ମନେ ସ୍ମରଣା କଲେ
ଗୋପବେଶ ଛାଡ଼ି ନିଜ ବେଶକୁ ନେଇଲେ ।
ଏହି ସମୟରେ ରତ୍ନ ମାରତଣ୍ଡ ପରି
ପ୍ରବେଶ ହୋଇଲା ଯହିଁ ଥିଲେ ନରହରି
ସେ ଅନ୍ତେ ରତ୍ନଯାନକୁ ଆଗରେ ଚଳାଇ
ଆସିଲେ ଗରୁଡ଼ ବେଗମାତ୍ର ହୋଇଲାଇ ।
ଶିଳ୍ପୀ ସନ୍ନିକଟରେ ବିଶ୍ୱକର୍ମା ପ୍ରବେଶିଲେ ।
କମ୍ପମାନ ହୋଇ କ୍ଷୀରସାଗର ଆସିଲେ ।
ଶ୍ରୀକୃଷ୍ଣଙ୍କୁ ଦରଶନ କରିଣ ସମସ୍ତେ
ପ୍ରଣାମ କଲେ କ୍ରମରେ ଭକ୍ତିଯୋଗ ଚିତ୍ତେ ।
ଶ୍ରୀକୃଷ୍ଣ ବୋଇଲେ ଆହେ କ୍ଷୀରୋଦଧି ତୁମ୍ଭେ
ସ୍ଥଳ ଗୋଟିଏ ଦେଖାଅ ବୋଲୁଅଛୁ ଆମ୍ଭେ
ଶତଯୋଜନ ବିସ୍ତୃତ ହୋଇଥିବ ସେହି
ପୁର ଗୋଟିଏ ନିର୍ମାଣ କରିବାର ପାଇଁ ।
ସେ ଅନ୍ତେ ବିଶ୍ୱକର୍ମାକୁ ବୋଇଲେ ସେଠାରେ
ସୁନ୍ଦରପୁର ନିର୍ମାଣ କର ଚଞ୍ଚଳରେ ।
ସ୍ୱର୍ଗ ବୈକୁଣ୍ଠ ସମାନ ସେ ପୁର ହୋଇବ
ବାଛିବା ପାଇଁରେ କେଉଁ କଥାଟି ନ ଥିବ ।
ଗରୁଡ଼କୁ ଯହିଁ ପୁଣି କହିଲେ ଶ୍ରୀହରି
ବୋଇଲେ ହେ ଖଗେଶ୍ୱର ଆମ୍ଭ ବୋଲକରି

ବିଶ୍ୱକର୍ମାଙ୍କ ପାଖରେ ସବୁ କହିଲେ ଥିବ
ପୁର ନିର୍ମାଣ ସରିଲେ ନିଜସ୍ଥାନେ ଯିବ ।
ଚନ୍ଦ୍ରଙ୍କୁ ଅନାଇ ପୁଣ ବୋଇଲେ ସନ୍ତତେ
ତୁମ୍ଭେ ମଧ୍ୟ ଥାଅ ବିଶ୍ୱକର୍ମାଙ୍କ ସଙ୍ଗତେ ।
ସେମାନେ ସମସ୍ତେ ତାହା ଅଙ୍ଗୀକାର କଲେ
ଚନ୍ଦ୍ରବିନା ଅନ୍ୟସବୁ ସେ ଯା ସ୍ଥାନେ ଗଲେ
କଂସର ଜନକ ଉଗ୍ରସେନ ମହାମତି
କରିଥାଏ ସର୍ବଦା ଯେ ଶ୍ରୀକୃଷ୍ଣେ ଭକତି ।
ତାହାଙ୍କୁ ଡକାଇ ପ୍ରଭୁ ମଥୁରା ନଗରେ
ରାଜା କରାଇଲେ ଯଥାବିଧି ପରକାରେ ।
ଜରାସନ୍ଧ ଯବନଙ୍କୁ ସଂଗ୍ରାମରେ ମାରି
ନିଷ୍କଣ୍ଟକ କରାଇଲେ ଉଗ୍ରସେନ ପୁରୀ ।
ଏଥୁଅନ୍ତେ ବିଶ୍ୱକର୍ମା ଶ୍ରୀକୃଷ୍ଣଙ୍କ ଆଗେ
ଉପସ୍ଥିତ ହୋଇ ଜଣାଇଲେ ଅନୁରାଗେ ।
ବୋଇଲେ ଦ୍ୱାରକାପୁର ହେବ କି ପ୍ରକାର
କେତେ ପରିମାଣ ଅବା ହୋଇବ ଆକାର ।
ଆପଣଙ୍କଠାରୁ ତାହା କରିଲେ ଶ୍ରବଣ
ଯଥାବିଧି ସବୁ ମୁହିଁ କରିବି ନିର୍ମାଣ ।
ଶ୍ରୀକୃଷ୍ଣ ବୋଇଲେ ଶତ ଯୋଜନ ପର୍ଯ୍ୟନ୍ତ
ହୋଇବ ସେ ପୁର ଲମ୍ବ ବିସ୍ତାରେ ନିର୍ମିତ ।
ପଦ୍ମରାଗ ମକରତ ଇନ୍ଦ୍ର ନୀଳମଣି
ରୁଚକ ସେ ପାରିଭଦ୍ର ରଖାଇବ ଆଣି ।
ଆବର ସ୍ଫଟିକ ସୂର୍ଯ୍ୟକାନ୍ତ ଆଦିକରି
ନାନାବିଧ ରତ୍ନମାନ ଥିବେ ତହିଁ ପୂରି ।
ଯେଉଁଠାରେ ଯେତେ ଦ୍ରବ୍ୟ ଲୋଡ଼ା ହେଉଥିବ
ଲୋଡ଼ିବା ମାତ୍ରକେ ତାହା ସେକ୍ଷଣି ମିଳିବ ।
ହିମାଳୟ ପର୍ବତରୁ ମଣି ରତ୍ନ ଆଣି
ରଖାଇବ ସବୁଗୃହ ସୌନ୍ଦର୍ଯ୍ୟକୁ ଜାଣି ।
ମାତ୍ର ତାହା କୁବେରଙ୍କ ଦୂତଗଣ ନିତି
ହରିନେବେ ମାନସରୁ ଛାଡ଼ିଦେଇ ଖାତି ।
କୁଷ୍ମାଣ୍ଡ ବେତାଳ ବ୍ରହ୍ମରାକ୍ଷସ ଆଗାର
ପଠାଇଥିବେ ସେଠାକୁ ପାର୍ବତ ଈଶ୍ୱର ।
ସେମାନଙ୍କ ଅଜ୍ଞାତରେ ଅଣାଇବ ତୁମ୍ଭେ
ଜାଣିବା ସକାଶେ କହୁଅଛୁ ଜାଣ ଆମ୍ଭେ ।
ଷୋଡ଼ଶ ସହସ୍ର ପତ୍ନୀ ରହିବାର ପାଇଁ
ନିର୍ମାଣ କରିବ ଦିବ୍ୟପୁର ମାନ ତହିଁ ।

ଆବର ଅଷ୍ଟ ଅଧିକ ଶତ ପତ୍ନୀଙ୍କର
ନିବାସ ପାଇଁ ନିର୍ମାଣ କରିଥିବ ପୁର ।
ଉଚ୍ଚ ପ୍ରାକାର ବେଷ୍ଟିତ ହୋଇ ଚଉପାଶେ
ରହିଥିବ ଶତ୍ରୁଜନ ନ ଯିବା ସକାଶେ ।
ତାର ନିକଟରେ ନିମ୍ନ ପରିଖା ବେଷ୍ଟନ
କରିଥିବ ଦିଶିବ ଯେ ଅତ୍ୟନ୍ତ ଭୀଷଣ ।
ପ୍ରଥମରେ ସିଂହଦ୍ୱାର ରହିବ ଆଗକୁ
ଏକାଦଶ ଦ୍ୱାର କ୍ରମେ ଥିବ ତା ପଛକୁ ।
ନାନାବିଧ ସମନ୍ୱିତ କୃତ୍ରିମ କବାଟ
ସୁବର୍ଣ୍ଣ ରତ୍ନରେ ଦିଶୁଥିବ ଝଟଝଟ ।
ନିଷିଦ୍ଧ ବୃକ୍ଷ ଗୋଟିଏ ତହିଁ ନ ରହିବ
କେବଳ ଉତ୍ତମ ତରୁଗଣ ରହିଥିବ ।
ସର୍ବଶ୍ରେଷ୍ଠ ହେବ ଉଗ୍ରସେନଙ୍କର ପୁର
ପିତାଙ୍କ ଭବନ ହେବ ଅନୁ ରୂପ ତାର ।
ବିଶ୍ୱକର୍ମା ବୋଇଲେ ହେ ପ୍ରଭୁ ମୋତେ କହ
ପ୍ରଶସ୍ତ ନିଷିଦ୍ଧ ଅବା କେଉଁ ମହୀରୁହ ।
ନଗରର କେଉଁଦିଗେ ହେବ ଜଳାଶୟ
କି ପ୍ରକାର ହେଲେ ତାହା ହେବ ଶୁଭମୟ ।
ଗୃହ ପ୍ରାଙ୍ଗଣ ଦୁଆର କେତେ ପରିମାଣ
ହେବ ତାହା ମୋ ଆଗରେ କହ ନାରାୟଣ
ଶ୍ରୀକୃଷ୍ଣ ବୋଇଲେ ଗୃହୀ ଲୋକମାନଙ୍କର
ଧନପ୍ରଦ ଅଟେ ନାରିକେଳ ତରୁବର ।
ଈଶାନ୍ୟ କୋଣରେ ଥିଲେ ପୁତ୍ରଲାଭ କରେ
ଆବର ସକଳ ଧନ ସମ୍ପଦ ବଢ଼ରେ ।
ଗୃହ ପୂର୍ବେ ଥିବ ଯେବେ ରସାଳ ପାଦପ
ନିଶ୍ଚୟରେ ଧନରତ୍ନ ମିଳିବ ଅମାପ ।
ନିମ୍ବ ପନସ ଜମ୍ବିର ପୂର୍ବ ପଶ୍ଚିମରେ
ଥିଲେ ଅଶେଷ ସମ୍ପଦ ହୁଏ ନିଶ୍ଚୟରେ ।
ଦାଡ଼ିମ୍ବ କଦଳୀ ଜମ୍ବୁ ପୂର୍ବେ ବା ଦକ୍ଷିଣେ
ଥିଲେ ବନ୍ଧୁମିତ୍ର ସ୍ନେହ ବଢ଼େ ଅନୁକ୍ଷଣେ ।
ଗୁବାକ ଦକ୍ଷିଣେ ଅବା ପଶ୍ଚିମରେ ଥିଲେ
ଆନନ୍ଦ ଜାତ ହୁଅଇ ମନରେଟି ଭଲେ ।
ଚମ୍ପକ କୁସୁମବୃକ୍ଷ ସବୁଠାରେ ଶୁଭ
ତାର ଦରଶନେ କାର୍ଯ୍ୟସିଦ୍ଧ ହୁଏ ଧ୍ରୁବ ।
ଆଲାବୁ କୁଷ୍ମାଣ୍ଡ ଶୁକ୍ଳ କର୍କଟୀ ଖର୍ଜ୍ଜୁରୀ
ଗୃହ ନିକଟରେ ଥିଲେ ହୁଏ ଶୁଭକାରୀ ।

ବାସ୍ତୁକ ବାର୍ତ୍ତାକି କାରବେଲ ଲତାଫଳ
ଥିବ ଯେବେ ନିଶ୍ଚୟରେ ହୋଇବ ମଙ୍ଗଳ ।
ନିଷିଦ୍ଧ ବୃକ୍ଷର ନାମ କହୁଅଛୁ ଶୁଣ
ଯେଉଁ ବୃକ୍ଷ ଥିଲେ ହୁଏ ଯେଉଁ ଦୋଷମାନ ।
ଶିବିର ପାଶେ ଶାଲ୍ମଳୀ ବୃକ୍ଷ ଥିବ ଯେବେ
ପଦେ ପଦେ ଦୁଃଖପ୍ରଦ ହୋଇବନ୍ତି ତେବେ
କେବଳ ନଗର ଗ୍ରାମ ନିକଟେ ରହିଲେ
ତହିଁରେ କିଛିହିଁ ଦୋଷ ନୁହେଁ ଜାଣ ଭଲେ
ବଟ ବୃକ୍ଷକୁ ଶିବିର ପାଶେ ନ ରଖିବ
ରଖିଲେ ଅବଶ୍ୟ ଚୌରଭୟ ଜାତ ହେବ ।
ନଗର ପ୍ରାନ୍ତରେ ଥିଲେ ତାର ଦରଶନ
କରିବା ମାତ୍ରେ ସକଳ ଶୁଭ ହୁଏ ଜାଣ ।
ତିନ୍ତୁଳ ବୃକ୍ଷକୁ ଗୃହ ପାଶେ ରଖିବାର
ଉଚିତ ନୁହଇ କେବେ ଆହେ ଶିଳ୍ପୀବର ।
ଶିବିର ପାଶରେ ଶାଳବୃକ୍ଷ ଯେବେ ରହେ
ଧନ ସମ୍ପଦ କଦାପି ବର୍ଦ୍ଧିତ ନ ହୁଏ ।
ଗ୍ରାମ ନଗରେ ରହିଲେ ନୁହେଁ ତେତେ ଦୋଷ
ପୁରାଣ ଶାସ୍ତ୍ରରେ ଏକା ହୋଇଛି ପ୍ରକାଶ ।
କାର୍ପାସ ସର୍ଷପ ମାସ ମସୁରାଦି କେତେ
କ୍ଷୁଦ୍ରବୃକ୍ଷେ ଅମଙ୍ଗଳ କରନ୍ତି ନିଶ୍ଚୟେ ।
ଯବ ଗୋଧୂମ ଚଣକ ଧାନ୍ୟ ଏ ସକଳ
ଯେଉଁଠାରେ ଥିଲେ ହେଲେ କରନ୍ତି ମଙ୍ଗଳ
ସବୁଠାରେ ଇକ୍ଷୁ ବୃକ୍ଷ ଅଟେ ଶୁଭକାରୀ
ସ୍ଥାପନ କରିବ ତାକୁ କିଛି ନ ବିଚାରି ।
ଅଶୋକ ଶିରୀଷ ତରୁ ସୁଖପ୍ରଦ ଜାଣ
କଦମ୍ବ ବୃକ୍ଷ ଅଟଇ ତାହାଙ୍କ ସମାନ ।
ହରିତକୀ ଆମଳକୀ ନଗର ଗ୍ରାମରେ
ଶୁଭପ୍ରଦ ବୋଲି ଲେଖା ହୋଇଛି ଶାସ୍ତ୍ରେ ।
ଗଜ ଅଶ୍ୱଙ୍କର ଅସ୍ଥି ଗୃହ ବାସ୍ତୁ ତଳେ
ପୋତିଲେ ମଙ୍ଗଳ ହେଉଥାଏ ସର୍ବକାଳେ ।
କୁକୁର ମାର୍ଜାର ଆଦି କେତେ ଜନ୍ତୁଙ୍କର
ଅସ୍ଥି ଯୋଗରେ ଅଶୁଭ ହୁଅଇ ନିକର ।
କେଉଁଠାରେ ହେଲେ ଦୀର୍ଘ ପ୍ରସ୍ଥରେ ସମାନ
କେବେ ନ କରିବ ଗୃହଙ୍କର ଆୟତନ ।
ଚତୁରସ୍ର ବାସଗୃହେ କରଇ ଯେ ନର
ସକଳ ଧନ ସମ୍ପଦ ନାଶ ହୁଏ ତାର ।

ଯେଉଁଠାରେ ପ୍ରସ୍ଥ ଦୁଇହାତ ହୋଇଥିବ
ଦୀର୍ଘରେ ତାହାକୁ ତିନି ହସ୍ତନ୍ତି କରିବ ।
ଭିତ୍ତିର ଉପର ଭାଗ ଶୂନ୍ୟ ଯେ କରଇ
ତାହାର ସମସ୍ତ କାର୍ଯ୍ୟ ବିଫଳ ହୁଅଇ ।
ମଣିବେଧନେ ନ୍ୟୂନାଧିକ କଲେ ସର୍ବନାଶ
ହୁଅଇ ସକଳ ଗୃହ ନଗରେ ଅବଶ୍ୟ ।
ଚତୁସ୍ର ଶିବିରଟି ଚନ୍ଦ୍ରବେଧ ହେଲେ
ମଙ୍ଗଳ କରଇ ସବୁ କାଳରେ ଯେ ଭଲେ ।
ସୂର୍ଯ୍ୟ ବେଧ ହେଲେ ନାନା ବିପଦ ହୁଅଇ
ଶିଳ୍ପଶାସ୍ତ୍ରେ ନିରୂପିତ ଏହା ଅଛି ହୋଇ ।
ଶିବିର ମଧ୍ୟେ ତୁଳସୀ ବୃକ୍ଷକୁ ସ୍ଥାପିବ
ତେମନ୍ତ ହେଲେ ଅଶେଷ ପୁଣ୍ୟଲାଭ ହେବ ।
ଗୃହ ପୂର୍ବ ଦକ୍ଷିଣରେ କରିବ ଉଦ୍ୟାନ
ଆରୋପିବ ତହିଁ ଶୁଭ ପୁଷ୍ପ ବୃକ୍ଷମାନ ।
ମାଳତୀ ଯୂଥିକା କୁନ୍ଦ ମଲ୍ଲୀ ନାଗେଶ୍ୱର
ମାଧବୀ କେତକୀ ଆଦି ଯେ ଗୁଳ୍ମ ନିକର ।
ଏହି ସବୁ ଶୁଭ ପୁଷ୍ପବୃକ୍ଷ ବୋଲି ଜାଣ
ମଙ୍ଗଳ ହୁଅଇ କଲେ ଏହାକୁ ରୋପଣ ।
ଗୃହକୁ ଷୋଡ଼ଶ ହସ୍ତ କରିବ ଦୀର୍ଘରେ
ପ୍ରାକାର କରିବ ବିଂଶ ହସ୍ତ ଯେ ପ୍ରକାରେ ।
ଗ୍ରାମ ମଧ୍ୟେ ସୂତ୍ରଧାର ତୈଳ ସ୍ୱର୍ଣ୍ଣକାର
ଏହାଙ୍କ ସକାଶେ କେବେ ନ ଦେବଟି ଘର
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରଙ୍କୁ ପାଶରେ
ରଖାଇବ ଗୃହ ଦେଇ ସମାନ ପ୍ରକାରେ ।
ଗଣକ ବୈଦ୍ୟ କୁସୁମକାରଙ୍କୁ ସେପରି
ରଖିବ ପାଶରେ ଶୁଭାଶୁଭକୁ ବିଚାରି ।
ପୁର ପ୍ରକାର ବାହ୍ୟରେ ଗଭୀର ପରିଖା
ଖୋଳାଇବ ଶତ୍ରୁଠାରୁ ପାଇବାକୁ ରକ୍ଷା ।
ଅଗମ୍ୟ ଯେ ହୋଇଥିବ ଶତ୍ରୁଜନଙ୍କର
ମିତ୍ରଙ୍କ ପ୍ରବେଶ ମାର୍ଗ ଥିବ ତା ମଧ୍ୟର ।
ସେ ଗୁପତମାନ ଆନେ ଅଜ୍ଞାତ ରଖିବ
ମିତ୍ର ହେଲେ ମଧ୍ୟ ତାକୁ କେବେ ନ କହିବ
ଶାଲ୍ମଳୀ ତିନ୍ତିଡ଼ୀ ନିମ୍ବ ଉଦୁମ୍ବରହିଁ ତାଳ
ସିନ୍ଧୁବାର ଧୂସ୍ତୁରକ ବଟ ଯେ ପିପ୍ପଳ ।
ଏ ବୃକ୍ଷମାନଙ୍କୁ ଛାଡ଼ି ଅନ୍ୟ ବୃକ୍ଷ ଯାକ
ଗୃହ କରଣରେ ସଦା ଅଟଇ ଉତ୍କୃଷ୍ଟ ।

ଯେଉଁ ବୃକ୍ଷଟି ବଜ୍ରରେ କ୍ଷତ ହୋଇଥିବ
ତାହାକୁ କଦାପି ବୃଦ୍ଧ କାର୍ଯ୍ୟେ ନ ଆଣିବ ।
ଲୋକଶିକ୍ଷା ଘଟାଣରେ ଏ ସମସ୍ତ କଥା
କହିଲି ତୁମ୍ଭ ଆଗରେ ଆହେ ମହାରଥୀ ।
ତୁମ୍ଭେ ଯେ ଦ୍ୱାରକା ପୁର କରିବ ନିର୍ମାଣ
ତାଷ୍ଟ ବିନା ତାହା ସବୁ ହୋଇବନି ଜାଣ ।
ଏବେ ଶୁଭକ୍ଷଣ ହୋଇଅଛି ବେଗେ ଯାଅ
ବିଳମ୍ବ ନ କର କାର୍ଯ୍ୟେ ମନକୁ ବଳାଅ ।
ତାହା ଶୁଣି ବିଶ୍ୱକର୍ମା ସନ୍ତୁଷ୍ଟ ହୋଇଲେ
କୃଷ୍ଣଙ୍କୁ ପ୍ରଣାମ କରି ତହୁଁ ଚଳିଗଲେ ।
ଗରୁଡ଼ଙ୍କୁ ସଙ୍ଗେ ଘେନି ସମୁଦ୍ରର କୂଳେ
ଶୟନ କଲେ ବିଶାଳ ବଟବୃକ୍ଷ ମୂଳେ ।
ପ୍ରଭାତରେ ଦ୍ୱାରବତୀ ନଗରୀକୁ ଦେଖି
ସ୍ୱପ୍ନପୂର୍ବେ ପ୍ରିୟତ୍ୱଷ୍ଣ ନ ପାଇଲେ ଆଖି ।
ଯେଉଁ ପ୍ରକାରେ ଶ୍ରୀକୃଷ୍ଣ ପୂର୍ବେ କହିଥିଲେ
ସାକ୍ଷାତରେ ସେହିପରି ଦେଖି ତୋଷ ହେଲେ
ମନେ ମନେ ବିଶ୍ୱକର୍ମା ହୋଇଲେ ଲଜ୍ଜିତ
ଶ୍ରୀକୃଷ୍ଣଙ୍କୁ ସୁମରଣା କଲେ ଦେଇ ଚିତ୍ତ ।
ଏଥିଠାରେ ଦ୍ୱାରବତୀ ନିର୍ମାଣ ଚରିତ
କ୍ଷେତ୍ରମୋହନ ଗୀତରେ କଲି ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମ ଖଣ୍ଡେ ଦ୍ୱାରକାପୁର ନିର୍ମାଣ ବର୍ଣ୍ଣନେ
ନାମ ତ୍ରିଂଶୋତ୍ତରଶତତମୋଽଧ୍ୟାୟଃ ।

---

## ଚ ତୁ ରୁ ତ୍ତ ର ଶ ତ ତ ମ ଅ ଧ୍ୟା ୟ

### ବ୍ରହ୍ମାଦି ଦେବଗଣମାନେ ଆଗମନ ଓ ଉଗ୍ରସେନ ପ୍ରଭୃତିଙ୍କର ଦ୍ୱାରକାଯାତ୍ରା

ଏଥୁଅନନ୍ତରେ ବ୍ରହ୍ମା ଶଙ୍କର ପାର୍ବତୀ
ଅନନ୍ତ ଅନଳ ଧର୍ମଦେବ ପ୍ରଜାପତି ।
କୁବେର ବରୁଣ ଯମ ପବନ ମହେନ୍ଦ୍ର
ଏକାଦଶ ରୁଦ୍ରଗଣ ବସୁଗଣ ଚନ୍ଦ୍ର ।
ଆବର ଗନ୍ଧର୍ବ ଯକ୍ଷ ପନ୍ନଗ କିନ୍ନର
ଦ୍ୱାଦଶ ଆଦିତ୍ୟ ମୁନି ଋଷି ବିଦ୍ୟାଧର ।
ଶ୍ରୀକୃଷ୍ଣ ବଳରାମଙ୍କୁ ଦେଖିବା ଇଚ୍ଛାରେ
ପ୍ରବେଶ ହୋଇଲେ ଆସି ମଥୁରା ନଗରେ ।
ଦେଖିଲେ ବଟ ମୂଳରେ ବସି ବେନିଭାଇ
ପରସ୍ପରେ କଥାବାର୍ତ୍ତା ହେଉଛନ୍ତି ତହିଁ ।
ତାହାଙ୍କୁ ଦେଖିଣ ଦେବେ ବହୁସ୍ତୁତି କଲେ
ସେଠାରୁ ଯାଇ ଦ୍ୱାରକାପୁରେ ପ୍ରବେଶିଲେ
ଦେଖିଲେ ସେ ପୁରୀ ଶତଯୋଜନ ବିସ୍ତୃତ
ରହିଛନ୍ତି ତହିଁ ସ୍ୱର୍ଣ୍ଣ ରତ୍ନ ଅପ୍ରମିତ ।
ପ୍ରାକାର ଅନ୍ତରେ ସପ୍ତପରିଖା ତାହାର
ମଧ୍ୟ ଦେଶରେ ଲକ୍ଷେକ କ୍ରୀଡ଼ା ସରୋବର
ସ୍ଥାନେ ସ୍ଥାନେ ପରିଜାତ କୁସୁମ ଉଦ୍ୟାନ
ଦିଶଇ ଯେ ନାନା ବୃକ୍ଷ ଲତାରେ ଶୋଭନ ।
ଶୀତଳ ସୁରଭି ବାୟୁ ମନ୍ଦ ମନ୍ଦ ବହି
ଉଲ୍ଲସିତ କରୁଅଛି ଦେହୀଙ୍କର ଦେହ ।
ଶତକୋଟି ନାରକେଳ ବୃକ୍ଷ ତା ପାଶରେ
ଶୋଭା ପାଉଅଛି ଅତିଶୟ ଫଳଭରେ ।
ଗୁବାକ ଆମ୍ର ପନସ ତହୁଁ ବୃକ୍ଷଗଣ
ବୃକ୍ଷପାଶେ ରହି ଶୋଭା ପାଉଛନ୍ତି ଜାଣ ।
ତମାଳ ତାଳ ହିନ୍ତାଳ ଦ୍ରୁମ ଅପ୍ରମିତ
ଅବାରୁ ଶୋଭାରେ ହରି ନେଉଛନ୍ତି ଚିତ୍ତ ।
ଅଶ୍ୱତ୍ଥ ବିଲ୍ୱ ଶାଳ୍ମଳୀ ଜମ୍ବୁ କଦମ୍ବକ
ଚନ୍ଦନ ନାଗକେଶ୍ୱର ନାରଙ୍ଗ ଚମ୍ପକ ।
ଶିରୀଷ ସପତପର୍ଣ୍ଣ ଆଦି ତରୁଗଣ
ରହିଅଛନ୍ତି ସେଠାରେ ହୋଇ ପତ୍ରପୂର୍ଣ୍ଣ ।
ମାଣିକ୍ୟ ହୀରକ ରତ୍ନକଳଶ ଅପାର
ଥୁଆହୋଇ ସ୍ଥାନେ ସ୍ଥାନେ ଦିଶନ୍ତି ସୁନ୍ଦର ।
କଠିନ କବାଟ ଦୁଇ ଅର୍ଗଳା ଝଲକ
ସୁବର୍ଣ୍ଣ ରତ୍ନରେ ଦିଶୁଅଛି ଜକ ଜକ ।
ଦର୍ପଣ ମଣି ନିର୍ମିତ ଶୁକଳ ଚାମର
କେଉଁ କେଉଁ ଗୃହେ ରଖା ହୋଇଛି ଅପାର

ରାଜମାର୍ଗେ ପ୍ରାଙ୍ଗଣରେ ଇନ୍ଦ୍ର ନୀଳମଣି
ହସି ଦେଉଅଛି ନବଘନ ପ୍ରଭା ଜିଣି ।
ଲକ୍ଷେକ ଗବାକ୍ଷ ଶୋଭେ ମନ୍ଦିରେ ସୁସଜ୍ଜିତ
ଦେଉଅଛି ଚହୁଁ ରତ୍ନ କିରଣ ନିର୍ଗତ ।
ତାକୁ ଦେଖି ଦେବଗଣ ବିସ୍ମିତ ହୋଇଲେ
ଆଶ୍ଚର୍ଯ୍ୟ ହୋଇଅଛି ବୋଲି ପ୍ରଶଂସା କଲେ ।
ଆନନ୍ଦିତ ମନେ ବଳରାମ କୃଷ୍ଣ ବେନି
ସୁମରିଲେ ଉଗ୍ରସେନ ନୃପଙ୍କୁ ସେକ୍ଷଣି ।
ତାଙ୍କ ସହିତରେ ପିତାମାତାଙ୍କୁ ସୁରିଲେ
ପୁଣି ପଞ୍ଚ ପାଣ୍ଡବଙ୍କୁ କୁନ୍ତୀଙ୍କର ତୁଲେ ।
ଗୋପାଳ ଗୋପୀ ସହିତେ ନନ୍ଦ ଯଶୋଦାଙ୍କୁ
ସୁମରଣା କଲେ ଅଧିକ ପ୍ରକାଶି ସ୍ନେହକୁ ।
ଗନ୍ଧର୍ବ କିନ୍ନର ବିଦ୍ୟାଧର ଅପସର
ଗାୟକ ନର୍ତ୍ତକ ଯକ୍ଷ କନ୍ୟା ବିଦ୍ୟାଧରୀ ।
ବାଦ୍ୟକାର ସମେତରେ ସୁମରି ଏହାଙ୍କୁ
ବସିଲେ ହରଷ ରସେ ମଜ୍ଜାଇ ମନକୁ ।
ଏଥିଅନ୍ତେ ଦେବକୀ ବସୁଦେବଙ୍କୁ ବେନି
ସଙ୍ଗତରେ ଉଗ୍ରସେନ ନୃପତିଙ୍କୁ ଘେନି ।
ପ୍ରବେଶ ହୋଇଲେ ଆସି ଦ୍ୱାରକା ଭବନେ
ତାଙ୍କ ସହିତରେ ଥିଲେ ଯଦୁବୀରମାନେ ।
ଯଶୋଦା ରୋହିଣୀ ନନ୍ଦ ଗୋପିକାମାନଙ୍କୁ
ସଙ୍ଗେ ଘେନି ସେହିକ୍ଷଣି ଆସିଲେ ସେଠାକୁ
ପାଣ୍ଡବମାନେ ମାତାଙ୍କୁ ଘେନିଣ ଆସିଲେ
ଆବର ବହୁତ ନୃପ ଉପସ୍ଥିତ ହେଲେ ।
ଗନ୍ଧର୍ବ କିନ୍ନର ଯକ୍ଷ ସିଦ୍ଧ ବିଦ୍ୟାଧର
ଭିକ୍ଷୁକ ଗଣକ ଭାଟ ନଟ ବାଦ୍ୟକାର ।
ସନ୍ନ୍ୟାସୀ ବ୍ରାହ୍ମଣ ମୁନି ଯତି ବ୍ରହ୍ମଚାରୀ
ସମସ୍ତେ ମିଳିଲେ ଆସି ଦ୍ୱାରକା ନଗରୀ ।
ସନକ ସନନ୍ଦ ସନାତନ ଯେ କପିଳ
ବୋଢୁ ପଞ୍ଚଶିଖ ଯେ ଆଉରି ତପଶୀଳ ।
ଶ୍ରୀକୃଷ୍ଣଙ୍କୁ ଦରଶନ କରିବା ଇଚ୍ଛାରେ
ଆସି ଉପସ୍ଥିତ ହେଲେ ମୁହୂର୍ତ୍ତେ ମଧ୍ୟରେ ।
ଦୁର୍ବାସା କଶ୍ୟପ ସନତ୍କୁମାର ବାଲ୍ମୀକ
ଆସିଲେ ସଙ୍ଗରେ ଘେନି ଶିଷ୍ୟଙ୍କୁ ଅନେକ ।
ଗଉତମ ବୃହସ୍ପତି ଶୁକ୍ର ଭରଦ୍ୱାଜ
ଅଙ୍ଗିରା ପୁଲସ୍ତ୍ୟ କ୍ରତୁ ପୁଲହ କୁମ୍ଭଜ ।
ଲମ୍ବ ମହସ୍ତ ଶିଷ୍ୟଙ୍କୁ ସଙ୍ଗେ ଘେନି ବେଗେ
ପ୍ରବେଶ ହୋଇଲେ ଆସି ଶ୍ରୀକୃଷ୍ଣଙ୍କ ଆଗେ ।
ଶତାନନ୍ଦ ଋଷ୍ୟଶୃଙ୍ଗ ବ୍ୟାସ କାତ୍ୟାୟନ
ଯାଜ୍ଞବଲ୍କ୍ୟ ପରାଶର ପାଣିନି ଚ୍ୟବନ ।
କଣାଦ ଗାଲବ ଶୁକ ଗର୍ଗଆଦି କରି
ମନ୍ଦିରରେ ନିଜ ନିଜ ଶିଷ୍ୟବର୍ଗ ଧରି ।
ଦ୍ୱାରକା ଭୁବନେ ଉପସ୍ଥିତ ହେଲେ ଆସି
ଶ୍ରୀକୃଷ୍ଣଙ୍କ ଦରଶନେ ହୋଇଣ ଲାଳସୀ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା କର୍ଣ୍ଣ ଦୁର୍ଯ୍ୟୋଧନ
କୃପ ଆଚାର୍ଯ୍ୟ ଶକୁନି ଆଦି କୁରୁଗଣ ।
ଶ୍ରୀକୃଷ୍ଣଙ୍କ ଧର୍ମପୁରେ ଉପସ୍ଥିତ ହୋଇ
ନାନାବିଧ କଥାବାର୍ତ୍ତା ହେଲେ ତୋଷ ବହି ।
କେତେମାନେ ଶ୍ରୀକୃଷ୍ଣଙ୍କୁ ସ୍ତୁତିକରି ଧୀରେ
ଉଭା ହେଲେ ଆଗେ କର ନିବେଶିଣ ଶିରେ ।
ବିପ୍ର ମୁନି ଋଷିମାନେ ଆଶୀର୍ବାଦ କରି
ସଭାରେ ବସିଲେ ଭକ୍ତିଭାବ ହୃଦେ ଧରି ।
ସେ କାଳେ ଶ୍ରୀକୃଷ୍ଣ ଉଗ୍ରସେନଙ୍କୁ ଅନାଇ
ବୋଇଲେ ମୋହର ବାକ୍ୟ ଶୁଣ ନରସାଇଁ
ଶୁଭକର୍ମ ଶେଷ ହେଲେ ଦେବଋଷିଗଣ
ଯେ ଯାହାର ଭବନକୁ କରିବେ ପ୍ରୟାଣ ।
ମୋ ସକାଶୁ ତୁମ୍ଭେ ଏହି ଶୁଭ ମୁହୂର୍ତ୍ତରେ
ଦ୍ୱାରକାପୁରରେ ପ୍ରବେଶ ହୁଅ ଆନନ୍ଦରେ ।
ଜନକ ଜନନୀ ମୋର ମାହେନ୍ଦ୍ର ମୁହୂର୍ତ୍ତେ
ଯାଆନ୍ତୁ ଯଦୁଙ୍କୁ ଘେନି ତୁମ୍ଭର ସହିତେ ।
ଆଉ କେତେ ଯଦୁବୀରେ ମଥୁରାପୁରକୁ
ଫେରିଯାନ୍ତୁ ରକ୍ଷା କରିଥିବେଟି ତାହାକୁ ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
କ୍ଷଣେ ଧ୍ୟାଏ ଉଗ୍ରସେନ ମନେ ମନେ ଗୁଣି ।
ବୋଇଲେ ହେ ବାସୁଦେବ ପୈତୃକ ଭୂମିକୁ
ଛାଡ଼ିକରି କେବେ ନ ଯିବି ମୁଁ ଅନ୍ୟଠାକୁ ।
ପୈତୃକ ଭୂମି ଅଟଇ ସର୍ବତୀର୍ଥ ସମ
କରିବି ତହିଁରେ ଦେବ ପିତୃଙ୍କର କର୍ମ ।
ପରଭୂମିରେ ଯେ ପିତୃଶ୍ରାଦ୍ଧ କର୍ମ କରେ
ଭୂମିସ୍ୱାମୀ ପଡ଼େ ପିତୃସହ ନରକରେ ।
ସେ ଶ୍ରାଦ୍ଧ କର୍ମର ଫଳ ସବୁ ନଷ୍ଟ ହୁଏ
ବିମୁଖ ହୋଇଣ ଫେରିଯାନ୍ତି ଦେବତାଏ ।

ପିତା ମାତା ପୁତ୍ରପୌତ୍ର କଳତ୍ରଙ୍କ ପ୍ରତ
ଅଧିକ ଅଟଇ ପିତୃଲବ୍ଧ ଭୂମି ଅତ ।
ସେପିତୃଙ୍କ ଭୂମିରେ ଯାର ହୁଅଇ ମରଣ
ଅଳଭ୍ୟରେ ସ୍ୱର୍ଗପ୍ରାପ୍ତି ହୁଏ ତାକୁ ଜାଣ ।
ଶ୍ରୀକୃଷ୍ଣ ବୋଇଲେ ଯେବେ ପିତାର୍ଜିତ ସ୍ଥାନ
ବୋଲୁଅଛ ଅଟେ ପୁଣ୍ୟତୀର୍ଥର ସମାନ ।
ତାହା ହେଲେ ଦ୍ୱାରକାରୁ ବଳ ପୁଣ୍ୟତୀର୍ଥ
କେଉଁଠାରେ ନାହିଁ ଏହା ଅଟଇ ଯଥାର୍ଥ ।
ଯହିଁରେ ପ୍ରବେଶ ହେବା ମାତ୍ରେ ମନୁଷ୍ୟର
ଖଣ୍ଡିତ ହୁଅଇ ଜନ୍ମ ମରଣ ସଂସାର ।
ଦେବତା ପିତୃପୂଜନ ଅତିଥି ସେବନ
ଦ୍ୱାରକାପୁରେ ରହିଣ କରିବ ଯେ ଜନ ।
ତୀର୍ଥଯୋଗ ଫଳଠାରୁ ଅଧିକ ତାହାର
ଫଳଲାଭ ହେବ ନିଶ୍ଚୟରେ ମନେ କର ।
ତୁମ୍ଭେ ଏବେ ବ୍ରହ୍ମାଆଦି ଦେବଙ୍କ ସହିତ
ଦ୍ୱାରକା ଭବନେ ଯାଇ ହୋଇ ଉପସ୍ଥିତ ।
ଆନନ୍ଦରେ ରାଜଯୋଗ୍ୟ ଭବନରେ ବାସ
କର ମାନସରୁ ତ୍ୟାଗକରି ଭୟ ତ୍ରାସ ।
ଜମ୍ବୁଦ୍ୱୀପ ସ୍ଥିତ ରାଜା ମହାରାଜାମାନେ
ତୁମ୍ଭ ପାଶେ କର ଦେଉଛନ୍ତି ତୋଷମନେ ।
ଧନରେ କୁବେର ତେଜେ ସୂର୍ଯ୍ୟଙ୍କ ରମଣ
ତପସ୍ୟାରେ ମୁନି ଋଷି ବ୍ରହ୍ମର୍ଷିଗଣ ।
ତୁମ୍ଭର ସମାନ ହୋଇ ନ ପାରିବେ ଜାଣ
ରାଜାଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି ଆପଣ ।
ତୁମ୍ଭର ସଭାରେ ନିଜେ ଶେଷଦେବ ଆସି
ବିଜେ କରିଛନ୍ତି ସଭ୍ୟରୂପେ ହୋଇ ତୋଷି ।
ବଳରାମ ଅବତାର କରି ସେ ଗ୍ରହଣ
ମର୍ତ୍ତ୍ୟଲୋକେ ପ୍ରକାଶିତ ହୋଇଛନ୍ତି ଜାଣ ।
ଶିବଙ୍କ ବିନା ତୁମ୍ଭଙ୍କୁ ଯୁଦ୍ଧେ ଜିଣିବାକୁ
ଦେବଙ୍କ ମଧ୍ୟରେ ଦେଖୁନାହିଁ ମୁଁ କାହାକୁ ।
ଶ୍ରୀକୃଷ୍ଣ ବଚନ ଶୁଣି ରାଜା ଉଗ୍ରସେନ
ପ୍ରସନ୍ନ ହୋଇଣ କଲେ ଦ୍ୱାରକା ଗମନ ।
ଯାଦବଙ୍କ ସହିତରେ ନିଜ ପୁରେ ଯାଇ
ପ୍ରବେଶ ହେଲେ ମାହେନ୍ଦ୍ର ସମୟରେ ତହିଁ ।
ନାନାଶସ୍ତ୍ର ଅସ୍ତ୍ର ଘେନି ଦ୍ୱାରପାଳଚୟ
ଜଗିଛନ୍ତି ସବୁବେଳେ ହୋଇଣ ନିର୍ଭୟ ।

ଯେ ପୁର ମଧ୍ୟରେ ସ୍ୱର୍ଣ୍ଣରତ୍ନ ଅପ୍ରମିତ
ରହି ହରି ନେଉଛନ୍ତି ଦର୍ଶକଙ୍କ ଚିତ୍ତ ।
ଆବର ପଦାତି ଅଶ୍ୱ ଗଜ କୋଟି କୋଟି
ବନ୍ଧାହୋଇଛନ୍ତି ସ୍ଥାନେ ସ୍ଥାନେ ହୋଇଗୋଟି
ସାରଥି ଅଶ୍ୱବାରଙ୍କ ସହରେ ସେମାନେ
ପାଳିତ ହୋଇଣ ରହିଛନ୍ତି ତୋଷମନେ ।
ମଧ୍ୟ ଦେଶରେ ଦେଖିଲେ ମନୋହର ପ୍ରଭା
ବିତାନ ତୋରଣମାନେ ପାଉଅଛି ଶୋଭା ।
କୋଟି କୋଟି ସ୍ୱର୍ଣ୍ଣରତ୍ନ ସିଂହାସନମାନ
ସୁସଜ୍ଜିତ ହୋଇ ପଡ଼ିଅଛି ସେହି ସ୍ଥାନ ।
ଚଉପାଶେ ଶସ୍ତ୍ରଧାରୀ ରକ୍ଷକ ସମୂହ
ଜଗିଛନ୍ତି ସନ୍ତତରେ କରି ନାନାବ୍ୟୂହ ।
ସେ ସଭା ମଣ୍ଡଳେ ଯାଇ ପ୍ରବେଶ ହୋଇଲେ
ମଙ୍ଗଳ ଶଙ୍ଖ ଦୁନ୍ଦୁଭି ଶବଦ ଶୁଣିଲେ ।
ନୃପତି ଆସିବା ଦେଖି ସଭାସଦଗଣ
ଆସନ ତେଜିଣ ଠିଆ ହେଲେ ତତକ୍ଷଣ ।
ବ୍ରହ୍ମା ଶିବଆଦି ଦେବଗଣ ସେ ଅନ୍ତରେ
ବସିଲେ ଆସି ଯେ ଯାହା ଆସନ ଉପରେ ।
ବସୁଦେବଙ୍କ ସହିତେ ରାଜାମାନେ ଆସି
ଉପବିଷ୍ଟ ହେଲେ ଆସନରେ ହୋଇ ତୋଷି
ମୁନିଋଷିଙ୍କ ଆଜ୍ଞାରେ ଉଗ୍ରସେନ ତହିଁ
ରତ୍ନ ସିଂହାସନ ପରେ ବସିଲେକ ଯାଇ ।
ସୁବର୍ଣ୍ଣ କଳସେ ସପ୍ତତୀର୍ଥ ଜଳ ଘେନି
ଅଭିଷେକ କଲେ ତାଙ୍କୁ ଗର୍ଗ ମହାମୁନି ।
ବେଦମନ୍ତ୍ର ଉଚ୍ଚାରଣ କରି ଉଚ୍ଚସ୍ୱରେ
ବିବିଧ ମଙ୍ଗଳ ବାଦ୍ୟ ବଜାଇ ସଭ୍ୟରେ ।
ମଙ୍ଗଳ ଉତ୍ସବ କରାଇଲେ ଯଥାବିଧି
ସମସ୍ତେ ହୋଇ ରାଜାଙ୍କ ଶୁଭକର୍ମେ ବୃଦ୍ଧି ।
ବହ୍ନିଶୁଦ୍ଧି ବସ୍ତ୍ରଦ୍ୱୟ ଶ୍ରୀକୃଷ୍ଣ ସେ କାଳେ
ରାଜାଙ୍କ ହସ୍ତରେ ନେଇ ସମର୍ପଣ କଲେ ।
ରତ୍ନଛତ୍ର ସହିତରେ ପାରିଜାତ ମାଳା ।
ଦେଲେ ନେଇ ବଳରାମ ବସୁଦେବ ବଳା ।
ଜଳପୂର୍ଣ୍ଣ କମଣ୍ଡଳୁ ଦେଲେ ପିତାମହ
ତ୍ରିଶୂଳ ଗୋଟିଏ ଶିବ ଦେଲେ କରି ସ୍ନେହ ।
ପାର୍ବତୀ ଦେବୀ ହରଷେ ରତ୍ନହାର ଦେଲେ
ମାଳତୀ ମାଳତୀ ପୁଷ୍ପମାଳା ସମର୍ପିଲେ ।

ଆଉ ଯେତେ ମୁନିଋଷି ଦେବଦେବୀଗଣ
ଆସିଥିଲେ ଦେଲେ ସେତେ ଯଉତୁକମାନ
ବସୁଦେବ ଦେଲେ ଏକ ଶୁକଳ ଚାମର
ଶ୍ରୀକୃଷ୍ଣଙ୍କୁ ପୂର୍ବେ ଦେଇଥିଲେ ଯା ସମୀର
ନନ୍ଦରାଜା କାମଧେନୁ ଗୋଟିଏ ସେକାଳେ
ଆନନ୍ଦ ମନରେ ନେଇ ସମର୍ପଣ କଲେ ।
ଯଶୋଦା ଦେବକୀ ଦୁହେଁ ଦିବ୍ୟ ରତ୍ନହାର
ଦେଲେ ନେଇ ନୃପତିଙ୍କୁ କରଣ ଆଦର ।
ଶ୍ରୀକୃଷ୍ଣଙ୍କ ଅନୁଜ୍ଞାରେ ଅକ୍ରୂର ହରଷେ
ଟେକିଲେ ଶୁକଳ ଛତ୍ର ରାଜଶିର ଦେଶେ ।
କିଙ୍କରଗଣ ଚାମର ଢାଳନ୍ତି ବାଞ୍ଛିଲେ
କେଉଁମାନେ ରତ୍ନ ଦରପଣ ଦେଖାଇଲେ ।
ଭଞ୍ଜ ଦେବୀ ବାଳକଗଣ ବେଢି ଚଉପାଶେ
ସ୍ତୁତିକଲେ ପୁନଃ ପୁନଃ ପ୍ରଫୁଲ୍ଲ ମାନସେ ।
ବ୍ରାହ୍ମଣମାନେ ମଙ୍ଗଳ ଆଶୀର୍ବାଦ କଲେ
ସେମାନଙ୍କୁ ଉଗ୍ରସେନ ଧନ ରତ୍ନ ଦେଲେ ।
ଏହିରୂପେ ଅଭିଷେକ କାର୍ଯ୍ୟ ସମାପନ
କରାଇଲେ ତୋଷମନେ ରାଜା ଉଗ୍ରସେନ ।
ଦେବତା ଋଷି ବ୍ରାହ୍ମଣ ରାଜାମାନେ ଯେତେ
ଥିଲେ ଯଥାବିଧ ପୂଜା ପାଇଣ ସମସ୍ତେ ।
ଅଭିଷେକ ଶେଷ ହୋଇନ୍ତେ ଜଣକରେ ଜଣେ
ମେଲାଣି ହୋଇଣ ଗଲେ ଯେ ଯାହାର ସ୍ଥାନେ
ଏହିଠାରେ ଅଭିଷେକ ଉଗ୍ରସେନଙ୍କର
ସମାପତ କଲେ ଗୀତେ କହେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମାଦି ଦେବତାଙ୍କର ଆଗମନ ଓ
ଉଗ୍ରସେନ ପ୍ରଭୃତିଙ୍କର ଦ୍ୱାରକା ଯାତ୍ରା କଥନେ ନାମ
ଚତୁରୁତ୍ତରଶତତମୋଽଧ୍ୟାୟଃ ।

---

## ପ ଞ୍ଚୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ
## ରୁକ୍ମିଣୀଙ୍କ ବିବାହ ସମ୍ବନ୍ଧେ ଭୀଷ୍ମକ ପ୍ରଭୃତିଙ୍କର ମନ୍ତ୍ରଣା

ଏଥୁଅନ୍ତେ ନାରଦଙ୍କ ଆଗେ ନାରାୟଣ
କହି ଆରମ୍ଭିଲେ ପୂର୍ବ ଚରିତକୁ ପୁଣ ।
ବୋଇଲେ ହେ ମୁନିବର ଶୁଣ ମନଦେଇ
କହିବା ଅପୂର୍ବ ଦିବ୍ୟ ଚରିତ ବତାଇ ।
ମହାବଳ ପରାକ୍ରମ ବିଦର୍ଭ ନୃପତି
ବିଦର୍ଭ ଦେଶରେ କରୁଥିଲେ ସେ ବସତି ।
ନାରାୟଣଙ୍କ ଅଂଶରେ ଜନ୍ମ ତାହାଙ୍କର
ଅଟନ୍ତି ସେ ସତ୍ୟଶୀଳ ଧାର୍ମିକ ପ୍ରବର ।
କନ୍ୟାରୂପେ ମହାଲକ୍ଷ୍ମୀ ତାଙ୍କଠାରୁ ଜାତ
ହେଲେ ସେ ରୁକ୍ମିଣୀନାମେ ଜଗତରେ ଖ୍ୟାତ
ରମଣୀଗଣରେ ସେହି ଅତ୍ୟନ୍ତ ସୁନ୍ଦରୀ
ରୂପ ଗୁଣେ ବଳି ତାଙ୍କୁ ନ ଥିଲେ କେ ସ୍ତ୍ରୀ
ନାନାବିଧ ରତ୍ନଅଳଙ୍କାର ବିଭୂଷିତା
ସୁବର୍ଣ୍ଣ ପ୍ରତିମା ପରି ଦିଶନ୍ତି ଶୋଭିତା ।
ଇନ୍ଦ୍ର ବରୁଣ କୁବେର ସୂର୍ଯ୍ୟଙ୍କ କାମିନୀ
ତାହାଙ୍କ ସମାନ ହୋଇ ନ ଥିଲେ କେ ପୁଣି
ବାଲ୍ୟକାଳେ କ୍ରୀଡ଼ା କଉତୁକ ତାହାଙ୍କର
ଦେଖିବାକୁ ହୋଇଥିଲା ଅତି ମନୋହର ।
କ୍ରମେ ଯଉବନ ଆସି ପ୍ରବେଶ ହୋଇଲା
ଅଙ୍ଗ ପ୍ରତ୍ୟଙ୍ଗରେ ଶୋଭା ପ୍ରକାଶି ଉଠିଲା ।
ବିବାହଯୋଗ୍ୟ ତାହାଙ୍କୁ ଦେଖି ନରପତି
ବରଅନ୍ୱେଷଣ କରିବାରେ ଦେଲେ ମତି ।
ଦିନେ ସଭାମଧ୍ୟେ ବସି ସଭ୍ୟଙ୍କୁ ଅନାଇ
ବୋଇଲେ ଯା କହୁଅଛି ଶୁଣ ମନ ଦେଇ ।
ଦେବତା ବ୍ରାହ୍ମଣ ଅବା ରାଜାଙ୍କର ପୁରେ
ଉପଯୁକ୍ତ ବର ଦେଖିଥିଲେ କେଉଁଠାରେ ।
କହ ମୋର ତନୟାଙ୍କ ସଙ୍ଗରେ ତାହାଙ୍କୁ
ବିବାହ କରାଇବି ମୁଁ ଗ୍ରାହ୍ୟ ବିଳମ୍ବକୁ ।
ରାଜପୁତ୍ରଙ୍କୁ ଯଦ୍ୟପି କରିବା ବରଣ
ହୋଇଥିବେ ସେ ସମର ଶାସ୍ତ୍ରରେ ନିପୁଣ ।
ଦେବଙ୍କୁ ବରିଲେ ଦେବଯୋଗ୍ୟ ଗୁଣମାନ
ତାହାଙ୍କ ଦେହରେ କରିଥିବେ ଅବସ୍ଥାନ

ପୁରୋଧ ରାଜାଙ୍କଠାରୁ ବଚନକୁ ଶୁଣି
କହିଲେ ସେକାଳେ ତାଙ୍କୁ ଶତାନନ୍ଦ ମୁନି
ବୋଇଲେ ହେ ମହାରାଜା ପୂର୍ବର ଆଖ୍ୟାନ
କହୁଅଛୁ ଏବେ ଶୁଣ ସ୍ଥିର କରି ମନ ।
ବସୁଦେବ ଘରେ ପ୍ରଭୁ ଶଙ୍ଖଚକ୍ରଧର
ଜନମି ଅଛନ୍ତି ହରିବାକୁ ମହୀଭାର ।
ପରମାତ୍ମା ନିରାମୟ ପରମ ପୁରୁଷ
ମନୁଷ୍ୟ ରୂପରେ ହୋଇଅଛନ୍ତି ପ୍ରକାଶ ।
ତାଙ୍କୁ କନ୍ୟା ସମର୍ପଣ କରି ତୋଷମନେ
ବସିବ ଅନ୍ତଃକାଳରେ ଗୋଲୋକ ଭବନେ ।
ସାକ୍ଷାତରେ ମହାଲକ୍ଷ୍ମୀ ଅଟନ୍ତି ରୁକ୍ମିଣୀ
ଜନମିଛନ୍ତି ହେବାକୁ ଶ୍ରୀକୃଷ୍ଣଘରଣୀ ।
ବ୍ରାହ୍ମଣ ଜଣକୁ ଏବେ ଡକାଇ ସତ୍ୱରେ
ଆମନ୍ତ୍ରଣ ପତ୍ର ଦେଇ ତାହାଙ୍କ ହସ୍ତରେ ।
ଦ୍ୱାରକା ପୁରକୁ ହେଳା ନ କରି ପଠାଅ
ଶୁଭକ୍ଷଣେ ଶ୍ରୀକୃଷ୍ଣଙ୍କୁ ଡକାଇ ଅଣାଅ ।
ତାଙ୍କ ଦରଶନେ ସର୍ବ ଦୁରିତ ତୁମ୍ଭର
ଖଣ୍ଡନ ହୋଇବ ଏଥେ ସନ୍ଦେହ ନ କର !
ଯାହାଙ୍କର ଆଦିଅନ୍ତ ଜାଣିବାକୁ କେହି
ତ୍ରିଭୁବନ ମଧ୍ୟରେ ସମର୍ଥ ନୁହଇ ।
ବ୍ରହ୍ମା ଶିବ ସହସ୍ରଶୀର୍ଷ ଅନନ୍ତ ଯାହାର
ଗାୟନ କରନ୍ତି ସ୍ତୁତି ସ୍ତୋତ୍ର ବାରମ୍ବାର ।
ଜଡ଼ୀଭୂତ ହୋଇପାରେ ନ ଜାଣନ୍ତି କିଛି
ତାଙ୍କରୂପ ଦେଖି ଧନ୍ୟ ହୁଅ ମୁଁ ବୋଲୁଛି ।
ଶତାନନ୍ଦଠାରୁ ଏହା ଶୁଣି ନରପତି
ଆଲିଙ୍ଗନ କଲେ ତାଙ୍କୁ ହୋଇ ତୋଷମତି ।
ପ୍ରସନ୍ନ ମନରେ ସ୍ୱର୍ଣ୍ଣ ରତ୍ନ ବସ୍ତ୍ରମାନ
ଭଣ୍ଡାରୁ ଅଣାଇଁ ତାଙ୍କୁ ଦେଲେ ପୁଣି ଦାନ
ସେ ସମୟେ ରୁକ୍ମ ତାହା ଶୁଣି କ୍ରୋଧଭରେ
ପ୍ରବେଶ ହୋଇଲେ ଆସି ପିତାଙ୍କ ଆଗରେ ।
ବୋଇଲେ ହେ ମହାରାଜ ଶୁଣ ମୋ ବଚନ
ଯାହା କହୁଛନ୍ତି ଶତାନନ୍ଦ ତପୋଧନ ।
ଏ କଥା ନୁହଇ କେବେ ମୋହର ସମ୍ମତ
ଜାଣି ଶୁଣି କିରୂପରେ କରିବା ଏ କୃତ୍ୟ ।
ଭିକ୍ଷୁକ ନର୍ତ୍ତକ ବେଶ୍ୟା ଘଟକ କାୟସ୍ଥ
ଏହାଙ୍କ ବଚନ ସବୁ ଅଟେ ଅଯଥାର୍ଥ ।

ସଭାଜନରେ ସନ୍ନ୍ୟାସୀ ତ ଶତାନନ୍ଦ ମୁନି
ଶୁଣୁଅଛ ତୁମ୍ଭେ ତାଙ୍କ କଥା ହୋଇ ତୁନି ।
ବଡ଼ ବୋଲିଣ କୃଷ୍ଣଙ୍କୁ ଟେକୁଛନ୍ତି ସେହି
ମୋ ମତରେ ତାହା କିଛି ଉଚିତ ନୁହଇ ।
କାଳ ଯବନକୁ ମାରି ତାର ଯେତେ ଧନ
ଥିଲା ତଦ୍ବଳରେ ସେ ହୋଇଛନ୍ତି ଭାଗ୍ୟବାନ ।
ଜରାସନ୍ଧଠାରୁ ଭୟପାଇ ପଳାଇଲେ
ସମୁଦ୍ର ମଧ୍ୟରେ ଘର କରିଣ ରହିଲେ ।
ମୁହିଁ ବସିରଲେ ଏକ ନିମେଷ ମଧ୍ୟରେ
ଶତେ ଗୋଟି ଜରାସନ୍ଧ ହେଲେ ଜିଣିପାରେ ।
ଦୁର୍ବାସା ମୁନିଙ୍କ ଶିଷ୍ୟ ଅଟଇ ତ ମୁହିଁ
ତାଙ୍କଠାରୁ ପାଶୁପତ ଅସ୍ତ୍ର ଅଛି ପାଇ ।
ସେ ଅସ୍ତ୍ର ପ୍ରୟୋଗ କଲେ ଏ ତ୍ରିଭୁବନ
ଏକ ମୁହୂର୍ତ୍ତକେ କରି ପାରଇ ଦହନ ।
ମୋହର ସମାନ ଅବା ହେବେ ପରଶୁରାମ
ନୋହିଲେ ବା ଶିଶୁପାଳ ବୀରଙ୍କ ଉତ୍ତମ ।
ପୂର୍ବକାଳୁ ଶିଶୁପାଳ ମୋର ପ୍ରିୟ ସଖା
ବୀରଙ୍କ ମଧ୍ୟରେ ସେହି ହୋଇଥାଏ ଲେଖା ।
ମନକଲେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସହିତେ
ସକଳ ଲୋକକୁ ଜିଣିପାରେ ସେ କ୍ଷଣକେ ।
କେଉଁ ଗୁଣରେ ତାହାକୁ କୃଷ୍ଣ ହେବେ ସରି
ତାଙ୍କୁ କନ୍ୟା ଦେବ ବୋଲୁଅଛ ନ ବିଚାରି
ବିବାହ ପାଇଁ ସେ ଯେବେ ଏଠାକୁ ଆସିବେ
ଜାଣିଥାଅ ନିଶ୍ଚେ ମୋର ହାତେ ପ୍ରାଣଦେବେ
ଦେବଯୋଗ୍ୟ ଅଟନ୍ତି ଯେ ରୁକ୍ମିଣୀ ଆମ୍ଭର
ତାଙ୍କୁ କେହି ବିଭାହେବ ଗୋପସ୍ତ୍ରୀ ଜାର ।
ଭିକ୍ଷୁକ ବ୍ରାହ୍ମଣ ବୋଲେ ଏଡ଼େ କଥା ତୁମ୍ଭେ
କରିବ ବୋଲୁଛ ଏହା ମାନିବୁ କି ଆମ୍ଭେ
ଏବେ ମୋର ବୋଲକରି ଛାଡ଼ି ସେ ବିଚାର
ଶିଶୁପାଳକୁ ଡକାଇ କନ୍ୟାଦାନ କର ।
ରାଜେନ୍ଦ୍ର ତନୟ ସେହି ରୁଦ୍ରଙ୍କ ସମାନ
ବଳ ବହିଅଛି ନିଜ ଶରୀରରେ ଜାଣ ।
ଜାମାତା ହୋଇବ ଯେବେ ତୁମ୍ଭର ସେ ବୀର
ପୂଜା କରିବେ ତୁମ୍ଭଙ୍କୁ ଭୟେ ସୁରାସୁର ।
ଶୁଭବଦନ ବୁଝି ସବୁ ରାଜାଙ୍କ ପାଶକୁ
ଆମନ୍ତ୍ରଣ ପତ୍ରଦେଇ ଡକାଅ ତାହାଙ୍କୁ ।

ବିବାହ ସମ୍ଭାର ଠୁଳକର ବେଗେ ଆଣି
ଶ୍ରବଣ ନ କର ଆଉ ଅନ୍ୟ କାହା ବାଣୀ ।
ଏହା ଶୁଣି ନରପତି ବିସ୍ମିତ ହୋଇଲେ
ନିର୍ଜନ ସ୍ଥାନରେ ବସି ମନ୍ତ୍ରଣା ସେ କଲେ ।
ମନ୍ତ୍ରୀ ପୁରୋହିତଙ୍କର ପରାମର୍ଶ ପାଇ
ଦ୍ୱାରକାକୁ ପଠାଇଲେ ଦୂତକୁ ଡକାଇ ।
ସେ ଅନ୍ତରେ ଭିଆଇଲେ ବିବିଧ ସମ୍ଭାର
ପତ୍ର ଦେଇ ନାନାସ୍ଥାନେ ପଠାଇଲେ ଚର ।
ଦୂତରୂପେ ଯେଉଁ ବିପ୍ର ଦ୍ୱାରକାକୁ ଗଲା
ଉଗ୍ରସେନଙ୍କ ସଭାରେ ପ୍ରବେଶ ହୋଇଲା ।
ସମର୍ପଣ କଲା ଶୁଭ ପତ୍ର ନେଇ କରେ
ପଠନ କଲେ ନୃପତି ସିଂହାସନ ଉପରେ ।
ଆମୂଳ କରି ସମସ୍ତ ବିଷୟ ବୁଝିଲେ
ଆନନ୍ଦରେ ବ୍ରାହ୍ମଣଙ୍କୁ ଧନରତ୍ନ ଦେଲେ ।
ବିବିଧ ବାଦ୍ୟ ବାଜଣା ବଜାଇ ସେ କାଳେ
ନୃତ୍ୟଗୀତ ଭୁଲେ ନାନା ଉତ୍ସବ ସେ କଲେ
ଶ୍ରୀକୃଷ୍ଣଙ୍କୁ ବରବେଶେ ବିଭୂଷିତ କରି
ଯାତ୍ରା ଆରମ୍ଭିଲେ ଶୁଭକ୍ଷଣ ଅନୁସରି ।
ବ୍ରହ୍ମା ଶିବ ଦୁହେଁ ନିଜ ପତ୍ନୀଙ୍କ ସହିତେ
ବାହାର ହୋଇଲେ ବସି ସ୍ୱର୍ଣ୍ଣମୟ ରଥେ ।
ଚନ୍ଦ୍ର ବରୁଣଙ୍କୁ ଆଦି ସକଳ ଅମରେ
ଗଲେ ମୁନି ମହର୍ଷିଙ୍କୁ ଘେନି ସଙ୍ଗତରେ ।
ବସୁଦେବ ବଳରାମ ଅକ୍ରୂର ସାତ୍ୟକି
ଗମନ କଲେ ସମସ୍ତ ଯାଦବଙ୍କୁ ଡାକି ।
ଗୋପାଳଙ୍କୁ ସଙ୍ଗେ ଘେନି ନନ୍ଦ ଆନନ୍ଦରେ
ଗଲେ ବସି ସ୍ୱର୍ଣ୍ଣମୟ ରଥର ମଧ୍ୟରେ ।
ଧୃତରାଷ୍ଟ୍ର ଯୁଧିଷ୍ଠିର ଭୀମ ଦୁର୍ଯ୍ୟୋଧନ
ଅର୍ଜୁନ ନକୁଳ କୃପ ଭୀଷ୍ମ ଦ୍ରୋଣ କର୍ଣ୍ଣ ।
ଅଶ୍ୱତ୍ଥାମା ଶଲ୍ୟ ଆଦି ମହାବୀରଗଣେ
ଗଲେ ସ୍ୱର୍ଣ୍ଣମୟ ରଥକରି ଆରୋହଣେ ।
ବାଦ୍ୟ ଶବଦ ଗହଳେ କମ୍ପେ ତ୍ରିଭୁବନପୁର
ଜନ ସମାବେଶ ଯେହ୍ନେ ସମୁଦ୍ର କଲ୍ଲୋଳ ।
ବ୍ରାହ୍ମଣ ସନ୍ନ୍ୟାସୀ ଯତି ଭିକ୍ଷୁ ବ୍ରହ୍ମଚାରୀ
ଗଲେ ତାହାଙ୍କର ସଙ୍ଗେ ସଙ୍ଗେ ଅନୁସରି ।
ବାଦ୍ୟକାର ନୃତ୍ୟକାର ପରିଚାରୀ କେତେ
ଥିଲେ କହି ନୋହିବ ତା ବୋଲିଏତେ ଏତେ
ସମସ୍ତେ କୁଣ୍ଡିନପୁର ପାଶରେ ମିଳିଲେ
ଅଳପ ଦୂରେ ଶିବିର ପକାଇ ରହିଲେ ।
ଏଣୁଠାରେ ରୁକ୍ମିଣୀଙ୍କ ବିବାହ ଚରିତ
କ୍ଷେତ୍ରମୋହନ ଗୀତରେ କଲା ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରୁକ୍ମିଣୀଙ୍କ ବିବାହ ସମ୍ବନ୍ଧେ ଭୀଷ୍ମକ ପ୍ରଭୃତିଙ୍କର ମନ୍ତ୍ରଣା କଥନେ ନାମ ପଞ୍ଚୋତ୍ତରଶତତମୋଽଧ୍ୟାୟଃ ।



## ଷ ଡ଼ୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ବଳରାମଙ୍କର ବିବାହ ଓ ଉଗ୍ରସେନ ପ୍ରଭୃତିଙ୍କର କୁଣ୍ଡିନ ପ୍ରବେଶ

ଏମନ୍ତେ ମହାବଳୀ ରାଜା କକୁଦ୍ମାନ
ବ୍ରହ୍ମ ଲୋକରୁ ଆଗତ ହୋଇଲେ ବହନ ।
ଆପଣାର ଦୁହିତାକୁ ସଙ୍ଗେ ଆଣିଥିଲେ
ଉଗ୍ରସେନଙ୍କ ଶିବିରେ ପ୍ରବେଶ ହୋଇଲେ ।
ସେହି କନ୍ୟାର ନାମ ଅଟଇ ରେବତୀ
ସୁସ୍ଥିର ଯୌବନା ସେହି ରୂପ ଗୁଣବତୀ ।
ଅମୂଲ୍ୟ ବସନ ସ୍ୱର୍ଣ୍ଣରତ୍ନ ଅଳଙ୍କାରେ
ପୂର୍ଣ୍ଣହୋଇ ଶୋଭା ପ୍ରକାଶଇ ନିରନ୍ତରେ ।
ସେ କନ୍ୟାକୁ ଉଗ୍ରସେନ ରାଜାଙ୍କ ସମ୍ମତେ
ବଳରାମଙ୍କୁ ବିବାହ କଲେ ବିଧିମତେ ।
ତିନିଲକ୍ଷ ଗଜ ଦଶଲକ୍ଷ ତୁରଙ୍ଗମ
ଯଉତୁକ ଦେଲେ ଆଣି ସେ ନର ଉତ୍ତମ ।
ଆବର ସୁବର୍ଣ୍ଣ ରତ୍ନ ବସ୍ତ୍ର ଅଳଙ୍କାର
ଦାସ ଦାସୀ ଆଦିକରି ଦେଲେକ ଅପାର ।
କନ୍ୟାଦାନ କରି ରାଜା ତାଙ୍କ ସହିତରେ
ପ୍ରବେଶ ହୋଇଲେ ଯାଇ କୁଣ୍ଡିନ ନଗରେ ।

ଏହି ସମୟେ ନନ୍ଦପତ୍ନୀ ଯଶୋଦା ରୋହିଣୀ
ଦେବକୀଙ୍କ ଅଦେଖା ଯେଉଁ ଆଦି ଯେ ରମଣୀ ।
ରେବତୀଙ୍କୁ ବିଭୂଷିତ କରାଇଲେ ନେଇ
ଅମୂଲ୍ୟ ବସନ ଦ୍ରବ୍ୟ ଅଳଙ୍କାର ଦେଇ ।
ବ୍ରାହ୍ମଣ ମାନଙ୍କୁ ନାନା ମିଷ୍ଟ ଦ୍ରବ୍ୟମାନ
ଦେଲେ ମହାସୁଖେ ବସି କଲେ ସେ ଭୋଜନ
ସେ ଅନ୍ତରେ ଧନ ରତ୍ନ ଦେବାରୁ ବହୁତ
ଗଲେ ସେମାନେ ମନରେ ହୋଇ ଆନନ୍ଦିତ
ଏଥିଅନ୍ତେ ଦେବର୍ଷି ରାଜେନ୍ଦ୍ର ସକଳେ
କୁଣ୍ଡିନ ନଗରେ ଯାଇ ଉପସ୍ଥିତ ହେଲେ ।
ଦେଖିଲେ ସେ ପୁରୀ ଦିଶୁଅଛି ମନୋହର
ବେଢ଼ାଇ ରହିଛି ତାକୁ ସପତ ପ୍ରାକାର ।
ଗଭୀର ଜଳ ବହୁଳ ପରିଖାରେ ସେହି
ବେଷ୍ଟିତ ହୋଇ ଦେଉଛି ଶତ୍ରୁଙ୍କୁ ଡରାଇ ।
ଶତେକ ଦୁଆରେ ତହିଁ ହୋଇଛି ସଜ୍ଜିତ
ମଣିମୟ କବାଟରେ ଅତିଇ ଶୋଭିତ ।
ଯତନରେ ବିଶ୍ୱକର୍ମା ତାହାକୁ ନିର୍ମାଣ
କରିବାରୁ ହୋଇଛି ସେ ସ୍ୱର୍ଗର ସମାନ ।
ଆବର ଦେଖିଲେ ବାହ୍ୟଦ୍ୱାରେ ଶୂରବୀର
ଜଗିରହିଛନ୍ତି କରେ ଘେନି ଧନୁଶର ।
ରୁକ୍ମି ଶିଶୁପାଳ ଦନ୍ତବକ୍ର ମହାରଥ
ଶାମ୍ବ ସହିତରେ ସୈନ୍ୟ ରଖି ନିଜ ସାଥ ।
ନାନା ଶସ୍ତ୍ର ଅସ୍ତ୍ର ଧରି ରଣ ଅଭିଳାଷେ
ଉଭା ହୋଇଥିଲେ ହସ୍ତ ପକାଇଣ ନିଶେ ।
ଦେଖିଲେ ଶ୍ରୀକୃଷ୍ଣଙ୍କର ସୈନ୍ୟ ଆସିକରି
ପ୍ରବେଶ ହୋଇଲେ ଦେବ ଋଷିଗଣ ଧରି ।
ସେ କଥାକୁ ନ ସହିଣ ରୁକ୍ମି ମହାବୀର
କହିଲା ସେକାଳେ ହସି ନିଷ୍ଠୁର ସେ ଗିର ।
ବୋଇଲା କାଳର ଗତି ବିଚିତ୍ର ଅଟଇ
କାଳକୁ ଜାଣିବ ଅବା ଜଗତରେ କେହି ।
ଦଇବ ଯୋଗରେ କାଳେ ଘଟୁଥାଏ ଯାହା
କେବେହେଁ ଅନ୍ୟଥା କରି ପାରିବ କେ ତାହା
ଦେବଙ୍କ ସଭାରେ ଆଉ କି କହିବି ମୁହିଁ
ଦେଖିଲେ ଏ କଥା ମୋତେ ହସ ତ ଲାଗଇ ।
ଦେବତା ଯୋଗ୍ୟ ଅଟଇ ଯେବଣ କନ୍ୟକା
ତାକୁ ବରିବେ ପୁଣି ପଶୁପାଳ ଟୋକା ।

ଦେବତା ଋଷିଗଣଙ୍କୁ ସଙ୍ଗତରେ ଘେନି
ଆସିଅଛି ଆଡ଼ମ୍ବରେ ହୋଇ ଅଭିମାନୀ ।
ବ୍ରଜପୁରେ ଗୋପୀଗଣ ଧରି ବନେ ବନେ
ବୁଲୁଥିଲା ଜାରବୃତ୍ତି କରି ନିଶି ଦିନେ ।
ଗଉଡ଼ ପିଲାଙ୍କ ସଙ୍ଗେ ଖାଉଥିଲା ଭାତ
ଭ୍ରମୁଥିଲା ଅରଣ୍ୟରେ ଘେନି ପଶୁ ବ୍ରାତ ।
ଜାତିଭ୍ରଷ୍ଟ ମଇଥୁନ ନିର୍ଣ୍ଣୟ ଯାହାର
ନାହିଁ ସେ କିରୂପେ ହେବ ବାନ୍ଧବ ଆମ୍ଭର ।
ବ୍ରାହ୍ମଣ କ୍ଷତ୍ରିୟ ବିନା ଆମ୍ଭ ଘରେ କେହି
ସମ୍ବନ୍ଧ ରଖିବ ଏହା ଉଚିତ କି ହୋଇ ।
ଯେବେ ସେ କ୍ଷତ୍ରିୟ ବୋଲି କରୁଅଛି ଠାଣି
ବୈଶ୍ୟ ମନ୍ଦିରେ କିରୂପେ କରନ୍ତା ଭୋଜନ ।
ବାଲ୍ୟକାଳେ ଦୁଷ୍ଟପଣେ ସ୍ତ୍ରୀହତ୍ୟାକରି
ଆପଣାକୁ ନିଜେ ନିଜେ ବୋଲାଉଛି ହରି ।
ସମ୍ଭୋଗ କରି କୁବୁଜା ଯୌବନ ନାଶିଲା
ବସ୍ତ୍ରଖଣ୍ଡେ ଲାଗି ରଜକର ପ୍ରାଣନେଲା ।
ମଥୁରାପୁରେ ପ୍ରବେଶ ହୋଇବା କ୍ଷଣରେ
କଂସ ନୃପତିକୁ ନାଶକଲା କୋପଭରେ ।
ଏମନ୍ତ ଦୁର୍ଜ୍ଜନ ଯେଉଁ ବସୁଦେବ ସୁତ
ତାହାକୁ କି କନ୍ୟାଦାନ କରିବା ଉଚିତ ।
ସେ ଅନ୍ତରେ ଶାଲ୍ୱବୀର କହିଲା ବଚନ
ହୋଇଲା ମୋଠାରୁ ଶୁଣ ଆହେ ଦେବଗଣ ।
ରୁକ୍ମି କହିବାର କଥା ଯଥାର୍ଥ ଅଟଇ
ଗୋଟିଏ ଅକ୍ଷର ହେଲେ ମିଥ୍ୟା ତହିଁ ନାହିଁ ।
ପଶୁ ରକ୍ଷକ ନନ୍ଦର ଯେହୁ ପୋଷ୍ୟପୁତ୍ର
ସେ କିରୂପେ ରୁକ୍ମିଣୀଙ୍କ ହେବ ବରପାତ୍ର ।
ଦନ୍ତବକ୍ର ବୋଇଲା ହେ ଶୁଣ ସଭାଜନେ
ସର୍ବେବେଳେ ଧନଲୁବ୍ଧ ଅଟନ୍ତି ବ୍ରାହ୍ମଣେ ।
ଦେବତାମାନେ ତ ଭକ୍ତବତ୍ସଳ ଅଟନ୍ତି
ଭକ୍ତର ତପସ୍ୟା ଦେଖି ବର ସେ ଦିଅନ୍ତି ।
ନନ୍ଦପୁତ୍ର ବୋଲମାନି କିରୂପେ ଏଠାକୁ
ଆସିଅଛନ୍ତି ସେମାନେ ଛାଡ଼ି ମନ୍ଦିରକୁ ।
ଏରୂପେ କହିଣ ବୀରେ ଉପହାସ କରି
ରହିଲେ ଯୁଝିବାପାଇଁ ଆଗେ ଶସ୍ତ୍ର ଧରି

ତାହା ଦେଖି ଦେବର୍ଷି ରାଜାଙ୍କ ସହିତେ
ନୃତ୍ୟ ରଙ୍ଗ କଲେ ଯଦୁଗଣ ହୋଧଚିତ୍ତେ
ଶଙ୍ଖ ଝମକାଇ କେତେ ଆମୋଦରେ ହେଲେ
ଭାବଣ ତେଜେ ଏହାକୁ ଗୀତରେ ଲେଖିଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବଳରାମଙ୍କ ବିବାହ ଓ
ଉଗ୍ରସେନ ପ୍ରଭୃତିଙ୍କର କୁଣ୍ଡିନ ନଗ୍ରେ ପ୍ରବେଶ କଥନେ
ନାମ ଷଡୁତ୍ତରଶତତମୋଽଧ୍ୟାୟଃ ।

—ଃ—ଃ—

## ସପ୍ତୋତ୍ତରଶତତମ ଅଧ୍ୟାୟ

## ରୁକ୍ମଣ ପ୍ରଭୃତିଙ୍କ ସହିତ ଯାଦବଙ୍କର ଯୁଦ୍ଧ ଓ ଶ୍ରୀକୃଷ୍ଣ ପ୍ରଭୃତିଙ୍କର ଭୀଷ୍ମକ ଗୃହେ ପ୍ରବେଶ

ନାରାୟଣ ବୋଇଲେ ହେ ଏଥୁ ଅନନ୍ତରେ
ଭୀଷ୍ମକ ପୁତ୍ରର ବାକ୍ୟ ଶୁଣି କୋପଭରେ ।
ହଳ ଧରି ବଳରାମ ବେଗେ ଧାଇଁଗଲେ
ବହୁତ ସୈନ୍ୟଙ୍କୁ ଆଗେ ନିପାତ କଲେ
ପୁଣି ରୁକ୍ମରଥ ଭୁଲେ ତାର ଘୋଡ଼ା
ସାରଥି ସହିତେ କଲେ ଯମପୁରେ ଛଡ଼ା
ସେ ସକାଶୁ ମହାବୀର ରୁକ୍ମ ଧନୁ ଧରି
ଶରଜାଳେ ଘୋଡ଼ାଇଲା ବଳଙ୍କୁ ନିଘୋଡ଼ି ।
ପ୍ରତିଶର କରି ତାହା ରେବତୀରମଣ
କ୍ଷଣକ ମଧ୍ୟରେ ସବୁ କଲେ ଛିନ୍ନଭିନ୍ନ ।
ନାଗଅସ୍ତ୍ର ବସାଇଣ ରୁକ୍ମ ମହାବଳୀ
ଛାଡ଼ିଲା ବଳଦେବଙ୍କ ଉପରକୁ ଟଳି ।
ଗରୁଡ଼ ଅସ୍ତ୍ରରେ ତାରେ ନିବାରିଣ ବଳ
ପ୍ରହାରିଲେ ରୁକ୍ମ ପରେ ଦିବ୍ୟ ଶରଜାଳ ।
ନ ସହିଣ ରୁକ୍ମ ତହୁଁ ପଶୁପାତ ଶର
ସନ୍ଧିଲା କରିବା ପାଇଁ ବଳଙ୍କୁ ସଂହାର ।
ଅବ୍ୟର୍ଥ ବୈରିମର୍ଦ୍ଦନ ସେ ଶସ୍ତ୍ର ଅଟଇ
ଜଳିଲା ତେଜରେ ଶତସୂର୍ଯ୍ୟ ପ୍ରାୟେ ହୋଇ ।
ସେ କଥାକୁ ଜାଣି ପ୍ରଭୁ ରୋହିଣୀ କୁମର
ଜମ୍ଭଣ ଅସ୍ତ୍ର ପ୍ରୟୋଗ କଲେକ ସତ୍ୱର ।
ରୁକ୍ମ ପରେ ବେଗେ ଯାଇ ସେ ଶସ୍ତ୍ର ବାଜିଲା
ମୋହିତ କରି ମହୀରେ ପକାଇଣ ଦେଲା ।
ଏମନ୍ତ ଦଶା ତାହାର ଦେଖି ଶାଲ୍ୱ କୋପେ
ବାନ୍ଧିଲା ଶତେ ସାୟକ ସନ୍ଧି ନିଜ ଚାପେ ।
ସେ ଅନ୍ତରେ ମାୟାବଳେ ଶାଳ ଶିଳା ଜଳ
ବରଷିଲା ବଳଦେବ ପରେ ଅନର୍ଗଳ ।
ଦିବ୍ୟଅସ୍ତ୍ର ପେଷି ସେହୁ ମାୟାକୁ ଲାଙ୍ଗଳୀ
କ୍ଷଣକରେ ନିବାରିଲେ କ୍ରୋଧଭରେ ଟଳି ।
ହଳ ପ୍ରହାରିଲେ ଶାଲ୍ୱର ରଥକୁ ଭାଙ୍ଗିଲେ
ଘୋଡ଼ା ସାରଥିଙ୍କୁ ଯମ ଆଗେ ଛଡ଼ା କଲେ ।
ପୁଣି ତାର ପ୍ରାଣ ହତ କରିବାକୁ ବେଗେ ।
ଧାଇଁଲେ ସେ ହଳ ଦୃଢ଼ହାତେ ଧରି ରାଗେ
ସେ ସମୟେ ଆକାଶରୁ ଶୁଭିଲା ଏ ଗିର
ଆହେ ରାମକୃଷ୍ଣ ବଧ୍ୟ ଅଟେ ଶାଲ୍ୱବୀର ।
ନ ମାରି ତାହାକୁ ତୁମ୍ଭେ ଶାନ୍ତ କରି ରୋଷ
ଏହାକୁ ମାରିଲେ ଅବା ହେବ କି ପୌରୁଷ ।
ଏହା ଶୁଣି ବଳଦେବ ହଳ ଥୋଇଦେଇ
ଚାପଡ଼େ ମାରି ଶାଲ୍ୱକୁ ଦେଲେ ସେ ପକାଇ ।
ଶାଲ୍ୱ ପଡ଼ିବାର ଦେଖି ବୀର ଶିଶୁପାଳ
ବରଷିଲା କ୍ରୋଧଭରେ ତୀକ୍ଷ୍ଣ ଶରଜାଳ ।
ଅର୍ଦ୍ଧଚନ୍ଦ୍ର ଶର ପେଷି ବଳ ସେ କାଳରେ
ଖଣ୍ଡ ଖଣ୍ଡ କଲେ ସବୁ କାଣ୍ଡକେ ମାତ୍ରରେ ।
ପୁଣି ଲାଙ୍ଗଳ ପ୍ରହାରି ତାର ସ୍ୱର୍ଣ୍ଣରଥ
ସାରଥି ଅଶ୍ୱ ସହିତେ କଲେ ଭୂମିସାତ
ଆବର ଧାଆନ୍ତେ ଶିର ଛେଦିବାର ପାଇଁ
ନିବାରଣ କଲେ ସଦାଶିବ ଆଗେ ରହି
ବୋଇଲେ ହେ ସଙ୍କର୍ଷଣ ଶ୍ରୀକୃଷ୍ଣଙ୍କ ବଧ୍ୟ
ଅଟଇ ଏ ଦୁରାତ୍ମର ଛାଡ଼ ତୁମ୍ଭେ କ୍ରୋଧ ।

ବଳରାମ ଶୁଣି ତହୁଁ ନିବୃତ୍ତି ହୋଇଲେ
ଦନ୍ତବକ୍ରର ଦନ୍ତକୁ ଭାଙ୍ଗି ପକାଇଲେ ।
ସ୍ୱରୂପ ହୋଇଲା ତେଣୁ ଦନ୍ତବକ୍ର ବଳୀ
ଦେଖିଣ ହସିଲେ ସର୍ବେ ମାରି କରତାଳି ।
ଏରୂପେ ବଳରାମଙ୍କ ପରାକ୍ରମ ଦେଖି
ଚଳାଇଲେ ସବୁଆରେ ବୁଲାଇଲେ ଆଖି ।
ଶ୍ରୀକୃଷ୍ଣଙ୍କୁ ସଙ୍ଗେ ନେଇ ବରଯାତ୍ରୀଗଣ
କୁଣ୍ଡିନପୁରକୁ ଗଲେ ଲଗାଇ ଗହଣ ।
ଏହି ସମୟରେ ଶତାନନ୍ଦ ମୁନିବର
ମୁନିଋଷିଙ୍କ ସହିତ ମିଳିଲେ ସତ୍ୱର ।
ନଗର ମଧ୍ୟକୁ ଶ୍ରୀକୃଷ୍ଣଙ୍କୁ ବେଗ ନେଇ
ପ୍ରାଙ୍ଗଣରେ ଉଭା କରାଇଲେ ତୋଷବହି ।
ମୁନିକନ୍ୟା ଦେବକନ୍ୟା ରାଜକନ୍ୟାଗଣ
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଆସିଲେ ବହନ ।
ଆବର ବହୁତ ସ୍ତ୍ରୀଏ କଉତୁକେ ଧାଇଁ
ଦରଶନ କଲେ ସର୍ବେ ନିର୍ନିମେଷ ହୋଇ ।
ସେ କାଳରେ ସଦାଶିବ ଶ୍ରୀକୃଷ୍ଣଙ୍କ ପାଶେ
ଉପସ୍ଥିତ ହୋଇ ବେଶ କରାଇଲେ ତୋଷେ ।
ନାନାବିଧ ଅଳଙ୍କାର ଅଙ୍ଗରେ ଖଞ୍ଜିଲେ
କର୍ପୂର ଚନ୍ଦନ ବିଲେପିତ କରାଇଲେ ।
ମସ୍ତକେ ମାଳତୀ ମଲ୍ଲୀ କୁସୁମର ହାର
ଖଞ୍ଜି ବାରୁ ଦିଶିଲା ସେ ଅତି ମନୋହର ।
କୃଷ୍ଣଙ୍କର ରୂପ ଦେଖି ସକଳ କାମିନୀ
ମୋହିତ ହୋଇଲେ ଧୈର୍ଯ୍ୟ ଛାଡ଼ି ସେହିକ୍ଷଣି
ଭୀଷ୍ମକ ରାଜାଙ୍କ ପ୍ରିୟ ଜାମାତାଙ୍କୁ ଦେଖି
ମନେ ମନେ ପରଶଂସା କଲେ ହୋଇ ସୁଖୀ
ପାତ୍ର ମନ୍ତ୍ରୀ ପୁରୋହିତଗଣ ସହିତେନ
ଭୀଷ୍ମକ ନୃପତି ଆସି ମିଳିଲେ ସେଠାରେ ।
ଦେବ ବ୍ରାହ୍ମଣଙ୍କୁ ଆଗେ ଦଣ୍ଡବତ ହେଲେ
ନୃପତିମାନଙ୍କୁ ତହୁଁ ସମ୍ମାନନା କଲେ ।
ସେ ଅନ୍ତରେ ଉପଯୁକ୍ତ ଗୃହ ସମସ୍ତଙ୍କୁ
ଦେଲେ ରହିବା ସକାଶେ ପ୍ରକାଶି ସ୍ନେହକୁ ।
ଭକ୍ଷ୍ୟ ଭୋଜ୍ୟ ଲେହ୍ୟପେୟ ଦ୍ରବ୍ୟମାନ ନେଇ
ପୂର୍ଣ୍ଣ କରାଇଲେ ପ୍ରତିଗୃହରେ ସଜାଇ ।
ବସୁଦେବ ନରପତି ପରମ ସୁଖରେ
ରହିଲେ ସେ ନିଶାକାଳେ ଭୀଷ୍ମକ ନଗରେ ।

ପରଦିନ ପ୍ରଭାତରୁ ସ୍ନାନ ସନ୍ଧ୍ୟା କଲେ
ଧଉତ ବସନ ପିନ୍ଧି ଶୁଚିବନ୍ତ ହେଲେ ।
ବେଦବାକ୍ୟ ମନ୍ତ୍ରରେ ଅଧିବାସ କୃଷ୍ଣଙ୍କର
କଲେ ମହାଆନନ୍ଦରେ ହୋଇ ଜରଜର ।
ମାତୃକାଦି ଦେବଗଣ ପୂଜା କଲା ପରେ
ବସୁଧାରା ଦେଲେ ଘୃତ ଘେନିଣ ପାତ୍ରରେ ।
ବିବିଧ ମଙ୍ଗଳ ବାଦ୍ୟ ବାଜଣା ବଜାଇ
ବ୍ରାହ୍ମଣଙ୍କୁ ଦେଲେ ନାନା ମିଷ୍ଟଦ୍ରବ୍ୟ ନେଇ ।
ଶ୍ରୀକୃଷ୍ଣଙ୍କୁ ବରବେଶ କରି ବିମାନରେ
ବସାଇଲେ ଦେବଋଷି ମୁନିଙ୍କ ବୋଲରେ ।
ପୁରୋହିତଙ୍କ ସମ୍ମତେ ଭୀଷ୍ମକ ରାଜନ
କରାଇଲେ ନାନାରୂପେ ବିବାହ ବିଧାନ ।
ବ୍ରାହ୍ମଣ ଭିକ୍ଷୁକ ଭଟ୍ଟ ନଟଙ୍କୁ ବହୁତ
ଧନରତ୍ନ ଦେଇ ତୋଷ କଲେ ତାଙ୍କ ଚିତ୍ତ ।
ଅନେକ ପ୍ରକାର ବାଦ୍ୟଯନ୍ତ୍ର ଅଣାଇଲେ
ନର୍ତ୍ତକ ନର୍ତ୍ତକୀ ଗୀତ ଗାୟକଙ୍କ ତୁଲେ ।
ଅନ୍ତଃପୁର ନାରୀଗଣ ରୁକ୍ମଣୀ ଦେବୀଙ୍କୁ
ବେଶ କଲେ ପିନ୍ଧାଇଣ ବସ୍ତ୍ର ଭୂଷଣକୁ ।
ସେ ଅନ୍ତରେ ଶୁଭକ୍ଷଣେ ମାହେନ୍ଦ୍ର ସମୟେ
ଲଗ୍ନ ଅଧିପତି ଯୁକ୍ତ ଶୁଭ ଲଗ୍ନୋଦୟେ ।
ଶଳାକାବେଧ ରହିତ ଶୁଦ୍ଧ ନକ୍ଷତ୍ରରେ
ଆବର ବିଶୁଦ୍ଧ ପୂର୍ଣ୍ଣଚନ୍ଦ୍ରମା ଯୋଗରେ ।
ସୁରମୁନିଙ୍କୁ ସଙ୍ଗରେ ଘେନି ନାରାୟଣ
ଅଳଂକୃତ କଲେ ଯାଇ ଭୀଷ୍ମକ ପ୍ରାଙ୍ଗଣ ।
ପିତା ମାତାଙ୍କ ସହିତେ ଅନେକ ନୃପତି
ତାଙ୍କ ସଙ୍ଗେ ସଙ୍ଗେ କରୁଥିଲେ ପାଦଗତି ।
ନନ୍ଦ ସହିତେ କେତେକ ଗୋପାଳ କୁମର
ମିତ୍ର ପାରିଷଦ ଭକ୍ତଗଣଙ୍କ ଆବର ।
ମାଳାକାର ଶିଳ୍ପକାର ଆଦିକରି ଯେତେ
ଥିଲେ ସେହି ସମୟରେ ଶ୍ରୀକୃଷ୍ଣ ସହିତେ ।
ବିବାହ ଦେଖିବାପାଇଁ ହୋଇଣ ଉତ୍ସୁକ
ନାନାଦିଗରୁ ଆଗତ ହେଲେ କେତେ ଲୋକ
ପ୍ରାଙ୍ଗଣକୁ ଚାହିଁ ସର୍ବେ ଦେଖିଲେ ସେଠାରେ
ମଣ୍ଡିତ ହୋଇଛି ସବୁସ୍ଥାନ ସୁବର୍ଣ୍ଣରେ ।
ଗୃହଦ୍ୱାରମାନଙ୍କରେ ରମ୍ଭାସ୍ତମ୍ଭ ଥାଇ
ତୋରଣ ମାଳାରେ ଅତି ସୁନ୍ଦର ଦିଶଇ ।

ଫଳ ପୁଷ୍ପ ଦୁର୍ବାଙ୍କୁର ମଙ୍ଗଳ କଳଶ
ଲାଜା ଖଣ୍ଡ ପୂର୍ଣ୍ଣ ହୋଇଅଛି କେଉଁ ଦେଶ ।
ମୁନି ଋଷି ଦ୍ୱିଜଗଣ ବସି କେଉଁଠାରେ ।
କଥାବାର୍ତ୍ତା ହେଉଛନ୍ତି ରାଜାଙ୍କ ସଙ୍ଗରେ ।
ଗନ୍ଧର୍ବ କିନ୍ନରଗଣ ମିଳି କେଉଁଠାରେ
ଗୀତ ଗାଉଛନ୍ତି ବାଦ୍ୟ ବଜାଇ ସୁସ୍ୱରେ ।
ଗୁପତ ଦୁଆରେ ଗୃହ ଗବାକ୍ଷ ନିକଟେ
ଯୁବତୀଏ ଗୃହିଁ ରହିଛନ୍ତି ଗୃହପଟେ ।
ତା ଦେଖି ଦେବତା ଦ୍ୱିଜ ମୁନି ଋଷିମାନେ
ଗଲେ ଶ୍ରୀକୃଷ୍ଣଙ୍କ ସଙ୍ଗେ ସଙ୍ଗେ ତୋଷମନେ ।
ଶ୍ୱାସ୍ତକ ନୃପତି ସେମାନଙ୍କୁ ଦେଖି ଆଗେ
ପ୍ରଣମିଲେ ଶିରେ କରଯୋଡ଼ି ଅନୁରାଗେ ।
କ୍ରମେ କ୍ରମେ ସମସ୍ତଙ୍କୁ ରତ୍ନସିଂହାସନ
ବସିବା ସକାଶେ ଦେଲେ କରି ଭିନ୍ନ ଭିନ୍ନ ।
ସେମାନେ ଯେ ଯାହାସ୍ଥାନେ ବସିଣ ସାନ୍ତରେ
ନୃପତିଙ୍କୁ ପ୍ରଶଂସା କଲେ ସେ କାଳରେ ।
ଶଙ୍କର ଆଦି ସକଳ ଦେବଙ୍କୁ ଅନାଇଁ
ସ୍ତୁତି କଲେ ସେ ଶ୍ୱାସ୍ତକ ନୃପକୁଳସାଇଁ ।
ବୋଇଲେ ଆଜ ସଫଳ ହେଲା ମୋ ଜୀବନ
ଖଣ୍ଡିତ ହୋଇଲା ପୂର୍ବକୃତ ପାପମାନ ।
ଜଗତ ବିଧାନ କର୍ତ୍ତା ପ୍ରଭୁ ବ୍ରହ୍ମରାଶି
ବିଜେ ହୋଇଛନ୍ତି ନିଜେ ପ୍ରାଙ୍ଗଣରେ ଆସି ।
ଆତ୍ମାରାମ ପୂର୍ଣ୍ଣକାମ ତପଫଳ ଦାତା
ଅଟନ୍ତି ଯେ ପରଂବ୍ରହ୍ମ ସର୍ବଲୋକ ଧାତା ।
ତାହାଙ୍କୁ ସାକ୍ଷାତ ସର୍ବେ ଦରଶନ କରି
ସମସ୍ତ ପାପରୁ ଆଜ ଗଲି ମୁଁ ନିସ୍ତରି ।
ଆବର ସିଦ୍ଧ ଯୋଗୀନ୍ଦ୍ର ମୁନୀନ୍ଦ୍ର ବନ୍ଦନା
ଧ୍ୟାନ ଦୃଷ୍ଟ ସଦାଶିବ ପାର୍ବତୀଙ୍କ କାନ୍ତ ।
କାଳ କାଳ ମୃତ୍ୟୁଞ୍ଜୟ ବୃଷଭ ବାହନ
ସେ ମଧ୍ୟ ଆସି ସାକ୍ଷାତେ ଦେଲେ ଦରଶନ ।
ଯାହାଙ୍କ ମୂର୍ଦ୍ଧାରେ ସ୍ଥିତ ନିଖିଳ ଜଗତ
ସେ ଅନନ୍ତ ଦେବ ଆସି ସ୍ୱୟଂ ଉପସ୍ଥିତ ।
ଚତୁର୍ମୁଖ ବ୍ରହ୍ମାଙ୍କର ପୁତ୍ର ପୌତ୍ରଗଣ
ମୋ ଗୃହରେ ବିରାଜିତ ହୋଇଛନ୍ତି ପୁଣ ।
ସର୍ବଦେବଙ୍କ ଆଗରେ ପୂଜା ଯାହାଙ୍କର
ଆସି ଅଛନ୍ତି ସେ ଦେବ ଦେବ ଗଣେଶ୍ୱର ।
ପରମ ବୈଷ୍ଣବ ଜ୍ଞାନୀଜନଙ୍କ ମଣ୍ଡନ
ସନତ୍କୁମାର ମୁନି ଦେଲେ ଦରଶନ ।
ଆବର ବହୁତ ଦ୍ୱିଜ ମୁନି ଋଷିମାନେ
ତୃପ୍ତ ହୋଇଛନ୍ତି ମୋର ଘରେ ତୋଷମନେ ।
ସେମାନଙ୍କୁ ପାଦରଜ ପରଶକୁ ପାଇ
ପବିତ୍ର ହେଲା ମୋ ଗୃହ ଜାଣୁଅଛି ମୁହିଁ ।
ବିପ୍ର ପାଦତଳ ଅଟେ ସର୍ବ ତୀର୍ଥ ସମ
ବ୍ରାହ୍ମଣ ସେବାରୁ ବଳି ନାହିଁ ଆଉ ଧର୍ମ ।
ବ୍ରାହ୍ମଣ ଅଟନ୍ତି ସାକ୍ଷାତରେ ନାରାୟଣ
ବ୍ରାହ୍ମଣ ଦର୍ଶନେ ସର୍ବ ପାପ ବିନାଶନ ।
ଗଙ୍ଗାସ୍ନାନଠାରୁ ଅଧିକ ନୁହେ କେଉଁ ତୀର୍ଥ
ଦେବଙ୍କ ମଧ୍ୟେ ଶ୍ରୀହରି ଅଟନ୍ତି ଯଥାର୍ଥ ।
ଭକତ ଗଣରେ ଶ୍ରେଷ୍ଠ ସନତ୍କୁମାର
ବୃକ୍ଷଗଣରେ ଅଧିକ କଳ୍ପ ତରୁବର ।
ସେହିରୂପେ ବ୍ରାହ୍ମଣ ସବୁ ଲୋକଙ୍କରେ ଶ୍ରେଷ୍ଠ
ବ୍ରାହ୍ମଣଙ୍କଠାରୁ କେହି ନୁହଇ ଉତ୍କୃଷ୍ଟ ।
ଦେବଙ୍କ ମଧ୍ୟେ ଅଧିକ ପ୍ରଭୁ ଜନାର୍ଦ୍ଦନ
ସମସ୍ତ ଲୋକର ସେହୁ ଅଟନ୍ତି କାରଣ ।
ଆଜ ସେହି ପ୍ରଭୁ ଆସି ମୋ ପୁରର ମଧ୍ୟରେ
ବିରାଜିତ ହୋଇଛନ୍ତି ଆପଣା ଇଚ୍ଛାରେ ।
ଏମନ୍ତ ବୋଲି ଶ୍ୱାସ୍ତକ ଶ୍ରୀକୃଷ୍ଣଙ୍କୁ ନିଜେ
ଆପଣା ଆଗରେ ନେଇ କରାଇଲେ ବିଜେ ।
ସାମ ବେଦୋକ୍ତ ସ୍ତୋତ୍ରରେ ଆରମ୍ଭିଲେ ସ୍ତୁତି
ବୋଇଲେ ନମସ୍ତେ ଦେବ ହେ ଜଗତପତି ।
ସର୍ବ ଅନ୍ତରାତ୍ମା ସର୍ବ ସାକ୍ଷୀ ଆଦିମୂଳ
ତପଫଳଦାତା ପ୍ରଭୁ ଭକତବତ୍ସଳ ।
କେଉଁମାନେ ତୁମ୍ଭରୂପ ଦେଖିବା ଇଚ୍ଛାରେ
ଧ୍ୟାନ କରୁଥାନ୍ତି ବସି ଦିବସ ନିଶାରେ ।
କେଉଁମାନେ ଜ୍ୟୋତିର୍ମୟ ବୋଲନ୍ତି ତୁମ୍ଭଙ୍କୁ
କେ ବୋଲନ୍ତି ବ୍ୟାପିଅଛ ସକଳ ଜୀବଙ୍କୁ ।
କେଉଁମାନେ ପ୍ରାକୃତିକ ଜୀବ ବୋଲି କରି
ନିଶ୍ଚୟ କରୁଅଛନ୍ତି ଭ୍ରାନ୍ତ ବୁଦ୍ଧି ଧରି ।
ପରମ ଜ୍ୟୋତି ମଧ୍ୟରେ ନିତ୍ୟ ସନାତନ
ସ୍ୱରୂପକୁ ପ୍ରକାଶିତ ହୋଇଛ ଆପଣ ।
ଏ ସକାଶୁ ତୁମ୍ଭେ ଅଟ ପରମ ଈଶ୍ୱର
ତୁମ୍ଭ ପାଦପଦ୍ମେ ମୋର କୋଟି ନମସ୍କାର ।

ଏହିରୂପେ ସ୍ତୁତି କରି ହୃଦୟ ମଧ୍ୟରେ
ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି ସେ କାଳରେ ।
ପାଦ୍ୟ ଅର୍ଘ୍ୟ ଆଦି ନାନା ଉପଚାର ଦେଇ
ପୂଜା କରିଲେ ଭୀଷ୍ମକ ନନ୍ଦଙ୍କର ପାଇଁ ।
ଆବରେ ଅମୂଲ୍ୟ ବାସ ଅଳଙ୍କାର ଦେଲେ
କର୍ପୂର ତାମ୍ବୁଳ ଆଦି ସମର୍ପଣ କଲେ ।
ଏହିରୂପେ ପୂଜାବିଧି ସାରି ନରବର
ନିବୃତ୍ତ ହୋଇଲେ ଗୀତେ ଭଣେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡେ ରୁକ୍ମଣୀ ପ୍ରଭୃତିଙ୍କ ସହିତ ଯାଦବଙ୍କର ଯୁଦ୍ଧ ଓ ଶ୍ରୀକୃଷ୍ଣ ପ୍ରଭୃତିଙ୍କର ଭୀଷ୍ମକଙ୍କ ଗୃହପ୍ରବେଶ କଥନେ ନାମ ସପ୍ତୋତ୍ତର ଶତତମୋଽଧ୍ୟାୟଃ ।

—ଃ✻ଃ✻ଃ—

# ଅ ଷ୍ଟୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କର ପରିଚୟ ବିଧାନ

ନାରାୟଣ ବୋଇଲେ ହେ ମୁନିଙ୍କ ମଣ୍ଡନ
ଶୁଣ ଏବେ ରୁକ୍ମଣୀଙ୍କ ବିବାହ ବିଧାନ ।
ମୁନି ଋଷିଙ୍କ ସହିତେ ଭୀଷ୍ମକ ନନ୍ଦିନୀ
ଯଜ୍ଞମଧ୍ୟେ ବିରାଜିତ ହେଲେ ସୁଲକ୍ଷଣୀ ।
ବିଜେ କରିଥିଲେ ରତ୍ନ ସିଂହାସନ ପରେ
ନାନା ରତ୍ନ ଅଳଙ୍କାର ଭୂଷଣ ଶରୀରେ ।
ବହ୍ନି ଶୁଦ୍ଧ ଦିବ୍ୟବାସ ପରିଧାନ କରି
ଦିଶୁଥିଲେ ସାକ୍ଷାତରେ ଲକ୍ଷ୍ମୀ ଦେବୀପରି ।
ରତ୍ନ ଦରପଣ ପରେ ଦୃଷ୍ଟି ଥିଲେ ଦେଇ
ଥରେ ଥରେ ଦେଖୁଥିଲେ କଟାକ୍ଷରେ ଗୁହିଁ ।
କସ୍ତୁରୀ ଚନ୍ଦନ ବିନ୍ଦୁ ସିନ୍ଦୂର ସହିତେ
ଲଲାଟ ଦେଶରେ ଭୂଷିଥିଲେ ସେ କାନ୍ତିତେ ।
ତପତ କାଞ୍ଚନ ପରି ତାହାଙ୍କ ବରନ
ଶରତେ ଚନ୍ଦ୍ର ପରି ମୁଖ ମଣ୍ଡଳ ଶୋଭନ ।
ଅଙ୍ଗ ଭୂଷଣରେ ଚନ୍ଦନ ହୋଇଥିଲା ବୋଳା
ଝୁଲୁଥିଲା ବକ୍ଷସ୍ଥଳେ ମାଳତୀର ମାଳା ।
ସପତ ନୃପ ବାଳକ ତାହାଙ୍କ ସଙ୍ଗରେ
ରହିଥିଲେ ଦେହରକ୍ଷା କରିବା କାର୍ଯ୍ୟରେ ।
ସେ କାଳରେ ଦେବ ଋଷି ମୁନି ବିପ୍ରଗଣ
କଲେ ରୁକ୍ମଣୀ ରୂପିଣୀ ଲକ୍ଷ୍ମୀଙ୍କୁ ଦର୍ଶନ ।
ପତିଙ୍କ ପାଶରେ ଦେବୀ ଉପସ୍ଥିତ ହୋଇ
ସପ୍ତବାର ପ୍ରଦକ୍ଷିଣ କଲେ ବେଗେ ଯାଇ ।
ସେ ଅନ୍ତରେ ସୁଶୀତଳ ସୁଗନ୍ଧ ଜଳରେ
ସେଚନ କଲେ କୋମଳ ଚୂତ ପଲ୍ଲବରେ ।
ଶ୍ରୀକୃଷ୍ଣ ମଧ୍ୟ ତାହାଙ୍କୁ କଲେ ଅଭିଷେକ
ଦେଖିଲେ ତାହାଙ୍କୁ ଦୁହେଁ ହୋଇଣ ଉତ୍ସୁକ ।
ଏଥୁଅନନ୍ତରେ ଦେବୀ ପିତାଙ୍କର କୋଳେ
ବସିଲେ ମସ୍ତକ ପୋତି ଲଜ୍ଜାଭାବ-ଜଳେ ।
ବେଦୋକ୍ତ ମନ୍ତ୍ର ପ୍ରକାରେ ରାଜା ତୋଷଚିତ୍ତେ
ପ୍ରଦାନ କଲେ ସୁତାଙ୍କୁ ଶ୍ରୀକୃଷ୍ଣଙ୍କ ହସ୍ତେ ।
ବସୁଦେବଙ୍କ ଆଜ୍ଞାରେ ପ୍ରଭୁ ଜନାର୍ଦ୍ଦନ
କଲେ ରୁକ୍ମଣୀ ଦେବୀଙ୍କ କରକୁ ଗ୍ରହଣ ।
ସେ ଅନ୍ତରେ ମହାମତି ଭୀଷ୍ମକ ରାଜନ
ପାଞ୍ଚଲକ୍ଷ ସ୍ୱର୍ଣ୍ଣ କଲେ ଶ୍ରୀକୃଷ୍ଣଙ୍କୁ ଦାନ ।
ଦକ୍ଷିଣା ସ୍ୱରୂପେ କେତେ ଧନରତ୍ନ ଦେଲେ
ଯଉତୁକ ଦେଇ ମନ ତୋଷ କରାଇଲେ ।
ରଥ ଗଜ ଅଶ୍ୱ ବହୁ ଯାନ ସୁଖେ ଦେଲେ
ହୀରା ନୀଳା ଅଳଙ୍କାର ତୁଳନା କେ କରେ ।
କର୍ମ ସମାପ୍ତ ହୁଅନ୍ତେ ସେ ସଭା ମଧ୍ୟରେ
ନିବେଦନ କଲେ ସୁତାଙ୍କୁ ନୟନ ବିଷରେ ।
ଵନପୁରେ ଶ୍ରୀକୃଷ୍ଣଙ୍କୁ କଣ୍ଠଣ ବନ୍ଦିତ
ନେନ ଜନଲେ କଲେ ଦେବଗଣ ଅଭିଷେକ ।
ଏହିଠାରେ ରୁକ୍ମଣୀଙ୍କ ବିବାହ ବୃତ୍ତାନ୍ତ ।
ଦୀନ କ୍ଷେତ୍ରବାସୀ ଗୀତେ କଲେ ସମାପତ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କର ପରିଚୟ ବିଧାନ କଥନେ ନାମ ଅଷ୍ଟୋତ୍ତରଶତତମୋଽଧ୍ୟାୟଃ ।

———

# ନବୋତ୍ତରଶତତମ ଅଧ୍ୟାୟ
## ପାର୍ବତୀ ଆଦି ଦେବୀମାନଙ୍କର ଶ୍ରୀକୃଷ୍ଣଙ୍କ ସହିତ କଥୋପକଥନ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦ
ଶୁଣ କହୁଅଛି ଏବେ ଅପୂର୍ବ ସମ୍ବାଦ ।
ବିବାହ କର୍ମ ସମାପ୍ତ ହୁଅନ୍ତେ ଶୁଭରେ
ରୁକ୍ମିଣୀଙ୍କ ମାତା ଅତି ହରଷ ଭାବରେ ।
ପତି ପୁତ୍ରବତୀ ସ୍ତ୍ରୀମାନଙ୍କ ସଙ୍ଗେ ଧରି
ଆସିଲେ ମଙ୍ଗଳ ଅର୍ଘ୍ୟପାତ୍ର ଘେନିକରି ।
ଝିଅ ଜୁଆଇଁ ଦୁହିଙ୍କୁ ବନ୍ଦାପନା କଲେ
ସୁବର୍ଣ୍ଣ ଭୂଷିତ ଗୃହେ ନେଇ ବସାଇଲେ ।
ସେହିଠାରେ ଶ୍ରୀକୃଷ୍ଣଙ୍କୁ ଦେଖିବା ଆକାଶେ
ଦେବୀଗଣ ଉପସ୍ଥିତ ହେଲେ ଆସି ପାଶେ ।
ଦୁର୍ଗତିନାଶିନୀ ଦୁର୍ଗା ଦେବୀ ସରସ୍ୱତୀ
ସାବିତ୍ରୀ ରୋହିଣୀ କାମଦେବପତ୍ନୀ ରତି ।
ଏମାନଙ୍କୁ ଆଦି କରି ସବୁ ଦେବୀମାନେ
ରାଜପତ୍ନୀ ଋଷିପତ୍ନୀ ସହିତେ ସୁମନେ ।
ନିକଟରେ ଉପସ୍ଥିତ ହୋଇଣ ସେ କାଳେ
ଆଗେ ରହି କରଯୋଡ଼ି ସ୍ତୁତି ପାଠ କଲେ ।
ସେ ଅନ୍ତେ ବ୍ରାହ୍ମଣପତ୍ନୀ ବର ସହିତରେ
କନ୍ୟାକୁ ଭୁଞ୍ଜାଇଲେ ହରଷ ଚିତ୍ତରେ ।
ମଙ୍ଗଳ ପତ୍ରିକା ଦେଇ ଦୁର୍ଗାଦେବୀ ପୁଣ
ବୋଇଲେ ଶ୍ରୀକୃଷ୍ଣ ଏହା କର ହେ ପଠନ ।
ସମସ୍ତଙ୍କ ଆଜ୍ଞାପାଇ ଶ୍ରୀକୃଷ୍ଣ ସେକାଳେ
ସେହି ପତ୍ରକୁ ଫିଟାଇ ପଠନ କରିଲେ ।
ଦେଖିଲେ ତହିଁରେ ଲେଖା ହୋଇଛି ଏପରି
ମଙ୍ଗଳ ହେଉ ତୁମ୍ଭର ଆହେ ବଂଶୀଧାରୀ ।
ଲକ୍ଷ୍ମୀ ସାବିତ୍ରୀ ରାଧିକା ଦୁର୍ଗା ସରସ୍ୱତୀ
ତୁଳସୀ ଯମୁନା ପୃଥ୍ୱୀଦେବୀ ଅରୁନ୍ଧତୀ
ମେନକା ଆଦି ସମସ୍ତ ଦେବୀଙ୍କ କୃପାରେ
ଶୁଭଫଳ ପ୍ରାପ୍ତ ହୁଅ ତୁମ୍ଭେ ସବୁଠାରେ ।
ଏମନ୍ତ ଶୁଣି ସକଳ ଦେବୀ ହସି ହସି
କହିଲେ ରହସ୍ୟବଚନ ପରିହାସେ ରସି ।
ପାର୍ବତୀ ବୋଇଲେ ଆହେ ଶ୍ୟାମଳ ସୁନ୍ଦର
ରୁକ୍ମିଣୀଙ୍କୁ ପାଇ ଏବେ ସୁଖ ଭୋଗକର ।
ଶଚୀ ବୋଇଲେ ସୁନ୍ଦରୀ ଅଟେ ତୁମ୍ଭ କାନ୍ତା
ଛାଡ଼ି ମାନସରୁ ଏବେ କାମଭୟ ଚିନ୍ତା ।
ସାବିତ୍ରୀ ବୋଇଲେ ନବ ଯୁବତୀ ଏ କନ୍ୟା
ତୁମ୍ଭଙ୍କୁ ପାଇଣ ଏବେ ବୋଲାଇଲେ ଧନ୍ୟା ।
ରତି ବୋଇଲେ ହେ ବସୁଦେବଙ୍କ କୁମର
ସତ୍ୟକଥା କହ ଆମ୍ଭମାନଙ୍କ ଆଗର ।
ରାଧିକା ରୁକ୍ମିଣୀ ଦୁଇପତ୍ନୀଙ୍କ ମଧ୍ୟରେ
ଗୁଣେ ଅଧିକ କେ ଅବା ହେବ ସୌନ୍ଦର୍ଯ୍ୟରେ ।
ସରସ୍ୱତୀ ବୋଇଲେ ହେ ରାଧିକାଙ୍କଠାରେ
ଯେଉଁରୂପେ ପ୍ରୀତି କରିଥାଅ ନିରନ୍ତରେ ।
ସେହିପରି ରୁକ୍ମିଣୀଙ୍କଠାରେ କର ପ୍ରୀତି
ପୂର୍ବରୁ ତୁମ୍ଭର ସେ ତ କାମିନୀ ଅଟନ୍ତି ।
ଦୁର୍ଗା ସାବିତ୍ରୀ ସହିତେ ମୋତେ ଆଦି କରି
ଅଛୁଁ ଯେତେ ଜଗତରେ ପତିବ୍ରତା ସ୍ତ୍ରୀ ।
ସମସ୍ତଙ୍କଠାରୁ ରାଧା ସାଧବୀ ଅଟନ୍ତି
ତେଣୁ ତାହାଙ୍କର ତୁମ୍ଭ ବକ୍ଷସ୍ଥଳେ ସ୍ଥିତି ।
ଯେଉଁ ରାଧାଙ୍କ ପାଦରେ ଅଳକ୍ତ ଦେଇ
ପ୍ରବୋଧ କର ଆପଣ ଚାଟୁବାକ୍ୟ କହି ।
ତାଙ୍କପରି ଭାଗ୍ୟବତୀ ଅଛି କେ ଜଗତେ
ଏମନ୍ତ ଶୁଣିଣ ହସି ଉଠିଲେ ସମସ୍ତେ ।
ପାର୍ବତୀ ସାବିତ୍ରୀ ସତୀ ଏମାନେ କେବଳ
ସାଧୁ ସାଧୁ ବୋଲି ଉଚ୍ଚାରିଲେ ତତକାଳ ।
ଏଥୁଅନ୍ତରେ ବ୍ରାହ୍ମଣ ଦେବତା ଋଷିଙ୍କୁ
ପୂଜା କଲେ ଯଥାବିଧି ପ୍ରକାଶି ଭକ୍ତିକୁ ।
ନଗର ସବୁସ୍ଥାନରେ ମଙ୍ଗଳ ସଙ୍ଗୀତ
ଭୋଜନ ପାନ ଶବଦ ହେଲା ଅପ୍ରମିତ ।
ପ୍ରଭାତରେ ବ୍ରହ୍ମା ଶିବ ଶେଷ ଆଦି କରି
ଦେବଙ୍କ ସହିତେ ମୁନି ଋଷି ଦଣ୍ଡଧାରୀ ।
ଯେ ଯାହା ଯାନ ବାହନ ଆରୋହଣ କଲେ
ବିଦାୟ ହୋଇଣ ନିଜ ନିଜ ପୁରେ ଗଲେ ।
ଉଗ୍ରସେନ ନରପତି ବସୁ ସହିତରେ
କୃଷ୍ଣ ରୁକ୍ମିଣୀଙ୍କୁ ଘେନି ଆପଣା ସଙ୍ଗରେ ।
ଦ୍ୱାରକାକୁ ଯିବାପାଇଁ ବାହାରିବା କାଳେ
ରୁକ୍ମିଣୀଙ୍କ ମାତା ଆସି ସେଠାରେ ମିଳିଲେ
ଦୁହିତାଙ୍କୁ କୋଳେ ଧରି କରିଣ ରୋଦନ
ବୋଇଲେ ଗୋ ବତ୍ସେ କେଉଁଣ କରୁଛ ଗମନ

ତୁମ୍ଭଙ୍କୁ ଛାଡ଼ି ଜନ୍ମେଠ ମୋହର ଜୀବନ
ନାହିଁବ ବିରହ ବାଧା ସହ୍ୟକରି ମାତ ।
କନ୍ୟାରୂପେ ମହାଲକ୍ଷ୍ମୀ ଥିଲେ ମୋ ଗୃହରେ
ଚଳାଇ ଯାଉଛ ଏବେ ପତିଙ୍କ ସଙ୍ଗରେ ।
ଏମନ୍ତ ବୋଲି ନୟନ ଜଳେ ସୁତାଙ୍କର
ଶରୀର ସିଞ୍ଚିତ କଲେ ହୋଇ ଶୋକଭର ।
ଭୀଷ୍ମକ ନୃପତି ମଧ୍ୟ ଉଚ୍ଚରେ କାନ୍ଦିଲେ
ଶ୍ରୀକୃଷ୍ଣ ରୁକ୍ମିଣୀ ପୁନହିଁ ଶୋକ ମଧ୍ୟ କଲେ ।
ଏଥୁଅନ୍ତେ ବସୁଦେବ ପୁତ୍ରବଧୂ ସଙ୍ଗେ
ଯିବାପାଇଁ ରଥ ଆରୋହଣ କଲେ ବେଗେ ।
ଜାମାତାଙ୍କୁ ନରପତି ଭୀଷ୍ମକ ରାଜନ
ଦେଲେ ବିବିଧ ପ୍ରକାରେ ଯଉତୁକମାନ ।
ସହସ୍ରେକ ଦେଲେ ଆଣି ପ୍ରମତ୍ତ ବାରଣ
ଦିବ୍ୟ ତୁରଙ୍ଗମ ଦେଲେ ଚାରି ଷଡ଼ଗୁଣ ।
ସହସ୍ର ସଂଖ୍ୟକ ସ୍ୱର୍ଣ୍ଣରତ୍ନ ପୁଣି ଦେଲେ
ଭୋଜନ ପାନ ପଦାର୍ଥ ପୁଣି ତାହା ତୁଲେ ।
ସୁବର୍ଣ୍ଣ ରଜତ ପାତ୍ର ଦେଲେ ଅପ୍ରମିତ
ନାନାବିଧ ସ୍ୱର୍ଣ୍ଣରତ୍ନ ଭୂଷଣ ସହିତ ।

ଦୁଗ୍ଧବତୀ ସହସ୍ରେକ ଧେନୁ ପୁଣି ଦେଇ
ବିଦାୟ କଲେ କୋମଳ ବଚନରେ କହି ।
ବସୁଦେବ ଉଗ୍ରସେନ ମୁନିଋଷି ତୁଲେ
ଦ୍ୱାରକା ଭବନେ ଯାଇ ପ୍ରବେଶ ହୋଇଲେ
ଦେବକୀ ରୋହିଣୀ ନନ୍ଦରାଜାଙ୍କ କାମିନୀ
ଆସିଲେ ଅଦିତି ଆଦି ଦେବୀଗଣ ଘେନି ।
ବନ୍ଦାପନା କରି ପୁତ୍ର ବଧୂଙ୍କୁ ସେ ନେଲେ
ବିବିଧ ପ୍ରକାରେ ଶୁଭ ମହୋତ୍ସବ କଲେ ।
ଉଗ୍ରସେନ ନରପତି ମହା ଆଡ଼ମ୍ବରେ
ବାଦ୍ୟ ନୃତ୍ୟ ଆଦି କରାଇଲେ ସେ କାଳରେ
ଦେବତା ମୁନି ବ୍ରାହ୍ମଣ ବୈଷ୍ଣବମାନଙ୍କୁ
ନାନା ମିଷ୍ଟଦ୍ରବ୍ୟମାନ ଦେଲେ ଭୁଞ୍ଜିବାକୁ ।
ବନ୍ଦୀ ଭଟ୍ଟ ଆଦି ଯେତେ ଲୋକ ଆସିଥିଲେ
ସମସ୍ତଙ୍କୁ ବସୁଦେବ ଧନରତ୍ନ ଦେଲେ ।
ଆନନ୍ଦିତ ହୋଇ ସର୍ବେ ଯେ ଯାହା ପୁରକୁ
ଗଲେ ସେକାଳେ ଆରୋହି ଯାନ ବାହନକୁ ।
କେଉଁମାନେ ପାଦେ ଚାଲି କରିଲେ ଗମନ
ଶ୍ରୀକୃଷ୍ଣ ସ୍ମରି ଭଣେ କ୍ଷେତ୍ରବାସୀ ଘନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ପାର୍ବତୀ ଆଦି ଦେବୀମାନଙ୍କର ଶ୍ରୀକୃଷ୍ଣଙ୍କ ସହିତ କଥୋପକଥନ ନାମ ନବୋତ୍ତରଶତତମୋଽଧ୍ୟାୟଃ ।



## ଦ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ
## ନନ୍ଦ ଓ ଯଶୋଦାଙ୍କର ଗୋପପୁର ଗମନ ଓ ରାଧାଙ୍କପ୍ରତି ଯଶୋଦାଙ୍କର ଉକ୍ତି

ନାରାୟଣ ବୋଇଲେ ହେ ବିବାହ ବିଧାନ
ସମାପତ ହୋଇବାରୁ ଗୋପାଳ ରାଜନ ।
ଯଶୋଦାଙ୍କୁ ଘେନିକରି ପୁତ୍ରପାଶେ ଗଲେ
ଗୋପପୁରେ ଯିବାପାଇଁ ବିଦାୟ ମାଗିଲେ ।
ଯଶୋଦା ବୋଇଲେ ବାବୁ ପିତାଙ୍କୁ ଯେ ତୁମ୍ଭେ
ଦିବ୍ୟଜ୍ଞାନ ଦେଇଅଛ ନ ଜାଣୁ ତା ଆମ୍ଭେ ।
ଏବେ ମୋହଠାରେ କୃପାକରି ସେ ଜ୍ଞାନକୁ
ଦିଅ ମୁହିଁ ନିସ୍ତରିବି ଗୁଢ଼ ସଂସାରକୁ ।
ମାୟାସଂସାର ତରଣୀ ଅଟଇ ପ୍ରକୃତି
କର୍ଣ୍ଣଧାର ଅଟ ତୁମ୍ଭେ ଆହେ ଶ୍ରୀପତି ।
ମାତାଙ୍କ ବଚନ ଶୁଣି ଦେବ ନରହରି
ବୋଇଲେ ଆଗୋ ଜନନୀ ଶୁଣ କର୍ଣ୍ଣଡେରି ।

ଯୋଗ ବିଷୟ ରୂପକ ସିଦ୍ଧାନ୍ତକ ଜ୍ଞାନ
ଦାସ୍ୟ ପ୍ରଦାୟକ ଭକ୍ତି ପ୍ରାପକ ଯେ ପୁଣ ।
ଏହିପରି ପଞ୍ଚବିଧ ଜ୍ଞାନଟି ଅଟଇ
ଭକ୍ତିପ୍ରଦାୟକ ଜ୍ଞାନ ଶୁଣ କହୁଥାଇଁ ।
ସେ ଜ୍ଞାନ ସ୍ପୃହା ବଳରେ ପିପାସା ଖଣ୍ଡନ
ପ୍ରଥମରେ ହେବ ବୋଲିକରି ମନେ ଘେନ ।
ସେ ଅନ୍ତରେ ଅନ୍ତରଙ୍ଗ ବିଶୁଦ୍ଧ ହୋଇବ
ନାଡ଼ୀ ଶୁଦ୍ଧିଅନ୍ତେ ବ୍ରହ୍ମରନ୍ଧ୍ର ଭେଦ ହେବ ।
କୁଣ୍ଡଳିନୀ ଶକ୍ତି ଯୁକ୍ତ ଈଶ୍ୱର ତହିଁରେ
ପ୍ରକାଶିତ ହେବେ ଜ୍ଞାନମାର୍ଗେ ନିରନ୍ତରେ ।
କାମ କ୍ରୋଧ ଲୋଭ ମୋହ ବଶୀଭୂତ ହେବେ
ଇନ୍ଦ୍ରିୟଗଣ ଆପଣା ବଶରେ ରହିବେ ।

ନାରୀଙ୍କ ପକ୍ଷରେ ଏହା ଦୁର୍ବୋଧ ଅଟଇ
ମୂର୍ଖମାନଙ୍କୁ କଷ୍ଟତ ବୋଧ ନ ହୁଅଇ ।
ଯୋଗାତ୍ମକ ଜ୍ଞାନମିଶ୍ର ମୁନିଙ୍କ ଗୋଚର
ତାହା ଜାଣି ନ ପାରଇ ଆନ କେହିଁ ନର ।
ବିଷୟ ଜ୍ଞାନ ସବୁରି ହୃଦରେ ଅଛଇ
କାର୍ଯ୍ୟରେ ପ୍ରବୃତ୍ତି ନାଚ କରାଏଟି ସେହି ।
ଚତୁର୍ବରଣ ସୁସାଧ୍ୟ ସାଧନ ବୋଧନ
ମିଶ୍ରଜ୍ଞାନର ସ୍ୱରୂପ ବୋଲିକରି ଜାଣ ।
ମୋକ୍ଷାତ୍ମକ ଜ୍ଞାନ ଅଟେ ନିର୍ବାଣ ହେତୁକ
ତାହାକୁ ଇଚ୍ଛା ନ କରେ ଭକ୍ତ ଯେଉଁ ଲୋକ
ଭକ୍ତିରୂପ ଜ୍ଞାନ ତୁମ୍ଭେ ରାଧିକାଙ୍କଠାରୁ
ପାଇବ କଷ୍ଟତ ମାତ୍ର ନ ହୁଅ ଗୋ ଭୀରୁ ।
ତାହାଙ୍କଠାରେ ମାନୁଷ ଭାବ ନ ରଖିବ
ତେମନ୍ତ ହେଲେ ଉତ୍ତମ ଜ୍ଞାନକୁ ପାଇବ ।
ନନ୍ଦଙ୍କୁ ପୂର୍ବରେ ମୁହିଁ ଦେଇଛି ଯେ ଜ୍ଞାନ
ତାହାଙ୍କଠାରୁ ସକଳ ତୁମ୍ଭେ ବୁଝି ନେନ ।
ପତି ସହିତରେ ଏବେ ବ୍ରଜପୁରେ ଯାଇ
ରହ ଗୋ ଜନନୀ ମନୁ ଦୁଃଖ ଛାଡ଼ିଦେଇ ।
ଏମନ୍ତ କହି ଶ୍ରୀକୃଷ୍ଣ ନିଜପୁରେ ଗଲେ
ନନ୍ଦ ଯଶୋଦା ବେନିହେଁ ସେଠାରୁ ଆସିଲେ
କଦଳୀ ବନରେ ଆସି ହୋଇଣ ପ୍ରବେଶ
ମିଳିଲେ ସତ୍ୱରେ ଯାଇ ରାଧାଙ୍କର ପାଶ ।
ଦେଖିଲେ ସେଠାରେ ରାଧା ପର୍ଯ୍ୟଙ୍କ ଉପରେ
ସଜଳ ପଙ୍କଜ ଦଳ ପକାଇ ତହିଁରେ ।
ବିଭୂଷଣ ତ୍ୟାଗକରି ଶୋଇଛନ୍ତି ଦୁଃଖେ
ବିରସ ଭାବ ପ୍ରକାଶ ପାଉଅଛି ମୁଖେ ।
ଶ୍ରୀକୃଷ୍ଣଙ୍କ ପାଦଯୁଗ ସୁମରଣା କରି
ଦିନ ନେଉଛନ୍ତି ଅତିକଷ୍ଟେ ସୁକୁମାରୀ ।
ଶୁକଳ ଚାମର ଧରି ପ୍ରିୟସଖିଗଣ
ସେବା କରୁଛନ୍ତି ଯେ ଯା ମତେ ଅନୁକ୍ଷଣ ।
ଶତକୋଟି ଗୋପନାରୀ ରହି ଚୌପାଶେ
ଜଗିଛନ୍ତି ଦେହରକ୍ଷା କରିବା ମାନସେ ।
ତାଙ୍କୁ ଦେଖି ଭାର୍ଯ୍ୟା ଭୂଲେ ବ୍ରଜ ଅଧୀଶ୍ୱର
ବିସ୍ମୟ ପାଇଲେ ମନେ ମନେ ସେ ଅପାର ।
ଭକ୍ତିଭରେ ଦୁହେଁ ତାଙ୍କ ପାଦରେ ନମିଲେ
କର ଯୋଡ଼ିକରି ଉଭା ହୋଇଣ ରହିଲେ ।
ଈଶ୍ୱର ଇଚ୍ଛାରେ ଦେବୀ ଚେତନାକୁ ପାଇ ।
ଦେଖିଲେ ଆଗରେ ଉଭା ପତି ପତ୍ନୀ ଦୁଇ ।
ସଖୀଙ୍କ ମଧ୍ୟରେ ତାଙ୍କୁ ଦେଖି ସେ କାଳରେ
ପଚାରିଲେ ସୁସମ୍ବାଦ ସୁମଧୁର ସ୍ୱରେ ।
ବାତୁଳୀ ପରାୟେ ହୋଇଥିବାରୁ ତାଙ୍କର
ବିଷୟ ଜ୍ଞାନ କିଛିହିଁ ନ ଥିଲା ମନର ।
ନମ ସକାଶୁ ବୋଇଲେ ହେ ତୁମ୍ଭେ ଦୁଇଜଣ
କିଏ ସେ ଏଠାକୁ ଆସିଅଛ କି କାରଣ ।
ଜଳ ସ୍ଥଳ ବନ ଗିରି ଆକାଶ ମେଦିନୀ
ଜାଣି ନ ପାରୁଛି ମୁଁ ବିରହ ବ୍ୟଥା ଘେନି ।
ସ୍ତ୍ରୀ କି ପୁରୁଷ ବା ନପୁଂସକ କେ ଆସିଲେ
ତାହାଙ୍କୁ ମୁଁ ଚିହ୍ନି ନ ପାରଇ ଜାଣ ଭଲେ
ରାଧାଙ୍କ ବଚନ ଶୁଣି ଯଶୋଦା ସୁନ୍ଦରୀ
ସମୀପକୁ ଗଲେ ମନେ ଭୟଭାବ ଧରି ।
ପାଶେ ବସି ପ୍ରିୟତର ବଚନ କହିଲେ
ମନୋହର ବଚନ ଦେବୀ ଶୁଣ ଗୋ ବୋଇଲେ
ଯତନରେ ଶରୀରକୁ ରଖିଥାଅ ସତୀ
ଦରଶନ ଦେବେ ନିଶ୍ଚେ ତୁମ୍ଭ ପ୍ରାଣପତି ।
ତୁମ୍ଭେ ଅଟ ମହାମାୟା ତ୍ରିଜଗତ ଧାତ୍ରୀ
ତୁମ୍ଭ ଯୋଗରେ ପବିତ୍ର ହୋଇଛି ଧରିତ୍ରୀ ।
ଭାଗ୍ୟବତୀ ଅଟନ୍ତି ଏ ଗୋପିକା ସମସ୍ତ
ଯେଣୁ କରୁଛନ୍ତି ତୁମ୍ଭ ସେବାକୁ ସତତ ।
ମୁଁ ଅଟଇ ଯଶୋବତୀ ଏ ନନ୍ଦରାଜନ
ଯାହା ମୁଁ କହୁଛି ଏବେ ମନଦେଇ ଶୁଣ ।
ଦ୍ୱାରକା ନଗରୁ କୃଷ୍ଣ ସମୀପରୁ ଆମ୍ଭେ
ଆସିଅଛୁ ବୋଲିକରି ଜାଣ ଏବେ ତୁମ୍ଭେ ।
ତୁମ୍ଭ ନିକଟକୁ ହରି ପେଷିଛନ୍ତି ମୋତେ
ମଙ୍ଗଳ ବାରତା ଶୁଣ ଗଜରାଜଗତେ ।
ଅଳପ ସମୟ ପରେ ଶ୍ରୀକୃଷ୍ଣ ଏଠାକୁ
ଆସିବେ ତୁମ୍ଭଙ୍କୁ ନିଜେ ଦର୍ଶନ ଦେବାକୁ ।
ଦୟାକରି ଏବେ ଦିବ୍ୟଜ୍ଞାନ ମୋତେ ଦିଅ
ଶରୀରକୁ ଅଳ୍ପକାଳ ରକ୍ଷାକରି ଥାଅ ।
ତୁମ୍ଭ ପତିଙ୍କ ଆଦେଶେ ଆସିଅଛୁ ମୁହିଁ
କରୁଣା କର ମୋଠାରେ ପୂର୍ଣ୍ଣଚନ୍ଦ୍ର ମୁଖୀ
ଯଶୋଦାଙ୍କଠାରୁ ରାଧା ଶ୍ରୀକୃଷ୍ଣଙ୍କ ନାମ
ଶୁଣିବାରୁ ସେହିକ୍ଷଣି ଛାଡ଼ିଦେଇ ଭ୍ରମ ।

ବେଦନା ପାଇ ଶ୍ରୀକୃଷ୍ଣ ମାତାଙ୍କୁ ଶଙ୍କିଲେ
ଅନ୍ତର୍ଭରର କରଣ ବଚନ କହିଲେ ।

ଯେ ରାମାକୃଷ୍ଣଙ୍କ ପାଦେ କଷଣବାସୀ ଜନ
ପଦ୍ମଶ ବୋଲନ୍ତି ମୋତେ ରଖ ଭଗବାନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନନ୍ଦ ଓ ଯଶୋଦାଙ୍କର
ଗୋପପୁର ଗମନ ଓ ରାଧାଙ୍କ ପ୍ରତି ଯଶୋଦାଙ୍କର ଉକ୍ତି କଥନେ
ନାମ ଦଶୋତ୍ତରଶତତମୋଽଧ୍ୟାୟଃ ।

---

## ଏ କା ଦ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ରାଧାଙ୍କର ଯଶୋଦାଙ୍କ ଆଗେ ବ୍ରହ୍ମତତ୍ତ୍ୱ କଥନ

ରାଧିକା ବୋଇଲେ ଆଗୋ ଯଶୋଦା କାମିନୀ
ଶ୍ରୀକୃଷ୍ଣଙ୍କ ପାଶେ ଯାଇଥିଲ ତୁମ୍ଭେ ପୁଣି ।
ତାହାଙ୍କ ଠାରୁ ତ ବୁଝି ନ ଆସିଲ କିଛି
ଅଧିକ କି କହିବି ମୁଁ ବୋଲି ବସିରୁଛି ।
ଏହାଜରେ ସ୍ତ୍ରୀ ମୁହିଁ ଅଟେ ଜ୍ଞାନହୀନା
ବ୍ୟଥା ଦେଉଅଛି ମୋତେ ବିରହ ବେଦନା ।
ନନ୍ଦଙ୍କୁ ଶ୍ରୀକୃଷ୍ଣ ଯେଉଁ ଜ୍ଞାନ ଦେଇଛନ୍ତି
ତାଙ୍କଠାରୁ ଏବେ ତୁମ୍ଭେ ବୁଝ ଦେଇ ମତି ।
ଏବେ ବୋଲୁଅଛି ଭକ୍ତି ସ୍ୱରୂପ ଜ୍ଞାନକୁ
କହୁଅଛି ଶୁଣ ସ୍ଥିର କରଣ ମନକୁ ।
ଅସାଧୁ ହେଲେହେଁ ଯେତ୍ତୁ କୃଷ୍ଣଙ୍କୁ ସେବଇ
ସକଳ ଭୟ ତାହାର ଦୂର ହୋଇଯାଇ ।
କୋଟି କୁତ୍ସିତ ଯୋଗ ହୁଏ ଯେଉଁ ଲୋକ
ଧର୍ମ କଲେ ମଧ୍ୟ ସେହୁ ଭୁଞ୍ଜଇ ନରକ ।
ସେ ସକାଶୁ ଶ୍ରୀକୃଷ୍ଣଙ୍କ ପୁତ୍ର ବୁଦ୍ଧି ତେଜି
ସବୁବେଳେ ଭକ୍ତିଭରେ ରହିଥାଅ ଭଜି ।
ପୁଣ୍ୟମୟ ବୃନ୍ଦାବନେ ଉପସ୍ଥିତ ହୋଇ
ପ୍ରତିଦିନ ଯମୁନାରେ ସ୍ନାନ କରି ଯାଇ ।
ଅଷ୍ଟଦଳ ପଦ୍ମ ଲେଖି ସିନ୍ଧୁ ଚନ୍ଦନରେ
ଗର୍ଭଦେବା ଧ୍ୟାନ ପାଠ କରି ସେ ଅନ୍ତରେ ।
ପରମାନନ୍ଦ ରୂପକୁ ପୂଜା କରି ତହିଁ
ବସ ଅନ୍ତକାଳେ ତାଙ୍କ ସମୀପରେ ଯାଇ ।
ତେମନ୍ତ ହେଲେ ସଂସାରେ କର୍ମ କ୍ଷୟ ଯିବ
ପୁଣ୍ୟବନ୍ତ ବୈଷ୍ଣବଙ୍କ ସମ୍ବନ୍ଧ ରହିବ ।
ହରିଭକ୍ତିହୀନ ଅଟେ ଯେଉଁ ମୂଢ଼ନର
ସ୍ୱଧର୍ମ ନଷ୍ଟ ହୁଏ ସଙ୍ଗମେ ତାହାର ।

ଭକ୍ତିବୃକ୍ଷର ଅଙ୍କୁର ଅଟେ ଭକ୍ତ ସଙ୍ଗ
ହରିକଥା ଆଳାପରେ ବଢ଼ଇ ତା ଅଙ୍ଗ ।
ତହିଁଲେ ଯେବେ ଅଭକ୍ତ ସମ୍ବନ୍ଧ ଲଗଇ
କ୍ରମେ କ୍ରମେ ସେ ଅଙ୍କୁର ଶୁଷ୍କହୋଇ ଯାଇ ।
ସେ ସକାଶୁ ବୋଲୁଅଛି ଅଭକ୍ତ ସଙ୍ଗମ
ପରିତ୍ୟାଗ କରିଥିବ ନ ପାଇଣ ଭ୍ରମ ।
ରାମ ନାରାୟଣ ହରି ଶ୍ରୀମଧୁସୂଦନ
ମୁକୁନ୍ଦ କେଶବ କୃଷ୍ଣ ବୈକୁଣ୍ଠ ବାମନ ।
ଅନନ୍ତ କଂସାରି ଏହିପରି ଏକାଦଶ
ନାମ ସୁମରିଲେ ସର୍ବପାପ ହେବ ନାଶ ।
ରା ଶବଦ ଅଟେ ବିଶ୍ୱଅର୍ଥ ପ୍ରକାଶକ
ମ ଅକ୍ଷର ଗୋଟି ପୁଣି ଈଶ୍ୱର ବାଚକ ।
ଏହିପରି ଜଗତର ଈଶ୍ୱର ଯେ ହରି
ହୋଇଅଛି ତାଙ୍କ ନାମ ରାମ ବୋଲିକରି ।
ଆନନ୍ଦରେ ରମାଙ୍କ ସଙ୍ଗେ କରିବାରୁ କେଳି
ଡାକନ୍ତି ତାହାଙ୍କୁ ଲୋକେ ରାମନାମ ବୋଲି ।
ନାର ଶବଦ ଅଟଇ ସାରୂପ୍ୟ ବାଚକ
ଅୟନ ଶବଦ ମାର୍ଗ ଅର୍ଥର ବୋଧକ ।
ସେ ହେତୁ ସାରୂପ୍ୟ ମୁକ୍ତିମାର୍ଗ ଯେ ଈଶ୍ୱର
ନାରାୟଣ ନାମ ହୋଇଅଛି ତାହାଙ୍କର ।
ଥରେମାତ୍ର ନାରାୟଣ ଶବ୍ଦ ଉଚ୍ଚାରିଲେ
କୋଟିତୀର୍ଥ ସ୍ନାନଫଳ ଲଭ ହୁଏ ଭଲେ ।
ଯାହାଙ୍କର କେହି ନ ଜାଣଇ ଆଦ୍ୟଅନ୍ତ
ତାହାଙ୍କର ନାମ ତେଣୁ ହୋଇଛି ଅନନ୍ତ ।
ମୁକ୍ତି ଦୁଇବର୍ଣ୍ଣ ଯେବେ ମାତ୍ର ହୋଇଥାଏ
ତେବେ ସେ ନିର୍ବାଣ ରୂପ ଅର୍ଥକୁ ବୁଝାଏ ।

ଏଥି ନିର୍ବାଣ ଦେବାରୁଟି ମୁକୁନ୍ଦ ତାଙ୍କର
ନାମ ହୋଇଅଛି ବୋଲି ମନରେ ବିଚାର ।
ମଧୁ ଦୈତ୍ୟକୁ ବିନାଶ କରିବାରୁ ଏହି
ମଧୁସୂଦନ ବୋଲିଣ ନାମ ନିତ୍ୟ ବିଧି ।
ଉତ୍କୃଷ୍ଟ ଅର୍ଥ ବୁଝାଏ କୃଷ୍ଣ ଦୃଢବର୍ଣ୍ଣି
ଣ ଅକ୍ଷର ଅଟେ ପୁଣି ସଦ୍‌ଭକ୍ତି ବଚନ ।
ଯେହି ବେନ ଅକ୍ଷରରେ କୃଷ୍ଣ ଶବ୍ଦ ହେଲା
ତେଣୁ ଏଥି ଭକ୍ତି ଦାୟକ ଅର୍ଥ ବୁଝାଇଲା ।
ସହସ୍ର ନାମକୁ ତିନଥର ପାଠକଲେ
ଯେଉଁ ଫଳ ପରାପତ ହୋଇଥାଏ ଭଲେ ।
କୃଷ୍ଣ ନାମ ଥରେ ମାତ୍ର କଲେ ଉଚ୍ଚାରଣ
ସେହିପରି ଫଳପ୍ରାପ୍ତି ହୋଇଥାଏ ଜାଣ ।
ଜପ ହୋମ ଦାନ ଆଦି ଯେତେ କର୍ମମାନ
ନୁହନ୍ତି ଏ କୃଷ୍ଣ ନାମ ଜପର ସମାନ ।
କ ଶବଦ ଅଟେ ଜଳ ଦେହାର୍ଥ ବୋଧକ
ତହିଁରେ ଶୟନ କରନ୍ତି ଯେ ସୃଷ୍ଟି ଦକ ।
ତାହାଙ୍କୁ କେଶବ ବୋଲି ବୋଲନ୍ତି ଜାଣ
ଆହେ ଶ୍ରୀକୃଷ୍ଣ ଜନନୀ ନ ବିଚାର ଆନ ।
ବିଘ୍ନ ରୋଗ ଶୋକେ ପୁଣି ଦାନବ ଅର୍ଥରେ
କଂସ ଶବଦଟି ପ୍ରବର୍ତ୍ତିଲ ଯଥାର୍ଥରେ ।
ତାକୁ ନାଶ କରିବାରୁ ବୋଲନ୍ତି କଂସାରି
ଆଗୋ ବ୍ରଜ ଅଧୀଶ୍ୱରି ଶୁଣ କର୍ଣ୍ଣ ଡେରି ।
ଅଶେଷ ପାତକ ରାଶି କରନ୍ତି ହରଣ
ସେ ସକାଶୁ ହରି ନାମ ବହିଛନ୍ତି ପୁଣ ।
ବିକୁଣ୍ଠା ଶବଦ ଅଟେ ପ୍ରକୃତି ବଚନ
ସେ ପ୍ରକୃତିଠାରେ ଜାତ ହେବାରୁ ଏ ଜାଣ
ବୈକୁଣ୍ଠ ନାମରେ ଖ୍ୟାତ ଅଟନ୍ତି ଜଗତେ
ଏ ନାମକୁ ସ୍ମରନ୍ତି ସର୍ବଦା ଭକତେ ।
ବାମ ଶବ୍ଦ ଅଟଇ ବିପତ୍ତି ବାଚକ
ନ ଅକ୍ଷର ପୁଣି ତାର ବିଚ୍ଛେଦ ବୋଧକ ।
ଏଥି ସକାଶୁ ବିପଦର ଯେ ବିନାଶକାରୀ
ବାମନ ବୋଲନ୍ତି ତାଙ୍କୁ ସର୍ବ ନରନାରୀ ।
ଏହିପରି ଶ୍ରୁତିଶାସ୍ତ୍ରେ ନାମର ବ୍ୟୁତ୍ପତ୍ତି
ନିରୂପିତ ହୋଇଅଛି ଆଗୋ ମହାସତୀ ।
ଯଶୋଦା ବୋଇଲେ ଦେବୀ ଅପୂର୍ବ ରହସ୍ୟ
ତୁମଠାରୁ ଶୁଣି ମୋର ମନ ହେଲା ତୋଷ ।

ତୁମ୍ଭେ ଅଟ ଶ୍ରୀହରିଙ୍କ ଅର୍ଦ୍ଧାଙ୍ଗ ସଙ୍ଗିନୀ
ପବିତ୍ର ହୋଇଲା ମହୀ ତୁମ୍ଭ ସ୍ପର୍ଶ ଘେନି ।
ବାସୁଦେବ ମାଧବ ଯେ ଗୋବିନ୍ଦ ମୁରାରି
ଏହାଙ୍କ ବ୍ୟୁତ୍ପତ୍ତି ମୋତେ କହ ଦୟାକରି ।
ରାଧିକା ବୋଇଲେ ବାସୁ ବିରାଟ ସ୍ୱରୂପ
ଯାହାଙ୍କ ଲୋମମୂଳରେ ଲୀନ ହୁଏ ବିଶ୍ୱ ।
ତାହାଙ୍କର ଦେବ ଯେଣୁ ଅଟନ୍ତି ଶ୍ରୀହରି
ତେଣୁ ବାସୁଦେବ ନାମ ଖ୍ୟାତ ତାହାଙ୍କରି ।
ଗଉ ଯେ ପୃଥିବୀ ତାକୁ ଲଭ ଯେ କରନ୍ତି
ଗୋବିନ୍ଦ ବୋଲି ହୋଇଲା ତାଙ୍କ ନାମ ଖ୍ୟାତି
ମୁରାରି ମାଧବ ଶବ୍ଦ ବ୍ୟୁତ୍ପତ୍ତି ପୂର୍ବରେ
କହିଛି ଯା ଥିବ ଏବେ ତୁମ୍ଭର ମନରେ ।
ବ୍ରହ୍ମା ଶିବ ଶେଷ ଆଦି ଦେବଙ୍କ ବନ୍ଦିତ
ବେଦ ପୁରାଣରେ ନୁହନ୍ତି ଯେ ନିରୂପିତ ।
ଯାହାଙ୍କର ଆଦିଅନ୍ତ ଦେବେ ଅଗୋଚର
ଲୋମକୂପେ ବିରାଜିତ ବ୍ରହ୍ମାଣ୍ଡର ମାଳ ।
ଅନାଦି ଅନନ୍ତ ପ୍ରଭୁ ଅଶେଷ ଅପାର
ସମୁଦ୍ର ଅକ୍ଷମ ଧୋଇବାକୁ ପାଦ ଯାର ।
ଏଥି ପରମ ବ୍ରହ୍ମମୟ ଶ୍ରୀକୃଷ୍ଣ ସ୍ୱରୂପ
ଧ୍ୟାନ କରିଣ ଛଡ଼ାଅ ସର୍ବବିଧ ପାପ ।
ଦଧି ଦୁଗ୍ଧ ନବନୀତ କରନ୍ତି ଯେ ଚୋରି
ଯାହାଙ୍କୁ କ୍ରୋଧରେ ବାନ୍ଧିଥିଲ ତୁମ୍ଭେ ଧରି ।
ସେହି ଦେବଙ୍କୁ ସର୍ବଦା କର ବସି ଧ୍ୟାନ
ଅଚିରେ ହୋଇବ ସର୍ବ ଦୁରିତ ଖଣ୍ଡନ ।
ଶ୍ରୀକୃଷ୍ଣ ସମ୍ବାଦ ମୋତେ କହିଲ ଯା ସତୀ
ଏଥି ଯେଣୁ ସନ୍ତୁଷ୍ଟ ହୋଇଅଛି ମୋର ମତି ।
ଆନନ୍ଦରେ ତୁମ୍ଭଙ୍କୁ ମୁଁ ଦେବି ଏବେ ବର
ଯାହା ଇଚ୍ଛା ହେଉଅଛି ପ୍ରକାଶ ସତ୍ୱର ।
ଯଶୋଦା ବୋଇଲେ ଦେବୀ ଶ୍ରୀହରିଙ୍କଠାରେ
ନିଶ୍ଚଳ ଭକତି ରହିଥାଉ ନିରନ୍ତରେ ।
ଆବର ଦାସତ୍ୱ ପ୍ରାପ୍ତି ହେଉ ଅନ୍ତକାଳେ
ନପଡ଼ିବ ଯେସନ୍ତେ ଆଉ ଭବସିନ୍ଧୁ ଜଳେ ।
ଆଗୋ ମହାସତୀ ତୁମ୍ଭେ କିଏ ଅଟ ମୋତେ
କହ ତୁମ୍ଭ ନାମ ଅର୍ଥ ବ୍ୟୁତ୍ପତ୍ତି ସହିତେ ।
ରାଧିକା ବୋଇଲେ ମାଗିଅଛ ଯେଉଁ ବର
ସେହିକାଳେ ସବୁ ସିଦ୍ଧି ହୋଇବ ତୁମ୍ଭର ।

ରହିବ ଶ୍ରୀକୃଷ୍ଣଠାରେ ନିଶ୍ଚଳ ଭକତି
ସମୋଦର ବୃଷଭାନୁ ଏବେ ଶୁଣ ଦେଇ ମତି ।
ଶ୍ରୀକୃଷ୍ଣଙ୍କ ପ୍ରାଣପ୍ରିୟା ରାଧିକାଙ୍କ ମୂର୍ତ୍ତି
ରାୟାଣ ଗୃହରେ ଥିଲ ଛାୟାରୂପେ ରହି ।
ଶ୍ରୀକୃଷ୍ଣଙ୍କ ମାତୃଭେଦ ଅଟନ୍ତି ରାୟାଣ
ସେହାଙ୍କ ଅଂଶରେ ଜାତ ହୋଇଛନ୍ତି ଜାଣ ।
ର ଶବଦ ଅଟେ ମହାବିଷ୍ଣୁ ପ୍ରବୋଧକ
ଧା ଅକ୍ଷର ଯୋନି ଧାତ୍ରୀ ଅର୍ଥର ବାଚକ ।
ମହାବିଷ୍ଣୁଙ୍କ ଜନନୀ ହୋଇବାରୁ ମୂର୍ତ୍ତି
ରାଧା ବୋଲିକରି ନାମ ତୋର ଅଛି ହୋଇ ।
ଶ୍ରୀଦାମ ଶାପରେ ବୃଷଭାନୁ ଗୃହେ ଜାତ
ହୋଇଅଛି ଜାଣ ଆଗୋ ଶ୍ରୀକୃଷ୍ଣଙ୍କ ମାତ ।
ପିତୃଙ୍କ ମାନସୀ କନ୍ୟା କଳାବତୀ ସତୀ
ମୋହର ଜନନୀ ସେହି ବୋଲଉ ଅଛନ୍ତି ।
ଶ୍ରୀଦାମ ଶ୍ରୀକୃଷ୍ଣଙ୍କର ପାର୍ଷଦ ପ୍ରବର
ମୋତେ ଶାପଦେଲେ ପୂର୍ବେ କ୍ରୋଧବନ୍ତ ଘୋର
ସେ ସକାଶୁ ଶତେବର୍ଷ ହରିଙ୍କ ସଙ୍ଗରେ
ବିଚ୍ଛେଦ ଭୋଗ କରିବ ଏ ମର୍ତ୍ତ୍ୟଲୋକରେ ।
ସେ ଅନ୍ତରେ ଦେହ ତେଜି ଗୋଲୋକଭୁବନେ
ରହିବ ଶ୍ରୀକୃଷ୍ଣଙ୍କର ସଙ୍ଗେ ଅନୁକ୍ଷଣେ ।
ଶୁଣିଲ ତ ସବୁ କଥା ଏବେ ବ୍ରଜପୁରେ
ଯାଅ ଆଉ କ୍ଷଣେମାତ୍ର ନ ରହି ଏଠାରେ ।
ତୁମ୍ଭ ଦେନି ଧ୍ୟାନଭଙ୍ଗ ହେଉଛି ମୋହର
ସେ ସକାଶୁ ଯାଅ ଆଉ ବିଳମ୍ବ ନ କର ।
ଏମନ୍ତ କହି ରାଧିକା ମଉନ ହୋଇଲେ
ନନ୍ଦଙ୍କୁ ଦେନି ଯଶୋଦା ବ୍ରଜପୁରେ ଗଲେ ।
ଏହିଠାରେ ନନ୍ଦରାଣୀ ରାଧା ଦୁହିଙ୍କର
ଆଳାପ ସମାପ୍ତ ହେଲା ବୋଲେ ଷେଣସ୍ଥିର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକାଙ୍କର ଯଶୋଦାଙ୍କ ଆଗେ ବ୍ରହ୍ମତତ୍ତ୍ୱ କଥନେ ନାମ ଏକାଦଶୋତ୍ତରଶତତମୋଽଧ୍ୟାୟଃ ।



## ଦ୍ୱା ଦ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ପ୍ରଦ୍ୟୁମ୍ନଙ୍କର ଜନ୍ମ ଓ ଶମ୍ବରାସୁର ବଧ ବିବରଣ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଦ୍ୱାରକା ଭବନେ ରହି କୃଷ୍ଣ ହଳଧର ।
କଉତୁକ ସୁଖଭୋଗ କରି ନିତି ନିତି
ମହା ଆନନ୍ଦରେ ଶେଷ କଲେ ଦିନରାତି ।
ବସୁଦେବଙ୍କ ଆଜ୍ଞାରେ ଦେବ ନରହରି
ରୁକ୍ମିଣୀ ଦେବୀଙ୍କ ରତିଗୃହେ ବିଜେକରି ।
ଦେଖିଲେ ସେ ଗୃହ ନାନାରତ୍ନେ ବିଭୂଷିତ
ଶୋଭାରେ କରୁଛି ସ୍ୱର୍ଗପୁରକୁ ଲଜ୍ଜିତ ।
ଅମୂଲ୍ୟ ସ୍ୱର୍ଣ୍ଣ କଳଶ ଶୁକଳ ଚାମର
ରତ୍ନମୟ ଦରପଣ ଅଛଇ ଅପାର ।
ହେମ ପଲ୍ୟଙ୍କ ଉପରେ ରୁକ୍ମିଣୀ ସୁନ୍ଦରୀ
ଶୟନ କରିଅଛନ୍ତି ଲକ୍ଷ୍ମୀଦେବୀ ପରି ।
ଦେନି ଅଛନ୍ତି ଅଙ୍ଗରେ ନାନା ଅଳଙ୍କାର
ରତନ ପ୍ରତିମା ପରି ଦିଶନ୍ତି ସୁନ୍ଦର ।
ପତି ଆଗମନ ଜାଣି ଉଠି ତତକାଳେ
ପ୍ରଣାମ କଲେ ରୁକ୍ମିଣୀ ତାଙ୍କ ପାଦତଳେ ।
ଶୁଭକ୍ଷଣେ ଜାୟା-ପତି ଦୁହେଁ ଏକାନ୍ତରେ
କ୍ରୀଡ଼ାକଲେ ମନହେଉ କନ୍ଦର୍ପ ରସରେ ।
ନବ ଯଉବନବତୀ ରୁକ୍ମିଣୀ ସେକାଳେ
ସୁଖ ସମ୍ଭୋଗ ପାଇଣ ମୂର୍ଚ୍ଛିତା ହୋଇଲେ ।
ଶ୍ରୀକୃଷ୍ଣଙ୍କ ଔରସରେ ତାଙ୍କ ଗର୍ଭୁ ଜାତ
ହେଲେ କାମଦେବ ଜାଣ ଆହେ ତପୋବନ୍ତ ।
ଶିବ କୋପାନଳରେ ସେ ଭସ୍ମ ହୋଇଥିଲେ
ଏତେକାଳେ ଶ୍ରୀକୃଷ୍ଣଙ୍କ ଘରେ ଜନ୍ମିଲେ ।
ମାୟାବତୀ ନାମେ ଜାତ ହୋଇ ରତିଦେବୀ
ରହିଥିଲେ ସେ ଶମ୍ବର ଅସୁରକୁ ସେବି ।
କେତେଦିନ ପରେ ଦୁହିଙ୍କର ଭେଟହେଲା
ମହାସୁଖେ ସେହିଠାରେ କିଛିକାଳ ଗଲା ।

ଦିନେ ପ୍ରଦ୍ୟୁମ୍ନ ସଙ୍ଗରେ ଶମ୍ବର ଅସୁର
ଯୁଦ୍ଧକରି କ୍ଷଣକରେ ଗଲା ଯମପୁର ।
ତାହା ଦେଖି ଜାୟାପତି ଦୁହେଁ ତୋଷ ହେଲେ
ଦ୍ୱାରକାପୁରକୁ ଆସି ସୁଖରେ ରହିଲେ ।
ନାରଦ ବୋଇଲେ ଆହେ ମୁନିଗଣବର
ପ୍ରଦ୍ୟୁମ୍ନକୁ କରୁଁଫରେ ହରିଲା ଶମ୍ବର ।
ସେ କଥା ଶୁଣିବାପାଇଁ ହେଉଅଛୁ ମନ
ଆମୂଳ କରଣ କହ ଆହେ ତପୋଧନ ।
ତାହାଶୁଣି ନାରାୟଣ ବୋଇଲେ ସେ କଥା
କହୁଅଛୁ ମନଦେଇ ଶୁଣ ସରବଥା ।
ରୁକ୍ମିଣୀଙ୍କ ପୁତ୍ର ହେବା ଶୁଣି ଦୈତ୍ୟବୀର
ସାତଦିନ ପରେ ଆସି ଦ୍ୱାରକା ନଗର ।
ମାୟାବଳେ ଗୁପତରେ ବାଳକକୁ ଧରି
ଗଲା ଆକାଶ ମାର୍ଗରେ ଆପଣାର ପୁରୀ ।
ମାୟାବତୀଙ୍କ କୋଳରେ ଦେଇ ତାଙ୍କୁ ପୁଣି
ବୋଇଲା ଏ ଶିଶୁଟିକି ରଖ ଗୋ ତରୁଣୀ ।
ତାହା ଶୁଣି ମାୟାବତୀ ଅତି ଯତନରେ
ପାଳନା କରି ରଖିଲେ ପ୍ରଦ୍ୟୁମ୍ନଙ୍କୁ ଘରେ ।
କେତେଦିନ ଅନ୍ତେ ନିଜେ ଦେବୀ ସରସ୍ୱତୀ
ଉପସ୍ଥିତ ହେଲେ ଯହିଁ ଥିଲେ ମାୟାବତୀ ।
ଏକାନ୍ତ ସ୍ଥାନରେ ତାଙ୍କୁ କହିଲେ ବଚନ
ବୋଇଲେ ତୁମ୍ଭର ପତି ଶ୍ରୀକୃଷ୍ଣ ନନ୍ଦନ ।
ହର କ୍ରୋଧାଗ୍ନିରେ ପୂର୍ବେ ଭସ୍ମ ହୋଇଥିଲେ
ଏବେ ରୁକ୍ମିଣୀଦେବୀଙ୍କ ଗର୍ଭୁ ଜନ୍ମ ହେଲେ ।
ମାୟାରେ ଅସୁର ତାଙ୍କୁ ଆଣିଅଛି ହରି
ପୁତ୍ରରୂପରେ ଏହାଙ୍କୁ ନ ଭାବ ସୁନ୍ଦରୀ ।
ଏମନ୍ତ କହି ପ୍ରଦ୍ୟୁମ୍ନ ସମୀପକୁ ଗଲେ
କର୍ଣ୍ଣ ମୂଳରେ ତାହାଙ୍କୁ ଗୁପତେ କହିଲେ ।
ବୋଇଲେ ହେ ବତ୍ସ ତୁମ୍ଭେ ରୁକ୍ମିଣୀଙ୍କ ସୁତ
ହରଣ କରି ଏଠାକୁ ଆଣିଛି ଦଇତ ।
ଏ କାମିନୀ ପୂର୍ବେ ତୁମ୍ଭ ପତ୍ନୀ ହୋଇଥିଲେ
ଦଇବ ଯୋଗରେ ଆସି ଏଠାରେ ରହିଲେ ।
ତୁମ୍ଭବିନା ପ୍ରତିଦିନ କରନ୍ତି କ୍ରନ୍ଦନ
ଆନନ୍ଦରେ କର ଏବେ ଏହାଙ୍କୁ ଗ୍ରହଣ ।
ଏରୂପେ କହିଣ ଦେବୀ ବ୍ରହ୍ମଲୋକେ ଗଲେ
କାମ ରତି ଦୁହେଁ ପରସ୍ପରଙ୍କୁ ଚହ୍ନିଲେ ।

ସେହିଦିନଠାରୁ ନିତି ନିର୍ଜନ ସ୍ଥାନରେ
କ୍ରୀଡ଼ା କଲେ ଦୁହେଁ ସୁଖେ ହରଷ ମନରେ ।
ଏକଦିନେ ଦୈତ୍ୟରାଜ ଦେଖିଲା ଦେନହେଁ
ଏକାନ୍ତରେ ରତିରସେ ମାତିଛନ୍ତି ସ୍ନେହେ ।
ତାହା ଦେଖି କ୍ରୋଧଭରେ ଖଡ୍‌ଗ ଝମକାଇ
ବୋଇଲାରେ ଦୁରାଚାର କି କରୁଛୁ ତୁହି ।
ଆରେ ପୁଂଶ୍ଚଳୀ କାମୁକୀ କେତେ ଗର୍ବ ତୋର
ପୁତ୍ରକୁ ଘେନିଣ କ୍ରୀଡ଼ା କରୁ ନିରନ୍ତର ।
ଏମନ୍ତ ବୋଲି ପ୍ରଦ୍ୟୁମ୍ନ ମୁଣ୍ଡରେ ଖଡ଼ଗ
ପ୍ରହାରିଲା ମାନସରେ ବହି ମହାରାଗ ।
ବଜ୍ରଠାରୁ କଠିନ ତ ପ୍ରଦ୍ୟୁମ୍ନଙ୍କ ମୁଣ୍ଡ
ବାଜିବା ମାତ୍ରେ ସେ ଖଡ୍‌ଗ ହେଲା ଖଣ୍ଡ ଖଣ୍ଡ
ପୁଣି ଆନ ଖଣ୍ଡା ଧରି ସେ ଦୈତ୍ୟ ଶମ୍ବର
ରତିଙ୍କୁ ହାଣିବା ପାଇଁ ଧାଇଁଲା ସତ୍ୱର ।
ତାହା ଦେଖି କାମଦେବ ସହି ନ ପାରିଲେ
ଦୈତ୍ୟକୁ ଟେକିଣ ଷଣ୍ଡେଦୂରେ ଫିଙ୍ଗି ଦେଲେ
ସେ ଘାତରେ ପୀଡ଼ାପାଇ ସେ ରାକ୍ଷସ ବୀର
ଚେତନା ହରାଇ ଲୋଟି ପଡ଼ିଲା ମହୀର ।
କ୍ଷଣକ ଅନ୍ତରେ ପୁଣି ଉଠି କ୍ରୋଧଭରେ
ଶିବ ଦେଇଥିବା ଶୂଳ ବୁଲାଇଲା ଖରେ ।
ଶତସୂର୍ଯ୍ୟ ସମାନ ସେ ଉଗ୍ରଙ୍କର ଶୂଳ
କରିପାରେ ମୁହୂର୍ତ୍ତକେ ଶତ୍ରୁକୁ ନିର୍ମୂଳ ।
ତାହା ଜାଣି ପ୍ରଭଞ୍ଜନ କାମଦେବଙ୍କର
କର୍ଣ୍ଣରେ କହିଲେ ବତ୍ସ ଦୁର୍ଗାଙ୍କୁ ସୁମର ।
ଶୁଣି ମନମଥ ଦୁର୍ଗା ଦେବୀଙ୍କ ପାଦରେ
ମନଦେଇ ସୁମରଣା କଲେ ସେ କାଳରେ ।
ତ୍ରିଶୂଳ ପରାପ୍ରେ ଶିବଅସ୍ତ୍ର ଶୂନ୍ୟମାର୍ଗେ
ଚହଟି ପ୍ରଦ୍ୟୁମ୍ନ ପାଶେ ଧାଇଁଗଲା ବେଗେ ।
ମାତ୍ର ମହାମାୟାଙ୍କର ପ୍ରସାଦରେ ସେହି
ରହିଲା ତାଙ୍କ ଅଙ୍ଗରେ ମାଳାରୂପ ବହି ।
ସେ ଅନ୍ତେ ବ୍ରହ୍ମାସ୍ତ୍ର ପେଷି ଦେବ ମନମଥ
ଦେଖାଇଲେ ଶମ୍ବରକୁ ଯମପୁର ପଥ ।
ଦେବତାଏ ଆକାଶରେ ଯୁଦ୍ଧ ଦେଖୁଥିଲେ
ସାଧୁ ସାଧୁ କହି ଯେ ଯା ସ୍ଥାନେ ଚଳିଗଲେ ।
ରତିଙ୍କୁ ସଙ୍ଗରେ ଘେନି ଶ୍ରୀକୃଷ୍ଣ କୁମର
ପ୍ରବେଶ ହୋଇଲେ ଯାଇ ଦ୍ୱାରବତୀପୁର ।

ଏମନ ବଧୂଙ୍କୁ ପାଇଣ ରୁକ୍ମଣୀ ସେକାଳେ
ନାନାମତେ ଶୁଭ ମହୋତ୍ସବ କରାଇଲେ ।
ମାତଙ୍ଗୀ ଦେବୀଙ୍କୁ ପୂଜାକରି ତୋଷ ଚିତ୍ତେ
ବ୍ରାହ୍ମଣଙ୍କୁ ଧନରତ୍ନ ଦେଲେ ଅପ୍ରମିତେ ।
ଏଥିଅନ୍ତରେ ଶ୍ରୀକୃଷ୍ଣ କେତେଦିନ ପରେ
ସାତ କନ୍ୟାଙ୍କୁ ବିବାହ ହୋଇଲେ ସତ୍ୱରେ ।
କାଳିନ୍ଦୀ ଯେ ସତ୍ୟଭାମା ସତ୍ୟା ନାଗ୍ନଜିତୀ
ଲକ୍ଷଣା ଭଦ୍ରତେ ପୁଣି ଜାମ୍ବବତୀ ସତୀ ।
ଏହିପରି ସାତପତ୍ନୀ ରୁକ୍ମଣୀ ସଙ୍ଗରେ
ଅଷ୍ଟ ପାଟରାଣୀଙ୍କୁ ସେ ଭିନ୍ନଭିନ୍ନ ପୁରେ ।
ରଖାଇଣ ନିତ୍ୟେ ତାଙ୍କ ସଙ୍ଗେ କ୍ରୀଡ଼ାକରି
କ୍ଷଣେ ପରପ୍ରାୟ ସାରିଲେ ଦିବସ ଶର୍ବରୀ ।
ଏକ ଏକ ପତ୍ନୀଠାରୁ ଦଶ ଦଶ ସୁତ
ଗୋଟିଏ ଲେଖାରେ କନ୍ୟା ହୋଇଲେ ସମ୍ଭୂତ
ସେ ଅନ୍ତେ କେତେକ ଦିନ ପରେ ନରହରି
ନରକ ନାମେ ଦୈତ୍ୟଙ୍କୁ ରଣସ୍ଥଳେ ମାରି ।
ବଳବନ୍ତ ସୁରାସୁର ସଙ୍ଗେ ଯୁଦ୍ଧ କଲେ
ତାଙ୍କୁ ମଧ୍ୟ ଯମପୁରେ ଠିଆ କରାଇଲେ ।
ସେ ରାକ୍ଷସ ଷୋଳସସ୍ର ରାଜକନ୍ୟା ଆଣି
ବନ୍ଦି କରିଥିଲା ବଳେ ନୃପତିଙ୍କୁ ଜିଣି ।
ସେ କନ୍ୟାମାନେ ସମସ୍ତେ ଅଟନ୍ତି ସୁନ୍ଦରୀ
ସମାନ ନୋହିବେ ତାଙ୍କୁ ସ୍ୱର୍ଗ ଅପସରୀ ।
ସବୁରି ବୟସ ଥିଲା ଷୋହଳ ସତରି
ସଙ୍ଗେ ଭରିଥିଲେ ସ୍ୱର୍ଣ୍ଣ ରତ୍ନ ଅଳଙ୍କାରି ।
ଶ୍ରୀକୃଷ୍ଣଙ୍କ ରୂପ ଦେଖି ସେ କନ୍ୟା ସକଳ
ବିବାହ ହେବାକୁ ମନ କଲେ ତତକାଳ ।
ଶ୍ରୀକୃଷ୍ଣ ତାହାଙ୍କ ଚିତ୍ତ ଅଭିପ୍ରାୟ ଜାଣି
ଗ୍ରହଣ କଲେ ବିଧିରେ ସମସ୍ତଙ୍କ ପାଣି ।
ଶୁଭକ୍ଷଣରେ ତାହାଙ୍କ ସଙ୍ଗେ କ୍ରୀଡ଼ାକରି
ଜାତ କଲେ ଦଶ ଦଶପୁତ୍ର ପୂର୍ବପରି ।
ଆଉରି ଗୋଟିଏ ଲେଖେଁ କନ୍ୟା ଜାତ କଲେ
ଏହିପରି ଶ୍ରୀକୃଷ୍ଣଙ୍କ ବଂଶ ପ୍ରବର୍ତ୍ତିଲେ ।
ଦିନେ ତିନିକୋଟି ଶିଷ୍ୟ ସହିତରେ ଆସି
ମିଳିଲେ ଦ୍ୱାରକାପୁରେ ଦୁର୍ବାସା ମହର୍ଷି ।
ତାଙ୍କୁ ଦେଖି ବସୁଦେବ ଉଗ୍ରସେନ ବଳ
ଶ୍ରୀକୃଷ୍ଣ ଉଦ୍ଧବ ଆଦି ଆସି ତତକାଳ ।
ସୋଳ ଉପଚାରେ ଦେଇ ପାଦପୂଜା କଲେ
ସନ୍ତୁଷ୍ଟ ହୋଇଣ ମୁନି ଆଶିଷ ବନ୍ଧିଲେ ।
ସେ ଅନ୍ତରେ ରତ୍ନମୟ ଆସନରେ ବସି
କୁଶଳ ସମ୍ବାଦ ପଚାରିଲେ ହସି ହସି ।
ଆଦର କରି ମୁନିଙ୍କୁ ଚହିଁ ଉଗ୍ରସେନ
ଶିଷ୍ୟ ସହିତରେ ରଖାଇଲେ କେତେ ଦିନ ।
ଏକାନଂଶା ନାମେ ଏକ କନ୍ୟାକୁ ବିବାହି
କରାଇଲେ ରାଜା ତାଙ୍କ ସଙ୍ଗେ ବହି ସ୍ନେହ ।
ଏକଦିନେ ମୁନିବର ବିସ୍ମିତ ମନରେ
ଗଲେ କ୍ରମେ କ୍ରମେ ସବୁ ରମଣୀଙ୍କ ପୁରେ ।
ଦେଖିଲେ ପ୍ରତ୍ୟେକ ଗୃହେ ଅଛନ୍ତି ଶ୍ରୀହରି
ଏବେ ମାୟାବଳେ ଶତ ଶତରୂପ ଧରି ।
କେଉଁଠାରେ ଦେଖିଲେ ସେ ସମାନ ମୂରତି
କେବଣ ଗୃହରେ ବସି ଭୋଜନ କରନ୍ତି ।
କେଉଁଠାରେ ଶୋଇଛନ୍ତି ରତ୍ନ ପଲ୍ୟଙ୍କରେ
ପୁରାଣ ଶୁଣୁଅଛନ୍ତି କେବଣ ଗୃହରେ ।
କେଉଁଠାରେ ଉତ୍ସବରେ ଦେଇଛନ୍ତି ଯୋଗ
କେଉଁଠାରେ କରୁଛନ୍ତି ସୁଖସ୍ୱପ୍ନ ତ୍ୟାଗ ।
ସବୁ ସ୍ଥାନରେ ସମାନ ସମ୍ଭାଷଣ କରି
ମୁନିଙ୍କ ମନକୁ ପ୍ରଭୁ ଘେନିଗଲେ ହରି ।
ବିଷ୍ଣୁ ମାୟାରେ ଚକିତ ହୋଇ ମୁନିବର
ମନେ ମନେ କିଛି କରି ନ ପାରିଲେ ସ୍ଥିର ।
ସେ ସକାଶୁ ରୁକ୍ମଣୀଙ୍କ ମନ୍ଦିରରେ ବସି
ସ୍ତୁତି କଲେ ଶିରେ ବେନି କରକୁ ନିବେଶି ।
ବୋଇଲେ ନମସ୍ତେ ଦେବ ଦେବ ଜଗନ୍ନାଥ
ଜୟ ଜୟ ଜନାର୍ଦ୍ଦନ ଲକ୍ଷ୍ମୀଦେବୀ କାନ୍ତ ।
ସର୍ବେଶ୍ୱର ସର୍ବବୀଜ ନିତ୍ୟ ନିରାକାର
ଭକତ ବତ୍ସଳ ସତ୍ୟ ସ୍ୱରୂପ ସୁନ୍ଦର ।
ବ୍ରହ୍ମା ଶିବ ଶେଷଦେବ ବନ୍ଦିତ ଚରଣ
ବ୍ରହ୍ମଜ୍ୟୋତି ପରମାତ୍ମା ନିତ୍ୟ ସନାତନ ।
ତୁମ୍ଭ ପାଦ କମଳରେ ରହୁ ମୋର ମତି
ନମସ୍ତେ ନମସ୍ତେ ପ୍ରଭୁ ଅଗତିର ଗତି ।
ଏହିରୂପେ ସ୍ତୁତିକରି ସେ ଦୁର୍ବାସା ମୁନି
ବସିଲେ ଶ୍ରୀକୃଷ୍ଣଙ୍କର ଅନୁମତି ଘେନି ।
ଶ୍ରୀକୃଷ୍ଣ ବୋଇଲେ ଭୟ ଛାଡ଼ ମୁନିବର
ଶିବଙ୍କ ଅଂଶରେ ଜନ୍ମ ଅଟ ତ ତୁମ୍ଭର ।

ଜ୍ଞାନୀଜନଙ୍କ ମଧ୍ୟରେ ପୂଜ୍ୟ ଅଟ ତୁମ୍ଭେ
ମନଦେଇ ଶୁଣ ଯାହା କହୁଅଛୁ ଆମ୍ଭେ ।
ଅଶେଷ ବ୍ରହ୍ମାଣ୍ଡ ଅଟେ ମୋହଠାରୁ ଜାତ
ସକଳ ରୂପରେ ମୁହିଁ ଆତ୍ମାରୂପେ ସ୍ଥିତ ।
ଯାହାର ଦେହକୁ ଛାଡ଼ିଯାଏ ମୁଁ ପଳାଇ
ତା ଦେହରେ ବଳବୀର୍ଯ୍ୟ ରହି ନ ପାରଇ ।
ଜଗତରେ ମୁଁ ଏକହୋଇ ପୃଥକ ଭାବରେ
ରହିଅଛୁ ମାତ୍ର ଭିନ୍ନ ଭିନ୍ନ ବ୍ୟକ୍ତିଠାରେ ।
ସକଳ ଦେବ ପ୍ରତିମା ଦେହରେଟି ମୁହିଁ
ପୂଜା ସମୟରେ ନିଜେ ବନ୍ଦନ କରୁଥାଇଁ ।
ପରିପୂର୍ଣ୍ଣ ଅଟେ ମୁହିଁ ଗୋଲୋକ ଭବନେ
ରାଧିକା ରହନ୍ତି ସଦା ମୋର ସନ୍ନିଧାନେ ।
ଶ୍ରୀଦାମ ଶାପରେ ଏବେ ମୋହଠାରୁ ଭିନ୍ନ
ହୋଇ ଅଛନ୍ତି ସେ ଦେଖ ବୋଲଜନେ ଜାଣ ।
ରୁକ୍ମିଣୀ ଆଦି କେତେକ ମୋହର କାମିନୀ
ସମସ୍ତେ ଜନମିଛନ୍ତି ରାଧାଅଂଶ ଘେନି ।
ଏମନ୍ତ କହି ଶ୍ରୀକୃଷ୍ଣ ଅନ୍ତଃପୁରେ ଗଲେ
ଦୁର୍ବାସା ମୁନି ସେଠାରୁ ଫେରିଣ ଆସିଲେ ।
କହଇ କ୍ଷେତ୍ରମୋହନ ଆହେ ଭଗବାନ
ଦୟାବହି କର ମୋର ଦୁରିତ ଖଣ୍ଡନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ପ୍ରଦ୍ୟୁମ୍ନଙ୍କର ଜନ୍ମ ଓ ଶମ୍ବରାସୁର ବଧ ବିବରଣ କଥନେ ନାମ ଦ୍ୱାଦଶୋତ୍ତରଶତତମୋଽଧ୍ୟାୟଃ ।

—ঃ—ঃ—❋—ঃ—ঃ—

## ତ୍ରୟୋଦଶୋତ୍ତରଶତତମ ଅଧ୍ୟାୟ

## ଦୁର୍ବାସାଙ୍କ ପ୍ରତି ପାର୍ବତୀ ଦେବୀଙ୍କର ଉପଦେଶ ଓ ଦୁର୍ବାସାଙ୍କର ପୁନର୍ଦ୍ୱାରକା ଗମନ ଏବଂ ସୂର୍ଯ୍ୟଙ୍କଠାରୁ ଶାମ୍ବର ବରପ୍ରାପ୍ତି

ଏଥୁ ଅନ୍ତରେ ଦୁର୍ବାସା ଋଷିକୁଳ ସାଇଁ
ଏକାନଂଶା ସହିତରେ କେତେ ଦିନ ରହିଁ ।
କାମକ୍ରୀଡ଼ା କଉତୁକେ ନିରନ୍ତରେ ମାତି
କ୍ଷଣେ ପରି ଅତିକ୍ରମ କଲେ ଦିନରାତି ।
କେତେ କାଳପରେ ମୁନି ଭାବ ଆଶ୍ରେକରି
ଗଲେଯାକୁ ଛାଡ଼ିଗଲେ କଇଳାସ ପୁରୀ ।
ଶିବ ପାର୍ବତୀଙ୍କ ପାଦ ଧରିଣ ନମିଲେ
ଆପଣା ଚରିତ ତାଙ୍କ ଆଗରେ କହିଲେ ।
ଆବର ଶ୍ରୀକୃଷ୍ଣଙ୍କର ସକଳ ବୃତ୍ତାନ୍ତ
କହିଲେ ମଧ୍ୟ ସେକାଳେ କରି ଆଦ୍ୟପ୍ରାନ୍ତ ।
ସେ ସମସ୍ତ କଥା ଶୁଣି ପର୍ବତ ନନ୍ଦିନୀ
ବୋଇଲେ ମୋଠାରୁ ଶୁଣ ହେ ଦୁର୍ବାସା ମୁନି
ନ ବୁଝିଣ ଆଗ ତୁମ୍ଭେ ଧର୍ମର ତତ୍ତ୍ୱକୁ
ଧାର୍ମିକ ବୋଲି ବିଖ୍ୟାତ କରୁଛ ନିଜକୁ ।
ଅନପତ୍ୟା ହୋଇଥାଏ ଯେ କୁଳ ଯୁବତୀ
ତାକୁ ଦୂର କରିବାକୁ ନୁହେଁ ସାଧୁ ରୀତି ।
ବ୍ରହ୍ମଚାରୀ ହେଉ ଅବା ହେଉ ସେ ସନ୍ନ୍ୟାସୀ
ନୋହିଲେ ହେଉ ସର୍ବଦା ପୁଣ୍ୟତୀର୍ଥବାସୀ ।
ତାଦୃଶ ଲୋକର କେବେ ମୁକତି ନୁହଇ
ବେଦ ଶାସ୍ତ୍ରରେ ଏରୂପେ ଲେଖାଅଛି ହୋଇ
ଯେ ସକାଶୁ ତୁମ୍ଭେ ଏବେ ମୋର ବୋଲକରି
ଫେରିଯାଅ ଏଠାରୁ ଦ୍ୱାରକା ନଗରୀ ।
ଏକାନଂଶା କନ୍ୟା ଅଟେ ମୋ ଅଂଶରେ ଜାତ
ତାହାକୁ ପାଳନା କର ଧର୍ମେ ଦେଇ ଚିତ୍ତ ।
ଶ୍ରୀକୃଷ୍ଣଙ୍କ ଚରଣରେ ଭକ୍ତି ରଖିଥାଅ
କଲ୍ୟାଣ ହୋଇବ ଏଥି ନ କର ସନ୍ଦେହ ।
ତୁମ୍ଭେ ଯେ ଶ୍ରୀକୃଷ୍ଣଙ୍କର ଧର୍ମପଥକୁ ତେଜି
ଅନ୍ୟଠାକୁ ଯିବାପାଇଁ ବସିଅଛ ହେଜି ।
ଏଥୁ ବଳି ଅବିଚାର ଅଛି କି ଜଗତେ
ସୁଧା ଛାଡ଼ି ବିଷ ଲୋଡ଼ୁଅଛ ମହାମତେ ।
ବାଲ୍ୟରେ ବା ଯଉବନେ ବୃଦ୍ଧ ସମୟରେ
ଯେ ମନ ଦେବ ସର୍ବଦା ଶ୍ରୀକୃଷ୍ଣଙ୍କଠାରେ ।

ତାହାର ସକଳ ପାପ ହେବ ଭସ୍ମସାତ
ଅନ୍ତକାଳେ ସ୍ୱର୍ଗଲୋକ ହୋଇବ ପ୍ରାପତ ।
ପୁଣ୍ୟଭୂମି ଭାରତରେ କୃଷ୍ଣଙ୍କୁ ଦର୍ଶନ
କରିବା ମାତ୍ରେ ପବିତ୍ର ହୁଏ ଅପଘନ ।
ଯଜ୍ଞଦାନ ତପସ୍ୟାରେ ଯେଉଁ ଫଳ ହୁଏ
କୃଷ୍ଣଭକ୍ତର କଳାଏ ସମାନ ସେ ନୁହେଁ ।
ବ୍ରାହ୍ମଣ ହୋଇ ଯେ କୃଷ୍ଣ ଭଜନ୍ତି ନ କରେ
ସମାନ ଅଟଇ ସେହୁ ଚଣ୍ଡାଳ ସଙ୍ଗରେ ।
ନିତ୍ୟରେ ଶ୍ରୀକୃଷ୍ଣ ସେବାକରେ ଯେ ବ୍ରାହ୍ମଣ
କରୁଥିବ ତାହାଙ୍କର ପ୍ରସାଦ ସେବନ ।
ସେହି ଦ୍ୱିଜ ଜଗତକୁ କରିବାକୁ ପୂତ
ସମର୍ଥ ଅଟଇ ବୋଲି ଘେନଥାଅ ଚିତ୍ତ ।
ଏରୂପେ ପାର୍ବତୀଙ୍କର ବଚନକୁ ଶୁଣି
ପ୍ରେମଭରେ ସଦାଶିବ ଉଠି ସେହିକ୍ଷଣି ।
ପାର୍ବତୀଙ୍କୁ ନାନାରୂପେ ପ୍ରଶଂସା କଲେ
ଯଥାର୍ଥ କହିଲ ବୋଲି ସେକାଳେ ବୋଇଲେ
ଶିବ ପାର୍ବତୀଙ୍କ ପାଦେ କରି ନମସ୍କାର
ଲେଉଟିଗଲେ ଦ୍ୱାରକା ପୁରେ ମୁନିବର ।
ଶ୍ରୀକୃଷ୍ଣଙ୍କୁ ଅନୁକ୍ଷଣେ ସୁମରଣା କରି
ରହିଲେ ସେ ଏକାନଂଶା କାମିନୀକୁ ଧରି ।
ଯୁଧିଷ୍ଠିର ନୃପଙ୍କର ଆମନ୍ତ୍ରଣ ପାଇ
ହସ୍ତିନାପୁରକୁ ଯାଇ ରୁକ୍ମିଣୀଙ୍କ ସାଇଁ ।
କୁନ୍ତୀଙ୍କ ସଙ୍ଗରେ ବସି ସମ୍ଭାଷଣା କଲେ
ସେ ଅନ୍ତେ ଯାଇ ବନ୍ଧୁଙ୍କ ପାଶରେ ମିଳିଲେ
ତାଙ୍କ ସଙ୍ଗେ ଆନନ୍ଦରେ କଥାବାର୍ତ୍ତା ହୋଇ
ମଧୁର ବଚନେ ତାଙ୍କ ମନ ଦେଲେ ମୋହି
ଉପାୟରେ ଜରାସନ୍ଧ ରାକ୍ଷସର ପ୍ରାଣ
ଭେଟାଇଣ ଦେଲେ ନେଇ ଜମଙ୍କର ସ୍ଥାନ ।
ରାଜସୂୟ ଯାଗକାଳେ ବହୁତ ଦକ୍ଷିଣା
ଦିଆଇଲେ ଯୁଧିଷ୍ଠିର ହସ୍ତେ ମହାମନା ।
ସେ ସମୟେ ଶିଶୁପାଳ ଦୁଷ୍ଟପଣ କରି
ବହୁତ ଭର୍ତ୍ସନା ତାଙ୍କୁ କଲା ନ ବିଚାରି ।
ସେ ସକାଶୁ ଦନ୍ତବକ୍ର ସହିତେ ତାହାକୁ
ବିନାଶ କଲେ ସେଠାରେ ପ୍ରହାରି ଚକ୍ରକୁ ।
ଶିଶୁପାଳ ଆତ୍ମା ଧାଇ ଗୋଲୋକେ ମିଳିଲା
ସେଠାରେ କୃଷ୍ଣଙ୍କୁ ଖୋଜ ଦେଖି ନ ପାରିଲା
ବାହୁଡ଼ି ହସ୍ତିନାପୁରେ ହୋଇ ଉପସ୍ଥିତ
ଶ୍ରୀକୃଷ୍ଣଙ୍କୁ ରହିଁ ସ୍ତୁତି କଲା ଅପ୍ରମିତ ।
ବୋଇଲା ହେ ପ୍ରଭୁ ଦେବ ଦେବାଙ୍କ କରତା
ସୁରାସୁର ନରଙ୍କର ଅଟ ତୁମ୍ଭେ ଧାତା ।
ସ୍ୱମାୟାରେ ବ୍ରହ୍ମା ବିଷ୍ଣୁ ଶିବରୂପ ଧରି
ପ୍ରକାଶିତ ହୋଇଅଛ ସ୍ୱୟଂ ନରହରି ।
ମନୁ ମୁନି ଦିଗପାଳ ଗ୍ରହଆଦି ଯେତେ
ତୁମ୍ଭ କଳାରେ ଜନମି ଅଛନ୍ତି ସମସ୍ତେ ।
ପୁରୁଷ ସ୍ତ୍ରୀ ନପୁଂସକ ରୂପ ବହି ତୁମ୍ଭେ
ବିସ୍ତାର କରିଛ ମାୟାଜାଲ ଏହି ଭବେ ।
ଯନ୍ତ୍ର ସ୍ୱରୂପ ଅଟଇ ନିଖିଳ ଜଗତ
ଯନ୍ତ୍ରୀ ହୋଇ ତୁମ୍ଭେ ରହିଅଛ ଜଗନ୍ନାଥ ।
ସ୍ୱଭାବରେ ମୂଢ଼ ମୁହିଁ ଅଧମ ପାମର
ଦୟାବହି ମୋର ସବୁ ଦୋଷ କ୍ଷମାକର ।
ଏହିପରି ଶିଶୁପାଳ ସ୍ତୁତିବାକ୍ୟ ଶୁଣି
ବିସ୍ମିତ ହୋଇଣ ସଭାସ୍ଥିତ ଲୋକଶ୍ରେଣୀ ।
ସାକ୍ଷାତେ ଈଶ୍ୱର ବୋଲି ଜାଣି ଶ୍ରୀକୃଷ୍ଣଙ୍କୁ
ଧ୍ୟାନ କଲେ ତାହାଙ୍କର ଚରଣ ପଦ୍ମକୁ ।
ଏଥୁଅନ୍ତେ ଯୁଧିଷ୍ଠିର ଯାଗ ଶେଷକରି
ବହୁ ଧନରତ୍ନ ଦେଲେ ଦ୍ୱିଜଙ୍କୁ ହକାରି ।
କେତେଦିନ ପରେ ଦୁର୍ଯ୍ୟୋଧନର ସହିତେ
ଯୁଧିଷ୍ଠିରଙ୍କର ଯୁଦ୍ଧହେଲା ଅକସ୍ମାତେ ।
ସେ ଯୁଦ୍ଧରେ ପାଣ୍ଡବଙ୍କ ପକ୍ଷେ କୃଷ୍ଣ ରହି
କୌରବଙ୍କୁ ଦେଲେ ରଣ-ଅନଳରେ ଦହି ।
ସେ ଅନ୍ତେ ଦ୍ୱାରକାପୁରେ ରହି କେତେକାଳ
ଦୁଷ୍ଟଲୋକଙ୍କୁ ସଂହାର କରେ ଆଦିମୂଳ ।
ସୁଦାମା ନାମେ ଦରିଦ୍ର ବ୍ରାହ୍ମଣେକ ଥିଲା
ଶ୍ରୀକୃଷ୍ଣଙ୍କ ପାଶେ ଆସି ଦୁଃଖ ଜଣାଇଲା ।
ବାଲ୍ୟକାଳେ ବିଦ୍ୟାଶିକ୍ଷା ସମୟରେ ସେହି
ଶ୍ରୀକୃଷ୍ଣଙ୍କର ହୋଇ ତ ଥିଲେ ସହାଧ୍ୟାୟୀ ।
ସୁମରଣା କରି ତାହା ପ୍ରଭୁ ନରହରି
ବିପୁଳ ଐଶ୍ୱର୍ଯ୍ୟ ତାଙ୍କୁ ଦେଲେ ଦୟାକରି ।
ଆଉରି ନିଶ୍ଚଳ ଭକ୍ତି ଦାସତ୍ୱକୁ ଦେଇ
ଦେହଅନ୍ତେ ଗୋଲୋକରେ ରଖାଇଲେ ନେଇ
ସ୍ୱର୍ଗପୁର ପାରିଜାତ ପୁଷ୍ପ ଧରି ଆଣି
ସତ୍ୟାଙ୍କୁ ପୁଣ୍ୟକବ୍ରତ କରାଇଲେ ପୁଣି ।

ସତ୍ୟଭାମା ଆଦି ଯେତେ ଅନ୍ତଃପୁର ସ୍ତ୍ରୀ
ସୌଭାଗ୍ୟ ସମ୍ପଦ ବଢ଼ାଇଲେ ସବୁଙ୍କର ।
ଦେବତା ବିପ୍ର ବୈଷ୍ଣବ ଅତିଥି ପୂଜନ
ଯଥାର୍ଥ ପ୍ରକାରେ ନିତ୍ୟ କଲେ ସମ୍ପାଦନ ।
ପରମ ଆଧ୍ୟାତ୍ମ୍ୟ ଜ୍ଞାନ ଉଦ୍ଧବଙ୍କୁ ଦେଲେ
ଅର୍ଜୁନ ଆଗରେ ବ୍ରହ୍ମତତ୍ତ୍ୱ ପ୍ରକାଶିଲେ ।
ପାର୍ବତୀ ସନ୍ତୋଷ ଅର୍ଥେ ଦେବୀ ବ୍ରତ କରି
ବ୍ରାହ୍ମଣ ଭୋଜନ କରାଇଲେ ପୂର୍ବପରି ।
ରୈବତଙ୍କ ପର୍ବତର କନ୍ଦର ଭିତରେ
ଗଣେଶଙ୍କୁ ପୂଜାକଲେ ନାନା ଉପଚାରେ ।
ଲଡ଼୍ଡୁକ ତିଳ ମୋଦକ ପଞ୍ଚଲକ୍ଷ ଦେଲେ
ଭକ୍ତିରେ ସେ ମନ୍ତ୍ରି ସେହୁ ପୂଜା କରାଇଲେ ।
ପକ୍ୱ ରମ୍ଭା ଫଳ ଦଶଲକ୍ଷ ପୂଜା କରି
ଘୃତ ପକ୍ୱ ଦ୍ରବ୍ୟ କେତେ ପୂଜିଲେ ସେପରି ।

ସହସ୍ର ସଂଖ୍ୟକ ଯାଗଯଜ୍ଞ କରାଇଲେ
ବ୍ରାହ୍ମଣଙ୍କୁ ଉପଯୁକ୍ତ ଦକ୍ଷିଣା ସେ ଦେଲେ ।
କୁଷ୍ଠରୋଗ ହୋଇବାରୁ ଶାମ୍ବର ଦେହରେ
ସୂର୍ଯ୍ୟ ପୂଜା କରାଇଲେ ତାଙ୍କର ହସ୍ତରେ ।
ଭାରତେ ପବିତ୍ର କ୍ଷେତ୍ର କଳିଙ୍ଗ ଦେଶରେ
କୋଣାର୍କରେ ଅର୍କ ପୂଜା ମହୋଦଧି ତୀରେ ।
ବର୍ଷେ ପର୍ଯ୍ୟନ୍ତ ବିଧିମତେ ପୂଜା କରି
ସ୍ତୋତ୍ର ପାଠ କଲେ ଶାମ୍ବ ଭକ୍ତିଭାବ ଧରି ।
ସେ ସକାଶୁ ସୂର୍ଯ୍ୟଦେବ ପ୍ରସନ୍ନ ହୋଇଲେ
ରୋଗମୁକ୍ତ କରି ତାଙ୍କୁ ବର ଦେଇଗଲେ ।
ଏରୂପେ ଶ୍ରୀକୃଷ୍ଣ ଶୁଭକର୍ମ କଲେ ଯେତେ
ସଂଖ୍ୟା କରି ନ ହେବ ତା ବୋଲି ଏତେ ଏତେ
ଆହେ କରୁଣା ସାଗର ଦେବ ନାରାୟଣ
କ୍ଷେତ୍ର ମୋହନଙ୍କୁ ପାଦେ ଦିଅନ୍ତୁ ଶରଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଦୁର୍ବାସାଙ୍କ ପ୍ରତି ପାର୍ବତୀ ଦେବୀଙ୍କର ଉପଦେଶ ଓ ଦୁର୍ବାସାଙ୍କର ପୁନର୍ଦ୍ୱାରକା ଗମନ ଏବଂ ସୂର୍ଯ୍ୟଙ୍କଠାରୁ ଶାମ୍ବର ବରପ୍ରାପ୍ତି କଥନ ନାମ ତ୍ରୟୋଦଶୋତ୍ତରଶତତମୋଽଧ୍ୟାୟଃ ।



## ଚତୁର୍ଦ୍ଦଶୋତ୍ତରଶତତମ ଅଧ୍ୟାୟ

## ଅନିରୁଦ୍ଧ ଓ ଉଷାଙ୍କର ସ୍ୱପ୍ନ ଦର୍ଶନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ପ୍ରଦ୍ୟୁମ୍ନ ନାମକ ଯେଉଁ ଶ୍ରୀକୃଷ୍ଣ କୁମାର ।
ଅନିରୁଦ୍ଧ ନାମେ ତାହାଙ୍କର ପୁତ୍ର ହେଲେ
ରୂପ ଗୁଣେ ସରି ନ ଥିଲା କେ ତାଙ୍କ ତୁଲେ ।
ଏକଦିନେ ଅର୍ଦ୍ଧରାତ୍ର ସମୟରେ ସେହି
ଦେଖିଲେ ଅଦ୍ଭୁତ ସ୍ୱପ୍ନ ଆହେ ଋଷିସାଇଁ ।
ସୁରମ୍ୟ ଉଦ୍ୟାନ ମଧ୍ୟେ ସ୍ୱର୍ଣ୍ଣ ପଲଙ୍କରେ
ସୁକୋମଳ ରତିଯୋଗ୍ୟ ତଳପ ଉପରେ ।
ନବ ଯଉବନବତୀ ଯୁବତୀ ଗୋଟିଏ
ଶୟନ କରିଣ ଶୋଭାପାଏ ଅତିଶୟେ ।
ଅମୂଲ୍ୟ ରତ୍ନ ନିର୍ମିତ ବିବିଧ ଭୂଷଣ
ଭରିଛନ୍ତି ଅଙ୍ଗଦେଶେ ସେ କାମିନୀ ପୁଣ ।
ବହ୍ନି ଶୁଦ୍ଧ ସୁରଞ୍ଜିତ ବସ୍ତ୍ର ପିନ୍ଧିବାରୁ
କୁସୁମିତ ଲତାପରି ଦିଶୁଅଛି ଚାରୁ ।

ପକ୍ୱ ବିମ୍ବ ତୁଲ୍ୟ ଅଟେ ବେନି ଓଷ୍ଠ ତାର
କୁନ୍ଦ ପୁଷ୍ପପରି ଦନ୍ତ ଦିଶଇ ସୁନ୍ଦର ।
ଶରତ ପଙ୍କଜ ପତ୍ର ସଦୃଶ ଲୋଚନ
କଦଳୀ ସ୍ତମ୍ଭକୁ ନିନ୍ଦା କରଇ ଜଘନ ।
ଦାଡ଼ିମ୍ବ ଫଳ ସଦୃଶେ ତାର ସ୍ତନଯୁଗ
ଦେଖିଲେ ପାଇବ ମୁନି ମାନସ ଉଦ୍‌ବେଗ ।
ତାକୁ ଦେଖି ଅନିରୁଦ୍ଧ କାମପୀଡ଼ା ପାଇ
ପଚାରିଲେ ସେ କାଳରେ ସମୀପକୁ ଯାଇ ।
ବୋଇଲେ କିଏ ସେ ତୁମ୍ଭେ ଅଟ ଗୋ ସୁନ୍ଦରୀ
ଦେବତା ଗନ୍ଧର୍ବୀ ଅବା ସ୍ୱର୍ଗ ଅପସରୀ ।
ଏକାକିନୀ ହୋଇ କିପାଁ ଆସିଛ ଏଠାକୁ
କହ କିବା ଖୋଜୁଅଛ କେଉଁ ପୁରୁଷକୁ ।
ମୁଁ ଅଟଇ ଶ୍ରୀକୃଷ୍ଣଙ୍କ ପୁତ୍ରର କୁମର
ଅନିରୁଦ୍ଧ ବୋଲି ନାମ ଅଟଇ ମୋହର ।

ଅନ୍ୟ ସ୍ତ୍ରୀ ପରିଗ୍ରହ କରନାହିଁ ମୁହିଁ
ତୁମ୍ଭଙ୍କୁ ଦେଖିଣ କାମେ ହୋଇଲିଣି ବାଇ ।
ଇଚ୍ଛା ଅଛି ଯେବେ ମୋତେ ଭଜ ପ୍ରାଣବର
ପୂର୍ଣ୍ଣ କରିବି ସକଳ କାମନା ତୁମ୍ଭର ।
କନ୍ଦର୍ପ ବୀର୍ଯ୍ୟରେ ମୁହିଁ ରତିଗର୍ଭୁଁ ଜାତ
ହୋଇଅଛି ପୁଣି ସ୍ଥିର ଯୌବନରେ ମତ୍ତ ।
ତୁମ୍ଭେ ଯେ ଚଞ୍ଚଳ ସ୍ତ୍ରୀ ସୁସ୍ଥିର ଯୌବନା
ବରଣ କର ଗୋ ମୋତେ ନ ହୋଇ ବିମନା
ଏହିରୂପେ ଅନିରୁଦ୍ଧ ବଚନକୁ ଶୁଣି
ମସ୍ତକ ପୋତି କହିଲା ସେ ତରୁଣୀମଣି ।
ବୋଇଲା ତୁମ୍ଭେ ତ ଅଟ କନ୍ଦର୍ପ ତନୟ
ହେଲାଣିତ ଏବେ ଆସି ବିବାହ ସମୟ ।
ତ୍ରୈଲୋକ୍ୟ ପତି ଶ୍ରୀକୃଷ୍ଣ ତୁମ୍ଭ ପିତାମହ
ଆଜଯାଏ କପାଁ କରି ନାହାନ୍ତି ବିବାହ ।
ସୁଖଭୋଗ୍ୟା ଅଟେ ଯିନା ବିବାହିତା ସ୍ତ୍ରୀ
ପରକାମିନୀ କଦାପି ନୁହେ ତାହାପରି ।
ଉତ୍ତମ ପୁରୁଷ ଯେହୁ ବିବାହ ନ କଲେ
କାମିନୀର ସଙ୍ଗ ଇଚ୍ଛା ନ କରଇ ଭଲେ ।
ବଳାତ୍କାରେ ଅବା କାହିଁ ଗୁପତ ଭାବରେ
ଯେଉଁ ଲୋକ ପରସ୍ତ୍ରୀ ଆଣି ଭୋଗକରେ
ଦେହ ଅନ୍ତେ ନରକରେ ପଡ଼ଇଟି ସେହି
ଆହେ କାମୁକ ଏ କଥା ନିଶ୍ଚୟ ଅଟଇ ।
ତୁମ୍ଭେ ଯେବେ ମୋତେ ପାଇବାକୁ ଇଚ୍ଛାକର
ମୁଁ ଯାହା କହୁଛି ସେହି ପ୍ରକାରେ ଆଚର ।
ସ୍ୱଭାବେ କନ୍ୟକା ମୁହିଁ ପିତୃ ସୁରକ୍ଷିତା
ବରି ନ ପାରଇ ସ୍ୱଇଚ୍ଛାରେ ପତିଚେନ୍ତ ।
ବାଲ୍ୟ ସମୟରେ ପିତା ଯୌବନରେ ପତି
ସ୍ଥବିର କାଳରେ ପୁତ୍ର ପାଳନ କରନ୍ତି ।
ଏହିପରି ଅଟେ ସ୍ତ୍ରୀ ଜାତିର ନିୟମ
ଅସ୍ୱତନ୍ତ୍ରା ସବୁବେଳେ ଅଟଇ ସେ ଜାଣ ।
ମୁହିଁ ବାଣ କନ୍ୟା ମୋର ନାମ ଅଟେ ଉଷା
ଦେଖୁଅଛି କୁତୁହଳେ ବନପୁଷ୍ପ ଭୂଷା ।
ତୁମ୍ଭେ ନିଶ୍ଚେ ଅଟ ମୋର ଅନୁରୂପ ବର
ଇଚ୍ଛା ଥିଲେ ମୋ ପିତାଙ୍କୁ ଯାଇଣ ପଚାର ।
ଏମନ୍ତ ବୋଲି ସେ କନ୍ୟା ଅନ୍ତର୍ଦ୍ଧାନ ହେଲା
ଅନିରୁଦ୍ଧଙ୍କର ଏଣେ ନିଦ୍ରା ଭାଙ୍ଗିଗଲା ।

ସ୍ୱପନ କଥାକୁ ସତ ବୋଲି ସେ ବିଚାରି
ବ୍ୟାକୁଳ ହୋଇଲେ କାମଶରେ ହୋଇଘାରି ।
ପୁନଃପୁନ ସେ କନ୍ୟାକୁ ସୁମରଣା କଲେ
ଆହାର ନିଦ୍ରାରେ ଆଉ ଶ୍ରଦ୍ଧା ନ ରଖିଲେ ।
କ୍ଷଣୁ କ୍ଷଣେ କ୍ଷୀଣତର ହେଲା ତାଙ୍କ ଅଙ୍ଗ
ରାହୁଗ୍ରସ୍ତ ଚନ୍ଦ୍ରପରି ଦିଶିଲେ ବିଭଙ୍ଗ ।
ତା ଦେଖି ରୁକ୍ମିଣୀ ଆଦି ପୁରବାସୀଗଣ
ଶ୍ରୀକୃଷ୍ଣଙ୍କ ଆଗେ ସବୁ କଲେକ ବଖାଣ ।
ସେ କଥା ଶୁଣି ଶ୍ରୀକୃଷ୍ଣ ଅଳପ ହସିଲେ
ଯଥାର୍ଥ କଥା ତାହାଙ୍କ ଆଗରେ ଭାଷିଲେ ।
ବୋଇଲେ ଶିବ ଦୁର୍ଗାଙ୍କ ସମ୍ଭୋଗକୁ ଦେଖି
ବାଣ କନ୍ୟକା କାମରେ ହୋଇବାରୁ ଦୁଃଖୀ
ମାୟାରେ ପାର୍ବତୀ ଦେବୀ ସ୍ୱପନରେ ଆସି
ଅନିରୁଦ୍ଧ ଆଗେ କନ୍ୟାରୂପ ପ୍ରକାଶି ।
ଏହିପରି କଉତୁକ ଘଟାଇ ଅଛନ୍ତି
ଆମ୍ଭେ ମଧ୍ୟ ମୋହି ଦେବା ବାଣ କନ୍ୟାମତି
ଏମନ୍ତ ବୋଲି ସେହିକୁ ଆଶ୍ୱାସନା କଲେ
ସ୍ୱପନରେ ବାଣ ସୁତା ଆଗେ ଦେଖା ଦେଲେ
ରତ୍ନ ପଲ୍ୟଙ୍କ ଉପରେ ଶୋଇଥିଲ ବାଳା
ଆଗରେ ଦିବ୍ୟ ପୁରୁଷ ମୂରତି ଦେଖିଲା ।
ନବ ଜଳଧର ଶ୍ୟାମ ସୁନ୍ଦର ଶରୀର
ସ୍ଥିର ଯଉବନ କୋଟି-କାମ-ମନୋହର ।
ସସ୍ମିତ ପୂର୍ଣ୍ଣିମା ଚନ୍ଦ୍ର ସଦୃଶ ବଦନ
ନୀଳୋତ୍ପଳ ଦଳତୁଲ୍ୟ ବିଶାଳ ଲୋଚନ ।
ରତନ କୁଣ୍ଡଳେ ଗଣ୍ଡସ୍ଥଳ ବିରାଜିତ
କେୟୂର କଙ୍କଣବାହୁ ଯୁଗରେ ଶୋଭିତ ।
କଟିତଟେ ସୁରୁଚିର ଝୀନ ପୀତବାସ
ଯେମନ୍ତ ନୂତନ ଘନେ ବିଦ୍ୟୁତ ପ୍ରକାଶ ।
ତାଙ୍କୁ ଦେଖି ବାଣ କନ୍ୟା ସମୀପକୁ ଯାଇ
ପଚାରିଲା କାମଶରେ ଜର୍ଜ୍ଜରିତା ହୋଇ ।
ବୋଇଲା ହେ ଭଦ୍ର ତୁମ୍ଭେ ଅଟ କାହା ସୁତ
କାହିଁପାଇଁ ଏ ସ୍ଥାନକୁ ହୋଇଲ ଆଗତ ।
ତୁମ୍ଭ ରୂପ ଦେଖି ମୋର ମନ ଛନ୍ନ ଛନ୍ନ
ହେଉଅଛି କାମକ୍ରୀଡ଼ା କରିବାକୁ ଜାଣ ।
ଗାନ୍ଧର୍ବ ବିଧିରେ ମୋର କରକୁ ଗ୍ରହଣ
କରି ଭୟ ତେଜ ଆହେ ପୁରୁଷ ରତନ ।

ଆଠ ପ୍ରକାର ବିବାହ ଅଛି ତ ଶାସ୍ତ୍ରରେ
ବୃଥା ଦୋଷ ଶଙ୍କା ତୁମ୍ଭେ ନ କର ମନରେ ।
ସ୍ୱଇଚ୍ଛାରେ ଉପସ୍ଥିତ ହେବାର ସ୍ତ୍ରିଙ୍କୁ
ତ୍ୟାଗ କରଇ ସେ ଲୋକ ଘୋର ନର୍କରକୁ ।
ତାହାଠାରେ ମହାଲକ୍ଷ୍ମୀ କୋପଭର ହୋଇ
ନିକଟରୁ ସେହିକ୍ଷଣି ଯାଆନ୍ତି ପଳାଇ ।
ଏରୂପେ ଉଷାର ବାକ୍ୟ ଶୁଣି ସେ ପୁରୁଷ
ବୋଇଲେ ମୋଠାରୁ ଶୁଣ ସ୍ତ୍ରିଗଣ ଈଶ ।
ଶ୍ରୀକୃଷ୍ଣଙ୍କ ପୌତ୍ର ମୁହିଁ ପ୍ରଦ୍ୟୁମ୍ନଙ୍କ ସୁତ ।
ଅନିରୁଦ୍ଧ ମୋର ନାମ ହୋଇଅଛି ଖ୍ୟାତ ।
ସେ ଦୁହିଙ୍କ ଅନୁମତି ବିନା ମୁଁ କାହାକୁ
ଗ୍ରହଣ କରି ନ ପାରେ କହିଲି ତୁମ୍ଭଙ୍କୁ ।
ଏମନ୍ତ ବୋଲି ପୁରୁଷ ଅନ୍ତର୍ଦ୍ଧାନ ହେଲେ
ନିଦ୍ରା ତେଜି ଉଷାବାଳା ସେକ୍ଷଣି ଉଠିଲେ ।
ସ୍ୱପନରେ ଦେଖିଲେ ଯେଉଁ ପୁରୁଷକୁ
ଦୁଃଖିତ ହୋଇଲେ ଧ୍ୟାନ କରିଣ କାହାକୁ ।
ବାତୁଳୀ ପରାୟେ ବସି କଲେକ ରୋଦନ
ତାହା ଦେଖି ଚିତ୍ରରେଖା ନାମେ ସଖୀଜନ ।
ବୋଇଲା କାହିଁକି ଶୋକ କରୁଛ ସୁନ୍ଦରୀ
ପ୍ରତିକାର କରିବା କହ ଭଲକରି ।
ତୁମ୍ଭ ପିତାଙ୍କ ନଗରେ ସଦାଶିବ ନିଜେ
ପାର୍ବତୀ ସହିତେ ଆସି କରିଛନ୍ତି ବିଜେ ।
ତାଙ୍କ ପ୍ରସାଦରେ ସବୁ ଦୁରିତ ତୁମ୍ଭର
ଖଣ୍ଡନ ହୋଇବ ଭୟ ଛାଡ଼ ରମାବର ।
ଏହିରୂପେ ଚିତ୍ରଲେଖା ପଚାରନ୍ତେ ବସି
କିଛି ଉତ୍ତର ତାହାକୁ ନ ଦେଲା ସୁକେଶୀ ।
ତା ଦେଖି ସେଠାରୁ ଚିତ୍ରଲେଖା ବେଗେ ଗଲା
ବାଣାସୁର ପୁର ମଧ୍ୟେ ପ୍ରବେଶ ହୋଇଲା ।
ସେଠାରେ ଶଙ୍କର ଦୁର୍ଗା ସ୍କନ୍ଦ ଗଣେଶ୍ୱର
ଥିଲେ ତ କହିଲା ତାଙ୍କୁ ସବ ସମାଚାର ।
ଦୁହିତାର କଥା ଶୁଣି ବାଣା ଦୁଃଖୀ ହୋଇ
ପଡ଼ିଲେ ମହୀ ଉପରେ ଚେତନା ହରାଇ ।
ତା ଦେଖି ପାର୍ବତୀ ଶିବ ସ୍କନ୍ଦ ଗଣେଶ୍ୱର
ହସି ମୁଖ ଚୂହାଁଚୂହିଁ ହେଲେ ପରସ୍ପର ।
ଗଣେଶ ବୋଇଲେ ଯେଉଁ କର୍ମ ଯେ କରଇ
ଅବଶ୍ୟ ତହିଁର ପ୍ରତିଫଳ ସେ ଭୁଞ୍ଜଇ ।

ଶିବ ପାର୍ବତୀଙ୍କ କ୍ରୀଡ଼ା ଦେଖି ବାଣାସୁତା
ହୋଇଲା ଯହିଁ ଅତିଶୟ କାମ ବିମୋହିତା ।
ତା ଜାଣି ଭବାନୀ ଦେବୀ ଇଚ୍ଛାହୋଇ ଗଲେ
ସ୍ୱପ୍ନରେ ଅନିରୁଦ୍ଧଙ୍କୁ ମନ୍ତ୍ର କରାଇଲେ ।
ସର୍ବାଙ୍ଗ ସୃଷ୍ଟି କରତା ପ୍ରଭୁ ନରହରି
ସେ କଥାକୁ ଜାଣି ନିଜେ ଦିବ୍ୟରୂପ ଧରି ।
ସ୍ୱପ୍ନ ସମୟରେ ଉଷା କନ୍ୟାର ଆଗରେ
ପ୍ରକାଶିତ ହୋଇ ତାକୁ ମୋହିଲେ ସତ୍ୱରେ ।
ସୁବେଶ ପୁରୁଷ ଯେବେ ଦେଖଇ କାମିନୀ
ପ୍ରାଣ ବ୍ୟସ୍ତ କରେ ତାକୁ ପାଇବାର ପେଁନ ।
ଦ୍ୱାରକା ପୁରକୁ ଏବେ ଚିତ୍ରଲେଖା ଯାଉ
ଉପାୟ କରିଣ ଅନିରୁଦ୍ଧଙ୍କୁ ଅଣାଉ ।
ତାହା ଶୁଣି ମହାଦେବ ସନମତ କଲେ
ଏକାନ୍ତ ସ୍ଥାନରେ ଚିତ୍ରଲେଖାକୁ କହିଲେ ।
ବୋଇଲେ ଯେରୂପେ ବାଣାସୁର ନ ଜାଣିବ
ସେହିପରି ତୁମ୍ଭେ ସବୁ କାର୍ଯ୍ୟକୁ କରିବ ।
ଆଜ୍ଞାପାଇ ଚିତ୍ରଲେଖା ବେଗହୋଇ ଗଲା
ମାୟାବଳେ ଦ୍ୱାରକାରେ ପ୍ରବେଶ ହୋଇଲା ।
ନିଦ୍ରାରେ ଅଚେତ ହୋଇଥିଲେ କାମସୁତ
ଯୋଗ ପ୍ରଭାବରେ ତାଙ୍କୁ ହରଣ କରିତ ।
ରଥେ ବସାଇ ଆକାଶ ମାର୍ଗେ ଚଳିଗଲା
କ୍ଷଣକେ ଶୋଣିତ ପୁରେ ପ୍ରବେଶହୋଇଲା
ଏଥୁ ଅନନ୍ତରେ ଶୁଣ ହେ ନାରଦ ଋଷି
କ୍ରମେ କ୍ରମେ ନିଶାଶେଷ ହୋଇଗଲା ଆସି ।
ଦ୍ୱାରକା ନଗର ମଧ୍ୟେ ଚହଳ ପଡ଼ିଲା
ସମସ୍ତେ ବୋଇଲେ ଅନିରୁଦ୍ଧ କାହିଁଗଲା ।
କାମିନୀମାନେ ପୁତ୍ରକୁ ନ ଦେଖି ରୋଦନ
କଲେ ସେ କାଳେ କୁରରୀ ପକ୍ଷୀପ୍ରାୟେ ଜାଣ
ଯୋଗବଳରେ ଶ୍ରୀକୃଷ୍ଣ ସେ କଥା ଜାଣିଲେ
ପୁରବାସୀ ସମସ୍ତଙ୍କୁ ଆଶ୍ୱାସନା କଲେ ।
ବାଣାସୁର ସଙ୍ଗେ ଯୁଦ୍ଧ ହେବ ବୋଲି କହି
ରଖାଇଲେ ସୈନ୍ୟ ସେନାପତିଙ୍କୁ ଡକାଇ ।
ଅନିରୁଦ୍ଧଙ୍କୁ ଘେନିଣ ଚିତ୍ରଲେଖା ଗଲା
ଉଷାକନ୍ୟା ସମୀପରେ ପରବେଶ ହେଲା ।
ଦେଖିଲା କନ୍ଦର୍ପ ଶରେ ପୀଡ଼ା ପାଇ ବାଳୀ ।
ଗଡ଼ୁଅଛି ପଲଙ୍କରେ ହୋଇଣ ବାତୁଳୀ

ପ୍ରବୋଧନା କରି ତାଙ୍କୁ ଉଠାଇ ପଲ୍ୟଙ୍କରେ
ସ୍ନାନ କରାଇଲା ଦିବ୍ୟ ସୁବାସିତ ନୀରେ ।
ଚନ୍ଦନ କୁଙ୍କୁମ ଅଙ୍ଗେ କରାଇ ଲେପନ
ମଣ୍ଡିଲା ବହୁତ ସ୍ୱର୍ଣ୍ଣ ରତ୍ନ ଆଭରଣ ।
ସଖୀଙ୍କ ସମ୍ମତେ ଅନିରୁଦ୍ଧ ସହିତରେ
ବିଭା କରାଇଲା ତହିଁ ଗାନ୍ଧର୍ବ ବିଧିରେ ।
ପରସ୍ପର ସଙ୍ଗ ପାଇ ସେ ନବ ଦମ୍ପତି
ଦିନ ନେଲେ ମହାସୁଖେ ରତିରସେ ମାତି ।
ଦୁହେଁ ତ କାମଶାସ୍ତ୍ରକ ପୀଡ଼ା ପାଇଥିଲେ
କ୍ଷଣେ ହେଲେ ସଙ୍ଗମରୁ ବିରତ ନ ହେଲେ ।
କ୍ଷେତ୍ରମୋହନ ବୋଲଇ ଆହେ ସାଧୁଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ଶୁଣ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅନିରୁଦ୍ଧ ଓ ଉଷାଙ୍କର ସ୍ୱପ୍ନ ଦର୍ଶନ କଥନେ ନାମ ଚତୁର୍ଦ୍ଦଶୋତ୍ତରଶତତମୋଽଧ୍ୟାୟଃ ।



## ପ ଞ୍ଚ ଦ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ବାଣା ଓ ଅନିରୁଦ୍ଧଙ୍କର ପରସ୍ପର କଥୋପକଥନ ଓ ବାଣାସୁର ଦ୍ୱାରା ଯୁଦ୍ଧ ଆୟୋଜନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ସଙ୍ଗମ ହୁଅନ୍ତେ ଉଷା ଅନିରୁଦ୍ଧଙ୍କର ।
କେତେଦିନ ପରେ ବାଳା ଗର୍ଭବତୀ ହେଲା
ମୁଖମଣ୍ଡଳ ପାଣ୍ଡୁର ବରନ ଦିଶିଲା ।
ତା ଦେଖି ରକ୍ଷକଗଣ ଅନ୍ୱେଷଣ କରି
ଜାଣିଲେ ପୁରୁଷଯୁକ୍ତ ହୋଇଛି କୁମାରୀ ।
ସେହିକ୍ଷଣି ବାଣାସୁର ପାଶେ ଧାଇଁଯାଇ
ଦେଖିଲେ ଅଛନ୍ତି ଦୁର୍ଗା ସଦାଶିବ ତହିଁ ।
ଆଉରି ଗଣେଶ ସ୍କନ୍ଦ ଦୁହେଁ ବସିଛନ୍ତି
କହିଲେ ତାହାଙ୍କ ଆଗେ ପ୍ରକାଶି ବିନତି ।
ବୋଇଲେ ହେ ଦେବ ଏ କି ଅଦ୍ଭୁତ କଥା
ଶୁଣିବା ମାତ୍ରକେ ଜାତ ହେଉଅଛି ବ୍ୟଥା ।
ସ୍ୱତନ୍ତ୍ର ସବେ ଭ୍ରମର ଯୁବତୀ ଦୁହିତା
କରିଅଛି ସ୍ୱଇଚ୍ଛାରେ ଜାରପତି ଚିନ୍ତା ।
ଗୁପତରେ ଚିତ୍ରଲେଖା ଦୂତୀପଣେ ଯାଇ
ପୁରୁଷେକ ଆଣି ତାକୁ ଦେଇଛି ଭେଟାଇ ।
ମହାବଳବନ୍ତ ସେହୁ ଅଟେ ରାଜପୁତ୍ର
ନବଘନ ମେଘପରି ଦିଶୁଛି ତା ଗାତ୍ର ।
କନ୍ଦର୍ପଠାରୁ ଅଧିକ ହୋଇଛି ସୁନ୍ଦର
ସମ୍ଭୋଗ କଲା ସେ ଉଷା କନ୍ୟାକୁ ଭ୍ରମର ।
ତା ସାର୍ଥ୍ୟରେ ଗର୍ଭବତୀ ହୋଇଛି କୁମାରୀ
ଏଥିକୁ ଉଚିତ ଯାହା କର ଦଣ୍ଡଧାରୀ ।
ଏହା ଶୁଣି ବାଣାସୁର ଲଜ୍ଜିତ ହୋଇଲା
କ୍ଷଣେଯାଏ ମୁଖ ପୋତି ବସିଣ ରହିଲା ।
ପୁଣି କ୍ରୋଧଭରେ ଯୁଦ୍ଧ କରିବା ଇଚ୍ଛାରେ
ଉଠିଲା ଚଳିବା କାଳ ଫଣି ପରକାରେ ।
ତାହା ଦେଖି ସଦାଶିବ ସ୍କନ୍ଦ ଗଣେଶ୍ୱର
ନିବାରଣ କଲେ ତାକୁ କହି ବାରମ୍ବାର ।
ଭୈରବୀ ଭଦ୍ରକାଳିକା ଯୋଗିନୀ ସହିତେ
ରୁଦ୍ରଗଣ ନିବାରଣ କଲେ ଯେଝାମତେ ।
ଶଙ୍କର ବୋଇଲେ ଆହେ ଶୁଣ ବାଣାସୁର
ଶ୍ରୀକୃଷ୍ଣ ଅଟନ୍ତି ସାକ୍ଷାତରେ ଦାମୋଦର ।
ମହୀଭାର ହରିବାକୁ ଜନ୍ମ ହୋଇଛନ୍ତି
ବିଧାତାର ସୃଷ୍ଟିକର୍ତ୍ତା ସେହିଠି ଅଟନ୍ତି ।
ଯାହାଙ୍କର ଅଭାବରେ ନ ରହଇ ଜୀବ
ତାଙ୍କ ସଙ୍ଗରେ କି ଅବା କରିବା ଆହବ ।
ଯେଉଁରୂପେ ଆକାଶକୁ ଶସ୍ତ୍ର ପ୍ରହାରିଲେ
ନିଷ୍ଫଳ ହୋଇଣ ତାହା ପଡ଼ଇ ଭୂତଳେ ।
ସେହିପରି ଶ୍ରୀକୃଷ୍ଣଙ୍କ ସଙ୍ଗେ କଲେ ରଣ
ପରିଣାମ ଶୁଭବହ ନ ହୋଇବ ଜାଣ ।

ତୁମ୍ଭ ପିତା ବଳି ମହା ବଳୀ ତ ଅଟନ୍ତି
କରାଇଲେ ହରି ତାଙ୍କୁ ରସାତଳେ ସ୍ଥିତି ।
ଦେବତା ଦାନବ ଆଦି ଯେତେ ସୁରଗଣ
ସମସ୍ତେ ଶ୍ରୀକୃଷ୍ଣଙ୍କର ଅଂଶେ ଜାତ ଜାଣ ।
ଏହିରୂପେ କହି ଶିବ ନିବୃତ୍ତ ହୋଇଲେ
ପାର୍ବତୀ ଦେବୀ ସେ ଅନ୍ତେ ବଚନ କହିଲେ ।
ବୋଇଲେ ଯାହାଙ୍କୁ ବ୍ରହ୍ମା ଶିବ ଗଣେଶ୍ୱର
ସୂର୍ଯ୍ୟ ଚନ୍ଦ୍ର ଆଦି ସର୍ବ ସୁରାସୁର ନର ।
ମନୁ ମୁନି ଋଷି ସିଦ୍ଧ ଯୋଗୀ ବ୍ରହ୍ମଚାରୀ
ଧ୍ୟାନ କରୁଛନ୍ତି ବସି ଦିବସ ଶର୍ବରୀ ।
ତାହାଙ୍କ ସଙ୍ଗରେ କେବା କରିବ ସମର
ଅସମ୍ଭବ ଅଟେ ଏହା ବୋଲନ୍ତି ବିଜ୍ଞର ।
ଗଣେଶ ବୋଇଲେ ତୁମ୍ଭେ ବଳପୁଷ୍ଟ ହୋଇ
ଏ ମନ୍ଦ ବିଚାର କରୁଅଛ କାହିଁପାଇଁ ।
ସେ ଅନ୍ତରେ କାର୍ତ୍ତିକେୟ ବୋଇଲେ ହେ ଭ୍ରାତ
ଶୁଣି ନାହିଁ କି ହିରଣ୍ୟ କଶିପୁ ଚରିତ ।
ଆବର ମଧୁକୈଟଭ ଆଦି କରି ଯେତେ
ପୂର୍ବକାଳେ ଥିଲେ ମହାବଳ ଏନ୍ତ ଦୈତ୍ୟେ ।
କ୍ଷଣକରେ ସେମାନଙ୍କୁ ଯମପୁରେ ନେଇ
ବସାଇଲେ କି ଶ୍ରୀହରି ନ ରଖିଲେ କେହି ।
ତୁମ୍ଭେ ଏବେ ତାଙ୍କସଙ୍ଗେ କରିବାକୁ ଯୁଦ୍ଧ
କାହିଁପାଇଁ ବାହାରୁଛ ବହି ମନେ କ୍ରୋଧ ।
ଏହିରୂପେ ସେମାନଙ୍କ ବଚନକୁ ଶୁଣି
କରଯୋଡ଼ି ବାଣାସୁର ପ୍ରକାଶିଲା ବାଣୀ ।
ବୋଇଲା ହେ ମହେଶ୍ୱର ଆହେ ଜଗନ୍ନାଥ
ଆହେ ଗଣପତି ଆହେ କାର୍ତ୍ତିକେୟ ଭ୍ରାତ ।
ଯେଉଁ ଉପଦେଶମାନ ଦେଲେ ତୁମ୍ଭେ ମୋତେ
ଯଥାର୍ଥ ବୋଲି ମୁଁ ତାହା ଭାବୁଅଛି ଚିତ୍ତେ ।
ମାତ୍ର ପୂର୍ବକର୍ମ ବଳେ ଶୁଭାଶୁଭ ସର୍ବ
ଯଥାକାଳେ ଅନୁଭବ କରଇ ମାନବ ।
ହେଲେ ମଧ୍ୟ ତୀକ୍ଷ୍ଣଧାର ଖଡ଼୍‌ଗରେ ହାଣି
ଅକାଳରେ କେବେହେଲେ ନ ମରଇ ପ୍ରାଣୀ ।
ଯାହାର ମରଣକାଳ ହୋଇଥାଏ ଆସି
କୁଶାଗ୍ରେ ଛୁଇଁଲେ ହୁଏ ଯମପୁରବାସୀ ।
ଯା ହାତରେ ଥିବ ତାର ମୃତ୍ୟୁ ହେବା ପାଇଁ
ପୂର୍ବରୁ ନିଷ୍ଟୟ ତାହା କରିଥିବ ବିହି ।

ଯୁଦ୍ଧରେ ଜିଣିଲେ ହୁଏ ଜୟଲକ୍ଷ୍ମୀ ଯୋଗ
ମଲେ ଅବଶ୍ୟ ହୋଇବ ସ୍ୱର୍ଗପୁର ଭୋଗ ।
ଏମନ୍ତ ହୋଇବ ଠାରେ କାପୁରୁଷ ପରି
ମୋହପରା ଘର ରହି ପାରିବ କି ଡରି ।
ଶୁଣିଲେ ବୋଲିବେ ଲୋକେ ବାଣାସୁର ପୁର
ରକ୍ଷା କରୁଥିଲେ ନିଜେ ପାର୍ବତୀ ଶଙ୍କର ।
ତଥାପି ତହିଁରେ ଏକ ଚୋର ପଶିକରି
ହରିନେଲା ବଳାତ୍କାରେ ରାଜାର କୁମାରୀ ।
ଏ ନିନ୍ଦା ଶୁଣିବା ପ୍ରତି ଯୁଦ୍ଧେ ମରିବାର
ଶତସହସ୍ର ଗୁଣରେ ଅଟେ ଶ୍ରେୟସ୍କର ।
ସମରେ ଅନିରୁଦ୍ଧର ଜୀବନକୁ ନେବି
ସେ ଅନ୍ତରେ ଦୁହିତାକୁ ହାଣି ପକାଇବି ।
ଏହା କରି ନ ପାରିଲେ ଅନଳରେ ଝାସ
ଦେବି ଏହିଠାରେ ତୁମ୍ଭ ଆଗରେ ଅବଶ୍ୟ ।
ଏମନ୍ତ କହିଣ ରାଜା ମଉନେ ରହିଲା
ଶୁଣି କୋଟବୀ ତାହାଙ୍କୁ ବଚନ କହିଲା ।
ବୋଇଲା ରେ ବତ୍ସ ! ମୁହିଁ ଧର୍ମରେ ତୋ ମାତା
ସେ ସକାଶୁ ବୋଲୁଅଛି ଶୁଣ ମୋର କଥା ।
ଜନ୍ମ ହେବାଦିନୁ କନ୍ୟା ଅଟେ ପରଧନ
କନ୍ୟାକୁ ଗୃହରେ ରଖି ନ ପାରେ କେ ଜନ ।
ନିଜ ଇଚ୍ଛାରେ ତ ବରିଅଛି ତୋର ସୁତା
ଏଥିପାଇଁ କପାଁ ବସି କରୁଅଛୁ ଚିନ୍ତା ।
ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ ତ ଅଟନ୍ତି
ଆନନ୍ଦରେ ତାଙ୍କୁ ଦାନ କର ତୋ ଦୁହିତା
ତେମନ୍ତ ହେଲେ ତୋହର ସପତ ପୁରୁଷ
ମୁକତି ପାଇବେ ପୁଣି ଖ୍ୟାତ ହେବ ଯଶ ।
ନୋହିଲେ ଯୁଦ୍ଧରେ ସୁଦର୍ଶନ ଚକ୍ର ପେଷି
କରାଇବେ ବାସୁଦେବ ଯମପୁର ବାସୀ ।
ଏରୂପେ କୋଟବୀଠାରୁ ଶୁଣି ବାଣାସୁର
କ୍ରୋଧରେ ଅଧୀର ହୋଇ ଧରି ଧନୁଶର ।
ରଥ ଆରୋହଣ କରି ଅନିରୁଦ୍ଧ ପାଶେ
ଧାଇଁଲା ତାଙ୍କ ସଙ୍ଗରେ ଯୁଝିବାକୁ ରୋଷେ ।
ତାର ସହିତରେ ସ୍କନ୍ଦ ଶିବଙ୍କ ଆଜ୍ଞାରେ
ସେନାପତି ହୋଇ ଗଲେ ଶସ୍ତ୍ର ଘେନି କରେ
ଗଣେଶ ଶଙ୍କର ଦୁହେଁ ସ୍ୱସ୍ତ୍ୟୟନ କରି
ବୋଇଲେ ତୁମ୍ଭର ଜୟ ହେବ ଦଣ୍ଡଧାରୀ ।

ଭଇରବ ରୁଦ୍ରଗଣ ସାରବେଶ ସାଜ
ଗଲେ ନାନାବିଧ ଶସ୍ତ୍ର ଧରିଣ ଗରଜ ।
ଏହି ସମୟେ ପାର୍ବତୀ ଦୂତେକ ପଠାଇ
ଅନିରୁଦ୍ଧଠାକୁ ଗୁପ୍ତେ ଦେଲେ ପଠିଆଇ ।
ଆଜ୍ଞା ପରମାଣେ ଦୂତ ବେଗହୋଇ ଗଲା
ପ୍ରଦ୍ୟୁମ୍ନ କୁମର ଆଗେ ସମ୍ବାଦ କହିଲା ।
ବୋଇଲା ହେ ବତ୍ସ ତୁମ୍ଭେ ହୁଅ ସାବଧାନ
ଯୁଦ୍ଧ କରିବାକୁ ଆସୁ ଅଛନ୍ତି ରାଜନ ।
ତାହା ଶୁଣି ଉଷାବାଳା ବିହ୍ୱଳିତ ହୋଇ
ବୋଇଲା ସହାୟ ହୁଅ ଦୁର୍ଗା ମହାମାୟୀ ।
ଜଗତ ଜନନୀ ତୁମ୍ଭେ ଅଭୟ ଦାୟିନୀ
କରୁଣାକର ମୋଠାରେ ଦୟାଭାବ ଘେନି ।
ଦୂତ ବାକ୍ୟ ଶୁଣି ଅନିରୁଦ୍ଧ ମହାବୀର
ଯୁଦ୍ଧ କରିବା ସକାଶେ ହେଲେ ତତପର ।
ଉଷାଦତ୍ତ ରଥେ ବସି ବାହାର ହୋଇଲେ
ସୈନ୍ୟଧରି ବାଣାସୁର ରହିଛି ଦେଖିଲେ ।
କ୍ରୋଧରେ ରକତ ବର୍ଣ୍ଣ ହୋଇଛି ତା ନେତ୍ର
କମ୍ପୁଛି ପବନଘାତେ ଯେପ ପ୍ରାଏ ଗାତ୍ର ।
ଅନିରୁଦ୍ଧକୁ ଆଗରେ ଦେଖି ବାଣାସୁର
ବୋଇଲା ଆରେ ପାପିଷ୍ଠ ଦୁର୍ବୁଦ୍ଧି ପାମର ।
ଚନ୍ଦ୍ରବଂଶ କୁଳାଙ୍ଗାର ଅଟୁ ସିନା ତୁହି
ନୀଚ ଆଚରଣ କରୁଅଛୁ କାହିଁପାଇଁ ।
ପିତୃପିତାମହଙ୍କର ରୀତି ଅନୁସରି
କୁକର୍ମ କରୁଛୁ ପାପ ପୁଣ୍ୟ ନ ବିଚାରି ।
ତୋର ପିତା ଶମ୍ବରକୁ ମାରି ବଳାତ୍କାରେ
ହରିଲା ତା ଭାର୍ଯାକୁ ନିର୍ଲ୍ଲଜ ପଣରେ ।
ତହିଁରୁ ତୁ ଜାତ ହୋଇଅଛୁ ଯେ ହେତୁରୁ
ପରସ୍ତ୍ରୀ ହରିବାରେ ଦୋଷ ନ ବିଚାରୁ ।
ତୋର ପିତାମହ ବସୁଦେବ ସୁତ ହୋଇ
ବଢ଼ିଲା ନନ୍ଦ ଗୃହରେ ଦଧି ଦୁଗ୍ଧ ଖାଇ ।
ସେଠାରେ ଯେତେକ ଥିଲେ ଗୋପକୁଳ ସ୍ତ୍ରୀ
ହରିଲା ସେ ସମସ୍ତଙ୍କୁ ବଳାତ୍କାରେ ଧରି ।
କ୍ଷୀରପାନ କଲାବେଳେ ପୂତନାର ଜୀବ
ନାଶକଲା ସ୍ତ୍ରୀଠାରୁ ଛାଡ଼ି ଦୟାଭାବ ।
ମଥୁରା ପୁରକୁ ପୁଣି ଆଣି ଦୁଷ୍ଟପଣେ
ଦୁର୍ବଳ ନରକ ପ୍ରାଣ ନାଶିଲା ଆପଣେ ।
ତା ଘରେ ଯେତେକ ସ୍ତ୍ରୀ ଥିଲେ ସେମାନଙ୍କୁ
ହରଣ କଲା ବିଚାରି ନ କରି ଧର୍ମକୁ ।
ଭୀଷ୍ମକ ରାଜାର ବହୁ ସୈନ୍ୟ ନଷ୍ଟକରି
ଆଣିଲା ତା ତନୟାକୁ ବଳାତ୍କାରେ ଧରି ।
ଆଦିତ୍ୟଙ୍କୁ ସେବାକରି ରାଜା ଶତ୍ରାଜିତ
ମଣିଟିଏ ଆଣିଥିଲା ହୋଇ କୃତକୃତ୍ୟ ।
ତୋର ପିତାମହ ତାହା ଦେଖି ନ ସହିଲା
ଯୁଦ୍ଧ କରି ତାହାଠାରୁ ଛଡ଼ାଇ ଆଣିଲା ।
ଆବର ତାହାର କନ୍ୟା ବଳେ ଧରିଆଣି
ଭୋଗକଲା ଖଣ୍ଡପଣେ ନାହିଁ କରେ ଜାଣି ।
ଯୁଧିଷ୍ଠିର ଯାଗବଳେ ଶାଲ୍ୱ ଶିଶୁପାଳ
ଦନ୍ତବକ୍ର ଜରାସନ୍ଧ ଆଦି ଦୈତ୍ୟକୁଳ ।
ଅନ୍ୟାୟ ଦେଖି ତାହାର କହିବାରୁ ତାଙ୍କୁ
ମାରିଲା ମନରୁ ଛାଡ଼ି ନ୍ୟାୟ ଧରମକୁ ।
ଉପାୟରେ ଯବନକୁ ମାରି ତାର ସିରୀ
ଆପଣା ଘରକୁ ଘେନିଗଲା ନ ବିଚାରି ।
ଶତ୍ରୁଠାରୁ ଭୟ ପାଇ ସମୁଦ୍ର ପାଶରେ
ଶରଣ ପଶିଲା ଯାଇ ଦୁର୍ବଳ ପଣରେ ।
ନିଜ ଭାଇ ବାସବକୁ ମାରି ତାହାଠାରୁ
ଆଣିଲା ପାରିଜାତକ ନୋହି କଛୁ ଭୀରୁ ।
ମାତୁଳ ଅଟଇ ଯେଉଁ କଂସ ନରପତି
ବିନା ଦୋଷେ ତାକୁ ପଠାଇଲା ଯମ କତି ।
ଭଲ୍ଲୁକକୁ ଯୁଦ୍ଧେ ଜିଣି ତାହାର କନ୍ୟାକୁ
ହରି ଘେନିଗଲା ଯୁଦ୍ଧେ ଦେଖାଇ ବଳକୁ ।
ତାର ପିତୃଶ୍ୱସା କୁନ୍ତୀ ଅନ୍ୟଆଡ଼େ ସୁତ
ଜାତକଲା ପତିଠାରେ ହୋଇଣ ବିରକ୍ତ ।
ଭ୍ରାତୃପତ୍ନୀ ଅଟେ ପରା ଦ୍ରୌପଦୀ ତାହାର
ଏକାହୋଇ ବରିଛି ସେ ପାଞ୍ଚଗୋଟି ବର ।
ଏହିପରି ଯେତେ ତୁମ୍ଭ ବଂଶରେ ଅଛନ୍ତି
ବ୍ୟଭିଚାର କରିବାରେ ଥାଏ ତାଙ୍କ ମତି ।
ତୋର ଜ୍ୟେଷ୍ଠ ଭ୍ରାତାମହ ବାରୁଣୀରେ ମତ୍ତ
ଭ୍ରାତୃପତ୍ନୀ ଯମୁନାକୁ ଡାକଇ ସତତ ।
ତାର ଭଗିନୀ ସୁଭଦ୍ରା ପିତୃଶ୍ୱସାପୁତ୍ର
ଅର୍ଜୁନକୁ ସମର୍ପଣ କଲା ନିଜ ଗାତ୍ର ।
ତୁମ୍ଭ କୁଳ ଧର୍ମ ଅଟେ ଏମନ୍ତ ପ୍ରକାର
ତୁ ମଧ୍ୟ ସେ ଆଚରଣ କଲୁ ରେ ପାମର ।

ଏହିରୂପେ ବ୍ରାହ୍ମଣଠାରୁ ଶୁଣି ଅନିରୁଦ୍ଧ
ଉତ୍ତର ଦେଲେ ତାହାକୁ ହୋଇ ମହାକ୍ରୁଦ୍ଧ ।
ବୋଇଲେ ରେ ଦୁରାଚାର ମୂର୍ଖ ଅଟୁ ତୁହି
କହୁଅଛୁ କଥାଗୁଡ଼େ ହେଳପରି ବାଇ ।
ମୋରପିତା କାମଦେବ ବ୍ରହ୍ମାଙ୍କର ସୁତ,
ତାଙ୍କ ବାଣେ ତ୍ରିଭୁବନ ହୁଅଇ ମୋହିତ ।
ଶିବ କୋପାନଳରେ ସେ ଭସ୍ମ ହୋଇଥିଲେ
ଏବେ ଶ୍ରୀକୃଷ୍ଣଙ୍କ ପୁତ୍ର ହୋଇ ଜନମିଲେ ।
ତାହାଙ୍କ ଭାରିଯା ରତିପତି ବିରହରେ
ଥିଲେ ତାହାଙ୍କୁ ଶମ୍ବର ନେଲା ବଳାତ୍କାରେ ।
ସେ ସକାଶୁ ଶମ୍ବରକୁ ମାରି ଘୋର ରଣେ
ନିଜ ପ୍ରିୟାଙ୍କୁ ଉଦ୍ଧାର କଲେ ବୀରପଣେ ।
ବାସୁଦେବ ଅଟନ୍ତି ଯେ ମୋର ପିତାମହ
ତାହାଙ୍କ ମହିମା କିସ ଜାଣିବୁ ତୁ କହ ।
କୋଟି କୋଟି ଯୁଗ ତପକରି ମୁନିମାନେ
ସମରଥ ନ ହୁଅନ୍ତି ଯାର ଦରଶନେ ।
ସଦାଶିବଙ୍କର ପରି ଅଟୁ ତୁ କଙ୍କର
ମୋ ପିତାମହଙ୍କ କଥା ତାହାଙ୍କୁ ପଚାର ।
ତୋର ପିତା ବଳି ନିଜେ ଶ୍ରୀକୃଷ୍ଣ ଭକତ
ତୁ କି ଦୁରାଚାର ହୋଇଅଛୁ ତାଙ୍କ ସୁତ ।
କ୍ଷତ୍ରିୟ ବୈଶ୍ୟ ଏ ଦୁଇ ଜାତିର ଭୋଜନ
ସମ୍ବନ୍ଧ ହୋଇଛି ବେଦ ଶାସ୍ତ୍ରେ ନିରୂପଣ ।
ଶ୍ରୀଦାମ ଶାପରେ ରାଧା ବୃଷଭାନୁ ଘରେ
ଜାତ ହୋଇଛନ୍ତି ଆସି ମରତ ଲୋକରେ ।
ଗୋପିକାମାନଙ୍କୁ ସଙ୍ଗେ ଘେନିଣ ଶ୍ରୀମତି
ପୁଣ୍ୟଭୂମି ଭାରତରେ ବିଜେ କରିଛନ୍ତି ।
ପୁରୋହିତ ହୋଇ ବ୍ରହ୍ମା ରାଧା କୃଷ୍ଣଙ୍କର
ବିବାହ କରାଇଛନ୍ତି ଜାଣରେ ବର୍ବର ।
ଗୋଲୋକରେ ଶ୍ରୀକୃଷ୍ଣଙ୍କ ପତ୍ନୀ ସବୁ ଗୋପୀ
ତାଙ୍କ ସଙ୍ଗେ କ୍ରୀଡ଼ାକଲେ ହେବେ କପାଁ ପାପୀ ।
ବଳିକନ୍ୟା ପୂତନା ଯେ ତୋହର ଭଗିନୀ
ବାମନରୂପେ କୃଷ୍ଣଙ୍କୁ ଦେଖି ସେ କାମିନୀ ।
ପୁତ୍ରମାନସରେ ସ୍ତନ୍ୟ ଦେବାଇଚ୍ଛା କଲା
ତେଣୁ ଏ ଯୁଗରେ ଦେଇ ଗୋଲୋକକୁ ଗଲା
ରାବଣ ଭଗିନୀ ସୂର୍ପଣଖା ନିଶାଚରୀ
ଶ୍ରୀରାମଙ୍କୁ ଥିଲା ପୂର୍ବେ ପତିରୂପେ ବରି ।

ସେହି ସକାଶୁ ଏ ଯୁଗରେ କୁବୁଜା ସେ ହେଲା
ଶ୍ରୀକୃଷ୍ଣ ଅବତାରରେ ସଙ୍ଗମ ପାଇଲା ।
ସେହିକ୍ଷଣି ନରଦେହ ତ୍ୟାଗ କରି ସେହି
ବସିଲା ମହାଆନନ୍ଦେ ଗୋଲୋକରେ ଯାଇ ।
ନରକ ଦୈତ୍ୟକୁ ବ୍ରହ୍ମା ଦେଇଥିଲେ ବର
ଶ୍ରୀକୃଷ୍ଣ ହସ୍ତରେ ମରି ଗଲା ସ୍ୱର୍ଗପୁର ।
ରାଜକନ୍ୟାଗଣ ବନ୍ଧହୋଇ ରହିଥିଲେ
ସ୍ୱଇଚ୍ଛାରେ ଶ୍ରୀକୃଷ୍ଣଙ୍କୁ ବରଣ ସେ କଲେ ।
ସେ ସକାଶୁ ତାଙ୍କୁ ଯଥା ବିଧି ବିଭାହୋଇ
ଆଣିଲେ ସେଥିକୁ ସାକ୍ଷୀ ଚନ୍ଦ୍ରସୂର୍ଯ୍ୟ ଦୁଇ ।
ବୈକୁଣ୍ଠରୁ ମହାଲକ୍ଷ୍ମୀ ଆସି ମର୍ତ୍ତ୍ୟପୁରେ
ମନୁଷ୍ୟ ହୋଇ ଜନ୍ମିଲେ ଭୀଷ୍ମକ ଗୃହରେ ।
ଶତ୍ରାଜିତ କନ୍ୟା ସତ୍ୟଭାମା ବସୁମତୀ
ହେଲେ ତାଙ୍କ ପିତା ଶ୍ରୀକୃଷ୍ଣଙ୍କୁ ବହି ପ୍ରୀତି ।
ଯଉତୁକ ସ୍ୱରୂପରେ ମଣିଗୋଟି ଦେଲେ
ସେଥିରେ ତ କୃଷ୍ଣଙ୍କର ଦୋଷ ନାହିଁ ତିଳେ ।
ଧର୍ମଲୋପ ପାଇ ଅଧର୍ମ ଯେ ବୃଦ୍ଧି ହେଲେ
ଯୁଗେ ଯୁଗେ ପ୍ରଭୁ ଆସିଥାନ୍ତି ଧରାତଳେ ।
ମହୀଭାର ନାଶିବାକୁ କୃଷ୍ଣ ଅବତାର
ବହି ଅଛନ୍ତି ସାକ୍ଷାତେ ଗୋଲୋକ ଈଶ୍ୱର ।
କୁରୁପାଣ୍ଡବ ଯୁଦ୍ଧରେ ଦୁଷ୍ଟଗଣ ନାଶ
ହେଲେ ମହୀ-ମହୀଭାର ହରିଲୁ ଜଗସ୍ୱାମୀ ।
ଯେ ବେନି ଅସୁର ଦନ୍ତବକ୍ର ଶିଶୁପାଳ
ଅଟନ୍ତି ଯେ ବଇକୁଣ୍ଠପୁର ଦ୍ୱାରପାଳ ।
କୁମର ଶାପରେ ତିନି ଯୁଗରେ ସେ ଦୁହେଁ
ଅସୁରରୂପେ ଜନମ ହେଲେ ତିନିଠାଏ ।
ପ୍ରଥମେ ହିରଣ୍ୟ ହିରଣ୍ୟାକ୍ଷ ବୋଲାଇଲେ
ନୃସିଂହ ସ୍ୱରୂପେ ତାଙ୍କୁ ପ୍ରଭୁ ବିନାଶିଲେ ।
ସେ ଅନ୍ତେ ତ୍ରେତୟା ଯୁଗେ ଲଙ୍କା ନମପୁରେ
ରାବଣ କୁମ୍ଭକର୍ଣ୍ଣ ସେ ହୋଇଲେ ସେଠାରେ ।
ରାମ ଅବତାରେ ତାଙ୍କୁ ବିନାଶିଲେ ହରି
ଏବେ ଶିଶୁପାଳ ଦନ୍ତବକ୍ର ରୂପ ଧରି ।
ଜାତ ହୋଇଥିଲେ ସେହି ଦୁଇଗୋଟି ଭ୍ରାତ
ଶ୍ରୀକୃଷ୍ଣ ହସ୍ତରେ ମରି ହୋଇଲେଟି ମୁକତ ।
ଜରାସନ୍ଧ ଶାଲ୍ୱ କଂସ ଦୁଷ୍ଟପଣ କଲେ
ତେଣୁ ଶ୍ରୀକୃଷ୍ଣଙ୍କ ହସ୍ତେ ମରି ସ୍ୱର୍ଗ ଗଲେ ।

ମାନ୍ଧାତା ପୁତ୍ର ଯବନ ପୂର୍ବକର୍ମ ଯେହ୍ନ
କୃଷ୍ଣ ସଙ୍ଗେ ଯୁଦ୍ଧ କରି ହେଲା ଯମସ୍ଥାନୀ ।
ଲକ୍ଷ୍ମୀଙ୍କର ପତି କୃଷ୍ଣ ତ୍ରୈଲୋକ୍ୟ ଈଶ୍ୱର
ଧନରେ କି ପ୍ରୟୋଜନ ଅଛି ତାହାଙ୍କର ।
ପୁଣ୍ୟକ ବ୍ରତ ସମାପ୍ତ କରିବାର ପାଇଁ
ପାରିଜାତ କୁସୁମଟି ଆଣିଲେ ସେ ଯାଇଁ ।
ଜାମ୍ବବତୀ ଦୁର୍ଗାଙ୍କର ଅଂଶେ ଜାତ ହେଲେ
ତପକରି ଶ୍ରୀକୃଷ୍ଣଙ୍କୁ ବରଣ ସେ କଲେ ।
କୁନ୍ତୀଦେବୀ ନିଜ ପତି ଆଦେଶକୁ ମାନି
ଦେବଙ୍କ ଅଂଶରେ ଜାତ କଲେ ପୁତ୍ର ତିନି ।
ଦ୍ରୌପଦୀଙ୍କୁ ପୂର୍ବେ ଶିବ ଦେଇଥିଲେ ବର
ସେ ଯେହ୍ନ ସେ ପତ୍ନୀ ହେଲେ ପାଣ୍ଡବଙ୍କର ।
କନ୍ୟାନାମ ପ୍ରଭଞ୍ଜନ ସୂତ ପୁଷ୍ପମଧୂ
ପ୍ର ନକଲେ ବୋଲି ସେକ ହୋଇଲେ ଅସାଧୁ ।
ସ୍ନାନ କରି ଶୁଚିମନ୍ତ ହୋଇବାର ପାଇଁ
ଯମୁନା ଜଳକୁ ଯାଉଥିଲେ ସେ ଧାଇଁ ।
ମାତୁଳ କନ୍ୟା ଗ୍ରହଣ ଦାକ୍ଷିଣାତ୍ୟାଙ୍କର
ପ୍ରସିଦ୍ଧ ଅଟଇ ଏହା ଶାସ୍ତ୍ରର ବିଚାର ।
ସେ ସକାଶୁ ଅର୍ଜ୍ଜୁନଙ୍କୁ କୃଷ୍ଣ ନିଜେ ଡାକି
ବିଧିମତେ ବିଭା କରାଇଲେ ଭଗିନୀକି ।
ଏଥିରେ କି ରୂପେ ଆମ୍ଭ ବଂଶ ଦୋଷୀ ହେଲା
ବିଚାରି ମନରେ ତୁହି କହ ମୋତେ ଭଲ ।
ଶ୍ରୀକୃଷ୍ଣଙ୍କ ଚରଣରେ ଦେଇଣ ମାନସ
କହଇ କ୍ଷେତ୍ରମୋହନ ରଖ ପୀତବାସ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବାଣ ଓ ଅନିରୁଦ୍ଧଙ୍କର ପରସ୍ପର କଥୋପକଥନ ଓ ବାଣାସୁର ହାରି ଯୁଦ୍ଧ ଆରମ୍ଭ କଥନେ ନାମ ପଞ୍ଚଦଶୋତ୍ତରଶତତମୋଽଧ୍ୟାୟଃ ।

—o×o—

## ଷୋଡ଼ଶୋତ୍ତରଶତତମ ଅଧ୍ୟାୟ

## ଅନିରୁଦ୍ଧ ସହିତ ବାଣାସୁରର ଯୁଦ୍ଧ

ଅନିରୁଦ୍ଧଙ୍କ ବଚନ ଶୁଣି ବାଣାସୁର
ବୋଇଲା ଉତ୍ତମ ଅଟୁ ପ୍ରଦ୍ୟୁମ୍ନ କୁମର ।
ଶିବଙ୍କ ବରେ କି ରୂପେ ଦ୍ରୁପଦ ନନ୍ଦିନୀ
ହେଲେ ପଞ୍ଚପତିଙ୍କର ଏକଇ କାମିନୀ ।
ଶମ୍ବର କି ରୂପେ ତୁମ୍ଭ ମାତାଙ୍କୁ ପୂର୍ବରେ ।
ହରି ନେଇଥିଲା ତାହା କହ ମୋ ଆଗରେ ।
ଅନିରୁଦ୍ଧ ବୋଇଲେ ହେ ପୂର୍ବେ ରଘୁନାଥ
ସୀତା ଲକ୍ଷ୍ମଣଙ୍କୁ ଘେନି ଆପଣାର ସାଥ ।
ପଞ୍ଚବଟୀବନେ ଏକ ସରୋବର ତୀରେ
ସ୍ନାନ ସାରି ବସି ନିଜେ କୁଶ ଆସନରେ ।
ସୁସ୍ୱାଦୁ ନିର୍ମଳ ଜଳ ସୁମଧୁର ଫଳ
ତିନି ଭାଗ କରି ତାହା ବାଣ୍ଟିଣ ସକଳ ।
ସୀତା ଲକ୍ଷ୍ମଣ ଦୁହିଙ୍କୁ ଦୁଇଭାଗ ଦେଲେ
ଗୋଟିଏ ଭାଗ ନେଇଣ ଆପଣେ ଭୁଞ୍ଜିଲେ ।
ଲକ୍ଷ୍ମଣ ସେ ଫଳ ମୂଳ ନ ଖାଇଣ କିଛି
ତ୍ୟାଗ କଲେ ମେଘନାଦ ବଧମନେ ଇଚ୍ଛି ।
ଚଉଦ ବରଷ ଯାଏ ଛାଡ଼ି ନିଦ୍ରାହାର
ରାବଣ ସୁତକୁ କରିଥିଲେ ସେ ସଂହାର
ସେହି ସମୟରେ ଦିନେ ଦେବ ହୁତାଶନ
ଶ୍ରୀରାମ ପାଶକୁ ଆସି କହିଲେ ବଚନ ।
ବୋଇଲେ ହେ ଦାଶରଥି ସୀତାଙ୍କୁ ଗୁପତେ
ରଖ ଆଜଠାରୁ ମୁହିଁ କହୁଅଛି ସତେ ।
ମାତହନ ମଧ୍ୟେ ଆସି ଦୁଷ୍ଟ ଦଶଶିର
ହରଣ କରି ନିଶ୍ଚୟ ନେବ ଲଙ୍କାପୁର ।
ତାହା ଶୁଣି ରାମଚନ୍ଦ୍ର ବୋଇଲେ ହେ ବହ୍ନି
ତୁମ୍ଭେ ଏବେ ସୀତାଙ୍କୁ ଯାଅ ସଙ୍ଗେ ଘେନି
ଛାୟାମାତ୍ର ମୋ ପାଶରେ ଥାଉ ଏବେ ରହି
ଲୋଡ଼ିବା କାଳରେ ଆଣି ଦେବ କହୁଥାଇ ।
ଏହା ଶୁଣି ହୁତାଶନ ସୀତା ଘେନିଗଲେ
ଛାୟା ରୂପଟିଏ ରାମ ପାଶରେ ରଖିଲେ ।
ସେଛାୟାକୁ ଦଶଶିର ହରି ଘେନିଗଲା
ସେ ସକାଶୁ ରାମ ସଙ୍ଗେ ଯୁଦ୍ଧ ତାର ହେଲା ।

ସବଂଶରେ ମାରି ତାକୁ ପ୍ରଭୁ ଦାଶରଥି
ଉଦ୍ଧାର କଲେ ଛାୟାକୁ ନୋହୁ କିଛି ବ୍ୟଥୀ ।
ଅଗ୍ନି ପରୀକ୍ଷା କାଳରେ ପ୍ରକୃତ ସୀତାଙ୍କୁ
ଘେନିଣ ଶ୍ରୀରାମ ଗଲେ ଅଯୋଧ୍ୟା ପୁରକୁ ।
ଦୁଃଖିତ ହୋଇ ସେ ଛାୟାମୂର୍ତ୍ତି ଚଳିଗଲା
ନାରାୟଣ ସରୋବରେ ତପ ଆଚରିଲା ।
ତାର ତପସ୍ୟାରେ ଶିବ ହୋଇ ପରସନ୍ନ
ବୋଇଲେ ମାଗ ଯା ତୁମ୍ଭେ କରିଅଛ ମନ ।
ଛାୟା ତ ବିରହାଗ୍ନିରେ ଦଗ୍ଧ ହୋଇଥିଲା
ପତି ଦିଅ ବୋଲି ପାଞ୍ଚଥର ସେ ମାଗିଲା ।
ମହାଦେବ ବୋଇଲେ ଗୋ ପାଞ୍ଚଥର ତୁହି
ପତିଦିଅ ବୋଲି ବର ମାଗିଲୁ କୁହାଇ ।
ସେ ସକାଶୁ ପାଞ୍ଚଇନ୍ଦ୍ର ହରିଙ୍କ ଅଂଶରେ
ଜାତହୋଇ ତୋର ପତି ହେବେ ମର୍ତ୍ତ୍ୟପୁରେ ।
ସେ ଛାୟା ଦ୍ରୌପଦୀ ରୂପେ ଯଜ୍ଞକୁଣ୍ଡୁ ଜାତ
ହେଲା ତାର ପତି ପଣ୍ଡୁସୁତ ପାଞ୍ଚଭ୍ରାତ ।
ଲକ୍ଷ୍ୟ ଭେଦ ଅରଜୁନ ତାହାଙ୍କୁ ପାଇଲେ
ମାତାଙ୍କ ଆଗରେ ଯାଇ ସେ କଥା କହିଲେ ।
କୁନ୍ତୀ ବୋଇଲେ ଅତଜ ଆଣିଅଛୁ ଯାହା
ପାଞ୍ଚଭାଇ ମିଶି ଭୋଗକର ବାବୁ ତାହା ।
ଶିବଙ୍କର ବର ପୁଣି ମାତାଙ୍କ ଆଦେଶ
ତେଣୁ ପାଞ୍ଚଭାଇ ହେଲେ ଦ୍ରୌପଦୀଙ୍କ ଈଶ ।
ଶଙ୍କରଙ୍କୁ ମୋର ମାତା କ୍ରୋଧ ଗାଳିଦେଲେ
ସେସକାଶୁ କ୍ରୋଧେ ଶିବ ଶାପ ତାଙ୍କୁ ଦେଲେ
ବୋଇଲେ ଅସୁରଗ୍ରସ୍ତା ହୋଇ ତୁମ୍ଭେ ଥିବ
ଅଳ୍ପ କାଳପରେ ପତି ସଙ୍ଗମ ପାଇବ ।
ଜୀବନ ପାଇବାଯାଏ ତୁମ୍ଭ ପ୍ରାଣପତି
ଛାୟାକୁ ପଠାଇ ଗୃହେ କରିଥାଅ ସ୍ଥିତି ।
ଏହିରୂପେ ଶାପ ଦେଇଥିବାରୁ ଶଙ୍କର
ହରିଲା ମୋର ମାତାଙ୍କୁ ଶମ୍ବର ଅସୁର ।
ଏହିପରି ଦୁହେଁ କଥାବାର୍ତ୍ତା ହେଉଥିଲେ
ସୁଭଦ୍ରା ଆସି ସେଠାରେ ପ୍ରବେଶ ହୋଇଲେ
କୁଷ୍ମାଣ୍ଡର ଭ୍ରାତା ସେହି ମହାବଳବାନ
ବାଣାସୁର ସେନାପତି ଯୁଦ୍ଧରେ ନିପୁଣ ।
ବାଣାକୁ ବହୁତ ଗାଳିଦେଇ ମହାବଳ
ଅନିରୁଦ୍ଧକୁ ଉଦ୍ଦେଶି ପ୍ରହାରିଲା ଶୂଳ ।
ପ୍ରଳୟ ଅଗ୍ନି ପରାୟେ ଆସନ୍ତେ ସେ ଧାଇଁ
ଅର୍ଦ୍ଧଚନ୍ଦ୍ରେ ଅନିରୁଦ୍ଧ ଦେଲେ ତାକୁ ଛେଇ ।
ତାହା ଦେଖି ନିଶାଚର ଫିଙ୍ଗିଲା ଶକତି
କାଟିଲେ ବୈଷ୍ଣବଅସ୍ତ୍ରେ ଶ୍ରୀକୃଷ୍ଣଙ୍କ ନାତି ।
ନାରାୟଣ ଅସ୍ତ୍ର ତହୁଁ ପ୍ରହାରିଲା ଦୈତ୍ୟ
ତାକୁ ଦେଖି ଅନିରୁଦ୍ଧ ହେଲେ ଦଣ୍ଡବତ ।
ସେ କଥା ଜାଣି ସେ ଅସ୍ତ୍ର ଶୂନ୍ୟରେ ଭ୍ରମିଲା
ମୁହୂର୍ତ୍ତି ଅନ୍ତରେ ପୁଣି ଫେରି ପଳାଇଲା ।
ଅନିରୁଦ୍ଧ ଉଠି ହସ୍ତେ ଧରି ମହାଗଦା
ସୁଭଦ୍ର ରଥ ଅଶ୍ୱକୁ କରିଦେଲେ ପଦା ।
ବିରଥ ହୋଇ ଅସୁର ମୁଷ୍ଟିକ ଉଞ୍ଚାଇ
ଧାଇଁଲା ଅନିରୁଦ୍ଧକୁ ମାରିବାର ପାଇଁ ।
ସେକାଳେ କନ୍ଦର୍ପ ସୁର ପ୍ରହାରି ଖଡ଼ଗ
ରାକ୍ଷସର ଗଣ୍ଡ ମୁଣ୍ଡ କଲେ ଦୁଇଭାଗ ।
ସୁଭଦ୍ର ମରଣ ଦେଖି କ୍ରୋଧେ ବାଣାସୁର
ବିନ୍ଧିଲା ଅଗ୍ନି ସମାନ କୋଟି କୋଟି ଶର ।
ଅର୍ଦ୍ଧଚନ୍ଦ୍ର ସାୟକରେ ଅନିରୁଦ୍ଧ ଚଣ୍ଡେ
ସେ ଶରକୁ କାଟି ପକାଇଲେ ରଣଦାଣ୍ଡେ ।
ବାଣ ତାହା ଦେଖି ବ୍ରହ୍ମଅସ୍ତ୍ର ପ୍ରହାରନ୍ତେ
ବ୍ରହ୍ମାସ୍ତ୍ରରେ ଅନିରୁଦ୍ଧ କାଟିଲେ କାଞ୍ଚେତ ।
ପାଶୁପତ ଅସ୍ତ୍ର ତହୁଁ ହସ୍ତେ ଧରି ବାଣ
ବିନ୍ଧିଲା ଘେନିବାପାଇଁ ଅନିରୁଦ୍ଧ ପ୍ରାଣ ।
ସେକାଳେ ଗଣେଶ ଶିବ କାର୍ତ୍ତିକେୟ ଆସି
ନବ ରଣ କଲେ ତାକୁ ବହୁତ ଆଶ୍ୱାସି ।
ଜୃମ୍ଭଣ ଅସ୍ତ୍ରକୁ ଅନିରୁଦ୍ଧ ମହାବୀର
ବିନ୍ଧିଲେ ସେହି ସମୟେ ହୋଇ ତତପର ।
ସେ ଘାତରେ ନିଶାଚର ଚେତନା ହରାଇ
ଶୋଇଲା ରଥ ଉପରେ ନିଦ୍ରାବଶ ହୋଇ ।
ଅନିରୁଦ୍ଧ ସେହି ଛିଦ୍ର ଦେଖିଣ ତାହାର
ହାଣିବାକୁ ଖଡ଼୍ଗ ଧରି ହୋଇଲେ ବାହାର ।
କାର୍ତ୍ତିକେୟ ତାହା ଦେଖି ଶତେବାଣ ବିନ୍ଧି
ଅନିରୁଦ୍ଧଙ୍କ ମାର୍ଗକୁ ପକାଇଲେ ରୁନ୍ଧି ।
ସେ ସକାଶୁ ଅନିରୁଦ୍ଧ ଖଡ଼୍ଗ ପରିହରି
ଭାଙ୍ଗିଲେ କାର୍ତ୍ତିକ ରଥ ଶକତି ପ୍ରହାରି ।
କାର୍ତ୍ତିକେୟ ବୀର ତାହା ସହି ନ ପାରିଲେ
ଗଦା ପିଟି ଅନିରୁଦ୍ଧ ରଥ ଚୂନା କଲେ ।

ଉକ୍ତକ୍ଷଣରେ କାର୍ତ୍ତିକେୟ ହସ୍ତେ ଥିବା ଧନୁ
ଦୁଇଖଣ୍ଡ କଲେ କାମଦେବଙ୍କର ସୂନୁ ।
ସ୍କନ୍ଦ ତାହା ଦେଖି ବେଗେ ଧରି ମହାଗଦା
ଧାଇଁଲେ ଅନିରୁଦ୍ଧକୁ କରିବାକୁ ବଧା ।
ବିଚିତ୍ର ଗତି ଦେଖାଇ ଶ୍ରୀକୃଷ୍ଣଙ୍କ ନାତି
ଝାମ୍ପି ନେଲେ ସେହି ଗଦାକୁ ଝଟତି ।
କାର୍ତ୍ତିକେୟ କ୍ରୋଧ ହୋଇ ପୁଣି ମହାଶୂଳ
ଧରିଲେ ସେ ହସ୍ତେ ଥିଲା ଯେସନ୍ତ କାଳାନଳ ।
ସେ ଶୂଳକୁ ଗଦା ଘାତେ ଭାଙ୍ଗି ଅନିରୁଦ୍ଧ
ଆରମ୍ଭିଲେ ସ୍କନ୍ଦ ସଙ୍ଗତରେ ବାହୁଯୁଦ୍ଧ ।
ଧରାଧରି ହୋଇ ଦୁହେଁ ମଲ୍ଲପରେ ଗଡ଼ି
ବାହୁରେ ବାହୁ ମିଶାଇ ହେଲେ ଭିଡ଼ାଭିଡ଼ି ।
ଦୁଇ ବୀରଙ୍କର ଯୁଦ୍ଧ ଦେବେ ଅଗୋଚର
ପାଦଘାତେ ବସୁମତୀ କମ୍ପେ ଥରହର
ଗଣେଶ ତା ଦେଖି ବେଗେ ହୋଇଣ ଆସିଲେ
ମଧ୍ୟରେ ରହି ଦୁହିଙ୍କୁ ନିବର୍ତ୍ତାଇ ଦେଲେ ।
ସୈନ୍ୟ ଘେନି କାର୍ତ୍ତିକେୟ ଗଲେ ନିଜପୁରେ
ଅନିରୁଦ୍ଧ ପ୍ରବେଶିଲେ ଉଷାଙ୍କ ମନ୍ଦିରେ ।
ଏହିଠାରେ ଅନିରୁଦ୍ଧ ବାଣାର ସମର
ସମାପ୍ତ ହୋଇଲା ଗୀତେ ଭଣେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅନିରୁଦ୍ଧ ସହିତେ ବାଣାସୁରର
ଯୁଦ୍ଧ କଥନେ ନାମ ଷୋଡ଼ଶୋତ୍ତରଶତତମୋଽଧ୍ୟାୟଃ ।

---

# ସପ୍ତଦଶୋତ୍ତରଶତତମ ଅଧ୍ୟାୟ

## ଶିବଙ୍କର ଗଣେଶଙ୍କ ପ୍ରତି ହିତଉପଦେଶ ଦାନ

ନାରାୟଣ ବୋଇଲେ ହେ ଶୁଣ ମୁନିବର
ଶିବଙ୍କ ପାଶେ ପ୍ରବେଶ ହୋଇ ଗଣେଶ୍ୱର ।
ଆମୂଳ କରି କହିଲେ ସକଳ ବୃତ୍ତାନ୍ତ
ଯେରୂପେ ସୁଭଦ୍ର ବୀର ରଣେ ହେଲା ହତ ।
ଆଉରି କାର୍ତ୍ତିକ ବାଣାସୁର ଅନିରୁଦ୍ଧ
ଯେଉଁରୂପେ ପରସ୍ପରେ କଲେ ଦ୍ୱନ୍ଦ୍ୱ ଯୁଦ୍ଧ ।
ତାହା ଶୁଣି ସଦାଶିବ ହସି ଗଣେଶଙ୍କୁ
ବୋଇଲେ କହୁଛି ଶୁଣ ଦେଇଣ ମନକୁ ।
ଶ୍ରୀକୃଷ୍ଣ ଅଟନ୍ତି ସର୍ବ ଜଗତ ଈଶ୍ୱର
ତାଙ୍କ ଅଂଶରୁ ସମ୍ଭୂତ କେତେ ଚରାଚର ।
ସମସ୍ତ ଲୋକର ସେହି ଅଟନ୍ତି କାରଣ
ଧ୍ୟାନ କରୁଥାନ୍ତି ତାଙ୍କୁ ସଦା ଯୋଗିଗଣ ।
ବ୍ରହ୍ମାଦି ତୃଣ ପର୍ଯ୍ୟନ୍ତ ନିଖିଳ ଜଗତ
ମିଥ୍ୟା ବୋଲିକରି ଜାଣ ଆହେ ଗଜଦନ୍ତ ।
କେବଳ ଶ୍ରୀକୃଷ୍ଣ ସତ୍ୟ ଶିବ ସନାତନ
ଗୋଲୋକେ ଦ୍ୱିଭୁଜ ମୂର୍ତ୍ତି ଶ୍ରୀରାଧାରମଣ ।
ଗୋପାଳ ଶିଶୁ ସ୍ୱରୂପ ଶିଖୀପୁଚ୍ଛଧାରୀ
ସେବା କରିଥାନ୍ତି ତାଙ୍କୁ ଗୋପ ଗୋପୀସ୍ତ୍ରୀ ।
ବୃନ୍ଦାବନେ ସୁଶୋଭିତ ରାସ ମଣ୍ଡଳରେ
ଭ୍ରମଣ କରନ୍ତି ଘେନି ମୁରଲୀ ହସ୍ତରେ ।
ଶତଶୃଙ୍ଗ ଶୈଳ ତଟେ ବଟବୃକ୍ଷ ମୂଳେ
ଗୋଗୋଷ୍ଠେ ଭାଣ୍ଡୀର ବନେ ବିରଜାର କୂଳେ
ବିହାର କରନ୍ତି ପ୍ରଭୁ ହରଷିତ ମନେ
ଗୋଚାରଣ କରୁଥାନ୍ତି ବୁଲି ସ୍ଥାନେ ସ୍ଥାନେ ।
ନବୀନ ନୀରଦ ପରି ତାଙ୍କ ଅଙ୍ଗ ଶୋଭା
ପୀତବାସ ପ୍ରକାଶଇ ବିଦ୍ୟୁତର ପ୍ରଭା ।
ଯେଉଁ ପ୍ରକାରେ ଗୋଲୋକେ ରାସ ମଣ୍ଡଳରେ
ପ୍ରକାଶିତ ହୋଇଥାନ୍ତି ଯେମନ୍ତ ରୂପରେ ।
ସେହିପରି ପୋପପୁରେ ବୃନ୍ଦାବନେ ଆସି
ଆବିର୍ଭୂତ ହୋଇଛନ୍ତି ପ୍ରଭୁ ବ୍ରହ୍ମରାଶି ।
ସମସ୍ତ ପୁରୁଷ ତାଙ୍କ ଅଂଶରେ ଉତ୍ପନ୍ନ
କେବଳ ସେହି ଅଟନ୍ତି ସ୍ୱୟଂ ଭଗବାନ ।
ତ୍ରେତୟା ଯୁଗରେ ରାମ ଅବତାର ହେଲେ
ବ୍ରହ୍ମାଙ୍କ ଶାପରେ ଆତ୍ମକଥା ବିସ୍ମରିଲେ ।
ଏବେ ହୋଇଛନ୍ତି ନିଜେ କୃଷ୍ଣ ଅବତାର
ଅନିରୁଦ୍ଧ ଅଟେ ତାଙ୍କ ପୁତ୍ରର କୁମର ।

କନ୍ଦର୍ପ ପ୍ରଦ୍ୟୁମ୍ନରୂପେ ହେଲେ ଉତପତ୍ତି
ତାଙ୍କର ଏ କୁମରଟି ନିଜେ ପ୍ରଜାପତି ।
ବାଣାସୁରକୁ ଏ କଥା ହୋଇ ନାହିଁ ଜଣା
ସେ ସକାଶୁ ତାର ବୁଦ୍ଧି ହେଉଅଛୁ ବଣା ।
ଅନିରୁଦ୍ଧ ସଙ୍ଗେ ଯୁଦ୍ଧ କରିବାକୁ ଗଲା
ମୋହର ମନରେ ତହୁଁ ସନ୍ଦେହ ଜନ୍ମିଲା ।
ତା ପଛେ କାର୍ତ୍ତିକେୟଙ୍କୁ ପଠାଇ ଦେଲି
ମରଣ ମୁଖରୁ ତାକୁ ଉଦ୍ଧରିବେ ବୋଲି ।
ସ୍କନ୍ଦ ଅନିରୁଦ୍ଧଙ୍କର ଯୁଦ୍ଧକୁ ଯା ତୁମ୍ଭେ
ଭାଙ୍ଗିଲା ଉଦ୍ଧମ ହେଲା ବୋଲୁଅଛୁ ଆମ୍ଭେ ।
ଏବେ ଏକାଦଶ ରୁଦ୍ର ଅଷ୍ଟ ଭଇରବ
ଅଷ୍ଟବସୁ ସହିତରେ ଇନ୍ଦ୍ର ଆଦି ସର୍ବ ।
ଦ୍ୱାଦଶ ଆଦିତ୍ୟ ସ୍କନ୍ଦ ବାଣ ଆଦି କରି
ସମସ୍ତେ ଅନିରୁଦ୍ଧଙ୍କୁ ସ୍କନ୍ଧେ ଯିବେ ହାରି ।
ଅଳ୍ପଦିନ ପରେ କୃଷ୍ଣ ବଳରାମ ଆଦି
ଯୁଦ୍ଧକୁ ଆସିବେ ନିଜ ସଇନ୍ୟ ସମ୍ବାଦି ।
କୃଷ୍ଣଙ୍କ ହସ୍ତରେ ଯେବେ ସୁଦର୍ଶନ ଥିବ
ତାହାକୁ କେ ଅବା ଯୁଦ୍ଧ କାଳରେ ଜିଣିବ ।
ତୁମ୍ଭେମାନେ ଯତନରେ ବାଣାର ଜୀବନ
ରକ୍ଷା କରି ଥାଅ ସର୍ବେ ହୋଇ ସାବଧାନ ।
ନ ହେଲେ ବାଣାଙ୍କ ଲାଗି ପୃଥ୍ୱୀ ଧ୍ୱଂସ ଯିବ
କୃଷ୍ଣ ବଳରାମ କ୍ରୋଧ କେବା ନିବାରିବ ।
ଏହିଠାରେ ଉପଦେଶ ସଦାଶିବଙ୍କର
ସମାପ୍ତ କରିଲା ଷେଞ୍ଚମୋହନ ଗୀତର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କର ଗଣେଶଙ୍କ ପ୍ରତି ହିତଉପଦେଶ ଦାନ କଥନେ ନାମ ସପ୍ତଦଶୋତ୍ତରଶତତମୋଽଧ୍ୟାୟଃ ।

—✳✕✳—

## ଅ ଷ୍ଟା ଦ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

### ବାଣାସୁର ପ୍ରଭୃତିଙ୍କର ଶିବଙ୍କ ସହିତ ଯୁଦ୍ଧ ମନ୍ତ୍ରଣା

ଗଣେଶଙ୍କୁ ବୁଝାଇଣ ପ୍ରଭୁ ତ୍ରିଲୋଚନ
ଅନ୍ତଃପୁରେ ପରବେଶ ହୋଇଲେ ବହନ ।
ରମ୍ୟ ରତ୍ନ ସିଂହାସନ ଉପରେ ବସିଲେ
ଦେଖି ତାଙ୍କୁ ଦେବାଗଣ ଆସନୁ ଉଠିଲେ ।
ସମସ୍ତେ ପ୍ରଣାମ କରି ଅନୁମତି ପାଇ
ନିଜ ନିଜ ସ୍ଥାନେ ଉପବିଷ୍ଟ ହେଲେ ଯାଇ ।
ଏହି ସମୟରେ ସ୍କନ୍ଦ ବାଣା ଗଣେଶ୍ୱର
ବୀରଭଦ୍ର ନନ୍ଦୀ ମହାକାଳ ମହାବୀର ।
ଅଷ୍ଟ ଭଇରବଗଣ ଆସିଣ ବସିଲେ
ମନ୍ତ୍ରଣା କରିବା ପାଇଁ ସଭା ଆରମ୍ଭିଲେ ।
ଏଥୁ ଅନନ୍ତରେ ମଣିଭଦ୍ର ଦ୍ୱାରପାଳ
ସସମ୍ଭ୍ରମେ ଉପସ୍ଥିତ ହୋଇ ତତକାଳ ।
ବୋଇଲେ ଆହେ ଈଶ୍ୱର ଯାଦବ ସଇନ୍ୟ
ଶୋଣିତ ପୁରକୁ ଆସି କଲେ ଆକ୍ରମଣ ।
କୃଷ୍ଣ ବଳରାମ ଶାମ୍ବ ପ୍ରଦ୍ୟୁମ୍ନ ଅର୍ଜୁନ
ସାତ୍ୟକି ଅକ୍ରୂର ଭୀମ ରାଜା ଉଗ୍ରସେନ ।
ଉଦ୍ଧବ ଜୟନ୍ତ ଆଦି ମହାବୀରମାନେ
ନାନାବିଧ ଅସ୍ତ୍ର ଶସ୍ତ୍ର ଘେନି ସାବଧାନେ ।
ଲକ୍ଷେ ରଥ ତିନିକୋଟି ମତ୍ତ ଦନ୍ତାବଳ
ଶତକୋଟି ଅଶ୍ୱ ସ୍ୱର ଲକ୍ଷ ମହାମଲ୍ଲ ।
ଖଡ୍ଗ ଶଳ କୁନ୍ତଧାରୀ ତ୍ରିଲକ୍ଷ ପଦାତି
ସଙ୍ଗେ ଘେନି ମହା ଆଡ଼ମ୍ବରେ ଆସିଛନ୍ତି ।
ପାର୍ଷଦଗଣ ସହିତେ ରୁକ୍ମିଣୀ ରମଣ
ଧାରଣ କରି ହସ୍ତରେ ଚକ୍ର ସୁଦର୍ଶନ ।
ଲଙ୍କାକୁ ଯେ ରୂପେ ପୂର୍ବେ ରାମ ବେଢ଼ିଥିଲେ
ସେପରି ଶୋଣିତ ପୁର ବେଷ୍ଟନ ସେ କଲେ ।
ଅଲଙ୍ଘ୍ୟ ଅଟଇ ଯେଉଁ ଅନଳ ପ୍ରାକାର
ଗରୁଡ଼ ତହିଁରେ ଢାଳି ସ୍ୱର୍ଗ ଗଙ୍ଗାନୀର ।
ସହଜରେ ଅନଳକୁ ନିର୍ବାପିତ କଲେ
ଲାଙ୍ଗଳରେ ବଳଦେବ ପ୍ରାକାର ଭାଙ୍ଗିଲେ ।
ଉଦ୍ୟାନରେ ଥିବା ସବୁ ବୃକ୍ଷ ଭାଙ୍ଗିଦେଇ
ପୁରେ ପ୍ରବେଶିଲେ ଦ୍ୱାରପାଳଙ୍କୁ ତଡ଼ାଇ ।

ଏହା ଶୁଣି ମହାଦେବ ସେ ସଭା ମଧ୍ୟରେ
କହିଲେ ସମସ୍ତ ସଭ୍ୟ ଆଗେ ସେ କାଳରେ ।
ବୋଇଲେ ହେ ସେନାପତିମାନେ ତୁମ୍ଭେ ଶୁଣ
ଶ୍ରୀକୃଷ୍ଣ ଅଟନ୍ତି ସାକ୍ଷାତରେ ଭଗବାନ ।
ସୁଦର୍ଶନ ଚକ୍ର ସେହୁ ଧରିଛନ୍ତି ଯେବେ
କ୍ଷଣକରେ ସମସ୍ତଙ୍କୁ ସଂହାରି ପାରିବେ ।
ନିଖିଳ ବିଶ୍ୱକୁ ଭାଙ୍ଗିବାକୁ ସେ ସମର୍ଥ
ତାହାଙ୍କ ପକ୍ଷେ ଅନଳପୁର କେତେ ମାତ୍ର ।
ସେ ସକାଶୁ ତୁମ୍ଭେ ସର୍ବେ ବାଣରକ୍ଷା ପାଇଁ
ସମରକୁ ସଜହୁଅ କହୁଅଛୁ ମୁହିଁ ।
ଲମ୍ବୋଦରଙ୍କୁ ସ୍ମରଣା କରି ବାଣା ମନେ
ସମର ସ୍ଥଳକୁ ଯାଅ ଅତି ସାବଧାନେ ।
ଦକ୍ଷିଣରେ କାର୍ତ୍ତିକେୟ ଆଗେ ଗଣେଶ୍ୱର
ବାମେ ଭଇରବ ରୁଦ୍ରଗଣ ନନ୍ଦୀଶ୍ୱର ।
ମହାକାଳ ବୀରଭଦ୍ର ଆଦିକରି ଯେତେ
ଅଛନ୍ତି ସେମାନେ ମଧ୍ୟ ଯାଆନ୍ତୁ ସମସ୍ତେ ।
ଊର୍ଦ୍ଧ୍ୱେ ମହାକାଳୀ ଦୁର୍ଗା କୋଟରୀ ଚାମୁଣ୍ଡା
ରହନ୍ତୁ ସେ ଯାହା ହସ୍ତେ ଧରି ଶରଖଣ୍ଡା ।
ଆଗୋ ଦୁର୍ଗେ ତୁମ୍ଭେ ଅଟ ଜଗତନନ୍ଦିନୀ
ଶ୍ରୀକୃଷ୍ଣ ଶକତି ବିଷ୍ଣୁମାୟା ସନାତନୀ ।
ସୁଦର୍ଶନ ଚକ୍ରମୁଖୁ ବାଣାସୁର ପ୍ରାଣ
ରକ୍ଷାକରି ଯତନରେ ଘେନ ମୋ ବଚନ ।
ସମସ୍ତଙ୍କଠାରୁ ବାଣ ଅଟେ ମୋର ପ୍ରିୟ
ସେ ସକାଶୁ ତୁମ୍ଭେ ତାରି ହିତେ ମନ ଦିଅ ।
ଶିବଙ୍କ ବଚନ ଶୁଣି ଦୁର୍ଗା ହସି କରି
ବାଣକୁ ବୋଇଲେ ଶୁଣ ଆହେ ଦଣ୍ଡଧାରୀ ।
ମଣିରତ୍ନ ମୁକ୍ତାଫଳ ହୀରକ ସହିତେ
ଉତ୍କୃଷ୍ଟ ପଦାର୍ଥ ରଖିଅଛ ଘରେ ଯେତେ ।
ତାହା ସହିତରେ ଉଷା କୁମାରୀକୁ ନେଇ
ଶ୍ରୀକୃଷ୍ଣଙ୍କ ପାଶେ ଦେଇ ଆସ କହୁଥାଇ ।
ତେମନ୍ତ ହେଲେ ସୁଖରେ ରାଜ୍ୟରେ ରହିବ
କାହାଠାରୁ ହେଲେ ଭୟ ଭ୍ରାନ୍ତି ନ ପାଇବ ।
ଯେ ଅଛନ୍ତି ଆତ୍ମାରୂପେ ସକଳ ଅଂଶରେ
ଯୁଦ୍ଧ କରିବ କି ଅବା ତାହାଙ୍କ ସଙ୍ଗରେ ।
ଯେ ରୁଣ୍ଡିହେବା ମାତ୍ରକେ ବ୍ରହ୍ମା ସଦାଶିବ
କ୍ଷଣେ ମାତ୍ର ରକ୍ଷା କରି ନ ପାରିବେ ଜୀବ ।
ତାଙ୍କ ସହିତରେ ଯୁଦ୍ଧ କରିବା ଉଚିତ
ନୁହଇ କଦାପି ଆହେ ବାଣ ବଳବନ୍ତ ।
ସୁଦର୍ଶନ ଚକ୍ର ତେଜେ ବ୍ରହ୍ମା ଶିବ କେବେ
ରହି ନ ପାରିବେ ମନେ ଧୈର୍ଯ୍ୟ ଧରି ଲବେ
ସ୍ୱଭାବରେ ମୁଁ ଅଟଇ ସକଳ ଜନନୀ
ସମସ୍ତଙ୍କଠାରେ ସ୍ନେହ କରଇ ସେ ଘେନ ।
ଆବର ମୂରତି ଭେଦେ ନାନାରୂପ ଧରେ
ମହାଲକ୍ଷ୍ମୀ ବୋଲାଇଛି ବଇକୁଣ୍ଠ ପୁରେ ।
ଗୋଲୋକେ ରାଧିକା ବ୍ରହ୍ମଲୋକେ ସରସ୍ୱତୀ
ଶିବଲୋକେ ହିମାଳୟ ଦୁହିତା ପାର୍ବତୀ ।
ଏହିପରି ନାନାବିଧ ସମ୍ବନ୍ଧ ମୋହର
ଶ୍ରୀକୃଷ୍ଣ ସହିତ କହିଅଛୁ ମନେ କର ।
ଆହେ ସଦାଶିବ ତୁମ୍ଭେ ନିତ୍ୟ ସନାତନ
ବିଚାରି କହ ଏଥିର ଉଚିତ ବିଧାନ ।
ଏମନ୍ତ ବୋଲି ମଉନ ହେଲେ ମହାମାୟା
କ୍ଷେତ୍ରବାସୀ ବୋଲେ ଦେବୀ କରି ମୋରେ ଦୟା ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବାଣାସୁର ପ୍ରଭୃତିଙ୍କର ଶିବଙ୍କ
ସହିତ ଯୁଦ୍ଧ ମନ୍ତ୍ରଣା କଥନ ନାମ ଅଷ୍ଟାଦଶୋତ୍ତରଶତତମୋଽଧ୍ୟାୟଃ ।

—:*:—

## ଊ ନ ବିଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ବଳଦୈତ୍ୟର ଆଗମନ ଓ ଶ୍ରୀକୃଷ୍ଣଙ୍କ ପ୍ରତି ସ୍ତୁତିପଠନ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦ
କହୁଅଛୁ ଶୁଣ ଏବେ ପୁରାଣ ସମ୍ବାଦ ।
ଦୁର୍ଗାଙ୍କ ବଚନ ଶୁଣି ନନ୍ଦୀଗଣେଶ୍ୱର
କାର୍ତ୍ତିକେୟ ମହାକାଳ ଆଦି ସବୁ ବୀର ।

ପ୍ରଶଂସା କରି ତାହାଙ୍କୁ ବୋଇଲେ ଯଥାର୍ଥ
ବଚନ କହିଲ ତୁମ୍ଭେ ତ୍ରିଭୁବନ ମାତ ।
ଶିବ ବୋଇଲେ ଗୋ ଦେବୀ ଶ୍ରୀକୃଷ୍ଣ ସଙ୍ଗରେ
ଯୁଦ୍ଧ କରିବା ଉଚିତ ନୁହେ ଅବଶ୍ୟରେ ।
ବାଣାସୁର ଏବେ ଉଷାକନ୍ୟା ଘେନିଯାଉ
ଶ୍ରୀକୃଷ୍ଣଙ୍କୁ ସମର୍ପଣ କରି ସୁଖେ ରହୁ ।
ନୋହିଲେ ନିଶ୍ଚୟ ଯୁଦ୍ଧେ ପରାସ୍ତ ହୋଇବ
କେହି ହେଲେ ତାକୁ ରକ୍ଷାକରି ନ ପାରିବ ।
ରଣଶ୍ରଦ୍ଧା ଥିଲେ ଆଗଭର ହୋଇ ସେହି
ଯାଉ ପଛେ ଆମ୍ଭେମାନେ ଯିବା ସଜ ହୋଇ
ଏମନ୍ତ ବୋଲି ବାଣକୁ କହିଲେ ବହୁତ
ତାହା ସେ କଦାପି ନ ଘେନିଲା ନିଜ ଚିତ୍ତ ।
ଏହି ସମୟରେ ବଳି ସ୍ୱର୍ଣ୍ଣରଥେ ବସି
ପ୍ରବେଶ ହୋଇଲେ ତହିଁ ପାତାଳରୁ ଆସି ।
ବଳବନ୍ତ ସାତଗୋଟି ଦୈତ୍ୟ ତା ପାଶରେ
ଚାମର ପକାଉଛନ୍ତି ବସି ହରଷରେ ।
ଶିବ କାର୍ତ୍ତିକେୟ ଦୁର୍ଗା ଗଣେଶଙ୍କୁ ଦେଖି
ରଥରୁ ଓହ୍ଲାଇ ବେଗେ ହୋଇ ମହାସୁଖୀ ।
ପ୍ରଣାମ କରିଣ କରଯୋଡ଼ି ଉଭା ହେଲା
ମଧୁର ବଚନ କହି ମନ ହରିନେଲା ।
ଶଙ୍କର ବୋଇଲେ ସଉଭାଗ୍ୟ ଏ ଆମ୍ଭର
ସମାଗମ ହେଲା ଯାହା ବିଷ୍ଣୁଭକ୍ତଙ୍କର
ସକଳ ବର୍ଣ୍ଣରେ ପୂଜ୍ୟ ଅଟଇ ବ୍ରାହ୍ମଣ
ବୈଷ୍ଣବ ହୋଇଥିଲେ ସେ ଅଧିକଟି ଜାଣ ।
ବଇଷ୍ଣବଠାରୁ ବଳି ପବିତ୍ର ଜଗତେ
ନୁହନ୍ତି ପ୍ରଧାନ ପୁଣ୍ୟତୀର୍ଥ କ୍ଷେତ୍ର ଯେତେ ।
ଏହିରୂପେ ଶିବଙ୍କର ବଚନକୁ ଶୁଣି
କହିଲା ବିନୟ ଭାବେ ବଳି ତାଙ୍କୁ ପୁଣି ।
ବୋଇଲା ଆହେ ଈଶ୍ୱର ତୁମ୍ଭ ପ୍ରସାଦରେ
ପରମ ଐଶ୍ୱର୍ଯ୍ୟ ଲଭିଥିଲି ତ୍ରିପୁରେ ।
ଏବେ ମୋହଠାରୁ ଶ୍ରେଷ୍ଠଭକ୍ତ ଯେ ବାସବ
ତାଙ୍କୁ ଦେଇଅଛ ମନେ ବହି ପ୍ରୀତିଭାବ ।
ସକଳ ସ୍ୱରୂପ ତୁମ୍ଭେ ସର୍ବ ଅଧୀଶ୍ୱର
କେ ଜାଣି ପାରିବ ଅବା ମହିମା ତୁମ୍ଭର ।
ମୋହର ସୁତ ବାଣାକୁ କହ ନିବର୍ତ୍ତାଇ
ଯୁଦ୍ଧ ନ କରୁ ଶ୍ରୀକୃଷ୍ଣ ସଙ୍ଗତରେ ଯାଇ ।

ଏମନ୍ତ ବୋଲି ଶିବଙ୍କୁ ନମସ୍କାର କଲା
ପୁତ୍ରକୁ ପ୍ରଶଂସା କରି ତହୁଁ ଚଳିଗଲା ।
ଶ୍ରୀକୃଷ୍ଣଙ୍କ ସମୀପରେ ପରବେଶ ହୋଇ
ଦେଖିଲା ବସିଅଛନ୍ତି ଜଗତ ଗୋସାଇଁ ।
ଦ୍ୱାଦଶ ଆଦିତ୍ୟ ପ୍ରାୟେ ହସ୍ତେ ତାହାଙ୍କର
ଶୋଭା ପାଉଅଛି ସୁଦର୍ଶନ ଅସ୍ତ୍ରବର ।
ତାଙ୍କୁ ଦେଖି ପ୍ରଦକ୍ଷିଣ କରି ପାଦତଳେ
ଦଣ୍ଡବତ ହୋଇ ପୁଣି ଉଠି ତତକାଳେ ।
ଶୁକ୍ର ଦେଇଥିବା ଏକାଦଶାକ୍ଷର ମନ୍ତ୍ର
ଜପ କଲା କ୍ଷଣେଯାଏ ହୋଇ ସ୍ଥିରଚିତ୍ତ ।
ସେ ଅନ୍ତେ ବୋଇଲା ଦେବ ପୂର୍ବକାଳେ ମୁହିଁ
ଦଣ୍ଡିତ ହୋଇଲି ତୁମ୍ଭ ସ୍ୱରୂପକୁ ଚାହିଁ ।
ମୋଠାରୁ ଅଧିକ ଭକ୍ତ ଯେହିଁ ସୁନାସୀର
ତାହାଙ୍କୁ ଦେଇ ସକଳ ସମ୍ପଦ ମୋହର ।
ଶିବଭକ୍ତ ବାଣ ଅଟେ ମୋହର ତନୟ
ତାହାର ଜୀବନ ରକ୍ଷା କର ଦୟାମୟ ।
ବଳକାରେ ଅନିରୁଦ୍ଧ ତା ସୁତା ହରିଲେ
ପୁଣି ତାର ପ୍ରାଣ ନାଶିବାକୁ ବାହାରିଲେ ।
କାର୍ତ୍ତିକେୟ ଯେବେ କରି ନ ଥାନ୍ତେ ବାରଣ
ନିଶ୍ଚୟ ସେ ଘେନିଥାନ୍ତେ ବାଣର ଜୀବନ ।
ପୌତ୍ରକୁ ନିବୃତ୍ତ ନ କରାଇ ତୁମ୍ଭେ ପୁଣି
ଆସିଅଛ ମାରିବାକୁ ହୋଇ ଶସ୍ତ୍ରପାଣି ।
ସକଳ ଆତ୍ମାରେ ସ୍ଥିତ ଅଟ ତ ଆପଣ
କିରୂପେ କରୁଛ ପକ୍ଷପାତ କର୍ମମାନ ।
ଅମୋଘ ଅଟଇ ସୁଦର୍ଶନ ଅସ୍ତ୍ରବର
ତାକୁ ଘୁଞ୍ଚାଇବା ପାଇଁ ଶକତି କାହାର ।
ସେରୂପେ ଆପଣ ସର୍ବଦେବ ଅଧିପତି
ଆପଣଙ୍କୁ ଧରିହେବ କାହାର ଶକତି ।
ରଜ ସତ୍ତ୍ୱ ତମଗୁଣେ ବ୍ରହ୍ମା ବିଷ୍ଣୁ ଶିବ
ସୃଷ୍ଟି ଚଳାଇବା ପାଇଁ ହୋଇଲେ ଉଦ୍ଭବ ।
କାଳାଗ୍ନି ରୁଦ୍ର ଯେ ବିଶ୍ୱ ସଂହାରକ ସେହି
ଶଙ୍କର ଅଂଶରୁ ଘେନ ଜାତ ଛନ୍ତି ହୋଇ ।
ଆପଣ ଅଟ ନିର୍ଗୁଣ ପ୍ରକୃତି ରୂପର
ପରମାତ୍ମା ସର୍ବଶକ୍ତି ସ୍ୱରୂପ ଈଶ୍ୱର ।
ତୁମ୍ଭେ ଅଟ ସର୍ବସାକ୍ଷୀ ସକଳ ଆଶୟ
ତୁମ୍ଭ ବିଧାନରେ ଦେହ ହୁଅଇ ଅଥୟ ।

ନିର୍ଗୁଣା ପ୍ରକୃତି ଦୁର୍ଗାଦେବୀ ସନାତନୀ
ଅଟନ୍ତି ଆପଣାଙ୍କର ମାୟା ସ୍ୱରୂପିଣୀ ।
ବାସୁ ବୋଲନ୍ତି ଯେ ମହାବିରାଟ ପୁରୁଷ
ଆପଣ ବୋଲାଅ ନିଜେ ତ ତାଙ୍କର ଅଂଶ ।
ସେ ସକାଶୁ ବାସୁଦେବ ନାମଟି ତୁମ୍ଭର
ତିନି ଭୁବନ ମଧ୍ୟରେ ହୋଇଛି ପ୍ରଚାର ।
ଚନ୍ଦ୍ର ସୂର୍ଯ୍ୟ ହୁତାଶନ କୁବେର ବରୁଣ
ବାସବ ପବନ ଯମଆଦି ଦେବଗଣ ।
ତୁମ୍ଭର ଅଂଶ କଳାରେ ହୋଇଛନ୍ତି ଜାତ
ସକଳ କାରଣ ତୁମ୍ଭେ ଅଟ ଜଗନ୍ନାଥ ।
ନବ ଜଳଧର ଶ୍ୟାମସୁନ୍ଦର ମୂରତି
ତହିଁରେ ପୀତବସନ ସୁଶୋଭିତ ଅତି ।
ଈଷତ ହାସ୍ୟ ମଧୁର ଶ୍ରୀମୁଖ ମଣ୍ଡଳ
କର୍ଣ୍ଣଯୁଗେ ବିରାଜିତ ମକର କୁଣ୍ଡଳ ।
ଶରତ ପଙ୍କଜ ପତ୍ର ସଦୃଶ ଲୋଚନ
କୋଟି କନ୍ଦର୍ପ ସୁନ୍ଦର ରମ୍ୟ ଅପଘନ ।
ଧ୍ୟାନାସାଧ୍ୟ ଦୁରାରାଧ୍ୟ ବ୍ରହ୍ମେଶ ବନ୍ଦିତ
ସିଦ୍ଧମୁନି ବ୍ରହ୍ମର୍ଷି ଯୋଗୀଜନ ସ୍ତୁତ ।
ନିର୍ଲିପ୍ତ ନିରୀହ ନିତ୍ୟରୂପ ସନାତନ
ନମସ୍ତେ ଶ୍ରୀବାସୁଦେବ ନମୋ ଜନାର୍ଦ୍ଦନ ।
ନମସ୍ତେ ଜଗତ କର୍ତ୍ତା ପାଳନ ପୁରୁଷ
ସଂହାର କରି ନିମିଷେ ପୁଣି ଏହି ବିଶ୍ୱ ।
ବିରାଟ ପୁରୁଷ ଆଦି ଅନ୍ତ ନାହିଁ ଯାର
ରୂପ ବର୍ଣ୍ଣିବାକୁ ଶକ୍ତି ଅଛି ବା କାହାର ।
ସ୍ୱୟମ୍ଭୁ ଶଙ୍କର ଶେଷଦେବ ସରସ୍ୱତୀ
ତୁମ୍ଭ ସ୍ତୁତି କରିବାକୁ ଅକ୍ଷମ ଅଟନ୍ତି ।
ଅଜ୍ଞାନ ଅଟଇ ମୁହିଁ ସାମାନ୍ୟ ପୁରୁଷ
ତୁମ୍ଭଙ୍କୁ ବର୍ଣ୍ଣିବା ପାଇଁ କାହିଁ ମୋ ସାହାସ ।
ଏହିରୂପେ ସ୍ତୁତିକରି ବିରୋଚନ ସୁତ
ଶ୍ରୀକୃଷ୍ଣଙ୍କ ଆଗେ ଉଭା ହେଲେ ଯୋଡ଼ି ହସ୍ତ ।

ତା ଶୁଣି ଶ୍ରୀକୃଷ୍ଣ ଅତି ସନ୍ତୁଷ୍ଟ ହୋଇଲେ
ମଧୁରତର କରୁଣ ବଚନ କହିଲେ ।
ବୋଇଲେ ହେ ବତ୍ସ ତୁମ୍ଭେ ଭୟ ତ୍ୟାଗକରି
ସ୍ୱସ୍ଥରେ ବାହୁଡ଼ି ରହି ଭକତି ଆଚରି ।
ଆମ୍ଭ ବର ପ୍ରସାଦରେ ତୁମ୍ଭର କୁମର
ହୋଇବ ନିଶ୍ଚୟ ଲୋକେ ଅଜର ଅମର ।
କେବଳ ଯା ମୂର୍ଖପଣେ କରୁଅଛି ଗର୍ବ
ସମୂଳରେ ତାହା ଆଜ କରିବି ମୁଁ ଖର୍ବ ।
ପ୍ରହ୍ଲାଦ ଭକ୍ତକୁ ପୂର୍ବେ ଦେଇଛି ମୁଁ ବର
ନ ମାରିବି କେବେ ମୁହିଁ ବଂଶକୁ ତାହାର ।
ସେ ସକାଶୁ ବାଣାସୁର ଦର୍ପ ଭଙ୍ଗକରି
ମୃତ୍ୟୁଞ୍ଜୟ ଜ୍ଞାନ ତାକୁ ଦେବି ମୁଁ ବିଚାରି ।
ସାମବେଦ ଉକ୍ତ ଯେଉଁ ସ୍ତୋତ୍ରଆଦି ତୁମ୍ଭେ
ପଢ଼ିଲ ତା ଶୁଣି ତୃପ୍ତ ହୋଇଅଛୁ ଆମ୍ଭେ ।
ପୂର୍ବକାଳେ ଏ ସ୍ତୋତ୍ରକୁ ବ୍ରହ୍ମା ପ୍ରଜାପତି
ସନତ୍କୁମାରଙ୍କୁ ଦେଲେ ବହି ମନେ ପ୍ରୀତି ।
ଗଙ୍ଗାତଟେ ମହାଦେବ ଗୌତମ ମୁନିଙ୍କୁ
ଦେଇଥିଲେ ମଧ୍ୟ ଏହି ପବିତ୍ର ସ୍ତୋତ୍ରକୁ ।
ଏ ମହାସ୍ତୋତ୍ରକୁ ପୂଜାକାଳେ ଯେ ପଢ଼ଇ
କୋଟିଜନ୍ମ ପାପରୁ ସେ ମୁକତି ଲଭଇ ।
ବିପଦ ଖଣ୍ଡନକାରୀ ଦୁଃଖ ବିନାଶନ
ଅଟଇ ଏ ସ୍ତୋତ୍ର ଜରା ମୃତ୍ୟୁ ନିବାରଣ ।
ବ୍ରତ ଉପବାସ ତପ କଲାବେଳେ ଯେବେ
ପଠନ କରିବ ଏହି ସ୍ତୋତ୍ର ଭକ୍ତିଭାବେ ।
ତେମନ୍ତ ହେଲେ ଅଶେଷ ଫଳକୁ ପାଇବ
ଅନ୍ତଃକାଳେ ବୈକୁଣ୍ଠରେ ସୁଖରେ ରହିବ ।
ଏମନ୍ତ କହି ଶ୍ରୀକୃଷ୍ଣ ହୋଇଲେ ମଉନ
ବିଦାୟ ହୋଇଣ ବଳି ଗଲା ନିଜ ସ୍ଥାନ ।
ବଳିକୃତ ସ୍ତୋତ୍ର ସମାପତ ଏହିଠାରେ
ବୋଇଲା କ୍ଷେତ୍ରମୋହନ କହଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବଳିଦୈତ୍ୟର ଆଗମନ ଓ ଶ୍ରୀକୃଷ୍ଣଙ୍କ ପ୍ରତି ସ୍ତୁତିପଠନ କଥନେ ନାମ ଊନବିଂଶୋତ୍ତରଶତତମୋଽଧ୍ୟାୟଃ ।

—o×o—

# ଷଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ଶ୍ରୀକୃଷ୍ଣଙ୍କ ସହିତ ବାଣାସୁରର ଯୁଦ୍ଧ ଓ ବାଣାର ଦର୍ପ ଗଞ୍ଜନ

ଏଥୁଅନ୍ତେ ବଳରାମ ଶ୍ରୀକୃଷ୍ଣ ଉଦ୍ଧବ
କରିବାକୁ ବାଣାସୁର ସଙ୍ଗତେ ଆହବ ।
ମନ୍ତ୍ରଣା ସଭାରୁ ଏକ ଦୂତ ପଠାଇଲେ
ବାଣାସୁର ପାଶେ ଯାଅ ବୋଲି ଆଜ୍ଞାଦେଲେ
ଆଦେଶ ପ୍ରମାଣେ ଦୂତ ବେଗହୋଇ ଗଲା
ଅନଳ ପୁର ମଧ୍ୟରେ ପ୍ରବେଶ ହୋଇଲା ।
ଯେଉଁଠାରେ ଶିବ ଦୁର୍ଗା ସ୍କନ୍ଦ ଗଣେଶ୍ୱର
ଥିଲେ ସେଠାକୁ ଗମନ କରଣ ସତ୍ୱର ।
ଦଣ୍ଡବତ ହୋଇ କର ଯୋଡ଼ି ବିନୟରେ
ଜଣାଇଲେ ଶ୍ରୀକୃଷ୍ଣଙ୍କ ସମ୍ବାଦକୁ ଧୀରେ ।
ବୋଇଲେ ଶୁଣିମା ହେଉ ହେ ପାର୍ବତୀପତି
ବାଣାସୁରକୁ ଶ୍ରୀକୃଷ୍ଣ ଡକାଇ ଅଛନ୍ତି ।
କହିଛନ୍ତି ଯେବେ ଯୁଦ୍ଧ ଇଚ୍ଛା ଅଛି ତୋର
ଅସ୍ତ୍ର ଶସ୍ତ୍ର ଘେନ ବେଗେ ହୁଅ ଆଗଭର ।
ନୋହିଲେ ଦୁହିତା ସଙ୍ଗେ ଜାମାତାକୁ ଧରି
ଶରଣ ପଶ ଆମ୍ଭର ପାଦେ ଆସିକରି ।
ଯୁଦ୍ଧକୁ ଡାକିବା ବେଳେ ହୁଏ ଯେ କାତର
ନରକେ ପଡ଼ନ୍ତି ସପ୍ତ ପୁରୁଷ ତାହାର ।
ସେଥିପାଇଁ ବୋଲୁଅଛି ବେଗ ହୋଇ ଆସ
ଅଥବା ପୁତ୍ରବଧୂଙ୍କୁ ଦିଅ ଆମ୍ଭ ପାଶ ।
ଏହିରୂପେ ଦୂତଠାରୁ ଶୁଣିଣ ପାର୍ବତୀ
ବାଣାକୁ ବୋଇଲେ ଆହେ ଦୈତକୁଳପତି ।
ଧନ ରତ୍ନ ବସ୍ତ୍ର ଆଦି ଯଉତୁକ ଭୂଲେ
ଜାମାତା ସୁତାଙ୍କୁ ସଙ୍ଗେ ଘେନ ତତକାଳେ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମେ ପଶିଲେ ଶରଣ
ସକଳ ଶୁଭ ତୁମ୍ଭର ହୋଇବଟି ଜାଣ ।
ଭକତ ବତ୍ସଳ ପ୍ରଭୁ ବସୁଦେବ ସୁତ
ତୁମ୍ଭର ଭକ୍ତି ଦେଖିଲେ ହେବେ ତୋଷଚିତ୍ତ ।
ଏରୂପେ ଶୁଣି ପାର୍ବତୀ ଦେବୀଙ୍କ ବଚନ
ପ୍ରଶଂସାକଲେ ତାହାଙ୍କୁ ସଭାସଦଗଣ ।
ଗର୍ବିତ ଭାବରେ ବାଣାସୁର ସେ କଥାକୁ
ନ ଶୁଣି ବାହାର ହେଲା ଯୁଦ୍ଧ କରିବାକୁ ।

ଶଙ୍କର ପାର୍ବତୀ ପାଦେ ନମସ୍କାର କରି
ରଥେ ବସି ଗଲା ହସ୍ତେ ଧନୁଶର ଧରି ।
ତା ପଛରେ କୋଟି କୋଟି ଦୈତ୍ୟ ମହାବଳ
ଗଲେ ଶସ୍ତ୍ର ଅସ୍ତ୍ର ଧରି ଲଗାଇ ଗହଳ ।
କୁଷ୍ମାଣ୍ଡ ନିକୁମ୍ଭ କୁମ୍ଭ କୂପକର୍ଣ୍ଣ ବୀର
ବିକଟାସ୍ୟ ଆଦି ଯେତେ ବଳିଷ୍ଠ ଅସୁର ।
ସମସ୍ତେ ଯେ ଯାହା ରଥେ ବସି ବାହାରିଲେ
ତାହାଙ୍କ ସଙ୍ଗରେ ରୁଦ୍ରଗଣ ଚାଲିଗଲେ ।
ଉନ୍ମତ୍ତ ଭୈରବ ମହା ଭଇରବ ଆଦି
ଚଳିଲେ ଯେ ଯାହା ସୈନ୍ୟଗଣଙ୍କୁ ସମ୍ପାଦି ।
ଆବର କାଳାଗ୍ନି ରୁଦ୍ର ସଙ୍ଗେ ଏକାଦଶ
ରୁଦ୍ର ବାହାରିଲେ ଧରି ଭୟଙ୍କର ବେଶ ।
ଉଗ୍ରଚଣ୍ଡା ଚଣ୍ଡେଶ୍ୱରୀ ଚଣ୍ଡିକା ଚାମୁଣ୍ଡା
ପ୍ରଚଣ୍ଡାଦି ଅଷ୍ଟଦେବୀ ଧରି ଢାଲ ଖଣ୍ଡା ।
ଖଡ଼୍ଗ ଖର୍ପର ଧାରଣୀ କୋଟରୀଙ୍କୁ ଆଗେ
ଚଳାଇଣ ଗଲେ ଯୁଦ୍ଧ କରିବାକୁ ବେଗେ ।
ଇନ୍ଦ୍ରାଣୀ ବୈଷ୍ଣବୀ ଶାନ୍ତା ବାରାହୀ କୌମାରୀ
ମାହେଶ୍ୱରୀ ଆଦି ଶକ୍ତିଗଣ ଶସ୍ତ୍ର ଧରି ।
ବାଣାସୁର ସୈନ୍ୟ ସଙ୍ଗେ ସଙ୍ଗେ ଚାଲିଗଲେ
ରଣ ଗୋଳ କରିବାକୁ ଯାଦବଙ୍କ ଭୁଲେ ।
ଆରକ୍ତ ନୟନ ଖଡ଼୍ଗ ଖର୍ପରଧାରିଣୀ
ବିକଟାଳ ମୁଖୀ ଲୋଳଜିହ୍ୱା ତ୍ରିନୟନୀ ।
ମୁଣ୍ଡମାଳା ବିଭୂଷିତା ଦେବୀ ଭଦ୍ରକାଳୀ
ଯୋଗିନୀଗଣଙ୍କୁ ସଙ୍ଗେ ଘେନିଗଲେ ଚାଲି ।
ରତ୍ନ ବିମାନ ଆରୋହି କାର୍ତ୍ତିକେୟ ବୀର
ଗଲେ ହସ୍ତେ ଧରି ଶକ୍ତି ଶୂଳ ଧନୁଶର ।
ତାହାଙ୍କ ପଛରେ ଦେବ ବୃଷଭ ବାହାନ
ତ୍ରିଶୂଳ ଘେନିଣ ଧୀରେ କଲେକ ପ୍ରୟାଣ ।
କେବଳ ପାର୍ବତୀ ଦେବୀ ଗଣେଶଙ୍କୁ ଛାଡ଼ି
ଚାଲିଲେ ସମରେ ସର୍ବେ ହୋଇ ଧାଡ଼ି ଧାଡ଼ି ।
ଆଗଭର ହୋଇ ବାଣାସୁର ସେ କାଳରେ
ଧନୁ ଟଙ୍କାରିଣ ଶର ବନ୍ଧିଲା ସତ୍ୱରେ ।

ନ ସହି ସତ୍ୟାକ ତାହା ରଥକୁ ଧୂଆଇଁ
ଉପସ୍ଥିତ ହେଲେ ବାଣାସୁର ଆଗେ ଯାଇ ।
ତାଙ୍କୁ ଦେଖି ବାଣାସୁର ହୃଦରେ ହସିଲା
ମଞ୍ଜନ ନାମକ ଦିବ୍ୟ ଅସ୍ତ୍ର ପ୍ରହାରିଲା ।
ଅବ୍ୟର୍ଥ ବୈରିମର୍ଦ୍ଦନ ସେ ଅସ୍ତ୍ର ଅଟଇ
ଶତ୍ରୁକୁ ନାଶ କଦାପି ଫେରି ନ ଆସଇ ।
ତାହା ଦେଖିଣ ସାତ୍ୟକି ମସ୍ତକ ନୁଆଇଁ
ବସିଲେ ମସ୍ତକୁ ଧନୁରେ ଥୋଇଦେଇ ।
ନମ୍ରଭାବ ଦେଖି ଅସ୍ତ୍ର ଶିଥିଳ ହୋଇଲା
ମସ୍ତକ ଛୁଇଁ ସମସ୍ତ କେଶ ପୋଡ଼ିଦେଲା ।
ସେ ଅନ୍ତରେ ମହାଘୋର ଗରଜନ କରି
ମିଶିଗଲା ଆକାଶରେ ବିଦ୍ୟୁଲ୍ଲତା ପରି ।
ବାଣାସୁର ପୁଣି ପ୍ରହାରିଲା ଅଗ୍ନିଅସ୍ତ୍ର
ବରୁଣ ଅସ୍ତ୍ରେ ନାଶିଲେ ସତ୍ୟକଙ୍କ ପୁତ୍ର ।
ନାରାୟଣ ଅସ୍ତ୍ର ତହୁଁ କଲା ଦୈତ୍ୟପତି
ଫେରାଇଲେ ତା ସାତ୍ୟକି ପ୍ରକାଶି ବିନତି ।
ଅର୍ଜୁନଙ୍କଠାରୁ ଶିକ୍ଷା ପାଇ ମହାବୀର
ପ୍ରଣାମ କରନ୍ତେ ଛାଡ଼ିଗଲା ଅସ୍ତ୍ରବର ।
ମାହେଶ୍ୱର ଅସ୍ତ୍ର ତହୁଁ ପ୍ରହାରିଲା ବାଣ
ବୈଷ୍ଣବ ଅସ୍ତ୍ରେ ସାତ୍ୟକି କଲେ ନିବାରଣ ।
ବ୍ରହ୍ମାସ୍ତ୍ର ବିନ୍ଧିଲା ପୁଣି ବାଣାସୁର ବଳି
ବ୍ରହ୍ମାସ୍ତ୍ରେ ସାତ୍ୟକି ନିବାରିଲେ ତାକୁ ବଳି ।
ତାହା ଦେଖି ବାଣାସୁର ନାଗଅସ୍ତ୍ର ବିନ୍ଧି
ସାତ୍ୟକି ଆସିବା ମାର୍ଗ ପକାଇଲା ରୁନ୍ଧି ।
ଗରୁଡ଼ାସ୍ତ୍ର ପ୍ରହାରିଲା ସତ୍ୟକ କୁମର
କ୍ଷଣକରେ କଲେ ନାଗ ଅସ୍ତ୍ରକୁ ସଂହାର ।
ନ ସହି ତା ବାଣ କ୍ରୋଧେ ଶିବଦତ୍ତ ଶୂଳ
ପ୍ରହାରିଲା କରିବାକୁ ଶତ୍ରୁକୁ ନିର୍ମୂଳ ।
ସାତ୍ୟକି ତା ଦେଖି ସ୍ତୁତି କରନ୍ତି ଦୁର୍ଗାଙ୍କୁ
ମାଳାରୂପ ହେଲା ଶୂଳ ନ ମାରି ତାହାକୁ ।
ବାଣ ତାହା ଦେଖି ପାଶୁପତ ଶର ଧରି
ସନ୍ଧିଲା ଧନୁ ମଧ୍ୟରେ ଗରଜନ କରି ।
ଜୃମ୍ଭଣ ଅସ୍ତ୍ର ପ୍ରହାରି ସାତ୍ୟକି ସେକାଳେ
ବାଣାସୁରକୁ ନିଦ୍ରିତ କରି ପକାଇଲେ ।
ଜୃମ୍ଭିତ ହୁଅନ୍ତେ ବାଣ କାର୍ତ୍ତିକେୟ ବୀର
ପ୍ରହାରିଲେ ସାତ୍ୟକଙ୍କୁ ଅର୍ଦ୍ଧଚନ୍ଦ୍ର ଶର ।
କ୍ଷଣିତ ମାତ୍ରକେ ତାହା ଛେଦନ୍ତେ ସାତ୍ୟକି
ପ୍ରହାରିଲେ ସ୍କନ୍ଦ ପୁଣି ଗଦାବର ଟେକି ।
ବୈଷ୍ଣବ ଅସ୍ତ୍ରରେ କାମ ସେ ଗଦାକୁ ବେଗେ
ଶତଖଣ୍ଡ କରି ପକାଇଲେ ଭୂମିଭାଗେ ।
ତାହା ଦେଖି କାର୍ତ୍ତିକେୟ ଶକତିକ ଧରି
ଫିଙ୍ଗିଲେ ସେ ଦିଶୁଥିଲା କାଳଦଣ୍ଡ ପରି ।
ନାରାୟଣ ଅସ୍ତ୍ରରେ ତା ପ୍ରଦ୍ୟୁମ୍ନ ସେକାଳେ
ନିବାପିତ କରି ପକାଇଲେ ମହୀତଳେ ।
ବ୍ରହ୍ମାସ୍ତ୍ର ବିନ୍ଧିଲେ ତହୁଁ କାର୍ତ୍ତିକେୟ ବୀର
ବ୍ରହ୍ମାସ୍ତ୍ରରେ ତାହା କାଟି ପକାଇଲେ ସ୍ମର ।
ସେ ଅନ୍ତରେ କାର୍ତ୍ତିକେୟ ନାରାୟଣ ଅସ୍ତ୍ର
କଲେ ବିନାଶିବା ପାଇଁ ପ୍ରଦ୍ୟୁମ୍ନର ଗାତ୍ର ।
ଶ୍ରୀକୃଷ୍ଣଙ୍କଠାରୁ ଶିକ୍ଷା ପାଇଣ ପ୍ରଦ୍ୟୁମ୍ନ
ଦଣ୍ଡବତ ହେଲେ ସେ ଅସ୍ତ୍ରକୁ ପୁନଃ ପୁନଃ ।
ତା ଜାଣି ସେ ଅସ୍ତ୍ର ନାରାୟଣଙ୍କ ପାଶକୁ
ପଳାଇଲା ସେହିକ୍ଷଣି ଛାଡ଼ି ପ୍ରଦ୍ୟୁମ୍ନକୁ ।
କାର୍ତ୍ତିକେୟ କ୍ରୋଧ ହୋଇ ପାଶୁପତ ବାଣ
ସନ୍ଧାନ କରିଣ ଆକର୍ଣ୍ଣ ଓଟାରିଲେ ଗୁଣ ।
ମଦନ ସେ ସମୟରେ ନିଦ୍ରାସ୍ତ୍ର ପ୍ରହାରି
ପକାଇ ଦେଲେ ସ୍କନ୍ଦକୁ ହତଜ୍ଞାନ କରି ।
ବାଣାସୁରକୁ ତ ପୂର୍ବୁ ମୁଗ୍ଧ କରିଥିଲେ
ଦୁହେଁ ନିଜ ନିଜ ରଥ ମଧ୍ୟରେ ଶୋଇଲେ ।
ତାଙ୍କର ଏ ଦଶା ଦେଖି କ୍ରୋଧେ ଭଦ୍ରକାଳୀ
ପ୍ରଦ୍ୟୁମ୍ନଙ୍କୁ ଦେଲେ ରଥ ସହିତରେ ଗିଳି ।
ବାଣାସୁର କାର୍ତ୍ତିକେୟ ଦୁହିଙ୍କୁ କୋଳରେ
ଧରି ତହୁଁ ଗଲେ ବେଗେ ଆକାଶ ମାର୍ଗରେ ।
ପାର୍ବତୀ ଦେବୀଙ୍କ ପାଶେ ନେଇ ସମର୍ପିଲେ
ଦେଖିଣ ପାର୍ବତୀ ତାଙ୍କୁ ସୁସ୍ଥ କରାଇଲେ ।
ପ୍ରଦ୍ୟୁମ୍ନ ତ କାଳୀଙ୍କର ଗର୍ଭେ ରହିଥିଲେ
ଦୟାକରି ଦେବୀ ତାଙ୍କୁ ଜୀବନ ତ ଦେଲେ ।
ମାର୍ଗ ଦେଖାଇଲେ ତହୁଁ ନାସିକା ରନ୍ଧ୍ରରେ
ବାହାର ହୋଇ କନ୍ଦର୍ପ ପଳାଇ ସତ୍ୱରେ ।
ରଣ ଭୂମିରେ ସେକ୍ଷଣି ଉପସ୍ଥିତ ହେଲେ
ତା ଦେଖି ଯାଦବଗଣ ଉଚ୍ଚରେ ହସିଲେ ।
ଏଥିଅନ୍ତେ ବାଣାସୁର କାର୍ତ୍ତିକେୟ ଦୁହେଁ
ଯୁଦ୍ଧ ଭୂମିରେ ପ୍ରବେଶ ହେଲେ ଆସି କୋହେ

ପାଞ୍ଚକୋଟି ତୀକ୍ଷ୍ଣ ଶର ପ୍ରହାରିଲା ବାଣ
ଛେଦିଲେ ତା ଖୁରକାଣ୍ଡେ ଦେବକୀରମଣ ।
ଲାଙ୍ଗଳ ପ୍ରହାର ପୁଣି ତାର ସ୍ୱର୍ଣ୍ଣରଥ
ଅଶ୍ୱ ସାରଥି ସହିତେ କଲେ ମହାଘାଥ ।
ପୁଣି ତାର ମୁଣ୍ଡ କାଟିବାକୁ ଯାଆନ୍ତେ ଧାଇଁ
ନିବାରିଲେ କାଳଅଗ୍ନି ରୁଦ୍ର ଆସି ତହିଁ ।
ବଳଦେବ କ୍ରୋଧଭରେ କାଳରୁଦ୍ରଙ୍କର
ରଥ ଅଶ୍ୱ ସାରଥିଙ୍କୁ କରିଦେଲେ ଚୂର ।
ତାହା ଦେଖି କାଳଅଗ୍ନିରୁଦ୍ର ମହାବଳୀ
ମହାରୌଦ୍ର ଜ୍ୱର ପଠାଇଲେ କ୍ରୋଧେ ଜଳି ।
ଶ୍ରୀକୃଷ୍ଣଙ୍କୁ ଛାଡ଼ି ଅନ୍ୟ ଯାଦବ ସକଳ
ସେ ଜ୍ୱର ପ୍ରତାପେ ତହିଁ ହୋଇଲେ ବିକଳ ।
ଶ୍ରୀକୃଷ୍ଣ ତା ଦେଖିକରି ବଇଷ୍ଣବ ଜ୍ୱର
ସରଜନା କଲେ ଜାଣ ଆହେ ମୁନିବର ।
ସେ ଜ୍ୱର ମାହେଶଜ୍ୱର ସଙ୍ଗତରେ ମିଶି
ଯୁଦ୍ଧ କଲା କ୍ଷଣେ ଯାଏ ହୋଇ ମହାରୋଷୀ ।
ବୈଷ୍ଣବଜ୍ୱର ତା ପରେ ମାହେଶ୍ୱର ଜ୍ୱର
ଦୁର୍ବଳ ହେବାରୁ ସ୍ତୁତି କଲା ଯୋଡ଼ି କର ।
ଶ୍ରୀକୃଷ୍ଣ ତ ଦୟାମୟ ପୁରୁଷ ଅନନ୍ତ
ସଂହାରିଲେ ନିଜ ଜ୍ୱର ଶୁଣି ତାର ସ୍ତୁତି ।
ମହେଶ୍ୱର ଜ୍ୱର ତହୁଁ ଛାଡ଼ି ରଣସ୍ଥାନ
ସଦାଶିବଙ୍କ ପାଶକୁ ଚଳିଲା ବହନ ।
ଏଥୁଅନ୍ତେ ବାଣାସୁର ଅନ୍ୟ ରଥ ଚଢ଼ି
ବର୍ଷିଲା ସହସ୍ରେ ଶର କରି ଘୋରରଡ଼ି ।
ତାହା ଦେଖିଣ ଅର୍ଜୁନ ଅର୍ଦ୍ଧଚନ୍ଦ୍ର ବାଣେ
ସେ ସମସ୍ତ ଶର କାଟିଦେଲେ ତତକ୍ଷଣେ ।
ଦେଖି ବାଣାସୁର କ୍ରୋଧେ ମହାଶକ୍ତି ଧରି
ପିଙ୍ଗିଲା ଅର୍ଜୁନ ବକ୍ଷସ୍ଥଳେ ଲକ୍ଷକରି ।
ଦିବ୍ୟଅସ୍ତ୍ରରେ ଅର୍ଜୁନ ସେ ଶକ୍ତିକୁ ଗୃଣ୍ଡେ
ଖଣ୍ଡ ଖଣ୍ଡ କରି ପକାଇଲେ ରଣଦାଣ୍ଡେ ।
ନ ସହିଣ ବାଣ ତାହା ପାଶୁପତ ବାଣ
ସନ୍ଧିଲା ନେବା ପାଇଁ ଅର୍ଜୁନଙ୍କ ପ୍ରାଣ ।
ସେ ଅସ୍ତ୍ର ଅଟଇ ବିଶ୍ୱ ସଂହାର କାରଣ
କୋଟି ସୂର୍ଯ୍ୟପରି ଦିଶୁଅଛି ତା କିରଣ ।
ଶ୍ରୀକୃଷ୍ଣ ତାହାକୁ ଦେଖି ଅତିଭୟ ହୋଇ
ପ୍ରହାରିଲେ ସୁଦର୍ଶନ ଚକ୍ରକୁ ଉଞ୍ଚାଇ ।

ବାଣାସୁର ହସ୍ତ ପାଶୁପତ ଅସ୍ତ୍ର ଥିଲା
ବିଷ୍ଣୁଚକ୍ର ଯାଇ ତାହା ପାଶରେ ଭେଟିଲା
ତାକୁ ଦେଖି ପାଶୁପତ ଅସ୍ତ୍ର ତହୁଁ ଖସି
ଶିବଙ୍କ ପାଶରେ ଉପସ୍ଥିତ ହେଲା ଆସି ।
ସୁଦର୍ଶନ ଚକ୍ର ବାଣାସୁରର ଅଙ୍ଗକୁ
କ୍ଷତକରି ବୁହାଇଲା ରୁଧିର ଧାରକୁ ।
ସେ ରକ୍ତରେ ତହିଁ ରକ୍ତସ୍ରୋତ ବହିଗଲା
ପଡ଼ିଥିବା ଶବମାନ ଭସାଇଣ ନେଲା ।
ବ୍ୟଥାପାଇ ବାଣ ତହୁଁ ଚେତନା ହରାଇ
ଶୋଇଲା ରଥ ମଧ୍ୟରେ ଶବପ୍ରାୟ ହୋଇ ।
ସେ କଥା ଜାଣି ଶଙ୍କର ସେଠାକୁ ଆସିଲେ
ବାଣଙ୍କୁ କୋଳରେ ଧରି ରୋଦନ ସେ କଲେ ।
ଶିବ ଅଶ୍ରୁ ପତନରେ ନଦୀଟାଏ ଜାତ
ହୋଇଲା ସେଠାରେ ଜାଣ ଆହେ ତପୋବନ୍ତ
କରୁଣା ସାଗର ପ୍ରଭୁ ସଞ୍ଜୀବନୀ ବଳେ
ବାଣାସୁରକୁ ସେକ୍ଷଣି ଆଶ୍ୱାସନା କଲେ ।
ସେ ଅନନ୍ତ ଶ୍ରୀକୃଷ୍ଣଙ୍କର ସମୀପକୁ ନେଇ
ସ୍ତୁତି କଲେ ତାଙ୍କ ପାଦକମଳରେ ଥୋଇ ।
ପୂର୍ବରୁ ତ ବଳି ଆସି କହି ଯାଇଥିଲେ
ସେ ହେନ ଶ୍ରୀକୃଷ୍ଣ ବାଣଠାରେ ଦୟା କଲେ ।
ହସ୍ତ ପରଶରେ ସର୍ବଅଙ୍ଗରୁ ତାହାର
କଲେ ସେହିକ୍ଷଣି ଶସ୍ତ୍ରବ୍ରଣ ପରିହାର ।
ପୁଣି ଦେବ ମୃତ୍ୟୁଞ୍ଜୟ ଜ୍ଞାନ ଦାନ କଲେ
ଅଜର ଅମର ହୁଅ ବୋଲି ବର ଦେଲେ ।
ସେ ଅନ୍ତରେ ବାଣାସୁର ଦିବ୍ୟଜ୍ଞାନ ପାଇ
ଜାଣିଲା ଶ୍ରୀକୃଷ୍ଣ ନିଶ୍ଚେ ପ୍ରଭୁ ଭବଗ୍ରାହୀ ।
ସେ ସକାଶୁ କରଯୋଡ଼ି ବହୁସ୍ତୁତି କଲା
ବର କନ୍ୟାଙ୍କୁ ଯାନରେ ବସାଇ ଆଣିଲା ।
ନାନା ରତ୍ନ ଅଳଙ୍କାରେ ମଣ୍ଡିଣ ତାହାଙ୍କୁ
ଦେବଙ୍କ ସଙ୍ଗରେ ସମର୍ପିଲା ଶ୍ରୀକୃଷ୍ଣଙ୍କୁ ।
ସେ ସଙ୍ଗରେ ଗଜ ଅଶ୍ୱ ଦିବ୍ୟ କାମଧେନୁ
ଦେଲା ଯଉତୁକରୂପେ ଲୋଭ ଛାଡ଼ି ମନୁ ।
ଆବର ସୁବର୍ଣ୍ଣ ମଣି ହୀରକ ବହୁତ
ଦେଲା ବଇଦୁର୍ଯ୍ୟ ମୁକ୍ତାଫଳର ସହିତ ।
ବହ୍ନିଶୁଦ୍ଧ ସୂକ୍ଷ୍ମ ବସ୍ତ୍ର ଅପ୍ରମିତ ଦେଇ
କହିଲା ବିନୟ ଭାବେ ମସ୍ତକ ନୁଆଁଇ ।

ପ୍ରଥମରେ ଶ୍ରୀକୃଷ୍ଣଙ୍କଠାରେ ଯେଉଁ ଦୋଷ
କରିଥିଲ ସେ କଥାକୁ ବିସ୍ମର ମାନସ ।
ଭକ୍ତିଭରେ ନୟନରୁ ଲୋତକ ବୁହାଇ
ବନ୍ଦନ କଲା ବାଞ୍ଛିତ ଲୋକ ପ୍ରାପ୍ତ ହୋଇ ।
ଶ୍ରୀକୃଷ୍ଣ ତାହାକୁ ଦେଇ ଦିବ୍ୟ ତତ୍ତ୍ୱଜ୍ଞାନ
ପ୍ରାକୃତିକ ମୋହ ତାର କରିଲେ ଖଣ୍ଡନ ।
ସେ ଅନ୍ତେ ଶିବଙ୍କଠାରୁ ଘେନି ଅନୁମତି
ବର କନ୍ୟା ଘେନି କଲେ ଦ୍ୱାରକାକୁ ଗତି ।
ଦେବକୀ ରୁକ୍ମିଣୀଙ୍କର ପାଶରେ କନ୍ୟାକୁ
ସମର୍ପଣ କଲେ କହି ସମସ୍ତ କଥାକୁ ।
ସେମାନେ ଦେଖିଣ ଅତି ଆନନ୍ଦିତ ହେଲେ
ବ୍ରାହ୍ମଣଙ୍କୁ ଡାକି ଧନରତ୍ନ ଦାନ ଦେଲେ ।
ଆଉରି ନାନାପ୍ରକାର ଉତ୍ସବ କରାଇ
ଭୋଜନ ଦେଲେ ବହୁତ ବ୍ରାହ୍ମଣଙ୍କୁ ତର୍ପି ।
ଏହିଠାରେ ବାଣାସୁର ଦର୍ପ ବିମୋଚନ
ସମାପତ ହେଲା ଗୀତେ କହେ କ୍ଷେତ୍ରହୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶ୍ରୀକୃଷ୍ଣଙ୍କ ସହିତ ବାଣାସୁରର ଯୁଦ୍ଧ ଓ ବାଣର ଦର୍ପ ଗଞ୍ଜନ କଥନେ ନାମ ବିଂଶୋତ୍ତରଶତତମୋଽଧ୍ୟାୟ ।

---

## ଏକବିଂଶୋତ୍ତରଶତତମ ଅଧ୍ୟାୟ

## ଶୃଗାଳର ମୋକ୍ଷହେବା ବୃତ୍ତାନ୍ତ ବର୍ଣ୍ଣନ

ନାରାୟଣ ବୋଇଲେ ହେ ବ୍ରହ୍ମାଙ୍କର ସୁତ
କହୁଅଛି ଶୁଣ ଏବେ ଶୃଗାଳ ଚରିତ ।
ଦିନେ ସୁଧର୍ମା ସଭାରେ ପ୍ରଭୁ ନରହରି
ବସିଅଛନ୍ତି ଯାଦବଗଣ ସଙ୍ଗେ ଧରି ।
ଏ ସମୟେ ବ୍ରାହ୍ମଣେକ ଆସି ସେହିଠାରେ
ପ୍ରବେଶ ହୋଇଲା ଦଣ୍ଡଛତ୍ର ଧରି କରେ ।
ପ୍ରଥମରେ ଶ୍ରୀକୃଷ୍ଣଙ୍କୁ ବହୁ ସ୍ତୁତି କଲା
ସେ ଅନ୍ତେ ମଧୁର ଶାନ୍ତ ବଚନ କହିଲା ।
ବୋଇଲା ଆହେ ଶ୍ରୀକୃଷ୍ଣ ଶୁଣ ମୋର ଗିର
ବାସୁଦେବ ଶୃଗାଳ ସେ ମଣ୍ଡଳ ଈଶ୍ୱର ।
ଆପଣଙ୍କଠାକୁ ଯାହା କହି ପେଶିଛନ୍ତି
କହୁଅଛି ଶୁଣ ଏବେ ସ୍ଥିରକରି ମତି ।
ବୈକୁଣ୍ଠରେ ଚତୁର୍ଭୁଜ ବାସୁଦେବ ମୁହିଁ
ଲକ୍ଷ୍ମୀ ସରସ୍ୱତୀପତି ତ୍ରୈଲୋକ୍ୟ ଗୋସାଇଁ ।
ତିନି ଭୁବନକୁ ପାଳୁଅଛି ମୁଁ ଯନ୍ତତେ
ବ୍ରହ୍ମାଙ୍କ ପ୍ରାର୍ଥନା ଘେନି ଜନ୍ମିଲି ଭାରତେ ।
ମହୀଭାର ହରିବାର ଜନମ ମୋହର
ମର୍ତ୍ତ୍ୟଲୋକେ ହୋଇଅଛି ବୋଲି ମନେ କର ।
ବସୁଦେବ ସୁତ କୃଷ୍ଣ କ୍ଷତ୍ରିୟ ଅଧମ
ବିଷ୍ଣୁ ବୋଲି ଖ୍ୟାତ କରୁଅଛି ନିଜ ନାମ ।
ପ୍ରତାରକ ଦୁଷ୍ଟ ଶଠ ପରଦ୍ରୋହୀ ସେହି
ଦୁର୍ବଳକୁ ମାରେ ବଳବନ୍ତ ପକ୍ଷେ ରହି ।
ଦୁର୍ଯ୍ୟୋଧନ ଜରାସନ୍ଧ ଆଦିକରି ଯେତେ
ଦୁର୍ବଳ ନୃପତି ତାଙ୍କୁ ଭୀମସେନ ହସ୍ତେ ।
କୌଶଳରେ ମରାଇଣ ବୋଲାଉଛି ବଡ଼
ଶୁଣିବା ମାତ୍ରେ କମ୍ପିତ ହେଉଛି ମୋ ହାଡ଼ ।
ଆଉରି ମାୟାରେ ଭୀଷ୍ମ ଦ୍ରୋଣ କର୍ଣ୍ଣଙ୍କର
ଜୀବନକୁ ପାର୍ଥ ହସ୍ତେ କରାଇଲା ଦୂର ।
ଦୁର୍ବଳ ଦେଖିଲେ ବଳବନ୍ତକୁ ଲଗାଇ
ଦେଉଅଛି ତାକୁ ଯମପାଶକୁ ପଠାଇ ।
ଶିଶୁପାଳ ଦନ୍ତବକ୍ର କଂସ ତିନସାରେ
କୃଶ ହୋଇଥିଲେ ପୂର୍ବୁ ପଡ଼ିଣ ରୋଗରେ ।
ତାଙ୍କୁ ବଧକରି ରଣେ ବିକ୍ରମ ଦେଖାଇ
କହୁଛି ଅନ୍ୟ ଲୋକଙ୍କୁ ଡରାଇବା ପାଇଁ ।
ମୋହର ସୁତ ନରକ ସହଜେ ଦୁର୍ବଳ
ସଙ୍କେତରେ ତାର ଜୀବ ନେଲା କରି ଛଳ ।
ଧର୍ମଯୁଦ୍ଧରେ କପଟି ହୁଏ ଯେଉଁ ଲୋକ
ଲଭଇ ସେ ବ୍ରହ୍ମହତ୍ୟା ଗୋହତ୍ୟା ପାତକ ।
ପୂତନା କୁବୁଜା ଆଦି ସ୍ତ୍ରୀଙ୍କର ପ୍ରାଣ
ହରଣ କଲା ଦେଖାଇ ନିଜ ବାହୁ ତାଣ ।

ସ୍ତ୍ରୀହତ୍ୟା ପାତକକୁ ନ କରିଲି ଭୟ
ରଜକକୁ ପ୍ରତାରଣା କଲି ଯେ ନିର୍ଦ୍ଦୟ ।
ନିଜ ବଳରେ ମୁଁ ମଧୁ କୈଟଭଙ୍କ ପ୍ରାଣ
ହରଣ କରିଛି ପୂର୍ବକାଳରେଟି ଜାଣ ।
ହିରଣ୍ୟ କଶିପୁ ହିରଣ୍ୟାକ୍ଷ ଆଦିକରି
ସମସ୍ତଙ୍କୁ ବଳେ ଦେଇଅଛି ମୁଁ ସଂହାରି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପ ଧରି ମୁହିଁ
ଜଗତର ସୃଷ୍ଟି ସ୍ଥିତି ସଂହାର କରଇ ।
ନିର୍ଗୁଣ ଅବ୍ୟକ୍ତ ରୂପ ସ୍ୱୟଂ ନାରାୟଣ
ଏ ସଂସାର ମଧ୍ୟରେ ମୁଁ ଅଟଇଟି ଜାଣ ।
ଗର୍ବିତ ହୋଇଛି ଯେବେ ବସୁଦେବ ସୁତ
ମୋ ସଙ୍ଗରେ ଆସି ଯୁଦ୍ଧ କରିବା ଉଚିତ ।
ଯାହା ଯାହା କଲା ଆଜଯାଏ ସେ ସମସ୍ତ
ସହ୍ୟ କରିଗଲି ମୁହିଁ ଦୟା ବହି ଚିତ୍ତ ।
ଏବେ ଦୂତମୁଖୁ ଶୁଣୁଅଛି ନିତି ନିତି
ଅତି ଅହଙ୍କାର କରୁଅଛି ସେ ଦୁର୍ମତି ।
ମୋ ସକାଶୁ ଶଙ୍ଖ ଚକ୍ର ଗଦା ପଦ୍ମ ଧରି
ଦ୍ୱାରକା ପୁରକୁ ଯିବ ସୈନ୍ୟ ସଜକରି ।
ଇଚ୍ଛା ଥିଲେ ମୋ ସଙ୍ଗତେ ଯୁଦ୍ଧ ଆସି କରୁ
ନୋହିଲେ ପ୍ରଣାମ କରି ଆୟୁ ଖଣ୍ଡେ ଦୂରୁ ।
ଶରଣ ପଶିଲେ ତାର ଜୀବନ ନ ନେବ
ମାତ୍ର ଗର୍ବ ଭଙ୍ଗ କରି ରଖାଇଣ ଦେବ ।
ଯେବେ ଏହା ନ କରିବ ଦ୍ୱାରକା ସହିତେ
ଭସ୍ମ କରିବ ଯାଦବ ଗଣଙ୍କୁ କାଳିତେ ।
ଏକମାତ୍ର ଧନୁ ଧରି ଥିବ ଯେବେ ମୁହିଁ
ହେବ ରଣଦାଣ୍ଡେ ତୁମ୍ଭ ବଂଶକୁ ଶୁଆଇ ।
ଭଗାଙ୍ଗ ରୁଗ୍ଣ ଅଟଇ ହେବ ପିନାକୀର
ତପସ୍ୱୀ ଦୁର୍ବଳ ବୃଦ୍ଧ ଅଟନ୍ତି ଶଙ୍କର ।
ଏମାନଙ୍କୁ ଯୁଦ୍ଧେ ଜିଣି ହୋଇଅଛି ମତ୍ତ
ଜାଣୁ ଛି ଯୁଦ୍ଧରେ ହେବ ମୋ ହାତରେ ହତ
ଏରୂପେ କହି ସେ ବିପ୍ର ନୀରବ ହୋଇଲେ
ଶୁଣି ସଭାସଦମାନେ ଉଚ୍ଚେରେ ହସିଲେ ।
ଶ୍ରୀକୃଷ୍ଣ ସେ ବ୍ରାହ୍ମଣଙ୍କୁ ନିଜସୁତେ ନେଇ
ଭୋଜନ ସକାଶେ ନାନା ମିଷ୍ଟଦ୍ରବ୍ୟ ଦେଇ ।
ମଧୁର ବଚନେ କହି ପ୍ରସ୍ଥାପିତ କଲେ
ଦୁଃଖିତ ହୋଇଣ ସେହି ରଜନୀଟି ନେଲେ ।

ପ୍ରଭାତରେ ଚତୁରଙ୍ଗ ସୈନ୍ୟ ସଜକରି
ପ୍ରବେଶ ହୋଇଲେ ଯାଇ ଶୃଗାଳର ପୁରୀ ।
ଶ୍ରୀକୃଷ୍ଣ ଆସିବା ଶୁଣି ଶୃଗାଳ ରାଜନ
କୃତ୍ରିମ ଦୁଇଟି ଭୁଜ ଯୋଡ଼ି ତତକ୍ଷଣ ।
କୃତ୍ରିମ ଗରୁଡ଼ ଉପରେ ବସି ସେ କାଳରେ
ନେଲା ଶଙ୍ଖ ଚକ୍ର ଗଦା ପଦ୍ମ ଧରି କରେ ।
ସମର ଭୂମିରେ ଆସି ପ୍ରବେଶ ହୋଇଲା
ଶଙ୍ଖ ଧ୍ୱନି ଅନ୍ତେ ଆରମ୍ଭ ବଜାଇଣ ଦେଲା ।
ଶ୍ରୀକୃଷ୍ଣ ତାହାକୁ ଦେଖି କୌତୁକ ଭାବରେ
ଆଶ୍ଳେଷଣ ସମ୍ଭାଷଣ କଲେ ତୋଷଭରେ ।
ତା ଦେଖି ଶୃଗାଳ ମନେ ଭାଗ୍ୟ କଲା ପରି
ବୋଇଲା ଶୁଣିବା ହେଉ ଆହେ ନରହରି ।
ମୁଁ ଅଟଇ ତୁମ୍ଭ ଦାସ ସୁଭଦ୍ର ମୋ ନାମ
ଥିଲି ବୈକୁଣ୍ଠରେ ଜୟ ବିଜୟଙ୍କ ସମ ।
ଲକ୍ଷ୍ମୀଙ୍କ ଶାପରେ ହୋଇଅଛି ମୁଁ ଶୃଗାଳ
ଏବେ ପୂର୍ଣ୍ଣ ହେଲା ଆସି ଶାପ ଭୋଗ କାଳ ।
ସୁଦର୍ଶନ ଚକ୍ର ପେଷି ମୋହର ମସ୍ତକ
ଛିନ୍ନ କରି ଏବେ ମତେ ମୁକ୍ତ ଦେଇ ଦିଅ ।
ତୁମ୍ଭ ପ୍ରସାଦରେ ମୁକ୍ତି ପାଇଣ ଅଚିରେ
ପ୍ରବେଶ ହୋଇବି ଯାଇ ବୈକୁଣ୍ଠ ପୁରେ ।
ଆପଣ ତ ସର୍ବାନ୍ତର୍ଯ୍ୟାମୀ ପୁରୁଷୋତ୍ତମ
ଅଧିକ କି କହିବି ମୁଁ ମୂର୍ଖ ଅଧମ ।
ଶ୍ରୀକୃଷ୍ଣ ବୋଇଲେ ସଖେ ସବୁ କଥା ମୁହିଁ
ଜାଣିଅଛି ଆଉ କିଛି କହିବାକୁ ନାହିଁ ।
ଆଗ ଶସ୍ତ୍ର ଧରି ଯେବେ ନ ମାରିବ ତୁମେ
ତୁମ୍ଭର ଅନିଷ୍ଟ କରି ନ ପାରିବୁ ଆମ୍ଭେ ।
ତାହା ଶୁଣିଣ ଶୃଗାଳ ଦଶବାଣ ମାରି
ବିନ୍ଧିଲା ଶ୍ରୀକୃଷ୍ଣ ପରେ କାର୍ମୁକ ଉଚ୍ଚାରି ।
ସେ ଶରେ ଆକାଶମାର୍ଗେ ହେତୁ ଚଳିଗଲା
ଶ୍ରୀକୃଷ୍ଣଙ୍କ ପାଦେ ନମି ଅନ୍ତର୍ଦ୍ଧାନ ହେଲା ।
ତା ଅନ୍ତେ ଶୃଗାଳ ରାଜା କାଳାଗ୍ନି ସମାନ
ଗଦାକୁ ଫିଙ୍ଗିଲେ ସେହି ତକ୍ଷଣ ବିମାନ ।
କୃଷ୍ଣଙ୍କ ଆଗରେ ପଡ଼ି ହୋଇଲା ଧୂଳି ପରି
ତା ଦେଖି ଶୃଗାଳ ପୁଣି ମହାଶୂଳ ଧରି ।
ଶ୍ରୀକୃଷ୍ଣଙ୍କ ଉପରକୁ ଉଞ୍ଚାଇ ଫିଙ୍ଗିଲି
ବାଜିବା ମାତ୍ରକେ ସେହି ଖଣ୍ଡ ଖଣ୍ଡ ହେଲା ।

ସେ ଅନ୍ତରେ ଖଡ୍‌ଗ ଧରି ଶୃଗାଳ ରାଜନ
ପ୍ରହାରିଲେ ଶ୍ରୀକୃଷ୍ଣଙ୍କ ଦେହରେ ବହନ ।
ସେ କର୍କଶ ଅଙ୍ଗେ ବାଜି ହେଲା ବଡ଼ ଖଣ୍ଡ
ଯୋଗରୁ ପରି ସେ କାଳେ ହୋଇଗଲା ଗୁଣ୍ଡ
ଅସ୍ତ୍ରଶୂନ୍ୟ ଦେଖି ତାକୁ ପ୍ରଭୁ ନରହରି
ହସିଣ ବୋଇଲେ ଏବେ ଯାଉ ନିଜପୁରୀ ।
ଅନ୍ୟ ଅସ୍ତ୍ର ଶସ୍ତ୍ର ଥିଲେ ଆଣି ମୋତେ ମାର
ବେଗ ହୋଇ ଯାଅ ଆଉ ବିଳମ୍ବ ନ କର ।
ଶୃଗାଳ ବୋଇଲା ପରମାତ୍ମା ସହିତରେ
ଯୁଦ୍ଧ କରିବ କେ ଅବା ଅଛି ଜଗତରେ ।
ଦୟାକରି ବେଗେ ମୋତେ କର ପରିତ୍ରାଣ
ଆହେ କରୁଣା ସାଗର କମଳା ରମଣ ।
ଭବ ସାଗର ବିଷୟ ବିଷ ମୋହେ ପଡ଼ି
ନିଃସହାୟ ହୋଇ ମୁହିଁ ଯାଉଅଛି ବୁଡ଼ି ।
ବିଧାତାର ଧାତା ତୁମ୍ଭେ କର୍ମଫଳ ଦାତା
ଅଶେଷ ପାତକ ମୋହ ଖଣ୍ଡନ କରତା ।
ତୁମ୍ଭଯୋଗେ ତ୍ୟାଗ କରି ନଶ୍ୱର ଦେହକୁ
ଯିବି ବଇକୁଣ୍ଠ ପୁର ସପ୍ତମ ଦ୍ୱାରକୁ ।
ଏହିରୂପେ ଶୃଗାଳର ସ୍ତୁତି ବାକ୍ୟ ଶୁଣି
ରୋଦନ କଲେ ସେ କାଳେ ପ୍ରଭୁ ଚକ୍ରପାଣି ।
ତାଙ୍କ ନେତ୍ର ଜଳ ପଡ଼ି ହେଲା ସରୋବର
ବିନ୍ଦୁସର ବୋଲି ନାମ ହୋଇଅଛି ତାର ।
ସେ ସର ଜଳରେ ଯେହୁ କରିବ ସ୍ନାହାନ
ଜୀବନ ମୁକ୍ତ ତାହାର ହୋଇବଟି ଜାଣ ।
ଏଥୁଅନ୍ତେ ଶୃଗାଳକୁ ଶ୍ରୀକୃଷ୍ଣ ଅନାଇଁ
ବୋଇଲେ ତୁମ୍ଭର ବୁଦ୍ଧି ନିର୍ମଳ ଅଟଇ ।
ଦୂତ ପଠାଇ ମୋଠାକୁ ନିଷ୍ଠୁର ବଚନ
କୁହାଇଲ କପାଁ ମୋତେ କହ ତା କାରଣ ।
ଶୃଗାଳ ବୋଇଲା ଯେବେ ସେହିପରି ମୁହିଁ
କହି ନ ଥାନ୍ତି ଆପଣ ଆସନ୍ତେ କପାଇଁ ।
ସ୍ୱପନରେ ଦୁର୍ଲ୍ଲଭ ତ ତୁମ୍ଭ ଦରଶନ
କରୁଁପେ ପାପରୁ ମୁକ୍ତ ହୋଇଥାନ୍ତି ପୁଣ ।
ଏହିପରି କହୁ କହୁ ସେ ଶୃଗାଳ ନୃପ
ପ୍ରାକୃତ ଶରୀର ତେଜି ଧରି ଦିବ୍ୟ ରୂପ ।
ଶ୍ରୀକୃଷ୍ଣଙ୍କୁ ଅନାଇଣ ଦିବ୍ୟ ଯାନେ ବସି
ବଇକୁଣ୍ଠ ଭୁବନକୁ ଗଲା ହୋଇ ତୋଷି ।
ଶ୍ରୀକୃଷ୍ଣ ତା ଦେଖିକରି ଆଶ୍ଚର୍ଯ୍ୟ ହୋଇଲେ
ସୈନ୍ୟ ଘେନି ଦ୍ୱାରକାକୁ ବାହୁଡ଼ି ଆସିଲେ
ଏହିଠାରେ ନରପତି ଶୃଗାଳ ମୋକ୍ଷଣ
ସମାପତ ହେଲା କ୍ଷେତ୍ର କହଇ ବ୍ରାହ୍ମଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶୃଗାଳର ମୋକ୍ଷହେବା ବୃତ୍ତାନ୍ତ ବର୍ଣ୍ଣନେ ନାମ ଏକବିଂଶୋତ୍ତରଶତତମୋଽଧ୍ୟାୟଃ ।

—ঃ—ঃ—*—ঃ—ঃ—

## ଦ୍ୱା ବିଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ସ୍ୟମନ୍ତକ ମଣିହରଣ ବୃତ୍ତାନ୍ତ

ନାରଦ ବୋଇଲେ ଆହେ ନାରାୟଣ ମୁନି
ଶ୍ରୀକୃଷ୍ଣ ବିବାହ ହେଲେ ଯେତେକ କାମିନୀ ।
ସେ ସବୁ ଚରିତ ଶୁଣି ହେଲି ତୋଷଚିତ୍ତ
ଏବେ କହ ସ୍ୟମନ୍ତକ ମଣିର ବୃତ୍ତାନ୍ତ ।
ତାହା ଶୁଣି ନାରାୟଣ ମୁନିବର ହସି
ବୋଇଲେ ଶୁଣିବା ହେଉ ଆହେ ଦେବଋଷି
ଭାଦ୍ରମାସ ଶୁକ୍ଳପକ୍ଷ ଚତୁର୍ଥୀ ତିଥିରେ
ତାରାକୁ ହରଣ କଲେ ଚନ୍ଦ୍ର ବଳାତ୍କାରେ ।
କୃଷ୍ଣପକ୍ଷେ ପୁଣି ତାଙ୍କୁ ପରିତ୍ୟାଗ କଲେ
ଯେତେବେଳେ ଗର୍ଭବତୀ ତାରା ହୋଇଥିଲେ
ଦେଖି ତାଙ୍କୁ ବୃହସ୍ପତି କରନ୍ତେ ଭର୍ତ୍ସନା
ଶାପ ଦେଲେ ଚନ୍ଦ୍ରଙ୍କୁ ସେ ହୋଇ କୋପମନା
ବୋଇଲେ ରେ ପାପ ମୋତେ କଲୁ କଳଙ୍କିତ
ସେ ସକାଶୁ ହୁଅ ମଧ୍ୟ ତୁ କଳଙ୍କ ଯୁକ୍ତ ।
ଆବର ଯେ ଲୋକ ତୋତେ କରିବ ଦର୍ଶନ
ସେ ହୋଇବ ପାପମୟ କଳଙ୍କିତ ପୁଣ ।

ଏହା ଶୁଣି ନିଶାକର ନାରାୟଣପରେ
ତପକଲେ ମନଦେଇ ବିଷ୍ଣୁଙ୍କ ପଦ୍ମରେ ।
ତାହାଙ୍କର କ୍ଲେଶ ଦେଖି ଦେବ ନାରାୟଣ
କହିଲେ ପାଶକୁ ଯାଇ ମଧୁର ବଚନ ।
ବୋଇଲେ ହେ ବତ୍ସ ! ତୁମ୍ଭେ ତାରାଙ୍କ ଶାପରୁ
ମୁକ୍ତ ହୁଅ ଆମ୍ଭ ବରେ ଆଜଦିନଠାରୁ ।
ମାତ୍ର ଭାଦ୍ରପଦ ଶୁକ୍ଳ ଚତୁର୍ଥୀ ନିଶାରେ
ସେ ଶାପର ଦୋଷ ଦେଖାଯିବ ତୁମ୍ଭଠାରେ
ସେଦିନ ତୁମ୍ଭଙ୍କୁ ଯେହୁ ଦର୍ଶନ କରିବ
ନିଶ୍ଚୟ ସେ ପାପଯୁକ୍ତ କଳଙ୍କିତ ହେବ ।
ଏରୂପେ କହିଣ ପ୍ରଭୁ ଯିବା ସମୟରେ
ପଡ଼ିଲା ଆପଣା ଦୃଷ୍ଟି ଚନ୍ଦ୍ରଙ୍କ ଉପରେ ।
ସେ ସକାଶୁ ଆପଣାର କହିବା ବଚନ
ପାଳିବାକୁ ବାଧ୍ୟହେଲେ ପ୍ରଭୁ ଭଗବାନ ।
ଚନ୍ଦ୍ର ଦରଶନ କରି କଳଙ୍କିତ ହେଲେ
ଶୁଣ ଯେରୂପେ ତହିଁରୁ ମୁକତି ପାଇଲେ ।
ପୁଷ୍କର ତୀର୍ଥରେ ଶତ୍ରାଜିତ ନରପତି
ତପ କଲେ ସୂର୍ଯ୍ୟଙ୍କର ପାଦେ ଦେଇ ମତି ।
ତାଙ୍କ ତପସ୍ୟାରେ ତୁଷ୍ଟ ହୋଇ ଦିନେଶ୍ୱର
ଦେଲେ ସ୍ୟମନ୍ତକ ନାମେ ମଣି ରତ୍ନସାର
ସେ ମଣି ପ୍ରଭାବ ଅଟେ ଅତ୍ୟନ୍ତ ଅଦ୍ଭୁତ
ଅଷ୍ଟ ଭାର ସ୍ୱର୍ଣ୍ଣ ତହୁଁ ହୁଏ ନିତି ଜାତ ।
ଶତ୍ରାଜିତ ସେ ମଣିକୁ ରଖି ଯତନରେ
ପୂଜା କରୁଥାନ୍ତି ନିତି ପଞ୍ଚ ଉପଚାରେ ।
ତାହାଙ୍କ ଦୁହିତା ସତ୍ୟଭାମାଙ୍କୁ ଯେ କାଳେ
ଶ୍ରୀକୃଷ୍ଣଙ୍କୁ ସ୍ୱଇଚ୍ଛାରେ ବିଭା କରାଇଲେ ।
ସେ ସମୟେ ଯଉତୁକ ସ୍ୱରୂପେ ସେ ମଣି
ଦେବା ସକାଶେ ଆରମ୍ଭ କରିବାର ଜାଣି ।
ପ୍ରସେନ ନାମରେ ଥିଲା ଅନୁଜ ତାଙ୍କର
ନିଷେଧ କଲା ସେକାଳେ ହୋଇ କୋପଭର
ତାହାର କଥାକୁ ଯନ୍ତୁ ନ ଶୁଣିଲେ ନୃପ
ଗୁପତରେ ମଣି ଗୋଟି ଘେନିଯାଇ ପାପ ।
ବାରାଣସୀ ଅଭିମୁଖେ ଯାତ୍ରା ତହୁଁ କଲା
ଯାଉ ଯାଉ ମାର୍ଗେ ଏକ ଅରଣ୍ୟ ପଡ଼ିଲା ।
ସେହି ଅରଣ୍ୟ ମଧ୍ୟରେ ସିଂହଟାଏ ତାକୁ
ବଧ କରି ଘେନି ପଳାଇଲା ସେ ମଣିକୁ ।

କଉତୁକ ଆପଣାର ଗଳାରେ ଲମ୍ବାଇ
ବୁଲିଲା ସେ ମୃଗରାଜ ଏଣେ ତେଣେ ଯାଇ ।
ଜାମ୍ବବ ନାମେ ଭଲ୍ଲୁକ ମହା ବଳବାନ
ସେ ସିଂହକୁ ବଳାତ୍କାରେ କରିଣ ନିଧନ ।
ମଣି ଧରି ନିଜ ପୁରେ ପ୍ରବେଶ ହୋଇଲା
ଯତନରେ ରଖି ତାକୁ ନିତି ପୂଜା କଲା ।
ସେକାଳେ ଦ୍ୱାରକାବାସୀ ଥିଲେ ଯେତେ ଜନ
କୁହା କୁହି ହେଲେ ପରସ୍ପରେ ଏ ବଚନ ।
କେ ବୋଇଲା ଶତ୍ରାଜିତ କନ୍ୟା ସହିତରେ
ମଣି ସମର୍ପଣ କଲା ଶ୍ରୀକୃଷ୍ଣ ହସ୍ତରେ ।
କେ ବୋଇଲା ଶ୍ରୀକୃଷ୍ଣ ତ ଅଟନ୍ତି ଚତୁର
କଉଶଳେ ମଣି ଗୋଟି କଲେ ଆପଣାର ।
ତାହା ଶୁଣି ପ୍ରଭୁ ମନେ ମନେ ବିଚାରିଲେ
ମଣି ଗୋଟି ଯେବେ ଆଣି ନ ପାରିବି ଭଲେ
ଲୋକ ମୁଖରେ ଅବଶ୍ୟ ନିନ୍ଦାକୁ ପାଇବି
ପଚାରିଲେ କାହା ଆଗେ କି ବୋଲି କହିବି
ଏମନ୍ତ ବିଚାରି ତହୁଁ ବେଗ ହୋଇ ଗଲେ
ଗହନ ବନ ମଧ୍ୟରେ ପ୍ରବେଶ ହୋଇଲେ ।
ଚୌରଚିହ୍ନ ମାର୍ଗ ଦେଖି ଧୀରେ ଧୀରେ ଯାଇ
ମିଳିଲେ ପ୍ରସେନ ମରି ପଡ଼ିଥିଲା ଯହିଁ ।
ପୁଣି ଖଣ୍ଡେ ଦୂରେ ସିଂହ ପଡ଼ିଅଛି ମରି
ଦେଖିଣ ତାହାକୁ ମନେ ଦୁଃଖ ଜାତ କରି ।
ମଣି ନ ପାଇ ସେଠାରୁ ବାହୁଡ଼ି ଆସିଲେ
ଭଲ୍ଲୁକ ଭୁବନ ମଧ୍ୟେ ପ୍ରବେଶ ହୋଇଲେ ।
ଦେଖିଲେ ସେଠାରେ କୋଳେ ଶିଶୁଟିଏ ଧରି
କହୁଅଛି ଧାତ୍ରୀ ତାକୁ ପ୍ରବୋଧନା କରି ।
ପ୍ରସେନକୁ ମାରି ସିଂହ ମଣି ଘେନିଗଲା
ଜାମ୍ବବାନ ହସ୍ତରେ ସେ ନିଧନ ପାଇଲା ।
ଏବେ ସ୍ୟମନ୍ତକ ମଣି ଗୋଟି ହେଲା ତୋର
ବୋଧହୁଅ ଆରେ ଶିଶୁ କ୍ରନ୍ଦନ ନ କର ।
ଏମନ୍ତ ବଚନ ଯହୁଁ ଶ୍ରୀକୃଷ୍ଣ ଶୁଣିଲେ
ବାଳକଠାରୁ ସେ ମଣି ବଳେ ଘେନିଗଲେ ।
ସେ ମଣି ପରଶେ ଚନ୍ଦ୍ର ଦରଶନ ଦୋଷ
ସେହିକ୍ଷଣି ଦୂର ହେଲା ଆନନ୍ଦ ମନୀଷ ।

ଧାତ୍ରୀଠାରୁ କୃଷ୍ଣ ଯେଉଁ ବାକ୍ୟ ଶୁଣିଥିଲେ
ସେ ବାକ୍ୟ ପଢ଼ିଣ ଜଳ ମନ୍ତ୍ରି ଯୋଗ୍ୟ ଭଲେ
ଉତ୍ତରକୁ ମୁଖକରି ସେବନ କରିବ
ଚନ୍ଦ୍ର ଦର୍ଶନ ଦୋଷରୁ ମୁକତି ପାଇବ ।
ଭାଦ୍ର ଶୁକ୍ଳ ଚତୁର୍ଥୀରେ ଚନ୍ଦ୍ରକୁ ଦେଖିଲେ
ଯେଉଁ ଦୋଷ ହୁଏ ତାହା ନାଶଯାଏ ଭଲେ ।
ବାଳକଠାରୁ ଶ୍ରୀକୃଷ୍ଣ ଯେତେବେଳେ ସେ ମଣି
ଜାମ୍ବବ ପାଶକୁ ଧାତ୍ରୀ ପାଇ ସେହିକ୍ଷଣି ।
ବୁଝାଇ ତାହାକୁ ସବୁ ବିଷୟ କହିଲ
ଶୁଣିଣ ତାହାଙ୍କ ମନେ ବିସ୍ମୟ ଜନ୍ମିଲ ।
ସେହିକ୍ଷଣି ଶ୍ରୀକୃଷ୍ଣଙ୍କ ପାଖେ ଆସିକରି
ଦେଖିଲେ ସେ ସାକ୍ଷାତରେ ପ୍ରଭୁ ନରହରି ।
ଯେ ସକାଶୁ ତାଙ୍କ ପାଦେ ଦଣ୍ଡବତ ହୋଇ
ସ୍ତୁତି କରି ମସ୍ତକରେ ବେନିକର ଦେଇ ।
ଜାମ୍ବବତୀ ନାମେ ଥିଲ ତାହାଙ୍କର ସୁତା
ଶ୍ରୀକୃଷ୍ଣଙ୍କ ସଙ୍ଗେ ତାକୁ କଲେ ବିବାହିତା ।
ଯଉତୁକ ସ୍ୱରୂପରେ କନ୍ୟାର ସହିତେ
ସ୍ୟମନ୍ତକ ମଣି ଗୋଟି ଦେଲେ ସେ ଉପଚିତେ ।
ଆହେ ମୁନିବର ଧର୍ମ ମୁଖରୁ ଯା ମୁହିଁ
ଶୁଣିଥିଲି ତୁମ୍ଭ ଆଗେ କହିଲି ବତାଇ ।
ଆଉ କି ଶୁଣିବାପାଇଁ ଅଛି ଯେବେ ମନ
ପଚ୍ଛର ଏକ୍ଷଣି ତାହା କହିବା ବଚନ ।
ଏମନ୍ତ ବୋଲିଣ ତୁନି ହେଲେ ମୁନିବର
ଭଣିଲେ ଉତ୍କଳ ଭାଷା ପଦ୍ୟେ କ୍ଷେତ୍ରଧର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ସ୍ୟମନ୍ତକ ମଣିହରଣ ବୃତ୍ତାନ୍ତ କଥନେ ନାମ ଦ୍ୱାବିଂଶୋତ୍ତରଶତତମୋଽଧ୍ୟାୟଃ ।



## ତ୍ରୟୋବିଂଶୋତ୍ତରଶତତମ ଅଧ୍ୟାୟ

### ଗଣେଶ ପୂଜାର ସବିଶେଷ ବିବରଣ

ନାରଦ ବୋଇଲେ ନାରାୟଣ ମୁନିବର
ସଂକ୍ଷେପରେ ପୂଜାବିଧି ବିଘ୍ନରାଜାଙ୍କର ।
ବ୍ରହ୍ମାଙ୍କ ମୁଖରୁ ପୂର୍ବେ ଶୁଣିଅଛି ମୁହିଁ
ବିଶେଷ ଭାବେ ଆପଣ କହନ୍ତୁ ବତାଇ ।
ଯେଉଁ ସିଦ୍ଧାଶ୍ରମେ ରାଧା କୃଷ୍ଣ ଦୁହିଙ୍କର
ସମ୍ମିଳନ ହେଲ ପୂର୍ବେ ଆହେ ମୁନିବର ।
ଶତବର୍ଷ ପରେ ଶାପ ମୁକ୍ତ ସମୟରେ
କିରୂପେ ଶ୍ରୀମତୀ ପୂଜା କଲେ ସେହିଠାରେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଶେଷ ଆଦିକରି
ଯୋଗ ଦେଇଥିଲେ ସେହି ପୂଜାରେ କିପରି ।
ଏ ବିଷୟ ଶୁଣିବାକୁ ହେଉଅଛି ମନ
ବିସ୍ତାରଣ କହ ମୋତେ ଋଷିଙ୍କ ମଣ୍ଡନ ।
ନାରାୟଣ ବୋଇଲେ ଏ ତ୍ରୈଲୋକ୍ୟ ମଧ୍ୟରେ
ଉତ୍କୃଷ୍ଟ ଅଟେ ଭାରତବର୍ଷ ନିରନ୍ତରେ ।
ତହିଁରେ ଯେ ସିଦ୍ଧାଶ୍ରମ ଅଟେ ପୁଣ୍ୟମୟ
ସେଠାରେ ହୁଅଇ ଧର୍ମ ମୋକ୍ଷର ଉଦୟ ।
ସନତକୁମାର ମୁନି ସେହିଠାରେ ରହି
ତପ ଆଚରଣେ ଅଛନ୍ତି ସିଦ୍ଧ ହୋଇ ।
ଆବର ବିଧାତା ନିଜେ ସେହିଠାରେ ତପ
କରିଣ ଅଳପ ଦିନେ ହେଲେ ସିଦ୍ଧରୂପ ।
କପିଳ ଆଦି ଯେତେକ ସିଦ୍ଧ ମୁନିଗଣ
ସେହିଠାରେ କରିଥିଲେ ତପ ଆଚରଣ ।
ଯେ ସକାଶୁ ସିଦ୍ଧାଶ୍ରମ ନାମଟି ତାହାର
ପ୍ରସିଦ୍ଧ ହୋଇଛି ସବୁବେଳେ ମନେକର ।
ସେ ସ୍ଥାନରେ ରତ୍ନମୟ ଗଣେଶ ପ୍ରତିମା
ରହିଛନ୍ତି ପ୍ରକାଶିତ ବିଶେଷ ମହିମା ।
ବୈଶାଖ ପୂର୍ଣ୍ଣିମାଦିନ ଦେବତା ସକଳ
ପୂଜା କରୁଥାନ୍ତି ସେହିଠାରେ ହୋଇ ମେଳ ।
ଗନ୍ଧର୍ବ ନାଗ ଅସୁର ମୁନି ଋଷିଗଣ
ଆସନ୍ତି ସେଠାକୁ ପୂଜା କରିବାକୁ ଜାଣ ।
ଶତବର୍ଷ ପରେ ରାଧା ଦେବୀଙ୍କର ଶାପ
କ୍ରମେ କାଳ ଅନୁସାରେ ହୋଇଯାନ୍ତେ ଲୋପ

ବୈଶାଖ ପୂର୍ଣ୍ଣିମା ଦିନ ସେହି ଆଶ୍ରମରେ
ପ୍ରବେଶ ହୋଇଲେ ଦେବୀ ପୂଜିବା ଇଚ୍ଛାରେ
ତାଙ୍କ ସଙ୍ଗେ ନନ୍ଦଆଦି ଗୋପାଳ ସମସ୍ତ
ଆସିଲେ ଗୋପିକାଗଣ ଧେନୁଗଣ ସଙ୍ଗତେ ।
ଆଉରି ବହୁତ ନୃପ ପରିବାର ତୁଲେ
ଗଣେଶ ପୂଜା ସକାଶେ ଆସିଣ ମିଳିଲେ ।
କୈଳାସରୁ ସଦାଶିବ ଦେବୀ ପାର୍ବତୀଙ୍କୁ
ଗଲେ ମହାଆନନ୍ଦରେ ପୂଜା କରିବାକୁ ।
ବ୍ରହ୍ମା ଇନ୍ଦ୍ର ଶେଷ ଆଦି ଦେବେ ସେହିପରି
ଗଲେ ଯେ ଯାହାର ନାନାବିଧ ଦ୍ରବ୍ୟ ଧରି ।
ଦ୍ୱାରକାବାସୀଙ୍କୁ ଘେନି ଶ୍ରୀକୃଷ୍ଣ ସେ କାଳେ
ସେ ସିଦ୍ଧ ଆଶ୍ରମେ ଯାଇ ଉପସ୍ଥିତ ହେଲେ ।
ଏଥୁଅନ୍ତେ ଶୁଣ ଆହେ ମୁନିଗଣ କହି
ଶ୍ରୀମତୀ ରାଧିକା ତହିଁ ହୋଇଣ ପ୍ରବେଶ ।
ପ୍ରଭାତରୁ ଉଠି ନିତ୍ୟକର୍ମ ଶେଷ କଲେ
ନବୀ ନବସ୍ତ୍ର ପିନ୍ଧି ମଣିମଣ୍ଡପକୁ ଗଲେ ।
ଶ୍ରୀକୃଷ୍ଣ ପୀରତି ଲଭ କରିବାର ପାଇଁ
ଗଙ୍ଗାଜଳେ ଗଣେଶଙ୍କୁ ସ୍ନାହାନ କରାଇ ।
ରକତ ଚନ୍ଦନ ରକ୍ତ ପୁଷ୍ପମାଳା ଦେଲେ
ଶାମ ବେଦୋକ୍ତ ଧ୍ୟାନରେ ସ୍ତୁତିପାଠ କଲେ ।
ସକଳ ବେଦଜନନୀ ହୋଇଲେ ସେ ଧନ୍ୟ
ଲୋକ ଶିକ୍ଷା ସକାଶରେ ଶିରେ କର ଦେଇ
ବୋଇଲେ ନମସ୍ତେ ଗଣନାଥ ଲମ୍ବୋଦର
ଖର୍ବ ସ୍ଥୂଳତନୁ ଗଜମୁଖ ବିଘ୍ନେଶ୍ୱର ।
ସିଦ୍ଧଯୋଗୀ ଜ୍ଞାନୀଗୁରୁ ମୁନୀନ୍ଦ୍ର ସେବିତ
ମଙ୍ଗଳ ମଙ୍ଗଳାଳୟ ଦେବ ବୃନ୍ଦାର୍ଚ୍ଚିତ ।
ସର୍ବବିଘ୍ନ ବିନାଶନ ସମ୍ପଦ ଦାୟକ ।
ଭବପୋତ କର୍ଣ୍ଣଧାର ଦେବଙ୍କ ନାୟକ ।
ଶରଣଆଗତ ଜନ ପରିତ୍ରାଣ କର୍ତ୍ତା
ଧ୍ୟାନାସାଧ୍ୟ ଦୁରାରାଧ୍ୟ ଭୁକ୍ତି ମୁକ୍ତିଦାତା ।
ଭକତ ବତ୍ସଳ ପ୍ରଭୁ ସର୍ବାଙ୍ଗ ସୁନ୍ଦର
ତୁମ୍ଭ ପାଦପଦ୍ମେ ମୋର କୋଟି ନମସ୍କାର ।
ଏହିରୂପେ ଧ୍ୟାନକରି ନିଜ ଶିରେ ନେଇ
ଘେନିଲେ ପ୍ରସାଦ ପୁଷ୍ପ ପ୍ରୀତିମତି ହୋଇ ।
ସେ ଅନନ୍ତେ ସର୍ବାଙ୍ଗନ୍ୟାସ କରି ପୁନଃପୁନଃ
ପୁଷ୍ପାଞ୍ଜଳି ଦେଇ ଖାନ୍ଦି କଲେ ନିବେଦନ ।
ପାଦ୍ୟଅର୍ଘ୍ୟ ଗନ୍ଧପୁଷ୍ପ ଧୂପଦୀପ ଆଦି
ଯଥାନ୍ୟେ ସମର୍ପଣ କଲେ ସେ ସମ୍ପାଦି ।
କସ୍ତୁରୀ କୁଙ୍କୁମ ଯୁକ୍ତ ସୁବାସିତ ଜଳ
ଦେଲେ ପୁଣି ଭକ୍ତିପ୍ରେମେ ହୋଇକରି ଭୋଳ
ଆଉରି ମାଳତୀ ପଦ୍ମ ମଲ୍ଲୀମାଳା ନେଇ
ଲମ୍ବାଇ ଦେଲେ ସାଦରେ ଦେବୀ ମହାମାୟୀ ।
ସୁଗନ୍ଧ ସୁସ୍ୱାଦୁରମ୍ୟ ନାନାରସ ପୂର୍ଣ୍ଣ
ନୈବେଦ୍ୟ ପଦାର୍ଥ ନେଇ କଲେ ସମର୍ପଣ ।
ମଧୁର ସୁପକ୍ୱ ଫଳ ଅଣାଇ ବହୁତ
ନୈବେଦ୍ୟ ଦେଲେ ସେକାଳେ ନିଜଗତ ମାତ
ସ୍ୱସ୍ତିକ ଗୋଧୂମ ତିଳନିର୍ମିତ ଲଡୁକ
ସମର୍ପଣ କରି ଦେଲେ ତା ସଙ୍ଗେ ଉଦକ ।
ପାୟସ ବ୍ୟଞ୍ଜନ ଅନ୍ନ ପ୍ରପାନକ ଦଧି
ସମର୍ପିଲେ ପୁଣି ସେ କାଳରେ ଯଥାବିଧି ।
କର୍ପୂର ଗୁବାକ ଗନ୍ଧ ଚନ୍ଦନ ସହିତ
ତାମ୍ବୂଳ ଆଣି ସେ ଅନ୍ତେ କଲେ ସମର୍ପିତ ।
ଅମୂଲ୍ୟ ଶୁକଳଛତ୍ର ଚାମରକୁ ଦେଲେ
ସୁବର୍ଣ୍ଣ ରତ୍ନ ନିର୍ମିତ ହାର ସମର୍ପିଲେ ।
ବିଧି ସହିତରେ ଦୁଗ୍ଧବତୀ ଧେନୁ ଆଣି
ପ୍ରଦାନ କଲେ କାମନା ସିଦ୍ଧି ମନେ ଗୁଣି ।
ପରିହାର କରି ପୁଣି ପୁଷ୍ପାଞ୍ଜଳି ଦେଲେ
ଷୋଡ଼ଶ ଅକ୍ଷର ମନ୍ତ୍ର ଶତେ ଜପ କଲେ ।
ପୁଣି ଭକ୍ତିଭରେ ଶିରେ ଦେଇ ବେନିକର
ବୋଇଲେ ନମସ୍ତେ ପରଂବ୍ରହ୍ମ ବିଘ୍ନେଶ୍ୱର ।
ବିଘ୍ନ ବିନାଶନ ଶାନ୍ତଦେବ ଗଜାନନ
ନମୋନମଃ ସୁରାସୁର ପୂଜିତ ଚରଣ ।
ମଙ୍ଗଳ ମଙ୍ଗଳାଳୟ କର୍ମଫଳ ଦାତା
ନମସ୍ତେ ଶ୍ରୀଗଣପତି ଭୁବନ ବିଧାତା ।
ଏ ସ୍ତୋତ୍ରକୁ ଯେଉଁ ଲୋକ ଭକ୍ତିରେ ପଢ଼ଇ
ତାହାର କଦାପି କାର୍ଯ୍ୟ ବିଘ୍ନ ନ ପଡ଼ଇ ।
ଏହିଠାରେ ଗଣେଶଙ୍କ ପୂଜା ବିଧିମାନ
ମଦନମୋହନ ଗୀତରେ କଲା ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଗଣେଶ ପୂଜାର ସବିଶେଷ
ବିବରଣ କଥନ ନାମ ସପ୍ତବିଂଶୋତ୍ତରଶତତମୋଽଧ୍ୟାୟଃ ।

# ଚ ତୁ ର୍ବିଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ବ୍ରହ୍ମା ଶିବଶେଷାଦିକୃତ ରାଧିକା ଦେବୀଙ୍କର ସ୍ତୋତ୍ର ବର୍ଣ୍ଣନା

ନାରାୟଣ ବୋଲନ୍ତି ହେ ଶୁଣ ମୁନିବର
ସ୍ତୋତ୍ର ପଢ଼ି ରାଧା ଦେବୀ ଗଣପତିଙ୍କର ।
ସର୍ବାଙ୍ଗ ଭୂଷଣ ତାଙ୍କୁ କଲେ ସମର୍ପଣ
ବୋଇଲେ ହେ ଗଜାନନ ହୁଅନ୍ତୁ ପ୍ରସନ୍ନ ।
ତାହା ଦେଖି ବିଘ୍ନେଶ୍ବର ସନ୍ତୁଷ୍ଟ ହୋଇଲେ
ମଧୁର କୋମଳ ଭାବେ ବଚନ କହିଲେ ।
ବୋଇଲେ ଗୋ ମହାମାୟେ ଲୋକ ଶିକ୍ଷାପାଇଁ
ପୂଜା କଲ ତୁମ୍ଭେ ଭକ୍ତିଭାବକୁ ଦେଖାଇ ।
ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥିତା ଅଟ ଯେଣୁ ତୁମ୍ଭେ
ତୁମ୍ଭର କି ଅବା ଶୁଭ କରିପାରୁ ଆମ୍ଭେ ।
ଯାହାଙ୍କର ପାଦପଦ୍ମ ଦରଶନ ପାଇଁ
କପିଳ ସନକ ଆଦି ମୁନିଗଣ ଧ୍ୟାୟି ।
ନିରୀକ୍ଷଣ କରୁଥାନ୍ତି ଦିନରାତି ବସି
ତାଙ୍କ ପ୍ରାଣେଶ୍ୱରୀ ତୁମ୍ଭେ ଅଟ ସୁରକେଶୀ ।
ତୁମ୍ଭଠାରେ ମହାଲକ୍ଷ୍ମୀ ଆଦି ଦେବୀଗଣ
ଜାତ ହୋଇ ନାନାସ୍ଥାନେ ରହିଛନ୍ତି ଜାଣ ।
ମୂଳ ପ୍ରକୃତି ଈଶ୍ୱରୀ ଅଟ ମହାମୟୀ
ତୁମ୍ଭ ଯୋଗରେ ସକଳ ସୃଷ୍ଟି ଅଛି ହୋଇ ।
ପ୍ରଥମରେ ତୁମ୍ଭ ନାମ ଉଚ୍ଚାରଣ କରି
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କ ନାମକୁ ସୁମରି ।
ସୁକୃତକରେ ଯେଉଁ ଲୋକ ସେ ଅଟେ ପଣ୍ଡିତ
ଦେହଅନ୍ତେ ହୁଏ ତାକୁ ଗୋଲୋକ ପ୍ରାପତ ।
ତୁମ୍ଭଙ୍କୁ ନିନ୍ଦାକରି ଯେ ଅନ୍ୟ ଦେବତାଙ୍କୁ
ପୂଜା କରଇ ମନରେ ପ୍ରକାଶି ଭକ୍ତିକୁ ।
ତାହାର ବଂଶ ବିନାଶ ହୁଅଇ କଷ୍ଟେ ।
ଆବର ପଡ଼ଇ ସେହି ଦୁଃଖମୟ ସ୍ରୋତେ
ଅନ୍ୟ ଦେବତାଙ୍କୁ ମନ୍ତ୍ରି ଉପାସନା କଲେ
ଦୁର୍ଗାଙ୍କଠାରେ ଭକତି ଜାତ ହୁଏ ଭଲେ ।
ଦୁର୍ଗାଙ୍କ ଭକ୍ତିବଳରେ ଶିବଙ୍କ ପାଦରେ
ଭକ୍ତି ଜାତ ହୁଏ ପୁଣି କେତେକାଳ ପରେ ।
ସେ ଅନ୍ତରେ ଦିବ୍ୟଜ୍ଞାନ ହୁଏ ଯେତେବେଳେ
ଭକ୍ତି ହୁଏ ତୁମ୍ଭ ଦୁହିଙ୍କର ପାଦତଳେ ।
ତୁମ୍ଭର ମନ୍ତ୍ରକୁ ଜପ କରଇ ଯେ ନିତି
ସହସ୍ର ପୁରୁଷ ତାର ମୁକତି ଲଭନ୍ତି ।
ଯେତେ ଦ୍ରବ୍ୟ ଆଣି ମୋତେ ଦେଲ ମହାମାୟୁ
ସାର୍ଥକରି ଏବେ ତାହା ବ୍ରାହ୍ମଣଙ୍କୁ ଦେଇ ।
ଦେବତାଠାରେ ଯେ ଦ୍ରବ୍ୟ କରିବ ଅର୍ପଣ
ପୂଜା ଅନ୍ତେ ବ୍ରାହ୍ମଣଙ୍କୁ କରିଲେ ତା ଦାନ ।
ଅଶେଷ ଫଳ ପ୍ରାପତ ହୁଅଇ ଅବଶ୍ୟ
ସନ୍ଦେହ ଏଥିରେ ନାହିଁ ବୋଲି ଜାଣ ଲେଶ
ଏହିରୂପେ ଗଣପତି କହିବାର କାଳେ
ବ୍ରହ୍ମା ଶିବଆଦି ସବୁ ଦେବତା ଆସିଲେ ।
ତାଙ୍କ ସଙ୍ଗରେ ଶ୍ରୀକୃଷ୍ଣ ଯାଦବଙ୍କୁ ଧରି
ଆସିଲେ ସେଠାକୁ ମଧ ପୂଜା ଇଚ୍ଛାକରି ।
ଏ ସମୟେ ଶିବଙ୍କର ଦୂତ ଆସି ତହିଁ
କହିଲା ଦେବ ଦେବୀଙ୍କ ଆଗେ ଉଭା ହୋଇ ।
ବୋଇଲା ହେ ଦେବ ଏହିଠାକୁ ଆଗେ ଆସି
ବୃଷଭାନୁ ସୁତା ରାଧା ଗୁରୁ ଚନ୍ଦ୍ରହାସୀ ।
ଶୁଭକ୍ଷଣରେ ଅର୍ଚ୍ଚନା କଲେ ଗଣେଶଙ୍କୁ
ଭକ୍ତିଭରେ ଦେଇ ଗନ୍ଧପୁଷ୍ପ ନୈବେଦ୍ୟକୁ ।
ତାଙ୍କ ସଙ୍ଗରେ ବହୁତ ଗୋପୀ ଆସିଛନ୍ତି
ନିବାରଣ କଲେ କାହାକୁ ସେ ନମାନନ୍ତି ।
ଯେତେ ମନାକଲି ମୁହିଁ ମୋହର କଥାକୁ
ନ ମାନି ପ୍ରବେଶ କଲେ ମନ୍ଦିର ମଧ୍ୟକୁ ।
ପ୍ରଥମରେ ଗଣେଶଙ୍କୁ ଯେ ପୂଜା କରଇ
ଅଚିରେ ତାହାର କାର୍ଯ୍ୟ ସଫଳ ହୁଅଇ ।
ଦେବତା ବୈଷ୍ଣବ ଦ୍ୱିଜ ମୁନି ଥିବାଠାରେ
ରାଧା ଆସି ପୂଜାକରି ଗଲେ ପ୍ରଥମରେ ।
ଏ କଥା କହିବାପାଇଁ ମୁହିଁ ଏହିଠାକୁ
ଆସିଲି କହିବା ହେଉ ଯେ ଆସେ ମନକୁ ।
ଦୂତଠାରୁ ଏହା ଶୁଣି ହସିଣ ସମସ୍ତେ
ଗଲେ ତହିଁ ପୂଜା କରିବାକୁ ଯେଝାମତେ ।
ଶୁଭ ସମୟରେ ନାନାବିଧ ଦ୍ରବ୍ୟ ଦେଇ
ପୂଜା ଆରମ୍ଭିଲେ ସୁତି ସ୍ତୋତ୍ରପାଠ ଗାଇ ।

ବଳିଷ୍ଠ ଦୁର୍ବଳ ଶ୍ରେଷ୍ଠ ସାମାନ୍ୟ ଯେତେକ
ଆସିଥିଲେ କ୍ରମେ ପୂଜା କରି ଏକ ଏକ ।
ଲଡ଼ୁକ ଶର୍କରା ଦଧି ଦୁଗ୍ଧ ପିଷ୍ଟକାଦି
ନୈବେଦ୍ୟ କଲେ ଅତି ଯତ୍ନରେ ସମ୍ପାଦି ।
ଆବର ସୁସ୍ୱାଦୁ ପକ୍ୱଫଳ ଅପ୍ରମିତ
ସମର୍ପଣ କଲେ ସର୍ବେ ହୋଇ ତୋଷଚିତ୍ତ ।
ପୂଜାବିଧି ଶେଷକରି ଦେବଦେବୀଗଣ
ଅଳଂକୃତ କଲେ ଯାଇ ଯେ ଯାହା ଆସନ ।
ପାର୍ବତୀ ଦେବୀ ସେଠାରୁ ଉଠି ସ୍ନେହଭରେ
ପ୍ରବେଶ ହୋଇଲେ ଯାଇଁ ରାଧାଙ୍କ ପାଶରେ
ତାହାଙ୍କୁ ଦେଖିଣ ରାଧା ଆଲିଙ୍ଗନ କରି
ଯଥାଯୋଗ୍ୟ ସମ୍ଭାଷଣ କଲେ ସ୍ନେହ ଧରି ।
ଏଥି ଅନ୍ତେ ବୋଇଲେ ଦେବୀ ତୁମ୍ଭ ଦରଶନେ
ପୂର୍ବରୁ ଆନନ୍ଦ ଜାତ ହେଉଅଛି ମନେ ।
ତା ଶୁଣି ପାର୍ବତୀ ଦେବୀ ନିଜ ବକ୍ଷସ୍ଥଳେ
ବସାଇ ପ୍ରୀତିଯୁକ୍ତ ବଚନ କହିଲେ ।
ବୋଇଲେ ଗୋ ଦେବୀ ତୁମ୍ଭେ ଶ୍ରୀଦାମାଶାପରେ
ଜନ୍ମ ହୋଇଅଛ ଏବେ ବୃଷଭାନୁ ଘରେ ।
ଯଥାର୍ଥରେ ଅଟ ତୁମ୍ଭେ ଗୋଲୋକ ଈଶ୍ୱରୀ
ଶ୍ରୀକୃଷ୍ଣଙ୍କ ପ୍ରାଣପ୍ରିୟା ପ୍ରାଣ ସହଚରୀ ।
ଯେଉଁରୂପେ ତୁମ୍ଭଠାରେ ମୋ ମନ ଆସକ୍ତ
ତୁମ୍ଭର ମଧ ମୋଠାରେ ଅଟେ ସେହିମତ ।
ପ୍ରକୃତି ପୁରୁଷଙ୍କର ଅଭେଦ ଯେପରି
ଆମ୍ଭ ଦୁହିଙ୍କର ମଧ ଅଟେ ସେହିପରି ।
ଶ୍ରୀକୃଷ୍ଣଙ୍କ ଅର୍ଦ୍ଧାଙ୍ଗିନୀ ଅଟ ଦେବୀ ତୁମ୍ଭେ
ଏ କଥା ଉତ୍ତମରୂପେ ଜାଣିଅଛୁ ଆମ୍ଭେ ।
ରାଧାକୃଷ୍ଣଙ୍କର ଭେଦ ଭାବଇ ଯେ ଜନ
ଦେହ ଅନ୍ତେ ନରକରେ ଲଭଇ ସେ ସ୍ଥାନ
ପ୍ରଥମରେ ଗଣେଶଙ୍କୁ ପୂଜା ତୁମ୍ଭେ କଲ
ସେ ହେତୁ ତୁମ୍ଭର ସବୁ ହୋଇବଟି ଭଲ ।
ଏହି ସିଦ୍ଧ ଆଶ୍ରମରେ ଶ୍ରୀକୃଷ୍ଣଙ୍କ ସଙ୍ଗେ
ନିର୍ବିଘ୍ନରେ ସୁଖେ କ୍ରୀଡ଼ାକର ନାନାରଙ୍ଗେ ।
ଶ୍ରୀଦାମ ଶାପରେ ଶେଷକାଳ ହେଲା ଆସି
ଶ୍ରୀକୃଷ୍ଣଙ୍କୁ ଦରଶନ କରିବ ସୁକେଶୀ ।
ଏବେ ସନ୍ତୋଷରେ ମୁହିଁ ଦେଉଅଛି ବର
ଅଚ୍ଛେଦ୍ୟ ହେଉ ଶ୍ରୀକୃଷ୍ଣ ପ୍ରୀତି ତୁମ୍ଭର ।

ପୂର୍ବପରି ବେଶଭୂଷା ସଜାଅ ସୁନ୍ଦରୀ
ଆସିବେ ଏଠାକୁ ଏହିକ୍ଷଣି ବଂଶୀଧାରୀ ।
ପାର୍ବତୀ ଦେବୀଙ୍କଠାରୁ ଶୁଣି ଏ ବଚନ
ରାଧାଙ୍କୁ ସ୍ନାନ କରାଇଲେ ସଖୀଗଣ ।
ରତ୍ନମାଳା ପଦ୍ମାବତୀ ଆଦିକରି ଯେତେ
ଥିଲେ ନାନା ଆଭରଣ ଅଣାଇ ଭରତେ ।
ଯଥାସ୍ଥାନେ ସମର୍ପଣ କରି ସେ କାଳରେ
ଦେଲେ ନାନା ପୁଷ୍ପମୟ ମାଳାକୁ ଗଳାରେ ।
ମାଳତୀ କୁସୁମ ଗୁଚ୍ଛ ମଣ୍ଡି କେଶ ପାଶେ
ସିନ୍ଦୂର ବିନ୍ଦୁକୁ ଦେଲେ ଲଲାଟ ପ୍ରଦେଶେ
ଶରତ ପଙ୍କଜପତ୍ର ସଦୃଶ ନେତ୍ରରେ
କଜ୍ଜ୍ୱଳ ଲଗାଇ ଦେଲା କେ ସଖୀ ସତ୍ୱରେ ।
ସୁଶୀଳା ମଧୁରାକ୍ଷର ଗୀତ ଶିଖାଇଲା
ଶ୍ରୀକୃଷ୍ଣଙ୍କୁ ଶୁଣାଇବ ବୋଲିଣ କହିଲା ।
ବିରହ କାଳରେ ଦେବୀ ସେ ଷୋଡ଼ଶ କଳା
ବିସ୍ମରଣ କରିଥିଲେ ହୋଇବାରୁ ହେଳା ।
ନିଜ ମାତା କଳାବତୀ ସେ ସବୁ ଶିଖାଇ
ଦେଲେ ପତିଙ୍କର ମନ ତୋଷିବାର ପାଇଁ ।
ଶୃଙ୍ଗାର ବିଷୟୋଚିତ ସୁଧାତୁଲ୍ୟ ଗିର
ଶିଖାଇଲା ସୁଧାମୁଖୀ ହୋଇ ତତପର ।
କମଳା କୋମଳ ଶଯ୍ୟା ବିରଚନ କଲା
ଆନନ୍ଦ ଶୟନ ଏଥି କର ଗୋ ବୋଇଲା ।
ଏହିପରି ସୁସଜ୍ଜିତ କରି ସର୍ବ ସଖୀ
ରହିଲେ ଦେବୀଙ୍କ ପାଶେ ହୋଇ ଅତି ସୁଖୀ
ଏହି ସମୟରେ ଦେବ ମୁନି ଋଷିମାନେ
ଦୂରଆଡ଼େ ପୀତବସ୍ତ୍ର ଦେଖିଲେ ନୟନେ ।
ସେ ସକାଶୁ ବିସ୍ମୟରେ ଶ୍ରୀକୃଷ୍ଣଙ୍କୁ ସ୍ମରି
ପଚାରିଲେ ଏହିପରି ହେଲା କାହିଁପାଇଁ ।
ଶ୍ରୀକୃଷ୍ଣ ବୋଇଲେ ରାଧା ଶ୍ରୀଦାମ ପାଶରୁ
ଶତବର୍ଷ ବିଦୂରିତ ହେଲେ ଆମ୍ଭଠାରୁ ।
ବିରହ ବ୍ୟଥାରେ ତାହାଙ୍କର ତେଜରାଜି
ଅମାବାସ୍ୟା ଚନ୍ଦ୍ରପରି ଯାଇଥିଲା ହଜି ।
ଏବେ ଶାପ ଅବସାନ ହେବାରୁ ସେ ପୁଣି
ପ୍ରକାଶିତ ହେଲା କୋଟି ଚନ୍ଦ୍ର ପ୍ରଭା ଜିଣି ।
ସେ ତେଜରେ ସିଦ୍ଧାଶ୍ରମ ହୋଇଛି ଉଜ୍ଜ୍ୱଳ
ଆନନ୍ଦ ହୁଅଇ ତାହା ଦେଖିଣ ସକଳ ।

ତାହା ଶୁଣି ଆଶ୍ଚର୍ଯ୍ୟରେ ଦେବ ଋଷିଗଣ
ସକଳ ଲୋକଙ୍କୁ ନିଜ ସଙ୍ଗରେ ନେଇଣ ।
ସେ ସ୍ଥାନକୁ ଯାଇ ରାଧା ଦେବୀଙ୍କର ପାଶେ
ପ୍ରବେଶ ହୋଇ ଦର୍ଶନ କଲେକ ହରଷେ ।
ଦେଖିଲେ ତାହାଙ୍କ ଅଙ୍ଗେ ମନୋହର ଶୋଭା
ବିରାଜିତ ହୁଏ ଯେସନେ କୋଟିଚନ୍ଦ୍ର ପ୍ରଭା ।
ଶରତ ପଙ୍କଜ ପରି ସଦୃଶ ଲୋଚନ
କଜ୍ୱଳ ରେଖାରେ ଦିଶୁଅଛି ଶୋଭାବନ ।
ପରମା ଆଦ୍ୟା ପ୍ରକୃତି ଜଗତ ଜନନୀ
ଶ୍ରୀକୃଷ୍ଣ ହୃଦୟ ପଦ୍ମ ସଦ୍ମ ନିବାସିନୀ ।
ସୁଶ୍ରୋଣୀ କଠିନ ସ୍ତନୀ ଚମ୍ପକ ବରନା
ତ୍ରୈଲୋକ୍ୟ ମୋହିନୀ ଗୁରୁ ପୂର୍ଣ୍ଣଚନ୍ଦ୍ରାନନା ।
ରାସେଶ୍ୱରୀ ରାସସ୍ଥା ସୁପ୍ରୀତିବସନୀ
ସତ୍ୟରୂପା ସତ୍ୟବତୀ ସର୍ବ ସ୍ୱରୂପିଣୀ ।
ଏମନ୍ତ ଯେ ଦେବୀ ତାଙ୍କ ସମୀପରେ ରହି
ସେବା କରୁଛନ୍ତି ସଖୀଗଣ ତୋଷ ବହି ।
ଶୁକଳ ଚାମର ଧରି କେଉଁ ସହଚରୀ
ଢାଳୁଅଛି ଧୀରେ ଧୀରେ ହସ୍ତ ଟେକକରି ।
କେଉଁମାନେ ବସି ପାଦ ମର୍ଦ୍ଦନ କରନ୍ତି
ମିଷ୍ଟ ଆଳାପ କରଇ କେବଣ ଯୁବତୀ ।
ଅମୂଲ୍ୟ ରତ୍ନ ଗଠିତ ସିଂହାସନ ପରେ
ବିରାଜି ଅଛନ୍ତି ଦେବୀ ପ୍ରତିମା ପ୍ରକାରେ ।
ଶ୍ରୀକୃଷ୍ଣଙ୍କ ଚରଣରେ ଦେଇକରି ମତି
ସର୍ବଦା ହୃଦରେ ତାଙ୍କୁ ଧ୍ୟାନ କରୁଛନ୍ତି ।
ଏହିରୂପେ ଦେଖି ତାଙ୍କୁ ବ୍ରହ୍ମା ପ୍ରଜାପତି
ମସ୍ତକରେ କର ଯୋଡ଼ି ଆରମ୍ଭିଲେ ସ୍ତୁତି ।
ବୋଇଲେ ଗୋ ମହାମାୟେ ପୁଷ୍କର ତୀର୍ଥରେ
ତପକଲି ମୁଁ ତୁମ୍ଭର ଦର୍ଶନ ଇଚ୍ଛାରେ ।
ଷାଠିଏ ସହସ୍ର ବର୍ଷ ଅତୀତ ହୋଇଲା
ତଥାପି ମୋତେ ଦର୍ଶନ ପ୍ରାପତ ନୋହିଲା ।
ସେ ସମୟେ ଆକାଶରୁ ଶୁଭିଲା ଏ ଗିର
ଆହେ ବ୍ରହ୍ମା କିପାଁ ହେଉଅଛ ହରବର ।
ଯେତେ ତପକଲେ ହେଲେ ସ୍ୱପନରେ ତୁମ୍ଭେ
ଦରଶନ ଏବେ ନ ପାଇବ ଜାଣ ଆମ୍ଭେ ।
ବରାହ କଳ୍ପରେ ପୁଣ୍ୟ ଭାରତ ବରଷେ
ବୃନ୍ଦାବନେ ସିଦ୍ଧାଶ୍ରମେ ଗଣେଶଙ୍କ ପାଶେ ।
ସମ୍ପୂର୍ଣ୍ଣ ରୂପ ଦର୍ଶନ କରିବ ନିଶ୍ଚୟ
କହୁଛି ମାତ୍ର ଏଥିରେ ନାହିଁଟି ସଂଶୟ ।
ଏରୂପେ ଶୁଣି ତପରୁ ନିବୃତ୍ତ ହୋଇଲି
ଅପେକ୍ଷା କରିଣ ଆଜଯାଏ ରହିଥିଲି ।
ଏବେ ଦରଶନ କରି ମନୋରଥ ମୋର
ପୂର୍ଣ୍ଣହେଲା ପୂର୍ବ ତପ ଫଳ ସହିତର ।
ସେ ଅନ୍ତରେ ସଦାଶିବ ବୋଇଲେ ଗୋଦେବୀ
ପବିତ୍ର ହୁଅଇ ଲୋକ ତୁମ୍ଭ ପାଦ ସେବି ।
ଯାହାଙ୍କ ଦର୍ଶନ ଆଶେ ମୁନି ଋଷିଗଣ
ସର୍ବବେଳେ ବସି କରୁଛନ୍ତି ଯୋଗଧ୍ୟାନ ।
ସେ ପରମ ପୁରୁଷଙ୍କ ବକ୍ଷସ୍ଥଳେ ତୁମ୍ଭେ
ବିରାଜିତ ଅଛ ଏହା ଜାଣୁଅଛୁ ଆମ୍ଭେ ।
ଅନନ୍ତ ବୋଇଲେ ଦେବୀ ଶକ୍ତିରୂପା ତୁମ୍ଭେ
ତୁମ୍ଭର ମହିମା କିବା ଜାଣିପାରୁ ଆମ୍ଭେ ।
ସକଳ ବେଦ ପୁରାଣ ଗଣରେ ତୁମ୍ଭର
ଆଦି ଅନ୍ତ କେଉଁଠାରେ ନୁହଇ ଗୋଚର ।
ମୁହିଁ ବେଦ ବେଦ ମାତା ସରସ୍ୱତୀ ଶିବ
ଜାଣି ନ ପାରୁ କହିତେ ତୁମ୍ଭର ପ୍ରଭାବ ।
ସେ ଅନ୍ତେ ସକଳ ଦେବ ଦେବୀଗଣ ଆସି
ସ୍ତୁତି କଲେ ବେନି ହସ୍ତ ମସ୍ତକେ ନିବେଶି ।
ରୁକ୍ମିଣୀଙ୍କୁ ଆଦି ଯେତେ ଶ୍ରୀକୃଷ୍ଣ କାମିନୀ
ଲଜ୍ଜାରେ ମସ୍ତକ ପୋତିଦେଲେ ସେହିକ୍ଷଣି ।
ରାଧାଙ୍କର ରୂପ ଦେଖି ବିରସ ହୋଇଲେ
ନିଜଠାରେ ଥିବା ଅଭିମାନକୁ ଛାଡ଼ିଲେ ।
ଏହିଠାରେ ରାଧାଙ୍କର ଗଣେଶ ପୂଜନ
ସମାପନ ହେଲା ଗୀତେ କହେ କ୍ଷେସହୀନ ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମା ଶିବ ଶେଷାଦିକୃତ ରାଧାଦେବୀଙ୍କର ସ୍ତୋତ୍ର ବର୍ଣ୍ଣନା କଥନେ ନାମ ଚତୁର୍ବିଂଶୋତ୍ତରଶତତମୋଽଧ୍ୟାୟଃ ।

---

# ପଞ୍ଚବିଂଶୋତ୍ତର ଶତତମ ଅଧ୍ୟାୟ

## ଶିବଙ୍କଠାରୁ ବସୁଦେବଙ୍କର ଜ୍ଞାନଲାଭ

ନାରଦ ବୋଇଲେ ଆହେ ମୁନିଗଣ ଶ୍ରେଷ୍ଠ
ଗଣେଶ ଅଟନ୍ତି ସର୍ବଦେବଙ୍କ ଉତ୍କୃଷ୍ଟ ।
ତାହାଙ୍କର ପୂଜାବିଧି ସାରି ଯେଉଁମାନେ
ରାଧିକା ଦେବୀଙ୍କ ସ୍ତୁତି କଲେ ତୋଷମନେ ।
ସେମାନେ ସେଠାରେ ଆଉ କେଉଁକାର୍ଯ୍ୟକଲେ
ସେ ସକଳ କଥା କହ ମୋ ଆଗରେ ଭଲେ ।
ନାରାୟଣ ବୋଇଲେ ହେ ଶୁଣ ମୁନିବର
ଆସିଥିଲେ ଯେତେ ଦେବ ମୁନି ଋଷି ନର ।
ସମସ୍ତେ ଗଣେଶ ପୂଜା ସମାପନ କରି
ବସିଲେ ଅକ୍ଷୟ ବଟ ମୂଳକୁ ଆବୋରି ।
ସେହିଠାରେ ବସୁଦେବ ଦେବକୀଙ୍କ ଗୁଳେ
ଶିବଙ୍କ ପାଶରେ ଯାଇ ପ୍ରବେଶ ହୋଇଲେ ।
ଭକ୍ତିଭରେ ତାଙ୍କ ପାଦେ ପ୍ରଣିପାତ କରି
ମୁନି ଋଷିଙ୍କୁ ପ୍ରଣାମ କଲେ ସେହିପରି ।
ସେ ଅନନ୍ତେ ବୋଇଲେ ଦେବ ମୁନି ଋଷିଗଣ
ଶୁଣିବା ହେଉ କଣ୍ଠେ ମୋହର ବଚନ ।
କି ଉପାୟ କଲେ ଆମ୍ଭେ ଭବାବ୍ଧିରୁ ପାର
ହୋଇବୁ ସେ କଥା ମୋର ଆଗେ ବ୍ୟକ୍ତ କର ।
ଏ ଭବସାଗର ତରୀ କର୍ଣ୍ଣଧାର ହୋଇ
ଅଛନ୍ତି ଆପଣମାନେ ସ୍ଥାନେ ସ୍ଥାନେ ରହି ।
ଜଳମୟ ତୀର୍ଥଗଣ ମୃତ୍ତିକା ବିକାର
ଅଟନ୍ତି ସେ ଦେବଦେବୀ ଜଗତ ମଧ୍ୟର ।
ଆଉ ଯଜନ ବ୍ରତ ତପ ବିପ୍ରାର୍ଚ୍ଚନ
ଏମାନେ ନୁହନ୍ତି ବିଷ୍ଣୁଭକ୍ତର ସମାନ ।
ଅନ୍ୟ କର୍ମ କଲେ ଜନ୍ମାନ୍ତରେ ହୁଏ ଫଳ
ବିଷ୍ଣୁଭକ୍ତ ଦରଶନେ ହୁଏ ତତକାଳ ।
ଯେଉଁ ବଇଷ୍ଣବଙ୍କର ପାଦ ପରଶରେ
ପବିତ୍ର ହୁଅଇ ମହୀ ତୀର୍ଥ ସହିତରେ ।
ସେମାନଙ୍କୁ ଚିହ୍ନି ନ ପାରଇ ଯେଉଁ ଲୋକ
ଜଗତରେ ସେ କେବଳ ଅଟେ ଅବିବେକ ।
ଶ୍ରୀକୃଷ୍ଣଙ୍କ ପିତାମାତା ଅଟୁ ଆମ୍ଭେ ଦୁହେଁ
ସଙ୍ଗୀ ହୋଇଅଛୁ ତାଙ୍କ ସଙ୍ଗେ ସବୁଠାଏଁ ।

ତଥାପି ଆପଣମାନେ ବୈଷ୍ଣବ ଉତ୍ତମ
ଆପଣଙ୍କଠାରୁ ଶୁଣି ଦୂର ହେବ ଭ୍ରମ ।
ଏହିରୂପେ ବସୁଦେବ ଦେବକୀ ଉଭୟେ
ପଚାରନ୍ତେ ସଦାଶିବ ହସି ସେ ସମୟେ ।
ବୋଇଲେ ଯା ପଚାରିଲ ତହିଁର ଉତ୍ତର
କହୁଅଛୁ ଶୁଣ ଏବେ ମନକରି ସ୍ଥିର ।
ଶ୍ରୀକୃଷ୍ଣଙ୍କ ପିତାମାତା ହୋଇଛ ତ ତୁମ୍ଭେ
ତୁମ୍ଭଙ୍କୁ କି ଉପଦେଶ ଦେବୁ ଅବା ଆମ୍ଭେ ।
ସର୍ବଦା ରହିଲେ ପାଶେ ଜ୍ଞାନୀଲୋକଙ୍କର
ଜ୍ଞାନ ପ୍ରତି ଜାତ ହୋଇଯାଏ ଅନାଦର ।
ସାଧୁ ସଙ୍ଗମରେ ଜଣାଯାଏ ଭଲକଥା
ଗଙ୍ଗାଜଳେ ଅନ୍ୟତୀର୍ଥେ ପବିତ୍ର ସର୍ବଥା ।
ପୁତ୍ରବୁଦ୍ଧି କରି ତୁମ୍ଭେ ଶ୍ରୀକୃଷ୍ଣଙ୍କଠାରେ
ଜ୍ଞାନ ପଚାରୁଛ ଆସି ଆମ୍ଭ ନିକଟରେ ।
ଜଗତରେ ବିଷ୍ଣୁମାୟା ଅଟେ ବଳବତୀ
ବଳାତ୍କାରେ ଭୁଲାଏ ସେ ସମସ୍ତଙ୍କ ମତି ।
ବ୍ରହ୍ମା ମୁହିଁ ଆଦିକରି ଯେତେ ଦେବଗଣ
ବିଷ୍ଣୁମାୟାରେ ମୋହିତ ଅଟୁ ସତ୍ୟେ ଜାଣ ।
ଯାହାଙ୍କର ପାଦପଦ୍ମ ଦରଶନ ପାଇଁ
ବସିଥାନ୍ତି ଯୋଗୀଗଣ ଧ୍ୟାନନିଷ୍ଠ ହୋଇ ।
ଦଶଲକ୍ଷ ଅଷ୍ଟାଦଶ ଶତ ଇନ୍ଦ୍ରଙ୍କର
ପତନ ହେଲେ ନିମେଷ ପଡ଼ଇ ଯାହାର ।
ଜ୍ଞାନ ବିଷୟରେ ଆମ୍ଭେ ତାଙ୍କଠାରୁ କେହି
ଅଧିକ ନୋହିବୁ ଜାଣ କହୁଅଛୁ ମୁହିଁ ।
ସାମାନ୍ୟ ପ୍ରାଣୀଙ୍କଠାରୁ ଅଳପ ମାତ୍ରାରେ
ଉତ୍କୃଷ୍ଟ ହୋଇବୁ ଆମ୍ଭେ ଜ୍ଞାନ ବିଷୟରେ ।
ଧର୍ମସ୍ତକଠାରୁ ବଳି ଶ୍ରୀକୃଷ୍ଣ ଜାଣନ୍ତି
ତାହାଙ୍କୁ ପଚାରି ତୁମ୍ଭେ ବୁଝ ଧର୍ମନୀତି ।
ବ୍ରହ୍ମାଙ୍କର ଏକଦିନ ଶେଷ ହୁଏ ଯେବେ
କୋଟିଏ କଳପ ଭୋଗ ହୋଇଥାଏ ତେବେ ।
ସପତ କଳପଜୀବୀ ମୁନି ମାର୍କଣ୍ଡେୟ
ଅଷ୍ଟାନବ ଇନ୍ଦ୍ର ପରେ ହେବ ତାଙ୍କ ଲୟ ।

ସେ ଅନ୍ତରେ ତପସ୍ୟାକଲେ ଶ୍ରୀହରିଙ୍କ ପାଶେ,
ଦାସତ୍ତ୍ୱ ପାଇଣ ମୁନି ରହିଲେ ହରଷେ ।
ପ୍ରଳୟ କାଳ ଅନ୍ତରେ ବ୍ରହ୍ମାଙ୍କ ପତନ
ସେ କାଳେ ନଷ୍ଟ ହୁଅନ୍ତି ଦିଗପାଳଗଣ ।
ଆବର ଦେବତା ଯକ୍ଷ ପନ୍ନଗ ମାନବ
କେବଳ ସେ ସମୟରେ ହୁଅନ୍ତି ନିର୍ଜୀବ ।
କେବଳ ମୁଁ ମୃତ୍ୟୁଞ୍ଜୟ ହେବାରୁ ମୋତେ
ଗ୍ରହଣ ବିନାଶପ୍ରାପ୍ତ ହୁଅନ୍ତି ସମସ୍ତେ ।
ଏହିରୂପେ କେତେକାଳ ଗଲା ପରେ ପୁଣି
ସୃଷ୍ଟି କରନ୍ତି ଶ୍ରୀକୃଷ୍ଣ ସର୍ବବିଧ ପ୍ରାଣୀ ।
ସମସ୍ତଙ୍କ ମୂଳବୀଜ ଅଟନ୍ତି ସେହି
ଭଜ ତାଙ୍କଠାରୁ ପୁତ୍ରବୁଦ୍ଧି ଛାଡ଼ିଦେଇ ।
ରାଜସୂୟ ଯାଗ କରି ସର୍ବସ୍ୱ ଦକ୍ଷିଣା
ଦିଅ ଆନନ୍ଦ ମନରେ ଆହେ ମହାମନା ।
ସେମନ୍ତ କଲେ ତୁମ୍ଭର ହୋଇବ ମୁକତି
ପ୍ରଥମରେ ସ୍ୱର୍ଗସୁଖ ଭୁଞ୍ଜିବ ନୃପତି ।
ଏରୂପେ ଶିବଙ୍କ ମୁଖୁଁ ଶୁଣି ବସୁଦେବ ।
ଶ୍ରୀକୃଷ୍ଣଙ୍କୁ ସ୍ମରିଲେ ଛାଡ଼ି ପୁତ୍ରଭାବ ।
ତାଙ୍କ ସମ୍ମତି ପ୍ରକାରେ ରାଜସୂୟ ଯାଗ
କରି ବସୁଦେବ ତାଙ୍କୁ ଦେଲେ ହବିର୍ଭାଗ ।
ପୂର୍ଣ୍ଣାହୁତି ଦେଲାବେଳେ ସନତ୍କୁମାର
କହିଲେ ବସୁଦେବଙ୍କୁ ଅନାଇ ଏ ଗିର ।
ସର୍ବସ୍ୱ ଦକ୍ଷିଣା ଦିଅ ଆହେ କୃଷ୍ଣତାତ
ଏ ମହାଯଜ୍ଞର ଫଳ ହୋଇବ ପ୍ରାପତ ।
ଯାଗ ସମାପନ କଲେ ନ ଦେଲେ ଦକ୍ଷିଣା
ମୁହୂର୍ତ୍ତ ଅନ୍ତରେ ତାହା ହୁଅଇ ଦ୍ୱିଗୁଣା ।
ଦିନକ ଅନ୍ତରେ ତାର ଶତଗୁଣ ହୁଏ
ତିନିଦିନ ପରେ ଛଅଗୁଣ ବଢ଼ିଯାଏ ।
ଏହିରୂପେ କ୍ରମେ କ୍ରମେ ବଢ଼ନ୍ତ ହୁଅଇ
ଯାଜକ ଯଦ୍ୟପି ତାହା ଦେଇ ନ ପାରଇ ।
ସେ ଯାଜକ ସୁରାହିତ ଦୁହେଁ ଦେହ ଅନ୍ତେ
ନରକେ ପଡ଼ନ୍ତି ଶତଯୁଗ ପର୍ଯ୍ୟନ୍ତେ ।
ତାହା ଶୁଣି ବସୁଦେବ ସର୍ବସ୍ୱ ଦକ୍ଷିଣା
ଦେଲେ ସନତ୍କୁମାରଙ୍କୁ ସେ ତ ମହାମନା ।

କୃଷ୍ଣ ଅନୁମତି ପାଇ ଆକାତର ହୋଇ
ଗର୍ଗମୁନିଙ୍କୁ ସୁବର୍ଣ୍ଣ ରତ୍ନ ଦେଲେ ନେଇ ।
ମାଣିକ୍ୟ ହୀରକ ମୁକ୍ତା ବୈଦୂର୍ଯ୍ୟ ପ୍ରବାଳ
ଦାନ କଲେ ବ୍ରାହ୍ମଣଙ୍କୁ ଡକାଇ ତତ୍କାଳ ।
ଲକ୍ଷେକ ଶ୍ୱେତଚାମର ଲକ୍ଷେ ଦରପଣ
ଲକ୍ଷେ ଶୁକ୍ଳବସନ ପୁଣି କରାଇଲେ ଦାନ ।
ଏକଲକ୍ଷ କାମଧେନୁ ମଣ୍ଡି ସୁବର୍ଣ୍ଣରେ
ଉତ୍ତମ ଦ୍ୱିଜଙ୍କୁ ଡାକି ଦେଲେ ସେ କାଳରେ ।
ଶତକୋଟି ଅଶ୍ୱ, ରଥ ଗର୍ଦ୍ଦଭ ଉଷ୍ଟ୍ର ଗଜ
ପ୍ରଦାନ କଲେ କରାଇ ଭୂଷଣରେ ସଜ ।
ଯେତେ ଯେତେ ଉପହାର ଦ୍ରବ୍ୟ ପାଇଥିଲେ
ସମସ୍ତ ଦ୍ୱିଜଙ୍କୁ ଡାକି ଦାନ କରାଇଲେ ।
ପାୟସ ପିଷ୍ଟକ ଅନ୍ନ, ବ୍ୟଞ୍ଜନ ସହିତେ
ଭୋଜନାର୍ଥୀ ବ୍ରାହ୍ମଣଙ୍କୁ ଦେଲେ ଅପ୍ରମିତେ ।
ସ୍ୱସ୍ତିକ ଲଡ଼ୁକ ସିତ ଶର୍କରା ଅପାର
ଦଧି ଦୁଗ୍ଧ ସହିତରେ ଦେଲେ ନରବର ।
କର୍ପୂରଯୁକ୍ତ ତାମ୍ବୁଳ ଗୁବାକ ମିଶାଇ
ଭୋଜନାନ୍ତେ ସମସ୍ତଙ୍କୁ ଦେଲେ ସେ ଅଣାଇ ।
ସୁବାସିତ ଗନ୍ଧପୁଷ୍ପ ପାରିଜାତ ମାଳ
ବ୍ୟଞ୍ଜନ ସହିତେ ଦାନକଲେ ତତକାଳ ।
ଆସନ ବସନ ରତ୍ନନିର୍ମିତ ତଳପ
ଫଳମୂଳ ଆଦିକରି ଦାନ କଲେ ନୃପ ।
ଦେବତା ବ୍ରାହ୍ମଣ ଆଦି ଯେତେ ତହିଁ ଥିଲେ
ସମସ୍ତଙ୍କୁ ମିଷ୍ଟଦ୍ରବ୍ୟ ଭୁଞ୍ଜିବାକୁ ଦେଲେ ।
ଆନନ୍ଦିତ ହୋଇ ସର୍ବେ ସେ ଦିନ ନିଶାରେ
ରହିଲେ ରାମ କୃଷ୍ଣଙ୍କ ସହିତେ ସୁଖରେ ।
ବସନ୍ତ ମଳୟାନିଳ ବହେ ଧୀର ଧୀର
କୂଜନ୍ତି ଆନନ୍ଦେ ଉପବନେ ପକ୍ଷୀକୁଳ ।
ପରଦିନ ଶ୍ରୀକୃଷ୍ଣଙ୍କ ଅନୁମତି ପାଇ
ସେ ଯାହା ପୁରକୁ ଗଲେ ବିମାନ ଆରୋହି ।
ଯାଦବେ ଦ୍ୱାରକାପୁରେ ହୋଇଲେ ପ୍ରବେଶ
ସମସ୍ତେ ଚଳିଲେ ତହୁଁ ଯେ ଯାହାର ଦେଶ
ଏହିଠାରେ ଯଜ୍ଞକର୍ମ ବସୁଦେବଙ୍କର
ସମାପ୍ତ ହୋଇଲା ଗୀତେ ଭଣେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଶିବଙ୍କଠାରୁ ବସୁଦେବଙ୍କର
ଜ୍ଞାନଲାଭ କଥନେ ନାମ ପଞ୍ଚବିଂଶୋତ୍ତରଶତତମୋଽଧ୍ୟାୟଃ ।

# ଷଷ୍ଠବଂଶୋତ୍ତରଶତତମ ଅଧ୍ୟାୟ

## ରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କର ପୁନର୍ମିଳନ

ନାରାୟଣ ବୋଇଲେ ହେ ନାରଦ ମହର୍ଷି
ଏଥୁଅନ୍ତେ ଯାହା ହେଲା ଶୁଣ ଏବେ ବସି ।
ଯାଦବଙ୍କୁ ସଙ୍ଗେ ଘେନି ଦେବ ବାସୁଦେବ
ଗଣେଶଙ୍କୁ ପୂଜା କଲେ ଘେନି ଭକ୍ତିଭାବ ।
ସେ ଅନ୍ତେ ରୁକ୍ମିଣୀ ଆଦି ମହିଷୀଙ୍କ ତୁଲେ
ଅଂଶରୂପେ ଦ୍ୱାରକାରେ ପ୍ରବେଶ ହୋଇଲେ
ପୂର୍ଣ୍ଣ ସ୍ୱରୂପରେ ସେହି ସିଦ୍ଧାଶ୍ରମେ ରହି
ଗୋକୁଳବାସୀଙ୍କ ସଙ୍ଗେ କଥାବାର୍ତ୍ତା ହୋଇ
ନନ୍ଦ ଯଶୋଦା ଦୁହିଙ୍କ ସମୀପକୁ ଗଲେ
ମଧୁର ବଚନେ ତାଙ୍କୁ ବୁଝାଇ କହିଲେ ।
ବୋଇଲେ ହେ ବ୍ରଜେଶ୍ୱର ଆନନ୍ଦ ମନରେ
ଗୋକୁଳକୁ ଯାଇ ଏବେ ରହ ସନ୍ତୋଷରେ ।
ଭୋ ମାତ ଯଶୋଦା ଦେବୀ ପିତାଙ୍କ ସହିତେ
ରହିଥାଅ ବ୍ରଜପୁରେ ପରମ ଉସତେ ।
ଆଉ କିଛିକାଳ ଭୋଗକରି ସେ ଅନ୍ତରେ
ବସିବ ନିଶ୍ଚୟ ଯାଇ ଗୋଲୋକ ନଗରେ ।
ଗୋକୁଳବାସୀଙ୍କ ତୁଲେ ସାଯୁଜ୍ୟ ମୁକତି
ଦେବି ଯଥା ସମୟରେ ଛାଡ଼ି ମନୁ ଭ୍ରାନ୍ତି ।
ଏହିରୂପେ ଶ୍ରୀକୃଷ୍ଣଙ୍କ ବଚନକୁ ଶୁଣି
ଆନନ୍ଦ ମନରେ ନନ୍ଦ ଯଶୋମତୀ ରାଣୀ ।
ପୁତ୍ରକୁ ଆଶଂସା କରି ଗୋକୁଳକୁ ଗଲେ
ଶ୍ରୀକୃଷ୍ଣ ରାଧାଙ୍କ ପାଶେ ପ୍ରବେଶ ହୋଇଲେ
ଦେଖିଲେ ସୁବେଶ ହୋଇ ରାଧିକା ସୁନ୍ଦରୀ
ରତ୍ନ ସିଂହାସନ ପରେ ଛନ୍ତି ବିଜେକରି ।
ବେତ୍ରହସ୍ତା ହୋଇ ତିନିକୋଟି ଗୋପିଗଣ
କରିଛନ୍ତି ତାହାଙ୍କର ଶରୀର ରକ୍ଷଣ ।
ରାଧିକା ତ ଶ୍ରୀକୃଷ୍ଣଙ୍କ ଆଗମନ ଚିହ୍ନି
ବସିଥିଲେ ସେ ଆସିବା ମାର୍ଗେ ଦୃଷ୍ଟି ଦେଇ ।
ଦୂରରୁ ଦେଖିଲେ ଆସୁଅଛନ୍ତି ପ୍ରାଣେଶ
ନବ ଜଳଧର ଶ୍ୟାମ ସୁରୁଚିର ବେଶ ।
ସସ୍ମିତ ସୁନ୍ଦର ମୁଖ ଶିଖିପୁଚ୍ଛ ଚୂଳ
ହୃଦୟରେ ସୁଶୋଭିତ ଦିବ୍ୟ ବନମାଳ ।
ମୁରଲୀ ନିହିତ ହସ୍ତ ପ୍ରସନ୍ନ ବଦନ
ରୂପ ଦିଶଇ ସାକ୍ଷାତେ କନ୍ଦର୍ପ ସମାନ ।
ତାଙ୍କୁ ଦେଖି ଗୋପିଗଣ ସମ୍ଭ୍ରମରେ ବେଗେ
ଭକ୍ତିଭରେ ଦଣ୍ଡବତ ହେଲେ ଆସି ଆଗେ ।
ସେ ଅନ୍ତେ ବୋଇଲେ ଆଜି ମୋହର ଜୀବନ
ସଫଳ ହୋଇଲା ଦେଖି ତୁମ୍ଭର ବଦନ ।
ଆହେ ଦେବ ପ୍ରାଣପ୍ରିୟ ମୋର ପଞ୍ଚପ୍ରାଣ
ତୁମ୍ଭ ବିହୁନେ ବ୍ୟାକୁଳ ହୋଇଥିଲା ଜାଣ ।
ଏବେ ତୁମ୍ଭ ଖଫମୁଦ୍ର ରଶଦନ କରି
ତୋଷ ହେଲି ଚନ୍ଦ୍ରୋଦୟେ କୁମୁଦ ଯେପରି
ବନ୍ଧୁ ଦରଶନ ଅଟେ ପରମ ଦୁର୍ଲ୍ଲଭ
ତୁମ୍ଭେ ତ ପୁଣ ମୋହର ଜୀବନ ବଲ୍ଲଭ ।
ତୁମ୍ଭଙ୍କୁ ଦେଖିବା ମାନେ କାହିଁକି ହରଷ
ନୋହିବ କହିବା ହେଉ ଆହେ ଜୀବନ୍ଧିଶ ।
ତୁମ୍ଭ ଯୋଗେ ବୋଲାଏ ମୁଁ ପରମ ଭାଗ୍ୟସୀ
ତୁମ୍ଭ ବିଯୋଗରେ ହୋଇଥିଲି ଶବ ପରି ।
ସାମାନ୍ୟ ହୋଇଲେ ହେଲେ ଦମ୍ପତି ବିରହ
ବଜ୍ରପାତ ସମାନରେ ହୁଏ ସୁଦୁଃସହ ।
ଏମନ୍ତ ବୋଲିଣ ଦେବୀ ସୁବାସିତ ନୀରେ
ଶ୍ରୀକୃଷ୍ଣଙ୍କ ପାଦ ଧୋଇ ସ୍ୱର୍ଣ୍ଣ ଆସନରେ ।
ବସାଇଣ ଗନ୍ଧ ପୁଷ୍ପ ସମର୍ପଣ କରି
ପୂଜା କଲେ ପ୍ରଥମରେ ଭକ୍ତିଭାବ ଧରି ।
ସେ ଅନ୍ତେ ପତିଙ୍କଠାରୁ ଅନୁମତି ପାଇ
ବସିଲେ ତାହାଙ୍କ ପାଶେ ହରଷିତ ହୋଇ ।
ସପତ ଗୋପିକା ଆସି ଶୁକଳ ଚାମର
ବୀଜନ କଲେ ସେବାରେ ହୋଇ ତତପର ।
ଚନ୍ଦନା ନାମରେ ଯେଉଁ ଗୋପୀ ତହିଁ ଥିଲା
ଶ୍ରୀକୃଷ୍ଣଙ୍କ ଅଙ୍ଗେ ଗନ୍ଧ ଚନ୍ଦନ ଲେପିଲା ।
ରତନ ମାଳିକା ଘେନି ରତ୍ନମାଳା ଆସି
ଗଳା ଦେଶରେ ଲମ୍ବାଇ ଦେଲା ହସି ହସି ।
ମାଳତୀ ମାଳତୀମାଳା ଖଞ୍ଜିଲା ମୁଣ୍ଡରେ
ଚମ୍ପାପୁଷ୍ପ ଦେଲା ଚମ୍ପାବତୀ ତୋଷଭରେ ।

ପାରିଜାତ ଅର୍ଘ୍ୟ ଦେଇ ପାରିଜାତ ମାଳା
କଣ୍ଠଦେଶରେ ସେକ୍ଷଣି ଲମ୍ବାଇଣ ଦେଲା ।
କଦମ୍ବମାଳିକା ଆଣି କଦମ୍ବ ପ୍ରସୂନ
ଦେଲା ପୁଣି ସକର୍ପୂର ତାମ୍ବୁଳ ଚନ୍ଦନ ।
କମଳା କୋମଳ ଗାତ୍ରୀ ରତ୍ନ ଦରପଣ
ସମର୍ପଣ କଲା କ୍ରୀଡ଼ା କମଳାକୁ ପୁଣ ।
ମଧୁପୂର୍ଣ୍ଣ ପାତ୍ର ଆଣିଦେଲା ମଧୁମତୀ
ସୁଧାପୂର୍ଣ୍ଣ ପାତ୍ର ଦେଲା ସୁଧାମୁଖୀ ସତୀ ।
ଅନ୍ୟ ଗୋପୀମାନେ ତହୁଁ ନାନା ପରକାରେ
ବେଶ ସଜାଇଲେ କୃଷ୍ଣଙ୍କର ସେ କାଳରେ ।
ସେ ଅନ୍ତେ ସୁରତ ଯୋଗ୍ୟ ମନ୍ଦିର ମଧ୍ୟରେ
ରତି ସୁଖକର ଶଯ୍ୟା ରଚିଲେ ସତ୍ୱରେ ।
ସ୍ୱର୍ଣ୍ଣ ରତ୍ନ ମୁକ୍ତା ଫଳ ମଣି ପ୍ରବାଳକ
ମଣ୍ଡିଲେ ସେ ଗୃହମଧ୍ୟ ଅଣାଇ ଅନେକ ।
ଶତ ଶତ ରତ୍ନମୟ ଦୀପ ସ୍ଥାନେ ସ୍ଥାନେ
ଜଳାଇଲେ ଯତନରେ କେତେ ଗୋପୀଜନେ
ସୁଗନ୍ଧି ଚନ୍ଦନ ଦ୍ରବ୍ୟ ପୁଷ୍ପ ଧୂପଆଦି
ରଖାଇଲେ ସେହି ଗୃହ ମଧ୍ୟରେ ପ୍ରମୋଦି ।
ବିବିଧ ପ୍ରକାର ଚିତ୍ରପଟ ଗୃହପାଶେ
ଖଞ୍ଜିଲେ କେତେକ ଗୋପୀ ନେଇଣ ହରଷେ
ସେଅନ୍ତରେ ସୁକୋମଳ ରତିଶଯ୍ୟା ପରେ
ପୁଷ୍ପ ବିଞ୍ଚିଲେ କର୍ପୂର ଚୂର୍ଣ୍ଣ ସମେତରେ ।
ତା ଦେଖି ଶ୍ରୀକୃଷ୍ଣ ରାଧା ଦୁହେଁ ତୋଷ ବହି
ବସିଲେ ସେ ଶଯ୍ୟାପରେ ହସ ହସ ହୋଇ ।
ତାମ୍ବୁଳ ଆଦରି ସୁବାସିତ ପୁଷ୍ପମାଳା
ଦେଲେ ଶ୍ରୀକୃଷ୍ଣଙ୍କୁ ରାଧା ଦେବୀ ପ୍ରୀତି ହେଲା
ମୁରଲୀ ଛଡ଼ାଇ ନେଇ ରତ୍ନ ଦରପଣ
ଦେଲେ କରିବାକୁ ମୁଖପଦ୍ମ ନିରୀକ୍ଷଣ ।
ଶତଦଳ କ୍ରୀଡ଼ା ପଦ୍ମପୁଷ୍ପ ଆଣିଦେଲେ
ଏକାନ୍ତରେ ବସି ଗୁପ୍ତକଥା ପଚାରିଲେ ।
ବୋଇଲେ ଆହେ ଶ୍ରୀକୃଷ୍ଣ ରୁକ୍ମିଣୀବଲ୍ଲଭ
ଅନୁଚିତ ବୁଝିବାର ଆପଣଙ୍କ ଶୁଭ ।
ଆପଣ ତ ଅଟ ସର୍ବଶୁଭ ଫଳଦାତା
ଲୌକିକ ଅଟଇ ସେ କୁଶଳ ପ୍ରଶ୍ନ ପନ୍ଥା ।
ତହିଁରେ ପଥିକ ହୋଇ ପଚାରୁଛି ମୁହିଁ
କୁଶଳରେ ଅଛ ଟିକି କହ ଯଦୁସାଇଁ ।
ଆହେ ସତ୍ୟଭାମା କାନ୍ତ ଇନ୍ଦ୍ର ସଦନରେ
ଯୁଦ୍ଧକଲ ପରା ପାରିଜାତ ସକାଶରେ ।
ସେ ପୁଷ୍ପ ଆଣି ପୁଣ୍ୟକ ବ୍ରତ ପ୍ରିୟପାଇଁ
କରାଇଲ ପୁଣି ପୂର୍ଣ୍ଣ ଦକ୍ଷିଣାକୁ ଦେଇ ।
ତୁମ୍ଭଙ୍କୁ ସେ ସତ୍ୟଭାମା କରିଛନ୍ତି ସାଧ
ତାଙ୍କ ବୋଲ କରିବାକୁ ଅଟ ତୁମ୍ଭେ ବାଧ ।
ବ୍ରହ୍ମା ବିଷ୍ଣୁ ଶିବଙ୍କର ସାଧ ନୁହ ତୁମ୍ଭ
ତୁମ୍ଭଙ୍କୁ କିରୂପେ ବଶ କରନ୍ତୁ ବା ଆମ୍ଭେ ।
ସବୁ ପତ୍ନୀଙ୍କ ମଧ୍ୟରେ ସତ୍ୟଭାମାଙ୍କର
କଥାରୁ କଦାପି ତୁମ୍ଭେ ନୋହୁଛ ବାହାର ।
ଆହେ ଜାମ୍ବବତୀପତି ସତ୍ୟ ମୋ ଆଗରେ
କହ କପଟ କିଛିତ ନ ରଖି ମନରେ ।
ସକଳ ପତ୍ନୀଙ୍କ ମଧ୍ୟେ କେ ଅଟେ ପ୍ରେୟସୀ
ରତିରସେ କାହାଠାରେ ଥାଅ ତୁମ୍ଭେ ରସି ।
ତୁମ୍ଭଠାରେ ଅନୁରକ୍ତା ଅଟଇ ସେ ସତୀ
ସେହି ଏକା ସବୁଠାରୁ ପୁଣି ଭାଗ୍ୟବତୀ ।
ମତ ପତ୍ନୀ ଦୁହିଁଙ୍କର ପ୍ରେମଠାରୁ ଆଉ
ଅଧିକ ଜଗତେ କିଛି ନାହିଁ ମହାବାହୁ ।
ରସିକା ସ୍ତ୍ରୀ ଜାଣଇ ରସିକର ଭାବ
ଦୁଃଶୀଳା ଅଗୁଣବତୀ କାହୁଁ ତା ଜାଣିବ ।
ଯେରୂପେ ରସିକ ଅଟେ ଯେବଣ ପୁରୁଷ
କରଇ ସେ ରସବତୀ କାମିନୀକୁ ତୋଷ ।
ସୁପକ୍ୱ ଫଳରେ ଯେଉଁ ସ୍ୱାଦୁରସ ଥାଏ
ଭୋଗୀଲୋକ ତାହା ବୁଝି ପାରଇ ନିଶ୍ଚୟେ ।
ଏକ ସ୍ଥାନରେ ନିବାସ କରିଥିଲେ ହେଲେ
ଫଳବନ୍ତ ବୃକ୍ଷ ତାହା ନ ଜାଣଇ ଭଲେ ।
ସେହିପରି ନାନାସ୍ୱାଦୁ ପକ୍ୱ ମିଷ୍ଟଦ୍ରବ୍ୟ
ଭୋଗପ୍ରିୟ ଲୋକ ବୁଝି ପାରଇ ତା ଭାବ ।
ଭୋଜନ ପାତ୍ର ତହିଁରୁ କିଛିହିଁ ନ ଜାଣେ
ସଲଗ୍ନ ହୋଇ ସେ ଥିଲେ ହେଲେ ଏକସ୍ଥାନେ
ବ୍ରହ୍ମା ଶିବଆଦି ଦେବ ମୁନିଋଷିଗଣ
କଳି ନ ପାରନ୍ତି କେହି ଆପଣଙ୍କ ଗୁଣ ।
ସ୍ତ୍ରୀ ଜନ୍ମପାଇ ତାହା କେ ଅବା ଜାଣିବ
କେବଳ ତୁମ୍ଭର ପ୍ରେମ ଅଟଇ ଦୁର୍ଲ୍ଲଭ ।
ମୋଠାରୁ ଅଧିକ ସ୍ନେହ କାହିଁରେ ତୁମ୍ଭର
ନ ଥିଲା ସେ କ୍ଷଣକରେ ହେଲା ତାହା ଦୂର ।

ଶ୍ରୀଦାମ ଶାପରେ ମୋର ହେଲା ଏ ବିପଦ
ପୂର୍ବକୃତ କର୍ମ ଏହା ଭାବୁଛି ମୋ ହୃଦ ।
ଈଶ୍ୱର କାହାର ପ୍ରିୟ ଅପ୍ରିୟ ନୁହନ୍ତି
ଭକ୍ତି ଅନୁସାରେ ଫଳାଫଳ ସେ ଦିଅନ୍ତି ।
ବେଦ ପୁରାଣରେ ଯାହା ହୋଇଛି ବିଦିତ
ରାଧିକା ସାଧ୍ୱ ଅଟନ୍ତି ଗୋଲୋକର ନାଥ ।
ସେ କଥା ନିଷ୍ଫଳ ବୋଲି ଭାବୁଅଛି ମୁହିଁ
ବିଚ୍ଛେଦ ହୋଇଗଲା ଶତେବର୍ଷ ଯହିଁପାଇଁ ।
ଶିବଙ୍କୁ ସମରେ ଜିଣି ବାଣଭୁଜ ଛେଦି ।
ରୁକ୍ମିଣୀଙ୍କ ପୌତ୍ର ପୌତ୍ରବଧୂଙ୍କୁ ସମ୍ପାଦି ।
ଆଣିଦେବାରୁ ତୁମ୍ଭଙ୍କୁ କି ବୋଇଲେ ସେହି
ପୂର୍ବର ସ୍ନେହ ଅଧିକ ବଢ଼ିଲା କି ନାହିଁ ।
କୁରୁ ପାଣ୍ଡବ ଯୁଦ୍ଧରେ କୌରବଙ୍କୁ ମାରି
ଯୁଧିଷ୍ଠିରଙ୍କୁ ତ କରାଇଲେ ଦଣ୍ଡଧାରୀ ।
ଅର୍ଜୁନ ରଥରେ ନିଜେ ସାରଥି ହୋଇଲେ
ସବୁ କ୍ଷତ୍ରିୟଙ୍କୁ ତାଙ୍କ ହସ୍ତେ ମାରିଇଲେ ।
ପରମ ଭକ୍ତ ତୁମ୍ଭର ଭୀଷ୍ମ ମହାରଥୀ
ପଡ଼ୁରିଲେ ତୁମ୍ଭଙ୍କୁ ସେ କସ ହୋଇ ବ୍ୟଥୀ ।
ମାତୁଳ ଅଟଇ ଯେଉଁ କଂସ ନରପତି
ତାକୁ କିପାଁ ପଠାଇଲ ଯମରାଜା କତି ।
ଆସିବି ବୋଲିଣ ମୋତେ କହି ପୁନଃପୁନଃ
ଆଜଯାଏ ଥରେ ହେଲେ ନ ଦେଲ ଦର୍ଶନ ।
ଏହିରୂପେ କହୁ କହୁ ରାଧିକାସୁନ୍ଦରୀ
ପଡ଼ିଲେ ଚେତନା ତେଜି ଛିନ୍ନଦ୍ରୁମ ପରି ।
ଗବାକ୍ଷ ମାର୍ଗରେ ଗୋପୀଗଣ ଦେଖୁଥିଲେ
ରୋଦନ କରି ସମସ୍ତେ ସେଠାକୁ ଆସିଲେ ।
ଶ୍ରୀକୃଷ୍ଣଙ୍କୁ ଅନାଇଣ ବୋଇଲେ ହେ ଦେବ ।
ରକ୍ଷା କର ଏବେ ରାଧା ଦେବୀଙ୍କର ଜୀବ ।
ନୋହିଲେ ଆମ୍ଭେ ସମସ୍ତେ ସ୍ତ୍ରୀବଧ ଦୋଷ
ତୁମ୍ଭ ଉପରେ ଦେଇଣ ମରିବୁ ଅବଶ୍ୟ ।
ଗୋପୀଙ୍କ ବଚନ ଶୁଣି ପ୍ରଭୁ ନରହରି ।
ସୁଧାଦୃଷ୍ଟିରେ ରାଧାଙ୍କୁ ଆଶ୍ୱାସନା କରି ।
ଗୋପୀଙ୍କ ମଧ୍ୟେ ବସାଇ ବୋଇଲେ ଗୋଦେବୀ
ମନଦେଇ ଶୁଣ ଏବେ ଯାହା ମୁଁ କହିବି ।
ଅଧ୍ୟାତ୍ମିକ ଜ୍ଞାନ ଅଟେ ନାମଟି ତାହାର
ଶ୍ରବଣ କଲେ ପଣ୍ଡିତ ହୁଏ ମୂର୍ଖ ନର ।
କେବଳ ରୁକ୍ମିଣୀ ଆଦି ମହିଷୀଙ୍କର ମୁହିଁ
ସ୍ୱାମୀ ବୋଲି କହିବାର ଉଚିତ ନୁହଇ ।
ପ୍ରକୃତିରେ ତିନିଲୋକ ମୋଠାରୁ ଜାତ
ହୋଇଅଛି ଅଟେ ମୁହିଁ ସର୍ବଘଟେ ସ୍ଥିତ ।
ଏକମାତ୍ର ଆତ୍ମାରୂପେ ସଦା ବିଦ୍ୟମାନ
ଉପାଧି ଭେଦରେ ମୋର ରୂପ ଭିନ୍ନଭିନ୍ନ ।
ଯେଉଁ ଘଟେ ଛାଡ଼ି ମୁହିଁ ଯାଏ ଅନ୍ୟଠାରେ
ମୃତ ହୁଅଇ ସେ ଜୀବ କ୍ଷଣକ ମଧ୍ୟରେ ।
ସର୍ବଜୀବେ ଆତ୍ମାରୂପେ ବିରାଜିତ ମୁହିଁ
ଆତ୍ମାର ବିଚ୍ଛେଦ ରହି ନ ପାରଇ କେହି ।
ଗୋଲୋକରେ ବୃନ୍ଦାବନେ ଶ୍ରୀକୃଷ୍ଣ ବୋଲାଏ
ଗୋପୀ ଗୋପୀକାଗଣଙ୍କୁ ଘେନି ରହିଥାଏ ।
ଦ୍ୱିଭୁଜ ମୁରଲୀ ହସ୍ତ ରାଧିକାବଲ୍ଲଭ
ବୋଲାଏ ସେଠାରେ ମୁହିଁ ବୋଲି ମନେ ଭାବ
ବୈକୁଣ୍ଠରେ ଚତୁର୍ଭୁଜ ଲକ୍ଷ୍ମୀଙ୍କର ପତି
କ୍ଷୀରୋଦରେ ଶ୍ୱେତଦ୍ୱୀପେ ଅଟେ ସେହିମତି ।
ଧର୍ମପୁତ୍ର ନାରାୟଣ ସନାତନ ମୁହିଁ
ଧର୍ମବନ୍ତପଣେ ମୋତେ ବଳି କେହି ନାହିଁ ।
ଧର୍ମିଷ୍ଠା ଲକ୍ଷ୍ମୀସ୍ୱରୂପା ଅଟନ୍ତି ଯେ ଶାନ୍ତି
ପୁଣ୍ୟକ୍ଷେତ୍ର ଭାରତରେ ମୁଁ ତାହାଙ୍କ ପତି ।
କପିଳ ଅଟଇ ମୁହିଁ ଦକ୍ଷଦେବୀ କାନ୍ତ
ଜଣା ନୁହଇ କାହାକୁ ମୋର ଆଦିଅନ୍ତ ।
ଦ୍ୱାରକା ନଗରେ ଚତୁର୍ଭୁଜ ଅଂଶେ ମୁହିଁ
ଜାତ ହୋଇ ବୋଲାଉଛି ରୁକ୍ମିଣୀଙ୍କ ସାଇଁ ।
ଅନ୍ୟ ସ୍ତ୍ରୀମାନଙ୍କ ଗୃହରେ କାୟବ୍ୟୂହ କରି
କ୍ରୀଡ଼ା କରୁଅଛି ମୁହିଁ ଜାଣ ଗୋ ସୁନ୍ଦରୀ ।
ନାରାୟଣ ଋଷି ମୁହିଁ ଅର୍ଜୁନ ସାରଥି
ଅର୍ଜୁନ ରୂପରେ ନର ଜନମି ଅଛନ୍ତି ।
ପୂର୍ବରେ ପୁଷ୍କର ତୀର୍ଥେ ବହୁତପ କଲେ
ସାରଥି ହେବାକୁ ମୋତେ କହି ଆରାଧିଲେ ।
ତୁମ୍ଭେ ମଧ୍ୟ ରାଧା ଅଟ ଗୋଲୋକ ନଗରେ
ଲକ୍ଷ୍ମୀ ସରସ୍ୱତୀ ବୋଲାଉଛ ବୈକୁଣ୍ଠରେ ।
ମର୍ତ୍ତ୍ୟପୁରରେ ମର୍ତ୍ତ୍ୟଲକ୍ଷ୍ମୀ ସ୍ୱରୂପକୁ ଧରି
ରହିଅଛ ଯମସ୍ତଙ୍କ ଗୃହେ ଗୃହେ ପୂରି ।
କପିଳ ପତ୍ନୀ ଯେ ଶାନ୍ତି ଲକ୍ଷ୍ମୀ ନାମ ବହି
ପୁଣ୍ୟମୟ ଭାରତରେ ଅଛ ତୁମ୍ଭେ ରହି ।

ରୁକ୍ମିଣୀ ନାମ ବହିଛ ଦ୍ୱାରକା ପୁରେ
ସୀତାରୂପ ବହିଥିଲ ମିଥିଳା ନଗରେ ।
ଏହିପରି ନିଜଅଂଶ କଳା ଦେଇ ତୁମ୍ଭେ
ଜାତ ହୋଇଅଛ ନାନାସ୍ଥାନେ ଜାଣୁ ଆମ୍ଭେ ।
ପରମାତ୍ମା ପରାତ୍ପର ଅଟଇଟି ମୁହିଁ
ପ୍ରତ୍ୟେକ ସ୍ଥାନରେ ତୁମ୍ଭ ପାଶେ ଅଛି ରହି ।
ଶ୍ରୀଦାମ ଶାପ ହେତୁରେ ତୁମ୍ଭେ ମୋର ମୁଖ
ଦେଖି ନ ପାରି କେବଳ ଲଭୁଅଛ ଦୁଃଖ ।
ଅଂଶରେ ମୁଁ ରହିଅଛି ରୁକ୍ମିଣୀ ପାଶରେ
କଳାରୂପେ ଥାଏ ଅନ୍ୟ ସ୍ତ୍ରୀଙ୍କ ବାସରେ ।
ପୁରୁଷଙ୍କ ମଧ୍ୟେ ମୋର ପ୍ରିୟ ଏକା ଶିବ
ସ୍ତ୍ରୀଙ୍କ ମଧ୍ୟରେ ତୁମ୍ଭ ସମ କେ ନୋହିବ ।
ଏହିରୂପେ ଅଟେ ଆମ୍ଭ ଦୁହିଁଙ୍କ ପ୍ରକାର
କହିଲି ପ୍ରକାଶ୍ୟରୂପେ ଆଗରେ ତୁମ୍ଭର ।
ମୋ ଯୋଗେ ଯେତେ କଷଣ ପାଇଲ ସୁନ୍ଦରୀ
ସେ ସମସ୍ତ ଦୋଷ କ୍ଷମା କର ଦୟାକରି ।
ଏରୂପେ ଶ୍ରୀକୃଷ୍ଣଙ୍କର ବଚନକୁ ଶୁଣି
ସନ୍ତୁଷ୍ଟ ହୋଇଲେ ରାଧା ସତୀ ଶିରୋମଣି ।
ଏହିଠାରେ ରାଧାକୃଷ୍ଣ ଦୁହିଙ୍କ ମିଳନ
ସମାପ୍ତ ହୋଇଲା କହେ କ୍ଷେତ୍ରବାସୀ ଘନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କର ପୁନର୍ମିଳନ କଥନେ ନାମ ଷଷ୍ଠବିଂଶୋତ୍ତରଶତତମୋଽଧ୍ୟାୟଃ ।

—:—:—

## ସପ୍ତବିଂଶୋତ୍ତରଶତତମ ଅଧ୍ୟାୟ

## ରାଧାକୃଷ୍ଣଙ୍କର କ୍ରୀଡ଼ା ଓ ନନ୍ଦ ଯଶୋଦାଙ୍କର ଆନନ୍ଦବର୍ଦ୍ଧନ

ନାରାୟଣ ବୋଇଲେ ହେ ଶୁଣ ତପଶୀଳ
ଶ୍ରୀକୃଷ୍ଣଙ୍କ ବାକ୍ୟ ଶୁଣି ଗୋପିକା ସକଳ ।
ପ୍ରଣାମ କରି ସେ ଯାହା ମନ୍ଦିରକୁ ଗଲେ
ରାଧା କେବଳ ଶ୍ରୀକୃଷ୍ଣ ପାଶରେ ରହିଲେ ।
କଟାକ୍ଷରେ ପୁନଃପୁନଃ ଅନାଇ ପତିଙ୍କୁ
ଦେଲେ ପୁଣି ଗନ୍ଧପୁଷ୍ପ ମାଲ୍ୟ ଭୂଷଣକୁ ।
ଏକାନ୍ତରେ ନାନା ପରିହାସ କଥା କହି
କ୍ଷଣକ ମଧ୍ୟରେ ତାଙ୍କ ମନନେଲେ ମୋହି ।
ଶ୍ରୀକୃଷ୍ଣ ତା ଦେଖିକରି ସନ୍ତୁଷ୍ଟ ହୋଇଲେ
ଆଲିଙ୍ଗନ କରି ତାଙ୍କୁ କୋଳେ ବସାଇଲେ ।
ଓଷ୍ଠାଧର ଗଣ୍ଡଯୁଗ କପୋଳ ଦେଶରେ
ଚୁମ୍ବନ ଦେଲେ ସେକାଳେ ପରମ ତୋଷରେ ।
ରାଧା ସେହିପରି ଶ୍ରୀକୃଷ୍ଣଙ୍କ ଗଣ୍ଡସ୍ଥଳେ
ଆକର୍ଷଣ କରି ଗାଢ଼େ ଚୁମ୍ବନକୁ ଦେଲେ ।
ଆବର ବସାଇ ବକ୍ଷସ୍ଥଳେ ସେହିକ୍ଷଣି
ବେନି ବାହୁରେ ଓଟାରି ଧରିଲେ ସେ ପୁଣି ।
କାମଶାସ୍ତ୍ର ବିଶାରଦ ବସୁଦେବ ସୁତ
କଲେ ଚଉଷଠି ବନ୍ଧେ ବିବିଧ ସୁରତ ।
ସୁଖ ସମ୍ଭୋଗରେ ରାଧା ଦେବୀ ସେ କାଳରେ
ମୂର୍ଚ୍ଛିତା ହୋଇ ପଡ଼ିଲେ ପଲଙ୍କ ଉପରେ ।
ନିଶ୍ୱାସ ମାତ୍ରକ ବହୁଥିଲା ତାହାଙ୍କର
ନିଦ୍ରାରେ ଅବଶ ହେଲା ସମସ୍ତ ଶରୀର ।
ପୁଣି ଅଳ୍ପକ୍ଷଣ ପରେ ଚେତନାକୁ ପାଇ
କହିଲେ ଶ୍ରୀକୃଷ୍ଣଙ୍କର ମୁଖକୁ ଅନାଇ ।
ବୋଇଲେ ହେ ମହାଭାଗ ପୁଣ୍ୟ ବୃନ୍ଦାବନେ
କ୍ରୀଡ଼ା କରିବି ମୁଁ ତୁମ୍ଭ ସଙ୍ଗେ ରାସସ୍ଥାନେ ।
ଆବର ସୁନ୍ଦର ମଣି ମନ୍ଦିରକୁ ଯାଇ
ତୁମ୍ଭ ସହିତେ ବିହାର କରିବି ମୁଁ ତହିଁ ।
ଯେତେ ଯେତେ କଥା ଶୁଣି ନାହିଁଟି ପୂର୍ବରୁ
ଶୁଣିବି ତା ସବୁ ଏବେ ତୁମ୍ଭ ଶ୍ରୀମୁଖରୁ ।
ଏରୂପେ ଲାଳସା ହୋଇଅଛି ଯେ ମୋହର
ଦୟାକରି ତୁମ୍ଭେ ତାହା ପରିପୂର୍ଣ୍ଣ କର ।
ପ୍ରିୟାଙ୍କ ବଚନ ଶୁଣି ପ୍ରଭୁ ନରହରି
ପ୍ରଭାତରେ ନିତ୍ୟକର୍ମ ସମାପନ କରି ।
ସ୍ୱର୍ଣ୍ଣମୟ ଦିବ୍ୟରଥ ଆରୋହଣ କଲେ
ରାଧା ଦେବୀଙ୍କୁ ତହିଁରେ ନେଇ ବସାଇଲେ ।

ଆଉର ସକଳ ଗୋପବଧୂଙ୍କୁ ତହିଁରେ
ବସାଇଣ ଗଲେ ବୃନ୍ଦାବନକୁ ସତ୍ୱରେ ।
ସେହିଠାରେ ରହି ନିଶାକାଳେ ପ୍ରିୟା ସଙ୍ଗେ
ବିହାର କଲେ ସେ ଜଳେ ସ୍ଥଳେ ନାନାରଙ୍ଗେ
ବନେ ଉପବନେ ନଦୀ ସରୋବର ତଟରେ
ଉପସ୍ଥିତ ହୋଇ କ୍ରୀଡ଼ା କଲେ ତୋଷଭରେ
ନୂତନ ପରାପ୍ୟେ ସବୁ ରାଧିକା ଦେବୀଙ୍କୁ
ଦେଖାଇଲେ ପ୍ରକାଶିଣ ବୈଷ୍ଣବୀ ମାୟାକୁ ।
ବିସ୍ୟନ୍ଦକ ସୁରବନ ମହେନ୍ଦ୍ର ନନ୍ଦନ
ସୁମେରୁ ଶିଖର ରମ୍ୟ ଗନ୍ଧମାଦନ ।
ସୁଭଦ୍ର କୁସୁମ ଭଦ୍ର ନାରାୟଣ ସର
ପଞ୍ଚକୂଟ ଭଦ୍ରକୂଟ ତ୍ରିକୂଟ ଶିଖର ।
କାଞ୍ଚନୀ ଆଦି ସକଳ ସ୍ଥାନେ ରହି ରହି
ବିହାର କଲେ ଦେବୀଙ୍କ ମାନସକୁ ମୋହି ।
ଯେ ଅନ୍ତେ ସମୁଦ୍ର ପୁଣ୍ୟଚନ୍ଦ୍ର ସରୋବର
ତଟକୁ ଯାଇ ଆନନ୍ଦେ କରିଣ ବିହାର ।
ପୁଣ୍ୟମୟ ଜମ୍ବୁଦ୍ୱୀପ ଦ୍ୱାରକା ନଗର
ଯେ ଅନ୍ତରେ ରୈବତକ ରମ୍ୟ ମହୀଧର ।
ଏ ସବୁ ସ୍ଥାନ ରାଧାଙ୍କୁ ଦେଖାଇ ଶ୍ରୀହରି
ଇଚ୍ଛାମତେ ଯେହି ସେହି ସ୍ଥାନେ କ୍ରୀଡ଼ାକରି ।
ଗୋକୁଳରେ ଆସି ପୁଣି ଉପସ୍ଥିତ ହେଲେ
ଭଣ୍ଡୀରକୁ ଦେଖି ବୃନ୍ଦାବନରେ ମିଳିଲେ ।
କୃଷ୍ଣଙ୍କର ଆଗମନେ ହରଷେ ଗୋପପୁର
ମୃଦୁମନ୍ଦ ବହିଲା ସେ ବସନ୍ତ ଅନିଳ ।
ସହକାର ଡାଳେ ପିକ ଡାକେ କୁହୁତାନ
କୁସୁମ ପାରୁଶେ ଅଳି କରଇ ଗୁଞ୍ଜନ ।
ପାରିଜାତ ପୁଷ୍ପବାସ ଦିଗ ଚହଟାଏ
ପାଷାଣ ଦେହରେ ଜୀବନର ଧାରା ବହେ
ଶ୍ରୀକୃଷ୍ଣ ଆସିବା ଶୁଣି ବ୍ରଜେଶ୍ୱର ନନ୍ଦ
ଯଶୋଦା ସହିତେ ମନେ ପ୍ରକାଶି ଆନନ୍ଦ ।
ବୃଦ୍ଧଗୋପ ଗୋପୀଗଣ ସଙ୍ଗତରେ ଧରି
ନାନାବିଧ ନୃତ୍ୟଗୀତ ମହୋତ୍ସବ କରି ।

ସ୍ୱର୍ଣ୍ଣରତ୍ନ ବିଭୂଷିତ ମହାମତ୍ତଗଜ
ଚାଲିଇଣ ନେଲେ ଆଗେ ଆଗ କରି ସଜ ।
ପୁରୋହିତ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ
ମଙ୍ଗଳ କର୍ମ ତାହାଙ୍କ ହସ୍ତେ କରାଇଲେ ।
ପିତାମାତାଙ୍କୁ ଆଗରେ ଦେଖିଣ ଶ୍ରୀହରି
ପାଶକୁ ଆସିଲେ ଦିବ୍ୟ ଶିଶୁରୂପ ଧରି ।
ହସି ହସି ମାତାଙ୍କର କୋଳରେ ବସିଲେ
ଦେଖିଣ ଯଶୋଦା ମୁଖ ମୁଖେ ଚୁମ୍ବ ଦେଲେ
ଆଲିଙ୍ଗନ କରି ପୁଣି ପିତାମାତା ଦୁହେଁ
ସିକ୍ତ କରାଇଲେ ନେତ୍ରଜଳେ ତାଙ୍କୁ ସ୍ନେହେ ।
ଶ୍ରୀକୃଷ୍ଣ ସେ ସମୟରେ ମାତାଙ୍କର ସ୍ତନ
ଶିଶୁଭାବେ କୋଳେ ବସି କଲେ ତହିଁ ପାନ ।
ଭୁଲାଇଲେ ପିତାମାତା ଗୋପୀଜନ ମନ
ସମସ୍ତେ ଶିଶୁ ରୂପକୁ କରନ୍ତି ଦର୍ଶନ ।
ମଥୁରାକୁ ଗଲାବେଳେ ଯେଉଁ ସ୍ୱରୂପରେ
ଦେଖିଥିଲେ ସର୍ବେ ଏବେ ଦେଖି ସେ ପ୍ରକାରେ
ଆଶ୍ଚର୍ଯ୍ୟ ହୋଇଣ ମନେ ଶ୍ରୀକୃଷ୍ଣଙ୍କୁ ଧ୍ୟାୟି
ଭାବିଲେ ଅଟନ୍ତି କୃଷ୍ଣ ତ୍ରିଭୁବନ ସାଇଁ ।
ଏଥୁଅନ୍ତେ ନନ୍ଦରାଣୀ ଦ୍ୱିଜଙ୍କୁ ଡକାଇ
କରାଇଲେ ନାନାବିଧ ଶୁଭକର୍ମ ତହିଁ ।
ଆଉର ଭୋଜନ ଅର୍ଥେ ମିଷ୍ଟଦ୍ରବ୍ୟମାନ
ଦେଲେ ସେ ଅନ୍ତରେ ପୁଣି ସ୍ୱର୍ଣ୍ଣରତ୍ନ ଦାନ ।
ଗଜ ଅଶ୍ୱ ଦିବ୍ୟବାସ ଭୂଷଣ ଅନେକ
ଦାନ କଲେ ବ୍ରାହ୍ମଣଙ୍କୁ ହୋଇଣ ଉତ୍ସୁକ ।
ଆସନ ବାସନ ଧନଧାନ୍ୟ ଆଦିକରି
ଦେଲେ ପୁଣି ହରଷରେ ମଙ୍ଗଳ ବିଚାରି ।
ରାଧା ସହିତେ କୃଷ୍ଣଙ୍କୁ ଦେଖି ବ୍ରଜବାସୀ
ବିବିଧ ଉତ୍ସବ କରାଇଲେ ହୋଇ ତୋଷୀ ।
ଭକ୍ଷ୍ୟ ଭୋଜ୍ୟ ଦ୍ରବ୍ୟମାନ ଆଣାଇ ବହୁତ
ଭୋଜନ କଲେ ସମସ୍ତେ ହୋଇ ଏକତ୍ରିତ ।
ଏଠାରେ ଶ୍ରୀକୃଷ୍ଣ ରାଧାଦେବୀଙ୍କ ବିହାର
ଚରିତ ସମାପ୍ତ ହେଲା କହେ [illegible] ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମ ଖଣ୍ଡେ ରାଧା କୃଷ୍ଣଙ୍କର ଲୀଳା ଓ ନନ୍ଦ ଯଶୋଦାଙ୍କର
ଆନନ୍ଦ ବର୍ଦ୍ଧନ କଥନେ ନାମ ସପ୍ତବିଂଶୋତ୍ତରଶତତମୋଽଧ୍ୟାୟଃ ।

---

# ଅଷ୍ଟବିଂଶୋତ୍ତର ଶତତମ ଅଧ୍ୟାୟ

## ରାଧିକା ପ୍ରଭୃତିଙ୍କର ଗୋଲୋକ ଗମନ

ଏଥିଅନ୍ତେ ନାରାୟଣ ନାରଦଙ୍କ ଆଗେ
କହନ୍ତି ପୁରାଣ ତତ୍ତ୍ୱକଥା ଅନୁରାଗେ ।
ଆହେ ମୁନିବର ଶୁଣ ସାବଧାନ ହୋଇ
ଗୋପ ନଗରେ ଶ୍ରୀକୃଷ୍ଣ କିଛିଦିନ ରହି ।
ଗୋପାଳଙ୍କୁ ସଙ୍ଗେ ଘେନି ଭାଣ୍ଡୀର ବନରେ
ପ୍ରବେଶ ହୋଇଲେ ବଟବୃକ୍ଷର ମୂଳରେ ।
ପୂର୍ବେ ଯେଉଁ ବଟମୂଳେ ବ୍ରାହ୍ମଣୀଏ ଆସି
ଅନ୍ନ ଦେଇଥିଲେ ଶ୍ରୀକୃଷ୍ଣଙ୍କୁ ହୋଇ ତୋଷି ।
ସେଠାରେ ବସିଣ ପ୍ରଭୁ ରାଧିକା ସହିତେ
ମଧୁର ଆଳାପ କଲେ ବନ୍ଧୁଙ୍କ ଅଗ୍ରତେ ।
ତାହାଙ୍କ ଦକ୍ଷିଣ ଭାଗେ ନନ୍ଦ ଯଶୋବତୀ
ବସିଲେ ହରଷ ରସେ ନିବେଶିଣ ମତି ।
ବୃଷଭାନୁ କଳାବତୀ ଦୁହେଁ ତାହାଙ୍କର
ଦକ୍ଷିଣ ପାରୁଶେ ଯାଇ ବସିଲେ ସତ୍ୱର ।
ଅନ୍ୟ ଗୋପ ଗୋପୀମାନେ କ୍ରମେ କ୍ରମେ ଯାଇ
ବସିଲେ ଶ୍ରୀକୃଷ୍ଣଙ୍କର ମୁଖକୁ ଅନାଇଁ ।
ସେମାନଙ୍କୁ ଚାହିଁ ପ୍ରଭୁ ବୋଇଲେ ମୁଁ ଯାହା
କହୁଅଛି ମନଦେଇ ଶୁଣ ଏବେ ତାହା ।
ଆହେ ବ୍ରଜ ଅଧୀଶ୍ୱର ଏ ମାୟା ସଂସାର
ଅନିତ୍ୟ ଅଟଇ ଜଳଫେନ ପରକାର ।
ମଥୁରାପୁରେ ତୁମ୍ଭଙ୍କୁ ଯେ ପରମ ଜ୍ଞାନ
କହିଥିଲି ତାହା କରିଅଛ ତ ଶ୍ରବଣ ।
କଦଳୀ ବନରେ ରାଧା ଦେବୀ ସେହିପରି
କହିଲେ ମାତାଙ୍କୁ ମୋର ସମସ୍ତ ବିସ୍ତାରି ।
ଭ୍ରମ ବିନାଶକ ଅଟେ ସେ ପରମ ଜ୍ଞାନ
ସୁମରଣା କର ତାହା ଦେଇ ସ୍ଥିର ମନ ।
ନିତ୍ୟ ସନାତନ ବ୍ରହ୍ମରୂପ ଅଟେ ମୁହିଁ
ଧ୍ୟାନ କର ମୋତେ ପୁତ୍ର ବୁଦ୍ଧି ଛାଡ଼ିଦେଇ ।
ଗୋକୁଳବାସୀଙ୍କୁ ଘେନି ଗୋଲୋକକୁ ଯାଅ
ନିଶ୍ଚିନ୍ତ ହୋଇ ସେଠାରେ ସୁଖେ ରହିଥାଅ ।
ଅଳପ ସମୟ ପରେ କଳିଯୁଗ ଆସି
ଦେବ ଧର୍ମମୟ ସତ୍ୟଭାବକୁ ବିନାଶି ।
କଳି ପ୍ରଭାବରେ ଜାତିଭେଦ ନ ରହିବ
ଉଚ୍ଚ ନୀଚ ଭାବ କାହିଁ ଲୋପ ହୋଇଯିବ ।
ବ୍ରାହ୍ମଣେ କେବଳ ଯଜ୍ଞସୂତ୍ର ବହିଥିବେ
ସନ୍ଧ୍ୟା ଜପଆଦି ସବୁକର୍ମକୁ ଛାଡ଼ିବେ ।
କେତେଦିନ ଅନ୍ତେ ସେହି ଯଜ୍ଞସୂତ୍ର ଛାଡ଼ି
ରହିବେ କେବଳ ଖାଦ୍ୟ ପଦାର୍ଥକୁ ଲୋଡ଼ି ।
ଦିବସରେ ରତିରସେ ମାତିବେ ସମସ୍ତେ
ବିଲୁପ୍ତ ହୋଇବ ଶୁଭକର୍ମ ଧର୍ମ ଯେତେ ।
ସ୍ୱେଚ୍ଛାଗାମିନୀ ହୋଇ କାମିନୀଏ ନିତି
ପତିଙ୍କୁ ଭର୍ତ୍ସନା କରୁଥିବେ ନାନାମତି ।
କୁଟୁମ୍ବ ମଧ୍ୟରେ ଯେବା ଥିବେ ସ୍ତ୍ରୀଜନ
ସକଳ କାର୍ଯ୍ୟରେ ସେହି ହୋଇବେ ପ୍ରଧାନ
ପତିଙ୍କୁ ଅବଜ୍ଞା କରି ଜାରପୁରୁଷକୁ
ସେବା କରିବେ ମାନିଣ ତାହାର କଥାକୁ ।
ବିଷଦୃଷ୍ଟିରେ ପତିଙ୍କୁ ଅନାଇ ସତତେ
କାମକଳା ଦେଖାଇବେ ଜାରଙ୍କ ଅଗ୍ରତେ ।
କଳିଯୁଗେ ବିଷ୍ଣୁ ସେବା କେହି ନ କରିବେ
ଅତିଥି ଆସିଲେ ଦୁରୁ ଘଉଡ଼ି ମାରିବେ ।
ଦେବତା ପିତୃକାର୍ଯ୍ୟରେ ନ ଦେବେ କେ ମନ
ବ୍ରାହ୍ମଣ ବୈଷ୍ଣବପ୍ରତି ହେବେ ଭକ୍ତିହୀନ ।
ଶାଳଗ୍ରାମ ଶିବଲିଙ୍ଗ ତୁଳସୀଙ୍କୁ ସର୍ବେ
ଅବଜ୍ଞା କରିଣ କହୁଥିବେ ମତ୍ତଗର୍ବେ ।
ମ୍ଳେଚ୍ଛ ଆଚରଣ ଲକ୍ଷ୍ୟକରି ପ୍ରତିଦିନ
ଦେବତାଙ୍କଠାରେ ଭକ୍ତି ନ କରିବେ ଜାଣ ।
ମୋଠାରେ ବିଶ୍ୱାସ ଆଉ ନ ରଖିବେ କେହି
ଆଚାର ଛାଡ଼ିବେ ନିତି ମଦମାଂସ ଖାଇ ।
ଦଶସହସ୍ର ବରଷ ପର୍ଯ୍ୟନ୍ତ ମୋଠାରେ
କିଞ୍ଚିତ ଭକତି ରଖିଥିବେ କେତେ ନରେ ।
ସେ ଅନ୍ତେ ବୈଷ୍ଣବୀମାୟା ପ୍ରଭାବ ବିସ୍ତାରି
ମୁଗ୍ଧ କରି ପକାଇବ ମନକୁ ସବୁରି ।
ଯେତେଦିନ ଯାଏ ଗଙ୍ଗା ତୁଳସୀ ସେବନ
ଆଉର ପୁରାଣ ଶାସ୍ତ୍ର ବେଦାଦି ପଠନ ।

କଣ୍ଟକ ମାତ୍ର ମହୀରେ ଥିବା ସ୍ଥାନେ ସ୍ଥାନେ
ଯେତେ ବନଯାଏ ମୋତେ ପୂଜୁଥିବେ ଜନେ ।
ତାହାପରେ ମୋର ନାମ ଲୋପ ହୋଇଯିବ
ଚାରିବର୍ଣ୍ଣରେ ପ୍ରଭେଦ କିଛି ନ ରହିବ ।
କ୍ଷୁଦ୍ର ଅଳ୍ପାୟୁଷ ହୋଇ ମାନବ ସକଳ
ରୋଗରେ ପଡ଼ି ସର୍ବଦା ହୋଇବେ ବିକଳ ।
ଦୁର୍ଭିକ୍ଷ ଆଦିର କରପୀଡ଼ା ପାଇବାରେ
ସୁସ୍ଥ ନ ହୋଇବେ ପ୍ରଜାଗଣ କେଉଁଠାରେ ।
ବଳାତ୍କାରେ ମ୍ଳେଚ୍ଛମାନେ ଅଧିକାର କରି
ନେବେ ସମସ୍ତଙ୍କଠାରୁ ସମ୍ପଦକୁ ହରି ।
କ୍ରମେ କ୍ରମେ ରସହୀନ ହେବ ବସୁମତୀ
ଫଳବିହୀନ ହୋଇବେ ତରୁଲତା ଜାତି ।
ମାନ୍ୟ ଲୋକଙ୍କୁ ମାନନା ନ କରିବେ କେହି
ଭୃତ୍ୟଗଣ ସବୁବେଳେ ହେବେ ପ୍ରଜାଦ୍ରୋହୀ ।
ଏହିରୂପେ କେତେକାଳ ହେଲେ ଅତିକ୍ରାନ୍ତ
ଶେଷହେବ କଳିଯୁଗ ଜାଣ ଆହେ ତାତ ।
ଯେଉଁକାଳେ ସୂର୍ଯ୍ୟତାପ ଜଳ ପ୍ରବାହରେ
ବିନଷ୍ଟ ହୋଇବ ମହୀ ଅଳ୍ପ ସମୟରେ ।
ପୁଣି ଯେବେ ସତ୍ୟଯୁଗ ହୋଇବ ପ୍ରବେଶ
ଜାତ ହୋଇଲେ ସକଳ ପ୍ରାଣୀ ମହୀଦେଶ ।
ସମସ୍ତେ ଧର୍ମ ନିରତ ସତ୍ୟପରାୟଣ
ହେବେ ସେ ଯୁଗରେ ଆହେ ବ୍ରଜେଶ୍ୱର ଜାଣ
ଏରୂପେ ଶ୍ରୀକୃଷ୍ଣ କହୁଥିଲେ ନନ୍ଦ ଆଗେ
ଉତ୍ତମ ରଥେକ ଦେଖାଗଲା ଶୂନ୍ୟମାର୍ଗେ ।
ଚାରି ଯୋଜନ ବିସ୍ତୀର୍ଣ୍ଣ ସେ ରଥ ଅଟଇ
ଊର୍ଦ୍ଧ୍ୱରେ ପାଞ୍ଚଯୋଜନ ଉଚ୍ଚ ଅଛି ହୋଇ ।
ଶୁଦ୍ଧ ସ୍ଫଟିକ ସଦୃଶ ଦିଶୁ ଛି ତା ବର୍ଣ୍ଣ
ପୂର୍ଣ୍ଣ ହୋଇଅଛି ତହିଁ ବିବିଧ ରତନ ।
ଅମ୍ଳାନ ପାରିଜାତର ମାଳା କୋଟି କୋଟି
ବନ୍ଧା ହୋଇଅଛି ମଧ୍ୟେ ହୋଇ ଗୋଟି ଗୋଟି
ଅମୂଲ୍ୟ ରତ୍ନକଳଶ ଶୁକଳ ଚାମର
ଥୁଆହୋଇ ସ୍ଥାନେ ସ୍ଥାନେ ଦିଶୁ ଛି ସୁନ୍ଦର ।
ସହସ୍ର କୋଟି ମନ୍ଦିର ଅଛି ସେ ମଧ୍ୟରେ
ଦ୍ୱି ସହସ୍ର ଚକ୍ର ବୁଲୁଅଛି ନିରାଧାରେ ।
ଦୁଇଶତ ଅଶ୍ୱ ବନ୍ଧା ହୋଇଅଛି ତହିଁ
ପବନରୁ ଅଧିକ ସେ ଗମନ କରଇ ।
ଚାରିଶତ ଗଜ ଉଚ୍ଚ ପର୍ବତ ସମାନ
ଦାସ ଦାସୀ କେତେ କିଏ କରିବ ଗଣନ ।
କୋଟିଏ ଗୋପିକା ତାର ମଧ୍ୟରେ ଅଛନ୍ତି
ସମସ୍ତେ ଦିବ୍ୟ ଭୂଷଣ ବାସ ହେଉଛନ୍ତି ।
ଶ୍ରୀକୃଷ୍ଣ ତା ଦେଖିକରି ଗୋପାଳଙ୍କୁ ଚାହିଁ
ବୋଇଲେ ଏ ରଥ ଆସିଅଛି ତୁମ୍ଭପାଇଁ ।
ଆନନ୍ଦିତ ହୋଇ ସର୍ବେ ବସି ଏହାପରେ
ସୁଖେ ଯାଇ ଉପସ୍ଥିତ ହୁଅ ଗୋଲୋକରେ ।
ତାହା ଶୁଣି କଳାବତୀ ରାଧିକା ସହିତେ
ନନ୍ଦ ଯଶୋଦା ପ୍ରଭୃତି ଗୋପ ଗୋପୀ ଯେତେ
ମର୍ତ୍ତ୍ୟଦେହ ତ୍ୟାଗକରି ଦିବ୍ୟରୂପ ବହି
ବସିଲେ ସେ ରଥପରେ ହରଷିତ ହୋଇ ।
ସମସ୍ତଙ୍କୁ ଘେନି ରାଧା ଗୋଲୋକକୁ ଗଲେ
ପ୍ରଥମେ ବିରଜା ନଦୀତୀରେ ପ୍ରବେଶିଲେ ।
ସେ ଅନନ୍ତର ଶତଶୃଙ୍ଗ ପର୍ବତକୁ ଦେଖି
ରାସ ମଣ୍ଡଳେ ମିଳିଲେ ହୋଇ ଅତି ସୁଖୀ ।
ତହୁଁ ଖଣ୍ଡେଦୂର ଯାଇ ପୁଣ୍ୟ ବୃନ୍ଦାବନ
ଦେଖିଲେ ଯେ ହୋଇଅଛି ଅତ୍ୟନ୍ତ ଶୋଭନ
ସେଠାରେ ଗୋପୀଙ୍କୁ ସଙ୍ଗେ ଘେନି ବୃନ୍ଦାବତୀ
ପାଛୋଟି ନେଇଣ ରାଧା ଦେବୀଙ୍କୁ ସେ ସତୀ ।
ନିଜ ମନ୍ଦିରେ ସେକ୍ଷଣି ପ୍ରବେଶ ହୋଇଲା
ଆସନେ ବସାଇ ତାଙ୍କ ପାଦ ସେବା କଲା ।
ଗୋଲୋକ ଈଶ୍ୱରୀଙ୍କର ଆଗମନ ଶୁଣି
ଆସିଲେ ସକଳ ଗୋପ ଗୋପୀ ସେହିକ୍ଷଣି ।
ନନ୍ଦ ଯଶୋଦାଙ୍କ ପାଇଁ ଭିନ୍ନ ବାସଗୃହ
ନିରୂପଣ କଲେ ରାଧା ଦେବୀ ବହି ସ୍ନେହ ।
ସମସ୍ତେ ପରମ ସୁଖ ଭୁଞ୍ଜି ଣ ରହିଲେ
ଶ୍ରୀକୃଷ୍ଣ ସୁମର ଗୀତେ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ରାଧିକା ପ୍ରଭୃତିଙ୍କର ଗୋଲୋକ
ଗମନ କଥନେ ନାମ ଅଷ୍ଟବିଂଶୋତ୍ତରଶତତମୋଽଧ୍ୟାୟଃ ।

—୦—

# ଊ ନ ବିଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ

## ଶ୍ରୀକୃଷ୍ଣଙ୍କର ଗୋଲୋକାରୋହଣ

ଏଥୁଅନ୍ତେ ନାରାୟଣ ବୋଇଲେ ନାରଦ
କହୁଅଛୁ ଶୁଣ ବସି ପୁରାଣ ସମ୍ବାଦ ।
ଭାଣ୍ଡୀର ବନରେ ଶ୍ରୀକୃଷ୍ଣ ତ ରହିଥିଲେ
ଗୋପଗୋପୀଙ୍କ ସାୟୁଜ୍ୟ ମୁକତି ଦେଖିଲେ ।
ପଞ୍ଚ ଗୋପୀଙ୍କୁ ସଙ୍ଗରେ ଘେନି ଦେବ ହରି
ରହିଲେ ଭାଣ୍ଡୀର ବଟମୂଳ ଆଶ୍ରେକରି ।
ଗୋଲୋକକୁ ଯିବା ପରେ ଗୋପ ଗୋପୀଗଣ
ଗୋକୁଳ ହୋଇଲା ଅସ୍ତ ବ୍ୟସ୍ତ ରହିଭଣ ।
ବୃନ୍ଦାବନ ଶୂନ୍ୟ ହୋଇ ବିଭଙ୍ଗ ଦିଶିଲା
ଗାଭିମାନଙ୍କର ହମ୍ବା ରଡ଼ି ଶୁଭାଗଲା ।
ତାହା ଦେଖି ଯୋଗେଶ୍ୱର ପ୍ରଭୁ କୃପାମୟ
ଅମୃତ ଦୃଷ୍ଟି ପକାଇ ଗୋପ ଗୋପୀଚୟ ।
ଜୀଆଇଁ ସେକ୍ଷଣି ପୂର୍ଣ୍ଣ କଲେ ବୃନ୍ଦାବନ
କହିଲେ ସେ ସମସ୍ତଙ୍କୁ ମଧୁର ବଚନ ।
ବୋଇଲେ ହେ ବନ୍ଧୁଗଣ ଶୁଣ ମନଦେଇ
ପରମ ସୁଖରେ ତୁମ୍ଭେ ଥାଅ ଏଥେ ରହି ।
ଆମ୍ଭ ବରେ ସୁସମ୍ବାଦ ସୁଦୀର୍ଘ ଆୟୁଷ
ପାଇବ ଏଥି ସନ୍ଦେହ ନାହିଁ ଜାଣ ଲେଶ ।
ପୁତ୍ର ପୌତ୍ର କ୍ରମେ ମହା ଆନନ୍ଦରେ ଦିନ
କଟାଇବ ଏହିଠାରେ ରହି ତୁମ୍ଭେ ଜାଣ ।
ଏରୂପେ ଶ୍ରୀକୃଷ୍ଣଙ୍କର ବଚନକୁ ଶୁଣି
ପ୍ରଣାମ କରି ତାହାଙ୍କୁ ଗୋପ ଗୋପୀ ଶ୍ରେଣୀ ।
ରାସ ମଣ୍ଡଳରେ ଯାଇ ପ୍ରବେଶ ହୋଇଲେ
କାମିନୀଙ୍କୁ ଘେନି ନାନାରଙ୍ଗେ କ୍ରୀଡ଼ାକଲେ ।
ସେହିଦିନଠାରୁ ପୁଣ୍ୟକ୍ଷେତ୍ର ବୃନ୍ଦାବନେ
ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ରହିଅଛି ସୁଯତନେ ।
ଭାଣ୍ଡୀର ବନରେ କୃଷ୍ଣ ଥିବା କଥା ଜାଣି
ପ୍ରବେଶ ହୋଇଲେ ସେହିଠାରେ ଦେବଶ୍ରେଣୀ
ବ୍ରହ୍ମା ଶିବ ଶେଷଦେବ ଚନ୍ଦ୍ର ଦିବାକର
ମହେନ୍ଦ୍ର ଅନଳ ବହ୍ନି ବରୁଣ କୁବେର ।
ଈଶାନ ଯମକୁ ଆଦି ସକଳ ଅମରେ
ଉପସ୍ଥିତ ହେଲେ ଗ୍ରହଗଣ ସହିତରେ ।

ଶ୍ରୀକୃଷ୍ଣଙ୍କୁ ଦେଖି ସର୍ବେ ଦଣ୍ଡବତ ହେଲେ
କରଯୋଡ଼ି ଆଗେ ଉଭା ହୋଇଣ ରହିଲେ
ଏଥୁଅନ୍ତେ ପ୍ରଜାପତି ଶିରେ ଯୋଡ଼ି କର
ବୋଇଲେ ନମସ୍ତେ ଦେବ ତ୍ରୈଲୋକ୍ୟ ଈଶ୍ୱର
ପରିପୂର୍ଣ୍ଣ ପରଂବ୍ରହ୍ମ ନିତ୍ୟ ନିରାମୟ
ସ୍ୱେଚ୍ଛାରୂପ ସର୍ବେଶ୍ୱର କରୁଣା ନିଳୟ ।
ସକଳ ଦେବତାଙ୍କର ପ୍ରଭୁ ଅଟ ତୁମ୍ଭେ
ତୁମ୍ଭର ମହିମା ଜାଣି ପାରିବୁ କି ଆମ୍ଭେ ।
ଆହେ ଲକ୍ଷ୍ମୀ ସରସ୍ୱତୀ ପତି ରାଧାକାନ୍ତ
କେହି ଜାଣି ନ ପାରଇ ତୁମ୍ଭ ଆଦିଅନ୍ତ ।
ତୁମ୍ଭ ପାଦ ପରଶରେ ଦେବୀ ବସୁମତୀ
ପବିତ୍ରା ହୋଇଅଛନ୍ତି ଆହେ ଶିରୀପତି ।
ଏବେ ପଞ୍ଚବିଂଶାଧିକ ଶତେ ସମ୍ବତ୍ସର
ପୂର୍ଣ୍ଣ ହୋଇଲା ଆପଣ ମର୍ତ୍ତ୍ୟେ ରହିବାର ।
ମାନବ ସ୍ୱରୂପ ତେଜି ଆପଣା ସ୍ଥାନକୁ
ଗମନ କରନ୍ତୁ ବେଗେ ଆରୋହି ଯାନକୁ ।
ସେ ଅନ୍ତରେ ସଦାଶିବ ନମ୍ରଶିର ହୋଇ
ବୋଇଲେନମସ୍ତେଦେବତ୍ରୈଲୋକ୍ୟଗୋସାଇଁ
ବ୍ରହ୍ମାଙ୍କ ପ୍ରାର୍ଥନା ଯୋଗେ ପୃଥିବୀକୁ ଆସି
ହେଲ ଉପାୟରେ ଦୁଷ୍ଟଗଣଙ୍କୁ ବିନାଶି ।
ଏବେ ନିଜ ସ୍ଥାନ ପ୍ରତି ଯିବାପାଇଁ ମନ
କରୁଅଛୁ ଆହେ ଦୟାମୟ ଭଗବାନ ।
ମୁନି ଋଷି ସହିତରେ ଆମ୍ଭେ ଦେବଗଣ
କୃତାର୍ଥ ହୋଇଲୁ ଦେଖି ତୁମ୍ଭ ଶ୍ରୀଚରଣ ।
ଯେଉଁ ରୂପ ଦେଖିବାକୁ ଯୋଗୀଜନେ ନିତି
ଏକାଗ୍ର ଚିତ୍ତରେ ବସି ଧ୍ୟାନ କରୁଥାନ୍ତି ।
ଭାଗ୍ୟବଳେ ପ୍ରତ୍ୟକ୍ଷରେ ଆମ୍ଭେ ସେ ରୂପକୁ
ଦେଖିଣ ପବିତ୍ର କଲୁ ନିଜ ଜୀବନକୁ ।
ଅନନ୍ତ ବୋଇଲେ ଦେବ ତୁମ୍ଭ ଅଂଶେ ଜାତ
ହୋଇଅଛି ମୁହିଁ ମହୀ ମଧ୍ୟରେ ବିଖ୍ୟାତ ।
ଅସଂଖ୍ୟ ଅନନ୍ତ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ସରଜନା କରିଅଛ ତୁମ୍ଭେ ବାରମ୍ବାର ।

ଆବର ସକଳ ଲୋକ ତୁମ୍ଭଠାରୁ ଜାତ
ହେଉ ଅଛନ୍ତି ଜଗତ ମଧ୍ୟରେ ନିଯୁତ ।
ପାଦରଜରେ ପବିତ୍ର କରି ବସୁମତୀ
ଗମନ କରିବେ ଏବେ ନିଜ ସ୍ଥାନ ପ୍ରତି ।
ଆପଣଙ୍କୁ ହରାଇଣ ଶୋକ ସମୁଦ୍ରରେ
ନିମଗ୍ନ ହୋଇଣ ମହୀ ଥିବ ନିରନ୍ତରେ ।
ଏଥିଅନନ୍ତରେ ଦେବଗଣ ଉଭାହୋଇ
ବୋଇଲେ ନମସ୍ତେ ଦେବ ରାଧା ପ୍ରାଣସାଇଁ ।
ବ୍ରହ୍ମା ଶିବ ଶେଷ ଆଦି ମୁଖ୍ୟ ସୁରଗଣ
କରି ନ ପାରିବ ତୁମ୍ଭ ସ୍ତୁତି କୀର୍ତ୍ତି ଗାନ ।
ଆମ୍ଭେମାନେ କେତେକର ଅଟୁ ମହାପ୍ରଭୁ
ତୁମ୍ଭ ସ୍ତୁତି ପଠନରେ ସମର୍ଥ ହୋଇବୁ ।।
ଆହେ ଦୟାମୟ ଦୟାକରି ଆମ୍ଭଠାରେ
ଦୋଷ ଥିଲେ କ୍ଷମାକର ବାତ୍ସଲ୍ୟ ଗୁଣରେ ।
ଏହିରୂପେ ସ୍ତୁତିକରି ଦେବତା ସକଳ
ଦ୍ୱାରକା ପୁରକୁ ତହୁଁ ଗଲେ ହୋଇ ମେଳ
ସେହିଠାରେ ସ୍ୱମ୍ଭୁରୂପ ଶ୍ରୀକୃଷ୍ଣଙ୍କ ଅଂଶ
ଥିଲେ ଯେ ତାଙ୍କୁ ଦର୍ଶନ କଲେ ହୋଇ ତୋଷ
ଏଥିଅନ୍ତେ ପାଞ୍ଚଗୋଟି ଦିବ୍ୟ ରଥେ ବସି
ଗୋଲୋକ ପୁରକୁ ଯାତ୍ରାକଲେ ହୋଇ ତୋଷି
ଦୁର୍ବାସାମୁନିଙ୍କ ଶାପେ ଦ୍ୱାରକା ନଗର
ହତଶ୍ରୀ ହୋଇଲା ମାଡ଼ି ଆସନ୍ତେ ସାଗର
ଯାଦବଗଣ ଏରକା ଯୁଦ୍ଧ ରସେ ମାତି
ହଣାହଣି ହୋଇ ସର୍ବେ ଆତ୍ମେ କଲେ ଷିତି
ଶ୍ରୀକୃଷ୍ଣ ତା ଦେଖିକରି ଶିଆଳି ବୃକ୍ଷରେ
ବସିଣ ଶରୀର ତ୍ୟାଗ କଲେ ବ୍ୟାଧ ଶରେ ।
ରୁକ୍ମିଣୀ ଆଦି ସମସ୍ତ ଅନ୍ତଃପୁର ସ୍ତ୍ରୀରୀ
ଚିତା ଆରୋହିଲେ ସ୍ୱାମୀ ଗୁଣ ଅନୁସରି ।
ଯୁଧିଷ୍ଠିର ଶୁଣି ତାଙ୍କ ଭାଇ ଭାରିଯାଙ୍କୁ
ସଙ୍ଗେ ଘେନିଗଲେ ବେଗେ ସ୍ୱର୍ଗ ଭୁବନକୁ ।
ଯେଉଁ ବ୍ୟାଧରେ ଶ୍ରୀକୃଷ୍ଣ ଦେହତ୍ୟାଗ କଲେ
ଗୋଲୋକ ନଗରେ ତାଙ୍କୁ ସ୍ଥାନ ନେଇଦେଲେ
ବଳଦେବଙ୍କର ତେଜ ଶେଷ ଅଙ୍ଗେ ଯାଇ
ମିଶିଗଲା ସେ କାଳରେ ଥିଲେ ସର୍ବେ ଚାହିଁ ।
ପ୍ରଦ୍ୟୁମ୍ନଙ୍କ ତେଜ କାମ ଶରୀରକୁ ଗଲା
ଅନିରୁଦ୍ଧ ତେଜ ବ୍ରହ୍ମ ଶରୀରେ ମିଶିଲା ।

ଅନ୍ତର୍ଧାନ ସମୁଦ୍ରା ମହାଲକ୍ଷ୍ମୀ ଯେ ରୁକ୍ମିଣୀ
ବୈକୁଣ୍ଠପୁରରେ ପ୍ରବେଶ ହେଲେ ସେହିକ୍ଷଣି ।
ସତ୍ୟଭାମା ମହୀଦେବୀ ଅଙ୍ଗେ ଲୀନ ହେଲେ
ଜାମ୍ବବତୀ ପାର୍ବତୀଙ୍କ ଶରୀରେ ମିଶିଲେ ।
ଆଉ ଯେଉଁମାନେ ଯେଉଁ ଦେବୀଙ୍କ ଅଂଶରେ
ଜାତ ହୋଇଥିଲେ ଲୀନ ହେଲେ ତାଙ୍କଠାରେ
ଶାମ୍ବଠାରୁ ଅଦଭୁତ ତେଜ ଉଠି ଯାଇ
ମିଶିଗଲା ସ୍କନ୍ଦଦେହେ ସର୍ବେ ଥିଲେ ଚାହିଁ ।
କଶ୍ୟପ ଦେହରେ ବସୁଦେବଙ୍କର ତେଜ
ପ୍ରବେଶ ହୋଇଲା ଦେଖିଲେ ଜଗତ ପୂଜ୍ୟ ।
ଦେବକୀ ଦେବୀଙ୍କ ତେଜ ଅଦିତି ଦେହରେ
ମିଶିଲା ଯାଇ ସେକାଳେ ଆଶ୍ଚର୍ଯ୍ୟ ଭାବରେ ।
ରୁକ୍ମିଣୀ ମନ୍ଦିର ଛାଡ଼ି ଦ୍ୱାରକା ସମସ୍ତ
ସମୁଦ୍ର ଜଳରେ ବୁଡ଼ି ହେଲା ଅସ୍ତବ୍ୟସ୍ତ ।
ଯେ ଅନନ୍ତ ସମୁଦ୍ର ଗଙ୍ଗାନଦୀ ସରସ୍ୱତୀ
ସ୍ୱର୍ଣ୍ଣରେଖା ଗୋଦାବରୀ ସିନ୍ଧୁ ପଦ୍ମାବତୀ ।
ଶରାବତୀ କୃତମାଳା ଆଦିକରି ଯେତେ
ଭଣ୍ଡୀର କାନନେ ଆସି ମିଳିଲେ ସମସ୍ତେ ।
ଶ୍ରୀକୃଷ୍ଣଙ୍କ ପାଦ ଧରି ପ୍ରଣାମ ଯେ କଲେ
କର ଯୋଡ଼ି ଭାଗୀରଥୀ ଦୁଃଖ ଜଣାଇଲେ ।
ବୋଇଲେ ହେନାଥ ତୁମ୍ଭେ ମର୍ତ୍ତ୍ୟ ଲୋକଛାଡ଼ି
ପ୍ରୟାଣ କରୁଛ ଏବେ ନିଜ ସ୍ଥାନ ଲୋଡ଼ି ।
କଳିଯୁଗେ ଆମ୍ଭମାନଙ୍କର କେଉଁ ଗତି
ହୋଇବ ତା କହ ପ୍ରଭୁ ଶ୍ରୀରାଧାଙ୍କ ପତି
ଶ୍ରୀକୃଷ୍ଣ ବୋଇଲେ ଦେବୀ ! ପାଞ୍ଚସହସ୍ର ବର୍ଷ
କଳିଯୁଗେ ରହି ତୁମ୍ଭେ ଛାଡ଼ି ଭୟ ତ୍ରାସ ।
ତୁମ୍ଭ ଜଳେ ସ୍ନାନ କରି ପାପୀଜନମାନେ
ପାତକ ଛଡ଼ାଉଥିବେ ଆସି ପ୍ରତିଦିନେ ।
ତୁମ୍ଭଙ୍କୁ ଦର୍ଶନ କରି ମୋର ମନ୍ତ୍ର ଜପ
କଲେ ପ୍ରାଣୀଙ୍କର ଦୂର ହେବ ସର୍ବ ପାପ ।
ଯେଉଁଠାରେ ହରିକଥା ସଙ୍କୀର୍ତ୍ତନ ହେବ
ଗୁପତରେ ଯାଇ ତୁମ୍ଭେ ଶ୍ରବଣ କରିବ ।
ଯେତେ ଯେତେ ପାପ ତୁମ୍ଭଠାରେ ପାପୀଜନେ
ତ୍ୟାଗ କରି ଯାଉଥିବେ ସ୍ନାନ ଜପଦାନେ ।
ବୈଷ୍ଣବଙ୍କ ଅଙ୍ଗ ପରଶରେ ସେ ସମସ୍ତ
ମୁହୂର୍ତ୍ତେକ ସମସ୍ତରେ ହେବ ଭସ୍ମୀଭୂତ ।

ପୃଥିବୀରେ ଯେତେ ପୁଣ୍ୟତୀର୍ଥ କ୍ଷେତ୍ର ରହି
ମୋର ଭକ୍ତଙ୍କ ଅଙ୍ଗରେ ଥିବେ ସବୁ ସେହି ।
ତାଙ୍କର ସମ୍ବନ୍ଧ ମାତ୍ରେ ଅଶେଷ କଳୁଷ
ଦୂର ହୋଇବ ସଂଶୟ ନାହିଁ ଏଥି ଲେଶ ।
ଯେଉଁ ମାନେ ନିତି କରୁଥିବେ ମୋତେ ଧ୍ୟାନ
ତାହାଙ୍କ ଦେହରେ ପାପ ନ ପାଇବ ସ୍ଥାନ
ଦଶସହସ୍ର ବର୍ଷ ଯାଏ ଏ କଳି ଯୁଗରେ
ମୋର ଭକ୍ତ ହୋଇଥିବେ ଯେତେ ସାଧୁ ନରେ
ସେ ଅନ୍ତରେ ଏକବର୍ଣ୍ଣ ହୋଇବ ଜଗତ
କ୍ରମେ କ୍ରମେ ହେବ ତହିଁ କଳିଯୁଗ ଗ୍ରସ୍ତ ।
ଏରୂପେ ଶ୍ରୀକୃଷ୍ଣ ଗଙ୍ଗା ଆଗେ କହୁଥିଲେ
ପୁରୁଷ ଗୋଟିଏ ତାଙ୍କ ଅଙ୍ଗୁ ବାହାରିଲେ ।
ଶତଚନ୍ଦ୍ର ପ୍ରଭା ତାଙ୍କ ଦେହେ ବିରାଜିତ
ଚତୁର୍ଭୁଜ ଶଙ୍ଖଚକ୍ର ଗଦାପଦ୍ମ ଯୁତ ।
ସେ ପୁରୁଷ ଦିବ୍ୟରଥେ ବସି ତତକାଳେ
କ୍ଷୀରାବ୍ଧିକୁ ଗଲେ ସର୍ବେ ଦେଖୁଥିଲେ ଡୋଳେ
ତାଙ୍କ ସଙ୍ଗେ ମୂର୍ତ୍ତିମତୀ କ୍ଷୀରୋଦ ତନୟା
ଶ୍ରୀକୃଷ୍ଣଙ୍କ ମନୁ ଜାତ ହୋଇ ମହାମାୟା ।
ଦେଖୁ ଦେଖୁ ସେ ସ୍ଥାନରୁ ଅନ୍ତର ହୋଇଲେ
ଆହେ ମୁନିବର ମନଦେଇ ଶୁଣ ଭଲେ ।
ତାହା ଦେଖିଣ ଶ୍ରୀକୃଷ୍ଣ ଆପଣା ଦେହକୁ
ବେନିଭାଗ କଲେ ଗୁଢ଼ ସଂସାର ମୋହକୁ ।
ଦକ୍ଷିଣ ଅଙ୍ଗରୁ ହେଲେ ଦ୍ୱିଭୁଜ ମୂରତି
ଗୋପଶିଶୁ ସ୍ୱରୂପ ସେ ଶ୍ରୀରାଧିକା ପତି ।
ନବ ଜଳଧର ଶ୍ୟାମ ସୁନ୍ଦର ବରନ
ଶତ ଚନ୍ଦ୍ର ତୁଲ୍ୟ ଶିଶୁଅଛି ଅପଘନ ।
ପୀତବାସ ବଂଶୀଧର କମଳଲୋଚନ
ପରମାନନ୍ଦ ସ୍ୱରୂପ ନିତ୍ୟ ସନାତନ ।
ଯେଉଁ ଜ୍ୟୋତିର୍ମୟ ରୂପ ଦେଖିବାକୁ ନିତ
ଯୋଗୀମାନେ ଯୋଗାସନେ ଧ୍ୟାନ କରୁଛନ୍ତି ।
ସ୍ୱେଚ୍ଛାମୟ ବୋଲି ଯାଙ୍କୁ କହନ୍ତି ଅମରେ
ସର୍ବରୂପ ଅଟନ୍ତି ଯେ ମୁନିଙ୍କ ମତରେ ।
ଶଙ୍କର ବୋଲନ୍ତି ଯାଙ୍କୁ ଅନିର୍ବଚମୀୟ
ଶେଷଙ୍କ ମତରେ ଯେହୁ ନାନାରୂପମୟ ।
ଆବର ବେଦାନ୍ତ ନ୍ୟାୟ ସଂଖ୍ୟାଆଦି ଯେତେ
ଶାସ୍ତ୍ରଗଣ ସୁପ୍ରସିଦ୍ଧ ହୋଇଛି ଜଗତେ ।

ଯେମାନଙ୍କ ମତରେ ଯେ ବିବିଧ ପ୍ରକାର
ପ୍ରକାଶିତ ହେଲେ ପ୍ରଭୁ ରାଧା ପ୍ରାଣେଶ୍ୱର
ବାମାଂଶରୁ ଚତୁର୍ଭୁଜ ଲକ୍ଷ୍ମୀଦେବୀ ପତି
ଶଙ୍ଖ ଚକ୍ର ଗଦାପଦ୍ମ ଘେନି ଉତପତ୍ତି ।
ହୋଇଲେ ସେ କାଳେ ଜାଣ ଆହେ ମୁନିବର
କଉସ୍ତୁଭ ବନମାଳେ ଶୋଭିତ ଶରୀର ।
ତାଙ୍କୁ ଦେଖି ଦେବଗଣ ବିବିଧ ପ୍ରକାରେ
ସ୍ତୁତିକଲେ କରଯୋଡ଼ି ନିଜ ନିଜ ଶିରେ ।
ଏଥିଅନ୍ତେ ସ୍ୱେଚ୍ଛାମୟ ପ୍ରଭୁ ବ୍ରହ୍ମରାଶି
ବୈକୁଣ୍ଠପୁରକୁ ଗଲେ ଦିବ୍ୟଯାନେ ବସି ।
ଦ୍ୱିଭୁଜ ଗୋଲୋକେଶ୍ୱର ଶ୍ରୀକୃଷ୍ଣ ତା ଦେଖି
ମୋହନ ବଂଶୀକୁ ବଜାଇଲେ ହୋଇ ସୁଖୀ ।
ସେ ବଂଶୀ ଶବଦ ଶୁଣି ଦେବ ଋଷି ଗଣ
ମହୀରେ ପଡ଼ିଲେ ସର୍ବେ ହୋଇ ଅଚେତନ
କେବଳ ବୈଷ୍ଣବୀମାୟା ପାର୍ବତୀ ସେଠାରେ
ଧୈର୍ଯ୍ୟ ଧରିଣ କହିଲେ ପ୍ରଭୁଙ୍କ ପାଶରେ ।
ଶ୍ରୀକୃଷ୍ଣଙ୍କୁ ଅନାଇଣ କହିଲେ ବଚନ
ବୋଇଲେ ଶୁଣିବା ହେଉ ଆହେ ଭଗବାନ
ଏକା ମୁହିଁ ଗୋଲୋକରେ ଅଟଇ ରାଧିକା
ହୋଇଅଛି ଆପଣଙ୍କ ପ୍ରାଣରୁ ଅଧିକା ।
ବୈକୁଣ୍ଠରେ ମହାଲକ୍ଷ୍ମୀ ସରସ୍ୱତୀ ନାମ
ବହନ କରିଛି ଆହେ ପୁରୁଷ ଉତ୍ତମ ।
କୈଳାସେ ପାର୍ବତୀ ବ୍ରହ୍ମଲୋକରେ ସାବିତ୍ରୀ
ବୋଲାଉଛି ତୁମ୍ଭ ଆଜ୍ଞା ଘେନି ସେହିମତି
ପୂର୍ବକାଳେ ସତ୍ୟଯୁଗେ ତୁମ୍ଭ ଆଦେଶରେ
ଜାତ ହୋଇ ମୁହିଁ ସର୍ବଦେବଙ୍କ ତେଜରେ
କୁମ୍ଭଆଦି ନିଶାଚର ଗଣକୁ ନାଶିଲି
କାଳିକା ରୂପରେ ରକ୍ତବୀର୍ଯ୍ୟ ପ୍ରାଣ ନେଲି
ସେ ଅନ୍ତରେ ଦକ୍ଷକନ୍ୟା ସତୀ ନାମ ବହି
ଜନମିଲେ ତୁମ୍ଭ ଆଦେଶରେ ଶିବଗ୍ରାହୀ ।
ଯୋଗବଳେ ଦେହତ୍ୟାଗ କରି ସେ ଅନ୍ତରେ
ଉତ୍ପନ୍ନ ହୋଇଲି ପୁଣି ହିମାଳୟ ଘରେ ।
ନାରାୟଣଙ୍କର ମାୟା ହେବାରୁ ଟି ମୁହିଁ
ଜଗତରେ ଅଛି ନାରାୟଣୀ ନାମ ବହି ।
ତୁମ୍ଭ ଆଜ୍ଞାରେ ମୁଁ ପଞ୍ଚପ୍ରକୃତି ରୂପିଣୀ
ଜନ୍ମି ଅଛି ନାନାସ୍ଥାନେ କଳାଅଂଶ ଘେନି ।

ରାଧାରୂପେ ନିତ୍ୟ ମୁହିଁ ଗୋଲୋକରେ ରହି
ବିରହ ବ୍ୟଥା ଲଭୁଛି ଆପଣଙ୍କ ପାଇଁ ।
ଏବେ ଏହି ମର୍ତ୍ତ୍ୟଲୋକ ତେଜିଣ ଆପଣ
ଗୋଲୋକ ଭୁବନେ ବେଗେ କରନ୍ତୁ ଗମନ
ଏହି ପରକାରେ ଶୁଣି ପାର୍ବତୀଙ୍କ ଗିର
ରତ୍ନ ବିମାନରେ ବସି ପ୍ରଭୁ ଚକ୍ରଧର ।
ହସି ହସି ଗୋଲୋକକୁ କଲେ ଗମନ
ବିଦାୟ ନେଇ ପାର୍ବତୀ ଦେବୀଠୁଁ ବହନ ।
ଏଥୁଅନ୍ତେ ମହାମାୟା ପାର୍ବତୀ ସେଠାରେ
ସୁରଗଣଙ୍କୁ ସଚେତ କରାଇ ସଭରେ ।
ଶଙ୍କର ସହିତେ ବସି କନକ ବିମାନେ
କଇଳାଶ ଭୁବନକୁ ଗଲେ ତୋଷ ମନେ ।
ଆନନ୍ଦରେ ହରିନାମ ଗାଇ ସୁରଗଣ
ପ୍ରବେଶ ହୋଇଲେ ଯେଝାପୁରରେ ଯାଇଣ ।
ଶ୍ରୀକୃଷ୍ଣଙ୍କ ଆଗମନ ଗୋଲୋକରେ ପାଇ
ପାଚ୍ଛୋଟି ଆସିଲେ ରାଧା ସଖୀଗଣ ନେଇ ।
ଯାନରୁ ଓହ୍ଲାଇ ଆଗେ ଦଣ୍ଡବତ ହେଲେ
ମଧୁର ବଚନ କହି ମନ ତୋଷ କଲେ ।
ତାଙ୍କ ପଛେ ୨ ଆସି ଗୋପ ଗୋପୀଗଣ
ପ୍ରଭୁଙ୍କ ଦର୍ଶନ କଲେ ଆନନ୍ଦ ହୋଇଣ ।
ଦୁନ୍ଦୁଭି ବଜାଇ ନୃତ୍ୟ ଗୀତ ଆରମ୍ଭିଲେ
ପୁର ଭିତରକୁ ଅତି ଆଡ଼ମ୍ବରେ ନେଲେ ।

ଆଦ୍ୟରେ ବିରଜାନଦୀ ହୋଇକରି ପାର
ଏଥୁଁ ଉବୁରିଲେ କୃଷ୍ଣ ରାଧାଙ୍କ ଆଗର ।
ହସ୍ତ ହସ୍ତ ଧରି ଶତଶୃଙ୍ଗ ପର୍ବତରେ
ଭ୍ରମଣ କରନ୍ତି ରାସ ମଣ୍ଡଳ ମଧ୍ୟରେ ।
ଅକ୍ଷବଟ ଦେଖି ବୃନ୍ଦାବନରେ ମିଳିଲେ
ମାଳତୀ ତୁଳସୀ ବନେ ଭ୍ରମଣ କରିଲେ ।
କୁନ୍ଦ ସୁନ୍ଦର ବନକୁ ଛାଡ଼ିଣ ବାମରେ
ମାଧବୀ ବନ ମଧ୍ୟକୁ ଗଲେ ଯେତ୍ତୁ ଖରେ ।
ଦକ୍ଷିଣ ଭାଗରେ ଛାଡ଼ି ଗଲୁ ଚମ୍ପାବନ
ଚନ୍ଦନ ବନକୁ ଗଲେ ସେଠାରୁ ବହନ ।
ରାଧାଙ୍କ ବିଚିତ୍ର ଗୃହ ତାହା ଅଗ୍ରତରେ
ଗୃହେଁ ୨ ପ୍ରବେଶିଲେ ଆସିଣ ସତ୍ତ୍ୱରେ ।
ଦେବୀଙ୍କ ସହିତେ ରତ୍ନ ସିଂହାସନେ ବସି
ତାମ୍ବୂଳ ଭକ୍ଷଣ କଲେ ପ୍ରଭୁ ବ୍ରହ୍ମରାଶି ।
ଚଦନ୍ତେ ଚନ୍ଦନ ମଧୁ କୁଙ୍କୁମ ତଳ୍ପରେ
ରାଧାଙ୍କୁ ଘେନି ଶୟନ କଲେ ଆନନ୍ଦରେ ।
ଆହେ ଧାତାଙ୍କ ନନ୍ଦନ ଧର୍ମ ମୁଖୁଁ ମୁହିଁ
ଯାହା ଶୁଣିଥିଲି ତବ ଆଗେ ଦେଲି କହି ।
ଆଉ ଯେବେ କିଛି ଶୁଣିବାକୁ ଅଛି ମନ
ପଚାର ଆମୂଳ ଚୂଳ କରିଣ ବିଧାନ ।
ଏମନ୍ତ ବୋଲି ମଉନ ହେଲେ ତପିସାଇଁ
ଅଧମ ଖେତ୍ରମୋହନ ଗୀତରେ କହଇ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଗୋଲୋକାରୋହଣ ବର୍ଣ୍ଣନେ ନାମ ଊନବିଂଶୋତ୍ତରଶତତମୋଽଧ୍ୟାୟଃ ।

—o—

## ବିଂ ଶୋ ତ୍ତ ର ଶ ତ ତ ମ ଅ ଧ୍ୟା ୟ
## ଦେବର୍ଷି ନାରଦଙ୍କର ବିବାହ ବର୍ଣ୍ଣନ

ଶୁଣ ୨ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ନାରାୟଣଙ୍କ ମୁଖକୁ ନାରଦ ଅନାଇଁ
ବୋଇଲେ ଗୁରୁଦେବ ମୋତେ ଦିଅନ୍ତୁ ବତାଇ
ବହୁ ବହୁ ଶାସ୍ତ୍ରମାନ ତବ ମୁଖୁଁ ଶୁଣି
ଅପାର ଆନନ୍ଦ ହେଲି ଆହେ ତପିମଣି ।
କେବଳ ଗୋଟିଏ କଥା ପୁଚ୍ଛିବା ନିମନ୍ତେ
ବହୁଦିନ ହେଲା ଇଚ୍ଛା କରିଥିଲି ଚିତ୍ତେ ।

ଆଜି ସୁଯୋଗ ପାଇଣ ପୁଚ୍ଛୁଅଛି ତାହା
ଦୟା କରି କୁହ ଆହେ ତପିଙ୍କର ନାହା ।
ଏବେ କେଉଁ କାର୍ଯ୍ୟେ ମୁହିଁ ହେବି ଅଗ୍ରସର
ବତାଇ ଦିଅନ୍ତୁ ତାହା କରି ସୁବିସ୍ତର ।
ଆଜ୍ଞା ଦେଲେ ହିମାଳୟ ପର୍ବତକୁ ଯାଇ
ତପ କରିବି ବିଷୟମାନ ଛାଡ଼ିଦେଇ ।
ତାହା ଶୁଣି ନାରାୟଣ କହିଲେ ବଚନ
ତୁମ୍ଭେ ତ ସକଳ ଶାସ୍ତ୍ରେ ଅଟ ବିଦ୍ୟମାନ ।

ପୂର୍ବକାଳେ ଜନ୍ମି ଥିଲି ଗନ୍ଧର୍ବ କୁଳରେ
ଉପବର୍ହଣ ଯେ ନାମ ଥିଲା ସେ ଯୁଗରେ ।
ପଞ୍ଚାଶତ କାମିନୀଙ୍କୁ ବିବାହ ହୋଇଣ
ଆନନ୍ଦରେ ତାଙ୍କ ସଙ୍ଗ ଥିଲି ବିହରିଣ ।
ପୁଣି ଯୁଗେ ୨ ତୁମ୍ଭେ ଧାତାଙ୍କ କୁମର
ସକଳ ଶାସ୍ତ୍ର ମାନଙ୍କ ଅଟ ଧୁରନ୍ଧର ।
ସେ ପଞ୍ଚାଶତ କାମିନୀଙ୍କର ମଧ୍ୟୁ ଜଣେ
ଏବେ ଜନ୍ମ ହୋଇଅଛି ମରତ ଭୁବନେ ।
ତୁମ୍ଭଙ୍କୁ ପାଇବା ପାଇଁ ବିସ୍ତର ମନକୁ
ଦିବସ ରଜନୀ ଧ୍ୟାଉଅଛି ଶଙ୍କରଙ୍କୁ ।
ସୃଜୟ କନ୍ୟା ହୋଇଣ ଜନ୍ମିଅଛି ସେହି
ବିଭା ହେବାକୁ ସେ ଅଛି ତବ ପଥ ଚାହିଁ ।
ତାହାର ତପରେ ତୋଷ ହୋଇ ଭୂତପତି
ସନ୍ତୋଷ ହୋଇଣ ତାରେ ବର ଦେଇଛନ୍ତି ।
ତେଣୁ କହୁଅଛି ଆହେ ଧାତାଙ୍କ କୁମର
ଅନ୍ୟଥା ନୋହିବ କେବେହେଁ ଶିବଙ୍କର ଗିର ।
ଏବେ ଆମ୍ଭ ବୋଲ ମାନି ସେଠାକୁ ଯାଅ
ପ୍ରାକ୍ତନ କର୍ମେ ବିବାହ କରି ସୁଖେ ରହ ।
ପୂର୍ବ ଜନ୍ମ କର୍ମ ଯେବେ ଭୋଗ ନ ହୁଅଇ
କୋଟିଏ ଜନ୍ମରେ ତାହା କ୍ଷୟ ଯେ ନୁହଁଇ ।
କହିଲେ ସୂତ ଶୌନକ ମୁନିଙ୍କ ଅଗ୍ରତ
ଏହିଭାବେ ଶୁଣି ତହୁଁ ବିଧାତାଙ୍କ ସୁତ ।
ନାରାୟଣଙ୍କ ପଦ୍ମରେ ପ୍ରଣମି ଦୁଃଖରେ
ବିଦାୟ ନେଇ ଚଳିଲେ ସୃଞ୍ଜୟଙ୍କ ପୁରେ ।
ଶୌନକ ବୋଇଲେ ଆହେ ସୂତ ମୁନିବର
ଅପୂର୍ବ ରହସ୍ୟ ଶୁଣି ମୁଖରୁ ତୁମ୍ଭର ।
ଅପାର ଆନନ୍ଦ ହୃଦ ମଧ୍ୟେ ହେଲା ଜାତ
ବିସ୍ତାର ଭାବରେ କୁହ ତପିଙ୍କର ନାଥ ।
ଜୀବନରେ ଦିନେ ମାତ୍ର ମୁଖରୁ କାହାର
ଶୁଣି ନ ଥିଲୁ ବିବାହ ଦେବର୍ଷିଙ୍କର ।
ଏବେ ଏହା ଶୁଣିବାକୁ କୌତୁହଳ ହୁଏ
ବୁଝାଇ କରିଣ ତାହା କୁହ ମହାଶୟେ ।
ଜିତେନ୍ଦ୍ରିୟ ବ୍ରହ୍ମମୟ ଅଟନ୍ତି ସେ ମୁନି
ବିବାହ କଲେ ଶଙ୍କର ଆଦେଶକୁ ମାନି ।
କିପରି ଭାବେ କେମନ୍ତେ ବିବାହ ହୋଇଲେ
ତବ ଶ୍ରୀମୁଖୁଁ ଶୁଣିଲେ ତୋଷହେବୁ ହେଲେ ।

ସଉନକ ମୁନି ପଚ୍ଚରନ୍ତେ ଏହିପରି
ଆରମ୍ଭ କରିଲେ ସୂତ ମୁନି ହସିକରି ।
ବୋଇଲେ ନାରଦ ଯାଇ ସୃଞ୍ଜୟ ଭୁବନେ
ତାହାଙ୍କ କନ୍ୟା କନ୍ୟକା ଦେଖିଣ ନୟନେ
ବିରକ୍ତ ହୋଇଣ ବ୍ରହ୍ମ ଲୋକକୁ ଚଳିଲେ
ପିତାଙ୍କର ଆଗେ ସବୁ ବୟାନ କରିଲେ ।
ତାହା ଶୁଣି ପ୍ରଜାପତି ହରଷିତ ହୋଇ
ସକଳ ସୁର ଗଣଙ୍କୁ ସଙ୍ଗତରେ ନେଇ ।
ଅପୂର୍ବ ରଥ ଉପରେ ବସି ତତକାଳେ
ସୃଞ୍ଜୟ ନଗରେ ଯାଇଁ ପରବେଶ ହେଲେ ।
ଦେଖିଣ ସୃଞ୍ଜୟ ନୃପ ଯଥାମାନ୍ୟ କରି
ରତ୍ନ ବିଭୂଷିତା କନ୍ୟା ଆଣିଲେ ହକାରି ।
ବେଦିରେ ବସାଇ ବେଦ ବିଧି ନିୟମରେ
କନ୍ୟକାଙ୍କୁ ଅରପିଲେ ନାରଦଙ୍କ କରେ ।
ହସ୍ତ ଧରିଣ ବହୁତ ବୁଝାଇ କହିଲେ
ଅମାପ ଧନ ରତନ ଯଉତୁକ ଦେଲେ ।
ତାପରେ ଧାତାଙ୍କ ପାଦେ ନମସ୍କାର କରି
ରୋଦନ କଲେ କନ୍ୟାର ଗୁଣକୁ ସୁମରି ।
ବୋଇଲେ ଶୂନ୍ୟ କରିଣ ମୋହର ନଗର
କେଉଁଆଡ଼େ ଯିବୁ ମାତ କହ ମୋ ଆଗର
ତୋହର ବିରହ ବ୍ୟଥା ସହି ନ ପାରିବୁ
ପିତା ମାତା ଦୁଇଜଣ ପରାଣ ତେଜିବୁ ।
ତାହାଶୁଣି କନ୍ୟା ମନେ ହୋଇ ଅତି ଦୁଃଖୀ
କ୍ରନ୍ଦନ କରିଲା ମାତା ପିତାଙ୍କୁ ନିରେଖି ।
ଚରଣ ତଳେ ତାଙ୍କର ପଡ଼ି ବିନୟରେ
ବୋଇଲା ଯା ଥିଲା ଘଟି ଗଲା ମୋ ଭାଗ୍ୟରେ
ସେ ଲାଗି ଭାବନା ଆଉ ନ କର ପିଅର
ଧରିଅଛି ମୁହିଁ ଉପଯୁକ୍ତ ପତି କର ।
କେବଳ ଏତିକ ମାତ୍ର ଜଣାଉଛି ମୁହିଁ
ମୋ ଜନନୀ ନେତ୍ରୁ ଯେହ୍ନେ ନୀର ନ ବହଇ ।
ତାହା ପ୍ରତି ସବୁବେଳେ ସୁନଜର ଦେବ
ଟାଣିକରି ପଦେ ମାତ୍ର କଥା ନ କହିବ ।
ଏହିପରି ବୁଝାଇଣ କନ୍ୟକା ସୁନ୍ଦରୀ
ବିଦାୟ ନେଲା ଚରଣ ବନ୍ଦଣ ତାଙ୍କରି ।
ତାପରେ ଯାଇ ଧାତାଙ୍କ ରଥରେ ବସିଲେ
ପିତା ମାତା ବେନି ଜନେ ଆଶୀର୍ବାଦ କଲେ

ଏଥିଅନ୍ତେ ପ୍ରଜାପତି ପୁତ୍ର ବଧୂ ଘେନ
ବ୍ରହ୍ମଲୋକକୁ ଗମନ କଲେ ତତକ୍ଷଣି ।
ମଙ୍ଗଳ ନିମନ୍ତେ ଦେବ ଆଦର ଦ୍ୱିଜଙ୍କୁ
ତୋଷ କରାଇଲେ ଦେଇ ବିବିଧ ଦ୍ରବ୍ୟକୁ ।
ନିଜ ପୂର୍ବ କର୍ମଫଳ ଦେବର୍ଷି ନାରଦ
ସଂସାର କାର୍ଯ୍ୟ କରିବା ପାଇଁ ହେଲେ ବାଧ
କନ୍ୟାକୁ ସଙ୍ଗେ ଘେନ ନାନାବିଧ ରଙ୍ଗରେ
କେଳି ରଚନା କରିଲେ ଗୁଳ କାନନରେ ।
ପୁଣି ବିବସ ଯାମିନୀ କାମେ ମତ୍ତ ହୋଇ
ଧର୍ମ କର୍ମ ମାନ ସବୁ ଜଳାଞ୍ଜଳି ଦେଇ
ସୁନ୍ଦରୀ ରମଣୀ ସଙ୍ଗେ ବିହାର କରିଲେ
ଶି ପରେ ତାର କଥା ସର୍ବଦା ମାନିଲେ ।
ଏହିଭାବେ କେତେକାଳ ଗତ ହୋଇଗଲା
ତାହାଙ୍କ ମନରେ ପୁଣି ଜ୍ଞାନ ଉଦେ ହେଲା ।
ସେ ନିମନ୍ତେ ପ୍ରିୟାସଙ୍ଗ ଛାଡ଼ି ତତକାଳେ
ନିଶ୍ଚିନ୍ତ ହୋଇ ବସିଲେ ବଟବୃକ୍ଷ ମୂଳେ ।
ସେହି ସମୟରେ ମୁନି ସନତ କୁମାର
ପ୍ରବେଶ ହେଲେ ନାରଦ ଋଷିଙ୍କ ପାଖର ।
ଅତି ତେଜସ୍ୱାନ କାୟ ତାଙ୍କର ଅଟଇ
ବ୍ରହ୍ମତେଜ ସର୍ବାଙ୍ଗରେ ଫୁଟି ବିକଶଇ ।
ମନ୍ତ୍ର ତନ୍ତ୍ର ବେଦବିଧି କିଛି ନ ଜାଣନ୍ତି
କେବଳ ଶ୍ରୀକୃଷ୍ଣନାମ ଅନ୍ତରେ ଜପନ୍ତି ।
ସକଳ ବୈଷ୍ଣବଗଣେ ଅଟନ୍ତି ସେ ସାର
ନୁହଁଇ ତାହାଙ୍କଠାରୁ ଶ୍ରେଷ୍ଠ କେ ସଂସାର ।
ତାହାଙ୍କୁ ସନ୍ନିଧି ଦେଖି ଧାତାଙ୍କର ସୁତ
ନିଜ ଆସନରୁ ଉଠି କଲେ ଦଣ୍ଡବତ ।
ଆଶୀର୍ବାଦ କରି ତାଙ୍କୁ ସନତ କୁମାର
କହି ଆରମ୍ଭ କରିଲେ ଦିବ୍ୟତତ୍ତ୍ୱ ସାର ।
ବୋଇଲେ ହେ ଭ୍ରାତ ତୁମ୍ଭେ ଅଛନା କୁଶଳେ
ଭକ୍ତି ରଖିଅଛ କିନା କୃଷ୍ଣ ପାଦତଳେ ।
ସୃଞ୍ଜୟ କନ୍ୟାକୁ ପରା ହୋଇଛି ବିବାହ
ବର୍ଦ୍ଧିତ ହେଉଅଛିନା ପରସ୍ପରେ ସ୍ନେହ ।
ଜଗତରେ ପତି ଆଉ ପତ୍ନୀ ଦେହିଙ୍କର
ନୂତନ ପରାଣ୍ଟୁ ସଦା ହୁଅଇ ନିବନ୍ଧର ।
କିନ୍ତୁ ସେହି ଭକ୍ତିଭାବ ବିନାଶ କରଇ
ମୋକ୍ଷମାର୍ଗ ଦ୍ୱାର ସଦା ରୁଦ୍ଧ କରୁଥାଇ ।
ସେ ଜନ ମଣଇ ତାକୁ ଅମୃତ ସମାନ
ଜାଣୁ ୨ ବିଷଭକ୍ଷେ ସେହି ମୂଢ଼ଜନ ।
ଶ୍ରୀହରି ଭକତି ତେଜ ବିଷୟ ସୁଖରେ
ଆସକ୍ତ ହୁଅଇ ତାର ମନ ନିରନ୍ତରେ ।
ବିଷ୍ଣୁ ମାୟାରୁ ବଞ୍ଚିତ ହୁଅଇ ଯେ ଜନ
ପିୟୂଷ ବୋଲି ଗରଳ କରେ ସେହୁ ପାନ
ଏମନ୍ତ ଜନର ଧର୍ମ କର୍ମ ହୁଏ ନାଶ
ଦଇବୀ ମାୟାରେ ସଦା ହୋଇଥାଏ ବଶ ।
ଈଶ୍ୱରଙ୍କ ବିନା କର୍ମ ଭୋଗ ସମସ୍ତଙ୍କୁ
ଆକ୍ରମଣ କରିଅଛି ନ ଛାଡ଼ି କାହାକୁ ।
କର୍ମଫଳ ଭୋଗ ଯଦି ନ ଥାନ୍ତା ତୁମ୍ଭର
ତେବେ କିମ୍ପା ହୋଇଥାନ୍ତ ଦାସୀର କୁମର ।
ପୁନଶ୍ଚ ଗନ୍ଧର୍ବ କୂଳେ ଜାତ ହୋଇକରି
ବିଷୟ ମୋହରେ ବନ ନେଉଥାନ୍ତ ହରି ।
ଆମ୍ଭେ ଭ୍ରାତୃ ଆମ୍ଭେ ହୋଇ ଧାତାଙ୍କ କୁମର
କହ କି ଭାବେ ବଞ୍ଚିତ ହୋଇବା ସତ୍ତ୍ୱର ।
ମୋର ବୋଲ ମାନ ଏବେ ତେଜ ସେ ନାୟିକା
ନିର୍ଜନ ସ୍ଥାନକୁ ଚଳ ତପ ଲାଗି ଏକା ।
ମାୟା କରଣ ସ୍ୱରୂପା ଅଟଇଟି ସେହି
ତାକୁ ଆଶ୍ରେ କଲେ ପୁଣ୍ୟ ଯିବ ଧ୍ୱଂସ ହୋଇ
ଏ ଜମ୍ବୁ ଦ୍ୱୀପରେ ରହି ଶ୍ରୀକୃଷ୍ଣଙ୍କୁ ଧ୍ୟାନ
କର ଦିବାରାତ୍ରି ତାଙ୍କ ପାଦେ ଦେଇ ମନ ।
ସର୍ବମନ୍ତ୍ର ମଧ୍ୟେ ସାର କୃଷ୍ଣନାମ ଦୁଇ
ମୋଠାରୁ ଗ୍ରହଣ କର ସ୍ଥିରଭାବ ବହି ।
ପୂର୍ବେ ଦେବ ନାରାୟଣ ମସ୍ତକ ଶୀର୍ଷରେ
ଏହି ମନ୍ତ୍ରକୁ ପ୍ରଦାନ କରିଥିଲେ ମୋରେ ।
କଳ୍ପ କଳ୍ପ ଧରି ଜପ କରି ମୁଁ ଏହାକୁ
ଭ୍ରମୁଅଛି ତ୍ରିଲୋକ ପୂଜା ପାଇବାକୁ ।
ଏମନ୍ତ ବୋଲି ସନତ କୁମାର ମହର୍ଷି
ଧ୍ୟାନ କରାଇଲେ ନାରଦଙ୍କୁ ନେଇ ତୋଷି ।
ପୁଣି ତାଙ୍କୁ ମନ୍ତ୍ରଦେଇ ଆଶୀର୍ବାଦ କଲେ
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଗୋଲୋକକୁ ଗଲେ
ସେ ମନ୍ତ୍ର ଘେନି ନାରଦ ଛାଡ଼ି ଗୃହିଣୀକୁ
ତପ କରିବାକୁ ଗଲେ ସେ ଦେବ ଭୂମିକୁ ।
ଶିବଙ୍କୁ ଦେଖିଣ କୃତାଞ୍ଜଳି ନଇଁଣରେ
ପ୍ରଣାମ କରିଲେ ଶିର ଲଗାଇ ପାଦରେ ।

ଭକତ ବତ୍ସଳ ଦୀନବନ୍ଧୁ ଶୂଳପାଣି
କହିଲେ ଭକ୍ତରାଜଙ୍କୁ ସୁଧାମୟ ବାଣୀ ।
ବୋଇଲେ ଆହେ ନାରଦ ତୁମ୍ଭର ବଦନ
ଦେଖିକରି ମୋହର ମନ ହୋଇଲା ପ୍ରସନ୍ନ ।
ପରମ ଲାଭ ଅଟଇ ଭକ୍ତ ସମାଗମ
ଏ ଜଗତ ମଧ୍ୟେ ଭକ୍ତ ଦର୍ଶନ ଦୁର୍ଲ୍ଲଭ ।
ଭକ୍ତଙ୍କୁ ପୂଜିଲେ କୃଷ୍ଣ ହୁଅନ୍ତି ତୃପତ
ଭକ୍ତ ଦୟାକଲେ ପାପ ହୁଅଇ ମୁକତ ।
ଯେ ଜନ ବୈଷ୍ଣବଗଣେ ଦରଶନ କରେ
ଗଣନା ହୁଅଇ ସେହୁ ସାଧୁଙ୍କ ମଧ୍ୟରେ ।
ସାଧୁଙ୍କ ମୁଖରୁ ଯେବେ ଶୁଣନ୍ତି ବଚନ
ପ୍ରଭୁଙ୍କ ଶ୍ରୀମୁଖ ବାଣୀ ସଙ୍ଗରେ ସମାନ
ସର୍ବତନ୍ତ୍ର ସୁ ଦୁର୍ଲ୍ଲଭ ମହାମନ୍ତ୍ର ତୁମ୍ଭେ
ପାଇଅଛ ପୁଣ୍ୟ ଯୋଗ ଜାଣିଲୁଣି ଆମ୍ଭେ ।
ପୂର୍ବକାଳେ ସେ ମନ୍ତ୍ରକୁ ପ୍ରଭୁ ନରହରି
ରାସ ମଣ୍ଡଳରେ ମୋତେ ଦେଲେ ଦୟାକରି
ସ୍କନ୍ଦ ଗଣେଶ ଦୁହିଁଙ୍କୁ ଦେଲି ତାହା ମୁହିଁ
ଆଉରି ଧାତାଙ୍କୁ ମଧ୍ୟ ଦେଲି ତୋଷ ବହି ।
ବ୍ରହ୍ମା ପୁଣି ଧର୍ମ ସନତ୍କୁମାର ଦୁହିଙ୍କୁ
ପୁଷ୍କର ତୀର୍ଥରେ ଦେଲେ ପ୍ରକାଶି ସ୍ନେହକୁ ।
ଏବେ ସେହି ମନ୍ତ୍ର ସନତକୁମାର ମହର୍ଷି
ପ୍ରଦାନ କଲେ ତୁମ୍ଭଙ୍କୁ ହୋଇ ମହାତୋଷି ।
ଏ ମନ୍ତ୍ର ଗ୍ରହଣ ମାତ୍ରେ ବିଷ୍ଣୁଙ୍କ ସମାନ
ଜଗତରେ ପୁଣ୍ୟ ହୁଏ ବୈଷ୍ଣବ ଜନ ।

ଜପକଲେ ପାଞ୍ଚଲକ୍ଷ ଏହାଙ୍କ ମନ୍ତ୍ରର
ପୁରଶ୍ଚରଣ ହୁଅଇ ଆହେ ତପିବର ।
ଶ୍ୟାମବେଦର କଥିତ ଅଟେ ଯେଉଁ ଧ୍ୟାନ
ତାହା କହୁଅଛି ଏବେ ଶୁଣ ଦେଇ ମନ ।
ନବ ଜଳଧର ଶ୍ୟାମସୁନ୍ଦର ମୂରତି
ପୀତବାସ ଶତକୋଟି କଳାକାର ଦ୍ୟୁତି ।
ଦିବ୍ୟ ଭୂଷଣେ ଭୂଷିତ ଅତ୍ୟନ୍ତ ସୁନ୍ଦର
ଚନ୍ଦନ ଭୂଷିତ କାନ୍ତି ମୀନ କଳେବର ।
ମାଳତୀ ମାଳ ମଣ୍ଡିତ ଶିଖିପୁଚ୍ଛ ଚୂଳ
ସହାସ ବଦନ ରମ୍ୟ ଶ୍ରୀମୁଖ ମଣ୍ଡଳ ।
ତାହାଙ୍କ ପରାୟେ ଜଣେ ତିନି ଭୁବନରେ
ଦେଖି ନ ପାରିବ କାହୁ ନୟନ ପଥରେ ।
ଏମନ୍ତ ଯେ ପ୍ରଭୁ ତାଙ୍କ ପାଦପଦ୍ମ ତଳେ
ଅଧମ କ୍ଷେମ ମୋହନ ନମେ ସଦାକାଳେ ।
ଏହି ମନ୍ତ୍ର ଜପ କରି ଆହେ ମୁନିବର
ଜଗତ ନାଥଙ୍କୁ ଧ୍ୟାନ କର ଅନ୍ତରର ।
ଏହିରୂପେ କହି ଶିବ ଆପଣା ପୁରକୁ
ଗମନ କରିଲେ ଶିକ୍ଷା ଦେଇ ନାରଦଙ୍କୁ
ତାହାଙ୍କ ଆଦେଶ ସଦା ମାନି ଶିରପରେ
ବସିଲେ ନିଶ୍ଚଳ ଚିତ୍ତେ ନାରଦ ଧ୍ୟାନରେ ।
ପୁଣି କେତେ ଦିନ ପରେ ତେଜି କଳେବର
ମିଶିଲେ ଶ୍ରୀକୃଷ୍ଣଙ୍କର ଅଭୟ ପୟର ।
ଆହେ ସାଧୁ ସୁଜ୍ଞଜନେ ମାନି ମୋ ବଚନ
ସେ ଅଭୟ ପାଦ ସଦା କରନ୍ତୁ ଭଜନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ନାରଦ ମୁନିଙ୍କର ବିବାହ
ବର୍ଣ୍ଣନେ ନାମ ବିଂଶୋତ୍ତରଶତତମୋଽଧ୍ୟାୟଃ ।

## ଏକବିଂଶୋତ୍ତରଶତତମ ଅଧ୍ୟାୟ

### ଅଗ୍ନି ଓ ସୁବର୍ଣ୍ଣର ଉତ୍ପତ୍ତି ବର୍ଣ୍ଣନ

ଶୁଣନ୍ତୁ ବିବୁଧଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ନୁହଇଁ ସାମାନ୍ୟ
ଥରେ ପଢ଼ିଲେ ଲଭିବ ବୈକୁଣ୍ଠରେ ସ୍ଥାନ
ଶୌନକ ମୁନିବର ସୂତଙ୍କୁ ଅନାଇଁ
ବୋଇଲେ ଶୁଣନ୍ତୁ ଆହେ ତପିଙ୍କର ସାଇଁ ।

ଆପଣଙ୍କଠାରୁ ଶୁଣି ସର୍ବ ସମାଚାର
ସନ୍ତୋଷ ହୋଇଲା ଚିତ୍ତ ଆମ୍ଭ ମାନଙ୍କର ।
ପୁରାଣ ମାନଙ୍କେ ଯେଉଁ ଦୁର୍ଲ୍ଲଭ ଆଖ୍ୟାନ
ଆପଣଙ୍କ ପ୍ରସାଦରୁ ଲଭିଲୁ ସେ ଜ୍ଞାନ ।
କେବେ ଆଉ ସେ ସୁଦିନ ଆସିବ ଆମ୍ଭର
ବସିବୁ ସାଧୁସନ୍ଥଙ୍କ ସୁପୁଣ୍ୟ ସଭାର ।

ପାପତାପମାନଙ୍କର ମୂଳ ଉତ୍ପାଟନ
ଅଟଇ ଯେ ଗଣେଶଙ୍କ ଜନ୍ମ ଉପାଖ୍ୟାନ ।
ଆବର ତୁଳସୀ ରାଧା କୃଷ୍ଣଙ୍କ ଉତ୍ପତ୍ତି
ଶ୍ରବଣ ମାତ୍ରେ ଆନନ୍ଦ ହୋଇଲୁକ ମତି ।
ଏବେ ଅଗ୍ନି ଦେବଙ୍କର ଉତ୍ପତ୍ତି ଆଖ୍ୟାନ
ଶୁଣିବା ପାଇଁକ ହେବ ବଳଅଛୁ ମନ ।
ପୁଣି ସୁବର୍ଣ୍ଣ ଉତ୍ପନ୍ନ ହୋଇଲା କେମନ୍ତ
ସମସ୍ତ ବସ୍ତୁର ସବେ କହେ ତପୋବନ୍ତ ।
ତାହାଶୁଣି ସୂତ ମୁନି ହରଷିତ ହୋଇ
ବୋଇଲେ ଶୁଣ ସକଳେ ମନକର୍ଣ୍ଣ ଦେଇ ।
ନିତ୍ୟ ଯେଉଁପରି ଅଟେ ମହତ୍ତ୍ୱ ଆକାଶ
ଅହଙ୍କାର ପ୍ରକୃତିରେ ଜାଣ ସେ ସଗୁଣ ।
ଆବର ସୃଷ୍ଟି ଗୋଲୋକ ହରି ଯେ ପ୍ରକାରେ
ନିତ୍ୟ ଅଟନ୍ତି ଶବଦ ରୂପ ସେ ମଧ୍ୟରେ ।
ଅଗ୍ନି ସେହି ସବେ ନିତ୍ୟ ପଦାର୍ଥଟି ଜାଣ
ତଥାପି କହିବା ତାଙ୍କ ଜନ୍ମ ଗାଥା ଶୁଣ ।
ସୃଷ୍ଟି ଆରମ୍ଭରେ ହରେ ଧାତା ମହେଶ୍ୱର
ସଙ୍ଗେ ହେନ ଅନନ୍ତଙ୍କୁ ହୋଇଲେ ବାହାର ।
ଶ୍ୱେତ ଦ୍ୱୀପରେ ବିଷ୍ଣୁଙ୍କ ଦରଶନ ପାଇଁ
ଚଳିଲେ ସେ ଯାହା ଯାନବାହନ ଆରୋହି ।
ବିଷ୍ଣୁଙ୍କ ସନ୍ନିଧେ ଯାଇ ପ୍ରବେଶ ହୋଇଲେ
ଆସନରେ ବସି ନାନା ଆଲୋଚନା କଲେ
ପ୍ରଭୁଙ୍କ ଅଙ୍ଗ ସମ୍ଭୂତ ନରନାରୀ ମାନେ
ନୃତ୍ୟଗୀତ ଆଦି କରୁଥିଲେ ତୋଷମନେ ।
କମଳାଙ୍କ କଳା ହେନ ସେମାନେ ସମ୍ଭୂତ
ହୋଇଣ ଥିଲେ ମନଦେଇ ଶୁଣ ତପୋବନ୍ତ ।
ତାହାଙ୍କର ସ୍ଥୁ କଠିଣ ସ୍ତନଯୁଗ ଦେଖି
ସ୍ୱୟଂ ବେଦବର ଧୈର୍ଯ୍ୟ ନ ପାରିଲେ ରଖି
ଫଜତ ହେବା ନିମନ୍ତେ ଯେତେ ବିଚାରିଲେ
କଦାପି ସେ ଧୈର୍ଯ୍ୟଧରି ରହି ନ ପାରିଲେ
ସ୍ରହୁଁ ସ୍ରହୁଁ ବୀର୍ଯ୍ୟପାତ ହୋଇଲା ତାଙ୍କର
ବସନରେ ଘୋଡ଼ାଇଣ ରଖିଲେ ସତ୍ୱର ।
କାମ ପ୍ରତାପରେ ରସ ସହିତରେ ବୀର୍ଯ୍ୟ
ପ୍ରତପ୍ତ ହୋଇଲା ସେକାଳରେ ଆହେ ଦ୍ୱିଜ ।
ତାହା ଦେଖି ପ୍ରଜାପତି ସେ ବୀର୍ଯ୍ୟକୁ ନେଇ
କ୍ଷୀର ସମୁଦ୍ର ମଧ୍ୟରେ ଦିଅନ୍ତେ ପକାଇ ।
ସୁ ବୃତ୍ତ ଗୋଟିଏ ସେ ବୀର୍ଯ୍ୟରୁ ଜାତ ହେଲା
ବ୍ରହ୍ମା ତେଜରେ ତା ଅଙ୍ଗ ପୂର୍ଣ୍ଣ ହୋଇଗଲା ।
ସେ ବାଳକ ଆସି ବେଗେ ବ୍ରହ୍ମାଙ୍କର କୋଳେ
ବସିଲା ସମସ୍ତେ ତହିଁ ଦେଖୁଥିଲେ ଡୋଳେ ।
ସେହି ସମୟେ ବରୁଣ ଜଳମଧ୍ୟୁ ଉଠି
ଧରିଲେ ସେ ବାଳକର ହସ୍ତକୁ ଧାଉଁଟି ।
ଭୟରେ ବାଳକ ଆଶ୍ଳେଷ ଧରିଣ ବ୍ରହ୍ମାଙ୍କୁ
ନ ଛାଡ଼ିଲା କେତେ ଓଟାରିଲେ ହେଲେ ତାକୁ
ସେ ସକାଶୁ କ୍ରୋଧଭରେ ବରୁଣ ଦେବତା
ଝିଙ୍କିଲେ ଶିଶୁକୁ ବଳେ କହି ନାନାକଥା ।
ପ୍ରଜାପତି ଦେଖି ତାହା ସହି ନ ପାରିଲେ
ବରୁଣକୁ ଧରି ଖଣ୍ଡେଦୂର ଫିଙ୍ଗି ଦେଲେ ।
କନ୍ଦୁକ ପରାଏ ତହିଁ ପଡ଼ି ଜଳପତି
ନୟନ ବୁଜିଲେ ଜ୍ଞାନ ହରାଇ ଝଟତି ।
ଶଙ୍କର ତ ତାହାସବୁ ନେତ୍ରେ ଦେଖୁଥିଲେ
ଅମୃତ ଦୃଷ୍ଟିରେ ବରୁଣଙ୍କୁ ଚାହିଁଲେ ।
ଚେତନା ପାଇ ବରୁଣ ଯୋଡ଼ି ବେନିକର
ବିନୟେ ରହିଲେ ବିଷ୍ଣୁ ଶିବଙ୍କ ଆଗର ।
ବୋଇଲେ ବାଳକ ଜଳୁଁ ହୋଇଲା ସମ୍ଭୂତ
ସେ ସକାଶୁ ନିଶ୍ଚୟରେ ସେ ମୋହର ସୁତ ।
ତାହାକୁ ମୁଁ ନେଇକରି ଯିବା ସମୟରେ
ଆଘାତ କରିଲେ ବ୍ରହ୍ମା ମୋତେ କି ହେତୁରେ
ବ୍ରହ୍ମା ବୋଇଲେ ବାଳକ ମୋଠାରେ ଶରଣ
ପଶିଅଛି ତାହାକୁ ମୁଁ ଛାଡ଼ିବି କେସନ ।
ଶରଣାଗତ ଲୋକକୁ ଛାଡ଼େ ଯେଉଁ ଲୋକ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଭୁଞ୍ଜଇ ନରକ ।
ଆତୁର ଲୋକକୁ ଯେହୁ ନ ରଖେ ଶରଣ
ଅନ୍ତିମେ ଗମଇ ସେହି ଶମନ ଭୁବନ ।
ଏରୂପେ ବ୍ରହ୍ମଙ୍କଠାରୁ ଶୁଣି ନରହରି
କହିଲେ ସଭା ମଧ୍ୟରେ ଅଳ୍ପ ହସିକରି ।
ବୋଇଲେ କାମିନୀଙ୍କର ଦେଖି ଉଚ୍ଚ ସ୍ତନ
ପ୍ରଜାପତିଙ୍କର ବୀର୍ଯ୍ୟ ହୋଇଲା ସ୍ଖଳନ ।
ଜଳରେ ତାହାକୁ ଗୁପ୍ତେ ନେଇ ପିତାମହ
ପକାଇଲେ କ୍ଷୀର ସମୁଦ୍ରରେ କରି ସ୍ନେହ ।
ତହିଁରୁ ଉତ୍ପନ୍ନ ହୋଇଅଛି ଏ ସନ୍ତାନ
ତେଣୁ ପ୍ରଜାପତିଙ୍କର ପୁତ୍ର ଅଟେ ଜାଣ ।

କନ୍ଦୁ କ୍ଷୀର ସମୁଦ୍ରରୁ ଜାତ ହୋଇବାରୁ
ବରୁଣଙ୍କ ପୁତ୍ର ହେବ କ୍ଷେତ୍ର ସମ୍ବନ୍ଧରୁ ।
ଶଙ୍କର ବୋଇଲେ ବିଦ୍ୟା ଯୋନି ସମ୍ବନ୍ଧରେ
ପୁତ୍ରଭାବ ନିରୂପିତ ହୋଇଛି ବେଦରେ ।
ଶିଷ୍ୟ ପୁତ୍ର ଦୁହେଁ ମଧ୍ୟ ଅଟନ୍ତି ସମାନ
ଏରୂପେ ହୋଇଛି ସର୍ବଶାସ୍ତ୍ରେ ନିରୂପଣ ।
ବରୁଣ ଦିଅନ୍ତୁ ଏବେ ମନ୍ତ୍ରବିଦ୍ୟା ଦାନ
ହୋଇବ ସେ ଶିଶୁ ଦୁଇପକ୍ଷରେ ସମାନ ।
ବିଷ୍ଣୁ ଦିଅନ୍ତୁ ଜଳ୍ପଣ ଦାହିକା ଶକତି
ସର୍ବଭକ୍ଷ ହୁତାଶନ ହେବ ତାର ଖ୍ୟାତି ।
ବରୁଣଙ୍କ ପ୍ରତାପରେ ନିର୍ବାଣ ସେ ପାଇ
ରହିବ ନିଜର ସର୍ବଶକ୍ତି ଛାଡ଼ିଦେଇ ।
ତାହା ଶୁଣି ନାରାୟଣ ଦାହଶକ୍ତି ଦେଲେ
ବରୁଣ ଦେବତା ବିଦ୍ୟାମନ୍ତ୍ର ଦାନ କଲେ ।
ସେ ଅନ୍ତରେ କୋଳେ ଧରି ଚୁମ୍ବଦେଇ ମୁଖେ
ସମର୍ପଣ କଲେ ବ୍ରହ୍ମା ବିଷ୍ଣୁ ଶିବ ପାଖେ ।
ତାହା ଦେଖି ଶିବ ବ୍ରହ୍ମା ବିଷ୍ଣୁଙ୍କର କୋଳେ
ଦେଇ ଯତନରେ ରଖ ବୋଲିଣ କହିଲେ ।
ବ୍ରହ୍ମା ଶିବ ଦୁହେଁ ତହୁଁ ବିଷ୍ଣୁଙ୍କୁ ପ୍ରଣାମ
କରି ନିଜ ନିଜ ପୁରେ ଚଳିଲେ ବହନ ।
ଏହିରୂପେ ଅଗ୍ନିଙ୍କର ଜନମ ବୃତ୍ତାନ୍ତ
କହିଲି ତୁମ୍ଭ ଆଗରେ ଆହେ ତପୋବନ୍ତ ।
ସୁବର୍ଣ୍ଣ ଉତ୍ପତ୍ତି ଏବେ କହୁଅଛି ଶୁଣ
ଦିନେ ସ୍ୱର୍ଗ ଭୁବନରେ ସର୍ବ ଦେବଗଣ ।
ସଭାରେ ବସିଣ କଥାବାର୍ତ୍ତା ହେଉଥିଲେ
ଅପସରାମାନେ ଆସି ସେଠାରେ ମିଳିଲେ ।
ବିବିଧ ପ୍ରକାରେ କଲେ ନୃତ୍ୟ ଗୀତାରମ୍ଭ
ତାହାଦେଖି ଅଗ୍ନି ରଖି ନ ପାରିଲେ ଦମ୍ଭ ।
ରମ୍ଭାର ସୁନ୍ଦର ମୁଖ ସ୍ତନଶ୍ରେଣୀ ଦେଖି
ବିଲକ୍ଷରେ କଲା ତାଙ୍କ ଧୈର୍ଯ୍ୟକୁ ବିନାଶ ।
କ୍ଷଣକ ମଧ୍ୟରେ ରେତ ସ୍ଖଳିତ ହୋଇଲା ।
ବସ୍ତ୍ରରେ ଆଚ୍ଛନ୍ନ ହୋଇ ଗୁପତେ ରହିଲା ।
ସେହି ରେତ ସ୍ୱର୍ଣ୍ଣପୁଞ୍ଜ ସ୍ୱରୂପକୁ ବହି
ବାହାର ହୋଇଲା ବସ୍ତ୍ର ପକାଇଣ ଦହି ।
ପୁଣି କ୍ଷଣକ ମଧ୍ୟରେ ଚଢ଼ି ଉପରକୁ
ରହିଲା ଧାରଣ କରି ସୁମେରୁ ନାମକୁ ।
ସୁବର୍ଣ୍ଣକୁ ଜାତ କରିବାରୁ ବହ୍ନିଙ୍କର
ହିରଣ୍ୟରେତା ନାମଟି ହୋଇଛି ପ୍ରଚାର ।
ଶୁଣିଲ ତ ଏବେ ବହ୍ନି ସୁବର୍ଣ୍ଣ ଉତ୍ପତ୍ତି
ଆଉ କି ଶୁଣିବ ତାହା ପଚାର ଝଟତି ।
ଏରୂପେ କହି ମଉନ ହେଲେ ଦ୍ୱିଜବର
ଭଣଇ ଉତ୍କଳ ଭାଷା ପଦ୍ୟେ କ୍ଷେତ୍ର ଘୁର ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ଅଗ୍ନି ଓ ସୁବର୍ଣ୍ଣର ଉତ୍ପତ୍ତି ବର୍ଣ୍ଣନେ ନାମ ଏକତ୍ରିଂଶୋତ୍ତରଶତତମୋଽଧ୍ୟାୟଃ ।

---

## ଦ୍ୱାତ୍ରିଂଶୋତ୍ତରଶତତମ ଅଧ୍ୟାୟ

### ବ୍ରହ୍ମଖଣ୍ଡ ପ୍ରଭୃତି ଚତୁଷ୍ଟୟ ଭାଗର ସାଧାରଣ ଅନୁକ୍ରମଣିକା

ଏଥିଅନ୍ତେ ସଉନକ ସୂତଙ୍କୁ ଅନାଇ
ବୋଇଲେ ଶୁଣିବା ହେଉ ଆହେ ଋଷିସାଇଁ ।
ସକଳ ଚରିତ ତୁମ୍ଭଠାରୁ ଶୁଣିକରି
ସନ୍ତୁଷ୍ଟ ହୋଇଲା ଜାଣ ମାନସ ଆମ୍ଭରି ।
ଆରମ୍ଭରୁ ଶେଷ ଯାଏ ଯେତିକ ଚରିତ
ଆମ୍ଭମାନଙ୍କ ଆଗରେ କରିଛ ବ୍ୟକତ ।
ସଂକ୍ଷେପରେ ତାହା ସବୁ ଆଉ ଥରେ କହ
ଶୁଣିବା ପାଇଁ ବଳୁଛି ଆମ୍ଭର ଉତ୍ସାହ ।
ଏମନ୍ତ ପୁରାଣ ଆମ୍ଭେ କେଉଁଠାରେ ଆଉ
କାହା ମୁଖୁଁ ହେଲେ ଆଜଯାଏ ଶୁଣି ନାହୁଁ ।
ତା ଶୁଣି ଶୌନକ ମୁନି ହରଷିତ ହୋଇ
ବୋଇଲେ ଯା ପଚାରିଲ ଶୁଣ କହୁଥାଇ ।

ଅଧ୍ୟାୟ ଶ୍ରବଣ ମାତ୍ରେ ପୁରାଣର ଫଳ
ପ୍ରାପତ ହୋଇବ ଜାଣ ଆହେ ତପଶୀଳ ।
ବ୍ରହ୍ମଖଣ୍ଡେ ପରଂବ୍ରହ୍ମରୂପ ନିରୂପଣ
ସେ ଅନ୍ତେ ତାହାଙ୍କ ସ୍ତବ କାର୍ଯ୍ୟକ୍ରମ ଗୁଣ ।
କଥିତ ହୋଇଲା ଆହେ ଋଷିଗଣଈଶ
ତା ସହିତ ପୂଜାବିଧି ମନ୍ତ୍ର ଧ୍ୟାନ ନ୍ୟାସ ।
ସେ ଅନ୍ତେ ଗୋଲୋକ ଆଦି ଲୋକର ବର୍ଣ୍ଣନ
ପୃଥକ ସ୍ତବରେ କୁହା ହୋଇଅଛି ଜାଣ ।
ପ୍ରସଙ୍ଗ କ୍ରମରେ ଯେତେ ଯେତେ ଉପାଖ୍ୟାନ
ଯଥାର୍ଥ ପ୍ରକାରେ ତହିଁ ହୋଇଛି ବର୍ଣ୍ଣନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ସହିତରେ
ଶଙ୍କର ଜାତି ବର୍ଣ୍ଣିତ ହୋଇଛି ତହିଁରେ ।
ରାଧା କୃଷ୍ଣଙ୍କର କ୍ରୀଡ଼ା ବର୍ଣ୍ଣନ ବିଷୟ
କଥିତ ହୋଇଛି ଜାଣ ଆହେ ମହାଶୟ ।
ସେ ଅନ୍ତରେ ପୁଣି ମହାବିଷ୍ଣୁଙ୍କର ଜନ୍ମ
ବିଶ୍ୱ ନିରୂପଣ ତହିଁ ହୋଇଅଛି ପୁଣ
ବ୍ରହ୍ମା ନାରଦ ସମ୍ବାଦ ନାରଦଙ୍କ ଜ୍ଞାନ ।
ବିଶେଷ ସ୍ତବରେ କରା ଯାଇଛି ବର୍ଣ୍ଣନ ।
ପିତାଙ୍କ ଆଜ୍ଞାରେ ନାରାୟଣ ମୁନିଙ୍କର
ଆଶ୍ରମରେ ନାରଦଙ୍କ ପ୍ରବେଶ ବିସ୍ତର ।
ଦୁହିଙ୍କର ପରସ୍ପର ଶୁଭ ସମ୍ଭାଷଣ
ନାରଦ ମୁନିଙ୍କ ଆତ୍ମକଥା ନିବେଦନ ।
ବ୍ରହ୍ମଖଣ୍ଡରେ କଥିତ ହୋଇଛି ଏପରି
ପ୍ରକୃତି ଖଣ୍ଡ ଚରିତ ଶୁଣ ହେତୁକରି ।
ପ୍ରଥମେ ପ୍ରକୃତିଙ୍କର ଲକ୍ଷଣ ବର୍ଣ୍ଣନ
ସେ ଅନ୍ତରେ ପୂଜାମନ୍ତ୍ର ସ୍ତୋତ୍ର ଉପାଖ୍ୟାନ ।
ଲକ୍ଷ୍ମୀ ସରସ୍ୱତୀ ଆଦି ଦେବୀଙ୍କ ଚରିତ
ଦୁର୍ଗାଙ୍କର ଉପାଖ୍ୟାନ ହୋଇଅଛି ବ୍ୟକ୍ତ ।
ଶଙ୍ଖଚୂଡ଼ ଶିବଙ୍କର ବିଷମ ସମର
ତୁଳସୀ କୃଷ୍ଣ ସମ୍ବାଦ ସମ୍ଭୋଗ ଆବର ।
ଶଙ୍ଖଚୂଡ଼ ଦନୁଜର ଯୁଦ୍ଧରେ ବିନାଶ
ଶ୍ରୀଦାମ ଶାପ ମୋକ୍ଷଣ ଚରିତ ବିଶେଷ ।
ଦେବଙ୍କର ପଦ ପ୍ରାପ୍ତି ବିପଦଖଣ୍ଡନ
ଜୀବଙ୍କ ମୋକ୍ଷ ବିଷୟ ଗଙ୍ଗା ଉପାଖ୍ୟାନ ।
ମନସା ଆଖ୍ୟାନ ହର୍ଷବର୍ଦ୍ଧନ ଚରିତ
ସ୍ୱାହା ସ୍ୱଧା ଉପାଖ୍ୟାନ ଆବର କଥିତ ।
ପ୍ରକୃତି ଖଣ୍ଡରେ ଏହା ଲେଖାଅଛି ହୋଇ
ଗଣେଶ ଖଣ୍ଡର ଗାଥା ଶୁଣ ମନ ଦେଇ ।
ପାର୍ବତୀ ଈଶ୍ୱରଙ୍କର କ୍ରୀଡ଼ାର ବର୍ଣ୍ଣନ
ସେ ଅନ୍ତେ ସ୍କନ୍ଦ ଉତ୍ପତ୍ତି ଚରିତ କଥନ ।
ପାର୍ବତୀ ଦେବୀଙ୍କ କ୍ରୋଧ ଗର୍ବ ବିମୋଚନ
ଶ୍ରୀହରିଙ୍କର ପୁଣ୍ୟକ ବ୍ରତର ବର୍ଣ୍ଣନ ।
କୈଳାସ ଭୁବନେ ଗଣପତିଙ୍କର ଜନ୍ମ
ଆବର ସ୍କନ୍ଧରେ ଗଜ ମୁଖ ନିୟୋଜନ ।
ପାର୍ବତୀ ଦେବୀଙ୍କ ପ୍ରତି ବିଷ୍ଣୁଙ୍କର ବର
ଶୁଭ ମହୋତ୍ସବ ଗୃହେ ମହାଦେବଙ୍କର ।
ବ୍ରହ୍ମାଆଦି ଦେବଙ୍କର ଗଣେଶ ଦର୍ଶନ
କାର୍ତ୍ତିକେୟଙ୍କର ଅଭିଷେକ ବିବରଣ ।
ସର୍ବବିଘ୍ନ ବିନାଶକ ଗଣେଶ ପୂଜନ
କାର୍ତ୍ତବୀର୍ଯ୍ୟ ସଙ୍ଗେ ଯମଦଗ୍ନିଙ୍କର ରଣ ।
ସୁରଭି ହରଣ ମୁନିବରଙ୍କ ନିପାତ
ରେଣୁକା ଦେବୀଙ୍କ ଚିତାରୋହଣ ବୃତ୍ତାନ୍ତ ।
ଦୁଷ୍କର ପ୍ରତିଜ୍ଞା ମୁନି ପର୍ଶୁରାମଙ୍କର
କ୍ଷତ୍ରିୟ କୁଳ ବିନାଶେ ଏକବିଂଶବାର ।
ଗଣେଶ ପର୍ଶୁରାମଙ୍କ ବିଶେଷ ସମ୍ବାଦ
ସେ ଅନ୍ତରେ ପୁଣି ମହାଭୟଙ୍କର ଯୁଦ୍ଧ ।
ଗଣେଶ ଦନ୍ତ ଭଞ୍ଜନ ଦୁର୍ଗାଙ୍କ ବିଳାପ
ଆବର ଭୃଗୁଙ୍କ ପ୍ରତି ତୀବ୍ର ଅଭିଶାପ ।
ପରଶୁରାମ ସେକାଳେ କରନ୍ତେ ସ୍ମରଣ
ଆବିର୍ଭୂତ ହେଲେ ପ୍ରଭୁ ସ୍ୱୟଂ ନାରାୟଣ ।
ଦେବୀଙ୍କୁ ନାନା ପ୍ରକାରେ ପ୍ରବୋଧନା କରି
ଅନ୍ତର୍ଦ୍ଧାନ ହେଲେ ତହୁଁ ଦେବ ନରହରି ।
ସେ ଅନ୍ତେ ଶିବ ଲୋକର ଉତ୍କୃଷ୍ଟ ବର୍ଣ୍ଣନା
ହୋଇଅଛି ଜାଣ ଆହେ ଦ୍ୱିଜ ମହାମନା ।
ଆବର ପର୍ଶୁରାମଙ୍କୁ ସଦାଶିବଙ୍କର
ମହାସ୍ତ୍ର ପ୍ରଦାନ ମନ୍ତ୍ର ଧ୍ୟାନ ସହିତର ।
ଶ୍ରୀକୃଷ୍ଣ କବଚ ସ୍ତୋତ୍ର ପୂଜାବିଧି ଭଲେ
ବର୍ଣ୍ଣିତ ହୋଇଛି ସେହି ସ୍ଥାନରେଟି ଭଲେ ।
ସେ ଅନ୍ତରେ ପର୍ଶୁରାମ ତିନି ସପ୍ତବାର
ପୃଥିବୀ ବୁଲାଣ କଲେ କ୍ଷତ୍ରିୟ ସଂହାର ।
ଏହିରୂପେ କ୍ରମେ କ୍ରମେ ଗଣେଶ ଖଣ୍ଡରେ ।
କଥିତ ହୋଇଛି ସବୁ ଯଥାର୍ଥ ପ୍ରକାରେ ।

ଶ୍ରୀକୃଷ୍ଣ ଜନମ ଖଣ୍ଡ ଚରିତକୁ ମୁହିଁ
କହୁଅଛି ଏବେ ଶୁଣ ଆହେ ଋଷିସାଇଁ ।
ପ୍ରଥମରେ ନାରାୟଣ ମୁନିଙ୍କୁ ନାରଦ
ପଚାରିଲେ ଶ୍ରୀକୃଷ୍ଣଙ୍କ ଜନ୍ମର ସମ୍ବାଦ ।
ନାରାୟଣ ମୁନି ତହୁଁ ହରଷିତ ହୋଇ
କହିଲେ ବିଷ୍ଣୁ ବୈଷ୍ଣବ ପ୍ରଶଂସା ବୁଝାଇ ।
ଶ୍ରୀଦାମ ରାଧାଦେବୀଙ୍କ ଦାରୁଣ ବିବାଦ ।
ପରସ୍ପର ଶାପ ଦାନ ଗୋଲୋକର ଭେଦ ।
ବିରଜା ଶରୀର ତ୍ୟାଗ ନଦୀର ଉତ୍ପତ୍ତି
ଗୋପୀଙ୍କ ବର୍ଜ୍ଜନ ଶ୍ରୀକୃଷ୍ଣଙ୍କ ନଦୀ ପ୍ରୀତି ।
ସକଳ ସମୁଦ୍ରଙ୍କର ଜନ୍ମ ବିସର୍ଜ୍ଜନ
ବ୍ରହ୍ମାଙ୍କ ପ୍ରାର୍ଥନାପରେ ଶ୍ରୀହରିଙ୍କ ଜନ୍ମ ।
କଂସ ଭୟେ ବସୁଦେବ ଶ୍ରୀକୃଷ୍ଣଙ୍କୁ ନେଇ
ନନ୍ଦ ମନ୍ଦରେ ରଖାଇ ଆସିବାର ତହିଁ ।
ବର୍ଣ୍ଣିତ ହୋଇଛି ପୁଣି ରାଧାଙ୍କ ଉତ୍ପତ୍ତି
ବୃଷଭାନୁ ଗୋପ ଗୃହେ ଆହେ ମହାମତି ।
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କ ବାଲ୍ୟ କ୍ରୀଡ଼ାମାନ
ଗୋକୁଳରେ କଲେ ଯାହା ହୋଇଛି ବର୍ଣ୍ଣନ
ପୂତନା ଶକଟାସୁର ଆଦିକରି ଯେତେ
ଦୁଷ୍ଟଗଣ ତାହାଙ୍କର ବିନାଶ ସହିତେ ।
ବର୍ଣ୍ଣିତ ହୋଇଛି ଗର୍ଗଙ୍କର ଆଗମନ
ଆବର ଶ୍ରୀକୃଷ୍ଣଙ୍କର ଶୁଭାନ୍ନ ପ୍ରାଶନ ।
ଯାମଳା ଅର୍ଜ୍ଜୁନ ଭଙ୍ଗ ବନ୍ଧୁ ବିମୋକ୍ଷଣ
ଯଶୋଦାଙ୍କ ପୁତ୍ର ଗର୍ଭେ ତ୍ରୈଲୋକ୍ୟ ଦର୍ଶନ
ଗୋବତ୍ସ ହରଣ ପ୍ରଜାପତିଙ୍କର ସ୍ତୁତି
ଯେ ଅନ୍ତେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଗତି ।
ତାହାଙ୍କ ସଙ୍ଗରେ ନନ୍ଦରାଜାଙ୍କ ଗମନ
ଅଦ୍ଭୁତ ରୂପରେ ବୃନ୍ଦାବନର ନିର୍ମାଣ ।
ସେଠାରେ ଶ୍ରୀକୃଷ୍ଣ ଗୋପଶିଶୁଙ୍କର ସଙ୍ଗେ
କ୍ରୀଡ଼ା କରିବାର ନାନା କଉତୁକ ରଙ୍ଗେ ।
ବ୍ରାହ୍ମଣୀଙ୍କଠାରୁ ଦିବ୍ୟଅନ୍ନ ଭୁଞ୍ଜିବାର
ଆନନ୍ଦେ ସେ ସମସ୍ତଙ୍କୁ ଦେବାର ଯେ ବର ।
ସେ ଅନ୍ତରେ ସପ୍ତସ୍ୱର୍ଗ ପୁରର ବର୍ଣ୍ଣନ
ଗୋପୀଜନମାନଙ୍କର ବସ୍ତ୍ରାପହରଣ ।
ଶ୍ରୀକୃଷ୍ଣଙ୍କଠାରୁ ସେହି ବର ପାଇବାର
କାତ୍ୟାୟନୀ ବ୍ରତଦୁର୍ଗା ପୂଜନ ଆବର ।
ପୁଣି ଦୁର୍ଗାଦେବୀ ତାଙ୍କୁ ବରଦେବା କଥା
ବର୍ଣ୍ଣିତ ହୋଇଛି ସେହି ସ୍ଥାନରେ ସର୍ବଥା ।
ସେ ଅନ୍ତେ ତାଳ ଭକ୍ଷଣ ଶଙ୍ଖ ପରାଜୟ
ଶ୍ରୀକୃଷ୍ଣଙ୍କ ସହିତରେ ରାଧାଙ୍କ ବିବାହ ।
ଗୋପୀ କ୍ରୀଡ଼ାପରେ କୃଷ୍ଣ ବୋଲେ ରାଧାଙ୍କର
ବର୍ଣ୍ଣିତ ହୋଇଛି ଅବସ୍ଥିତ ଯେ ଆବର ।
ଗୋପପୁରେ ଗୁପ୍ତରୂପେ ରହିଲେ ଶ୍ରୀମତୀ
ରାସମଣ୍ଡଳେ ଶ୍ରୀକୃଷ୍ଣ ସଙ୍ଗେ କଲେ ରତି ।
ସେଠାରୁ ପ୍ରିୟା ସହିତେ ଦେବ ନରହରି
ଅନ୍ତର୍ଦ୍ଧାନ ହୋଇଗଲେ ମାଳୟାଖ୍ୟ ଗିରି ।
ସେହିଠାରେ ନାନାବିଧ କଥାବାର୍ତ୍ତା ହେଲେ
ଭବିଷ୍ୟତ କଥା ସବୁ ଶ୍ରୀକୃଷ୍ଣ କହିଲେ ।
ପୁଣି ଦୁହେଁ ବୃନ୍ଦାବନେ ଉପସ୍ଥିତ ହୋଇ
ଗୋପୀଙ୍କୁ ଦର୍ଶନ ଦେଲେ ଆନନ୍ଦ ବଢ଼ାଇ ।
ନାନାବିଧ କ୍ରୀଡ଼ା କଉତୁକ ସେହିଠାରେ
କଲେ ଜଳେ ସ୍ଥଳେ ଅତି ହରଷ ମନରେ ।
ରାଧିକା ଦେବୀଙ୍କ ସଙ୍ଗେ ଗୋପିମାନଙ୍କର
ସୌଭାଗ୍ୟକୁ ବଢ଼ାଇଲେ ପ୍ରଭୁ ବଂଶୀଧର ।
ଏ ସମସ୍ତ କଥା ତହିଁ ହୋଇଛି ବର୍ଣ୍ଣିତ
ଶୁଣି ପୁଣ୍ୟ ବୃନ୍ଦାବନ ସୌନ୍ଦର୍ଯ୍ୟ ବୃତ୍ତାନ୍ତ ।
ନବସ୍ଥିତ ଦେବୀଙ୍କର ରାସ ଦରଶନ
ଦେବୀମାନଙ୍କର ତହିଁ ମାନସ ସ୍ଖଳନ ।
ସେ ଅନ୍ତେ ଶ୍ରୀକୃଷ୍ଣଙ୍କର ମଥୁରା ପ୍ରବେଶ
ସେହିଠାରେ ରଜକର ଜୀବନ ବିନାଶ ।
କୁବୁଜା ସମ୍ଭୋଗ ପୁଣି ତାହାର ମୁକତି
କୁବିନ୍ଦର ପ୍ରସାଧନା ମାଳାକର ଗତି ।
ଶିବ ଧନୁଭଗ୍ନ ପୁଣି ହସ୍ତୀର ନିଧନ
ସଭା ପ୍ରବେଶନ ବନ୍ଧୁଜନଙ୍କ ରୋଦନ ।
କଂସର ବିନାଶ ତାର ଶବ ସତ୍କାର
ମଥୁରାରେ ଅଭିଷେକ ଉଗ୍ରସେନଙ୍କର ।
ଶ୍ରୀକୃଷ୍ଣଙ୍କ ଆଗେ ନନ୍ଦରାଜାଙ୍କ କ୍ରନ୍ଦନ
ସେ ଅନ୍ତେ ପୁଣି ବିବିଧ ସ୍ତୁତିପାଠ ଗାନ ।
ନିର୍ଜ୍ଜନ ସ୍ଥାନରେ ନନ୍ଦପ୍ରତି କୃଷ୍ଣଙ୍କର
ଆଧ୍ୟାତ୍ମିକ ଜ୍ଞାନଦାନ ମୁକତି ବିସ୍ତର ।
ମୁନିଙ୍କର ଆଗମନ ଧନ୍ୟ ଉପାଖ୍ୟାନ
ସନତ୍କୁମାରଋଷିଙ୍କ ତତ୍ତ୍ୱ ନିବେଦନ ।

ଶ୍ରୀକୃଷ୍ଣଙ୍କ ଆଦେଶରେ ଉଦ୍ଧବ ଏକାନ୍ତେ
ଉପସ୍ଥିତ ହୋଇ ରାଧାଦେବୀଙ୍କ ଅଗ୍ରତେ ।
ଯେଉଁ ତତ୍ତ୍ୱଜ୍ଞାନ ତାଙ୍କୁ କହିଲେ ବୁଝାଇ
ବର୍ଣ୍ଣିତ ହୋଇଛି ଯଥା ନିମନ୍ତେରେଟି ତହିଁ ।
ସେ ଅନ୍ତରେ ଶ୍ରୀକୃଷ୍ଣଙ୍କ ବ୍ରତୋପନୟନ
ଗୁରୁଗୃହେ ରହି ନାନା ବିଦ୍ୟା ଉପାର୍ଜ୍ଜନ ।
ଗୁରୁଙ୍କ ପାଖରେ ମୃତ ପୁତ୍ର ସମର୍ପଣ ।
ସେ ଅନ୍ତରେ ଜରାସନ୍ଧ ଯବନ ନିଧନ ।
ବିଶ୍ୱକର୍ମାଙ୍କ ହସ୍ତରେ ଦ୍ୱାରକା ନଗର
ନିର୍ମିତ କରାଇ ତହିଁ ବାସ କରିବାର ।
ଉଗ୍ରସେନଙ୍କ ବିଳାପ ରୁକ୍ମିଣୀ ହରଣ
ସ୍ୱର୍ଗରୁ ପାରିଜାତକ ପୁଷ୍ପ ଆନୟନ ।
କୁରୁ ପାଣ୍ଡବ ସମର ଭୂଭାର ବିନାଶ
ଉଷାହରଣ ସହିତେ ବାଣ ଦର୍ପ ଧ୍ୱଂସ ।
ବଳି ରାଜାଙ୍କର ସ୍ତୁତି ବିଷୟ ବର୍ଣ୍ଣନ
ଅନିରୁଦ୍ଧଙ୍କର ଘୋର ବିକ୍ରମ ଦର୍ଶନ ।
ରାଧା ଯଶୋଦା ସମ୍ବାଦ ଶୃଗାଳ ମୁକତି
ତୀର୍ଥଯାତ୍ରା ପ୍ରସଙ୍ଗରେ ସିଦ୍ଧାଶ୍ରମ ଗତି ।
ରାଧା ଦେବୀଙ୍କ ଗଣେଶ ପୂଜା ସମାଚାର
ସେହିଠାରେ ଶ୍ରୀକୃଷ୍ଣଙ୍କ ସଙ୍ଗେ ସାକ୍ଷାତ୍କାର ।

ଦେବୀଙ୍କ ତେଜ ପ୍ରକାଶ ମାହାତ୍ମ୍ୟ ବର୍ଣ୍ଣନ
ଶ୍ରୀକୃଷ୍ଣଙ୍କ ସଙ୍ଗେ କାମ କ୍ରୀଡ଼ାର ବିଧାନ ।
ନନ୍ଦ ଯଶୋଦାଙ୍କ ପୂର୍ବ ବିଭୂତି ଦର୍ଶନ;
ଅକାଳେ ଧରାରେ ବସନ୍ତର ସମାଗମ ।
ନାନାତୀର୍ଥ ବନ ଉପବନ ଉପସ୍ଥିତି
ବ୍ରାହ୍ମଣ ଶାପରେ ଯଦୁବଂଶ ଧ୍ୱଂସ ଗତି ।
ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପାଣ୍ଡବ ମୋକ୍ଷଣ
ବର୍ଣ୍ଣିତ ହୋଇଛି ଆହେ ମହାଭାଗ ଜାଣ ।
ତଦନ୍ତେ ପ୍ରଭୁଙ୍କର ଗୋଲୋକ ଗମନ
ନାରଦ ବିବାହ ଗାଥା ହୋଇଛି ଲିଖନ ।
ବହ୍ନି ଆବର ସୁବର୍ଣ୍ଣ ଉତ୍ପତ୍ତି ତା ଅନ୍ତେ
ବର୍ଣ୍ଣନା କରାହୋଇଛି ଆହେ ତପୋବନ୍ତେ ।
ଏହିଭାବେ ସଂକ୍ଷେପରେ ସକଳ ଘଟନ
ଗ୍ରନ୍ଥଖଣ୍ଡ ମଧ୍ୟେ ହୋଇଅଛଇ ବର୍ଣ୍ଣନ ।
ତୁମ୍ଭେ ପୃଚ୍ଛା କରିବାରୁ କହିଲି ବୁଝାଇ
ଆଉ ଇଚ୍ଛାଥିଲେ ତାହା ପୁଛ ତୋଷହୋଇ ।
ତାହା ସମସ୍ତ ବୁଝାଇ କହିବା ତୁମ୍ଭଙ୍କୁ
ସନ୍ଦେହ ମୋଚନ କରି ପୁଚ୍ଛନ୍ତୁ ଆମ୍ଭଙ୍କୁ ।
ଏହା କହି ନାରାୟଣ ହୋଇଲେ ମଉନ
କ୍ଷେତ୍ରମୋହନ ଗୀତରେ କଲା ସମାପନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଜନ୍ମଖଣ୍ଡେ ବ୍ରହ୍ମଖଣ୍ଡ ଆଦି ଚତୁଷ୍ଟୟ ଭାଗର ସାଧାରଣ ଅନୁକ୍ରମଣିକା କଥନେ ନାମ ଦ୍ୱାବିଂଶୋତ୍ତରଶତତମୋଽଧ୍ୟାୟଃ ।



## ତ୍ରୟୋବିଂଶୋତ୍ତରଶତତମ ଅଧ୍ୟାୟ

## ପୁରାଣର ଲକ୍ଷଣ ଓ ଫଳ ବିବରଣ

ଶୁଣ ଆହେ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ଶୁଣଇ
ଅନ୍ତଃକାଳେ ଯାଇ ବଇକୁଣ୍ଠରେ ବସଇ ।
ପୌରାଣିକ ସୂତମୁନି କରିଣ ବ୍ୟାଖ୍ୟାନ
ନୈମିଷ୍ୟ ଅରଣ୍ୟେ ଏହା କହିଲେ ପୁନ ।
ନାରଦ ଅଗ୍ରତେ ନାରାୟଣ ମୁନିବର
ବଖାଣି ଅଛନ୍ତି ଏହି ଗ୍ରନ୍ଥ ସମାଚାର ।
ଏହି ପରକାରେ ଅଟେ ଏ ଗ୍ରନ୍ଥ ମହତ
ଶ୍ରବଣ ମାତ୍ରକେ ଜନେ ହୋଇବେ ପବିତ୍ର ।

ଏଥୁ ଅନ୍ତରେ ଶୌନକ ମୁନି ତୋଷହୋଇ
କହିଲେ ପୁଣି ସୂତଙ୍କ ମୁଖକୁ ଅନାଇ ।
ଆହେ ମହାଭାଗ ଏହି ଜନମ ମୋହର
ସଫଳ ହୋଇଲା ଅନୁଗ୍ରହରେ ତୁମ୍ଭର ।
ବ୍ରହ୍ମବୈବର୍ତ୍ତ ପୁରାଣ ତୁମ୍ଭଠାରୁ ଶୁଣି
ଅପାର ଆନନ୍ଦ ହେଲା ମନେ ମନେ ଗୁଣି ।
ପୁଣି ଆଉ କିଛି ତହିଁ ପୁଚ୍ଛିବା ନିମନ୍ତେ
ଲାଳୁଛି ମୋତେ ଅଭୟ ଦିଅ ତପୋବନ୍ତେ ।
ଶୌନକ ବଚନ ଶୁଣି ବୋଇଲେକ ସୂତ
ଯାହା ପୁଚ୍ଛିବାକୁ ଇଚ୍ଛା ପଚ୍ଚର ତୁରିତ ।

ବୁଝାଇ କହିବା ଆମ୍ଭେ ସବୁ ସମାଚାର
ଏଥିପାଇଁ କମ୍ପ ମନେ ଏତେ ଭୟଙ୍କର ।
ଶଉନକ ତାହା ଶୁଣି ସନ୍ତୁଷ୍ଟ ହୋଇଲେ
ସୁତଙ୍କୁ ପ୍ରଶଂସା କରି ପୁଣି ପଚାରିଲେ ।
ବୋଇଲେ ପୁରାଣ ସଂଖ୍ୟା ଆଉରି ଲକ୍ଷଣ
ଫଳ ସହିତେ ସମସ୍ତ କହ ତପୋଧନ ।
ସୁତ ବୋଇଲେ ପୁରାଣ ଇତିହାସ ଗାଥା
କହିବା ମନ ଦେଇଣ ଶୁଣ ସବୁକଥା ।
ସର୍ଗ ପ୍ରତିସର୍ଗ ପୁଣି ବଂଶ ମନ୍ୱନ୍ତର
ବଂଶାନୁଚରିତ ମିଶି ପାଞ୍ଚ ପରକାର ।
ଏହି ପ୍ରକାର ପୁରାଣ ଲକ୍ଷଣଟି ଜାଣ
ଉପ ପୁରାଣ ଲକ୍ଷଣ ମନଦେଇ ଶୁଣ ।
ଆଉରି ମହାପୁରାଣ ଲକ୍ଷଣ କହୁଛୁ
ସୃଷ୍ଟି ପାଳନ ବିଷୟ ବର୍ଣ୍ଣନା କରୁଛୁ ।
କର୍ମର ବାସନା ଆଉ ମନୁଙ୍କ ବର୍ଣ୍ଣନ
ପ୍ରଳୟ ବର୍ଣ୍ଣନ ପୁଣି ମୋକ୍ଷ ନିରୂପଣ ।
ଶ୍ରୀହରିଙ୍କ ରୂପଗୁଣ ଚରିତ କଥନ
ପୃଥକ ଭାବରେ ଦେବ ଦେବୀଙ୍କ ବର୍ଣ୍ଣନ ।
ଏହି ଦଶ ଲକ୍ଷଣଟି ମହା ପୁରାଣର
ସ୍ଥିର କରି ହୋଇଅଛି ଆହେ ଋଷିଗଣ ।
ଆଉରି ସଂଖ୍ୟା ବିଷୟ ଶୁଣ ମନଦେଇ
ବ୍ରହ୍ମ ପୁରାଣ ଯେ ଦଶ ହଜାର ଅଟଇ ।
ପଦ୍ମ ପୁରାଣର ସଂଖ୍ୟା ପଞ୍ଚାବନ ସହସ୍ର
ବୈଷ୍ଣବ ପୁରାଣ ପୁଣି ଅଟେ ତ୍ରୟୋବଂଶ ।
ଚତୁର୍ବିଂଶତି ସହସ୍ର ଶୈବ ପୁରାଣରେ
ସଂଖ୍ୟା ନିରୂପିତ ହୋଇଅଛି ଯଥାର୍ଥରେ ।
ଅଷ୍ଟାଦଶ ସହସ୍ର ଗ୍ରନ୍ଥ ଅଟେ ଭାଗବତ
ନାରଦୀୟ ଗ୍ରନ୍ଥ ପଞ୍ଚବିଂଶତି ଯେ ମାତ୍ର ।
ନବ ସହସ୍ର ଅଟଇ ମାର୍କଣ୍ଡ ପୁରାଣ
ଅଗ୍ନି ପୁରାଣର ସଂଖ୍ୟା ମନଦେଇ ଶୁଣ ।
ପଞ୍ଚଦଶ ସହସ୍ର ଯେ ଚତୁଃ ଶତାଧିକ
ସେହି ପୁରାଣ ଅଟଇ ଆହେ ଶଉନକ ।
ଏହାର ସମାନ ଜାଣ ଭବିଷ୍ୟ ପୁରାଣ
ନିର୍ଣ୍ଣୟ କରା ହୋଇଛି ମାନସରେ ସେନ ।
ବ୍ରହ୍ମବୈବର୍ତ୍ତ ଅଟଇ ଅଷ୍ଟାଦଶ ସହସ୍ର
ସବୁ ପୁରାଣରେ ଏହା ସାର ଉପକରଣ ।

ଏକାଦଶ ସହସ୍ରଙ୍କ ପୁରାଣ ଅଟେ
ବରାହ ପୁରାଣ ଚତୁର୍ବିଂଶ ସହସ୍ର ହେ
ଶତାଧିକ ଏକଶତ ସହସ୍ର ଅଧ୍ୟା
ସ୍କନ୍ଦ ପୁରାଣରେ ଉକ୍ତ ଆହେ ମ
କୂର୍ମରେ ସତର ବାମନରେ ଦଶ
ଚତୁର୍ଦ୍ଦଶ ସଂଖ୍ୟା ମତ୍ସ୍ୟ ପୁରାଣେ
ଗରୁଡ଼ ପୁରାଣ ଊନବିଂଶତି ହଜ
ବ୍ରହ୍ମାଣ୍ଡ ପୁରାଣ ଅଟେ ବାରଶହ
ଚତୁର୍ଦ୍ଦଶ ପୁରାଣର ଗଣନା ଏ
ପୁଣି ଅଷ୍ଟାଦଶ ନାମ ଅଛି ତ
ଅଷ୍ଟାଦଶ ସଂଖ୍ୟା ମଧ୍ୟ ଉପ ପୁ
ଗଣନା ହୋଇଣ ଲେଖା ହୋ
ଇତିହାସ କଥା ଏବେ କହୁଛୁ
ମହାଭାରତ ବାଲ୍ମୀକ କୃତ ସ
ମହା ଭାରତର ଗାଥା ଶୁଣ ମ
ଶାରଳା ମଣ୍ଡଳଦେଶେ ଶୂଦ୍ର
ତାହାଙ୍କର ଅନ୍ୟ ନାମ ଥିଲା
ପଠନ କରି ନ ଥିଲେ ବିଦ
ଶାରଳା ଦେବୀଙ୍କ ପାଦପଦ୍ମେ
ଅପାର ଜ୍ଞାନ ଅର୍ଜନ କରିଥି
ଅ କ ପଢିଣ ହଳେ ଖଡ଼ ନ
ଅମୂଲ୍ୟ ଗ୍ରନ୍ଥ ଯେ ଲେଖି ସ
ନିଜେ ମା ଶାରଳା ତାଙ୍କୁ ଦେ
କାଳ ଦାସ ପରି ଜ୍ଞାନ ଦେ
ତାହାଙ୍କ ଦୟାରୁ ବହୁ ବର୍ତ୍ତ
ରଚନା କରି ଜଗତ କର୍ମେ
ମହାଭାରତ ପରମ ଅଷ୍ଟାଦ
ସେହି ମହାଶୟ ଲେଖି ସ
ତାହାଙ୍କ ପାଣ୍ଡିତ୍ୟ ପଣ
ଦେଖିଣ ଅତି ଆଶ୍ଚର୍ଯ୍ୟ ହ
ଶାରଳା ଦାସ ବୋଲିଣ
ଶୂଦ୍ରମୁନି ବୋଲି ପୁଣି ଖ୍ୟା
ସେହି ଶୂଦ୍ର ମୁନିଙ୍କର ଗ୍ର
ପାଠକଲେ ଜାଣିବେ ସ
ଯେତେବେଳେ ଶିକ୍ଷା ସା
ତାଳପତ୍ର ଲିଖନରେ ଗ

ସେହି ସମୟରେ ଜଣେ ଶୂଦ୍ରର ସନ୍ତାନ
ଏତେ ବଡ଼ ମହାଗ୍ରନ୍ଥ କଲେ ରଚନ ।
ଏଥିରୁ ଜାଣିବେ ସର୍ବ ପାଠକ ପାଠିକା
ଆଧ୍ୟାତ୍ମିକ ଶକ୍ତି କେତେ ବଡ଼ ଅଟେ ଏକା ।
ଆଜିକାଲି ଧର୍ମ କର୍ମ ନ ମାନନ୍ତି ଜନ
ଅନ୍ୟାୟ ଅପଥେ କରୁଅଛନ୍ତି ଗମନ ।
କିନ୍ତୁ ଧର୍ମ ଅଟେ ଜାଣ ଯୁଗେ ଯୁଗେ ସତ୍ୟ
ଧର୍ମରେ ଗମିଲେ କେବେଁ ନ ହୁଡ଼ିବ ପଥ ।
ଏ ବ୍ରହ୍ମ ବୈବର୍ତ୍ତ ଗ୍ରନ୍ଥ କଲେ ପଠନ
ପାଠକମାନେ ଲଭିବେ ଜାଣ ବହୁଜ୍ଞାନ ।
ବ୍ରହ୍ମଙ୍କର ନିରୂପଣ ହୋଇବାରୁ ଏଥିଁ
ବ୍ରହ୍ମବୈବର୍ତ୍ତ ରଚନା ହୋଇଛି ମରତେ ।
ଏଥି ମଧ୍ୟେ ବହୁ ତଥ୍ୟ ପୂର୍ଣ୍ଣ ହୋଇଅଛି
ପୁରାଣ ବା ଉପ ପୁରାଣରୁ ବାଛି ବାଛି ।
ବ୍ରହ୍ମ କିଏ କେଉଁପରି ସ୍ୱରୂପ ତାଙ୍କର
ଏହା ମଧ୍ୟେ ପୂର୍ଣ୍ଣ ହୋଇଅଛି ହେତୁକର ।
ବ୍ରହ୍ମ ବିକୃତ ହେବାରୁ ବ୍ରହ୍ମବଇବର୍ତ୍ତ
ନାମଗୋଟି ହେଲା ତାର ଜଗତ ବିଖ୍ୟାତ ।
ଅପାର ରହସ୍ୟ ମାନ ହୋଇଅଛି ପୂର୍ଣ୍ଣ
ପାଠକ ମାନେ ଲଭିବେ ସେ ଅପାର ଜ୍ଞାନ ।
ନଦୀ ମାନଙ୍କ ମଧ୍ୟରେ ଗଙ୍ଗା ଯେହ୍ନେ ସାର
ତୀର୍ଥଙ୍କର ମଧ୍ୟେ ଯେହ୍ନେ ଅଟଇ ପୁଷ୍କର ।
ସର୍ବ ନଗରୀରେ କାଶୀ କ୍ଷେତ୍ର ଯେଉଁପରି
ପୃଥିବୀ ମଧ୍ୟରେ ଶ୍ରେଷ୍ଠ ଭାରତ ଯେପରି ।
ମେରୁ ଯେଉଁପରି ଗିରିଙ୍କର ମଧ୍ୟେ ସାର
ପୁଷ୍ପ ମାନଙ୍କରେ ପାରିଜାତ ଯେ ପ୍ରକାର ।
ପୁନ୍ଦଙ୍କର ମଧ୍ୟେ ସାର ଯେସନେ ତୁଳସୀ
ବ୍ରତ ମାନଙ୍କରେ ଯେହ୍ନେ ଅଟେ ଏକାଦଶୀ ।
ବୃକ୍ଷଙ୍କର ମଧ୍ୟେ ଶ୍ରେଷ୍ଠ କଳ୍ପବଟ ଯେହ୍ନେ .
ଦେବତାଙ୍କ ମଧ୍ୟେ ସାର ଶ୍ରୀବିଷ୍ଣୁ ଯେସନେ
ଯୋଗୀ ମାନଙ୍କର ଶ୍ରେଷ୍ଠ ଯେପରି ଶଙ୍କର
ଗଣେଶ ଯେପରି ଶ୍ରେଷ୍ଠ ଜ୍ଞାନୀଙ୍କ ମଧ୍ୟର ।
ସୂର୍ଯ୍ୟ ଯେଉଁପରି ତେଜମୟ ପଦାର୍ଥରେ
ସାର ଅଟନ୍ତି ଏ ତିନି ଭୁବନ ମଧ୍ୟରେ ।
ସିଦ୍ଧ ଋଷିଙ୍କର ମଧ୍ୟେ କପିଳ ଯେପରି
ବୈଷ୍ଣବ ଗଣରେ ସନତ୍କୁମାର ଯେପରି ।

ସକଳ ନୃପଙ୍କ ମଧ୍ୟେ ରାମ ଯେହ୍ନେ ସାର
ଧନୁର୍ଦ୍ଧର ମଧ୍ୟେ ଯଥା ସୁମିତ୍ରା କୁମର ।
ଦେବୀ ଗଣଙ୍କର ମଧ୍ୟେ ଦୁର୍ଗା ଯେଉଁପରି
ସାର ଅଟନ୍ତି ସେ ମହାଦେବୀ ନାମ ଧରି ।
ଶ୍ରୀକୃଷ୍ଣଙ୍କ ପ୍ରିୟା ମଧ୍ୟେ ରାଧା ଯେହ୍ନେ ସାର
ଈଶ୍ୱରୀ ଗଣରେ ଲକ୍ଷ୍ମୀ ଯେମନ୍ତ ପ୍ରକାର ।
ଆଉର ପଣ୍ଡିତ ପୁଣି ବିଦ୍ୱାନ ମଧ୍ୟରେ
ସରସ୍ୱତୀ ଯେଉଁପରି ସାର ତିନି ପୁରେ ।
ତେମନ୍ତ ଭାବରେ ସର୍ବ ପୁରାଣରେ ସାର
ଅଟେ ଏ ବ୍ରହ୍ମବୈବର୍ତ୍ତ ମନରେ ବିଚାର ।
ଅପାର ପୁଣ୍ୟ ଏ ମଧ୍ୟେ ହୋଇଛି ପୂରିତ
ଇହଲୋକରେ ସମ୍ପଦ ଲଭିବ ବହୁତ ।
ଆଉର ଅଶେଷ ବିଘ୍ନ ବିନାଶ କରଇ
ଶ୍ରୀହରି କରୁଣା ସଦା କାଳେ ଲଭହୋଇ ।
ଜପ ତପ ତୀର୍ଥ ବ୍ରତ ଜ୍ଞାନ ଆଦି ଯେତେ
ଏ ଗ୍ରନ୍ଥ ସଙ୍ଗରେ ସମ ନୁହନ୍ତି ସମସ୍ତେ ।
ଅପୁତ୍ରିକ ଜନ ଯେବେ ମନ କର୍ଣ୍ଣ ଦେଇ
ଅଭ୍ୟାସ କରଣ ଏହି ଗ୍ରନ୍ଥକୁ ପଢଇ ।
ପୁତ୍ର ପୌତ୍ରୀ ଆଦି ଲାଭ ହୁଅଇ ତାହାର
ଅନ୍ତଃକାଳେ ବିଷ୍ଣୁଲୋକେ ବସଇ ସୁଖରୀ
ଧନହୀନ ବ୍ୟକ୍ତି ଯେବେ ଏହାକୁ ପଢଇ
କୁବେର ସଙ୍ଗରେ ସେହୁ ଗଣନା ହୁଅଇ ।
ମୂର୍ଖ ଲୋକ କର୍ଣ୍ଣେ ଯେବେ ଶୁଣଇ ଏ ଗ୍ରନ୍ଥ
ପଣ୍ଡିତ ମାନଙ୍କ ସଙ୍ଗେ ହୁଅଇ ଗଣିତ ।
ବ୍ୟାଧିବନ୍ତ ଜନ ଯେବେ ପଢଇ ଶ୍ରଦ୍ଧାରେ
ସକଳ ବ୍ୟାଧିରୁ ମୁକ୍ତ ହୁଏ ସେ ଅଚିରେ ।
ଅନ୍ଧ ବଧିର ବା କୁଷ୍ଠ ହୋଇଥିବ ଯେହୁ
ଏ ଗ୍ରନ୍ଥ ପଢିଲେ ମୁକ୍ତ ହୋଇବ ସେ ସେହୁ
ଶ୍ରୀକ୍ଷେତ୍ର ଦର୍ଶନେ ଯେଉଁ ଫଳ ଲଭେ ଜନ
ଏ ଗ୍ରନ୍ଥ ପଠନେ ତହୁଁ ହୁଏ ବେଶି ପୁଣ୍ୟ ।
ପବିତ୍ର ଭାବରେ ଯେହୁ ସଂକଳପ କରି
ଏହି ଗ୍ରନ୍ଥ ପଢେ ଅବା ଶୁଣେ କର୍ଣ୍ଣଡେରି ।
ତାହାର ପୁଣ୍ୟ କେତେ ବା କହିବି ମୁଖରେ
ଗଣନା ହୁଅଇ ସେହୁ ସାଧୁ ସମାଜରେ ।
ସକଳ କଳୁଷ ନାଶି ବୈକୁଣ୍ଠେ ବସଇ
କିବା ଗୋଲୋକରେ କୃଷ୍ଣ ସେବକ ହୁଅଇ ।

ଯେ ପ୍ରଭୁଙ୍କ ପାଦପଦ୍ମେ ହୋଇଯାଏ ଲୀନ
ଯୋନିରେ ଜନ୍ମ ନହୁଏ ସେହୁ କଦାଚନ ।
ଏମନ୍ତ ମହିମା ଏହି ଗ୍ରନ୍ଥର ଅଟଇ
ପାଠକଲେ ଜନେ ଲଭ ପାଇବେ ଯେ ତହିଁ ।
ଆଦ୍ୟେ ବ୍ରହ୍ମଖଣ୍ଡ ଆଉ ଦ୍ୱିତୀୟରେ ଜାଣ
ପ୍ରକୃତି ଖଣ୍ଡ ରଚନା ହୋଇଅଛି ପୁଣ ।
ତୃତୀୟେ ଗଣେଶଖଣ୍ଡ ପୁଣି ଚତୁର୍ଥରେ
ଶ୍ରୀକୃଷ୍ଣଙ୍କ ଜନ୍ମଖଣ୍ଡ ହୋଇଛି ବିଧିରେ ।
ଏହି ଚାରିଖଣ୍ଡେ କିଏ କିଏ କେଉଁଫଳ
ମନକର୍ଣ୍ଣ ଦେଇ ତାହା ଶୁଣନ୍ତୁ ସକଳ ।
ଯେବେ ବ୍ରହ୍ମଖଣ୍ଡ ଆଦ୍ୟେ ପଠନ କରିବ
ଅପାର ପୁଣ୍ୟ ଅରଜ ବ୍ରହ୍ମଦର୍ଶୀ ହେବ ।
ତା'ପରେ ପ୍ରକୃତିଖଣ୍ଡ କରିଲେ ପଠନ
ପ୍ରକୃତି ଦେବୀଙ୍କ ଦୟା ଲଭିବ ବହନ ।
ବ୍ରହ୍ମ ଓ ପ୍ରକୃତି ଦୁହେଁ ଅଭେଦ୍ୟ ଅଟନ୍ତି
ପାଠ କଲେ ଜନେ ନିଶ୍ଚେ ଲଭିବେ ମୁକତି ।
ତୃତୀୟେ ଗଣେଶ ଖଣ୍ଡ ପଢ଼ିଲେ ଶୁଣିଲେ
ଜ୍ଞାନୀ ବୋଲାଇବ ଗଣେଶଙ୍କ ଦୟାବଳେ ।
ଚତୁର୍ଥରେ ଶ୍ରୀକୃଷ୍ଣଙ୍କ ଜନ୍ମ ସମାଚାର
ଶ୍ରବଣ କରିଲେ ପାପ ତାପ ହେବ ଦୂର ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଦୟା ସଦା ସେ ପାଇବ
ଅନ୍ତେ ଅଭୟ ପଦରେ ଲୀନ ହୋଇଯିବ ।
ସପତ ଜନ୍ମର ପାପ ହୋଇବ ମୁକତ
ଧନ ଧାନ୍ୟ ଆଦି ସେ ବଢ଼ିବ ଅପ୍ରମିତ ।
ଆହେ ଋଷିଗଣମାନେ ଶୁଣ ମୋର ଗିର
ଏହିଠାରେ ଶେଷ ହେଲା ଗ୍ରନ୍ଥ ସମାଚାର ।
ଗୁରୁଙ୍କ ମୁଖରୁ ପୂର୍ବେ ଯାହା ଶୁଣିଥିଲି
ତୁମ୍ଭେ ପୁଛିବାରୁ ତାହା ବୟାନ କରିଲି ।
ଆଦ୍ୟଠାରୁ ପ୍ରାନ୍ତଯାଏ ଯଥାର୍ଥ ଭାବରେ
ବର୍ଣ୍ଣନା କରିଲି ଏବେ ତୁମ୍ଭ ଅଗ୍ରତରେ ।
ଆଉ ଯେବେ କିଛି ଶୁଣିବାକୁ ଥାଏ ମନ
[illegible] ସମ୍ପୃକ୍ତେ ଆସି କରିବି ଗାୟନ ।

ତେଣୁ ମୁଁ ଜଣାଉଅଛି ସଭିଙ୍କ ପାଶରେ
ବିଦାୟ ଦିଅନ୍ତୁ ମୋତେ ଆନନ୍ଦ ମନରେ ।
ଏତିକ ମାତର ମୁହିଁ କରେ ନିବେଦନ
କାୟ ମନୋବାକ୍ୟ ଦିଅ ହରି ପାଦେ ମନ ।
ତାହାଙ୍କ ବ୍ୟତିତ ଆନ କେହି ରଖିବାକୁ
ସମର୍ଥ ନ ହେବେ କେବେଁ ବିଚାର ମନକୁ ।
ସେହି ପରମ ପୁରୁଷ ସକଳ ଘଟରେ
ବିରାଜ କରିଅଛନ୍ତି ଆତ୍ମା ସ୍ୱରୂପରେ ।
ତାହାଙ୍କ ଚରଣ ତଳେ ସଦାକର ଧ୍ୟାନ
ଏହି ଭବ ବନ୍ଧନରୁ ହୁଅ ହେ ମୋଚନ ।
ଏତେ କହି ମୁନିବର ମଉନ ହୋଇଲେ
ସକଳ ଋଷିଏ ତାଙ୍କୁ ବିଦାୟ କରିଲେ ।
ଏହିଠାରୁ ଶେଷ ହେଲା ବ୍ରହ୍ମବଇବର୍ତ୍ତ
ଶ୍ରବଣ ପଠନ କରି ହୁଅ ସର୍ବେ ମୁକ୍ତ ।
ଅଧମ କ୍ଷେତ୍ରମୋହନ ଯୋଡ଼ି ବେନିକର
ଜଣାଉଛି ସୁଜ୍ଞ ସାଧୁମାନଙ୍କ ପୟର ।
ଯେବେ ଏ ଗ୍ରନ୍ଥରେ କିଛି ତ୍ରୁଟି ରହିଥିବ
ଅପାର କରୁଣା ଗୁଣେ ଦାସକୁ କ୍ଷମିବ ।
ମୁନିନାଞ୍ଚ ମତିଭ୍ରମ ରହିଛି ଶାସ୍ତ୍ରରେ
ମୁନିମାନଙ୍କର ମଧ ଦୋଷ ରହିପାରେ ।
ମୁହିଁ ତ ସାମାନ୍ୟ ନର ନ ଜାଣଇ କିଛି
ଜଗତ ଜନନୀ ପାଦ ସୁମରି ଲେଖୁଛି ।
ନ ଜାଣଇ ଧର୍ମ କର୍ମ ନାହିଁ ବୁଦ୍ଧି ଜ୍ଞାନ
ସାଧୁସଙ୍ଗେ ବସିବାକୁ ହୋଇନି ଭାଜନ ।
ତେଣୁ ପୁନର୍ବାର ନିବେଦନ କରେ ମୁହିଁ
ନ ଧରିବେ ଦୋଷ ଦାସପରେ ରୋଷ ନୋହିଁ
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାଇ
ଲେଖିଲି ଏ ଗ୍ରନ୍ଥ ଭଲ ମନ୍ଦ ନ ଜାଣଇ ।
ସୁଜନ ଜନେ କରିବ ଏହାର ବିଚାର
କ୍ଷେତ୍ରମୋହନ ନମଇଁ ସଭିଙ୍କ ପୟର ।

—o—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣଜନ୍ମ ଖଣ୍ଡେ ପୁରାଣର ଲକ୍ଷଣ ଓ ଫଳ ବିବରଣ କୀର୍ତ୍ତନେ ନାମ ଷଡୁବିଂଶୋତ୍ତରଶତତମୋଽଧ୍ୟାୟଃ ।



ଗ୍ରନ୍ଥ ସମାପ୍ତ

ମୁଦ୍ରାକର—ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ, ଅଲିଶା ବଜାର, କଟକ-୨